# ଦେଶିଆ ଜ୍ଞାନକୋଷ

ସଂକଳକ :

ଡ. ରାଜେନ୍ଦ୍ର ପାଢ଼ୀ

ଶ୍ରୀ ବିଜୟ ଉପାଧ୍ୟାୟ



ଆଦିବାସୀ ଭାଷା ଓ ସଂସ୍କୃତି ଏକାଡେମୀ

ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ବିଭାଗ

ଭୁବନେଶ୍ୱର

# ଦେଶିଆ ଜ୍ଞାନକୋଷ

*ସଂକଳକ :* ଡ. ରାଜେନ୍ଦ୍ର ପାଢ଼ୀ
ଶ୍ରୀ ବିଜୟ ଉପାଧ୍ୟାୟ

*©ପ୍ରକାଶକ :* ସଦସ୍ୟ ସଚିବ,
ଆଦିବାସୀ ଭାଷା ଓ ସଂସ୍କୃତି ଏକାଡେମୀ
ଆଦିବାସୀ ପ୍ରଦର୍ଶନୀ ପଡିଆ
ୟୁନିଟ୍ - ୧, ଭୁବନେଶ୍ୱର - ୭୫୧୦୦୯

*ମୁଦ୍ରଣ :* ସୁବର୍ଣ୍ଣଶ୍ରୀ ପ୍ରକାଶିନୀ, ଶ୍ରୀକଣ୍ଠପୁର, ବାଲେଶ୍ୱର
ଫୋନ୍ : ୯୪୩୭୦୮୯୨୪୧

*ପ୍ରଚ୍ଛଦ :* ବିଜୟ କୁମାର ପ୍ରଧାନ

*ପ୍ରଥମ ପ୍ରକାଶ :* ସାଧାରଣତନ୍ତ୍ର ଦିବସ-୨୦୧୦

*ମୂଲ୍ୟ :* ଟଙ୍କା ମାତ୍ର

---

# DESHIAA GYANAKOSHA

*Compiler :* **Dr. Rajendra padhi**
**Shri Bijay Upadhya**

*© Publisher :* **Member Secretary**
Academy of Tribal Languages & Culture
Adivasi Exhibition Ground
Unit - I, Bhubaneswar - 751 009

*Printed at :* **SUBRNASHREE PRAKASHINI**
Srikanthapur, Balasore
Ph. : 9437089241

*First Edition :* **Republic Day, 2010**

*Price :* **Rs. Only**

# ସଙ୍କଳନ ସଂପର୍କରେ:

ମାନବ ସଭ୍ୟତାର ବିକାଶକାଳରୁ ଗୋଟିଏ ଜାତି ବା ଗୋଷ୍ଠୀର ଜୀବନ ସହ ତା'ର ଭାଷା ଓ ସଂସ୍କୃତିର ସଂପର୍କ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଓ ଅବିଚ୍ଛେଦ୍ୟ । ଜଣେ ବ୍ୟକ୍ତିର ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ବିଭିନ୍ନ ସମୟରେ ଯେପରି ବହୁ ପାରଂପରିକ ଅନୁଷ୍ଠାନ ସଂଘଟିତ ହୋଇଥାଏ, ସେହିପରି ଗୋଟିଏ ଗୋଷ୍ଠୀର ସମୁଦାୟ ଜନମଣ୍ଡଳୀକୁ ଧରି ରଖିବାପାଇଁ ମୁଖ୍ୟତଃ ତା'ର ଭାଷା, ବିଶ୍ୱ ଦୃଷ୍ଟି ତଥା ଧର୍ମବିଶ୍ୱାସ ଏକ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାନ୍ତି ।

କୋରାପୁଟ ଭୂଖଣ୍ଡ ବା ଅବିଭକ୍ତ କୋରାପୁଟ ଜିଲ୍ଲା ପୃଥିବୀର ବହୁ ପ୍ରାଚୀନ ଭୂଖଣ୍ଡ ମଧ୍ୟରେ ଅନ୍ୟତମ । ଏହି ପାର୍ବତ୍ୟାଞ୍ଚଳ ପ୍ରାୟ ୭୫୭୧ ବର୍ଗମାଇଲ କ୍ଷେତ୍ରରେ ବିସ୍ତୃତ ଓ ଏଥିରେ ଅବସ୍ଥାନ କରୁଥିବା ପ୍ରାୟ ପ୍ରତ୍ୟେକ ଗୋଷ୍ଠୀର ଆଦିବାସୀ ନିଜସ୍ୱ ସ୍ୱତନ୍ତ୍ର ଭାଷାରେ ଭାବର ଆଦାନପ୍ରଦାନ କରିଥାନ୍ତି । ଏଠାରେ ଥିବା ୫୧ ପ୍ରକାର ଆଦିବାସୀ ଜନଜାତି ଓ ୭୩ ପ୍ରକାରର ତଫସିଲଭୁକ୍ତ ଜାତି ପ୍ରାୟ ୨୦ରୁ ଅଧିକ ଭାଷାରେ କଥାବାର୍ତ୍ତା କରିଥାନ୍ତି । ଏଭଳି ଏକଲକ୍ଷରୁ ଅଧିକ ଲୋକସଂଖ୍ୟା ବିଶିଷ୍ଟ ଜନଜାତି ହେଉଛନ୍ତି ଭତରା, ଭୂମିଆ, ଗଣ୍ଡ, କନ୍ଧ, କୋୟା ଓ ପରଜା । ଦଶ ହଜାରରୁ ଏକ ଲକ୍ଷ ମଧ୍ୟରେ ଜନସଂଖ୍ୟା ବିଶିଷ୍ଟ ଜନଗୋଷ୍ଠୀ ହେଉଛନ୍ତି ଦୁରୁଆ, ଗାଦବା, ହାଲ୍ବା, କୋଣ୍ଡା ଦୋରା, କଟିଆ, ସଉରା, ଅମାନତ୍ୟ ଓ ଶବର ଏବଂ ପାଞ୍ଚହଜାରରୁ ଦଶ ହଜାର ଲୋକସଂଖ୍ୟା ବିଶିଷ୍ଟ ଜନଗୋଷ୍ଠୀ ହେଉଛନ୍ତି ବଣ୍ଡା, ଡ଼ିଡ଼ାୟୀ, ପେଣ୍ଠିଆ, ସାନ୍ତାଳ ଇତ୍ୟାଦି । ଏହାକୁ ଛାଡ଼ି ରହିଥିବା ଅନେକ କ୍ଷୁଦ୍ର ଗୋଷ୍ଠୀ ଯେପରିକି ଗଣ୍ଡିଆ, ଜାତପୁ, ମାଟିଆ ଇତ୍ୟାଦି । ଏ ସମସ୍ତେ ଆପଣାର ସ୍ୱତନ୍ତ୍ର ବୋଲିରେ କଥାବାର୍ତ୍ତା ହେଇଥାନ୍ତି । କିନ୍ତୁ, ଆର୍ନ୍ତଗୋଷ୍ଠୀ ଭାଷା ବିନିମୟ ସକାଶେ ଏଇ ଅଞ୍ଚଳରେ ଯେଉଁ ସଂଯୋଜକ ଭାଷାଟି ପ୍ରଚଳିତ, ତାହା ହେଉଛି 'ଦେଶିଆ' । କୋରାପୁଟ ଭୂଖଣ୍ଡରେ ବାସ କରୁଥିବା ଆଦିବାସୀ, ଡଙ୍ଗରବାସୀ ବା ବନବାସୀ (ଯଥା: ଉଣା, ପାଇକ,ଗଉଡ଼, କମାର, କୁମ୍ଭାର ଇତ୍ୟାଦି) ତଫସିଲଭୁକ୍ତ ଉପଜାତି ତଥା ଗଡ଼ିଆ ବା

ଅଣଆଦିବାସୀ ଲୋକମାନେ ସମସ୍ତେ ଏହି ଭାଷା କହନ୍ତି ଓ ବୁଝନ୍ତି । ୨୦୦୧ ଜନଗଣନା ଅନୁସାରେ ଏମାନଙ୍କ ସଂଖ୍ୟା ୩୫,୪୧,୭୧୦ । ଏ ସମସ୍ତଙ୍କ ଦ୍ୱିତୀୟ ପ୍ରାକୃତିକ ଭାଷା ହେଉଛି 'ଦେଶିଆ' । ସୁତରାଂ, ଏହା ବାସ୍ତବରେ ଏଠାରେ ପ୍ରଚଳିତ ସମସ୍ତ ଛୋଟବଡ଼ ଭାଷା ତଥା ଅଣଆଦିବାସୀ ଓଡ଼ିଆ, ତେଲୁଗୁ, ବଙ୍ଗାଳୀ ଓ ଛତିଶଗଡ଼ ଲୋକମାନଙ୍କର ସଂଯୋଜକ ଭାଷା ବା ଲିଙ୍ଗୁଆ ଫ୍ରାଙ୍କା (Lingua Franca) । ଓଡ଼ିଶାର ସୁନ୍ଦରଗଡ଼, ଝାରସୁଗୁଡ଼ା ଓ ଝାଡ଼ଖଣ୍ଡର ଚକ୍ରଧରପୁର ଆଦି ଅଞ୍ଚଳରେ ପ୍ରଚଳିତ ଅନ୍ୟାନ୍ୟ ସଂଯୋଜକ ଭାଷା ସାଦ୍ରି ସହ ଏହା ତୁଳନୀୟ ।

ଦେଶିଆକୁ ଆର୍ନ୍ତଗୋଷ୍ଠୀୟ ସଂଯୋଜକ ଭାଷା ଭାବେ ଅଭିହିତ କରି ଦେଶିଆ ଭାଷାର ପ୍ରଥମ ଗବେଷକ ପ୍ରଫେସର ଡ଼ଃ ଖଗେଶ୍ୱର ମହାପାତ୍ର ଯଥାର୍ଥରେ କହିଛନ୍ତି "କୋରାପୁଟରେ ପ୍ରଚଳିତ ଭାଷାମାନଙ୍କ ମଧ୍ୟରେ ଦେଶିଆର ସ୍ଥାନ ସ୍ୱତନ୍ତ୍ର । କାରଣ ଏଠାରେ ପରସ୍ପର ଦୁର୍ବୋଧ ବିଭିନ୍ନ ଭାଷାଭାଷୀ ଜନଗୋଷ୍ଠୀ ମଧ୍ୟରେ ଭାବବିନିମୟର ପ୍ରଧାନ ମାଧ୍ୟମ ରୂପେ ଦେଶିଆ ଭାଷାର ସର୍ବମାନ୍ୟତା ପରିଲକ୍ଷିତ ହୁଏ । ଏହା ସମସ୍ତ ଆର୍ଯ୍ୟେତର ଗୋଷ୍ଠୀର ଦ୍ୱିତୀୟ ପ୍ରାକୃତିକ ଭାଷା ରୂପେ ଗୃହୀତ । ଏପରିକି ବଣ୍ଡାମାନଙ୍କ ପରି ନିକାଞ୍ଚନ ଓ ବିଚ୍ଛିନ୍ନ ନିବାସୀ ଉପଜାତିର ଲୋକେ ଦେଶିଆରେ ଆତ୍ମପ୍ରକାଶ କରିବାକୁ ଅଭ୍ୟାସ କରନ୍ତି । ତେଣୁ 'ଦେଶିଆ' କୋରାପୁଟର ଏକ ପ୍ରକାର 'ଲିଙ୍ଗୁଅ ଫ୍ରାଙ୍କା' । ଦେଶିଆ ହେଉଛି ମୁଖ୍ୟତଃ ଏକ ମୌଖିକ ଭାଷା ବା ବୋଲି । ଏଥିରେ ବହୁ ସମୃଦ୍ଧ ଓ ରସାଳ ମୌଖିକ ସାହିତ୍ୟ ମଧ୍ୟ ଉପଲବ୍ଧ । ଏହାର ଲିଖିତ ସାହିତ୍ୟ ପ୍ରାୟତଃ ଦେଖାଯାଏ ନାହିଁ । କିନ୍ତୁ, ଲୋକମୁଖରେ ପ୍ରଚଳିତ ବହୁ ସମୃଦ୍ଧ ଲୋକଗଳ୍ପ, ଗୀତକୁଡ଼ିଆ ଓ ଗୀତକୁଡ଼ିଆନୀମାନଙ୍କ କଥାନୀ, କିନ୍ଦିରାଗୀତ, ଚଇତିପରବ ଗୀତ, ବାକ୍‌ନା(ଧନ୍ଦା), ଡ଼ଗ୍(ଢ଼ଗ) ଇତ୍ୟାଦି ଉପଲବ୍ଧ । ଏଥିରୁ କିଛିକିଛି ଆଦିବାସୀ ଗବେଷକମାନଙ୍କ ଦ୍ୱାରା ସଂଗୃହୀତ ହୋଇଥିଲେ ବି ଅନେକ ଏ ପର୍ଯ୍ୟନ୍ତ ଅସଂଗୃହୀତ ।"

**ଦେଶିଆ ଭାଷାର ଉଦ୍ଭବ :**

କେତେକ ଭାଷାତତ୍ତ୍ୱବିତ୍ ଦେଶିଆ ଭାଷାର ଉଦ୍ଭବ ସହ ନନ୍ଦପୁର ରାଜା ବିନାୟକ ଦେଓଙ୍କର ଶାସନ ସମୟକୁ ଅର୍ଥାତ୍ ପଞ୍ଚଦଶ ଶତାବ୍ଦୀକୁ ଇଙ୍ଗିତ କରୁଥିଲେ ହେଁ ଯେକୌଣସି ଲିଙ୍ଗୁଆ ଫ୍ରାଙ୍କା ଭଳି ଦେଶିଆ ମଧ୍ୟ ବଜାରରେ ପରସ୍ପରର ଉତ୍ପନ୍ନ ଦ୍ରବ୍ୟ ଆଦାନପ୍ରଦାନ କିମ୍ବା କିଣାବିକା ସମୟରେ ତଥା ଆନ୍ତର୍ଗୋଷ୍ଠୀ ସାଂସ୍କୃତିକ, ସାମାଜିକ, ଧାର୍ମିକ ତଥା ପାରଂପରିକ ଅନୁଷ୍ଠାନରେ ଅଂଶଗ୍ରହଣ ପ୍ରକ୍ରିୟା ମାଧ୍ୟମରେ

ସୃଷ୍ଟି ହୋଇଥିବା ଅନୁମିତ । ଐତିହାସିକ ଭାବେ ଏ ସଂପର୍କରେ ନିର୍ଦ୍ଦିଷ୍ଟ କିଛି ପ୍ରତିପାଦିତ ହୋଇନଥିଲେ ମଧ୍ୟ ଏହି ଅଞ୍ଚଳ ପ୍ରାୟ ଏକ ହଜାରବର୍ଷ ତଳେ ବୌଦ୍ଧତନ୍ତ୍ରର ତନ୍ତ୍ରସାଧନା ଓ ସାହିତ୍ୟର କେନ୍ଦ୍ରସ୍ଥଳୀ ହୋଇଥିବା ଦୃଷ୍ଟିରୁ, ସେହି ସମୟରୁ ପ୍ରଚଳିତ ଆଦିମ ଓଡ଼ିଆ ଭାଷାର କିଛି କିଛି ଅବଶେଷ ତଥା ପ୍ରକ୍ଷେପତା ଏବେ ବି ଏହି ଦେଶିଆ ଭାଷାରେ ଦେଖିବାକୁ ମିଳେ ।

ଏଠାରେ ପ୍ରଚଳିତ ଅନ୍ୟାନ୍ୟ ଆଦିବାସୀ ଭାଷାଗୁଡ଼ିକ ହେଲା ରେମୋ(ବଣ୍ଡା), ଗୁତବ (ଗାଦବା), ଓଲାରି(ଗାଦବା), କୁରେଇ (ସଉରା), କୋଣ୍ଡା, ମୁଣ୍ଡାରି, କୁଇ/କୁଭି (କନ୍ଧ), ପାରଜୀ (ପରଜା), ପେଙ୍ଗୁ, ଭତ୍ରୀ(ଭତରା), କୋୟା, ମାଟିଆ ଓ ଓମାନାତ୍ୟ, ପେଣ୍ଟିଆ, ଭୂମିଆ ଇତ୍ୟାଦି । ଭାରତରେ ବିଭିନ୍ନ ଜନଜାତି ମଧ୍ୟରେ ପ୍ରଚଳିତ ଚାରୋଟି ଭାଷା ପରିବାର ମଧ୍ୟରୁ ତିନୋଟି ଭାଷା ପରିବାରର ଅନ୍ତର୍ଭୁକ୍ତ ଥିବା ଏହି ସବୁ ଭାଷା ଭିତରେ ସ୍ୱାଭାବିକ ଭାବରେ ଅନେକ ତାରତମ୍ୟ ବିଭିନ୍ନତା ଓ ଦୂରତା ପରିଲକ୍ଷିତ ହୁଏ । ରେମୋ ଓ ଗୁତବ ଭଳି କିଛି ଭାଷା ଅଷ୍ଟ୍ରିକ୍-ଏସିୟ ପରିବାରର ହୋଇଥିବା ବେଳେ ଦୁରୁଆ, ଗୋଣ୍ଡି, ଜାତାପୁ, କନ୍ଧ, ଗାଦବା ଓ କୋୟାମାନଙ୍କର ଭାଷା ଦ୍ରାବିଡ଼ୀୟ ଭାଷା ପରିବାରର ଅନ୍ତର୍ଭୁକ୍ତ । ପୁଣି ଭାରତୀୟ ଆର୍ଯ୍ୟ ଭାଷା ପରିବାରର ଅନ୍ତର୍ଭୁକ୍ତ ଭାଷା ହେଲେ ଭତ୍ରୀ, ଭୂମିଆ, ହାଲ୍‌ବୀ, ଝରିଆ, ମାଟିଆ ଓ ଓମାନତ୍ୟ । ଭାଷାଗତ ଏହି ଭିନ୍ନତାକୁ ଅତିକ୍ରମ କରିବାର ସ୍ୱାଭାବିକ ଆୟୁଧ ହେଉଛି ଏହି ଦେଶିଆ ଭାଷା ।

ଓଡ଼ିଆ ସହ ଏହାର ସାମଞ୍ଜସ୍ୟ ହେତୁ ଏହାକୁ ଅନେକେ ଓଡ଼ିଆର ଏକ ଉପଭାଷା ରୂପେ ଉପସ୍ଥାପନ କରିଥାନ୍ତି । ଔପଭାଷିକ ମାନ୍ୟତା ଅର୍ଜନ ପାଇଁ ଏହାର ସମସ୍ତ ଯୋଗ୍ୟତା ଥିଲେ ହେଁ ଏ ଦିଗରେ ଭାଷା ଗବେଷକମାନଙ୍କ ଦ୍ୱାରା କିଛି କାର୍ଯ୍ୟ ସମ୍ପାଦିତ ହୋଇଛି ।

ଏହି ଭାଷାର କେନ୍ଦ୍ର ରୂପେ ଅବିଭକ୍ତ କୋରାପୁଟ ଜିଲ୍ଲାର ପାଞ୍ଚଟି ଅଞ୍ଚଳକୁ ଚିହ୍ନିତ କରାଯାଇପାରେ । ସେଗୁଡ଼ିକ ହେଲା -

୧) ମାଲ୍‌କାନ୍‌ଗିରି ଉପକ୍ଷେତ୍ର :- ମାଥିଲି, ମାଲ୍‌କାନ୍‌ଗିରି, କାଲିମେଲା, ଚିତ୍ରକୋଣ୍ଡା, ପଡ଼ିଆ ଓ ମୋଟୁ ବ୍ଲକ୍ ।

୨) କୋରାପୁଟ ଉପକ୍ଷେତ୍ର :- ନନ୍ଦପୁର, କୋରାପୁଟ, ଲମତାପୁଟ, ସେମିଲିଗୁଡ଼ା, ଜୟପୁର, ବୈପାରୀଗୁଡ଼ା, କୁନ୍ଦ୍ରା, ବୋରିଗୁମ୍ମା, ପଟାଙ୍ଗୀ, ଦଶମନ୍ତପୁର, ଲକ୍ଷ୍ମୀପୁର, ବନ୍ଧୁଗାଁ, ନାରାୟଣପାଟଣା ବ୍ଲକ୍ ।

୩) ଇନ୍ଦ୍ରାବତୀ ଉପକ୍ଷେତ୍ର:- ତେନ୍ତୁଳିଖୁଣ୍ଟି, ନନ୍ଦାହାଣ୍ଡି, ନବରଙ୍ଗପୁର, କଷାଗୁମୁଡ଼ା, କୋଟପାଡ଼ ବ୍ଲକ୍ ।

୪) ଉମରକୋଟ ଉପକ୍ଷେତ୍ର :- ଉମରକୋଟ, ରାଇଘର, ଝରିଗାଁ, ଚନ୍ଦାହାଣ୍ଡି, ଡାବୁଗାଁ, ପାପଡ଼ାହାଣ୍ଡି ବ୍ଲକ୍ ।

୫) ରାୟଗଡ଼ା ଉପକ୍ଷେତ୍ର :- ରାୟଗଡ଼ା, ପଦ୍ମପୁର, ଗୁଣୁପୁର, ଗୁଡ଼ାରି ଆଦି ବ୍ଲକ୍ ।

ଏହିସବୁ ଉପକ୍ଷେତ୍ରୀୟ ଅଞ୍ଚଳରେ ପ୍ରଚଳିତ ଦେଶିଆ ଭାଷାରେ କେତେକ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ । ଏହାର ମୁଖ୍ୟ କାରଣ ହେଉଛି ପଡ଼ୋଶୀ ରାଜ୍ୟର ଛତିଶଗଡ଼ି ଓ ତେଲୁଗୁ ଭାଷାର ପ୍ରଭାବ ଏବଂ ସେହିସବୁ ଅଞ୍ଚଳର ମୁଖ୍ୟ ଆଦିବାସୀ ଗୋଷ୍ଠୀର ପ୍ରଚଳିତ କଥିତ ଭାଷାର ପ୍ରଭାବ ।

ଉପରୋକ୍ତ ପାଞ୍ଚଟି ଯାକ ଅଞ୍ଚଳ ଉପରେ ସ୍ୱତନ୍ତ୍ର ଦୃଷ୍ଟିଦେଇ ଆମେ ଦେଶିଆ ଭାଷାରେ ବ୍ୟବହୃତ ସମୃଦ୍ଧ ସାଂସ୍କୃତିକ ଶବ୍ଦାବଳୀ ଉପରେ ଧ୍ୟାନ ଦେବାର ଉଦ୍ୟମ କରିଛୁ । ଏଠାରେ ଏହି କଥା ମଧ୍ୟ ସ୍ପଷ୍ଟ କରିଦେବା ଆବଶ୍ୟକ ଯେ ଏହି "ଦେଶିଆ ଜ୍ଞାନକୋଷ" ଦେଶିଆ ଭାଷାରେ ପ୍ରଚଳିତ ସମସ୍ତ ଶବ୍ଦର ଏକ ଅଭିଧାନ ନୁହେଁ କିମ୍ବା ଚୟନ କରାଯାଇଥିବା ଶବ୍ଦାବଳୀ ଉପରେ ଆମେ ସବୁଦିଗକୁ ଛୁଇଁଲା ଭଳି ବିସ୍ତୃତ ବର୍ଣ୍ଣନାର ପରିକଳ୍ପନା କରିନାହୁଁ । ଏହା କେବଳ ଦେଶିଆ ଭାଷା ବା ଆଦିବାସୀ ସଂସ୍କୃତି ଉପରେ ଗବେଷଣାରତ କିମ୍ବା ଜାଣିବାକୁ ଆଗ୍ରହୀ ସାଧାରଣ ପାଠକଙ୍କୁ ବିଭିନ୍ନ ସାଂସ୍କୃତିକ ବିଭବ ଉପରେ ମୌଳିକ ଧାରଣା ଦେବା ଲାଗି ଉଦ୍ଦିଷ୍ଟ । ଆଉ ମଧ୍ୟ ଏହା ଯେ ଏକ ସ୍ୱୟଂସଂପୂର୍ଣ୍ଣ ଶବ୍ଦକୋଷ ସେକଥା ମଧ୍ୟ ଆମେ ଦାବି କରୁନାହୁଁ, ମାତ୍ର ଏକଥା ନିଶ୍ଚିତ ଭାବେ କହିପାରିବୁ ଯେ ଦେଶିଆ ଭାଷାରେ ପ୍ରକାଶିତ ପ୍ରାୟ ସମସ୍ତ ଆଦିବାସୀ ସଂପ୍ରଦାୟର ଚଳଣି, ଜୀବନଧାରା, ପରଂପରା, ପର୍ବପର୍ବାଣୀ, ଧର୍ମବିଶ୍ୱାସ, ନାଚଗୀତ, ଦିଶାରୀଗୁରୁମାଇ, ଔଷଧୀୟଜ୍ଞାନ ଇତ୍ୟାଦି ସାଂସ୍କୃତିକ ପରିସରର ମୁଖ୍ୟ ବିନ୍ଦୁକୁ ଆମେ ସ୍ପର୍ଶ କରିବାର ଚେଷ୍ଟା କରିଛୁ । ବାସ୍ତବରେ ଏହି ସାଂସ୍କୃତିକ ଜ୍ଞାନକୋଷରେ ନିମ୍ନ ବିଷୟକ ଶବ୍ଦମାନ ସଂକଳିତ ହୋଇଛି ।

୧. ପର୍ବପର୍ବାଣି ଓ ଧାର୍ମିକ ଅନୁଷ୍ଠାନ ।

୨. ନାଚଗୀତ ଓ ବାଦ୍ୟଯନ୍ତ୍ର ।

୩. ଦେବଦେବୀ, ସେ ସଂପର୍କୀୟ ମିଥ୍ ଓ କିମ୍ବଦନ୍ତୀ ।

୪. ନଦୀ, ପର୍ବତ, ସ୍ଥାନ ବିଶେଷ ତଥା ସେ ସଂପର୍କୀୟ ଲୋକକଥା ଓ କିମ୍ବଦନ୍ତୀ ।

୫. ଔଷଧ ସଂପର୍କୀୟ ଦେଶୀୟ ଜ୍ଞାନ ।

୬. ଗୃହ ଓ ଋଷ ଉପକରଣ ।

୭. ଜୀବଜନ୍ତୁ ଓ କୀଟପତଙ୍ଗ ।

୮. ଦେଶୀୟ ଶିଳ୍ପ ଓ କାରିଗରି ଜ୍ଞାନକୌଶଳ ।

୯. ସାଂସ୍କୃତିକ ଗୁରୁତ୍ୱପୂର୍ଣ୍ଣ କ୍ରିୟାପଦ ଓ ବିଶେଷଣ ।

୧୦. ବେଶଭୂଷା ଓ ଅଳଙ୍କାର ।

ତତ୍ ସଙ୍ଗେସଙ୍ଗେ ଅଧିକାଂଶ ଶବ୍ଦର ପ୍ରାସଙ୍ଗିକତା, ଦେଶିଆ ଭାଷାରେ ବ୍ୟବହୃତ ଲୋକୋକ୍ତି ଓ ଗୀତର ତାତ୍ପର୍ଯ୍ୟ ତଥା ଯଥାସମ୍ଭବ ସେସବୁର ଇଂରାଜୀ ଅନୁବାଦ ଦେବାପାଇଁ ଆମେ ଚେଷ୍ଟା କରିଛୁ । ଶବ୍ଦଟି କିପରି ସୃଷ୍ଟି ହୋଇଛି ଓ ତାହା କେଉଁ ପଦ, ତାହାକୁ ଦର୍ଶାଇବା ପାଇଁ ଆମେ କେତେକ ସାଂକେତିକ ଶବ୍ଦର ବ୍ୟବହାର କରିଛୁ, ଯଥା:-

୧. ଦେଶିଆ - ଦେ

୨. ଗଣ୍ଡ - ଗ

୩. ବିଶେଷ - ବି

୪. ବିଶେଷଣ - ବିଂ

୫. କ୍ରିୟା - କ୍ରି

୬. କ୍ରିୟା ବିଶେଷଣ - କ୍ରି ବିଂ

୭. ଅବ୍ୟୟ - ଅ

୮. ଇଂରାଜୀ - ଇଂ

ଏହି ପ୍ରକଳ୍ପ ପ୍ରାୟ ପାଞ୍ଚବର୍ଷ ତଳେ ଅବିଭକ୍ତ କୋରାପୁଟ ଜିଲ୍ଲା ଆଦିବାସୀ ଭାଷା ଓ ସଂସ୍କୃତି ଗବେଷଣାମଞ୍ଚ ତରଫରୁ ଆରମ୍ଭ କରାଯାଇଥିଲା । ପରବର୍ତ୍ତୀ ସମୟରେ ଓଡ଼ିଶାର ଆଦିବାସୀ ଭାଷା ଓ ସଂସ୍କୃତି ଏକାଡ଼େମୀ, ଭୁବନେଶ୍ୱର, ଏଥିଲାଗି ସହଯୋଗର ହାତ ବଢ଼ାଇ ଦେଇଥିଲେ, କିନ୍ତୁ ପୂର୍ବୋକ୍ତ କ୍ଷେତ୍ରରୁ ଯେଉଁ ଗବେଷକ ବନ୍ଧୁମାନେ ସାହାଯ୍ୟର ପ୍ରତିଶ୍ରୁତି ଦେଇଥିଲେ, ସେମାନଙ୍କ ସକ୍ରିୟତା ଅଭାବରୁ ଏହା ସଂଗୃହୀତ ଓ ସଂକଳିତ ହେବାରେ ବହୁ ବିଳମ୍ବ ହେଲା । ପରବର୍ତ୍ତୀ ସ୍ତରରେ ଏହାର ସଂପାଦନା

ଦାୟିତ୍ୱ ସଂପୂର୍ଣ୍ଣଭାବେ ଆମ ଦୁଇଜଣଙ୍କୁ ନେବାକୁ ପଡ଼ିଲା । A.T.L.C. ର ସଦସ୍ୟ ସଚିବ ଓ ଗବେଷକଙ୍କର ବାରମ୍ବାର ତାଗିଦ ଓ ପ୍ରେରଣା ଏ ଦିଗରେ ହୋଇଥିବା କାର୍ଯ୍ୟକୁ ନିଶ୍ଚିତ ଭାବେ ତ୍ୱରାନ୍ୱିତ କରିଛି, ସେଥିପାଇଁ ସେମାନେ ଧନ୍ୟବାଦାର୍ହ । ସେହିପରି ଯେଉଁ କ୍ଷେତ୍ର ଗବେଷକମାନେ ପରିଶ୍ରମ କରି ନିଜ ନିଜ ଅଞ୍ଚଳରୁ ସାଂସ୍କୃତିକ ଶବ୍ଦବିଭବ ସଂଗ୍ରହରେ ଆମକୁ ସାହାଯ୍ୟ କରିଛନ୍ତି, ସେମାନଙ୍କୁ ମଧ୍ୟ ଆମର କୃତଜ୍ଞତା ଜ୍ଞାପନ କରୁଛୁ । ସେମାନେ ହେଉଛନ୍ତି, ଉମରକୋଟର ଶ୍ରୀଯୁକ୍ତ ସୁବାସ ଚନ୍ଦ୍ର ମିଶ୍ର, ବୋରିଗୁମ୍ମା କାଠରଗଡ଼ାର ଶ୍ରୀଯୁକ୍ତ କୃତିବାସ ନାୟକ, କୋରାପୁଟର ଶ୍ରୀଯୁକ୍ତ ଜଳଧର ସ୍ୱାଇଁ, ଲକ୍ଷ୍ମୀପୁରର ଶ୍ରୀଯୁକ୍ତ ପ୍ରକାଶ ସେନାପତି, ସୁନାବେଡ଼ାର ଶ୍ରୀଯୁକ୍ତ ତାଉଭୋଇ, ବୈପାରୀଗୁଡ଼ା ଦଶମନ୍ତପୁରର ଶ୍ରୀଯୁକ୍ତ ସୁଭାଷ ଚନ୍ଦ୍ର ଦାଶ, ଜୟପୁରର ଶ୍ରୀଯୁକ୍ତ ଉଦୟଚନ୍ଦ୍ର ମିଶ୍ର ଏବଂ ମାଲକାନ୍‌ଗିରିର ଶ୍ରୀଯୁକ୍ତ ସଦାଶିବ ନାୟକ ପ୍ରମୁଖ ।

ଏହି ସଂକଳନରେ ଯଦି କିଛି ତଥ୍ୟଗତ ତ୍ରୁଟି ରହିଥାଏ, ସେଥିପାଇଁ ଆମେ ସଂପୂର୍ଣ୍ଣ ଭାବେ ଦାୟୀ, କିନ୍ତୁ ଶବ୍ଦ ପ୍ରମାଦଗତ ତ୍ରୁଟି ଯେ ନଥିବ, ସେ କଥା କହିହେବନାହିଁ । ପରବର୍ତ୍ତୀ ସଂସ୍କରଣରେ ସେସବୁ ସଂଶୋଧନ କରି ଏବଂ ଏଥିରେ ଅନ୍ତର୍ଭୁକ୍ତ ହୋଇନଥିବା ଅନ୍ୟାନ୍ୟ ବିଶେଷ ସାଂସ୍କୃତିକ ଶବ୍ଦାବଳୀକୁ ଏଥିରେ ସନ୍ନିବେଶିତ କରିବା ପାଇଁ ପ୍ରତିଶ୍ରୁତି ଦେଉଛୁ ।

ସର୍ବୋପରି ଆଦିବାସୀ ଭାଷା ଓ ସଂସ୍କୃତି ଏକାଡ଼େମୀ ଏହି ପ୍ରକଳ୍ପର ପରିକଳ୍ପନା ଓ ବାସ୍ତବାୟନରେ ସବୁ ପ୍ରକାର ସାହାଯ୍ୟ ଯୋଗାଇ ଦେଇ ଏହାକୁ ଲୋକଲୋଚନକୁ ଆଣୁଥିବାରୁ ସେମାନେ ମଧ୍ୟ ଆମର ଧନ୍ୟବାଦର ପାତ୍ର ।

ଶ୍ରୀ ବିଜୟ ଉପାଧ୍ୟାୟ

ଡ. ରାଜେନ୍ଦ୍ର ପାଢ଼ୀ

ଅବିଭକ୍ତ କୋରାପୁଟ ଜିଲ୍ଲାରେ ବାସ କରୁଥିବା ସମସ୍ତ ଅଧିବାସୀଙ୍କର ଦୈନନ୍ଦିନ ବ୍ୟବହାର୍ଯ୍ୟ ଭାଷା ହେଉଛି ଦେଶିଆ ଭାଷା । ଅନୁସୂଚିତ ଜନଜାତିର ହୁଅନ୍ତୁ ବା ଅନୁସୂଚିତ ଜାତିର ହୁଅନ୍ତୁ, ବା ସାଧାରଣବର୍ଗର ହୁଅନ୍ତୁ - ଏହି ଭାଷାରେ ହିଁ ପ୍ରତ୍ୟେକ ପ୍ରାତ୍ୟହିକ କାର୍ଯ୍ୟ ସମାପନ କରୁଥିବାର ଦେଖାଯାଏ ।

ଏହି ଭାଷା ଅନ୍ତର୍ଗତ ଶବ୍ଦମାନଙ୍କର ବ୍ୟବହାର୍ଯ୍ୟଗତ ତାତ୍ପର୍ଯ୍ୟ, ସାଂସ୍କୃତିକ ପୃଷ୍ଠଭୂମି, ସାମାଜିକ ଆବଶ୍ୟକତା ଏବଂ ସର୍ବୋପରି ମାନସିକତାରେ ଏହାର ପ୍ରୟୋଗବିଧି ସଂପର୍କରେ ବିଶଦ ଅନୁଶୀଳନ କରାଯାଇ ଏହି ପୁସ୍ତକ ସଂକଳିତ ଓ ପ୍ରସ୍ତୁତ ହୋଇଛି ।

ଏହି ପୁସ୍ତକର ପ୍ରସ୍ତୁତି ବିଚାର କାଳରେ ସବୁ ବର୍ଗର ଲୋକଙ୍କ ନିକଟରେ ଦେଶିଆ ଭାଷାରେ ବ୍ୟବହୃତ ଶବ୍ଦାବଳୀର ମହତ୍ୱ ପହଞ୍ଚିପାରିବା ମାଧ୍ୟମରେ ଜନସାଧାରଣଙ୍କର ମାନସିକ ଦୂରତା ହ୍ରାସ ହୋଇ ପାରିବାର ଯେଉଁ ପରିକଳ୍ପନା କରାଯାଇଥିଲା, ତାହା କେତେ ପରିମାଣରେ ସାର୍ଥକ ହୋଇଛି, ପାଠକେ ତା'ର ବିଚାର କରିବେ ।

ଶ୍ରୀ ଅଖିଳ ବିହାରୀ ଓତା
ସଦସ୍ୟ ସଚିବ
ଆଦିବାସୀ ଭାଷା ଓ ସଂସ୍କୃତି ଏକାଡେମୀ
ଭୁବନେଶ୍ୱର



୧.  ଆଉଁଲା - *ଦେ.ବି.* : ଏକ ଔଷଧୀୟ ବୃକ୍ଷ, ଏହି ବୃକ୍ଷର ଫଳ : ଅଁଳା ସାଧାରଣତଃ ଦୁଇପ୍ରକାର ଦେଖାଯାଏ । (୧) ଧାତ୍ରୀ ଅଁଳା - ଏହାର ଫଳ ପିଲାମାନେ ଖେଳୁଥିବା ଗୁଲି ଆକାରର । ଏହା ଔଷଧୀୟ ଗୁଣ ବିଶିଷ୍ଟ ଓ ଏହା ସାଧାରଣତଃ ଜଂଗଲରେ ଦେଖାଯାଏ । (୨) ସାଧାରଣ ଅଁଳା - ଯାହାକି ଗାଁ ଗହଳି ଦେଖାଯାଏ । ଏହା ପାଟିକୁ ଖୁବ୍ ଖଟା ଲାଗେ । ଧାତ୍ରୀ ଅଁଳାରୁ ଆଚାର, ପାଚନ ଅଁଳା ଇତ୍ୟାଦି ପ୍ରସ୍ତୁତ ହୁଏ । ବିଭିନ୍ନ ପ୍ରକାରର ଆୟୁର୍ବେଦିକ ଔଷଧରେ ମଧ୍ୟ ଏହାର ବ୍ୟବହାର ହୋଇଥାଏ । ବିଶେଷ କରି ବିଭିନ୍ନ ପ୍ରକାରର ପେଟ ରୋଗ, କଫ ଓ କାଶ ପାଇଁ ଏହାର ଚୂର୍ଣ୍ଣ ସେବନ କରାଯାଇଥାଏ । ରୂପିର ନିରାକରଣ ପାଇଁ ଏହା କେଶରେ ଲେପନ କରାଯାଇଥାଏ ।

୨.  ଅଏଲି - *ଦେ.ବି.* : ବିବାହ କାଳୀନ ଗୀତ । ଇଂ- Nuptial Songs. ଭୂମିଆ, ପେଣ୍ଟିଆ, ଭତ୍ରୀ, କୋୟା ଆଦି ଆଦିବାସୀ ଗୋଷ୍ଠୀ ମଧ୍ୟରେ ବିବାହ ସମୟରେ ଅଏଲି  ଗୀତ ଝିଅମାନେ ଗାଇଥାନ୍ତି । ଏହି ଗୀତ ସାଂଗସାଥୀଙ୍କୁ ମେଳକରି ଗାନ କରାଯାଇଥାଏ । ଯଥା : "ଅଏଲି ମାରିଲୁ ସରି ର ଜ ମନା କାଇ ପରାରେ ନାଇଁ, ସିତାଲି ବେଲାର ଅଏଲି ମାରାରେ ପାଟବ୍ୟାଲି ସୁଆ ଦୂରେ ଯାଏ ନାଇଁ ।" (ଉଲୁଉଲି....)

ଓଡ଼ିଆ ଅନୁବାଦ : ଗୀତ ଗାଇଲୁ, ଗୀତ ଗାଇଲୁ, କେମିତି ସେ ଗୀତ, ସକାଳ ପାହାନ୍ତା ଗୀତରେ ସାଂଗ, ସକାଳ ପାହାନ୍ତା ଗୀତ, ଝିଅ ବର ପାଇଁ ଗାଇଲୁ ଗୀତ, ନ ଯାଉ ସେ ଦୂରଦେଶ / ଦିଅ ହୁଳହୁଳି ଦିଅ ।

୩.  ଅକ୍ - *ଦେ.କ୍ରି.* : ନଜର କରିବା, ଆଖି ପକାଇବା । ଇଂ- To have an eye at. ଉଦାହରଣ : ସାଉକାର୍ ସେ ବେଡ଼ାକେ ଅକ୍ କାଲାନି, (ସେ ସେହି ବେଡାଟା ବା ଜମିଖଣ୍ଡକ ନେବାପାଇଁ ଚେଷ୍ଟା କଲାଣି ବା ଲୋଭ କରିଲାଣି) । ଈର୍ଷାପରାୟଣ ହେବା ଅର୍ଥରେ ଅର୍ଥାତ୍ 'ଆଁକାର' ଅର୍ଥରେ ଅକ୍ ଶବ୍ଦର ପ୍ରଚଳନ ମାଲକାନଗିରି ଦେଶିଆରେ ନାହିଁ । ଅଥଚ ଏହା ଅନ୍ୟାନ୍ୟ ଅଞ୍ଚଳରେ ପ୍ରଚଳିତ ।

୪. ଅକତ୍ / ଆକତ୍ - *ଦେ.ବି.* : ଧାନରୁ ପ୍ରସ୍ତୁତ ଅରୁଆ ଚାଉଳ । ଇଂ- Raw Rice ଓଡ଼ିଆ -ଅକ୍ଷତ । ଅକତ୍ ବା ଅରୁଆ ଚାଉଳ ହେଉଛି ଆଦିବାସୀ ସଂପ୍ରଦାୟମାନଙ୍କ ଲାଗି ଏକ ପୁଣ୍ୟ ପଦାର୍ଥ । ନ୍ୟାୟ, ନିଶାପରେ ବ୍ୟବହୃତ । ବିବାଦ ମେଣ୍ଟି ଗଲାପରେ ଦୁଇପକ୍ଷ ଏଇ ଅକ୍ଷତ ଦିଆନିଆ ହୋଇ କେବେ ବିବାଦ ଲାଗିବେନି ବୋଲି କହିଥାନ୍ତି । ପିଲାମାନଙ୍କର ନାଁ ଦିଆ ପରବ୍‌ରେ ତଥା ଦିସାରି ମାନଙ୍କର ବିଭିନ୍ନ ପ୍ରକାର ବିଗୁ କାର୍ଯ୍ୟରେ ଅକତ୍‌ର ବ୍ୟବହାର ରହିଆସିଛି । ଭାଷାରେ ବ୍ୟବହାର : (୧) ଗୁରୁମାଇନି ଡକ୍ରି ମନ୍ତର୍ ପଢ଼ିପଢ଼ି ପାନି ଆଣ୍ଡି ଟାନେ ଆକତ୍ ଥର୍‌କେ ଥର୍ ପାକାଇତେ ରଇଲା । ଯା'ର ନାମଦାରି ଆକତ୍ ଦେକ୍‌ଲେ ସେ ଆକତ୍ ସମାନ୍ ମିଶିଲେ, ସେ ନାମ ସଙ୍ଗାଇବାର ଆଇସି । (୨) ରକତ ହେଲେ ଅକତ୍ ନାହିଁ / ଅକତ୍ ହେଲେ ରକତ ନାହିଁ । ଅର୍ଥାତ୍ : ଗରିବ ଘରେ ସବୁଦିନ ଅଭାବ ଲାଗି ରହିଥାଏ । (ଲୋକ ପ୍ରବାଦ)

୫. ଅଙ୍କାର - *ଦେ.କ୍ରି.* : ନଖରେ ମାଟି ଖୋଳିବା, ମାଟି ଖୋଳିବାପାଇଁ ଆଦେଶ ଦେବା । ଆମ୍ପୁଡ଼ିବା, ରାମ୍ପୁଡ଼ିବା । ବ୍ୟବହାର (୧) ବିତର୍ ମାଟି ସବୁ ଚୁର୍‌ଚୁରା କରି ଅଁକାର । (ଭିତରର ସମସ୍ତ ମାଟି ଭଲଭାବେ ଖୋଳିପକା) (୨) ବାଲୁ ଅଲମା କାଇବାକେ ବାଡ଼ି ମୁଣ୍ଡା ମନ୍‌କେ ଅଁକାରି କୁଇଲାନି । ଅର୍ଥାତ୍ ଭାଲୁ ଉଇଖାଇବା ଲାଗି ହିଡ଼ ଖୋଳିଲାଣି ।

୬. ଅଗ୍‌ଲାଇବା - *ଦେ.କ୍ରି.* : ବଳି ପଡ଼ିବା / ବଳକା ହେବ / ଅବଶିଷ୍ଟ । ବ୍ୟବହାର : ବାଟା କରୁକରୁ ଏତକି ଅଗଲି ଗଲାବେ ! (ବାଣ୍ଟୁବାଣ୍ଟୁ ଏତିକି ବଳି ପଡ଼ିଲା ।) ଇଂ- Remainder, Reridue, to remain at last.

୭. ଅଗ୍ନି ଗାଙ୍ଗାମ୍ମା - *ଦେ.ବି.* : ଦେବୀ ବିଶେଷ । ଇଂ- A Goddess

କୋରାପୁଟ ଜିଲ୍ଲାର ନାରାୟଣ ପାଟଣା ବ୍ଲକ୍ ଅନ୍ତର୍ଗତ ନୀଳାବାଡ଼ି ଗ୍ରାମର ଅଧିଷ୍ଠାତ୍ରୀ ଦେବୀ । ପ୍ରତିବର୍ଷ ଚୈତ୍ର ମାସରେ ଦେବୀଙ୍କ ପୂଜା ମହାସମାରୋହରେ ପାଳନ କରାଯାଏ । ଦେବୀଙ୍କୁ ମାଗୁରମାଛ ଅର୍ପଣ କରି ଓ ପାରା ଉଡ଼ାଇ ଏ ଅଞ୍ଚଳର ଅଧିବାସୀମାନେ ନିଜ ମନସ୍କାମନା ପୂର୍ଣ୍ଣ କରିଥାନ୍ତି । ଦେବୀଙ୍କ ପୀଠରେ ଯାତ୍ରା ସମୟରେ ଅଗ୍ନିରେ ଚାଲିଲେ ମଧ୍ୟ କୌଣସି ପୀଡ଼ା ହୋଇନଥାଏ । ଓଡ଼ିଶାରେ ବିଭିନ୍ନ

ସ୍ଥାନରେ ପ୍ରଚଳିତ ଝାମୁଯାତ୍ରା ଭଳି ଏଠାରେ ମଧ୍ୟ ଜଳନ୍ତା ଅଙ୍ଗାର ଉପରେ ଭକ୍ତମାନେ ଚାଲିଥାନ୍ତି ।

୮. ଅଙ୍ଗା - *ଦେ.ବି. :* ଗଣ୍ଡି : ଗଣ୍ଡ ଦେବତା ବା ବୁଢ଼ା ଦେଓଙ୍କ ବସ୍ତ୍ର । ବିଭିନ୍ନ ପର୍ବପର୍ବାଣୀରେ ବିଶେଷତଃ ମଣ୍ଡେଇ ପରବରେ ଗଣ୍ଡ ଗୋଷ୍ଠୀ ବୁଢ଼ାଦେଓଙ୍କୁ ନବବସ୍ତ୍ର ଅର୍ପଣ କରିଥାନ୍ତି । ଏହି ବସ୍ତ୍ର ନାଲି, କଳାରଙ୍ଗର ହୋଇଥାଏ ଏବଂ ଏହି ବସ୍ତ୍ରରେ କଉଡ଼ି ଖଞ୍ଜା ଯାଇଥାଏ । ଏହି ଅଙ୍ଗା ଗଣ୍ଡ ସଂସ୍କୃତିର ଏକ ପ୍ରତୀକ ଭାବେ କେବଳ ଦେବବସ୍ତ୍ର ଭାବେ ବ୍ୟବହାର କରାଯାଇଥାଏ ।

୯. ଅଙ୍ଗୀ - *ଦେ.ବି. :* ନବରଙ୍ଗପୁର ଝରିଗାଁ ବ୍ଲକ୍‌ରେ ବୋହି ଯାଉଥିବା ଏକ ନଦୀର ନାମ । ଏହା ଚେପ୍‌ଟିଆମ୍ବ ପାଖ ପାହାଡ଼ରୁ ଝରି ଡମୁଣିଗୁଡ଼ା, ବାଇଗାଁ, ମାନିଗାଁ ଓ ଡାବୁଗାଁ ବାଟଦେଇ ଅଳ୍ପଦୂରରେ ଭାସ୍କଲ୍‌ନଦୀରେ ମିଶିଛି । ଏହା ଏକ ଛୋଟ ଗିରି ନଦୀ ।

୧୦. ଅଜା - *ଦେ.ବି. :* ଅଭ୍ୟାସ । ଇଂ- Addiction. ଓଡ଼ିଆ : ନିଶା । ଭାଷାରେ ବ୍ୟବହାର : ଅଜା ଅଇଲମଟା ଆର୍ ଛାଡ଼୍‌ନି କି ? ବିଶେଷ କରି ମଦ, ବିଡ଼ି, ସୁଟା, ଖଇନି ଇତ୍ୟାଦିରେ ଅଭ୍ୟସ୍ତ ହୋଇଥିବା ଲୋକଙ୍କ କ୍ଷେତ୍ରରେ ଏହା ପ୍ରୟୋଗ ହୋଇଥାଏ । ବିଶେଷ କରି ମଦର ଅଭ୍ୟାସ ଛାଡ଼ିବା ପାଇଁ ଦେବୀ ବୀରଖମ୍ବଙ୍କ ପାଖରେ 'ଅଜା ବିରୁ' କରାଯାଇଥାଏ । 'ଅଜାବିରୁ'ର ଅର୍ଥ ନିଶା ଅଭ୍ୟାସ ଛାଡ଼ିବା ପାଇଁ ହେଉଥିବା ପୂଜା ।

୧୧. ଅଡୁଆ, ଅର୍‌ନି - *ଦେ.ବି. :* ଗରମ ହୋଇଥିବା ଗାଈ ପଛରେ ଦୌଡୁଥିବା ଷଣ୍ଢ ବା ବଳଦର ଦଳ । ତାର ଅନ୍ୟ ଏକ ଦେଶିଆ ପ୍ରତିଶବ୍ଦ 'ଅର୍‌ନି' । କିନ୍ତୁ ଅର୍‌ନିର ଅର୍ଥ ଗୋଟିକିଆ ଷଣ୍ଢ, ଯିଏକି ଗରମ ଗାଈକୁ ଲାଗିଥାଏ । ଭାଷାରେ ବ୍ୟବହାର : ବଟାମନ୍ ଅଡୁଆ ଅର୍‌ନି ହେଲେ ବେ । (ଅର୍ଥାତ୍ ଦାମୁଡ଼ିଆମାନେ ଗରମ ଗାଈ ପଛରେ ଧାଇଁଲେଣି ।) ଅନ୍ୟ ଅର୍ଥରେ (ଅର୍‌ନି) ବ୍ୟବହାର : ସେ ଗାଈକେ ଅର୍‌ନି ଚରଲାଇନି ।

୧୨. ଅଡ୍‌ଗୁନା - *ଦେ.କ୍ରି. :* କାବଡ଼ ମାରିବା । ଗଛରୁ ଫଳ ପାରିବା ପାଇଁ ବା ଗୋରୁଗାଈଙ୍କୁ ଅଟକାଇବା ପାଇଁ ବ୍ୟବହାର ହେଉଥିବା ଲାଠି ବା ଡାଙ୍ଗ । ଦୌଡ଼ି

ପଳାଇବା ଲୋକକୁ ଅଡ଼୍‌ଗୁନା ମାରିଦେଲେ ପାଦରେ ବାଜୁବାଜୁ ଛନ୍ଦି ହୋଇ ସେ ପଡ଼ିଯାଏ । ବ୍ୟବହାର : ଅଡ଼୍‌ଗୁନା ମାରି ମୁଇ ଆମ୍ ଅଦ୍‌ରେଇଲି । (ଫାପଡ଼ ମାରି ମୁଁ ଆମ୍ବ ପାରିଲି ।)

୧୩. ଅଡ଼୍‌ରିଦେବା - *ଦେ.କ୍ରି.* : ଆଦେଶ ଦେବା, ଗର୍ଜନ କରି କହିବା, ଡରାଇ କହିବା । ଇং- To order threat eningly. ବ୍ୟବହାର : ଅଡ଼ରି ଦେଲା ହୋ ଲଦ୍ ଲଦି ଗାଲି (ସେ ଏମିତି ଗର୍ଜନ କରି ଆଦେଶ ଦେଲା ଯେ ମୁଁ ଭୟରେ ଲୁତୁପୁତୁ ହୋଇଗଲି ।)

୧୪. ଅଣ୍ଟାଚିପୁନା - *ଦେ.ବି.* : ଅଣ୍ଟାସୂତା । ରୂପା, ଦସ୍ତା ଓ ଆଲୁମିନିୟମ୍‌ରେ ତିଆରି ଅଣ୍ଟାରେ ପିନ୍ଧାଯାଉଥିବା ଅଳଙ୍କାର ବିଶେଷ । ବ୍ୟବହାର : ତୋର୍ ଏ ଅଣ୍ଟା ଚିପୁନାକାଇ ଠାନୁ ଘେନିଲୁସ୍ ? (ଅର୍ଥାତ୍, ତୋର ଏହି ଅଣ୍ଟାସୂତା କେଉଁଠାରୁ କିଣିଲୁ ?)

୧୫. ଅଣ୍ଡା - *ଦେ.ବି.* : ମାଣ୍ଡିଆ ତମ୍ପା, ହାଲୁଆ ।

ମାଣ୍ଡିଆ ଗଣ୍ଡରୁ ପ୍ରସ୍ତୁତ ଏକପ୍ରକାର ଖାଦ୍ୟ । ଗୁଣ୍ଡ ପରିମାଣ ଅନୁସାରେ କିଛି ପାଣି ପ୍ରଥମେ ଫୁଟାଇ ନିଆଯାଏ । ସେଥିରେ ଲୁଣ, ଚିନି ବା ଗୁଡ଼ ପକାଇ ତାପରେ ମାଣ୍ଡିଆ ଗୁଣ୍ଡ ପକାଇ ସଂଗେସଂଗେ ଘାଣ୍ଟିବାକୁ ପଡ଼େ । ପ୍ରାୟ ୧୦ମିନିଟ୍ ସିଝିଲା ପରେ ସୁଜି ତିଆରି ହାଲୁଆ ଭଳି ଏହା ପ୍ରସ୍ତୁତ ହୋଇଥାଏ । ଆଦିବାସୀ ପରିବାରରେ ସାଧାରଣତଃ ଏହା ବିନା ଚିନି ଓ ଗୁଡ଼ରେ ପ୍ରସ୍ତୁତ ହୋଇଥାଏ । ନିତିଦିନ ପ୍ରସ୍ତୁତ କରାଯାଉଥିବା ମାଣ୍ଡିଆପେଜ୍ ଛାଡ଼ି ଏହି ଜଳଖିଆ ଅତିଥି ଅଭ୍ୟାଗତମାନେ ଆସିଲେ ପ୍ରସ୍ତୁତ କରାଯାଇଥାଏ ।

୧୬. ଅତରା / ଅନ୍ତରା : - *ଦେ.* - ଭତ୍ରୀ : କାଠଗଣ୍ଡିରେ ଲାଗିଥିବା ନିଆଁ । କୋରାପୁଟ ଜିଲ୍ଲାର ପ୍ରାୟ ସମସ୍ତ ଆଦିବାସୀ ଗୋଷ୍ଠୀ ଶୀତ ଦାଉରୁ ରକ୍ଷା ପାଇବା ପାଇଁ ଘରପିଣ୍ଡାରେ କାଠ ଗଣ୍ଡିରେ ନିଆଁ ଲଗାଇ ତା ଚାରିପଟେ ରାତିରେ ଶୋଇଥାନ୍ତି । ବିବାହ କାଳରେ ଗଣ୍ଡି ଗୋଷ୍ଠୀର ଲୋକେ ଗାଁ ଦାଣ୍ଡରେ ଅତରା / ଅନ୍ତରା ଜାଳି ତା ଚାରିପଟେ ବୁଲି ଗୀତ ଗାଇଥାନ୍ତି । ଏହି ଗୀତକୁ 'ସେଲା ରେଲା' କୁହାଯାଏ ।

୧୭. ଅଦ୍ - *ଦେ.କ୍ରି.* : ହାତ ପ୍ରସାରଣ କରିବା । 'ଆତ୍ ଅଦ୍' ଅର୍ଥାତ୍ ହାତ ପତା । ହାତପାତି କିଛି ମାଗିବା ଅର୍ଥରେ । 'ଅଦିବା' ଅର୍ଥ ଧରି ରଖିବା । ବ୍ୟବହାର :

ଅଚ୍‌ନା ପାନିକେ ଗରିଆ ଅଦିରଅ । ଅର୍ଥାତ୍ - ଚାଳରୁ ପଡୁଥିବା ପାଣିକୁ ଗରିଆ ବସେଇ ଧରିରଖ । ଚିକ୍ରାର କରି ମାଗିବା : ଦେଦେ ବୋଲି ପାଟି କରିବା । ବ୍ୟବହାର : ଆତ୍ ଅଦ୍ ନାଇଁବେ । ଚିମ୍‌ରା ଅଇରଅ । (ଅର୍ଥାତ୍ ହାତପାତି ମାଗ ନାହିଁ, ଚୁପ୍ ହୋଇ ରହ ।)

୧୮. ଅଦରବା - *ଦେ.କ୍ରି.* : (୧) ତଳେ ପଡ଼ିଯିବା । (୨) ପହ୍ଲା ଫୁଲିବା

ବ୍ୟବହାର : (୧) ଗଚ୍ ତାନୁ ଅଦରିକରି ଗୋଡ୍ ଆତ୍ ଭାଂଗିଗାଲା । (୨) ଅନା ଅହରାଇ ଆଚେ । ଗାଈ ପକାଇସିବେ । ଅନାର ଅର୍ଥ ଗାଈର ପହ୍ଲା ।

୧୯. ଅଦୁର୍ - *ଦେ.ବି.* : ବିବାହ ପ୍ରଥା : ଇଂ- Types of marriage. ଗାଦବା ସଂପ୍ରଦାୟ ମଧ୍ୟରେ ପ୍ରଚଳିତ ବିଭିନ୍ନ ପ୍ରକାର ବିବାହ ପ୍ରଥାକୁ ଅଦୁର୍ କୁହଯାଏ । ଯେଉଁ ଅଞ୍ଚଳରେ ଗଦବା ମନ୍ଦା ରହିଥାନ୍ତି ସେହି ଅଞ୍ଚଳରେ ହିଁ ଏହା ପ୍ରଚଳିତ ।

୨୦. ଅନ୍‌କା - *ଦେ.ବି.* : ବଡ଼ ଆକାରର ଲାଉ ଡଙ୍କି : ଏହା ଏକ ପ୍ରକାର ଲାଉରୁ ପ୍ରସ୍ତୁତ । ଏହା ସାଧାରଣତଃ ଲମ୍ବ ଜାତିର ଲାଉ, ଯହାର ମୁଣ୍ଡ ସରୁ ଓ ଅଗ ପଟଟି ଟୁମ୍‌କା ବା ଗୋଟାଳିଆ ହୋଇ ରହିଥାଏ । ଏହା ପାକଳ ହେଲାପରେ ଗୋଟାଳିଆ ପଟଟିକୁ ଗୋଟିଏ ପାଖରୁ ଗୋଲକରି କାଟି ନିଆଯାଏ । ଏହା ଠିକ୍ ଗୋଟିଏ ଢାଙ୍କୁଣୀ ଆକାରର ହୋଇଥାଏ । ତାପରେ ଲାଉର ସମସ୍ତ ଅନ୍ତି ବାହାର କରାଯାଏ । ଅନ୍ତି ଶୂନ୍ୟ ହୋଇଥିବା ଲାଉ ଖୋଳପାକୁ ଶୁଖେଇ ଦିଆଯାଏ । ଖରାରେ ଭଲ ଭାବେ ଶୁଖିଯିବା ପରେ ଏହାକୁ ନିଆଁରେ ସେକି ଟାଣ କରାଯାଏ । ଏହିଭଳି ଉପାୟରେ ତିଆରି ସରିବା ପରେ ଏହି ଅନ୍‌କାକୁ ପାନୀୟ ଉପଯୋଗୀ ପଦାର୍ଥ ପରିବେଷଣ କରିବାପାଇଁ ବ୍ୟବହାର କରାଯାଏ । ଏହା ପୁଣି ତିନିପ୍ରକାରର । ଯଥା:
୧. ତୁମ୍‌ଣୀ : ଛୋଟ ଆକାରର ଲାଉରୁ ପ୍ରସ୍ତୁତ ଡଙ୍କିକୁ 'ତୁମ୍‌ଣି' ବୋଲି କୁହାଯାଏ । ମଦ ବା ସଲପ ବା ତରକାରୀର ଝୋଳ ପରଶିବାରେ ଏହା କାମ ଦିଏ ।

୨. ବଡ଼ ଲାଉରୁ ନିର୍ମିତ ଡଙ୍କିକୁ 'ଅନ୍‌କା' କୁହାଯାଏ । ଏହା ସାଧାରଣତଃ ମହୁଲି ମଦ ପ୍ରସ୍ତୁତ ବେଳେ ବଡ଼ ହାଣ୍ଡିରୁ ବାହାରକରି ଛୋଟ ହାଣ୍ଡିରେ ରଖିବାବେଳେ ବ୍ୟବହାରରେ ଆସିଥାଏ ।

୩. ତୁମା ବାଂ ତୁମ୍ବା : ଏକ ବଡ଼ ଶୁଖିଲା ଲାଉକୁ ସରୁ ମୁଣ୍ଡି ପଟରୁ ଚେନାଏ କାଟି ଦିଆଯାଏ । ଏହାକୁ ମୁଖ୍ୟତଃ ପିଇବା ପାଣି, ପେଜ୍, ପେଣ୍ଡମ୍, ସଲପ ଓ ମଦ ରଖିବା ଲାଗି ବ୍ୟବହାର କରାଯାଏ ।

ଏହିସବୁ ପଦାର୍ଥ ସାଧାରଣତଃ ସ୍ତ୍ରୀ ସଂପତ୍ତି । କେବଳ 'ତୁମ୍ବା' ହେଉଛି ପୁରୁଷ ସଂପତ୍ତି । ସାଧାରଣତଃ ଗୋଟିଏ ଗୋଟିଏ 'ଅନ୍‌କା' ବା 'ତୁମୁଣି' ଗୋଟିଏ ଜୀବନକାଳ ବା ଗୋଟିଏ ପୁରୁଷ (ପିଢ଼ି) ରହିଥାଏ । ସ୍ତ୍ରୀ ବା ପୁରୁଷ ମରିଗଲେ ତା'ର 'ଅନ୍‌କା', 'ତୁମୁଣି' ବା 'ତୁମ୍ବା' ତାର ଶବ ସହ ବେଜରନା ପର୍ଯ୍ୟନ୍ତ ଯାଏ । ସେଠାରେ ସେହି ବ୍ୟକ୍ତିର ଅନ୍ୟାନ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ସହ ତାହାକୁ ମଧ ପକାଇ ଦିଆଯାଏ ।

ଅନ୍‌କା କରା : - *ଦେ.କ୍ରି.ବି.* : ଅନ୍‌କା ତିଆରି ସମୟରେ ଅନୁଷ୍ଠିତ ପୂଜାପାଠ । ଝାଙ୍କର ଦେବୀଙ୍କ ଆସ୍ଥାନରେ ଜାନୀ ବା ପୂଜାରୀ ପୂଜା ପାତି ଶୁଖିଲା ଲାଉରେ ଛିଦ୍ର କରି ନିଜେ ଗୋଟିଏ ଅନ୍‌କା ପ୍ରସ୍ତୁତ କରିଥାଏ । ତାପରେ ଯାଇ ଅନ୍ୟ ଗ୍ରାମବାସୀମାନେ ଆପଣାର ଅନ୍‌କା ପ୍ରସ୍ତୁତ କରିଥାନ୍ତି ।

୨୧. ଆପିବା - *ଦେ.କ୍ରି.* : ଦୋଷ ମାନିବା । ମଧ୍ୟସ୍ଥ ହେବା । ମାନିଆ ହେବା । ଋଣ ଶୁଝିବା ଇତ୍ୟାଦି ଅର୍ଥରେ । ମନେକର ଜଣେ ଅନ୍ୟଜଣଙ୍କ ଠାରୁ ପଇସା ଧାର କରିଛି । ଠିକ୍ ସମୟରେ ଶୁଝି ପାରିନି । ତେଣୁ ସେ ଆଉ ଗୋଟେ ତାରିଖ ଚାହୁଁଛି । ସେ କ୍ଷେତ୍ରରେ ଆଉ ଜଣେ ମଧ୍ୟସ୍ଥି ବା ଜାମିନ୍ ହେବାକୁ 'ଆପିବା' ବୋଲି କୁହାଯାଏ । ବ୍ୟବହାର :

(୧) ତୁଇ ଦେଇ ନ ପାରିଲେ ମିସା ମୁଇଁ ଦେବି ହୋ । ମୁଁ ତ ଆପି ହୋଇଅଛି । ଦେଲେ ଆଦ୍ ହୋଇସି ।

(୨) ତୁଇତ ଦୋଷ୍ କରିସ୍ । ମୁଁଇ କେନ୍ତା ଅପି ଅଇନି ।

୨୨. ଅବ୍‌କା - *ଦେ.ବିଂ.* : ତିନ୍ ଫୁଲିଆ, ତୁଚ୍ଛାରେ । ଯେକୌଣସି ଲୋକ ତିନ୍ ଫୁଲିଆ କାମ କରାଇଲେ କିମ୍ୱା ଝିଅକୁ ନେଲେ ତାହା ଅବ୍‌କା । ମାଗଣା ବା ବିନା ମୂଲ୍ୟରେ । ଇଂ- Free of cost. ବ୍ୟବହାର : (୧) ସେ ଟିକିକେ ଅବ୍‌କା ଦେଲେ କାଇଟା ମିସା ନିଅତ୍ ନାଇଁ । କିମ୍ୱା- ସେ ଟିକିକେ ଅବ୍‌କା ନେଲେ ହୋ କାଇଟା ମିଶା ଦିଅତ୍ ନାଇଁ । (୨) ଅବ୍‌କା ଅବ୍‌କା କାମ କର୍‌ବାକେ କିଏ ଯାଇସି ?

୨୩. ଅମର୍ ବେଲ୍ - *ଦେ.ବି.* : ନିର୍ମୂଳି ଲତା : ଇଂ- root less creeper. ଔଷଧୀୟ ଲତା । ଆଦିବାସୀମାନେ ଏହି ଅମର୍‌ବେଲ୍‌କୁ ବାଟି ଝାଡ଼ାବାନ୍ତି ହେଉଥିବା

ରୋଗୀକୁ ଖାଇବାକୁ ଦେଇ ଭଲ କରିଥାନ୍ତି । ଜଂଗଲରେ ଏହା ସାଧାରଣତଃ ବଡ଼ବଡ଼ ଗଛରେ ଲଟେଇଥାଏ । ଏହାର ମୂଳ ଅଦୃଶ୍ୟ ଥାଏ । ଏଥିରେ କୌଣସି ପତ୍ର ନଥାଏ ।

୨୪. **ଅମରଲି** - *ଦେ.ବି.* : ନବରଙ୍ଗପୁର ଜିଲ୍ଲାର ଏକ ଗିରିନଦୀର ନାମ । ଏହା ଝରିଗାଁ ବ୍ଲକ୍‌ର ଟେମରା ଉପତ୍ୟକାରୁ ବାହାରି ଶେଷରେ ଭାସ୍କଲ୍ ନଦୀରେ ମିଳିତ ହୋଇଛି । ଭାସ୍କଲ୍‌ର ଅନ୍ୟାନ୍ୟ ଉପନଦୀ ଭଳି ଏହା କୂଳରେ ଆଦିବାସୀ ଓ ଦଳିତ ସଂପ୍ରଦାୟର ଲୋକେ ପ୍ରଚୁର ପନିପରିବା ଚାଷ କରି ଜିଲ୍ଲାର ଅର୍ଥନୀତିକୁ ପୁଷ୍କଳ କରିଥାନ୍ତି ।

୨୫. **ଅମୁରୁକ୍ ବା ଅମଡ୍** - *ଦେ.ବିଂ.* : ଅବୋଲକରା, ଅମାନିଆ । ଇଂ- disobedient

ବ୍ୟବହାର : (୧) ଏ ପିଲା ବଡ଼ ଅମଡ୍ ହୋ । କାର କାଥା ମିସା ନା ଦରେ । ଓଡ଼ିଆ : ଏ ପିଲା ବଡ଼ ଅମାନିଆ । କାହାରି କଥା ମାନେନାହିଁ ।

(୨) ଏନ୍ତା ଅମଡ୍ ହେଲେ କେବେ ମାଡ୍ କାଇକରି ମରିସୁ ।

୨୬. **ଅରଖ୍** - *ଦେ.ବି.* : ଅରଖ ଗଛ । ବିଭିନ୍ନ ପ୍ରକାର ଘା'ରେ ଔଷଧ ଭାବେ ବ୍ୟବହୃତ ହୋଇଥାଏ । ସର୍ପ ଦଂଶନ ସ୍ଥାନରେ ଏହାର କ୍ଷୀରକୁ ଲଗାଇ ବିଷହରଣ କରାଯାଏ । ଗୁରୁତ୍ୱପୂର୍ଣ୍ଣ ଔଷଧୀୟ ବୃକ୍ଷ ବିଶେଷ ।

୨୭. **ଅର୍‌ଗଡ଼ ବା ଅରଗଡ଼ା** - *ଦେ.ବି.* : ଶାଳରେ ବା ଗୁହାଳରେ ଗୋରୁଗାଈଙ୍କୁ ଆକଟ କରି ରଖାଯିବା ପାଇଁ କାଠର ଅର୍ଗଳି ପ୍ରସ୍ତୁତ କରାଯାଇଥାଏ । ଏହାକୁ 'ଅର୍‌ଗଡ଼ା', ବା 'ଅର୍‌ଗଡ଼ କହନ୍ତି । ଏହି ଅର୍‌ଗଡ଼ା ଶବ୍ଦ ସହ ସଂଯୁକ୍ତ ହୋଇ କାଠର୍‌ଗଡ଼ା ଇତ୍ୟାଦି କେତୋଟି ଗାଁ ମଧ୍ୟ ସୃଷ୍ଟି ହୋଇଛି । ଗୋରୁ ରହିବା ଖୋଲା ଜାଗାକୁ ମଧ୍ୟ ଅର୍‌ଗଡ଼ା କୁହାଯାଇଥାଏ ।

୨୮. **ଅରତ୍ / ଅରତ୍‌କାରିଆ** - *ଦେ.ବି.* : ଅର୍ଥ, ମାନେ, ଇଂ- Meaning, Signficance ଯଥା : (୧) ଏ କାତାର୍ ଅରତ୍ ପଚେ କଇବି ।

(୨) କାଇଟା ପାଇଁ ସେ ଲାଗ୍‌ଲା, ତା'ର ଅରତ୍ ବୁଜି ନ ପାର୍‌ଲି । ଅରତକାରିଆ - ଯେ ବେଶୀ କାହାଣୀ କହେ, କଥକ, ଇଂ - Storyteller କୁହାଳିଆ ! ଯେ ଭଲ ଅର୍ଥ ବୁଝାଏ ।

ଅରତ୍ କାରିଆ / ଅରତ୍ କାରିଆନୀ : (୧) କାହାଣୀ କହିବା ଲୋକ । ଯେଉଁ ଲୋକମାନେ ଗାଁ ମାନଙ୍କରେ କାହାଣୀ କହି ଲୋକଙ୍କୁ ମୁଗ୍ଧ କରିପାରନ୍ତି, ତାଙ୍କୁ 'ଅରତ୍ କାରିୟା' ବୋଲି କହି ସମ୍ମାନ ଦିଆଯାଏ । ପ୍ରତି ଗାଁରେ ଏଭଳି ଲୋକ ଆଗରୁ ରହିଥିଲେ । ଆଜିକାଲି ଏମାନଙ୍କ ସଂଖ୍ୟା ବହୁତ କମ୍ । ଏମାନେ କାହାଣୀ କହିବା ବେଳେ କଥା ଓ ଗୀତ ବ୍ୟବହାର କରନ୍ତି । (୨) ଓକିଲ ବା ଆଡ୍‌ଭୋକେଟ୍ । ଏମାନଙ୍କୁ ମଧ୍ୟ ଅରତ୍‌କାରିଆ ବୋଲି କୁହାଯାଏ । (୩) ସ୍ତ୍ରୀମାନଙ୍କ ମଧ୍ୟରେ କିଛି 'ଆରତ୍ କାରିଆନି' ଅଛନ୍ତି । ମଜୁରି ପାଇଁ ଗଲାବେଳେ କାମ କରୁକରୁ ଏମାନେ ଗପ ଓ ଗୀତ ବୋଲିଥାନ୍ତି ଏବଂ ଏଥିପାଇଁ ମାଲିକଠାରୁ ମାଣେ ଧାନ ଅଧିକ ମଜୁରୀ ପାଇଥାନ୍ତି । ଆଜିକାଲି ଆରତ୍ କାରିଆନିମାନେ ପ୍ରାୟ ନାହାନ୍ତି । ଏମାନେ ଗୀତ୍ କୁଡ଼ିଆନି ନୁହନ୍ତି । କିନ୍ତୁ, ଏମାନଙ୍କ ମଧ୍ୟରେ ଏପରି କିଛି ପ୍ରତିଭା ସଂପନ୍ନା ଅରତ୍‌କାରିଆନୀ ଅଛନ୍ତି, ଯେଉଁମାନେ ରାତିରାତି ଧରି କାଥାନୀ ଶୁଣାନ୍ତି । ସେହିଭଳି ଜଣେ ଅରତ୍‌କାରିଆନୀ ହେଉଅଛନ୍ତି ମାଝୀଗୁଡ଼ା ଗ୍ରାମର ଚନ୍ଦ୍ରୀ ବାଲିପୂଜାରୀ । ପ୍ରତି ଅଞ୍ଚଳରେ ଏଭଳି ଅରତ୍‌କାରିଆନୀ ଜଣେ ଅଧେ ରହିଛନ୍ତି । ଉପଯୁକ୍ତ ପ୍ରୋତ୍ସାହନ ମିଳିଲେ ସେମାନେ ଆଗକୁ ଆସିପାରନ୍ତେ ।

୨୯. ଅରନ୍ - *ଦେ.ବି.* : ଅନ୍ନ - ଭାତ - ଚାଉଳକୁ ରାନ୍ଧି ପ୍ରସ୍ତୁତ କରାଯାଉଥିବା ଖାଦ୍ୟ ପଦାର୍ଥ ବିଶେଷ । ଇଂ- Rice, cooked rice.

ଆଦିବାସୀ ସମାଜରେ ମୁଖ୍ୟ ଖାଦ୍ୟ ମାଣ୍ଡିଆ ପେଜ, ଶାଗ, କନ୍ଦା, ମକାଗୁଣ୍ଡରୁ ପ୍ରସ୍ତୁତ ଖାଦ୍ୟ ପଦାର୍ଥ ହୋଇଥିଲେ ମଧ୍ୟ ଅନ୍ନ ସହିତ ଏମାନଙ୍କର ସାଂସ୍କୃତିକ ସଂପର୍କ ଅତି ନିବିଡ଼ । ଏମାନେ ପ୍ରଥମେ ଧାନ ନାମକ ଶସ୍ୟର ଉତ୍ପାଦନ ପାଇଁ ବଣ୍ଡା ପାହାଡ଼ରେ ଧାନଚାଷ ଆରମ୍ଭ କରିଥିଲେ । ଏମାନେ ଧାନ ଉତ୍ପାଦନ କରୁଥିଲେ ମଧ୍ୟ ଖୁବ୍ କମ୍ ଅନ୍ନ ବା ଭାତ ଖାଇବାର ସୁଯୋଗ ପାଇଥାନ୍ତି । 'ଅନ୍ନ'କୁ ଏମାନେ ଦିବ୍ୟ ଭୋଗ ଭାବେ ଗ୍ରହଣ କରନ୍ତି । ପର୍ବପର୍ବାଣୀ ଦିନରେ, ପିତୃପୁରୁଷଙ୍କ ଆତ୍ମା ବା ଡୁମ୍ବା ପୂଜା ଅବସରରେ, ବିବାହ, ମୃତାହ, ଆଦି କର୍ମ ସମୟରେ ଏମାନେ ଅନ୍ନ ରାନ୍ଧି ଏହାକୁ ମଦ୍ୟ ମାଂସ ସହ ଭୋଗ ଦେଇଥାନ୍ତି । ଏହି ଭୋଗକୁ ନିଜ ନିଜର ବନ୍ଧୁ କୁଟୁମ୍ବ ଆତ୍ମୀୟସ୍ୱଜନମାନଙ୍କ ମଧ୍ୟରେ ବାଣ୍ଟି ଖାଇଥାନ୍ତି । ଆମେ ଅଣ-ଆଦିବାସୀ ଲୋକମାନେ ଯଜ୍ଞ ବା ହୋମ ନିଆଁରେ ପୁରୋହିତମାନଙ୍କ ଦ୍ୱାରା ପ୍ରସ୍ତୁତ ଯଜ୍ଞାନ୍ନକୁ ଯେପରି 'ଚରୁ'

ବୋଲି କହିଥାଉ, ଆଦିବାସୀ ସମାଜରେ ସେମିତି ପୂଜା ନିମନ୍ତେ ଜାନି, ଦିସାରୀ, ଶିରା ଆଦିଙ୍କ ଦ୍ୱାରା ପ୍ରସ୍ତୁତ ଅନ୍ନକୁ ମଧ ଚରୁ ଭାବେ ଅଭିହିତ କରାଯାଇଥାଏ । ପୁନଶ୍ଚ ଆଦିବାସୀ ସମାଜରେ ନବବିବାହିତା କନ୍ୟା ବିବାହ ପରେପରେ ନଦୀ ବା ଝରଣାକୁ ଯାଇ ଗାଧୋଇ ସାରି ନୂଆଲୁଗା ପିନ୍ଧି ସେହି ନଦୀ ବା ଝରଣାରୁ ଏକ ନୂଆ ହାଣ୍ଡିରେ ପାଣି ଆଣି ସେଥିରେ ଯେଉଁ ଅନ୍ନ ରାନ୍ଧେ, ସେହି ଅନ୍ନକୁ ଏମାନେ 'ଚରୁ' କହିଥାନ୍ତି । ଏହି ରନ୍ଧା ଯାଇଥିବା 'ଚରୁ' ବା ଅନ୍ନକୁ ସେହି କନ୍ୟା ସ୍ୱହସ୍ତରେ ପ୍ରଥମେ ପୂର୍ବପୁରୁଷ ବା ଡୁମା ଦେବତା, ଇଷାଣ ଦେବତା, ଗ୍ରାମଦେବତା, ବନଦେବତା, ଧର୍ମ ଦେବତା, ଧରଣୀ ମାତା ପ୍ରଭୃତି ସମସ୍ତ ଦେବୀ ଦେବତାମାନଙ୍କ ପାଇଁ ବିଧି ପୂର୍ବକ ଅର୍ପଣ କଲାପରେ, ଅବଶିଷ୍ଟ 'ଚରୁ' ତକ ନିଜ ପରିବା ତଥା ବଂଶର ଲୋକଙ୍କୁ ନିଜ ହାତରେ ବାଢ଼ି ଖାଇବାକୁ ଦେଇସାରିବା ପରେ ସେ ସେହି ପରିବାର ତଥା ବଂଶର ପୁତ୍ରବଧୂ ଭାବେ ସ୍ୱୀକୃତିଲାଭ କରିଥାଏ । ଏହି ଚାଉଳ ପ୍ରସ୍ତୁତ ଅନ୍ନକୁ ଆଦିବାସୀ ମଣିଷ ଦିବ୍ୟ ଭୋଗ ଭାବରେ ଗ୍ରହଣ କରିଥାଏ ।

ଗୀତରେ ବ୍ୟବହାର : 'ସୁନ୍‌ଲି ସୁନ୍‌ଲି ତୁମ ବାରତା,
ଅର୍‌ନ ପାନି ମକେ ଲାଗିଲା ପିତା
ପବନ ଆହାର କଲି

ବନ୍ଧୁର ତୁଣ୍ଡରୁ ବଚନ ଶୁନି ଦୂରକୁ ଚିଡ଼ି ପଡ଼ିଲି ।' (ଅର୍ଥାତ୍ ତୁମ କଥା ଶୁଣି ଅନ୍ନ ପାଣି ପିତା ଲାଗିଲା । ପବନ ଆହାର କରି ମୁଁ ଦୂରକୁ ଦୂରକୁ ଦୂରେଇ ଗଲି ।)

୩୦. ଅର୍‌ଡ଼ା - *ଦେ.ବି. :* ହରିଡ଼ା ! ଏହି ବୃକ୍ଷ ଜଂଗଲରେ ପ୍ରଭୂତ ପରିମାଣରେ ଦେଖାଯାଏ ।

ଏହା ତ୍ରିଫଳାର ଅନ୍ୟତମ ଫଳ ବିଶେଷ । ଏହାର ସ୍ୱତନ୍ତ୍ର ଔଷଧୀୟ ଗୁଣ ବ୍ୟତୀତ ଅନ୍ୟ ଦୁଇଫଳ ଯଥା : ଆଉଁଳା ବା ଅଁଳା ଏବଂ ବିଳ ବା ବାହାଡ଼ା ସହ ମିଶିଲେ, ଏହାର ଔଷଧୀୟ ଗୁଣ ସର୍ବାଧିକ ହୋଇଥାଏ । ହରିଡ଼ାର ସ୍ୱାଦ କଷା ହୋଇଥିବା ସ୍ଥଳେ ଅଁଳା ପ୍ରଥମେ କଷା ଓ ପରେ ମଧୁର ସ୍ୱାଦଯୁକ୍ତ ହୋଇଥାଏ । ବାହାଡ଼ାର ସ୍ୱାଦ କଷା ଓ ତିକ୍ତ । ଆଦିବାସୀମାନଙ୍କ ଔଷଧୀୟ ଜ୍ଞାନ ଅନୁସାରେ ଏହି ତିନିଫଳର ଚୂର୍ଣ୍ଣ ଥଣ୍ଡା, କାଶ, କଫ, ପେଟରୋଗ ଓ ଆମ୍‌ସା ବା ଆମାଶୟ ଝାଡ଼ାର ଉପଶମ ପାଇଁ ବ୍ୟବହାର କରାଯାଏ ।

୩୧. **ଅସକ୍ଲା** - *ଦେ.ବି.* : (୧) ଲଙ୍ଗଳା, ଡୁମ୍ଡା, ବଣ୍ଡା ।

(୨) *ଦେ.କ୍ରି.* : ଦୂରେଇଯିବା ବା ଘୁଞ୍ଚିଯିବା ।

ଜଣେ ଲୋକ ମଦ ପିଇକରି ହେଉ ବା ବାଧକରେ ପଡ଼ିକରି ହେଉ, ଯଦି ଅସତର୍କରେ ତା'ର ଲୁଗାପଟା ଖୋଲି ହୋଇଯାଇଚି, ତେବେ ମାଇଜୀମାନେ କହିବେ 'ସେ ଅସକ୍ଲା ଅଇଲା ଆଚେ । ପଚିଆ ପାଟୀ ଡାବି ଦିଆସ ।' (ଅର୍ଥାତ୍ ତା ଲୁଗାପଟା ଖୋଲି ଯାଇଛି । ତାକୁ ଲୁଗା ଘୋଡ଼ାଇ ଦିଅ ।) କିନ୍ତୁ ପାଣି ଗାଧୋଇଲା ବେଳେ ଉଲଗ୍ନ ହୋଇ ଗାଧୋଇବାକୁ 'ବଣ୍ଡା' କୁହାଯାଏ । ଏପରିକି କେବଳ ଲୁଙ୍ଗିପିନ୍ଧି ବା ଲେଙ୍ଗୁଟି ପିନ୍ଧି ଆଉ କିଛି ନ ପିନ୍ଧିଲେ 'ଡୁମ୍ଡା' ବୋଲି କୁହାଯାଏ । ଯଥା : 'ଡୁମ୍ଡା ହୋଇକରି ପାନି ଧୋଇଲାନି । କାଇଟା ମିସା ପାଗ୍ତେ ନାଇଁ ।' ଘୁଞ୍ଚିଯିବା ଅର୍ଥରେ ବ୍ୟବହାର : ଏ ଗାଁଏ ବଡ଼ ଜାଟି । ଆମି ଗୁଟେ ବିନ୍ ଜାଗାଏ ଅସ୍କିଲୁ । (ଅର୍ଥାତ୍, ଏହି ଗାଁରେ ସବୁବେଳେ ପାଟିତୁଣ୍ଡ ଲାଗିରହିଛି । ଆମେ ଅନ୍ୟ ଜାଗାକୁ ଉଠିଯିବା ।)

୩୨. **ଅସା ପରବ୍ / ମକା ପରବ୍ / ନୂଆଖିଆ** - *ଦେ.ବି.* : ଭାଦ୍ରବ ମାସରେ ମକା ପରବ୍ ହୁଏ । ଏହାକୁ ନୂଆଖିଆ ମଧ୍ଯ କୁହାଯାଏ । ଏହି ପରବରେ ଦେଶିଆମାନେ ଧାନପତ୍ର, ସାରୁପତ୍ର, କୁମୁଡ଼ାପତ୍ର, ସାରୁ, ନୂଆ ତେନ୍ତୁଳି ଏସବୁକୁ ସିଝେଇକରି ଭାତ ସଂଗେ ଚରୁରାନ୍ଧି ଖାଇଥାନ୍ତି । ତାପରେ ଯାଇ ମକା, ନୂଆଧାନ, ନୂଆ ତେନ୍ତୁଳି, କୁମୁଡ଼ା ଓ ସାରୁ ଇତ୍ୟାଦି ଖିଆଯାଇ ପାରିବ । ପ୍ରତି ଘରେ ବିଧିବିଧାନ ମୁତାବକ ଆନିଦାଦିମାନଙ୍କ ନାମଧରି କରି ବୀରୁ ହୁଏ । କୁକୁଡ଼ା ଥିବା ଲୋକ କୁକୁଡ଼ା ପୂଜନ୍ତି ନ ହେଲେ ନଡ଼ିଆ ଭାଂଗନ୍ତି । ଏଥିରେ ଦିଶାରୀ ଲୋଡ଼ା ପଡ଼େ ନାହିଁ । ଏଥିରେ ଘରର ମୁରବୀ ପୂଜା କରନ୍ତି । ଚରୁ ରାନ୍ଧିବା ଦାୟିତ୍ୱ କିନ୍ତୁ ସ୍ତ୍ରୀ ଲୋକମାନଙ୍କର । ଚରୁ ରାନ୍ଧିବା ପରେ ସମସ୍ତ ଘରଲୋକ ଏକତ୍ର ବସି ଖାଆନ୍ତି । ଘରର ଝିଅ ବିଭା ହୋଇଯାଇଥିଲେ ତଥା କୌଣସି ବାହାର ଲୋକ କୁଣିଆ ଆସିଥିଲେ ସେ ଚରୁ ଖାଇବେ ନାହିଁ । ଭାଦ୍ରବ ମାସ ଶୁକ୍ଳ ଦଶମୀରେ ଏହି ପର୍ବ ପାଳିତ ହୁଏ । କିନ୍ତୁ ଦିଶାରୀମାନଙ୍କ ମତ ଅନୁସାରେ ବିଭିନ୍ନ ଗାଁରେ ବିଭିନ୍ନ ତିଥିରେ ଏହା ପଡ଼ିଥାଏ । ଅସା ପରବ୍ ମଧ୍ଯ ନୂଆଖିଆ ପରବ୍ ଭାବରେ ପରିଚିତ । ନୂଆଶସ୍ୟ ଖାଇବା ପୂର୍ବରୁ ଭୂମିଆ ସଂପ୍ରଦାୟର ଲୋକ ଅସାପର୍ବ ପାଳନ କରନ୍ତି । ଦିଶାରୀ ଯୋଗ ଠିକ୍ କରି ଗାଁ ପୂଜାରୀକୁ ପର୍ବପାଳନ କରିବାକୁ ନିର୍ଦ୍ଦେଶ ଦିଏ । ପୂଜାରୀ ମାହେନ୍ଦ୍ର ଲଗ୍ନ ଦେଖି

ଧାନକେଣ୍ଡା ପାଚିଲା କ୍ଷେତରୁ ଆଣେ । ପର୍ବଦନ ପ୍ରତ୍ୟୁଷରୁ ଗାଧୋଇ ଗ୍ରାମ ପୂଜାରୀ ନୂଆଧାନର ଚାଉଳ ଓ ପୁରୁଣା ଚାଉଳ ମିଶାଇ ଅନ୍ନ ପ୍ରସ୍ତୁତ କରନ୍ତି । ଉକ୍ତ ଅନ୍ନକୁ ଗ୍ରାମ ଠାକୁରାଣୀଙ୍କୁ ଭୋଗ କରାଯାଏ । ଏହାଛଡ଼ା ଅସା ପର୍ବଦିନ ପ୍ରତ୍ୟେକ ଘରେ ତେନ୍ତୁଳି, କୁମୁଡ଼ା, ସାରୁ ଓ କଞ୍ଚାମାଛ ମିଶାଇ ଚରୁ ରନ୍ଧାଯାଏ । ଏହା ଘରର ଇଷ୍ଟ ଦେବତାଙ୍କୁ ଅର୍ପଣ କରାଯିବା ପରେ ଅନ୍ୟମାନେ ଖାଆନ୍ତି । ଏଥିପାଇଁ କୁରେଇ ଗଛର ପତ୍ର ବ୍ୟବହାର କରାଯାଏ । ପର୍ବ ପାଳନର ପରଦିନ ଏହି ଭାତକୁ ମଞ୍ଚା ଉପରେ ରଖାଯାଏ, ଯେପରିକି ତାହା ପକ୍ଷୀମାନଙ୍କର ଆହାର ହୋଇପାରିବ ।

୩୩. **ଅୟାଲ୍** - *ଦେ.ବି. :* (ଗଦ୍‌ବା) - ଉଲେନ୍ - ଅଗୁର୍ - ଏଦି : ଚଉଠି ରାତି ବିବାହପରେ ବରକନ୍ୟାଙ୍କ ପ୍ରଥମ ମିଳନ । ସହବାସ ବା ମଧୁଶଯ୍ୟା ରାତ୍ରୀ ।

୩୪. **ଅଲା** - *ଦେ.ବି. :* ପତ୍ର, ପତ୍ର ନିର୍ମିତ ବସ୍ତ୍ର । ଅଲାର ଗଦବା ରମଣୀଗଣ ପୂର୍ବକାଳରେ କପଡ଼ା ବଦଳରେ ପତ୍ର ନିର୍ମିତ ଅଙ୍ଗବସ୍ତ୍ର ପରିଧାନ କରୁଥିଲେ । ଏହାକୁ 'କେରଙ୍ଗ' ଲୁଗା କହୁଥିଲେ । ବର୍ତ୍ତମାନ ଏହା ବଦଳରେ କେରଙ୍ଗ (ଆଙ୍କୁଲାଗଛ)ର ତନ୍ତୁରେ ଲୁଗା ବୁଣୁଛନ୍ତି । ଏହି ଲୁଗା ସ୍ୱତନ୍ତ୍ର ଦିବସ ବା କର୍ମ (ବିବାହ ସମୟ)ରେ ବ୍ୟବହାର କରିବା ପ୍ରଥା ରହିଛି । ଏହାକୁ ସେମାନେ ଅଣ୍ଟାରେ ପିନ୍ଧନ୍ତି ।

୩୫. **ଅଲ୍‌ଗା** - *ଦେ.ବି. :* ସହଜ, ସରଳ, ସୁରୁଖୁରୁରେ ନିର୍ବିଘ୍ନ, ବିନାବାଧାରେ, ଭଙ୍ଗୁର ପଦାର୍ଥ, ଯେଉଁ ଜିନିଷ ସହଜରେ ଭାଂଗିଯାଏ, ହାଲ୍‌କା, ଭିନ୍ନ ।ଇଂ. Easy, Comfortable, unhindered, without any difficulty, fragile । ଯଥା : (୧) ତୁଇ ଏ ଅଲଗ୍‌ା କାମ୍‌କେ କରି ନ ପାର୍‌ଲୁସ୍‌କି ? (୨) ଆଜିର୍ କାମ୍ ବଡ଼େ ଅଲ୍‌ଗାରେ ଅଇଗଲା, କାଇପରା ଲାଗେ ନାଇଁ । (୩) ମନେ ପାଞ୍ଚି ରଇଲି, ଏଜାଟି ବୁଟେକ୍ ଅଇସି ବଲିସିନା ଅଲଗା ଚିଡ଼ିଗାଲା । (୪) ଏଟା ବଡ଼େ ଆଲ୍‌ଗି ଆଚେ, ଛିଇଲେ ଭାଂଗି ଯାଇସି ।

୩୬. **ଅଲାର** - *ଦେ.ବି. :* ମୂଳ ଗାଦବା ଜାତିର ଏକ ଉପବର୍ଗ । ଏହି ଶବ୍ଦଟି ଗୁଟବ୍ ଗାଦବାଙ୍କ ମୁଣ୍ଡାରି ଭାଷାରୁ ଆନୀତ ।

ΟΟΟ



୧. ଆକୁର୍ ପରବତ୍ - *ଦେ.ବି. :* (କୋୟା) : ମାଲକାନଗିରି ଦକ୍ଷିଣକୁ ଥିବା ଏକ ପର୍ବତର ନାମ ବିଶେଷ ।

କୋୟା ମାନଙ୍କର ଜଣେ ଦେବତା ଆକୁରଙ୍କ ନାମ ଅନୁସାରେ ଏହି ପର୍ବତର ନାମ ଆକୁର୍ । ଏହି ପର୍ବତରୁ ବାହାରିଥିବା ନଦୀର ନାମ ମଧ୍ୟ ଆକୁର ଏବଂ ପର୍ବତ ତଳେ ବସିଥିବା ଗାଁର ନାମ ମଧ୍ୟ ସେହି ଆକୁର୍ । ସେହି ଆକୁର୍ ଗାଁରେ ପୂର୍ବକାଳରେ ଗାଜା ଭୀମ ବୋଲି ଜଣେ ଆଦିବାସୀ ରାଜା ଥିଲେ । ସେତେବେଳେ ଆକୁର୍ ଗାଁ ଥିଲା ପର୍ବତ ଉପରେ । ଏବେ ମଧ୍ୟ ସେଠାରେ ରଜାର ମେଢ଼ ଓ ମଶାଣୀ ରହିଛି । ଗାଜାଭୀମଙ୍କର ଗୋଟିଏ ଅମର ମରିଚ ଗଛ ଥିଲା । ଏହି ସାତଆଠ ବର୍ଷ ହେବ ତାହା ମରିଛି ବୋଲି ଲୋକେ କହନ୍ତି । ଏହି ପର୍ବତରେ ବହୁ ସଂଖ୍ୟାରେ ଗୟଳ, ସମ୍ବର, ଚିତଲ ଓ ବାରିହା ରହୁଥିଲେ । ଗାଜା ଭୀମ ଥିଲେ, ସେ ସବୁର ମାଲିକ । ତାର ପଶ୍ଚିମ ଦିଗରେ ଛତିଶଗଡ଼ରେ ଥିବା ଏକ ପର୍ବତରେ ଥିଲା ନାନ୍ଦା ରାଜାଙ୍କର ଗଡ଼ । ଥରେ ନାନ୍ଦା ରାଜା ତାଙ୍କର ଦୁଇଭାଇ ଭୀମରାଜ ଓ ଦୁର୍ଗରାଜଙ୍କ ସହ ବେଣ୍ଟକୁ ଗଲେ ଯେ ଗୋଟିଏ ହେଲେ ଗୟଳ ମିଳିଲେନି । ସେଠୁ ସେ ଆକୁର୍ ଦେବତାଙ୍କୁ ପୂଜା କଲେ । ଦେବତା କହିଲେ 'ସବୁ ଗୟଳ ତ ଗାଜା ଭୀମ ପାଖରେ ଆକୁର ପର୍ବତରେ ରହିଲେ । ମୁଁ କେମିତି ଦେବି ।' ସେମାନେ ବହୁତ ପ୍ରାର୍ଥନା କଲେ । ଗୋଟିଏ ମାତ୍ର ଗୟଳ ମାଗିଲେ । ଆକୁର୍ କହିଲେ, 'ଠିକ୍ ଅଛି ଗୋଟିଏ ଦେବି । ଦୁଇଟା ଚାହିଁବନି, ଚାହିଁଲେ ବିପଦ ପଡ଼ିବ ।' ତାପରେ ଆକୁର୍ ଦେବତା ଗାଜା ଭୀମକୁ ଏକଥା ଜଣାଇଲେ । ଗାଜାଭୀମ ତାଙ୍କ କଥା ରଖି ନାନ୍ଦା ରାଜାଙ୍କ ପର୍ବତକୁ ଗୋଟିଏ ଗୟଳ ପଠାଇଦେଲେ । ତାକୁ ବେଣ୍ଟ କରି ନାନ୍ଦାରାଜା ପରବ ସାରିଲେ । ସେହି ଆକୁର୍ ଦେବାତଙ୍କ ସ୍ତ୍ରୀ ହେଉଛନ୍ତି ଗାଙ୍ଗନା ଦେଈ । ଲୋକେ ପର୍ବତ ଉପରକୁ ଯାଇ ଆକୁର ଓ ଗାଙ୍ଗନା ଦେଈଙ୍କ ପାଖରେ ଲିଆ ଭୋଗ ଦିଅନ୍ତି । ଥରେ ସେମାନେ ଲିଆ ଭୋଗ ଦେଇ ତଳକୁ ଫେରି ଦେଖିଲେ ପୂଜା ପାଇଁ ନେଇଥିବା କାସ୍ଲା ବା

ମୁତା (ଚାଳ) ଉପରେ ଛାଡ଼ି ଦେଇ ଆସିଛନ୍ତି । ତେଣୁ ସେମାନେ ପୁଣି ଉପରକୁ ଗଲେ । ସେତେବେଳେ ଦେବୀ ଓ ଦେବତାମାନେ ଏକାଠି ଗୁଣ୍ଡି ଲିଆ ବାଣ୍ଟି ଖାଉଥିଲେ । ଲୋକେ ଦେଖି ଦେବାରୁ ଦେବତାମାନେ ଖୁବ୍ ବିଗିଡ଼ି ଗଲେ । ଗାଙ୍ଗ୍ନା ଦେଇ ପଚାରିଲେ 'ପୂଜା ଦେଇ ସାରି କାହିଁକି ଫେରିଲ ?' ସେମାନେ କହିଲେ, 'କାସ୍ଲା ଛାଡ଼ି ଯାଇଥିଲୁ, ନେବାକୁ ଫେରିଲୁ ମହାପ୍ରୁ ।' ଗାଙ୍ଗନା ଦେଇ କହିଲେ 'ନେ'ତର କାସ୍ଲା' । ଏତିକି କହି ଗୋଇଠାମାରି କାସ୍ଲାଟିକୁ ପର୍ବତ ତଳକୁ ଗଡ଼ାଇଦେଲେ । ତଳେ ପଡ଼ିବା ପରେ ସେ କାସ୍ଲା ପାକ୍ନା ପାଲଟିଗଲା । ଏବେ ସେହି ପାକ୍ନା ପାଖରେ ହିଁ ଗାଙ୍ଗ୍ନା ଦେଇ ଓ ଆକୁର୍ ଦେବତାଙ୍କୁ ପୂଜା କରାଯାଏ । ପର୍ବତ ଉପରକୁ ଲୋକେ ଡରରେ ଯାଆନ୍ତି ନାହିଁ । ଏହା ଏବେ ମାଲକାନଗିରି ଜିଲ୍ଲାର ଉଡୁପା ପଞ୍ଚାୟତରେ ଅବସ୍ଥିତ ।

୨. **ଆଖଡ଼ାଘର** - *ଦେ.ବି. :* ନାଚ ଶିଖିବା ଗୃହ ।

ଅବିଭକ୍ତ କୋରାପୁଟର ଗ୍ରାମ ମାନଙ୍କରେ ଜଣେ ଗୁରୁଙ୍କ ନିର୍ଦ୍ଦେଶରେ ଦେଶିଆ ନାଟ ଶିଖାଯାଏ । ଦେଶିଆ ନାଟ ଶିକ୍ଷାଲାଗି ଗୋଟିଏ ବିରାଟ ଘର ନିର୍ମାଣ କରାଯାଇଥାଏ ଏବଂ ସେହି ଘରଟିକୁ 'ଆଖଡ଼ା ଘର' କୁହାଯାଏ ।

୩. **ଆଗତ୍ରୁ** - *ଦେ. :* ଅବ୍ୟୟ, କ୍ରି.ବିଂ - ଆଗରେ, ଆଗେ ଆଗେ ।

ଇଂ. In Advance, at the head of ।

ଯଥା : ମୁଇଁ ଆଗତ୍ରୁ ଆକା ଯାଇ ରଇଲି ।

୪. **ଆଙ୍ଗଧୁଆ** - *ଦେ.* ଭତ୍ରୀ କ୍ରି : ଗାଧୋଇବା ।

ଯଥା : ଆଙ୍ଗଧୁଆ ଯାଆବେ (ଗାଧୋଇ ଯାଅ)

୫. **ଆଟାଲ୍** - *ଦେ.ବି. :* ନଦୀକୂଳିଆ ଅଉଲ୍ ଜମି ।

ନଦୀ ଭିତରେ ଥିବା ଟାପୁ ଜମି ।

ଇଂ : Fertile land near river bank, River isle, Riverineland

(୧) ନଦୀକୂଳ ଜମି ଯେଉଁଠି ଭଲ ଚାଷ ହୁଏ ।

(୨) ଚାରିପାଖେ ନଦୀଥାଇ ମୁଖ୍ୟ ସ୍ଥଳଭାଗରୁ ପ୍ରାୟ ବିଚ୍ଛିନ୍ନ ଟାପୁ ବା ଦ୍ୱୀପ । ଏହି ଅନୁସାରେ ବିଭିନ୍ନ ଗାଁର ନାମ ଓ ଜମିର ନାମ ମଧ୍ୟ ନାମିତ ହୋଇଥାଏ । ଯେପରି ବାତ୍ରିଆଟାଲ୍, ଜାମ୍‌ନା ଆଟାଲ୍, ଆଟାଲ୍‌ଗୁଡ଼ା ଇତ୍ୟାଦି ଭାଷାରେ ବ୍ୟବହାର : ଆଟାଲ୍ ଭୂଇଁଟାନେ ସବୁରକମର ଜିନ୍‌ଷୁ ପାଚ୍‌ସି । ବଇଲେ ସବୁବେଲେ ପାନି ରଇସି ।

୬. ଆଡ୍ ମୁଆଲି - ଦେ.ବି. : କୌଣସି ଲୋକ ମୃତ୍ୟୁବରଣ କରିବା ଦିନ ଗଦବା ସଂପ୍ରଦାୟର ରୀତିନିୟମ ଅନୁଯାୟୀ ଉକ୍ତ ବ୍ୟକ୍ତିର ମାମୁଁଙ୍କୁ ମୃତବ୍ୟକ୍ତି ବ୍ୟବହାର କରୁଥିବା ଛତା, ଚାଦର, ଓ୍ୱାଚ, ଥାଳି, ଢାଳ ଆଦି ଦିଆଯାଏ । ଏହାକୁ ଆଡ୍‌ମୁଆଲି କୁହାଯାଏ ।

୭ ଆଡ୍‌ସାଲିମ୍ - ଦେ.ବି. : ବଜ୍ରକାପ୍ତା

ଇଂ - pangoline

ଏହା ଏକ ଏଣ୍ଡୁଅ ଜାତୀୟ ଜୀବ । ଏହାର ଦେହଯାକ ମୋଟାମୋଟା କାତିଥାଏ । ଏହା ଉଈ ତଥା ବିଭିନ୍ନ ଜାତୀୟ ପିମ୍ପୁଡ଼ି ଓ ଜନ୍ଦା ଖାଇଥାଏ । ଏମାନେ କ୍ରମଶଃ ଏକ ବିରଳ ପ୍ରାଣୀରେ ପରିଣତ ହୋଇଛନ୍ତି । ପାହାଡ଼ ପର୍ବତର ଗୁମ୍ଫାରେ ତଥା ପଥର ସନ୍ଧିରେ ଭୂଇଁରେ ଗାତ କରି ଏମାନେ ରହିଥାନ୍ତି । ଏହାର କାତି ସକାଶେ ଶିକାର କରୁଥିବା ପଶୁମାନେ ଏହାକୁ ଖାଇପାରି ନଥାନ୍ତି । କିନ୍ତୁ ମଣିଷ କବଳରୁ ଏହା ସହଜରେ ବର୍ତ୍ତିପାରେ ନାହିଁ । ଏହାର ମାଂସ ସୁସ୍ୱାଦୁ ଓ ଏହାର କାତି ଔଷଧୀୟ ଗୁଣଯୁକ୍ତ । ପିଲାମାନଙ୍କର ବିଭିନ୍ନ ପ୍ରକାର ବେମାରୀରେ ବିଶେଷ କରି ଚମକ ବେମାରୀରେ ଏହାର କାତିକୁ ଘୋରି ପାଣି ପିଆଇ ଦିଆଯାଏ । ଏହି କାତିର ତାନ୍ତ୍ରିକ ଗୁଣ ଅଛି ବୋଲି ଆଦିବାସୀଙ୍କ ବିଶ୍ୱାସ । ସେହି କାତିରୁ ପ୍ରସ୍ତୁତ ମୁଦି ପିନ୍ଧିଥିଲେ କୌଣସି ଦିସାରୀର ଯନ୍ତ, ତନ୍ତ, ମନ୍ତ କାମ ଦିଏ ନାହିଁ । ଆହୁରି ମଧ୍ୟ ଏହାକୁ ଆଙ୍ଗୁଠିରେ ମୁଦିକରି ପିନ୍ଧିଲେ ଅର୍ଶରୋଗ ଓ ମଳକଣ୍ଟକ ହୁଏନି ବୋଲି ବିଶ୍ୱାସ ।

୮ ଆଡ଼ିକ୍ ବିଡ଼ିକି - ଦେ.କ୍ରି. : ବିଂ ଏପଟ ସେପଟ ହୋଇ ପଳାଇଯିବା ।

କନକନ ହୋଇ ତରତର ହୋଇ ପଳାଇବା କର୍ମକୁ ଆଡ଼ିକି ବିଡ଼ିକି (ଏପଟ ସେପଟ ହୋଇ) କୁହାଯାଏ ।

ଖାଡ଼ା (ଠେକୁଆ) ପାଲାଇଲା ଆଡ଼ିକି ବିଡ଼ିକି
କେବଡ଼ା ପଡ଼ିଲା ଜାଲେ

ଚନ୍ଦନ ଚାଞ୍ଜଡ଼ା (ଓସାରିଆ ଲମ୍ବା ପଥର) ଖାଡ଼ା ପଡ଼ିଗଲା ଡଙ୍ଗରି ତଲିଆ ନାଲେ ।

୯. ଆଡ୍ଡୁକାଟେ - *ଦେ.ବି.* : ପିତଳରେ ତିଆରି ମୁକୁଟ ସଦୃଶ ଅଳଙ୍କାର । କୋୟା ଯୁବତୀମାନେ ନୃତ୍ୟ ସମୟରେ ଏହା ମୁଣ୍ଡରେ ପିନ୍ଧିଥାନ୍ତି ।

୧୦. ଆଡ଼େ ଟିଡ଼େ - *ଦେ.* : ଭତ୍ରୀ କ୍ରି. ବିଂ - ଲୁଚିଛପି

ଭାଷାରେ ବ୍ୟବହାର : (୧) ଆଡ଼େଟିଡ଼େ ନା'ଗୁଆ, ଲଗେ ଆସା । (ଲୁଚିଛପି ରହ ନାହିଁ, ପାଖକୁ ଆସ)

(୨) ନବରଙ୍ଗପୁର ରଙ୍ଗପିଆଜ
ତେଲ ତୁଲ୍ ଦେଇଭାଜ୍
ଦେକ୍‌ବା ଲୋକ ଆଡ଼େଟିଡ଼େ ରେଲେ
କାଇବା ଲୋକକେ ଲାଜ୍ ।

ଅର୍ଥାତ୍ ମୁଁ ନବରଙ୍ଗପୁର ଯୁବତୀ ଝିଅ / ଯଉବନ ମୋର ରଙ୍ଗପିଆଜ । ପ୍ରେମ ତେଲେ ତାକୁ ଭାଜ / ଲୁଚିଛପି କେତେ ଲୋକ ଯେ ଦେଖନ୍ତି / ଖାଇବା ଲୋକକୁ (ଭୋଗ / ସମ୍ଭୋଗ କରିବା ଲୋକକୁ) ଲାଜ ।

୧୧. ଆଣ୍ଡିଦାରାନି - *ଦେ.- ବି.* - ଏକୋଇଶିଆ : କିନ୍ତୁ ପିଲାଜନ୍ମର ଏକୋଇଶ ଦିନପରେ ଅନୁଷ୍ଠିତ ନ ହୋଇ ନାଭି ଖସିବା ପରେ ଏହି ଅନୁଷ୍ଠାନ ହୋଇଥାଏ । ନାଭି ଖସିବା ପରେ ଅର୍ଥାତ୍ ପିଲା ଜନ୍ମର ସାତରୁ ଦଶଦିନ ମଧ୍ୟରେ ସଦ୍ୟଜନ୍ମିତ ପିଲାର ଏହି ଅନୁଷ୍ଠାନ ହୋଇଥାଏ । ଏହିଦିନ ପିଲାର ମାଆ ଗାଧୁଆ ପାଧୁଆ କରେ । ଘରର ଲୁଗାପଟା ଧୂଆଯାଏ ଏବଂ ପୁରା ଘରକୁ ସଫାସୁତୁରା କରାଯାଏ ଓ ଗୋବରରେ ଲିପାଯାଏ । ପୁରୁଣା ହାଣ୍ଡି ବଦଳେଇ ନୂଆ ହାଣ୍ଡି ମଧ ବ୍ୟବହାର କରାଯାଏ । ଏହିଦିନ ନାଁ ଦିଆ ପରବ ମଧ ଅନୁଷ୍ଠିତ ହୋଇଥାଏ । ଦିସାରୀ ଆସି ପୂଜାପାଠ କରି ପିଲାର

ନାମକରଣ କରିଥାଏ । ଆଦିବାସୀ ସଂପ୍ରଦାୟରେ ଏହି ଅନୁଷ୍ଠାନର ଅନ୍ୟ ଏକ ନାମ ହେଉଛି 'ନାଁ ଦିଆ ନି' ।

୧୨. ଆଣ୍ଡାନି - *ଦେ.ବି. :* ବ୍ୟଞ୍ଜନ ବିଶେଷ । ବିନା ତେଲରେ ଲୁଣ, ମରିଚ, ଦେଇ ଶାଗ ଓ ପନିପରିବାକୁ ପାଣି ଦେଇ ସିଝାଯାଏ । ସିଝିଯିବା ପରେ ଏବଂ ପାଣି ଶୁଖିଯିବା ପରେ ଏହାକୁ ଖିଆଯାଏ । ଏହା ଆଦିବାସୀ ସମାଜର ଏକ ସାର୍ବଜନୀନ ଓ ପ୍ରିୟ ଖାଦ୍ୟ । ଅନ୍ୟ ପକ୍ଷରେ ଏହି ତେଲ ବିହୀନ ରନ୍ଧନ କଳା ଆଦିବାସୀର ଚରମ ଦାରିଦ୍ର୍ୟକୁ ମଧ୍ୟ ସୂଚାଇ ଥାଏ ।

୧୩. ଆମ୍ବା ମାମା - *ଦେ.ବି. :* କନ୍ଧମାନଙ୍କର ଇଷ୍ଟ ଦେବତା । ନାରାୟଣ ପାଟଣା ଅଞ୍ଚଳର ଆମ୍ବା ପର୍ବତ ।

କୋରାପୁଟ ଜିଲ୍ଲାର ନାରାୟଣ ପାଟଣା ତଥା ଆଖପାଖ ଅଞ୍ଚଳର ସମସ୍ତ କନ୍ଧ, ତଥା ଅନ୍ୟାନ୍ୟ ଆଦିବାସୀମାନେ ଏହି 'ଆମ୍ବାମାମା'ଙ୍କ ଉପରେ ଗଭୀର ଆସ୍ଥା ସ୍ଥାପନ କରନ୍ତି । ସେମାନଙ୍କର ବିଶ୍ୱାସ 'ଆମ୍ବାମାମା' ରାଗିଲେ ବର୍ଷା ହୁଏ ନାହିଁ । ଫସଲରେ ପୋକ ଲାଗେ, ମହାମାରୀ ବ୍ୟାପେ ଓ ଲୋକମାନେ ପୋକମାଛି ପରି ମରନ୍ତି ।

ଲୋକ ଶ୍ରୁତିରୁ ଜଣାଯାଏ - ଜୟପୁର ରାଜ୍ୟର ଅନ୍ୟତମ ପ୍ରସିଦ୍ଧ ଧର୍ମପ୍ରାଣ ମହାରାଜା ଦ୍ୱିତୀୟ ବିଶ୍ୱମ୍ଭର ଦେବ ୧୬୧୩ରୁ ୧୯୫୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଦୀର୍ଘ ୩୯ ବର୍ଷକାଳ ଜୟପୁର ରାଜ୍ୟ ଶାସନ କରି ହାଇଦ୍ରାବାଦ ନିଜାମଙ୍କ ଦ୍ୱାରା ଝାଡ଼ଖଣ୍ଡର ବାଦସାହ ରୂପେ ଯେମିତି ଉପାଧିପ୍ରାପ୍ତ ହୋଇଥିଲେ, ସେମିତି ବୈଷ୍ଣବ ଧର୍ମ ଗ୍ରହଣ କରି ନିଜ ପ୍ରଥମ ପତ୍ନୀଙ୍କ ଅକାଳ ବିୟୋଗ ପରେ ନାରାୟଣ ପାଟଣା ଅଞ୍ଚଳର କନ୍ଧକନ୍ୟା ଚମ୍ପାବତୀଙ୍କୁ ବିବାହକରି ପ୍ରଜାମାନଙ୍କ ଉନ୍ନତି ପାଇଁ କୂପ ପୁଷ୍କରିଣୀ ଖୋଳାଇ, ଜଳସେଚନର ସୁବିଧା ତଥା ଗମନାଗମନର ସୁବ୍ୟବସ୍ଥା କରି ସମଗ୍ର ଆଦିବାସୀ ମୂଳକରେ ଦେବତା ପାଲଟି ଯାଇଥିଲେ । ଅନ୍ୟ ପକ୍ଷରେ ଜଣେ ମହାରାଜା ହୋଇ କନ୍ଧକନ୍ୟାକୁ ବିବାହ କରୁଥିବାରୁ ସମଗ୍ର କନ୍ଧ ସମାଜ ତାଙ୍କୁ 'ଆମ୍ବାମାମା' ବା ଆପଣାର ଲୋକ ଭାବରେ ଗ୍ରହଣ କରିନେଇଥିଲେ । ଦିନେ ଆକସ୍ମିକ ଭାବେ ନାରାୟଣପାଟଣାର ଏହି ପାର୍ବତ୍ୟ ଅଞ୍ଚଳରେ ବୁଲୁବୁଲୁ ସେ ଅଦୃଶ୍ୟ ହୋଇଯାଇଥିଲେ । ତାଙ୍କ ମୃତ୍ୟୁପରେ

ତାଙ୍କ ଆତ୍ମା ଏହି ପର୍ବତରେ ରହିଥିବା ବିଶ୍ୱାସ କରି ଏ ଅଞ୍ଚଳର କନ୍ଧ ଆଦିବାସୀମାନେ ଏହି ପର୍ବତକୁ 'ଆତ୍ମାମାମା' ବା ଆତ୍ମା ପର୍ବତ ନାମରେ ନାମିତ କରି ଆତ୍ମାମାମାଙ୍କ ପୀଠ ଭାବେ ଏହାକୁ ପୂଜା କରି ଆସୁଛନ୍ତି ଏବଂ ସମଗ୍ର କୋରାପୁଟ ଜିଲ୍ଲାରେ ଏହି ପର୍ବତଟି 'ଆତ୍ମାମାମା' ନାମରେ ଖ୍ୟାତି ଅର୍ଜନ କରିଛି ।

୧୪. **ଆଦାନ୍ / ଆନ୍ଦାନ୍** - *ଦେ.ବି. :* ଭାତପାନି ବା ମାଣ୍ଡିଆପାନି । ଚାଉଳ ବା ମାଣ୍ଡିଆ ସିଝାଇବା ପାଇଁ ବସାଯାଇଥିବା ପାଣି ।

ବ୍ୟବହାର : ପାନି ଆଁଦାନ୍ ଆଇଲା । ଚାଉଳ ପକାଇଦେସ୍ ।

୧୫. **ଆନ୍‌ମାନ୍** - (୧) *କ୍ରି. :* ଅନୁମାନ, କଳ୍ପନା କରିବା । (୨) କ୍ରି.ବି. : ଅନୁମାନ, କଳ୍ପନା

ଇଂ - To hunch, Imagination :

ଏହି ଶବ୍ଦର ବ୍ୟବହାର ଖୁବ୍ କମ୍ । କାରଣ ଆଦିବାସୀ ଜୀବନରେ ଅନୁମାନ ଓ କଳ୍ପନାର ସ୍ଥାନ ନଥାଏ । ଏବେ ଏବେ ରାଜନୀତିକ ଦୃଷ୍ଟିରୁ ସଚେତନ ହେବା ସଂଗେସଂଗେ ଆଦିବାସୀ ଭାଷାରେ 'ଆନ୍‌ମାନ୍' ଭଳି ଶବ୍ଦ ତା'ର ସ୍ଥାନ ଖୋଜି ପାଇଲାଣି ।

ଯଥା : (୧) ମୁଁ ଇଁ ସେଟା କରିବି ବୋଲି କରି ଆନ୍‌ମାନ୍ କରତି ରଇଲି ।

(୨) ଆଦିବାସୀର ମନେ ବିନ୍‌ବିନ୍ ଡର୍ ଆରି ଆନ୍‌ମାନ୍ ପୁରିଲା ଆଚେ ।

(୩) ଭିନ୍ନ ଅର୍ଥରେ - ସନ୍ଦେହ କରିବା to doubt । (ଦେ.କ୍ରି) ବ୍ୟବହାର : ସେ ଲୋକ୍‌କେ ବଡ଼େ ଆନ୍‌ମାନ୍ ।

୧୬. **ଆନିଦାଦି** - *ଦେ.ବି. :* ବଣ୍ଡାମାନଙ୍କର ତଥା ଅନ୍ୟ ସମସ୍ତ ଦକ୍ଷିଣାଞ୍ଚଳ ଆଦିବାସୀ ସଂପ୍ରଦାୟର ପୂର୍ବପୁରୁଷଙ୍କୁ ଆନିଦାଦି କୁହାଯାଏ । ଉଦାହରଣ : ଆନାଦାଦି ବେଲ୍‌ଥାନୁ ଆମି ବେଣ୍ଟପରବ ମାନିଆଇଲୁନି ।

ଆଦିବାସୀ ସଂସ୍କୃତିରେ ଆନିଦାଦି ମାନଙ୍କର ଏକ ପବିତ୍ର ସ୍ଥାନ ରହିଅଛି । ଆନିଦାଦିଙ୍କୁ ନ ପୂଜି ଆଦିବାସୀ କୌଣସି ପର୍ବପାଳେନାହିଁ । ବିସ୍ଥାପିତ ହେବାକୁ ଥିବା

ଆଦିବାସୀ ଆନିଦାଦିଙ୍କଠୁଁ ବିଚ୍ଛିନ୍ନ ହେବା ଭୟରେ ସବୁବେଳେ ବିସ୍ଥାପନକୁ ବିରୋଧ କ୍ରେ। କାରଣ, ଆନିଦାଦିମାନେ ପୁରୁଣା ଗାଁ ଛାଡ଼ି ନୂଆ ସ୍ଥାନକୁ ଯାଆନ୍ତି ନାହିଁ ବୋଲି ସେମାନଙ୍କର ବିଶ୍ୱାସ।

୧୭. ଆନ୍ଦୁ - ଦେ.ବି. : ବଳାକାଠ ବିଶେଷ । ଉଦ୍ଧତ ଗାଈ ବା ମଇଁଷିର ଆଗ ଗୋଡ଼ରେ ପିନ୍ଧା ଯାଉଥିବା କାଷ୍ଠ ନିର୍ମିତ ଖଡୁ ସଦୃଶ ବଳା। ଆନ୍ଦୁ ପିନ୍ଧା ଯାଇଥିବା ଉଦଣ୍ଡ ଗାଈ, ମହିଷିମାନେ ଜବତ ହୋଇ ଗୋଠରେ ରହିଥାନ୍ତି। ଗୋଠରୁ ଖସି ଏଣେତେଣେ ଯାଇ ପାରନ୍ତି ନାହିଁ।

୧୮. ଆବୁଲ / ଆବୁର୍ - ଦେ.ବି. : ଲାଜ, ସମ୍ମାନ। ଗାଳିବେଳେ ମୁଖ୍ୟତଃ ବ୍ୟବହାର କରାଯାଏ।

ବ୍ୟବହାର : ମର୍ ବାରମାସର ବାରଦନା କାଆରେ ବେଦୁଆ। ମର ଆପେଡ଼ା ବାଟେ ଚିଙ୍ଗିଡ଼ି ଯା। ତୋର ଆବୁର୍ ବେଟବି।'

ଅର୍ଥାତ୍ 'ମୋର ବାରମାସର ବାରଦନା ରତୁସ୍ରାବ ଖାରେ ବେଧୁଆ, ମୋର ଦୁଇ ଗୋଡ଼ ସନ୍ଧିବାଟେ ଗଳିଯା। ଆଜି ତୋର ଇଜ୍ଜତ୍ ବାହାର କରିଦେବି।

୧୯. ଆମ୍ - ଦେ.ବି. : ଇଂ - Mango.

ବସନ୍ତରତୁ, ଆମ୍ବ ବଉଳ, କଞ୍ଚା ଆମ୍ବ ବା 'ଆମ୍‌ସି' ସହିତ ଆଦିବାସୀ ମଣିଷର ସଂପର୍କ କାହିଁ କେଉଁ ଆଦିମତମ କାଳରୁ। ଆମ୍ବଗଛରେ ବଉଳ ବସିଲେ ଆଦିବାସୀ ମଣିଷର ମନ ମହକି ଉଠେ। ଆଦିବାସୀ ମଣିଷ ଏଇ ଆମ୍ ବଉଲ୍ ରତୁରେ ପରବ୍ ପାଳେ। କଞ୍ଚା ଆମ୍ବକୁ ଖାଇବା ପୂର୍ବରୁ ସେ ପାଳନ କରେ ଆମ୍‌ନୂଆ ଖାଇ ପରବ। ଏଇ ଅବସରରେ ପ୍ରଥମେ କଞ୍ଚା ଆମ୍ବକୁ ଆଣି ଅନ୍ୟାନ୍ୟ ଖାଦ୍ୟ ପଦାର୍ଥ ସହ ଏହା ପିତୃପୁରୁଷମାନଙ୍କ ଆତ୍ମା ବା ଡୁମ୍ବା ଦେବତାମାନଙ୍କ ଉଦ୍ଦେଶ୍ୟରେ ପୂଜା କରାଯାଏ। ଘରର ଈଶାଣ ଦେବତା, ଗ୍ରାମଦେବତା, ବନଦେବତା ସମେତ ସମସ୍ତ ଦେବାଦେବୀଙ୍କୁ ମଧ, ମାସଂ ସହିତ ଏହି ଆମ୍ବର ଭୋଗ ଅର୍ପଣ କଲାପରେ ସେ ଆମ୍ବ ଖାଇଥାଏ। କଞ୍ଚା ଆମ୍ବକୁ ବଣ ଜଂଗଲରୁ ସଂଗ୍ରହ କରିଆଣି ଏମାନେ ଚୋପା ଛଡ଼ାଇ ଫାଳ କରି ଶୁଖାଇ ରଖି, ଏହି ଶୁଖିଲା ଆମ୍ବକୁ ବର୍ଷସାରା ବିଭିନ୍ନ ପନିପରିବାରେ ପକାଇ ଆମ୍‌ଟା ବା ଆମଟ୍ ଆମ୍ବିଳ ପ୍ରସ୍ତୁତ କରିଥାନ୍ତି। ପାଚିଲା ଆମ୍ବ ଓ କଞ୍ଚା ଆମ୍ବକୁ

ଏମାନେ ବଣରୁ ସଂଗ୍ରହ କରି ଆଣି ହାଟ ବଜାରରେ ବିକ୍ରିକରି ଅର୍ଥ ରୋଜଗାର କରିଥାନ୍ତି । ପାଚିଲା ଆମ୍ବ ରସରୁ ଆମ୍ବ ସଢ଼ା ତିଆରି କରି ଏମାନେ ବିକ୍ରୟ କରିଥାନ୍ତି । ଆମ୍ବ ଟାକୁଆକୁ ସଂଗ୍ରହ କରି ଏହାର କୋଇଲିକୁ ଗୁଣ୍ଡ କରି ଏଥିରେ ଆମ୍ବଟାକୁଆ ଯାଉ ପ୍ରସ୍ତୁତ କରି ଖାଦ୍ୟାଭାବ ସମୟରେ ଖାଇଥାନ୍ତି । ଏହି ଆମ୍ବଟାକୁ ଯାଉ ଖାଇବା ପୂର୍ବରୁ ଏମାନେ 'ଟାକ୍କୁ-ବିରୁ' ନାମକ ପର୍ବ ପାଳନ କରନ୍ତି । ଆମ୍ବଟାକୁର କୋଇଲିକୁ ଚୁନା କରି ସେହି ଚୁନାକୁ ପୁଡ଼ିଆ କରି ଝରଣା ପାଣିରେ ରାତିଯାକ ଧୋଇ ସକାଳେ ତାହାକୁ ଶୁଖାଇ ସେଥିରୁ ଯେଉଁ ଯାଉ ପ୍ରସ୍ତୁତ ହୁଏ, ତାହା ପ୍ରଥମେ ପିତୃପୁରୁଷ ବା ଡୁମ୍ବା ଦେବତାଙ୍କୁ ଓ ପରେ ଅନ୍ୟ ସମସ୍ତ ଦେବୀ ଦେବତାଙ୍କୁ ଅର୍ପଣ କରାଯାଇଥାଏ । ତାପରେ ଏମାନେ ଏହାକୁ ଖାଦ୍ୟ ରୂପେ ଗ୍ରହଣ କରିଥାନ୍ତି ।

୨୦. **ଆମ୍ବଟ୍ / ଆମଟ୍** - *ଦେ.ବି.:* ଖଟା ତରକାରୀ, ବାସୀ ତରକାରୀ ।

ଚାଉଳଗୁଣ୍ଡକରି, ଚାଉଳ ବତୁରାଇ, ବାଟି ବା ଗୁଣ୍ଡକରି ମାଟି ହାଣ୍ଡିରେ ତାହା ଫୁଟିଲା ପରେ ସେଥିରେ କିଛି ଖଟା ପଦାର୍ଥ ପକାଇ ତାହାକୁ ଘଣ୍ଟାଯାଏ ଏବଂ ତରକାରୀକୁ ସ୍ୱାଦିଷ୍ଟ କରିବାପାଇଁ ଲୁଣ, କଞ୍ଚାଲଙ୍କା ବଟା ବିଭିନ୍ନ ପ୍ରକାର ଚଣା (ବୁଟ, ମଟର) ଶିମ୍ବମଞ୍ଜି ପକାଇ ତେନ୍ତୁଳି ପାଣି ସହ ରନ୍ଧାଯାଏ । ଏହି ଆମଟ୍ (ଶାଗ ବା ତରକାରୀ) ପ୍ରାୟ ସବୁ ଆଦିବାସୀ ସଂପ୍ରଦାୟ ପ୍ରସ୍ତୁତ କରି ଖାଇଥାନ୍ତି । ଆମଟ୍ ସଂପର୍କରେ ପ୍ରଚଳିତ ଏକ ସୁନ୍ଦର ପ୍ରବାଦ ରହିଛି ।

ଯଥା (୧) "ଆମ୍ବଟ୍ ଲାନ୍ଦା ଗଣ୍ଡ୍‌କେ ନିକ ତେତେର ଜୁଟି ପାଟକେ ନିକ ।

ଗଣ୍ଡ୍ ବୁଦି ଲାଡ଼ିରାକା, ଜିତ୍‌ଲ ଦିଲେବିଲେ ନାଇଚି ଆକା ।' (ହାଲ୍‌ବୀ) ଅର୍ଥାତ୍ ଆମ୍ବିଲା ଲାନ୍ଦା ଗଣ୍ଡକୁ ମଜା, ତେନ୍ତୁଳି ଝାଟି ପିଠିକୁ ମଜା ବା ଲୋଡ଼ା । ଗଣ୍ଡର ବୁଦ୍ଧି ଘର ଫାଙ୍କାରଖି ଡଙ୍ଗରରେ ବା ଛାମୁଣ୍ଡିଆରେ ଶୋଇବା । ସେମାନଙ୍କୁ ଯେତେ ଦେଲେ ମଧ ଦେଇଛନ୍ତି ବୋଲି କହିବେ ନାହିଁ ।

୨୧. **ଆମାକୁଣ୍ଡ** - *ଦେ.ବି. :* ମୂଳ ତେଲୁଗୁ ଶବ୍ଦରୁ ଉତ୍ପନ୍ନ : ମାତାକୁଣ୍ଡ ।

ଏହା ମାଲକାନଗିରି ଜିଲ୍ଲାର ବଣ୍ଡାଘାଟି ଅଞ୍ଚଳରେ ଅବସ୍ଥିତ ଏକ ପବିତ୍ର ଜଳାଶୟ । ଏହି ପାହାଡ଼ଟିର ଉପର ମୁଣ୍ଡରୁ ପ୍ରବାହିତ ଝରଣାର ପାଣି ଏହି କୁଣ୍ଡ ସଦୃଶ ଜଳାଶୟରେ ପତିତ ହେଉଥିବାରୁ ଏହା ସର୍ବଦା ସ୍ୱଚ୍ଛ ରହିଥାଏ । କିମ୍ବଦନ୍ତୀ

କହେ ଯେ, ବନବାସ କାଳରେ ରାମ, ଲକ୍ଷ୍ମଣ, ସୀତା ଏହି ପାର୍ବତ୍ୟ ଅଞ୍ଚଳରେ ରହୁଥିବାବେଳେ ମାତା ସୀତା ଏହି କୁଣ୍ଡର ଜଳକୁ ପାନୀୟ ଜଳ ରୂପେ ବ୍ୟବହାର କରୁଥିଲେ ଏବଂ ଏହି କୁଣ୍ଡରେ ଥିବା ମାଛମାନଙ୍କୁ ଖାଦ୍ୟଦେଇ ଆଦରରେ ପାଳିଥିଲେ । ଏପରିକି ସେ ପିତୃଶ୍ରାଦ୍ଧ ସମୟର ପିଣ୍ଡ ଚାଉଳତକ ମଧ୍ୟ ଏହି ମାଛମାନଙ୍କୁ ଖାଇବାକୁ ଦେଇଥିଲେ । ସେହିକାଳରୁ ଏଯାବତ୍ ଏହି କୁଣ୍ଡରେ ଅନେକ ପୁରୁଣା ମାଛ ରହିଛନ୍ତି । ଏମାନଙ୍କୁ କେହି ଧରନ୍ତି ନାହିଁ । ଆଦିବାସୀ ଲୋକେ ବିଶ୍ୱାସ କରନ୍ତି ଯେ ଏହା ମାଆ ସୀତାଙ୍କ ଦ୍ୱାରା ପାଳିତ ମାଛ ହୋଇଥିବାରୁ ଏହି ମାଛମାନଙ୍କୁ ଧରି ଖାଇବା ଉଚିତ୍ ନୁହେଁ । ଥରେ ଜଣେ ଆଦିବାସୀ (ଲୋକମାନଙ୍କ କଥା ମତେ) ଏହି କୁଣ୍ଡରୁ ମାଛଟିଏ ଧରି ଖାଇବାରୁ ତା'ର ମୃତ୍ୟୁ ହୋଇଥିଲା । ସେହିଦିନଠାରୁ ଏ କୁଣ୍ଡରୁ କେହି ମାଛଧରି ଖାଆନ୍ତି ନାହିଁ ଓ ଏହାକୁ ମାଆ ସୀତାଙ୍କ କୁଣ୍ଡ ବା ଆମା କୁଣ୍ଡର ମାନ୍ୟତା ଦେଇ ପୂଜା କରିଥାନ୍ତି ।

୨୨. **ଆମୁସ୍ ପରବ** - *ଦେ.ବି.* : (୧) ଭତ୍ରା, ଭୂମିଆ, ଗଦବା, ଗଣ୍ଡ ଓ ଅନ୍ୟାନ୍ୟ ମାନଙ୍କର ଅମାବାସ୍ୟାପର୍ବ । (୨) ବଉଲାନିଯାତ୍ରା ।

(୧) ଆଷାଢ଼ ମାସରେ ଗୋଣ୍ଡମାନେ ତଥା ଅନ୍ୟାନ୍ୟ ଆଦିବାସୀ ସଂପ୍ରଦାୟ ଏହି ଆମୁସ୍ ପରବ୍ ପାଳନ କରିଥାନ୍ତି । ଏହା ଏକ କୃଷିଭିତ୍ତିକ ଯାତ୍ରା । ଆଷାଢ଼ ଅମାବାସ୍ୟା ତିଥିରେ ରୟତମାନେ ଧାନ ଜମିରେ ଧାନଗଛକୁ ପୋକ ଦାଉରୁ ରକ୍ଷା କରିବାପାଇଁ ବସୁମାତାଙ୍କୁ ପ୍ରାର୍ଥନା କରି ଧୂପବାସ ଦିଅନ୍ତି ଏବଂ ଜମିରେ କେନ୍ଦୁଡାଳ, ବଣ ଭାଲିଆ ଡାଳ, ତଥା ଦେଓ ବାଡ଼ନି ଡାଳ ପୋତି ପୂଜା କରନ୍ତି । କେନ୍ଦୁ, ଭାଲିଆ ଓ ଦେଓ ବାଡ଼ନି ଡାଳର ପତ୍ର ପାଣିରେ ପଡ଼ି ପଚିଯାଇ ପାଣିରେ ମିଶିଯାଏ ଏବଂ ଏହି ପାଣି ଧାନ ପୋକ ମରିବାରେ ସାହାଯ୍ୟ କରିଥାଏ । କେନ୍ଦୁ ବଣ ଭାଲିଆ ଓ ଦେଓବାଡ଼ନି (ଫୁଲ ଝାଞ୍ଜୁଣି)ର ଔଷଧୀୟ ଗୁଣ ରହିଅଛି ।

(୨) ଭାଦ୍ରବ ମାସରେ ମଧ୍ୟ ଗାଈ ଗୋରୁଙ୍କ ମଂଗଳ କାମନା କରି ବହୁ ଆଦିବାସୀ ଗ୍ରାମରେ ଆମୁସ୍ ପରବ ପାଳନ କରାଯାଇଥାଏ । ଜମିରେ ଭଲ ଫସଲ ପାଇଁ ପୂଜା ଦିଆଯାଏ । ଏହି ପରବ୍‌କୁ 'ବଉଁଲାନି' ଯାତ୍ରା ମଧ୍ୟ କୁହାଯାଏ । ବଉଁଲାନି ପର୍ବ ଅବସରରେ ଆଦିବାସୀ ଗ୍ରାମର ପ୍ରତ୍ୟେକ ଘରୁ ଅଳିଆ ଆବର୍ଜନା ସଫାକରି ସେଗୁଡ଼ିକୁ ଟାକ୍‌ରା (ଟାଙ୍ଗୁଡ଼ି), ଗଦା (କୁଣ୍ଡି-ସାନହାଣ୍ଡି), ଛାଟନା (ସୁଗୁରା -ଝୁଡ଼ି

ଶ୍ରେଣୀୟ ବାଉଁଶ ପାତ ତିଆରି ପଦାର୍ଥ)ରେ ଭରି କରି ପୂଜାରୀର ନିର୍ଦ୍ଦେଶମତେ ଗ୍ରାମ ଉପକଣ୍ଠରେ ବା ନିକଟବର୍ତ୍ତୀ ଜଂଗଲ ପାଖରେ ବିସର୍ଜନ କରାଯାଏ, ଏହି ବିଶ୍ୱାସରେ ଯେ ଗ୍ରାମର କୌଣସି ଘରକୁ ବିପତ୍ତି ପଡ଼ିବ ନାହିଁ, କାହାର କିଛି ଅନିଷ୍ଟ ହେବନାହିଁ। ଏହିଯାତରା ଅବସରରେ କେନ୍ଦୁକାଠରେ ଛୋଟ ରଥଟିଏ ତିଆରିକରି ସେଥିରେ କଳା ଓ ନୀଳ କପଡ଼ା ଘେରି ସେଇ ରଥକୁ ବିଧିବଦ୍ଧ ଭାବେ ପୂଜାକରି ତିନିଗାଁର ସନ୍ଧିରେ ଛଡ଼ାଯାଏ।

୨୩. **ଆମ୍ବନୂଆ** - *ଦେ.ବି. :* ଆମ୍ବ ନୂଆଖିଆ ପରବ।

ଚଇତ ପରବ ପରେ ଆଦିବାସୀମାନେ ଆମ୍ବକୁ ପାରମ୍ପରିକ ରୀତିରେ ନୂଆଖାଇଥାନ୍ତି। / ଏ ପର୍ବରେ ଗୃହ ଦେବତାଙ୍କ ନିକଟରେ ଆମ୍ବ ଓ ଛେଳି, କୁକୁଡ଼ା ଆଦିକୁ ପୂଜା ଓ ବଳି ଦିଆଯାଏ। ନାଚଗୀତ ମଧ୍ୟ କରାଯାଏ। ଏହିଦିନ ସମସ୍ତେ ନବବସ୍ତ୍ର ପରିଧାନ କରିଥାନ୍ତି ଏବଂ ନୂଆ ଆମ୍ବ ଖାଇଥାନ୍ତି। ଏହାକୁ 'ଆମ୍ବ ନୂଆଖାଇ' କୁହାଯାଏ। ପର୍ବ ପାଳନ ଶେଷ ହେବାପରେ ପୁରୁଷମାନେ ବେଣ୍ଟକୁ ଯାଇ ଜନ୍ତୁ ଶିକାର କରିଥାନ୍ତି ଓ ମାଂସ ଭୋଗ କରି ଖାଇଥାନ୍ତି। ଏତଦ୍ ବ୍ୟତୀତ ଏମାନେ ଶିମ୍ବ ନୂଆ, ମହୁଲ ନୂଆ କାନ୍ଦୁଲ ନୂଆ (କାନ୍ଦୁଲ ଭଜା ପର୍ବ) ପର୍ବକୁ ସାଧାରଣଭାବେ ପାଳନ କରିଥାନ୍ତି।

୨୪. **ଆମ୍ବିଙ୍ଗ୍ ବୁଅ** - *ଦେ.ବି. :* ଭାଉଜ ବିବାହ। (ବଣ୍ଡା ସଂପ୍ରଦାୟରେ ପ୍ରଚଳିତ):

ଏହି ପ୍ରଥା ଅନୁସାରେ ଜଣେ ନିଜ ସାନଭାଇର ସ୍ତ୍ରୀକୁ ମଧ୍ୟ ଗ୍ରହଣ କରିପାରେ। ତାକୁ କୁହାଯାଏ 'ଆମ୍ବିଙ୍ଗ୍ ବୁଅ' ବା 'ଆକିମି ବୁଅଁ'। ଅନ୍ୟ କୌଣସି ରକ୍ତ ସଂପର୍କ ଭାଇ ମଧ୍ୟ ଏଭଳି ବିବାହ କରିପାରେ। ଏ କ୍ଷେତ୍ରରେ କିଛି କନ୍ୟାସୁନା ଦେବାକୁ ପଡ଼ି ନଥାଏ।

୨୫. **ଆୟା** - *ଦେ.ବି. :* ମାଆ, ଜନନୀ, ଜନ୍ମଦାତ୍ରୀ, ବୋଉ : ଇଂ. Mother

ଆଦିବାସୀ ମଣିଷ କହେ - "ଧରମ ଦେବତା ବୁଆ ଆମର, ଧରତିନୀ ଆମର ଆୟା, ଡଙ୍ଗର୍ ଆମର ଘର, ବନସ୍ତ ଆମର ଗାଁ।" ଆଦିବାସୀ ସମାଜରେ ମାଆର ସ୍ଥାନ ସବୁଠୁ ଉଚ୍ଚରେ। ସେ ଗୃହର କର୍ତ୍ତ୍ରୀ। ପରିବାର ପରିଚାଳନା କ୍ଷେତ୍ରରେ ମାଆର ନିଷ୍ପତ୍ତି ଓ ଭୂମିକା ଅଧିକ ଗୁରୁତ୍ୱପୂର୍ଣ୍ଣ ଓ ସର୍ବାଗ୍ରେ ଗ୍ରହଣୀୟ। ଚାଷକାମ,

ଜଂଗଲଜାତ ପଦାର୍ଥ ସଂଗ୍ରହ ଓ ବିକ୍ରୟ ଆଦିକରି ଅର୍ଥ ସଂଗ୍ରହ କରିବା, ଶିଶୁମାନଙ୍କ ଯତ୍ନନେବା, ଘରର ସମସ୍ତ ପ୍ରକାର ଦୈନନ୍ଦିନ କାମ - ଯଥା - ରନ୍ଧାବଢ଼ା, ଗୃହପାଳିତ ପଶୁପକ୍ଷୀଙ୍କ ଯତ୍ନନେବା, ଘର ସଫାକରିବା, ନଈ ଝରଣାରୁ ପାଣି ଆଣିବା, ରୋଗ ବାଧିକା ହେଲେ ପରିବାର ଲୋକଙ୍କ ସେବା କରିବା ସହ କୁଲି ଭୁତି କରି ଅର୍ଥ ରୋଜଗାର କରି ପରିବାର ଭରଣ ପୋଷଣର ଦାୟିତ୍ୱ ମଧ ସେ ନେଇଥାଏ। ସେଥିପାଇଁ ଆଦିବାସୀ ସମାଜରେ ନାରୀର ମୂଲ୍ୟ ଓ ମର୍ଯ୍ୟାଦା ସର୍ବାଧିକ। ବିବାହ ବେଳେ ଝିଅ ପାଇଁ କିଛି ଯୌତୁକ ଦେବାକୁ ପଡ଼ି ନଥାଏ। ଓଲଟି ବରପକ୍ଷକୁ କନ୍ୟାଝୋଲା ଦେବାକୁ ପଡ଼ିଥାଏ। ସର୍ବ ପୁରାତନ ଏଇ ଆୟା ଶବ୍ଦଟି ଦକ୍ଷିଣାଞ୍ଚଳ ଆଦିବାସୀମାନଙ୍କର ପ୍ରାୟ ସମସ୍ତ ଉପଭାଷାରେ ତଥା ଦେଶିଆ ଭାଷାରେ ବ୍ୟବହୃତ ହୋଇଥାଏ। ବ୍ୟବହାର : ଆୟାରେ ମୋର୍ ବୁଆରେ ମୋର୍ କଇଲାଗି ଶାଗ୍ ବଦଲି ପୁଲିଆ ବାଗ୍। ଆୟାର ଦୁଦ୍ କାଇବା କାଜେ ଭୁକ ଲାଗଲେ୍ ଚିମ୍‌କା ଲାପ୍‌ଡ଼ା ଲାଗ୍।

ଭାବାର୍ଥ : ହେ ମୋର ମାଆ, ହେ ମୋର ବାପା, ତୁମେ ତ କଇଲାଗି ଶାଗ, ପଳାଶ ଫୁଲିଆ ଅର୍ଥାତ୍, କଲରା ପତରିଆ ବାଘ। ମା'ର କ୍ଷୀର ଖାଇବା ପାଇଁ ଭୋକ ଲାଗିଲେ କେତେଥର ମୁଁ ତୋ ହାତ ନ ଆମ୍ପୁଡ଼ିଛି !

୨୬. ଆର୍‌ସୁଂ - *ଦେ.ବି.* : ଗୋଡ଼ ପଏଁରି / ପାହୁଡ଼ : ରସ, ପିତଳ, ରୂପାରେ ତିଆରି ଓଜନିଆ ଗୋଡ଼ବଳା। ଅଧିକାଂଶ ଆଦିବାସୀ ଦେଶିଆ ସ୍ତ୍ରୀମାନେ ଏହା ପିନ୍ଧନ୍ତି।

୨୭. ଆଲକାମ୍ - *ଦେ.ବି.* : କୌତୁକିଆ ବା ହାସ୍ୟୋଦ୍ଦୀପକ ଅଭିନୟ, ନାଟର ଫାର୍ଶ। ଇଂ. Farcical show

କୋରାପୁଟରେ ଦେଶିଆ ନାଟର ମଦୁଆ ଅଭିନୟ, ଫରେଷ୍ଟଗାର୍ଡ଼ ଅଭିନୟ, ପୋଲିସ୍ ଅଭିନୟ, ମାଷ୍ଟର ଅଭିନୟ, ସରପଞ୍ଚର ଅଭିନୟ, ନେତାର ଅଭିନୟ ଆଦି ରଂଗ ରଂଗିଆ ଢଙ୍ଗରେ ପରିବେଷଣ କରାଯାଏ। ଏଥିରେ ପୁରୁଷ ବା ସ୍ତ୍ରୀ ବେଶୀ ପୁରୁଷ ଦୁଇଜଣ କିମ୍ବା ତିନିଜଣ ଅଭିନୟ କରିଥାନ୍ତି। ଏହାକୁ 'ଆଲକାମ୍' ବୋଲି କୁହଯାଏ।

୨୮. ଆଲୁଆଲାଦ୍ - *ଦେ.ବି.* (୧) କ୍ରି : ସ୍ନେହ ଶ୍ରଦ୍ଧା ଦେଖାଇବା। ଭଲ ଚର୍ଚ୍ଚା କରିବା। (୨) ସ୍ନେହ ଶ୍ରଦ୍ଧା, ଭଲ ବ୍ୟବହାର।

ଭାଷାରେ ବ୍ୟବହାର : ସେ ତାର ଲୋକ ବେଶୀ ଆଲୁଆଲାଦ୍ କରାବାଏ । କାତାବାର୍ତ୍ତା ବଡ଼େ ସୁଆଦ୍ ।

୨୯. **ଆସନା ପିଆଲ୍** - *ଦେ.ବି. :* ଚାଳ ଛପର ଘରର ଓଳି ତଳର ପାଳ ।

ବ୍ୟବହାର : 'ଆସନା ପିଆଲ କିରଙ୍ଗେ ଝୁଲେ ଅଣ୍ଡାଲି ଧର୍‌ତି କୋଲେ ।'

୩୦. **ଆସ୍ତି** - *ଦେ.ବି. :* କ୍ଷୁଦ୍ର ମୂଲ୍ୟବାନ୍ ଜିନିଷ, ଯେକୌଣସି ଛୋଟ ଜିନିଷ । ବ୍ୟବହାର : ଗୋଟେକ୍ ଆସ୍ତି ଦାର୍‌ଲି ଆଚେ,

କାକେ ନ ଦେଖାଇବାଟା ।





୧.　ଇକ୍ଲେଲକ୍ - *ଦେ.ବି. :* ଦା' ସଦୃଶ୍ୟ ବଙ୍କାମାଳି । କୋୟା ସ୍ତ୍ରୀମାନେ ବେକରେ ପିନ୍ଧନ୍ତି ।

୨.　ଇଂଜନ୍ / ଇଙ୍ଗ୍‌ଜନ୍ - *ଦେ.ବି. :* ଏହା ଏକପ୍ରକାର ଆଦିବାସୀ ଗୋଷ୍ଠୀର ଲୋକମାନଙ୍କ ସଂଜ୍ଞା । ଏହି ସଂଜ୍ଞାଧାରୀ ଲୋକମାନେ ବାଘ ବା ନାଗ ବଂଶ ବା ଗୋତ୍ରର ଲୋକଭାବେ ପରିଚିତ ହୋଇଥାନ୍ତି ।

୩.　ଇଙ୍ଗଲାଜିନ୍ - *ଦେ.ବି. :* ଭତ୍ରା, ସଂପ୍ରଦାୟର ଏକ ଲୋକଦେବୀ । ଏହି ଦେବୀଙ୍କ ମୂଳ ନିବାସ / ଛତିଶଗଡ଼ ପ୍ରଦେଶର ବସ୍ତର / ଜଗଦଲପୁର ଅଞ୍ଚଳ । ନବରଙ୍ଗପୁର ଜିଲ୍ଲାର ଭତ୍ରା ଅଧ୍ୟୁଷିତ ଗ୍ରାମଗୁଡ଼ିକରେ ଏହି ଦେବୀଙ୍କର ଗୁଡ଼ି (ଛୋଟ କୁଡ଼ିଆ ସଦୃଶ ମନ୍ଦିର) ଦେଖାଯାଏ । ମାଘମାସରେ ଦେବୀଙ୍କ ସମ୍ମାନାର୍ଥେ ବଳିଭୋଗ ଦେଇ ପୂଜା କରାଯାଏ । ନବରଂଗପୁର ଜିଲ୍ଲା ଧୋଡ୍ରା ଗ୍ରାମର ଅଧିଷ୍ଠାତ୍ରୀ ଦେବୀ, ଏହି 'ଇଙ୍ଗଲାଜିନ୍' ସ୍ଥଳ ବିଶେଷରେ ହିଙ୍ଗଳା ଜିନ୍ ମାତା ରୂପେ ପ୍ରସିଦ୍ଧ । ମାଲକାନଗିରି ଜିଲ୍ଲାର ଗଣ୍ଡିଆ ତଥା କୋୟାମାନଙ୍କ ମଧ୍ୟରେ ଏହି ଦେବୀ ପୂର୍ବେ ମଣିଷ ବଳି ଖାଉଥିଲେ ।

୪.　ଇଟାଇବା - *ଦେ.କ୍ରି. :* ଚୋପା ଛଡ଼ାଇବା । ଆଳୁ ବା କନ୍ଦା ସିଝିଯିବା ପରେ ତାର ଚୋପା ଛଡ଼ାଇବାକୁ ଇଟାଇବା କହନ୍ତି । କାଠର ଛାଲି ଛଡ଼ାଇବାକୁ ମଧ୍ୟ ଛାଲି ଇଟାଇବା କୁହାଯାଏ ।

ବ୍ୟବହାର : 'କାନ୍ଦା ସିଜ୍‌ଲା ବେ ଇଟା ଦେସ୍ ।'

ଏ ଗଚ୍ ଶୁଖିଗାଲା ଆଚେ । ଚାଲି ଇଟ୍‌ଇବା ବେ ।'

୫.　ଇଟ୍‌ଲା - *ଦେ.ବି. :* ଯାଯାବରୀ ଚୁଲୀ, ଉଠା ଚୁଲୀ । ସ୍ଥାୟୀ ଚୁଲି ନୁହେଁ । ସ୍ଥାୟୀ ଚୁଲାକୁ ଚୁଲା କୁହାଯାଏ । ବାଟେ ଯାଉଁଯାଉଁ କୌଣସି ସ୍ଥାନରେ ପାକନା

ତିନିଟା ପକାଇ ଚୁଲି ତିଆରି କରି ଆଦିବାସୀମାନେ ଯେଉଁ ରୋଷେଇ କରନ୍ତି, ସେହି ଚୁଲିକୁ ଇଟ୍‌ଲୀ ଚୁଲି କୁହଯାଏ । ପରେ ତାହା ପରିତ୍ୟକ୍ତ ଅବସ୍ଥାରେ ପଡ଼ି ରହିଥାଏ । ଏଭଳି ଇଟ୍‌ଲା ଘାଟି ରାସ୍ତାମାନଙ୍କରେ ବିଶେଷ ଭାବେ ଦେଖାଯାଏ ।

ବ୍ୟବହାର : ଏ ଜଲାଟାନେ ଏକା ରାନ୍ଧା ବାଡ଼ା କରୁ ! ଇଟ୍‌ଲା ମନ୍ ଖୋଜା । ପାନି ଗାଦେଇବାକେ ସୁବିଦା ଆଚେ ।

୬. **ଇଡ଼ି** - *ଦେ.ବି. :* ହିଡ଼. ଇଂ - Boundary ridge of a field, Ridge ବେଡ଼ା ବା ବିଲ ମଝିରେ ପାଣି ଧରି ରଖିବାପାଇଁ ଛୋଟ ଛୋଟ ମାଟିବନ୍ଧ ବା ପାକନା ବନ୍ଧ । ଅନ୍ୟ ଜମିଠାରୁ ଅଲଗା ଭାବେ ଚିହ୍ନଟ କରିବାପାଇଁ ଉଠାଯାଇଥିବା ମାଟିବନ୍ଧ । ଯାହାକି ବିଭାଜନ ରେଖାର କାମଦିଏ । କୋରାପୁଟ ଜିଲ୍ଲାରେ ପର୍ଯ୍ୟାପ୍ତ ବର୍ଷା ହେଉଥିବା କାରଣରୁ ଇଡ଼ି ବାନ୍ଧିବା ଏକ ବିଶେଷ କୃଷିକାର୍ଯ୍ୟ ରୂପେ ବିବେଚିତ ହୁଏ । ଏହାକୁ ନେଇ ଅନେକ ଲୋକକଥା ରହିଛି

ଭାଷାରେ ବ୍ୟବହାର : ଇଡ଼ି ବାନ୍ଦ୍‌ବା କାଯେ ବେଡ଼ା ଯାଇ ରଇଲି ।

୭. **ଇଡ଼ିଟା / ଇଡ଼ିକ୍‌ଟା** - *ଦେ.ବି. :* ଛୋଟିଆ ଇଂ : Small- ଇଡ଼ିକ୍ କଣ୍ଡ୍ ଅଳ୍ପଟିକେ । ଇଂ : little

ଯଥା : (୧) ଇଡ଼ିଟାଲାକାର ଚଡ଼େଇ ମନ୍ ରାଙ୍ଗ୍ ମନ୍‌କେ ଡଗାଇ ବୁଲ୍‌ଲାନି । (ଡାଳ ଉପରେ ଡେଇଁ ବୁଲିଲାଣି)

(୨) ମୋକେ ଇଡ଼ିକାଣ୍ଡ୍ ସଲପ୍ ଦେ । (ମୋତେ ଅଳ୍ପଟିକେ ସଲପଦେ ।

୮. **ଇଡ଼ିଗିସର୍** - *ଦେ.ବି. :* ଉତରା - ପ୍ରାକୃତିକ ପୁଷ୍କରିଣୀ ବା ଜଳାଶୟ : ଇଂ Small Lake ବିଶେଷତ ବିଭିନ୍ନ ସ୍ଥାନରେ ଛୋଟଛୋଟ ପ୍ରାକୃତିକ ଜଳାଶୟକୁ ଇଡ଼ିଗିସର୍ କୁହାଯାଏ । ନବରଙ୍ଗପୁର ନିକଟସ୍ଥ କୋଇଗୁଡ଼ାରେ ଥିବା ଇଡ଼ିଗିସର ଏକ ପ୍ରାକୃତିକ ପୁଷ୍କରିଣୀ । ଏହାକୁ ଏକ ଦେବସ୍ଥଳୀ ରୂପେ ଲୋକ ମାନନ୍ତି । ଏହାକୁ ନେଇ ଅନେକ କିମ୍ବଦନ୍ତୀ ମଧ୍ୟ ପ୍ରଚଳିତ ।

୯. **ଇଡ଼ିତାଲ୍ ମାରନ୍ / ଇଡ଼ିତାଲ୍ ବୁଇ** - *ଦେ.ବି. :* ଲାଞ୍ଜିଆ ସରକାରଙ୍କ କାନ୍ଥ ଚିତ୍ରକୁ 'ଇଡ଼ିତାଲ' କୁହାଯାଏ । ମାରନ୍ ବା ବୁଇର ଅର୍ଥ ଚିତ୍ରକର ।

ସାଧାରଣଭାବେ ସମସ୍ତ ସଉରା ସଂପ୍ରଦାୟରେ ଏଭଳି ଚିତ୍ର ପ୍ରଚଳିତ । ଚିତ୍ରକର ନାରୀ ହୋଇଥିଲେ ସେମାନେ ବୁଇ । ଏହି ଚିତ୍ର ସାଧାରଣତଃ ଭଣ୍ଡାର ଘର ଭିତରେ କରାଯାଇଥାଏ । କାନ୍ଥକୁ ଲିପି ମନୁଷ୍ୟ, ପଶୁପକ୍ଷୀ, ଚତୁର୍ଭୁଜ, ତ୍ରିଭୁଜ ଆକାରରେ ଏହି ଇଡ଼ିତାଲ ଅଙ୍କାଯାଏ । ଇଡ଼ିତାଲକୁ ପବିତ୍ର ମନେ କରାଯାଏ । ଯେଉଁ ପୁରୁଷ ଶିଳ୍ପୀ ଇଡ଼ିତାଲ ଅଙ୍କନ କରନ୍ତି ସେମାନଙ୍କୁ ଇଡ଼ିତାଲ୍ ମାରନ୍ କୁହାଯାଏ । ଏହି ଚିତ୍ର ମୁଖ୍ୟ ବୈଶିଷ୍ଟ୍ୟ ହେଲା ଏହା ଘରର ଇଷ୍ଟଦେବୀ ଭାବରେ ଗୃହୀତ । ଏହି ଚିତ୍ରରେ ଯେଉଁ ସବୁ ବିଭବ / ବୈଭବ ଗୁଡ଼ିକ ଅଙ୍କା ଯାଇଥାଏ, ସେ ସବୁ ଘରର ମଂଗଳ କାରକ ଓ ଶ୍ରୀବୃଦ୍ଧି କାରକ । ପରିବାର ମଧ୍ୟରେ କାହାର ଦେହ ଅସୁସ୍ଥ ହେଲେ ସେହି ଚିତ୍ର ସାମନାରେ ରୋଗୀକୁ ଶୁଆଇ ଘରର ବୟସ୍କ ଲୋକେ ଗୁହାରିଆ ପଡ଼ନ୍ତି । ଘରର ଜଣେ ସ୍ତ୍ରୀ ଲୋକ କୁଲାରେ ହଳଦୀ ଚାଉଳ ରଖି ଗୀତ ଗାଇଗାଇ ରୋଗୀ ଦେହରେ ହାତ ବୁଲାଇଥାନ୍ତି । ଏପରି କରିବା ଦ୍ୱାରା ରୋଗୀ ସୁସ୍ଥ ହୋଇଯାଏ ବୋଲି ସେମାନେ ବିଶ୍ୱାସ କରନ୍ତି ।

ଇଡ଼ିତାଲ ମାରନ୍ ଓ ଇଡ଼ିତାଲ୍ ବୁଇମାନେ ଶୁଦ୍ଧ ପୂତଭାବେ ପ୍ରଥମେ ନିଜକୁ ପ୍ରସ୍ତୁତ କରନ୍ତି । ଚିତ୍ର କରିବା ସମୟରେ ନିଶା ପିଅନ୍ତି ନାହିଁ ଓ ସହବାସ କରନ୍ତି ନାହିଁ । ରାତିରେ ସେମାନଙ୍କୁ ଚିତ୍ର ସଂପର୍କରେ ସ୍ୱପ୍ନ ହୋଇଥାଏ ବୋଲି ବିଶ୍ୱାସ । ସେଇସବୁ ସ୍ୱପ୍ନକୁ ସେମାନେ ଚିତ୍ରରୂପ ଦେଇଥାନ୍ତି ।

୧୦. ଇଡ଼ିମାରୁ - *ଦେ.ବି. :* ଏକ ଜାତିର ଛଞ୍ଚାଣ ବା ବାଜପକ୍ଷୀ : ଇଂ Hawk, Falcon.

ଛାତିରେ ଧୋବ ଚିହ୍ନଥିବା ଛଞ୍ଚାଣ ଜାତିର ପକ୍ଷୀ । ଚିଲଠୁ ସାନ ଓ ଛଞ୍ଚାଣଠାରୁ ବଡ଼ । ଝିଣ୍ଟିକା, ଏଣ୍ଡୁଅ, ଗୁଣ୍ଡୁଚି ଓ ସାନ ପକ୍ଷୀ ଖାଇଥାଏ । ବର୍ତ୍ତମାନ ଏମାନଙ୍କର ସଂଖ୍ୟା ବହୁତ କମି ଆସିଲାଣି । ଏମାନେ ମୁଖ୍ୟତଃ ସନ୍ଧ୍ୟାବେଳେ ଦେଖାଯାନ୍ତି । ଛଞ୍ଚାଣର ନଖରଧାର ଇଡ଼ିମାରୁଠୁ ଅଧିକ । ଇଡ଼ିମାରୁ ଓ ଛଞ୍ଚାଣ ଲଢ଼େଇ କଲେ ତାହା ଭୟଙ୍କର ହୋଇଥାଏ ।

୧୧. ଇଡ଼ିପାଡ଼ା - *ଦେ.ବି. :* ଜମି ହିଡ଼ରେ ରହୁଥିବା ସର୍ପ ବିଶେଷ । ଇଂ. Rattle Snake. ବେଡ଼ାମାନଙ୍କର ଇଡ଼ିରେ ରହୁଥିବାରୁ ଏହାର ନାମ ଇଡ଼ି ପାଡ଼ା ।

ହାତ ଭଳି ମୋଟା ଓ ଲମ୍ବା । ତାର ଲାଙ୍ଗୁଳରେ ବିଷ ଥାଏ ବୋଲି କୁହାଯାଏ । ଧଳାକଳା ରଙ୍ଗ୍ ଦାଗ ଦେହ ଯାକ ଥାଏ । ଏହାକୁ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରେ ରଣା ବୋଲି କୁହଯାଏ । ଏହା ଦେହରେ ବୋଡ଼ା ବିଷ ଓ ନାଗ ବିଷ ଥାଏ । ଏହା ୫ରୁ ୭ଫୁଟ ପର୍ଯ୍ୟନ୍ତ ଲମ୍ବ ହୋଇଥାଏ । ଇଡ଼ିପାଡ଼ା ପାଣିରେ ମଧ ରହିପାରେ ଓ ଦିନରେ ଦେଖିପାରେ ନାହିଁ ।

୧୨. **ଇନ୍ଦ୍ରାବତୀ** - *ଦେ.ବି. :* ନବରଙ୍ଗପୁର ଜିଲ୍ଲାର ଏକ ବଡ଼ ନଦୀ ।

ଇନ୍ଦ୍ରାବତୀର ନାମକରଣ ସମ୍ବନ୍ଧୀୟ କିମ୍ବଦନ୍ତୀ ପୁରାଣ ଯୁଗର କଥା । ସ୍ୱର୍ଗର ରାଜା ଇନ୍ଦ୍ର ଏବଂ ତାଙ୍କ ପତ୍ନୀ ଇନ୍ଦ୍ରାବତୀ ମର୍ତ୍ତ୍ୟରେ କିଛିଦିନ କଟାଇବା ପାଇଁ ମନକଲେ । ଏମିତି ସମୟରେ ଅସୁରମାନେ ଆସି ବିଘ୍ନାତ କରିବାରୁ ଇନ୍ଦ୍ର ଓ ଇନ୍ଦ୍ରାଣୀ ଚାଷୀ ରୂପରେ ମର୍ତ୍ତ୍ୟକୁ ଚାଲିଆସିଲେ ସ୍ୱର୍ଗରୁ । ସେମାନେ ଆସି କଳାହାଣ୍ଡି ଜିଲ୍ଲା ଥୁଆମୂଳ ରାମପୁର ପର୍ବତ ମାଳାରେ ପହଞ୍ଚିଲେ । ପ୍ରାକୃତିକ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ସେହି ମାଳ ଅଞ୍ଚଳରେ ସେମାନେ ରହିଗଲେ ।

ଦିନେ ଅଧରାତିରେ ଇନ୍ଦ୍ର ଇନ୍ଦ୍ରାଣୀକୁ ଛାଡ଼ି ହାତୀ ନଦୀର ତୀରେତୀରେ ତଳ ଦେଶକୁ ଗଲେ । ତାପରେ ତେଲ ନଦୀର ଉପର ଆଡ଼କୁ । ସକାଳ ହେଲା । ଇନ୍ଦ୍ରାଣୀ ଇନ୍ଦ୍ରଙ୍କୁ ନ ଦେଖି ଖୋଜିଖୋଜି ନିରାଶ ହେଲେ । ଦୁଃଖରେ କାନ୍ଦିଲେ । ତାଙ୍କ ବିକଳ କାନ୍ଦ ଶୁଣି ବଣର ଜୀବଜନ୍ତୁ, ଚଢ଼େଇ ଓ ଆଦିବାସୀ କନ୍ଧମାନେ ତାଙ୍କୁ ବୋଧ ଦେଲେ ଓ ପାଖରେ ରହିଲେ । ତେଣେ ଇନ୍ଦ୍ରରାଜା ବୁଲିବୁଲି ମାରାଗୁଡ଼ା ଓ ସୁନାବେଡ଼ାର ସୁନ୍ଦର ଜଂଗଲରେ ପହଞ୍ଚିଲେ । ସେହି ଜଂଗଲରେ ଇନ୍ଦ୍ର ସେହି ରାଜ୍ୟର ରାଜା ଉଦିତ୍ ଚନ୍ଦ୍ରଙ୍କ ସୁନାନାକି ଗୋଟିଏ ଚାଉଳରେ ଗଢ଼ା ସୁନ୍ଦର ଝିଅ ଉଦନ୍ତୀଙ୍କୁ ଦେଖି ତା ମୋହରେ ପଡ଼ିଗଲେ ଏବଂ ଇନ୍ଦ୍ରାଣୀଙ୍କୁ ଭୁଲିଯାଇ ତାକୁ ବାହା ହୋଇ ଖୁସିରେ ରହି, ବଣ ଜଂଗଲରେ ବୁଲିଲେ । ସେମାନେ ଯେଉଁ ଗାଁକୁ ଗଲେ ସେଠି ଲୋକଙ୍କ ସବୁ ଅସୁବିଧା ଦୂର ହୋଇଯାଉଥିଲା । ଏହି କଥା କାନରୁ ବିକାନ ହୋଇ ଚାରିଆଡ଼େ ବ୍ୟାପିଗଲା ।

ଇନ୍ଦ୍ରାଣୀ ଏହାଶୁଣି ଇନ୍ଦ୍ରଙ୍କୁ ଖୋଜି ସୁନାବେଡ଼ାରେ ସତକଥାଟିକୁ ଜାଣିପାରି ଇନ୍ଦ୍ର ଓ ଉଦନ୍ତୀଙ୍କ ଉପରେ ଖୁବ୍ ରାଗିଯାଇ ଅଭିଶାପ ଦେଲେ 'ତୁମ ଦୁହିଁଙ୍କର

ବୁଲାବୁଲି କରିବାରେ ଯଦି ଏତେ ମନ, ତେବେ ତୁମେ ଦୁଇଟି ନଦୀ ହୋଇ ବହିଯାଅ । ତୁମେ ଦୁହେଁ ଏକାଠି ହୋଇ ମିଶି ପାରିବ ନାହିଁ । ଯେଉଁ ଗାଁର ଲୋକେ ତୁମ ମିଳାମିଶାକୁ ଅଧର୍ମ ଜାଣିସୁଦ୍ଧା ନିଜର ସ୍ୱାର୍ଥ ଓ ସୁଖ ଲାଗି ତୁମକୁ ସମର୍ଥନ କରିଛନ୍ତି, ସେମାନଙ୍କ ଲାଗି ତୁମେ କେବଳ ଆଶା ହୋଇରହିବ । କେବଳ ବର୍ଷାଦିନେ ତୁମେ ଦୁଇ ନଦୀକୂଳ ଯାଏ ପାଣିରେ ପୁରି ଉଠିବ । ତାପରେ ଶୁଖିଯିବ । ଲୋକେ କେବଳ ନଦୀର ବାଲିକୁ ଦେଖିବେ, କିନ୍ତୁ ଟୋପାଏ ପାଣି ପାଇବେ ନାହିଁ ।' ସଂଗେସଂଗେ ଇନ୍ଦ୍ର ଓ ଉଦନ୍ତୀ ଦୁଇଟି ନଦୀ ହୋଇ ବହିଗଲେ । ଇନ୍ଦ୍ରାଣୀଙ୍କୁ କ୍ଷମା ମାଗିବାକୁ ମଧ୍ୟ ସମୟ ପାଇଲେ ନାହିଁ । ଇନ୍ଦ୍ର ନଦୀ ହୋଇ ବହିଯିବାର ଦେଖି ଇନ୍ଦ୍ରାଣୀ ବଡ଼ ଦୁଃଖ କଲେ, ନିଜ କର୍ମ ପାଇଁ ପସ୍ତାଇଲେ । କନ୍ଧମାନେ ଇନ୍ଦ୍ରାଣୀଙ୍କୁ ଆଶ୍ଚର୍ଯ୍ୟ ହୋଇ ଦେଖୁଥିଲେ ।

ଇନ୍ଦ୍ର ପାଖରେ ନଦୀ ହୋଇ ବହୁଥିବାରୁ ଏବଂ ଏହି ନଦୀ କନ୍ଧମାନଙ୍କ ଜୀବନ ଜୀବିକାରେ ବହୁ କଷ୍ଟ ଆଣିବାର ଅନୁଭବ କରି, ସେ ସେମାନଙ୍କ ଦୁଃଖ ଦୂରକରିବା ପାଇଁ ନିଜେ ଚିରସ୍ରୋତା ହୋଇ କନ୍ଧ ଗାଁ ମଧ୍ୟ ଦେଇ ଲମ୍ବିଯିବା ପାଇଁ ଘୋଷଣା କଲେ ଏବଂ ନଦୀ ପାଲଟି ଥୁଆମୂଳ ରାମପୁର ପର୍ବତ ଉପରୁ ତଳକୁ ବହିଗଲେ । ଇନ୍ଦ୍ରାଣୀ ନଦୀ ପାଲଟି ଯିବାରୁ କନ୍ଧମାନେ ସେହି ନଦୀକୁ ଇନ୍ଦ୍ରାବତୀ (ଇନ୍ଦ୍ରଙ୍କ ପତ୍ନୀ) ବୋଲି ନାମ ଦେଲେ ।

**ଇନ୍ଦ୍ରାବତୀ ନଦୀର ଭୌଗୋଳିକ ବର୍ଣ୍ଣନା :**

ଓଡ଼ିଶାର କଳାହାଣ୍ଡି ଜିଲ୍ଲାର ଥୁଆମୂଳ - ରାମପୁର ସହର ଯାହା ଜିଲ୍ଲାର ସଦର ମହକୁମା ଭାବନପାଟଣାଠାରୁ ଷାଠିଏ କି.ମି. ଦୂର, ସେହି ଛୋଟ ସହରଠାରୁ ୧୫ କି.ମି. ଦୂରରେ ପୂର୍ବ ଦିଗରେ ଅଛି ଥୁଆମୂଳ ଗ୍ରାମ । ଏହାହିଁ ଇନ୍ଦ୍ରାବତୀ ନଦୀର ଉଦ୍‌ଗମ ସ୍ଥଳ । ଏହି ଥୁଆମୂଳ ଗ୍ରାମ କଳାହାଣ୍ଡିର ଅଧିଷ୍ଠାତ୍ରୀ ଦେବୀ ମା' ମାଣିକେଶ୍ୱରୀଙ୍କ ଆଦିପୀଠ । ଇନ୍ଦ୍ରାବତୀ କଳାହାଣ୍ଡି ଜିଲ୍ଲାରେ ୪୦କି.ମି. ପ୍ରବାହିତ ହୋଇ ନବରଂଗପୁର ଜିଲ୍ଲାରେ ପ୍ରବେଶ କରି କୋରାପୁଟ ଜିଲ୍ଲା ଦେଇ ୧୩୦କି.ମି. ପ୍ରବାହିତ ହୋଇ ଛତିଶଗଡ଼ରେ ପ୍ରବେଶକରି ମହାରାଷ୍ଟ୍ର ଓ ଆନ୍ଧ୍ରପ୍ରଦେଶରେ ୩୬୦କି.ମି. ପ୍ରବାହିତ ହେବାପରେ ଗୋଦାବରୀ ନଦୀରେ ମିଶିଛି । ଏବେଏବେ ନବରଂଗପୁର ଜିଲ୍ଲାର ଝାଳିଆଗୁଡ଼ାଠାରେ ଇନ୍ଦ୍ରାବତୀ ବୃହତ୍ ନଦୀବନ୍ଧ ପ୍ରକଳ୍ପ ନିର୍ମିତ ହୋଇଛି ।

୧୩. ଇରାଙ୍ଗ ଗାଇ - *ଦେ.ବି. :* ଖରା ବା ସୂର୍ଯ୍ୟ । ଏହା କିଛି ଆଦିବାସୀ ଓ ଦଳିତମାନଙ୍କର ସଂଜ୍ଞା । ଏମାନେ ମଧ୍ୟ ସୂର୍ଯ୍ୟବଂଶୀ ବା ଖରାବଂଶର ଲୋକ ଭାବେ ଚିହ୍ନିତ ହୋଇଥାନ୍ତି ।

୧୪. ଇଲିସିମାଡ଼ି ଆନୁ - *ଦେ.ବି. :* (ଦୁରୁଆ)

ବିବାହ ଛାମୁଣ୍ଡିଆ (ଦେଶିଆ : ଡାଲକୁଡ଼ିଆ / ଛାମୁଣ୍ଡିଆ)

୧୫. ଇଲେସିଲ୍ - (ଦୁରୁଆ) *ବି. :* ଧାଙ୍ଗଡ଼ିବସା : ଇଂ- Girl's dormitory.

ଦୁରୁଆମାନଙ୍କ ଧାଙ୍ଗଡ଼ି ବସାକୁ ଇଲେସିଲ୍ କୁହାଯାଏ । ଏହି ଧାଙ୍ଗିଡ଼ି ବସାରେ ଦୁରୁଆ ଝିଅମାନେ ରାତି କଟାଇଥାନ୍ତି । ଏଠାରେ ସେମାନେ ଗୀତ, ନାଚ, ରନ୍ଧନ କଳା, ବିଭିନ୍ନ ପ୍ରକାର ଖେଳ ଶିକ୍ଷା କରିଥାନ୍ତି । ଧାଙ୍ଗିଡ଼ି ବସା ଅର୍ଥ ବୁଝାଉଥିବା ଅନ୍ୟ ଆଦିବାସୀ ଗୋଷ୍ଠୀର ସମାର୍ଥକ ଶବ୍ଦ : (୧) ଓରାଓଁ : ପୋଲାଡ଼ପା (୨) କନ୍ଧ : ଡାଆଣିକା ବାସା (୩) ବଣ୍ଡା : ସେଲାନିଡ଼ିଙ୍ଗୋ (୪) ଫୁଲବାଣୀ କନ୍ଧ : ଦିଣ୍ଡାଘର (୫) ଗଣ୍ଡ - ଘୋଟୁଲ୍ / ବିସୋଡାହା ।

୧୬. ଇଲେନ୍‌କୁଲ - *ଦେ.ବି. :* (ଦୁରୁଆ) ଧାଙ୍ଗଡ଼ା ବସା ଇଂ- Boy's dormitory.

ନିଜ ଗାଁର ଦୁରୁଆ ଯୁବକମାନେ ଧାଙ୍ଗଡ଼ାବସାରେ ଜମା ହୁଅନ୍ତି । ଆଉ କେତେକ ଅନ୍ୟ ଗାଁରୁ ଆସିଥାନ୍ତି । ଇଲେନ୍‌କୁଲ୍‌ଠାରେ ଏମାନେ ଗୀତ ଗାଆନ୍ତି । ଆମୋଦପ୍ରମୋଦ କରନ୍ତି । ଏଠାରେ ରଖାଯାଇଥିବା ବିଭିନ୍ନ ବାଦ୍ୟଯନ୍ତ୍ର ବଜାନ୍ତି । ବୟସ୍କମାନେ ଏଠାକୁ ଆସି ଯୁବକମାନଙ୍କ ସହିତ କିଛି ସମୟ କଟାଇ ସେମାନଙ୍କୁ ସହଯୋଗ, ଏକତା, ପାରସ୍ପରିକ ସାହାଯ୍ୟ ଆଦି ସମ୍ବନ୍ଧରେ ଶିକ୍ଷା ଦେଇଥାନ୍ତି । ସାଧାରଣତଃ ଧାଙ୍ଗଡ଼ାବସାଗୁଡ଼ିକ ଗ୍ରାମ ମୁଖିଆଙ୍କ ଘର ପାଖରେ ବା ଘର ପରିସରରେ ତିଆରି ହୋଇଥାଏ ।

ଅନ୍ୟ ସଂପ୍ରଦାୟର ସମାର୍ଥବୋଧକ ଶବ୍ଦ : ଓଁରାଓଁ : ଝିଁଖେଡ଼ପା କନ୍ଧ : ଦାଂଣାବାସା, ବଣ୍ଡା : ଇଙ୍ଗେରସନ୍, ଫୁଲବାଣୀ କନ୍ଧ : ଧାଙ୍ଗର୍ ବାସା, ମୁଣ୍ଡା : ଗିତଓରା, ଜୁଆଙ୍ଗ : ମାଜ୍ଜେଙ୍ଗ ।

୧୭. ଇସାଦ୍ - ଦେ.ବି. : ବାଉଁଶ ତିଆରି ମାଳି : (କୋୟା)

କୋୟା ନୃତ୍ୟ ସମୟରେ କୋୟା ରମଣୀମାନେ ଯେଉଁ ବାଉଁଶ ତିଆରି ମାଳି ବେକରେ ପିନ୍ଧିଥାନ୍ତି, ତାହାକୁ 'ଇସାଦ୍' କୁହାଯାଏ ।

୧୮. ଇସାଲ୍‌ବାଦ / ଇସାଲିଆ / ଇସାଲ୍‌ବା - ଦେ.କ୍ରି. : ସନ୍ଦେହ କରିବା

ଇସାଲ୍‌ବା - କ୍ରି.ବି. : ସନ୍ଦେହ / ସନ୍ଦେହୀ ।

ଇସାଲିଆ - ବି. : ମାଇକିନା ଅଣ୍ଡିରା ଭିତରେ ଈର୍ଷା ଓ ସନ୍ଦେହ । ସ୍ୱାମୀର ଅନ୍ୟ ସ୍ତ୍ରୀ ସହ ସମ୍ବନ୍ଧକୁ ନେଇ ସ୍ତ୍ରୀର ସନ୍ଦେହ ଓ ଗାଳିକୁ ବା ସ୍ତ୍ରୀର ଅନ୍ୟ ପୁରୁଷ ସହ ସମ୍ବନ୍ଧକୁ ନେଇ ସ୍ୱାମୀର ଗାଳିକୁ ଇସାଲିଆ ବୋଲି କୁହାଯାଏ ।

ଇସାଲ୍‌ବାଦ୍ - ବି. :

ବ୍ୟବହାର : 'ସେ ମନୁଷ୍ ବଡ଼ ଇସ୍‌ଲିଆ ଟା ହୋ ଯାକେ ପାର୍‌ଲେ ତାକେ ଲାଗାଇ ତାର ମାଇଜୀକେ ଇସାଲ୍‌ସି ।' ଏଟା ବେଶୀ ଭାଗ ମନୁଷ ଭିତରେ ବେଶୀ ଦେଖାଯାଏ । ଅର୍ଥାତ୍ ପୁରୁଷଙ୍କର ସନ୍ଦେହ ବେଶୀ । ଇସାଲବାଦ୍‌ରେ ହଣାହଣି ଓ ମରାମରି ମଧ୍ୟ ହୋଇଯାଆନ୍ତି ।

୧୯. ଇସ୍‌ଟୁ / ଇସ୍‌ଟୁ ଦେବତା - ଦେ.ବି. : ମନ ଇଚ୍ଛା

ଇସ୍‌ଟୁ ଦେବତା - ପିତାମାତା, ଇଷ୍ଟ ଦେବୀ ବା ଦେବତା ।

ବ୍ୟବହାର : (୧) ତାକେ ମନ୍ କର୍‌ସୁ କି ନାଇଁ ତର୍ ଇସ୍‌ଟୁ ।

(୨) ତର୍ ଇସ୍‌ଟୁ ଦେବତାକେ ସୁମରନା କର୍ । ତକେ ମର୍‌ତେ ପୂଜିବି ଆଜ୍ । (ତୋର ଇଷ୍ଟ ଦେବତାକୁ ସୁମରଣା କର । ତୋତେ ଆଜି ମୁଁ ହାଣିବି ।)





୧.	**ଉଆଁସ୍** - *ଦେ.ବି. :* ଉଆଁସ ପରବ୍ ।

ଉଆଁସ : ଅମାବାସ୍ୟା : ଏକ ପର୍ବ ବିଶେଷ ।

ଦେଶିଆ ଲୋକଗୀତରେ ଚିତ୍ରକଳ୍ପ ଭାବେ ପ୍ରଚଳିତ । ଯଥା : 'ଉଆଁସ ରାତିର ତରା, କୋକେ ନାଇଁ ଦିଏ ଧରା ।'

**ଉଆଁସ ପର୍ବ :**

ଶ୍ରାବଣ ମାସର ଅମାବାସ୍ୟା ତିଥିରେ ଏହି ପର୍ବ ପାଳନ କରାଯାଏ । କ୍ଷେତରୁ ଡୁମା ଡାଆଣୀ ରୋଗ ପୋକଙ୍କ ଦାଉରୁ ରକ୍ଷା ପାଇଁ କେନ୍ଦୁ କାଠର ବାଡ଼ିରେ ପତ୍ର ଲଗାଇ ବିଲରେ ପୋତାଯାଏ । ଜମିରେ ପୂଜା କରାଯାଏ କୁକୁଡ଼ା ବଳି ଦିଆଯାଏ ।

୨.	**ଉଆରି କଡି / ଉଆରି କନ୍ଦି** - *ଦେ.ବି. :* ଘର ଚାରିପଟେ ମାଟି ପାଚିରି । ମାଟି ପାଚିରି କରି ତା ଉପରେ ଛଣ ଛପର କରାଯାଇଥାଏ । ତାହା ବହୁଦିନ ପର୍ଯ୍ୟନ୍ତ ରହିପାରେ ।

ବ୍ୟବହାର : ଗୋରୁ ଗାଈ ଏପଟ ସେପଟ ବୁଲ୍‌ବେ । ଉଆରି କନ୍ତି ରଇଲେ, ସେଠି ଗୋଟେ ବାଟ୍ ସଂଗାଇ ରଇଲେ, ସେ ବାଟେବାଟେ ଆଇବେ ।

୩.	**ଉକ୍‌ଲା-ବା** - *ଦେ.ବି. :* ଜୋରରେ ପାଣି ଫୁଟିବା । ଟକରମରକ ପାଣି ଫୁଟିବା ।

ବ୍ୟବହାର : ଆଦନ୍ ପାନି ଫୁଟି କରି ଉକ୍ କରିଲାନି, ଚାଉଳ ପାକା ।

ଅର୍ଥ : ଭାତ ପାଣି ଫୁଟିଲାଣି, ଚାଉଳ ପକାଇ ଦିଅ ।

୪.	**ଉକାର୍ ପର୍ବତ ବା ଭାଇଭଉଣୀ** - *ଦେ.ବି. :* ମାଲକାନଗିରି ଜିଲ୍ଲାର ଗୋବିନ୍ଦପାଲ୍ଲୀ ପାଖରେ ଥିବା ପର୍ବତ ବିଶେଷ ।

ଏହି ଦୁଇ ନାମକରଣ ପଛରେ ଏକ ଲୋକକଥା ରହିଛି । ଗୋବିନ୍ଦପାଲିଠାରୁ ଅଳ୍ପ ଦୂରରେ ଥିବା ସପ୍ତଧାରାର ଉତ୍ପତ୍ତିସ୍ଥଳ ହେଉଛି ଉକାର ପର୍ବତ । ଏହା ଗୋବିନ୍ଦପାଲି ଠାରୁ ପ୍ରାୟ ୮ କି.ମି. ଦୂରରେ ଅବସ୍ଥିତ । ସେହି ପାଖରେ ରହିଛି ପାଗୁଆ ଦୁଡ୍‌ମା । ପୂର୍ବେ ଶବର ଜାତିର ଜଣେ ଲୋକ ଉକାର ପର୍ବତରେ ବାସ କରୁଥିଲେ । ତାଙ୍କ ନାମ ଭୀମା ଶବର । ଏହି ଭୀମା ଶବର ସପ୍ତ ଧାରାରେ ଧାରାମାନଙ୍କୁ ପଥର ଖଞ୍ଜି ଖଞ୍ଜି ବାନ୍ଧୁଥିଲେ । ଉଦ୍ଦେଶ୍ୟ ଥିଲା ସପ୍ତଧାରାର ସବୁ ଧାରାକୁ ବାନ୍ଧି ଗୋଟିଏ ନଦୀ କରିବେ । ତାଙ୍କର ଗୋଟିଏ ଭଉଣୀ ଥିଲା । ଭଉଣୀ ସବୁବେଳେ ଘରକାମ ଓ ରୋଷେଇବାସରେ ବ୍ୟସ୍ତଥାଏ । ଭାଇ କି କାମ କରୁଛି ସେ ଜାଣି ନଥାଏ । ଭଉଣୀ ଘର କାମ

କଲାବେଳେ ବାଣ୍ଡ । (ଲଙ୍ଗଳା) ରହୁଥାଏ ଭାଇର ଏକ ଘଘୁଡ଼ି ବନ୍ଧା କୁକୁର ଥିଲା । ଭାଇ ଘରକୁ ଫେରିଲେ କୁକୁରର ଘାଘୁଡ଼ି ଶବ୍ଦ ଶୁଣି ଭଉଣୀ ଲୁଗା ବା ପଟିଆ ପିନ୍ଧିନିଏ । ଦିନେ ତାର ଭଉଣୀ ଭାବିଲା, ଭାଇ ମୋର ଏତେ କାମ

କରୁଛି । କେଉଁଠି କାମ କରୁଛି ଯାଇ ଦେଖିବା । ଏକଥା ଭାବିଭାବି ଦିନେ ତାକୁ ଖୋଜି ଖୋଜି ପରୁଆ ଦୁଡ଼ମା ପାଖରେ ଯାଇ ପହଞ୍ଚିଲା । ଦେଖିଲା ତାର ଭାଇ ନାଙ୍ଗ୍‌ଲା ହୋଇ ପାକ୍‌ନା କାଡୁଛି । ପରସ୍ପରକୁ ଦେଖିଦେଇ ଦି ଜଣ ଯାକ ଲାଜରେ ପଡ଼ିଗଲେ । ସେଇଠୁ ଜଣେ ପରେ ଜଣେ ସେଇ ଦୁଡ଼ମାକୁ ଡେଇଁ ପଡ଼ି ପ୍ରାଣ ଦେଲେ । ସେଇଦିନୁ ଧାରା ବାନ୍ଧିବା କାମ ଅଧା ରହିଗଲା । ସପ୍ତଧାରା ଆଉ ମିଶି ପାରିଲା ନାହିଁ । ସାତଟି ଧାରା ହୋଇ ବୋହି ପଡ଼ିଲା ଏବଂ ନିମ୍ନରେ ଆସି କୋଲାବ ନଦୀ ସହ ମିଶିଲା । ସେହିଦିନୁ ଉକାର ପର୍ବତର ନାଁ ହୋଇଛି ଭାଇ ଭଉଣୀ ଡଙ୍ଗର ଏବଂ ଭୀମା ଶବର ହୋଇଛନ୍ତି ଭୀମା ଦେବ୍‌ତା ।

୫. ଉଚ୍‌ଲ୍‌ବା - *ଦେ.ବି. :* ହିଡ଼ ଭର୍ତ୍ତି ହୋଇ ପାଣି ଉଚ୍ଛୁଳି ପଳେଇଯିବା ବା ବାହାରିଯିବା ।

ବ୍ୟବହାର : ପାନି ଜବର୍ ମାର୍‌ବାକେ ଏ ମୁଣ୍ଡା ଉଚ୍‌ଲି କରି ପାନି ବାରିଗାଲା ।

୬. ଉଗାଡ୍ - *ଦେ.କ୍ରି. :* ଖୋଲିବା । କବାଟ୍ ଉଗାଡ୍‌ବା / ପାଟିଆ (ଲୁଗା) ଉଗାଡ୍‌ବା । ଅର୍ଥାତ୍ କବାଟ୍, ଝରକା ଖୋଲିବା । ଲୁଗା ଖୋଲିବା ଇତ୍ୟାଦି ।

ବ୍ୟବହାର : ବାତ୍ ଗାଲ୍‌ଲୁସ୍ କାଇକି । ତାଙ୍କନି ଉଗାଡ଼ି ଦେସ୍ / ବାତ୍ କାକର୍ ଏଇସି ।

୭. **ଉଚ୍‌କିବା** - *ଦେ.କ୍ରି. :* ଗଳାରେ ଦଉଡ଼ି ଦେଇ ମରିବା ବା ଆତ୍ମହତ୍ୟା କରିବା

ବ୍ୟବହାର : ସେ ମାଇଜୀର ବେବାର୍ ନିକ୍ ରଇଲା ହୋ । କେନ୍ତାର୍ ହୋଇ ଉଚ୍‌କି ହେଇ ମଲା ।

୮. **ଉଚାର୍‌ବା** - *ଦେ.କ୍ରି. :* ଛୁଆକୁ କାଖେଇବା । /

ବ୍ୟବହାର : ମା ତା'ର ପିଲାକେ କାକେ ଉଚାରିଲା ଆଚେ ।

୯. **ଉଚାଲ୍‌ବା** - *ଦେ.କ୍ରି. :* ବାନ୍ତି କରିବା । ବାନ୍ତି ଉଚାଲି ଦେବା ।

ବ୍ୟବହାର - ମଦ୍ କାଇ କରି ବାନ୍ତି ଉଚାଲ୍ ଅଇଯାଇଥିଲା । ଜୀବନ ନିକ ଲାଗେ ନାଇଁ । ଅର୍ଥ : ମଦପିଇ ବହୁତ ଗୁଡ଼ାଏ ବାନ୍ତି କରିପକେଇଥିଲି । ଆଦୌ ଭଲ ଲାଗୁନାହିଁ ।

୧୦. **ଉଜ୍‌ରାଇବା** - *ଦେ.କ୍ରି. :* ମରାମତି କରିବା । ଭଲ କରିଦେବା (ରୋଗୀକୁ)

ବ୍ୟବହାର : (୧) ନୂଆ ବେଲେ ନଙ୍ଗଲ୍ ନିକ୍ ନ ଲାଗତେ ରଇଲା ଏବେ ଉଜ୍‌ରି ଗଲା ।

(୨) ଏ ଟକୀକେ ଦିସାରି, ଗୁନିଆ, ଡାକ୍ତର ଫାକ୍ତର ନେଇ କରି ବଡ଼୍ କଷ୍ଟେ ଉଜ୍‌ରେଇଲି ।

୧୧. ଉଜା - *ଦେ.ବିଂ. :* ଡାହାଣ - ଦକ୍ଷିଣ, ଇଂ. Right hand, South.

ବ୍ୟବହାର : ଉଜାହାତେ ଖାଇବାର୍, ଡେବିରି ହାତ୍ ନା ଲାଗା ।

୧୨. ଉଜାଡ଼୍‌ବା - *ଦେ.କ୍ରି. :* ଚାଳରୁ ଛଣ ବା ପିରି ବାହାର କରିବା (ନୂଆ ପିରି ଚାଇବା ପାଇଁ)

ବ୍ୟବହାର - ସବୁବାଟେ ଗର୍ ଗଲି ଗଲାନି । ଉଜାଡ଼ି କରି ଛାଇଦେଉଁବେ ।

୧୩. ଉଜିର୍ / ଉଁଜିର - ଦେ.ବି. : ଦେଶିଆ / ବଣ୍ଡା ଶବ୍ଦ : ସୂର୍ଯ୍ୟୋଦୟ ହେବାର ପୂର୍ବ ସମୟ ।

ଉଦାହରଣ : ଉଜିର ହେଲାନି, ଯୁ, ବେଡ଼ାକେ ଯୁ । (ସକାଳ ହେଲାଣି, ଚାଲ ଜମିକୁ ଯିବା ।

ଉଜିର୍ ବେଲା କବାର୍ ବେଲା

ବେଲ୍ ବସ୍‌ଲେ ଗରେ ଓଲା ।

ଅର୍ଥାତ୍ : ସକାଳ ସମୟ କାମର ସମୟ, ସଞ୍ଜ ହେଲେ ଘରକୁ ଫେରିବାର ସମୟ ।

୧୪. ଉଟ୍‌କାଇବା - ଦେ.କ୍ରି. : ଖୋଳି କରି କାଢ଼ିବା । (ଝିକି କରି ଉପାଡ଼ିବା ନୁହେଁ)

ବ୍ୟବହାର : ଆଜି ଦିନ୍‌ଯାକ ମାଟି ଉଟ୍‌କାଅ ।

କାଲିକେ ମୁଣ୍ଡାୟ ବଇବାର ଆଚେ ।

ଅର୍ଥାତ୍ : ଆଜି ଦିନଯାକ ମାଟି ଖୋଳିବା କାଲି ମୁଣ୍ଡାକୁ ବୋହି ନେବା ।

୧୫. ଉଡ଼ନିଆ / ଉଡ଼୍‌ନିୟା - ଦେ.ବି. : ଉଡ଼ିବା ସମୟ ହେବା ବେଳର ଚିଆଁ । ଡିମ୍ବରୁ ଫୁଟି ଚିଆଁ ବାହାରିବାର କିଛି ଦିନ ପରେ ଡେଣା ଶକ୍ତ ହେଲେ ତାହା ଯେତେବେଳେ ଉଡ଼ିବା ଅବସ୍ଥାକୁ ଆସେ ତାକୁ ଉଡ଼୍‌ନିଆଁ କୁହଯାଏ । ଯେ କୌଣସି ପକ୍ଷୀ ପ୍ରତି ଏହା ପ୍ରଜୁର୍ଯ୍ୟ ।

୧୬. ଉଡ଼୍‌ପିବା - ଦେ.କ୍ରି. : ହଠାତ୍ ଗର୍ଜି ଉଠି ଗାଳି କରିବା ।

ବ୍ୟବହାର : କାଇଟା ନା ଜାନି ଯାଉ ଯାଉ ଉଡ଼ପି ଦେଲାସ୍‌ନି ।

ଅର୍ଥ : କିଛି ନ ବୁଝି ନ ସୁଝି ଯାଉଯାଉ ସେ ଗର୍ଜି ଉଠି ଗାଳି ଦେଲାଣି ।

୧୭. ଉଡ଼ାଲକରମ୍ - ଦେ. : ଭତ୍ରୀ : କ୍ରିୟା : ବାହାରି ଯିବା

ଯଥା : ତରଗର ଥାନୁ ଉଡ଼ାଲ୍ କରମ୍ ଯାଇସି ଆୟା (ତୋ ଘରୁ ବାହାରି ଯିବି ମା)

୧୮. **ଉଡ଼ିଆନ୍ ଦେଶ** - *ଦେ.ବି. :* (ଗଣ୍ଡି) ଓଡ଼ିଆ ଭାଷା କହୁଥିବା ରାଜ୍ୟ ।

ଉଦାହରଣ : ଉଡ଼ିଆନ୍‌କେ ଡାହାନ୍ କରି ବସ୍ତର କେ ଜୁ (ଓଡ଼ିଶାରେ ଘରପୋଡ଼ି ଯିବାରୁ ମୁଁ ଓଡ଼ିଶା ଛାଡ଼ି ବସ୍ତରକୁ ଯାଉଛି ।)

୧୯. **ଉଡ୍ରଗଡ଼ ବା ଓଡ଼ବାଡ଼ି ମଣ୍ଡଳ** - *ଦେ.ବି. :* ଏକ ଅଞ୍ଚଳର ନାମ ବିଶେଷ । ଅତୀତରେ ଯେଉଁଠି ଓଡ୍ର ଗୋଷ୍ଠୀର ଲୋକେ ଶାସନ କରୁଥିଲେ । ସେହି ନାମରୁ ଓଡ଼ିଶା ରାଜ୍ୟର ନାମକରଣ କରାଯାଇଛି । ସଂପ୍ରତି ଏହି ଓଡ଼ବାଡ଼ି ଅଞ୍ଚଳଟି ଉଡ୍ରଗଡ଼ ନାମରେ ଚିହ୍ନିତ ହୋଇ କୋରାପୁଟ ଜିଲ୍ଲାର ଆନ୍ଧ୍ର ଓ ଓଡ଼ିଶା ସୀମାରେ ପ୍ରାଚୀନ କଳିଙ୍ଗ ରାଜ୍ୟର ଦକ୍ଷିଣ ଦିଗରେ ଅବସ୍ଥିତ ପାଡୁଆ ଅଞ୍ଚଳଠାରୁ ୨୪କି.ମି. ଦୂରରେ ରହିଛି । କେତେକ ଐତିହାସିକଙ୍କ ମତରେ ଏହା ପ୍ରାଚୀନ ଉଡ୍ର ଭୂଖଣ୍ଡର କେନ୍ଦ୍ରସ୍ଥଳୀ ଥିଲା । ତଥାପି ଏହା ମୁଖ୍ୟତଃ କିମ୍ବଦନ୍ତୀ ଆଧାରିତ । ଐତିହାସିକ ଭାବେ ଏହା ଏକ ସର୍ବସମ୍ମତ ତଥ୍ୟ ନୁହେଁ ।

୨୦. **ଉତରତଲିଆ** - *ଦେ.ବି. :* କିଛି କଥା ନ ବୁଝି ନିଜର ବଡ଼ିମା ବା ବାହାଦୁରୀ ଦେଖାଇବା ଲୋକ ।

ପ୍ରବାଦ : 'ଉତର୍ ତୁଲିଆ ଚାକୁଣ୍ଡା

ବୁରି ପାନିକେ ଆକରଲା ।'

ଅର୍ଥାତ୍ : ଚାକୁଣ୍ଡା ଗଛ ଅଳ୍ପ ପାଣି ପାଇ ହଠାତ୍ ଗଜା ହୁଏ ଓ ଖରା ହେଲେ ମରିଯାଏ ।

ଅନ୍ୟାର୍ଥେ : ଅଳ୍ପ କଥାରେ ଜଣକୁ ଉସ୍‌କାଇଦେଇ କୌଣସି କାମରେ ପଠାଇଦେବା । ଅଥଚ, ସେଇ କାମ ନ ହେବା କିମ୍ବା କିଛି ନଜାଣି ନିଜର ଜ୍ଞାନଗାରିମା ଦେଖାଇବା ।

ବ୍ୟବହାର : ଉତର ତାଲିଆ ଲୋକ୍‌ତାନୁ ଦୂରେ ରଇବା ନିକ୍ ।

ଅର୍ଥାତ୍, ସବଜାନ୍‌ତା ଲୋକଠାରୁ ଦୂରେଇ ରହିବା ଶ୍ରେୟଷ୍କର ।

୨୧. **ଉଦ୍‌କି / ଉଡ୍‌କି / ଡେକାର** - *ଦେ.ବି. :* ଛୋଟିଆ ହେକୁଟି / ବଡ଼ ହେକୁଟିକୁ କୁହାଯାଏ ଡେକାର୍ । ଏହା ଖାଇସାରିବା ପରର ହାକୁଟି । ଉଦ୍‌କି ହେଉଛି

ଦିନର ଯେକୌଣସି ସମୟରେ ଆସୁଥିବା ଛୋଟିଆ ହାକୁଟି । ମୁଖ୍ୟତଃ ଏହା ଅଜୀର୍ଣ୍ଣଜନିତ ହୋଇଥାଏ । ଓଡ଼ିଆରେ ତାହାକୁ ଆମ୍ବିଳି ହାକୁଟି କହନ୍ତି ।

ବ୍ୟବହାର : (୧) ଆଜିଦିନ୍‌ଯାକ ଉଦ୍‌କି ମାରିଲାନି । ମୁଲ୍‌କେ ନିକ ଲାଗେ ନାଇଁ । ଅର୍ଥାତ୍ : ଆଜି ଦିନଯାକ ହାକୁଟି ଆସୁଛି । ଆଦୌ ଭଲ ଲାଗୁନାହିଁ ।

(୨) ଜବର୍ ମାଚ୍‌ମାଉଁସ ଖାଇ କରି ଇତି ଆସିକରି ଡେକାରି ଅଇଲୁସ୍‌ନି ।

ଅର୍ଥାତ୍ : ଗୁଡ଼ାଏ ମାଛମାଂସ ଖାଇ ଏଠାକୁ ଆସି ହାକୁଟି ମାରୁଛୁ ।

୨୨. ଉଦକ୍‌ବା / ଉଦକ୍‌ଲାନି - *ଦେ.କ୍ରି.* : ଦୁକୁଦୁକୁ କରି ଡେଇଁବା : ମୁଖ୍ୟତଃ ଛାତି ଦୁକ୍‌ଦୁକ୍ କରିବା ବା ପୁଣ୍ଡା ହେବା ଅର୍ଥରେ ଜଣେ ମୁମୂର୍ଷୁ ଲୋକ କ୍ଷେତ୍ରରେ ପ୍ରୟୋଗ ହୋଇଥାଏ ।

ବ୍ୟବହାର : ତୁଇ ଦେକରେ ବୁକେ, ଉଦକଲାନି କି ନାଇଁ । ଅର୍ଥାତ୍ ତୁ ଛାତିରେ ହାତମାରି ଦେଖ, ଦୁକ୍‌ଦୁକ୍ ହେଲାଣି କି ନାହିଁ ।

ଅର୍ଥ (୨) ତଳ ଉପର ହେବା, ତଳ ଉପର କରିବା, ବା ଜଳ ଲହରୀ ମାରିବା

ବ୍ୟବହାର (୧) ବର୍ଷା ମାର୍‌ବାକେ ଗାଡ୍‌ମାନ୍‌କେ ପାନି ଉଦ୍‌କି ଏକା ଆଇସି ଆଚେ । ଅର୍ଥାତ୍ : ବର୍ଷା ମାରିବାରୁ ନଦୀ ମାନଙ୍କରୁ ପାଣି ଉଚ୍ଛୁଳି ଆସିଲାଣି ।

ବ୍ୟବହାର : (୨) ବେଡ଼ାତାନେ ଗୋଟେ ପାକ୍‌ନା ଆଚେ । ମାଣ୍ଡିଦେଲେ ଉଦ୍‌କିଲାନି ।

ଅର୍ଥାତ୍, ବିଲରେ ଗୋଟିଏ ପଥର ପଡ଼ିଛି, ମାଡ଼ିଦେଲେ ପାଣି ଉଠିଆସିଲାଣି ।

୨୩. ଉଦ୍‌ଲିଆ - *ଦେ.ବି.* : ଝିଅ ସ୍ୱଇଚ୍ଛାରେ ବିବାହ କରିବାପାଇଁ ଘରଛାଡ଼ି ଚାଲିଯିବା - ବା ନିଜ ମନପସନ୍ଦ ବର ସହିତ ପଳେଇବା । ଇଂ- Elopement

ଉଦୁଲିଆ ଯିବା ପରମ୍ପରା ଆଦିବାସୀ ସମାଜରେ ବହୁ ପୁରାକାଳରୁ ପ୍ରଚଳିତ ଯୁବକଟିଏ ଯଦି ନିଜର ନାଚ ଗୀତ ଓ ବ୍ୟକ୍ତିତ୍ୱ ବଳରେ ଯୁବତୀଟିକୁ ଆକର୍ଷିତ କରିପାରେ ତେବେ ଯୁବତୀଟି ମାଆ, ବାପା, ସାଂଗ ଓ ଗାଁ ଭୂଇଁ ଛାଡ଼ି ତା ମନ ପସନ୍ଦ

ଯୁବକ ସହିତ ରାସ୍ତାଘାଟ, ହାଟବଜାର, ଯାତ୍ରା ବା ମେଳା ସ୍ଥାନରୁ କିଛିଦିନ ପାଇଁ ନିରୁଦ୍ଦିଷ୍ଟ ହୋଇଯାଏ । ବାପା, ମାଆ ଓ ଗାଁ ଲୋକଙ୍କ ଆଗୋଚରରେ ଝିଅଟିଏ ପଳାଇଯାଇଥାଏ । ଖବର ପାଇଲା ପରେ ଗାଁ ଲୋକେ ଝିଅଟିର ପରିବାର ଲୋକଙ୍କ ସହିତ ସଦଳବଳେ ପୁଅ ଘରକୁ ଯାଇ ଜୋରିମାନା ରୂପେ ପୁଅ ଘରୁ ଟଙ୍କା, ଧାନଚାଉଳ, ମଦ, କୁକୁଡ଼ା, ଛେଳି ଇତ୍ୟାଦି ଆଣି ଭୋଜି ଭାତ କରି ଖାଇଥାନ୍ତି ଏବଂ ଝିଅ ପୁଅର ବିବାହ କରାଇଦେଇଥାନ୍ତି । (ଦ୍ରଷ୍ଟବ୍ୟ: କନିଆଝିକା)

**ଉଦୁଲିଆ ବିହା** - *ଦେ.ବି.* : ଭତ୍ରା, ଗୋଣ୍ଡ, ଭୂମିଆ, ଗଦବା ଆଦି ସଂପ୍ରଦାୟଙ୍କ ପ୍ରେମ ବିବାହର ଏକ ସ୍ୱରୂପ । ଆଦିବାସୀ ବିବାହ ବ୍ୟବସ୍ଥାରେ ଥିବା ମାହାଲା ବିହା (ମଧ୍ୟସ୍ଥି ବିବାହ) ବିଧବା ବିବାହ (ଠେଙ୍ଗା ଭତରାନି) ପଇସା ମୁଣ୍ଡି, ଘର ଜୁଆଇଁ ବିବାହ ପରି ଉଦୁଲିଆ ମଧ ଏକ ପ୍ରକାର ବିବାହ ବ୍ୟବସ୍ଥା । ଏଥିରେ ଉଭୟ ପୁଅଝିଅ ପରସ୍ପରକୁ ଭଲପାଇ ଉଭୟ ପକ୍ଷ ପିତାମାତାଙ୍କର ଏହି ବିବାହ ସମ୍ବନ୍ଧରେ ସମ୍ମତି ନଥିଲେ ଉଭୟେ, କଥା ହୋଇ ଗରୁ ଚାଲିଯାଇ କିଛିଦିନ ନିଜ ମାମୁଁ କିମ୍ବା ବନ୍ଧୁଘରେ ରହନ୍ତି । ଏହା ଜାଣିପାରି ଉଭୟ ବର-କନ୍ୟାର ପିତାମାତା କଥାବାର୍ତ୍ତା କରି ଉଭୟଙ୍କ ବିବାହ କାର୍ଯ୍ୟ ବିଧିମତେ ସଂପନ୍ନ କରାଇଥାନ୍ତି ।

**ଉଦୁଲା ରାଙ୍ଗୁନି ବିଭା** - *ଦେ.ବି.* : କନ୍ୟା ଝିକି ନେଇ ବିବାହ କରିବାର ପ୍ରଥା । ପୁଅ କୌଣସି ଝିଅକୁ ମନ କଲେ ନିଜ ଲୋକ, ବନ୍ଧୁ, ମଇତ୍ର, ସାଂଗ ସାହାଯ୍ୟରେ ଝିଅକୁ ନାଟରୁ, ହାଟରୁ, ବାଟରୁ କି ଘାଟରୁ ଝିକିନେଇ ପରେ ତାକୁ ମନେଇ ବିବାହ କରିବା ପ୍ରଥା । ଏହା ବିଭିନ୍ନ ସଂପ୍ରଦାୟରେ ଦେଖାଯାଏ । ଅବଶ୍ୟ ଏଥିରେ ଝିଅର ସମ୍ମତି ଥିବା ଏକାନ୍ତ ଜରୁରୀ । ଅନେକ କ୍ଷେତ୍ରରେ ଝିକି ନେଇଥିବା ଝିଅ ଯଦି ସେଇ ପିଲାକୁ ନଚାହେଁ, ବିଧି ସମ୍ମତ ବିବାହ ପରେ ମଧ ତାକୁ ଛାଡ଼ି ଚାଲି ଆସିବାର ସ୍ୱାଧୀନତା ତା'ର ଥାଏ ।

୨୪. **ଉଦାନ୍** - *ଦେ.କ୍ରି.* : ଟାଣି କରି ଲମ୍ବା କରିବା । ଲୁହା ବା ସୁନାର ଗୋଲାକାର ବସ୍ତୁକୁ ଟାଣି କରି ବା ଲମ୍ବା କରିବା । (ହାତୁଡ଼ି ବ୍ୟବହାର ନକରି ଓସାରିଆ କରିବା / ହାତ ଦ୍ୱାରା ଏହା କରାଯାଏ)

୨୫. **ଉଦିଗଲା** - *ଦେ.କ୍ରି.* : ଉଇଁଲା, ବାହାରିଲା, ପ୍ରକାଶିତ ହେଲା - ଦେଖାଗଲା

ଆଦିବାସୀ ସମାଜରେ ଯୁବକ ଯୁବତୀ ମଧ୍ୟରେ ସଂପର୍କ ଯେମିତି ମୁକ୍ତ ଅବାଧ, ସେମିତି ତାଙ୍କର ମନର ଭାବ ପ୍ରକାଶର ରୀତି । ସମ୍ପର୍କୀୟା ମାମୁଁ ଝିଅଟି ଯଦି ଯୌବନ ପ୍ରାପ୍ତ ହୁଏ, ତାକୁ ଲକ୍ଷ୍ୟକରି ଯୁବକଟିଏ କହିଥାଏ ।

'ଉଦିଲା ବେନନି କଅଁଲି ଜନ, ଯୁବା ଧାଙ୍ଗଡ଼ାର ଫୁଟେ କୁସୁମକାଏ ଘରେ ଖାଇ ପରେ ମନ ।'

୨୬. ଉଦାସ - *ଦେ.ବିଂ.* : ଫାଙ୍କା, ଶୂନ୍ୟ, ପଡ଼ିଆ, ଜାଗା, ଖୋଲା । (ଗୋଞ୍ଜା ନ ହେବା ଅର୍ଥରେ ବ୍ୟବହାର । ଯଥା: ଗଚ୍, କୁଟମନ ମାରବାକେ ବନ୍ ଉଦାସ୍ ଅଇଗଲାଇ ।

ଅର୍ଥାତ୍ : ଗଛ ବୃକ୍ଷ କଟା ହେବା ଫଳରେ ଜଙ୍ଗଲ ଫାଙ୍କା ହୋଇଗଲା ।

୨୭. ଉଦିଲା - *ଦେ.ବି.* : ଉଇଁଲା ବା ବାହାରିଲା ବା ପ୍ରକାଶିତ ହେଲା ।

ଯଥା - ବାଟେ ବାଟେ ଗଲା ବାୟା ବାମନ

ଧାରେ ନାମତ କରି ବାମନ

ଉବିଲା କଅଁଲା ଜହ୍ନ

ତୁମର ସଂଗେ ମୁଇଁ ଢେମ୍‌ସା ନାଚିଲେ

ଡମୁରି ଫୁଲ ସମାନ । ଅର୍ଥାତ୍, ଶୁକ୍ଳ ପକ୍ଷର ପ୍ରଥମ ଦିନ ଜହ୍ନ ଉଦିତ ହେଲା । ଡିମିରି ଫୁଲ ପରି ତୋର ମୋର ଢେମ୍‌ସା ନାଚ ସମ୍ଭବ ହେଲା ନାହିଁ ।

୨୮. ଉପ୍‌କା - *ଦେ.ବି.* : ମାହାଳିଆ, ତିନିଫୁଲିଆ, ଉପୁରି ।

ବ୍ୟବହାର : ଉପ୍‌କା ଧନ୍ କରଚ୍ କରିବାକେ କାଇ ବାଦା ଲାଗ୍‌ସି ।

ଅର୍ଥାତ୍, ଉପୁରି ଆସିଥିବା ଧନ ଖର୍ଚ୍ଚ କରିବାରେ ବାଧା କେଉଁଠି ।

୨୯. ଉପକ୍‌ବା - *ଦେ.କ୍ରି.* : ପାଣିରେ ଭାସି ଯାଉଯାଉ ଉପରକୁ ଉଠିବା ।

ବ୍ୟବହାର - ପାନି ବିତରେ ବୁଡ଼ି ଯାଇ ରଇଲି କେନ୍ତିକେନ୍ତି ଆଇକରି ଉପରେ ଉପକ୍‌ଲି । ଅର୍ଥାତ୍, ପାଣିରେ ବୁଡ଼ି ଯାଇଥିଲି, କେମିତି ଯେ ଉପରକୁ ଉଠିଆସିଲି ଜାଣେ ନାହିଁ ।

୩୦. **ଉପାଡ଼ି** - ବାଉଁଶ ବା ଛଣରୁ ପ୍ରସ୍ତୁତ ଫାଶ । ଏହି ଫାଶ ସାହାଯ୍ୟରେ ବଣ କୁକୁଡ଼ା, ମୟୂର, କପୋତ ପ୍ରଭୃତି ପକ୍ଷୀଙ୍କୁ ଜୀବନ୍ତ ଧରାଯାଇଥାଏ ।

ବ୍ୟବହାର : ସେଇ ଉପାଡ଼ିକରି ଗଟେକ୍ ମଙ୍କୁର୍ ଦରିଲା ଆଚେ ।

୩୧. **ଉମ୍ / ଉମିବା / ଉମାଇବା** - *ଦେ.କ୍ରି. :* ଗମ୍‌ରା ହେବା । ଶସ୍ୟ ଖରାପ ହୋଇଯିବା । ଦାନ୍ ଉମି ଗାଲାନି । ସିଜେଇ ଦି ଆସ୍ । ବାସ୍ନା ଏଇସି । ଅର୍ଥାତ୍, ପାଣି ଲାଗି ଧାନ ଖରାପ ହୋଇଗଲାଣି । ସିଝେଇ ଦିଅ ନହେଲେ ବାସ୍ନା ହେବ ।

**ଉମାଇବା** - ପାଳରେ ଫଳ ରଖି ପଚାଇବା ।

ବ୍ୟବହାର : ଆମ୍‌ମନ୍ ଜୁରିଗାଲା ଆଚେ । ତଳିକରି ଉମାଇ ହି ଦିଆସ୍ ।

ଅର୍ଥାତ୍ : ଆମ୍ବସବୁ ପାକଳ ହୋଇ ଯାଇଛି, ତୋଳିଆଣି ପଚେଇ ଦିଅ ।

୩୨. **ଉମ୍‌ବାଇ** - *ଦେ.ବି. :* ମାଟି ଖପରାର ଉହ୍ଲେଇ । ଶୀତଦିନେ ଏଥିରେ ଅଂଗାର ରଖି ଖଟତଳେ ଥୁଆଯାଏ ଏବଂ ଘର ଗରମ୍ କରିବା ପାଇଁ ବ୍ୟବହାର ହୁଏ ।

ବ୍ୟବହାର : ଶୀତଦିନେ ବଡ଼େ ଜାଡ଼୍ । ଗଟେକ ଉମବାଇ ଆନ୍‌ବାର ହେଇସି ।

୩୩. **ଉମରକୋଟ୍** - *ଦେ.ବି. :* (ଗଣ୍ଡି) ଏକ ସ୍ଥାନ ବିଶେଷର ନାମ ।

ନବରଂଗପୁର ଜିଲ୍ଲାର ଏକ ସହର ପୂର୍ବେ ଏହା ଛତିଶଗଡ଼ ବସ୍ତର ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ନଳ ସାମ୍ରାଜ୍ୟର ପୁଷ୍କରୀଗଡ଼ (୪ର୍ଥ-୫ମ ଶତାବ୍ଦୀ) ନିକଟରେ ଭାସ୍କେଲ ନଦୀ କୂଳରେ କେଉଁ ପୂର୍ବ କାଳରେ ଛତିଶଗଡ଼ ବସ୍ତର ଜିଲ୍ଲାର କେତେକ ଗଣ୍ଡ ଆଦିବାସୀ ଗୋଷ୍ଠୀ ଉମରଗାଁରୁ ଆସି ଏଠି ଗ୍ରାମ ବସାଇ ଏହାର ନାମ ଦେଲେ ଉମରକୋଟ । କୋରାପୁଟ୍ - ବସ୍ତର ରାଜ୍ୟର ୫ଗୋଟି ଦୁର୍ଗ ମଧ୍ୟରୁ (ଚିତ୍ରକୋଟ୍, କୋଟପାଡ଼୍, ପୋଡ଼ାଗଡ଼, ରାୟଗଡ଼, ଉମର କୋଟ) ଏହା ଅନ୍ୟତମ ଥିଲା । କେହିକେହି ବିଦ୍ୱାନ ମତ ଦିଅନ୍ତି ଯେ, ଏହା କାଳିଦାସଙ୍କ ବର୍ଣ୍ଣିତ ମେଘଦୂତ କାବ୍ୟର ଆମ୍ରକୂଟ ଅଞ୍ଚଳ । ଏହା ପରବର୍ତ୍ତୀ କାଳରେ ଲୋକମୁଖରେ ଅପଭ୍ରଂଶ ହୋଇ ଉମରକୋଟରେ ପରିଣତ ହେଲା । ଏହି ଅଞ୍ଚଳ ଭତରା ଆଦିବାସୀ ଗୋଷ୍ଠୀ ବହୁଳ ଅଟେ ।

୫୦୦-୬୦୦ଖ୍ରୀ.ଅ.ରେ ନଳବଂଶୀ ରାଜାଙ୍କ ଦ୍ୱାରା ପ୍ରତିଷ୍ଠିତ ପୁଷ୍କର ରାଜ୍ୟର ରାଜଧାନୀ ଅମରକୋଟ କାଳକ୍ରମେ ଉମରକୋଟ ହୋଇଛି । ଆଦିବାସୀମାନଙ୍କ ମତରେ ଉମର ଗାଓଁ ନାମକ ଏକ ଗାଁରୁ କେତେକ ଗଣ୍ଡ ପରିବାର ପ୍ରଥମେ ଗାଁ ବସାଇଥିବାରୁ ଏହାର ନାମ 'ଉମର୍‌କୋଟ୍' ହେଲା ।

୩୪. ଉର୍‌କୁଡ଼ା - *ଦେ.ବି.* : ଅଳିଆ ଗଦା । ଇଂ. Garbage Pit, ସବୁ ମଇଳା ଯେଉଁସ୍ଥାନରେ ପକାଯାଏ । ଘରେଘରେ ବା ପ୍ରତି ଗାଁରେ ଗୋଟିଏ ଉର୍‌କୁଡ଼ା ଥାଏ । ବ୍ୟବହାର : ଉର୍‌କୁଡ଼ାଏ କାଚରା ଫିଙ୍ଗିଫିଙ୍ଗି ଜବର ଅଇ ଗାଲାନି । ବାଡ଼େ ଗଟେକ୍ କାଲ୍ କୁନ୍‌ନା, ସିତି କାଚରା ପିଙ୍ଗୁ । ଅର୍ଥାତ୍, ଅଳିଆ ଗଦାରେ ଅଳିଆ ଫିଙ୍ଗିଫିଙ୍ଗି ଭର୍ତ୍ତି ହୋଇଗଲାଣି । ବାଡ଼ିରେ ଗୋଟିଏ ଖାଲ ଖୋଳିଦେଇ ସେଠାରେ ଅଳିଆ ପକାଇବା ।

୩୫. ଉର୍‌ଲବା / ଉର୍‌ସୁଲି - *ଦେ.କ୍ରି.* : ତୋଳିବା ।

(୧) ଜଲ୍‌ଦି ଜଲ୍‌ଦି ତୋଳିବା । ଏକାଥରକେ ୪/୬ଟା ଧରି ତୋଳିବା ଶିମ୍ବ, ଜୁଡ଼ଙ୍ଗ ଇତ୍ୟାଦି ଯେଉଁ ସବୁ ପରିବା ପେନ୍ଥାପେନ୍ଥା ଫଳେ ସେଇ କ୍ଷେତ୍ରରେ ବ୍ୟବହାର ହୁଏ । ଗୋଟିଏ ଗୋଟିଏ କରି ତୋଳିବାକୁ 'ତଲ୍‌ବା' କୁହାଯାଏ ।

ଉର୍‌ସୁଲି - *ଦେ.କ୍ରି.* :

(୨) ଚମଡ଼ା ଛାଡ଼ିଯିବା ବା ଉଠିଯିବା । କେଉଁଠି ପଡ଼ିଗଲେ ବା ପୋଡ଼ିଗଲେ ଯେଉଁ ଚମଡ଼ା ଛାଡ଼ିଯାଏ, ତାକୁ ଉର୍‌ସୁଲି କହନ୍ତି ।

ବ୍ୟବହାର : (୧) ବେଗି ଉରଲ୍ ଉରଲ୍ କର । ଗୋଟେକ୍ ଗୋଟେକେ ତଲଲେ ଢିଲମ୍ ଆଇସି । ଅର୍ଥାତ୍, ଏକାଥରକେ ବେଶୀବେଶୀ ତୋଳ । ଗୋଟିଏ ଗୋଟିଏ ତୋଳିଲେ ବିଳମ୍ବ ହେବ । ବ୍ୟବହାର (୨) ଜଇ ପଡ଼ିକରି ଚାମ୍ ଉରଲି / ଉରସୁଲ୍ ଅଇଗଲା ଆଚେ । ଅର୍ଥାତ୍, ନିଆଁରେ ପୋଡ଼ିହୋଇ ଚମ ଉତାରି ଯାଇଛି ।

୩୬. ଉଲରା ପାମ୍‌ରା - *ଦେ.ବିଂ.* : କୁହାଳିଆ, ଅର୍ଥ ନବୁଝି ଯେ ବେଶୀ କଥା କହେ ।

ଯେଉଁ ଲୋକ କେତେବେଳେ କ'ଣ କହେ ତାର ଠିକଣା ନଥାଏ । ତାକୁ ଆଦୌ ପରତେ ଯିବାର ନୁହେଁ ।

ବ୍ୟବହାର : (୧) ଉଲ୍‌ରା ପାମ୍‌ରା ଲୋକ୍‌ର କଥାକେ ନ ଧରବାରହୋ । କେଡ଼େ ବେଲେ କାଇଟା କଇସି କିଛି ଠିକ୍ ଠିକନା ନାହିଁ । ଅର୍ଥାତ୍, କୁହାଳିଆ ଲୋକର କଥାକୁ ଗୁରୁତ୍ୱ ଦିଅନାହିଁ, କାରଣ ସେ କେତେବେଳେ କଣ କହେ ତା'ର ଠିକଣା ନଥାଏ ।

ଦ୍ୱିତୀୟ ଅର୍ଥ : ତୁରୁତୁରିଆ

ବ୍ୟବହାର : (୨) ଉଲ୍‌ରା ପାମରା ଲୋକ କାମ୍‌କେ ପାଓପିଟି କରି ଦେଇସି । ଅର୍ଥାତ୍, ତୁରୁତୁରିଆ ଲୋକମାନେ ଯେ କୌଣସି କାମକୁ ଯେମିତି ସେମିତି କରିଦେବେ ।

୩୭. **ଉଲସ୍ତେ** - *ଦେ. :* (ଅବ୍ୟୟ) ହଠାତ୍, ଅକସ୍ମାତ୍ ଇଂ - Suddenly, All on a sudden.

ଯଥା : (୧) ଉଲସ୍ତେ କାନ୍ କାମ୍ ନାକରା ।

(୨) ବନ୍‌ବାଟେ ଯାଇତେ ରଇଲି, ଉଲସ୍ତେ ଗୋଟେକ୍ ବାରିହା ବାଆରି ପଡ଼୍‌ଲା ।

୩୮. ଉଲାକ୍ - *ଦେ.ବି. :* ବାଷ୍ପ, ଭାତ ହାଣ୍ଡିର ବାମ୍ଫ ।

ବ୍ୟବହାର : ଆଦ୍ ବସାଇବା ଆଣ୍ଡିତାନେ ଡାବନା ଡାବି କରି ଚୁଲା ଲଗେ ବସାନକଲେ ଜବର୍ ଉଲାକ୍ ବାର୍‌ସି । ଅର୍ଥାତ୍, ଚୁଲିରେ ବସିଥିବା

ଭାତ ହାଣ୍ଡିରେ ଢାଙ୍କୁଣୀ ଦେଇ ଦେଲେ ବେଶୀ ବାମ୍ଫ ବାହାରିବ ।

୩୯. ଉଲୁ ଉଲ୍ - *ଦେ.ବି. :* ମନ୍ଦ ମନ୍ଦ (ପବନ) ସୁଲୁସୁଲିଆ ।

ଏ ଲଗେ ବସିର ତା ଟନେ । କାଇ ନିକ ଉଲୁଉଲ ପବନ ବଇଲାନି ।

ଅର୍ଥାତ୍, ଏଠାରେ ଟିକେ ବସିବା । ବଡ଼ ସୁନ୍ଦର ମନ୍ଦମନ୍ଦ ପବନ ବହିଲାଣି ।

୪୦. ଉଲୁଖୁ / ବାନାଗୁଦାନି - *ଦେ.ବି. :* କ୍ରି : ଚିତାକୁଟା କାମ - ଚିତା କୁଟେଇବା ଦେହର ବିଭିନ୍ନ ଅଂଶରେ ଚିତ୍ର ଖୋଦେଇ କରିବା । ଇଂ- Tattooing

ଆଦିବାସୀ ପରିବାରରେ ଝିଅ ଟିଏ ଯୌବନପ୍ରାପ୍ତି ହେଲେ ବା ବିବାହ ଯୋଗ୍ୟା ହୋଇଗଲେ, ନିଜ ଦେହର ବିଭିନ୍ନ ଅଂଶ ଯଥା - ଗୋଡ଼, ହାତ, ମୁହଁ,

ଜଙ୍ଘ, ପିଠି, ଛାତି ଇତ୍ୟାଦି ସ୍ଥାନରେ ବହୁବିଧ ଚିତ୍ର ଖୋଦେଇ କରିଥାନ୍ତି । ଏହାକୁ ଚିତାକୁଟା ବା 'ଉଲୁଖି' କୁହାଯାଏ । ଏହି ଚିତ୍ର ଆଙ୍କୁଥିବା ଚିତ୍ରକରକୁ 'ଗଦନା' ଓ ସ୍ତ୍ରୀ ଚିତ୍ରକାରିଣୀକୁ 'ଗଦନୀ' କୁହାଯାଇଥାଏ । ଦେହରେ ଏ ପ୍ରକାର ଚିତ୍ର ସବୁ ଖୋଦେଇ କରିବା ପାଇଁ ଏଇ ଗଦନ ବା ଗଦନୀମାନେ ଏକ ନିର୍ଦ୍ଦିଷ୍ଟ ପ୍ରଣାଳୀ ଅନୁସରଣ କରିଥାନ୍ତି । ପ୍ରଥମେ ଏମାନେ 'ଉଲୁଖି' ଅଙ୍କନ କରିବାକୁ ଚାହୁଁଥିବା ସ୍ତ୍ରୀ ଲୋକଟିର ନିର୍ଦ୍ଧାରିତ ଅଂଗରେ କଳା ରଂଗରେ ସେ କେଉଁ ପ୍ରକାର ଉଲୁଖି ଆଙ୍କିବାକୁ ଚାହୁଁଛି, ତା'ର ଏକ ରେଖାଚିତ୍ର ଅଙ୍କନ କରନ୍ତି । ଏହାପରେ 'ଗଦନା' ବା 'ଗଦନୀ' ମାନେ ହାଣ୍ଡିକଳା, ଆମ୍ବ କୋଇଲି, ଅରଖପତ୍ର ରସ, ବଟା ହଳଦୀ ଓ ଜଡ଼ା ତେଲ ପ୍ରଭୃତିକୁ ଏକତ୍ର ମିଶାଇ ପ୍ରସ୍ତୁତ କରିଥିବା ଦ୍ରବଣରେ ଏକାଠି ବନ୍ଧଳ ହୋଇଥିବା ପାଞ୍ଚ ଛଅଟି ଛୁଞ୍ଚିକୁ ବୁଡ଼ାଇ ଏହାକୁ ଗରମ କରନ୍ତି ଓ ଦେହରେ ଅଙ୍କା ଯାଇଥିବା ରେଖାଚିତ୍ର ଉପରେ ଟିକା ଦେଲାଭଳି ଫୋଡ଼ି ଚାଲନ୍ତି । ଏପରି କଲେ ଉଲୁଖି ଆଙ୍କୁଥିବା ଲୋକଟିର ଦେହକୁ ବାଧେ ନାହିଁ ଓ ଚିତ୍ରଟି ସହଜରେ ସ୍ପଷ୍ଟଭାବେ ଦେହରେ ସବୁଦିନ ପାଇଁ ଅଙ୍କା ହୋଇ ରହିଯାଏ ।

୪୧. ଉବୁରା / ଅଗର୍‌ଲା - *ଦେ.ବି. :* ବଳକା, ଅଧିକା ।

ବ୍ୟବହାର : ସବୁ ବାତ୍ ଖା । ଉବୁରା ନାଇଁ । ଅର୍ଥାତ୍ ସବୁ ଭାତଖାଇ ପକା । ଛାଡ଼ନାହିଁ ।

୪୨. ଉସ୍‌କିବା - *ଦେ.କ୍ରି. :*

ଭିତରେ ଭିତରେ ପୋକ ଖାଇବା ବା ପୋକ ମାରିବା ।

'ଦାନ୍ ପସଲ ଉସ୍‌କି ହୋଇ ମାରିଗାଲା ।' ଅର୍ଥାତ୍, ଧାନରେ ପୋକଲାଗି ସବୁଧାନ ନଷ୍ଟ ହେଲା ।





୧.	ଏଝାଡ଼ୁ - *ଦେ.ବି. :* ଦୁଇ ବା ତିନୋଟି ଦାଆ (ଇଲା) ସଦୃଶ ଅଳଙ୍କାର । ଯାହାର ବେଣ୍ଟ ରସରେ ବା ଆଲୁମିନିୟମ୍‌ରେ ତିଆରି ହୋଇଥାଏ । ଏହି ମାଳି ନାଚ ସମୟରେ ପିନ୍ଧାଯାଏ । ସମସ୍ତ ଦେଶିଆ ସମାଜରେ ଏହା ପ୍ରଚଳିତ ।

୨.	ଏଡୁ / ବାଲିସର - *ଦେ.ବି. :* ଅମାନିଆ । (୧) ଏ ପିଲା ବେଶି ଏ ଡୁହୋ / କାର କାତା ନା ମାନେ ।

ଅର୍ଥାତ୍, ଏ ପିଲା ବେଶୀ ଅମାନିଆ । କାହାରି କଥା ମାନେନାହିଁ । (୨) ନାଇଁ ବଇଲେ ମିସା ସେ ଶୁନେ ନାଇଁ, ବଡ଼େ ବଲ ସର । ଅର୍ଥାତ୍, କରନା ବୋଲି କହିଲେ ମଧ୍ୟ ନକରିବା କାମ ସେ କରେ, ବଡ଼ ହାମ୍‌ବଡ଼ା ସ୍ୱଭାବର ପିଲା ।

୩.	ଏତୁ / ଏତେଇବା - *ଦେ.କ୍ରି. :* ମନେ ପକାଇବା, ହେତୁ କରିବା

ଇଂ.- To remember, To re collect.

ବ୍ୟବହାର : ପାନି ମାରିଗଲା ଜାଂଗା କମାନି

ବିଜି ଚେଛି ଗଲି ଗୁମର ବନେ

ଏତେଇ ରଇବି ମନେମନେ ।

ଅର୍ଥାତ୍ : ଜଙ୍ଗଲ ଭିତର ପଶିଥିଲା ବେଳେ ବର୍ଷା ହୋଇଗଲା । ସେଇ ଜଙ୍ଗଲର ନାଁ ହେଲାଣି ଗୁମର ବନ । ଏତେ ବର୍ଷା ହେଲା ଯେ ସବୁଦିନେ ମନେ ରହିବା ଭଳି ବର୍ଷା ।

୪.	ଏନ୍ଦାନା (ୟେନ୍ଦାନା) - *ଦେ :* ଗୋଣ୍ଡି : କ୍ରିୟା : ନାଚିବା । ଇଂ. - To dance.

ଗୋଣ୍ଡ ପୁରୁଷମାନେ କାଠ ତିଆରି ମର୍ଦ୍ଦଳ ତଥା ମାଟି ତିଆରି ମର୍ଦ୍ଦଳ ବଜାଇ ମଝିରେ ଛିଡ଼ା ହୋଇ ଗୀତ ଗାଆନ୍ତି ଓ ସ୍ତ୍ରୀଲୋକମାନେ ଗୋଟିଏ ପାଖରେ

ଅର୍ଦ୍ଧ ବୃତ୍ତାକାରରେ ଠିଆ ହୋଇ ଗିନି ବଜାଇ ଓ ଗୀତଗାଇ ନାଚ କରନ୍ତି । ଏହାକୁ ଏନ୍‌ଦାନା / ୟେନ୍ଦାନା ବା ଗୁଟେ ପାରା ଏନ୍‌ଦାନା କୁହାଯାଏ ।

୫. ଏନ୍‌ସୁରୁଲୁ - *ଦେ.ବି.* : ଅଳଙ୍କାର ବିଶେଷ । କାନର ତଳ ଭାଗରେ ପିନ୍ଧୁଥିବା ତମ୍ବା, ପିତଳ ତିଆର କାନବଳା ।

୬. ଏର୍ - *ଦେ.ବି.* : ଗୋଣ୍ଡି : ପାଣି, ଇଂ. - Water.

(୧) ନନ୍ନା ଏରତ୍‌ତାନା : ମୁଁ ପାଣି ଆଣିଛି ।

(୨) ଏର୍‌ଦଗାନା : ପାଣି ଢାଳିବା (ପାଣି ଗିକାଇବା : ଗିକାଣି)

(୩) ଏର୍ ଦଶାନା ବିହା : ଏକ ପ୍ରକାର ବିବାହ ପ୍ରଥା ।

ଗଣ୍ଡ ସଂପ୍ରଦାୟ (ନବରଂଗପୁର ଜିଲ୍ଲା)ର ଅନ୍ୟତମ ବିବାହ ବ୍ୟବସ୍ଥା । ଏହି ବ୍ୟବସ୍ଥାରେ ବିବାହଯୋଗ୍ୟା ଝିଅର ପ୍ରସ୍ତାବ ପୁଅ ଘରୁ ଆସେ । ଜନାରି ମାହାଲା ଅନୁସାରେ ଝିଅ ପୁଅ ଘରକୁ ସାତ ଆଠଦିନ ପାଇଁ ଯାଏ ଏବଂ ଯିବାପରେ ପୁଅ ଝିଅ ଉପରେ ହଳଦୀ ପାଣି ଢାଳି ନିଜ ଘରେ ରଖିନିଏ । ଝିଅ ଆଉ ବାପଘରକୁ ଫେରେ ନାହିଁ । ପରେ ଦୁଇପକ୍ଷର ବୟସ୍କ ବ୍ୟକ୍ତିମାନେ ବସି ଏହି କାର୍ଯ୍ୟରେ ବିଚାର କରନ୍ତି । କୁଳାଚାର ଓ ସମାଜ ନିୟମାନୁଯାୟୀ ବରପକ୍ଷକୁ, କିଛି ଆର୍ଥିକ ଦଣ୍ଡ ଦେଇଥାନ୍ତି । ବରପକ୍ଷ ଏହି ଅର୍ଥ ବା ଝୋଲା କନ୍ୟା ଘରକୁ ଦେଲାପରେ ବିବାହ ସ୍ୱୀକୃତ ହୋଇଥାଏ । ଏହାକୁ 'ଠେଙ୍ଗା ଭତ୍‌ରାନି' ବିହା ବୋଲି ମଧ୍ୟ କୁହାଯାଏ ।

ଏସୁ - *ଦେ.ବି.* : ଏଇ ବର୍ଷ - ଏଇ ସମୟରେ, ଏବର, - ଆଜିକାଲିର, ବର୍ତ୍ତମାନର : ଇଂ. - Instant, of Present time.

ବର୍ତ୍ତମାନର ସମୟ ଓ ଚେତନାକୁ ନେଇ ସବୁବେଳେ ଆଦିବାସୀ ମଣିଷ ସଚେତନ ଥାଏ ଓ ସେ ସବୁବେଳେ ବର୍ତ୍ତମାନର କଥା ହିଁ ତା ଗୀତରେ କହିଥାଏ । ଯେମିତି ବ୍ୟବହାର : (୧) 'ଏସୁର ବରଷା ବଡ଼େ ବରଷା, ପାନି ମାରିଗଲା ଝାଇଁ, ଜୟପୁର ଆଣି ଝଟକ୍ ତାରା, ରଣ ବିଜୁଳି କାକେ ଧରା ଦେବ ନାହିଁ ।' ଯାହାର ଅର୍ଥ : 'ଏ ବର୍ଷର ବର୍ଷା ସବୁଠୁ ବଡ଼ ବର୍ଷା । ଝାଇଁଝାଇଁ ପାଣି ମାରୁଛି ବା ବର୍ଷା ହେଉଛି । ଏଇ ବର୍ଷା ପରି ଏବର ଜୟପୁର ଅଞ୍ଚଳର ଆଦିବାସୀ ଝିଅମାନେ । ସେମାନେ

ରୂପରେ ଗୁଣରେ ତାରାପରି ଝଟକୁ ଥିଲେ ବି ରଣ ବିଜୁଳି ପରି କାହାରିକୁ ସହଜରେ ଧରା ଦିଅନ୍ତି ନାହିଁ ଇତ୍ୟାଦି ।

ବ୍ୟବହାର : (୨) 'ଏ ସୁର ବରଷା ବଡ଼େ ବରଷା ଦୁଙ୍ଗିଆ ପାଚିଲା ନାଇଁ ଟଙ୍କାର ଦୁଙ୍ଗିଆ ଗଟେକ୍ ପତର ତକେ ଦେଲେ ମକେ ନାଇଁ ।' ବିପରୀତାର୍ଥେ : 'ପରୁ'ର ଅର୍ଥ ପୂର୍ବ ବର୍ଷ ଓ ପରାରୁ ର ଅର୍ଥ ତହିଁ ପୂର୍ବ ବର୍ଷ । ବ୍ୟବହାର : ପରୁ ପରାରୁ ନିକ ବର୍ଷା ଅଇତେ ରଇଲା, ଦାନ୍ ମାଣ୍ଡିଆ ନିକ ପାଚ୍‌ତେ ରଇଲା । ଏସୁତ ବର୍ଷା ନିକ ନାଇଁ ଆଇସିକି ନାଇଁ କି ?

□□□



୧.	ଓଚାଇବା - *ଦେ.କ୍ରି. :* ବିଛାଇବା । ଶେଯ ପାରିବା । ଇଂ. - To make the bed.

ବ୍ୟବହାର : ପିଲାଟକି ମନ୍ ଜୁମ୍ରଲେନି । ଟାଟି ଓଚେଇ ଦେସ୍ ।

ଅର୍ଥ : ପୁଅଝିଅମାନେ ଢୁଳେଇଲେଣି ଟାଟି ପାରିଦେ ।

୨.	ଓଜ୍‌ଗଲୁ - *ଦେ.ବି. :* ବିବାହ ସମୟର ଏକପ୍ରକାର କର୍ମ (ବଣ୍ଡା) : ବଣ୍ଡା କନ୍ୟା ବିବାହର ମାସେ କିମ୍ବା ଦୁଇମାସ ପୂର୍ବରୁ ବରଘରେ ପାଦଦେବା ପ୍ରଥା ରହିଆସିଛି । ଏହା ମଂଗଳବାର କିମ୍ବା ଶନିବାର ଦିନ ହୋଇଥାଏ । ମଂଗଳବାର ଦିନ ମାମୁ ଘରକୁ ଯାଇଥିଲେ, ଶନିବାର ଦିନ କନ୍ୟା ନିଜ ଘରକୁ ଫେରିଥାଏ । ଓଜଗଲୁ ଦିନ ବରପିତା କନ୍ୟାକୁ ନିଜ ଘରେ ବସାଇ ବନ୍ଧୁ ବାନ୍ଧବକୁ ଭୋଜି ଦେଇଥାଏ ।

୩.	ଓଡ଼୍‌ବା - *ଦେ.କ୍ରି. :* ପିନ୍ଧିବା, ଲୁଗା ପିନ୍ଧିବା, ଯନ୍ତା ବସାଇବା । ଇଂ.- To wear, To Put on the cloth, To Put the trap.

ଓଡ଼ା / ପିନ୍ଦାଓଡା : ଦେ. ବି. ପିନ୍ଧାଲୁଗା

ବ୍ୟବହାର : (୧) ବେଗିବେଗି ପିନ୍ଦା ଓଡ଼ା କର୍ । ବଜାର୍ ଯିବାର ଏଇସି ।

(୨) ଏ ପାଟେଇ ଗେନିକରି ଏତକ୍ ଦିନ୍ ଅଇଲାନି, କାଇ କାଜେ ଓଡୁସ୍ ନାଇଁ ।

ଅର୍ଥ : ଏଇ ଲୁଗାଟି କିଣିକରି ଏତେ ଦିନ ହେଲାଣି, କାହିଁକି ପିନ୍ଧୁ ନାହିଁ ?

୩. ଏ ବାଟେ ସବୁଦିନ୍ କାଡ଼ା ମନ ଗାଲାଇବେ । ଇତି ପାଲ୍ ଓଡୁ (ପାଲ୍- ଯନ୍ତା) ।

ଅର୍ଥ : ଏ ରାସ୍ତାରେ ସବୁଦିନେ ଠେକୁଆମାନେ ଗଲେଣି । ଏଠାରେ ଯନ୍ତା ବସାଇବା ।

୪. ଓଡ଼େସା – ଗଣ୍ଡି / ଭତ୍ରୀ : ବି (ଓଡ଼ିଆ ଭାଷା କହୁଥିବା ଅଞ୍ଚଳ) ଛତିଶଗଡ଼, ମଧ୍ୟ ପ୍ରଦେଶରୁ ଯେଉଁ ଆଦିବାସୀ ଗୋଷ୍ଠୀ ଯଥା : ଗଣ୍ଡ, ଭତରା, ହାଲ୍‌ବା ଆଦି ଓଡ଼ିଶାକୁ ବିସ୍ଥାପିତ ହୋଇ ଆସିଛନ୍ତି, ସେମାନେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ 'ଓଡ଼େଶା' ବୋଲି କହନ୍ତି । ଅର୍ଥାତ୍, ନିର୍ଦ୍ଦିଷ୍ଟ ଆଦିବାସୀ ଗୋଷ୍ଠୀର ଲୋକମୁଖରେ 'ଓଡ଼ିଶା' ଓଡେସାରେ ପରିଣତ ହୋଇଛି ।

୫. ଓଳା – *ଦେ.ବି. :* ବିବାହ ସମୟର ଏକ କର୍ମ :– ଦିନ ହେଉକି ରାତି ବିଭା ହେଉ, ବରଯାତ୍ରୀମାନେ ଗାଁରେ ପହଞ୍ଚିଲେ ଭୂମିଆ ସଂପ୍ରଦାୟର୍ କନ୍ୟାଯାତ୍ରୀମାନେ ହୁଳାଧରି ଏମାନଙ୍କୁ ପାଛୋଟିବାକୁ ଆସନ୍ତି । ତାଙ୍କୁ ବରଯାତ୍ରୀ ତରଫରୁ ୫୦ ଟଙ୍କା ବା ସେପରି କିଛି ଇନାମ୍ ଦେବାକୁ ହୁଏ ।

ଏହି ଆମନ୍ତ୍ରଣ କରିବା ପ୍ରଥାକୁ 'ଓଳା' ବୋଲି କୁହାଯାଏ । ଏହି ଶବ୍ଦ ଓଡ଼ିଆରେ ପ୍ରଚଳିତ 'ଓଳଗି' ଶବ୍ଦର ପାଖାପାଖି ଅର୍ଥ ବହନ କରିଥାଏ ।

୬. ଓଷ (ଓଷା) – *ଦେ.ବି. :* ଉପଚାର – ରୋଗ ଉପଶମ ପାଇଁ ପ୍ରୟୋଗ କରାଯାଉଥିବା ଜ୍ଞାନ କୌଶଳ ବା ଚିକିତ୍ସା : ଇଂ Treatment, ଔଷଧ, ଇଂ. Medicine

ଆଦିବାସୀ ସମାଜରେ ମଣିଷମାନେ ଯେମିତି ଈଶ୍ୱରଙ୍କ ଉପରେ ଆସ୍ଥା ସ୍ଥାପନ କରନ୍ତି ସେମିତି ପ୍ରକୃତିକୁ ମଧ୍ୟ ଆପଣାର ମଣନ୍ତି । କାହିଁ କେଉଁ ଆଦିମ କାଳରୁ ଯେତେବେଳେ ସେ କିଛି ପ୍ରକାର ଅସୁବିଧାର ସମ୍ମୁଖୀନ ହୋଇଛି ବା ରୋଗ ବାଧିକାରେ ପଡ଼ିଛି ସେତେବେଳେ ସେ ପ୍ରକୃତିରୁ କିଛି ଉପାଦାନ ସଂଗ୍ରହ କରି ନିଜକୁ ଆରୋଗ୍ୟ କରିଛି । ଅନେକ ସମୟରେ ବିଶ୍ୱାସ କରିଛି ଦିସାରୀ ଓ ଗୁରୁମାଇମାନଙ୍କ ମନ୍ତ୍ରତନ୍ତ୍ର ବିଦ୍ୟା ଉପରେ । ଅନ୍ୟ ପକ୍ଷରେ ଅନେକ ସମୟରେ ଅନ୍ୟର ମନ ଭୁଲେଇବା, ଭଲ ପାଇବା ଇତ୍ୟାଦିକୁ ବି ସେ ମନର ବଇଦ ପଣିଆ ବୋଲି ଭାବି ବସିଛି । ତେଣୁ ଆଦିବାସୀ ଲୋକ କବିଟିଏ ଗାଇଛି –

"ବାଟରେ ଘାଟରେ ଭେଲୁଆଗଛ
ଶୁଆ ଖାଇଗଲା ରସ୍
ମୁଇଁ ନାଗଁ ଜାନେ ମହନି ଓଷ୍
ମନ ଥିଲେ ଭାରି ଆସ୍ ।"

ଏଠି ଆଦିବାସୀ ଯୁବତୀଟିଏ ତାର ପ୍ରେମିକ ଯୁବକଟିକୁ କହୁଛି, ବାଟରେ ଘାଟ୍‌ରେ ଥିବା ଭାଲିଆ ଗଛରେ ପାଚିଥିବା ଭାଲିଆ ଫଳର ରସକୁ ଶୁଆ ଖାଇ ଯାଉଛି । ଅର୍ଥାତ୍ ମୋର ଯୌବନ ଅକାରଣରେ ନଷ୍ଟ ହୋଇଯାଉଛି । ମୋତେ ତୁମର ମନ ମୋହିବାର ଔଷଧ ବା ମୋହିନୀ ମନ୍ତ୍ର ଜଣନାହିଁ । ତମର ଯଦି ମୋ ପ୍ରତି ଆସକ୍ତି ଅଛି ବା ମୋର ଯୌବନ ରସ ପାନ କରିବାର ଇଚ୍ଛା ଅଛି ତେବେ ଚାଲିଆସ ।

ଆଦିବାସୀ ମଣିଷଟେ କିନ୍ତୁ ବାସ୍ତବ କ୍ଷେତ୍ରରେ ପ୍ରେମ ପ୍ରଣୟ ପାଇଁ ତା ସରଳ ପଣିଆର ଯେଉଁ ଔଷଧଟି ପ୍ରୟୋଗ କରିଥାଏ, ତାଠୁ ଶତଗୁଣରେ ସେ ଜ୍ଞାନ ଅର୍ଜନ କରିଥାଏ, ପ୍ରକୃତି କୋଳରୁ ଏସବୁ ପ୍ରାକୃତିକ ଉପାଦାନ ବା ଔଷଧ ସଂଗ୍ରହ କରି ସେ ନିଜକୁ ତଥା ନିଜ ସମାଜର ମଣିଷ ମାନଙ୍କୁ ବ୍ୟାଧି ମୁକ୍ତ କରିଥାଏ, ନିଜ ଫସଲ କ୍ଷେତକୁ ରୋଗ ପୋକ ଦାଉରୁ ରକ୍ଷା କରିଥାଏ, ନିଜର ପାଳିତ ପଶୁପକ୍ଷୀଙ୍କୁ ରୋଗ କବଳରୁ ରକ୍ଷା କରିଥାଏ । ନିଜସ୍ୱ ପରୀକ୍ଷା ନିରୀକ୍ଷା ମାଧ୍ୟମରେ ସେ ଔଷଧର ସନ୍ଧାନ ଓ ପ୍ରୟୋଗ କରିଥାଏ । ଏଇ ଯେମିତି ଧାନ ଗଛରେ ପୋକ ଲାଗିଲେ ଜମିରେ ସଲପ ଡାଳ କେଇଖଣ୍ଡ ପୋତି ଦେଇ ସେ ଫସଲକୁ ରୋଗମୁକ୍ତ କରିଚି, ତୋରାଣୀରେ ଜଡ଼ାତେଲ ମିଶାଇ ଗାଈଗୋରୁଙ୍କ ମେରୁଦଣ୍ଡରେ ଘସିଦେଇ ସେମାନଙ୍କୁ ଫାଟୁଆ ରୋଗରୁ ମୁକ୍ତ କରିପାରିଛି, କେଇବୁନ୍ଦା ପିଆଜରସ ପିଆଇ ଦେଇ କୁକୁଡ଼ା ମାନଙ୍କୁ ମରୁଡ଼ି ମୁହଁରୁ ବଞ୍ଚେଇ ଦେଇଛି । ନିଜର ନବଜାତ ଶିଶୁ ସନ୍ତାନକୁ ନିର୍ମଳ ନିରୋଗ ରଖିବାପାଇଁ ଗାଧୋଇ ଦେଇଛି ମାଣ୍ଡିଆ ଚୁନା ଲଗେଇ, ଥଣ୍ଡା କଫରୁ ରକ୍ଷା କରିବାପାଇଁ ପାଦରେ ଘଷି ଦେଇଛି ରସୁଣ ମିଶା ଫୁଟା ସୋରିଷ ତେଲ ଏବଂ ଚର୍ମରୋଗ ନହେବା ପାଇଁ ଦେହରେ ଲଗେଇ ଦେଇଛି କରଞ୍ଜ ତେଲ । ଆଜିକାଲି ଡାକ୍ତରୀ ଚିକିତ୍ସାର ଜନପ୍ରିୟତା ଏହି ଅଞ୍ଚଳରେ ଦେଖାଦେଇଥିବାରୁ ଡାକ୍ତରୀ ଔଷଧ ତଥା ଚିକିତ୍ସା ପ୍ରତି ମଧ୍ୟ ଏଇ 'ଓଷ୍ଧ୍' ଶବ୍ଦର ପ୍ରୟୋଗ କରାଯାଉଛି ।

୭. ଓ୍ୱାଏ ବଏ ଶାମ୍ - (ବଣ୍ଡା) *ଦେ.ବି.* : କନିଆ ଅଣା ଗୀତ :

ବଣ୍ଡା ଘରର ଆତ୍ମୀୟମାନେ ନୂଆ ବୋହୂକୁ ଘରକୁ ଆଣିବା ସମୟରେ ଓ୍ୱାଏ ବଏ ଶାମ ଗୀତ ଗାଇଥାନ୍ତି ।

"ଥୁଥୁର ସୁମରେ ମଏନା ଲୁଲୁଡ଼୍
ଲୁଲୁଡ଼ ସୁମଲେ ମଏନା ମାଙ୍ଗାଇ"

ଅର୍ଥାତ୍ : (ଖୋଜି ଖାଇବୁ ସୁନ୍ଦରୀ ମାଗି ଖାଇବୁ, ମାଗି ଖାଇବୁ ବୋହୂ ମିଶି ଚଳିବୁ ।)

ବଣ୍ଡା ଅଞ୍ଚଳକୁ ଛାଡ଼ି ଅର୍ଥାତ୍ ଖଇରପୁଟ ଓ ଗୋବିନ୍ଦପଲ୍ଲୀ ଅଞ୍ଚଳକୁ ଛାଡ଼ି ଅନ୍ୟତ୍ର ଏହାର ପ୍ରଚଳନ ନାହିଁ ।

୮. ଓ୍ୱାଡ଼େ - *ଦେ.ବି. :* ଦିଶାରୀ, କୋୟାମାନଙ୍କର ଗୁଣିଆ ଅନ୍ୟ ଦେଶିଆ ସଂପ୍ରଦାୟର ଶିରା ତଥା ବୈଦ୍ୟ ସ୍ଥାନୀୟ ବ୍ୟକ୍ତି । କୋୟାମାନେ ବିଶ୍ୱାସ କରନ୍ତି ଓ୍ୱାଡ଼େର ଭୟରେ ଭୂତ (ଡୁମ୍ମା) ବା ଅପଦେବତା ଛାଡ଼ି ଚାଲିଯାଏ । କେବଳ ଭୂତ ବା ଦେବତା ଧରିବା କଥା ନୁହେଁ, କାହାର ଗୋଡ଼ ଫୁଲିଲେ, କାହାର ମୁଣ୍ଡ ଧରିଲେ ବା କାହାର ପେଟ ମାରିଲେ (ପେଟ ବ୍ୟଥା) କୋୟା ବିଶ୍ୱାସ କରେ ଯେ, କିଏ ବାଣ ପେଶିବି ବା ଗୁଣି ଗାରେଡ଼ି କରିଛି । ତେଣୁ ଓ୍ୱାଡ଼େର ଆଶ୍ରୟ ନିଆଯାଏ । ଓ୍ୱାଡ଼େ ଆସି ମୟୂରପୁଚ୍ଛ ଧରି ମନ୍ତ୍ରପଢ଼େ । ଝଡ଼ା ଫୁଙ୍କା କରେ, ଦାନ୍ତରେ ପୁଳାଏ ମାଂସ କାମୁଡ଼ି କାହା ପେଟରୁ ହାଡ଼, କାହା ପାଦରୁ ବାଳ ବା କାହା ପିଠିରୁ ପୋକ ବାହାର କରିଆଣେ । ସେ ବସନ୍ତ ରୋଗରେ ପୂଜା ଭିନ୍ନେ ରକମର କରିଥାଏ । ଓ୍ୱାଡ଼େ ରୋଗୀ ନିକଟରେ ବସି କାତର ଭାବରେ ନିବେଦନ କରେ ।

‘ଢୋଢୋ ଢୋଢୋ ଜୁହାର
ଯାୟୋ ଯାୟୋ ଯାୟୋ ଜୁହାର
ଯାୟୋ ଦଂଣଓ୍ୱାଡ଼ିନ୍, ଯାୟୋ ମର୍ଦ୍ଦାଲ ରଂକେ
ଯାୟୋ ବାଂଗାଲ ପାଟନି, ଯାୟୋ କୁଆକୁଣ୍ଡିନ୍
ଯାୟୋ କଂଦା ଗାଡ଼୍‌ବୋ ଯାୟୋ ଛନାକାଟ୍‌ଲୁ
ଯାୟୋ ମାନିମ୍ କୁଣ୍ଡିନ୍, ଯାୟୋ ସିଂଧ୍ ଗୋଡ଼ିନ୍
ଯାୟୋ ଯାୟୋ ଯାୟୋ ଜୁହାର
ଜୁହାର ଜୁହାର ମା ତତେ ଜୁହାର ।’

ଅର୍ଥାତ୍, ‘ମା ଦନ୍ତାବେଡ଼ାର ଠାକୁରାଣୀ, ମା ତଂପାଲ ପାଟଣା ଠାକୁରାଣୀ, ମା ମଡ଼ଦାଂଲା ଠାକୁରାଣୀ, ମା ମାନି୍ମ କୋଣ୍ଡା ଠାକୁରାଣୀ, ତୁମମାନଙ୍କୁ ଜୁହାର, ତୁ ମୋ ରୋଗୀର କିଛି ଅନିଷ୍ଟ କରନାହିଁ ।

ଓ୍ୱାଡ଼େ ମଧ୍ୟ ନୂଆଘର ପ୍ରତିଷ୍ଠା, ବିବାହ ଯୋଗ ଓ ପୂଜାବିଧି ଯୋଗ ନିଜେ ବ୍ୟହାର କରେ । ସେ ମନ୍ତ୍ର ସାହାଯ୍ୟରେ ପ୍ରସବ କାର୍ଯ୍ୟ ଓ ଅନ୍ୟାନ୍ୟ ଚିକିତ୍ସା କାର୍ଯ୍ୟ କରିଥାଏ ।

୯. ଓ୍ୱାର୍‌ତି - *ଦେ.ବି.* : ଅଳଙ୍କାର ବିଶେଷ । ବଣ୍ଡା ରମଣୀମାନେ ପାଦଆଙ୍ଗୁଳିରେ ପିନ୍ଧୁଥିବା ରୂପା ତିଆରି ମୁଦି ।





୧.	କଅଁଲି ଜିନ୍ - *ଦେ.ବି. :* ଶୁକ୍ଳପକ୍ଷ, ଇଂ. - Lunper Fortnight

ପ୍ରତିପଦରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ସମୟକୁ କଅଁଲି ଜନ୍ କୁହାଯାଏ । ଯଥା କଅଁଲି ଜନ୍ ଉଦି ଚନେକ୍ ଚନେକ୍ ବୁଡ଼୍‌ସି ।

(୨) ନବ ଯୁବତୀ କାବ୍ୟିକ ଭାଷାରେ ଷୋଡ଼ଶୀ ଆଦ୍ୟ ଯୌବନ ପ୍ରାପ୍ତା ଯୁବତୀ, ଧାଙ୍ଗଡ଼ୀ । ଗୀତ୍‌ରେ ବ୍ୟବହାର :

ଆଲେ ତୁଇ ମୋର କଅଁଲି ଜନ୍
ତକେ ଦେକ୍‌ବାକେ ବଡ଼୍ ମନ୍ ।

୨.	କକ୍‌ଡ଼ି ଚେଣ୍ଡି - କୁଂଚ୍‌କୁଂଚିଆ ବାଳ, ଇଂ- Curly hair : ବ୍ୟବହାର : ସେ ଟକିର ଚେଣ୍ଡି କକ୍‌ଡ଼ି କକ୍‌ଡ଼ି, ଗୋଟେକ୍ ମିଶା ସଲକ୍ ନାଇଁ ।

ଚଇତି ଗୀତ : ଟକୁଆ ଗାଲ୍‌କେ ଅଲଦୀ ପାନି
କକ୍‌ଡ଼ି ଚେଣ୍ଡିକେ କସା
ମସାନି ଯିବା କେ ଦୁଇଦିନ୍ ଆଚେ
ଧାଂଡ଼ା ମନୁଷ୍‌କେ ଆଶା ।

୩.	କକ୍‌ରିୟା - ବେଶୀ କାଶୁଥିବା ବ୍ୟକ୍ତି ।

ବ୍ୟବହାର : ସେ ଡୋକ୍ରା ବଡ଼େ ମାଣ୍ଡ କକଲିସି । କକ୍‌ଲିୟଯାଟା ।

୪.	କକପେନ୍ଦି - *ଦେ.ବି. :* କକର୍ କଲିଆ, କୋକିଶିଆଳ, ଇଂ. - fox କକକ୍ କକକ୍ ବୋଲି ଶବ୍ଦ କରେ । ତେଇଁତେଇଁ କରି କାନ୍ଦେ । ଦେଖିବାକୁ ଠିକ୍ ଶୃଗାଳ ଭଳିଆ କିନ୍ତୁ ବହୁତ ଛୋଟିଆ । ଆଦିବାସୀ ପରମ୍ପରା ଅନୁଯାୟୀ ଏହି କଲିଆ ଭାରି ଅଶୁଭ । ବିଶେଷ କରି କୌଣସି ବିଭା କାର୍ଯ୍ୟରେ ବା ଅନ୍ୟ କିଛି ଶୁଭ କାର୍ଯ୍ୟରେ ବାହାରିବା ସମୟରେ ରାସ୍ତାରେ କକପେନ୍ଦି ଦେଖାଗଲା ମାନେ ସେହି ସାମାଜିକ

ସଂପର୍କ ତିଷ୍ଠିବ ନାହିଁ । ଅର୍ଥାତ୍, ନୂଆ ବୋହୂ ସଶାଶୁ ଘର ଲୋକଙ୍କର କଳି ହେବ । ତା ସ୍ୱାମୀର ବୈଧବ୍ୟ ଘଟିବ । ସେଥିପାଇଁ ପ୍ରବାଦ ରହିଛି । 'କଲିଆ ନାହିଁ ତିନିଫଲିଆ ।' ଅର୍ଥାତ୍ ଯେଉଁ କାମ ପାଇଁ ଯାଉଛୁ, କଲିଆ ବା କକପେନ୍ଦି ଭେଟିଲେ ତାହା ବୃଥା ହେବ । ତେଣୁ ଏଭଳି ଯାତ୍ରାକୁ ନିଷେଧ କରାଯାଏ ।

୫. କଙ୍କଡ଼ାପୁଟ - *ଦେ.ବି. :* ୧. ଗ୍ରାମ ବିଶେଷ । (୧) କଙ୍କଡ଼ା ପରି ପାଣି ଘେରରେ ଥିବା ଗାଁ ।

(୨) ବହୁ ପରିମାଣରେ କଙ୍କଡ଼ା ମିଳୁଥିବା ଗାଁ । କଙ୍କଡ଼ାର ପ୍ରାଧାନ୍ୟ ଓ ଉପମାକୁ ଲକ୍ଷ୍ୟକରି କଙ୍କଡ଼ାହାଣ୍ଡି, କଙ୍କଡ଼ା ଗୁଡ଼ା ଇତ୍ୟାଦି ଗ୍ରାମ ଓ ପଡ଼ା ଗାଁ ମାନ କୋରାପୁଟ ଓ ନବରଂଗପୁର ଜିଲ୍ଲାରେ ଗଢ଼ି ଉଠିଛି ।

୬. କଙ୍କାଲିନୀ ମାତା - *ଦେ.ବି. :* ଦେବୀ ବିଶେଷ ।

ଭତରା ଆଦିବାସୀ ଗୋଷ୍ଠୀର ଇଷ୍ଟଦେବୀ । ଏହି ଦେବୀ କାଳୀଙ୍କର ଅନ୍ୟ ଏକ ରୂପ ବୋଲି ଲୋକ ବିଶ୍ୱାସ । ଏହି ଦେବୀ ଗ୍ରାମ ସୀମାନ୍ତରେ ଅବସ୍ଥାପିତ ହୋଇ ପୂଜା ପାଆନ୍ତି । ସପ୍ତାହର ଗୋଟିଏ ଦିନ ଦେବୀଙ୍କୁ ଭତ୍ରା ପୂଜାରୀ ବଂଶର କୌଣସି ଲୋକ ଗ୍ରାମବାସୀଙ୍କ ଦ୍ୱାରା ମନୋନୀତ ବା ପୁରୁଷାନୁକ୍ରମେ ଉତ୍ତରାଧିକାରୀ ସୂତ୍ରରେ ପୂଜା କରିଥାନ୍ତି । କିନ୍ତୁ, ଅନ୍ୟାନ୍ୟ ସମସ୍ତ କୋରାପୁଟିଆ ଆଦିବାସୀମାନେ ମଧ୍ୟ କଙ୍କାଲିନୀ ଦେବୀଙ୍କୁ ପୂଜା କରିଥାନ୍ତି । କୋୟା ଓ୍ୱାଡ଼େମାନେ କଙ୍କାଲିନୀ ଦେବୀଙ୍କ ପାଇଁ ସ୍ୱତନ୍ତ୍ର ମନ୍ତ୍ର ପାଠ କରିଥାନ୍ତି । ବିଶେଷକରି ରୋଗ ବୈରାଗ୍ୟର ଦେବୀରୂପେ ତାଙ୍କୁ ପୂଜା କରାଯାଏ ।

୭. କଚ - / କୁରୁମା / କୁରାଂ /-

କୁଂଜେ - *ଦେ.ବି. :* ପେଚା । ଇଂ. - Owl, ପାହାନ୍ତିଆ ବେଳେ କର୍‌କଚ କର୍‌କଚ ବୋଲି ଶବ୍ଦ କରେ ବୋଲି ତାକୁ କଚ କହନ୍ତି । କଚ ଶବ୍ଦଟି ମୁଖ୍ୟତଃ କନ୍ଧ ଭାଷାରୁ ଆସିଛି । ମାଲକାନଗିରିର ପାଖାପାଖି ଅଞ୍ଚଳରେ ଏହାକୁ କହନ୍ତି କୁରାଂ । କୁରୁକୁର୍ କୁର୍‌କୁର୍ କୂର୍ କୁର୍ ଶବ୍ଦ କରୁଥାଏ । ତେଣୁ ଏହାକୁ 'କୁରାଂ' କୁଂଜେ ମଧ୍ୟ କୁହାଯାଏ । କୋୟା ଓ ଦୁରୁଆ, ହାଲ୍‌ବି ଅଧ୍ୟୁଷିତ ଅଞ୍ଚଳରେ ସେଇ ରାବ ଅନୁସାରେ

କୁହାଯାଏ କୁଂଜା ବା କୁଂଜେ । ଜୟପୁର ଅଞ୍ଚଳର ଦେଶିଆରେ ଏହାକୁ କୁରମା କହିଥାନ୍ତି ।

୮. **କଟିଆ ଟଙ୍ଗ** - *ଦେ.ବି. :* ଏକ ଝରଣାର ନାମ / ଏକ ଗାଁର ନାମ : 'ଟଙ୍ଗ୍'ର ଅର୍ଥ ଝରଣା ।

କୋୟା ଭାଷାରେ ଟଙ୍ଗ୍ର ଅର୍ଥ ହେଉଛି ଝୋଲା ବା ଝରଣା । ସାଲମି ପଞ୍ଚାୟତ ଦେଇ ବହିଯାଉଥିବା ଏହି ଝୋଲାରେ ଆଗରୁ ବହୁତ କୁଟିଆ ମାଛ ମିଳୁଥିଲେ । ଏହା ଦେଖିବାକୁ ଡୁଡୁଲାଂ ମାଛ ଭଳିଆ । ତେବେ ଆଜିକାଲି ଏହି ମାଛ ଆଉ ମିଳୁନାହାନ୍ତି । କିନ୍ତୁ ଝରଣାର ନାମ କଟିଆଟଙ୍ଗ୍ ଏବଂ ଏହା କୂଳରେ ଥିବା କୋୟା ଗାଁଟିର ନାମ ମଧ କଟିଆଟଙ୍ଗ୍ ।

୯. **କଜରିସଲପ୍** - *ଦେ.ବି. :* ଇଂ. - Wine, ଖଜୁରୀ ଗଛର ରସରୁ ତିଆରି ମଦ୍ୟ ବିଶେଷ ।

ଏହି ସଲପ୍ ପାଇବାପାଇଁ ଖଜୁରୀ ଗଛରେ ଦୁଇ ପ୍ରକାର କଟିଂ ହୁଏ । ଗୋଟିଏ ପଦ୍ଧତିରେ ଗଛ ତଳର ବୁନ୍ଦ କଟାଯାଏ । ଜମିରୁ ପ୍ରାୟ ୨ ହାତ ଉପରକୁ ଟିକିଏ ଚାଞ୍ଛି ଦେଇ ସେଠାରେ ଗୋଟିଏ ଖୁଣ୍ଟିମାରି ଦିଆଯାଏ । ଏହି ଖୁଣ୍ଟିତଳେ ହାଣ୍ଡିବାନ୍ଧି ଦିଆଯାଏ । ଦିନକୁ ପ୍ରାୟ ଗୋଟିଏ ହାଣ୍ଡି ବା ୧୦/୧୫ ଲି. ରସ ଝରିଥାଏ । ଏଥିରେ ସଲପ୍ ମସଲା ପକାଇ ପାନୀୟ ପ୍ରସ୍ତୁତ ହୁଏ ।

ଅନ୍ୟ ପଦ୍ଧତିରେ ଖଜୁରୀ ଗଛର ମୁଣ୍ଡ କାଟି ଦେଇ ବଡ଼ ଠେକିଟିଏ ବାନ୍ଧି ଦିଆଯାଏ । ଏହି ପଦ୍ଧତିରେ ଦିନକୁ ୨୦ରୁ ୨୫ଲି. ରସ ବାହାରେ । କିନ୍ତୁ ଗୋଟିଏ ବର୍ଷ ଭିତରେ ଗଛ ସଂପୂର୍ଣ୍ଣ ମରିଯାଏ । ବୁନ୍ଦକଟା ପଦ୍ଧତିରେ ଗଛର କିଛି ହୁଏ ନାହିଁ । କାରଣ ପ୍ରଥମ ବର୍ଷ ଗୋଟିଏ ପଟ ବୁନ୍ଦ କଟାହେଲେ ପରବର୍ଷ ଅନ୍ୟପଟଟି କଟାଯାଏ ଏହି ରସକୁ ଫୁଟାଇ ଗୁଡ଼ ମଧ ପ୍ରସ୍ତୁତ କରାଯାଏ । କିନ୍ତୁ ଗୁଡ଼ ପ୍ରସ୍ତୁତି ପ୍ରଣାଳୀର ପାରମ୍ପରିକ ଜ୍ଞାନ ନଥିବାରୁ ମୁଖ୍ୟତଃ ଏଥିରୁ ସଲପ ପ୍ରସ୍ତୁତ କରାଯାଇଥାଏ । ଏବେ ଏବେ କିଛି ଆଦିବାସୀ ବଂଗାଳୀ ଚାଷୀଙ୍କ ଠାରୁ ଖଜୁରୀ ଗୁଡ଼ ତିଆରି ପ୍ରଣାଳୀ ଶିଖିଛନ୍ତି । ପ୍ରଥମ ପଦ୍ଧତିରେ ବଂଗାଳୀମାନେ ରସ ମାରୁଥିବା ବେଳେ ଦ୍ୱିତୀୟ ପଦ୍ଧତିରେ

ଆଦିବାସୀମାନେ ରସ ସଂଗ୍ରହ କରିଥାନ୍ତି । ସମୁଦାୟ ସଂଗୃହୀତ ରସର ମାତ୍ର ଏକ ଚତୁର୍ଥାଂଶ ଗୁଡ଼ ତିଆରିରେ ବ୍ୟବହୃତ ହୋଇଥାଏ ।

୧୦. କଞ୍ଚା - *ଦେ.ବି. :* କୁଣ୍ଡଳ ।

ଏହାକୁ ପୁରୁଷ ଓ ସ୍ତ୍ରୀ ଉଭୟେ କାନରେ ପିନ୍ଧନ୍ତି । ଏଥିରେ ପଥର ବସା ହୋଇଥାଏ । ଏହାର ଅନ୍ୟ ଏକ ନାମ ହେଉଛି 'ଜୁଲପି' । ପ୍ରାୟ ସମସ୍ତ ଦେଶିଆ ସଂପ୍ରଦାୟ, ବିଶେଷକରି ଦୁରୁଆ ଓ କନ୍ଧ ସଂପ୍ରଦାୟରେ ଏହାର ଆଦର ବେଶୀ ।

୧୧. କଂକାଡ଼ାପୁ - *ଦେ.ବି. :* ଏହା ଏକ ପ୍ରକାର ଚାଙ୍ଗୁ ବାଦ୍ୟ । ମେରିଆ ପର୍ବ, ଘଣ୍ଟପର୍ବ, ନୂଆଖିଆ ପ୍ରଭୃତି ପର୍ବରେ ଡଙ୍ଗରିଆକନ୍ଧ ଯୁବକମାନେ କଂକା ଡାପୁ ବଜାଇଥାନ୍ତି । ନାଚଗୀତ କରିବା ସମୟରେ ଏହି ବାଦ୍ୟ ବଜା ଯାଇଥାଏ । ଏକ ଗୋଲାକାର କାଠ ବଳୟରେ ପତଳା ଗୋରୁ ଚମଡ଼ାର ଛାଉଣି କରି ଏହାକୁ କାଠିଦ୍ୱାରା ବାଦନ କରାଯାଏ । ଡାପୁ ଠାରୁ ଏହା ଆକାରରେ ଛୋଟ ।

୧୨. କଟ୍‌ନୀ ଗୀତ - *ଦେ.ବି. :* ବିବାହକାଳୀନ ଗୀତ । ଯାହା ମୁଖ୍ୟତଃ କନ୍ୟାର ମାଆ ତଥା ବରକନ୍ୟାଙ୍କର ଅନାନ୍ୟ ସଂପର୍କୀୟ ମାନେ ଗାନ କରିଥାନ୍ତି । ଝିଅକୁ ବିବାହ ଦେଲା ଦିନ ପାହାନ୍ତିଆରୁ ଝିଅର ମା, ବରର ମା ଓ ଗାଁର ଅନ୍ୟ ସ୍ତ୍ରୀମାନେ ଗାଁ ମୁଣ୍ଡରେ ନଈ କିମ୍ବା ପୋଖରୀରୁ ଗୀତ ଗାଇଗାଇ ଗରା ବା ମାଠିଆରେ ପାଣି ଆଣିବାକୁ ଯାଆନ୍ତି । ଏହି ପାଣିକୁ 'ଧରମ୍ ପାନି' କୁହାଯାଏ । ତା'ଛଡ଼ା ବେଦୀରେ ପୋତିବାପାଇଁ ମହୁଲ୍‌ଡାଳ ଭଂଗା ଯିବାର ବିଧି ପାଳନ କରାଯାଏ । ଏଥିପାଇଁ ମଧ୍ୟ ସେମାନେ କଟ୍‌ନୀ ଗୀତ ଗାଇଥାନ୍ତି । ଏହି ବିବାହ ସମ୍ବନ୍ଧିତ ଗୀତ ଅଟେ ।

ଯଥା : ଅଏଲି ମାରିଲୁ ସରିର ଜମନା
କାଇ ପାରାରେ ନାଇଁ, କାଇ ପାରାରେ ନାଇଁ,
ସିତାଲି ବେଲାରେ ଅଏଲି ମାରାରେ,
ପାଟ ବାଲିସୁଆ ଦୂରେ ଯାଏ ନାଇଁ ଦୂରେ ଯାଏ ନାଇଁ । (ଉଲୁଉଲି)
(ଗୀତ ପରେପରେ ହୁଳହୁଳି ଦିଆଯାଏ ।)

ଅର୍ଥାତ୍, ଗୀତ ଗାଇଲୁ, ସାଂଗ ଲୋକ / ଗୀତ ଗାଇଲୁ / କେମିତି ସେ ଗୀତ / ସକାଳ ପାହାନ୍ତା ଗୀତରେ ସାଂଗ / ସକାଳ ପାହାନ୍ତା ଗୀତ / ଝିଅ ବରପାଇଁ ଗାଇଲୁ ଗୀତ । ନ ଯାଉ ସେ ଦୂରଦେଶ । ଦିଅ ହୁଳହୁଳି ଦିଅ ।

୧୩. କଟନିପଦର - *ଦେ.ବି. :* ଗୋଟିଏ ଗାଁର ନାମ । ବର୍ତ୍ତମାନ ଏହା ମାଲକାନଗିରି ଜିଲ୍ଲାରେ ଅବସ୍ଥିତ ।

ଧାନ କୁଟିବା ଲାଗି ବ୍ୟବହୃତ ହାତ ଢେଙ୍କିକୁ ଦେଶିଆ ଭାଷାରେ କହନ୍ତି କଟନି । ଏହି କାଠ ତିଆରି କଟ୍‌ନି ଯନ୍ତର ପ୍ରଚଳନ ପ୍ରଥମେ ଯେଉଁ ଗାଁରେ କରାଯାଇଥିଲା ତାହା ଏହି କଟ୍‌ନି ପଦର ବୋଲି ପ୍ରବାଦ ରହିଛି । ଏହି କଟ୍‌ନିର ଅଗ୍ର ଭାଗରେ ଢେଙ୍କି ଭଳି ସମା ଲାଗି ନଥାଏ । ଏଥିରେ ଧାନକୁ ଛାଡ଼ି ମାଣ୍ଡିଆ, ସୁଆଁ ଓ ଅନ୍ୟାନ୍ୟ ଶସ୍ୟ ମଧ୍ଯ କୁଟାଯାଇଥାଏ । ଏବେଏବେ ଧାନ ମିଲମାନଙ୍କ ପ୍ରଚଳନ ଫଳରେ ଏହା ଲୋପ ପାଇବାକୁ ବସିଛି । କିନ୍ତୁ ମାଣ୍ଡିଆ ଓ ସୁଆଁ ଇତ୍ୟାଦି କ୍ଷେତ୍ରରେ ଏହା ଏବେବି ବ୍ୟବହୃତ ହେଉଛି ।

ହାଲ୍‌ବି ଭାଷାରେ ପଦରର ଅର୍ଥ ହେଉଛି, ତୋଟା, କଟ୍‌ନି ପଦର ଗାଁଟି ଏଭଳି ଏକ ଫଳବୃକ୍ଷର ତୋଟା ଭିତରେ ସ୍ଥାପିତ ହୋଇଥିଲା । ଏହା ମୁଖ୍ୟତଃ ଡମ ଅଧ୍ୟୁଷିତ ଏକ ଗାଁ । ବର୍ତ୍ତମାନ ଏହା ଏକ ପଞ୍ଚାୟତରେ ପରିଣତ ହୋଇଛି ।

୧୪. କଟାର /ଲାଡ଼ି - *ଦେ.ବି. :* ଇଂ- Harvesting Yard : ଧାନ ଅମଳ ଖଳା, ଖୋଲା ସଫା ସ୍ଥାନ : ଧାନଗଦା ମାରି ରଖିବା ବିରି, ମୁଗ, କୋଳଥକୁ ପିଟିବା କାମ ଗ୍ରାମର ଯେଉଁ ସ୍ଥାନରେ କରାଯାଏ । ଧାନ କାଟିଲା ପରେ ଅମଳ ସମୟରେ କଟାର ଯାତ୍‌ରା କରାଯାଏ । ପ୍ରତ୍ୟେକ ଚାଷୀର ନିଜସ୍ୱ କଟାର ରହିଥାଏ ।

୧୫. କଟାର ଯାତରା - ଖଳା ଯାତ୍ରା, ଧାନ ଅମଳ ପାଇଁ ଧାନ ମଳିବାର ଶେଷଦିନ ଖଳାରେ ବିଭିନ୍ନ ଦେବଦେବୀଙ୍କୁ କୁକୁଡ଼ା, ମଦ, ଛେଳି, ମେଣ୍ଢା ଦେଇ ପୂଜା କରାଯାଏ । ଧାନକଟା ଓ ଅମଳ କାର୍ଯ୍ୟକ୍ଷହ ଯେଉଁ ଗାଁ ଭାଇଭଉଣୀ ବା ଅନ୍ୟ ଗାଁର କୁଲି ମଜୁରିଆ / ଭାଇବନ୍ଧୁମାନେ ସାହାଯ୍ୟ କରିଥାନ୍ତି, ସେ ସଭିଙ୍କୁ ଡାକି ଏକ ବଡ଼ ଭୋଜି ଦିଆଯାଏ । ଏଥିରେ ମାଂସ ଓ ମଦ ନିଶ୍ଚିତ ଭାବରେ ପରିବେଷଣ କରାଯାଏ ।

୧୬. କଟି - *ଦେ.ବି. :* କଂଜୁସ, କୃପଣ । ଇଂ. - Miser

ବ୍ୟବହାର : "ଏ ବଡ଼େ କଟି ହୋ । ଆଣେ ଡାବୁ ମିଶା ବାହାର୍ ନ କରେ । ମରବା ଲୋକ୍‌କେ ମର୍ ବଲ୍‌ସି ସିନା, ଅଣେକ୍ କରଚ୍ ନ କରେ ।"

୧୭. କଟିଂ - ଦେ.ବି. : ବାଉଁଶ ଚାଉଳ ।

ବାଉଁଶ ଗଛ ଜୁରିଯିବା ପରେ ଫୁଲ ଫୁଟି ସେଥିରେ ହେଉଥିବା ମଞ୍ଜିକୁ କଟିଂ କୁହାଯାଏ । ଏହା କଟିଂକୁ ମୂଷଳରେ କୁଟ୍‌କୁଟି ଚୋପା ଛଡ଼ାଇ ଚାଉଳ କରାଯାଏ । ଏହାକୁ ଗୁଣ୍ଡ କରି ଏଥିରେ ପେଜ ମଧ ପ୍ରସ୍ତୁତ ହୁଏ । ଏହି ଚାଉଳରୁ ଭାତକରି ପୂର୍ବକାଳରେ ଖିଆଯାଉଥିଲା । ଏବେ ମଧ ଅଭାବ ସମୟରେ ଏହା ଖିଆଯାଉଛି ।

୧୮. କଡ଼୍‌ଆ / କଡ଼ା / ଖଡ଼ା / କାଡ଼ା - ଦେ.ବି. : ଠେକୁଆ, ଏକପ୍ରକାର ତୃଣଭୋଜୀ ପ୍ରାଣୀ ଇଂ. - Rabbit

ଜଙ୍ଗଲ କାଡ଼ା ଧୂସର୍ ରଂଗର ହୋଇଥାନ୍ତି ଓ ଜଂଗଲ ସହ ମିଶି ଯାଆନ୍ତି । ଏମାନଙ୍କର ଓଜନ ତିନିରୁ ଚାରି କେ.ଜି. ହୋଇଥାଏ । ଏମାନଙ୍କୁ ଶିକାର କରିବାପାଇଁ ଆଦିବାସୀଙ୍କର ବେଶୀ ଶରଧା । ଶିକାର ଲାଗି ସାମାନ୍ୟ ଟେକା ଯଥେଷ୍ଟ । ସେଥିପାଇଁ ପ୍ରବାଦ ଅଛି :

"କାଡ଼ାକେ କାବଡ଼୍
ରାଣାକେ ଚାପଡ଼୍ ।"

ଅର୍ଥାତ୍ କାଡ଼ାକୁ ଗୋଟିଏ ଲାଠି ବା ଫାପଡ଼ ଯଥେଷ୍ଟ । ରାଣା ବା ରଣା ଜାତିର ଲୋକଙ୍କୁ ଗୋଟିଏ ଚାପଡ଼ ଯଥେଷ୍ଟ ଶାସ୍ତି ହୋଇଥାଏ ।

ପୁଣି : "ଗାଁକେ ରାଣା ଚତୁର

ବନ୍‌କେ କାଡ଼ା ଚତୁର ।" ଅର୍ଥାତ୍ ଗାଁରେ ରଣା ମାନଙ୍କଠୁ ଚତୁର କେହିନାହିଁ । ସେହିପରି ଜଙ୍ଗଲରେ କାଡ଼ାଠୁ ଚତୁର କେହିନାହିଁ ।

ଉଦାହରଣ :
ଖମନ ନେ ଖଡ଼ା ରହତ (ବଣରେ ଠେକୁଆ ରହନ୍ତି)
ଖଡ଼ା ଶବ୍ଦକୁ ନେଇ ଗୋଟିଏ ପହେଳି
ମର୍‌ଲା ମନୁସ୍ ଖଡ଼ା ମାରେ ।
ଜୀଉତା ମନୁଷ ଖାଏ
ଇ ଦାନ୍ଧାକେ ନାଇଁ ଜାନ୍‌ଲେ

ଏ ଇନମ କୟଦି ଯାଏ ।

ମଲା ମଣିଷ ଯେ ଠେକୁଆ ମାରେ । ଜୀଅଁତା ମଣିଷ ଖାଏ, ଏହି ପହେଲିକୁ କହି ନ ପାରିଲେ ଫାଶିଦଣ୍ଡ ପାଇଥାଏ ।)

୧୯. **କଡ଼ପ୍‌ବୋରା** - *ଦେ.ବି. :* ଧାନଗଦା ଧାନ କାଟିକାଟି କରି ରଖିବା ଗଦାକୁ କଡ଼ପା କୁହାଯାଏ । ବିଡ଼ା ବାନ୍ଧିଦେଲେ ତାହା ହୁଏ ବାରା ।

ବ୍ୟବହାର : କଡ଼୍‌ପା ଇତିସିଡି ସଂଗା ନାଇଁ । ବାରା ବାନ୍ଦବାକେ ହରବର ।'

୨୦. **କଡ଼ମା** - *ଦେ.ବି. :* ବଡ଼ ମୁହଁ ବାଲା ହାଣ୍ଡି । ଗାଧୋଇବା ପାଣି ଗରମ କରାଯାଏ । ମାଟିରେ ତିଆରି । ବାସନକୁସନ ଧୋଇବା ପାଇଁ ଓ ଗୋଡ଼ ହାତ୍ ଧୋଇବାପାଇଁ ମଧ୍ୟ ବ୍ୟବହାର ହୁଏ । ଏହା ସବୁବେଳେ ବାହାରେ ଅର୍ଥାତ୍, ଘର ଅଗଣାରେ ବସିଥାଏ ।

ବ୍ୟବହାର : କଡ଼୍‌ମା ଟାନନୁ ପାନି ଆନ୍ । ଆତ୍‌ଗୋଡ଼୍ ଦଇବାର ଅଇସି । ଅର୍ଥାତ୍, ଗରମପାଣି ହାଣ୍ଡିରୁ ପାଣି ଆଣ । ହାତ ଗୋଡ଼ ଧୋଇବି ।

୨୧. **କଡୁ** - *ଦେ.ବି. :* ହାତ କିମ୍ବା ଗୋଡ଼ରେ ପିନ୍ଧୁଥିବା ରସ, ପିତଳ ବା ଲୁହାବଳା । ଇଂ. - Bracelet.

ବିବାହିତା ଓ ଅବିବାହିତା ସମସ୍ତେ ଏହା ପିନ୍ଧନ୍ତି । କେବଳ ବିଧବାମାନେ ସ୍ୱାମୀ ମରିଯିବାର ଦଶଦିନ ପର୍ଯ୍ୟନ୍ତ ଏହା ଓହ୍ଲାଇ ଦିଅନ୍ତି । ଦଶାକାମ ସରିବା ପରେ ଦିଅର ତାକୁ କାଚମାଳି ଦିଏ । ତାପରଠୁଁ ପୁଣି ସେ ସବୁ ଗହଣା ପିନ୍ଧେ । ଅଣଆଦିବାସୀ ବିଧବାମାନଙ୍କ ଭଳି ଆଦିବାସୀ ବିଧବାମାନଙ୍କ ପାଇଁ ଗହଣା ବା ରଂଗଲୁଗା ପିନ୍ଧିବାରେ କିଛି ବାରଣ ନଥାଏ । ଏପିରିକି ବି ପୁର୍ନବିବାହ ପାଇଁ ମଧ୍ୟ ବାରଣ ନଥାଏ ।

୨୨. **କଣ୍ଟାଦୋଳି** - *ଦେ.ବି. :* ଧର୍ମୀୟ କାର୍ଯ୍ୟରେ ବ୍ୟବହୃତ କଣ୍ଟା ନିର୍ମିତ ଦୋଳି । ଜଙ୍ଗଲର ପିଲାହାର୍‌ନି ନାମକ ତୀକ୍ଷ୍ଣ କଣ୍ଟାରେ ଏହା ନିର୍ମିତ ହୋଇଥାଏ । ବାଲିଯାତ୍ରାରେ, ସୂତା ଛିଂଇାନି, କୁଲାଧୋଅନିବା ବାଟବିଭା ଆଦି ଧର୍ମୀୟ ଉତ୍ସବାନୁଷ୍ଠାନ ଗୁଡ଼ିକରେ ଗୁରୁମାଇ ଓ କେତେକ କ୍ଷେତ୍ରରେ ପୂଜାରୀଙ୍କୁ କାଳିସୀ ଲାଗିବା ସମୟରେ ନାଚ, କରି କଣ୍ଟା ନିର୍ମିତ ଦୋଳିରେ ବିଶ୍ରାମ ନିଅନ୍ତି । ଏହି ପଦ୍ଧତିରେ ଗୁରୁମାଇ ବା

ସିରାମାନେ ନିଜର ଅଲୌକିକତା ପ୍ରଦର୍ଶନ କରିଥାନ୍ତି, ଓଡ଼ିଶାର ଝାମୁଯାତ୍ରାରେ ଏହି ପରମ୍ପରାର ପ୍ରତିଫଳନ ଦେଖିବାକୁ ମିଳେ ।

୨୩. କଣ୍ଟା ଧୁତ୍‌ରା - *ଦେ.ବି.* : କଣ୍ଟା ଥିବା ଦୁଦୁରା ଗଛ, ବ୍ରହ୍ମଦଣ୍ଡା - ଚର୍ମରୋଗ ପାଇଁ ଉପଯୋଗୀ ।

୨୪. କଣ୍ଟାକୁର୍ଚି - *ଦେ.ବି.* : ଦ୍ରଷ୍ଟବ୍ୟ କୁର୍ଚି ।

୨୫. କଣ୍ଡେଇ୍ ପୂଜା - *ଦେ.ବି.* : ବାସୀପୂଜା ଯାହା ଡୁମା ବା ପୂର୍ବପୁରୁଷଙ୍କ ପ୍ରତି ଉଦ୍ଦିଷ୍ଟ । ଅସା ପରବ ବାସିଦିନ କରଡ଼ି ସହ କଣ୍ଡେଇ୍ ଡାଳ ମିଶାଇ କ୍ଷୀର ପକାଇ ବ୍ୟଞ୍ଜନ ପ୍ରସ୍ତୁତ କରାଯାଏ । ଫୁଟେ ଦୁଇଫୁଟ ଉଚ୍ଚର ଛୋଟ ମଞ୍ଚାକରି ମଞ୍ଚା ଉପରେ ଚରୁଭାତ ଓ କରଡ଼ଇ କଣ୍ଡେଇ୍ ତରକାରୀ ଆନିଦାଦିଙ୍କର ଡୁମାଙ୍କୁ ପୂଜା ଦିଆଯାଏ । ବହୁ ପୁରୁଣା ଆନିଦାଦିଙ୍କ ନାମ ଡାକି ଏହି ଚରୁ ଓ ତରକାରୀ ଅର୍ପଣ କରାଯାଏ ।

୨୬. କଣ୍ଡେଲ୍‌ପେନ୍ - ଗଣ୍ଡି ବିଶେଷ୍ୟ : କୁଣ୍ଡିଦେ ଓ (କୁଣ୍ଡିଦେବତା) କଣ୍ଡେଲ୍‌ପେନ୍ ଗଣ୍ଡ ଆଦିବାସୀ ଗୋଷ୍ଠୀର ଦେବୀ । ମାତା କଣ୍ଡେଲ୍‌ପେନ୍ ମାତା ଆଦ୍ୟାଶକ୍ତିଙ୍କ ସ୍ୱରୂପ ବୋଲି ଗଣ୍ଡ ସ୍ତ୍ରୀମାନେ ବିଶ୍ୱାସ କରନ୍ତି । ଏହି ଦେବୀ କେବଳ ସ୍ତ୍ରୀମାନଙ୍କ ଦ୍ୱାରା ପୂଜା ପାଇଥାନ୍ତି । ପ୍ରତି ତିନିବର୍ଷରେ ଥରେ ଏହି ଦେବୀଙ୍କ ପୂଜା ଅର୍ଚ୍ଚନା ହୋଇଥାଏ । ଏହି ଦେବୀଙ୍କୁ ସନ୍ତୁଷ୍ଟ କରିବାପାଇଁ ବଳିଭୋଗ ଦିଆଯାଇଥାଏ । ନବରଂଗପୁର ଜିଲ୍ଲା ଉପାନ୍ତରେ ଗଣ୍ଡ ଅଧ୍ୟୁଷିତ ଅଞ୍ଚଳରେ ଗ୍ରାମ ବାହାରେ ଏହି ଦେବୀଙ୍କ ଅବସ୍ଥାନ ହୋଇଥାଏ ।

୨୭. କଡି - *ଦେ.ବି.* : କାନ୍ଥ ବା କୌଣସି କ୍ଷେତ୍ରର ଚାରିପଟ । ଜମି ଚାରିପଟେ ଯେଉଁ ହିଡ଼ ଦିଆଯାଇ ଜମିକୁ ଚିହ୍ନଟ କରାଯାଏ, ସେହି ହିଡ଼ର ଚାରିପାଖକୁ କଡି କୁହାଯାଏ । ଘର କାନ୍ଥର ଚାରିପାଖକୁ ମଧ୍ୟ କଡି କୁହଯାଇଥାଏ । ଘର ଚାରିପଟେ ମାଟି ନିର୍ମିତ ତିନିଚାରିଫୁଟ ଉଚ୍ଚର ଛପର ଯୁକ୍ତ ଅଧାକାନ୍ଥକୁ ମଧ୍ୟ କଡି କୁହାଯାଏ ।

୨୮. କଦ୍‌ରା - *ଦେ.ବି.* : ଖାଲ, କୌଣସି ସମତଳ ଜାଗାରୁ କିଛି ମାଟି ଉଠାଇ ଦେବା ପରେ ତାହା କଦରାରେ ପରିଣତ ହୁଏ ।

ବ୍ୟବହାର : ଦାଣ୍ଡ୍ କଦ୍‌ରା ଏଇକରି କାଦ୍ ଏଇ ଗଲାନି । ବାଲିଆନି କରି ପାକା ।

୨୯. କଦ - *ଦେ.ବି. :* ଏକ ପ୍ରକାର ତୃଣଜ ଶସ୍ୟ । ଦେଖିବାକୁ ଘାସମଂଜି ଭଳି । ଗୋଟିଏ ପ୍ରକାର ଘାସର ଗର୍ଭ ଭିତରେ ଫଳେ । କଦ ଭଳି ଆଉ ଏକ ପ୍ରକାରର ଘାସ ମଂଜି ହେଉଛି 'ଜିପା' । କଦର ମୁହଁ ଦୁଇପଟେ, କିନ୍ତୁ ପିଠି ଲଗାଲଗି । ହେଲେ ଜିପା ହେଉଛି ଛାଡ଼ାଛଡ଼ା । କଦ ମାଣ୍ଡିଆ ଭଳି ଦେଖାଯାଏ, କିନ୍ତୁ ଟିକିଏ ଚେପ୍‌ଟା । ଜିପା ପୁରା ମାଣ୍ଡିଆ ଭଳି । ଧାନ ଓ ମାଣ୍ଡିଆ ଖେତରେ ଏହା ହୋଇଥାଏ । ଜଂଗଲରୁ ମଧ୍ୟ ଏହା ସଂଗ୍ରହ କରାଯାଏ । ଏହାକୁ ସିଝାଇ ଭାତ ଭଳି ଖିଆଯାଏ । କଦ ଟାଣରହେ ଏବଂ ଜିପା ଭଲ ସିଝିଯାଏ । କଦ ବିଷୟରେ ଗୋଟିଏ ଲୋକପ୍ରିୟ ଢଗ ହେଉଛି : 'ଦୁଇ ଭାଇକେ ଗୋଟେକ୍ ପିଟି' । ପୂର୍ବରୁ ଏହି କଦ ଓ ଜିପା ଭଳି ଘାସମଂଜି ହିଁ ଆଦିବାସୀର ଅନ୍ୟତମ ଖାଦ୍ୟରୂପେ ବ୍ୟବହୃତ ହେଉଥିଲା । ଏହାକୁ ଆଦିମ ଜାତୀୟ ଧାନବିଶେଷ କୁହାଯାଇପାରେ ।

୩୦. କନ୍ୟା ଅଝାନି - *ଦେ.ବି. :* (୧) କଂସା ବାସନ ଅର୍ଥରେ ଭତରା ମାନଙ୍କ ଦ୍ୱାରା ବ୍ୟବହୃତ । (୨) ଭତରା ସଂପ୍ରଦାୟରେ ପ୍ରଚଳିତ ବିବାହ ବେଳର ଏକପ୍ରକାର ବିଧି । ଏହି ବିଧି ଅନୁଯାୟୀ ପାଶୋରିଯାଏ ବା ହଜାଇଦିଏ । ବରକନ୍ୟାକୁ ଧରି ନିଜ ଘରକୁ ଫେରିବାବେଳେ ବାଟରେ ଜାଣିଜାଣି କନ୍ୟାକୁ ପାଶୋରି ଯାଏ ଓ ଏକୁଟିଆ ଘରକୁ ଫେରେ । କନ୍ୟା ବାଟରେ କୌଣସି ଏକ ଗାଁରେ କାହାଘରେ ରହିଯାଇଥାଏ । ବରଘରକୁ ଫେରିଲେ ତା'ର ଗୁରୁଜନ କନ୍ୟାକାହିଁ ବୋଲି ପଚାରନ୍ତି ଏବଂ ବରର ଭୁଲ୍‌ପଣ ଯୋଗୁଁ ତାକୁ ଗାଳିଗୁଲଜ କରନ୍ତି । ପରେ କନ୍ୟାପକ୍ଷର ମାଆଲା କାରିଆ (ମଧ୍ୟସ୍ଥ) ଆସି 'ଆମର ଝିଅ କୁଆଡ଼େ ଗଲା ? ତୁ ଏବେଠାରୁ ଏମିତି ଭୁଲାମନ କେମିତି ? ଘରସଂସାର କିପରି କରିବୁ ?' ବୋଲି ବରକୁ ଗାଳି ଦିଅନ୍ତି । ପରେ ବର ଭୁଲ୍ ମାଗେ । ଏବଂ କନ୍ୟା ପାଖକୁ ଯାଇ କନ୍ୟାର ହାତଧରି ନିଜ ଘରକୁ ନେଇଆସେ ।

୩୧. କନିଆଝିକା - *ଦେ.ବି. :* ବିବାହ ଉଦ୍ଦେଶ୍ୟରେ କୌଣସି ଝିଅକୁ ଝିକି ନେବା, ଇଂ. - Kidnapping.

ଏହି ପରମ୍ପରା ଅନୁଯାୟୀ ଆଦିବାସୀ ଯୁବକଟିଏ ନିଜ ପସନ୍ଦର ଯୁବତୀଟିକୁ ପାଇଲେ ତାକୁ ବିଭା ହେବାପାଇଁ ତା'ର ମତାମତ ଲୋଡ଼ିଥାଏ । ଯୁବତୀ ରାଜିଥିଲେ

ସିଏ ପ୍ରସ୍ତାବ ପକାଏ । ଯଦି ପ୍ରସ୍ତାବରେ କନ୍ୟାଘର ଲୋକେ ସମ୍ମତି ପ୍ରଦାନ ନକରନ୍ତି, ତେବେ କୌଣସି ଯାତ୍ରା, ମେଳା, ହାଟ, ବଜାର, ଉତ୍ସବ, ନାଚଗୀତ ଆଦି ସ୍ଥାନରୁ ନିଜ ସାଂଗସାଥୀଙ୍କ ସହ ଆସି କନ୍ୟାକୁ ତା ସାଂଗସାଥୀମାନଙ୍କ ମେଳରୁ ହାତଧରି ଟାଣିନେଇଥାଏ । ଏଇ ଟାଣିବା ବା ଝିଙ୍କିବା ବେଳେ ଧାଙ୍ଗଡ଼ା ଏକୁଟିଆ ଧାଙ୍ଗିଡ଼ିର ହାତ ଧରି ଟାଣୁଥାଏ । ଅନ୍ୟପଟେ ଧାଙ୍ଗିଡ଼ୀର ସାଥୀମାନେ ଧାଙ୍ଗଡ଼ାକୁ ବିଧା ଚାପୁଡ଼ା ମାରି ତା କବଳରୁ ନିଜର ସାଥୀକୁ ମୁକୁଳେଇ ନେବାକୁ ଚେଷ୍ଟା କରନ୍ତି । ସମସ୍ତ ଧାଙ୍ଗିଡ଼ୀମାନଙ୍କ ମାଡ଼ଗାଳି ସହି ସବୁପ୍ରକାର ବାଧାବିଘ୍ନକୁ ଏଡ଼େଇ ଦେଇ ଯଦି ଧାଙ୍ଗଡ଼ାଟି ଧାଙ୍ଗିଡ଼ୀକୁ ନେଇ ଯାଇପାରିଲା, ତେବେ ସେ ତାକୁ ଗନ୍ଧର୍ବ ରୀତିରେ ବିବାହ କରିଥାଏ ଓ ବରପକ୍ଷ ସେହି କନ୍ୟାକୁ ସ୍ୱାଗତ କରିଥାନ୍ତି । କନ୍ୟାପକ୍ଷ ମଧ ପରେ ବରଘରକୁ ଆସି ନିଜର ଜଲା ଟଙ୍କା ସଂଗ୍ରହ କରି ଏହି ବିବାହକୁ ସମ୍ମତି ପ୍ରଦାନ କରିଥାନ୍ତି । ଏହି ବିବାହ ପ୍ରଥା ମୁଖ୍ୟତଃ ପରଜା, କନ୍ଧ, କୋୟା, ଦୁରୁଆ, ହାଲ୍‌ବୀ ଆଦି ସଂପ୍ରଦାୟରେ ପ୍ରଚଳିତ । ଉଦ୍‌ଲିଆ ବିବାହରେ କନ୍ୟା ସାହସ କରି ଏକା ଏକା ଘରଛାଡ଼ି ମନପସନ୍ଦ ପୁରୁଷ ସହ ଚାଲିଯାଉଥିବା ବେଳେ କନିଆଝିକା ପ୍ରଥାରେ ଝିଅଟି ପୁରୁଷର ବଳ ପ୍ରୟୋଗର ଆଳ ନେଇଥାଏ । (ଦ୍ରଷ୍ଟବ୍ୟ ଉଦ୍‌ଲିଆ ବିଭା)

୩୨. କନ୍ଦ - *ଦେ.ବି.* : (୧) କନ୍ଧଜାତି, କୁଟିଆ କନ୍ଧ, ଡଙ୍ଗରିଆ କନ୍ଧ, ଦେସି କନ୍ଧ ଓ ଦେଢ଼ିଆ କନ୍ଧ ଇତ୍ୟାଦି ଚାରି ପ୍ରକାର କନ୍ଧ ଦେଖାଯାନ୍ତି । ଦେସି କନ୍ଧ ଓ ଦେଢ଼ିଆ କନ୍ଧ ଅଛନ୍ତି କୋରାପୁଟ କଳାହାଣ୍ଡି ଓ ମାଲକାନଗିରି ଜିଲ୍ଲାରେ ନବରଂଗପୁରରେ ମଧ ଏମାନେ ଏହି ଜିଲ୍ଲାମାନଙ୍କରୁ ଯାଇ ରହିଯାଇଛନ୍ତି । ଅନେକ କନ୍ଧ ବସତି ରାଇଘର ବ୍ଲକର ଜଙ୍ଗଲମାନଙ୍କରେ ଗଢ଼ି ଉଠିଛି । କୁଟିଆ କନ୍ଧ ଅଛନ୍ତି ଫୁଲବାଣୀରେ । ଡଙ୍ଗରିଆ କନ୍ଧ ବା ସଉରା କନ୍ଧ ରାୟଗଡ଼ା ଜିଲ୍ଲାରେ ରହିଛନ୍ତି । ଏ ସମସ୍ତଙ୍କ ସଂସ୍କୃତି ଓ ପରମ୍ପରା ଗୋଟିଏ । କିନ୍ତୁ ଭାଷା ଅଲଗା ଅଲଗା । ତେବେ ମୁଖ୍ୟତଃ କୁଇ ଓ କୁଭି ଏହି ଦୁଇ ଭାଷା କନ୍ଧ ମାନଙ୍କ ମଧରେ ପ୍ରଚଳିତ । ତଥାପି କନ୍ଧ ଗୋଷ୍ଠୀ ମଧରେ ଭାଷାଗତ ପାର୍ଥକ୍ୟ ଦେଖିବାକୁ ମିଳେ । ଏମାନଙ୍କ ସଂପର୍କରେ କୁହାଯାଏ : *"ଆଖି ଥାଉଥାଉ ଅନ୍ଧ, ବୁଦ୍ଧି ଥାଉ ଥାଉ କନ୍ଧ ।"*

ଅର୍ଥାତ୍ କନ୍ଧମାନେ ଏତେ ସରଳ ବିଶ୍ୱାସୀ ଯେ, ସେମାନେ ସହଜରେ ଠକି ହୋଇଯାଆନ୍ତି

କନ୍ଦ - *ଦେ.ବି.* (୨) କାନ୍ଧ : ମଣିଷର ଅଙ୍ଗ ବିଶେଷ,ଇଂ. shoulder.

ବ୍ୟବହାର : କାଉଡ଼ିବଡ଼୍ ବୋଇ୍‌ଟା ବଇ ଆନିଲି, କନ୍ଦ୍ ଦୁକିଲାନି ।

୩୩. **କନ୍ଦା / କାନ୍ଦା** - *ଦେ.ବି.* : ମାଟି ତଳର ଫଳ । ମୂଳ ଜାତୀୟ ଖାଦ୍ୟ ପଦାର୍ଥ । ମୁଖ୍ୟତଃ ଏହା ବିଭିନ୍ନ ପ୍ରକାର ଲଟା ଜାତୀୟ ଗଛର ମୂଳରେ ଫଳିଥାଏ । ଆଦିବାସୀ ଜନଗୋଷ୍ଠୀର ଲୋକେ ଜନ୍ମରୁ ଏଇ କନ୍ଦା ଜାତୀୟ ଖାଦ୍ୟ ସହିତ ପରିଚିତ । ବର୍ଷର ବିଭିନ୍ନ ସୟରେ ସେମାନେ ବଣଜଂଗଲ ଓ ଡଙ୍ଗରରେ ବୁଲି ନିଜର ଖାଦ୍ୟାଭାବ ଦୂର କରିବାପାଇଁ ଏହି କନ୍ଦା ଜାତୀୟ ଖାଦ୍ୟ ପଦାର୍ଥ ଶାବଳ ବା ଖଣତି ସାହାଯ୍ୟରେ ଖୋଳି ସଂଗ୍ରହ କରିଥାନ୍ତି । ସେମାନେ ସଂଗ୍ରହ କରୁଥିବା କନ୍ଦାମାନଙ୍କ ମଧରେ ଭୂଇଁ କଖାରୁ, ପିତାକନ୍ଦା, ଓଲୁଅ, ଲଙ୍ଗଳ କନ୍ଦା, ସେମିଳି କନ୍ଦା, ଶଙ୍ଖଆଳୁ, ସାକର କନ୍ଦା, ରାଣୀ କନ୍ଦା ସମେତ ଆହୁରି ଅନେକ ପ୍ରକାରର କନ୍ଦା ଜାତୀୟ ଫଳ ରହିଛି, ଯାହାକୁ ସେମାନେ ଖାଦ୍ୟ ରୂପେ ବ୍ୟବହାର କରିବା ସହିତ ଔଷଧ ଭାବେ ମଧ ବ୍ୟବହାର କରିଥାନ୍ତି । ଅଧିକାଂଶ କନ୍ଦା ସଂଗ୍ରହ କରି ସେମାନେ ଏହାକୁ କାଟି ଶୁଖାଇ ରଖନ୍ତି ଓ ବର୍ଷର ଖାଦ୍ୟଭାବ ସମୟରେ ଏହାକୁ ଖାଦ୍ୟ ରୂପେ ବ୍ୟବହାର କରିଥାନ୍ତି । ଏବେ ମଧ ସ୍ତ୍ରୀ ଲୋକଙ୍କ ମୁଖ୍ୟ ପାଇଟି ହେଉଛି ଜଂଗଲରୁ ଦାରୁ, ପତ୍ର ଓ କନ୍ଦା ସଂଗ୍ରହ । ଏମାନଙ୍କର ସବୁଠୁ ଅଧିକ ପ୍ରିୟ ଖାଦ୍ୟଭାବେ ବିବେଚିତ ହୋଇଥାଏ ରାଣୀ କନ୍ଦା ସିଝା । ଏହି କନ୍ଦାକୁ ସିଝାଇ ଏମାନେ ହାଟ ବଜାରରେ ବିକ୍ରୟ କରନ୍ତି । ଅନେକ ଏହାକୁ ପୋଡ଼ି ଖାଇବାକୁ ଭଲ ପାଉଥିବାବେଳେ ଆଉ କେତେକ ଲୋକ ଏହି କନ୍ଦାକୁ ତରକାରୀ ବା ଖଟା କରିଥାନ୍ତି । ଆଜିକାଲି ଅନେକ ପ୍ରକାର କନ୍ଦା ବିଲବାଡ଼ିରେ ମଧ ଚାଷ କରାଗଲାଣି । ମାଲକାନଗିରି ଜିଲ୍ଲାରେ ତଥା ଅବିଭକ୍ତ କୋରାପୁଟରେ ଫଳୁଥିବା ବା ଜଂଗଲରେ ମିଳୁଥିବା ବିଭିନ୍ନ କନ୍ଦା ନିମ୍ନ ପ୍ରକାରର ।

**ପିତାକନ୍ଦା :** ଏହା ସାରୁ ଭଳି ଗୋଲ । - ଛୋଟଛୋଟ ସାଇଜ୍ । ଅଧାକେ.ଜି.ରୁ ବଡ଼ ହୁଏ ନାହିଁ । ସାଧାରଣତଃ ୫୦ଗ୍ରାମ ହୋଇଥାଏ । ଏହାକୁ ସିଝାଇ ପତଳା ପତଳା କାଟି ବହିଲା ପାଣିର ସ୍ରୋତରେ ଗୋଟିଏ ରାତି ବତୁରାଇ ସକାଳେ ଅଣାଯାଏ । ପରେ ଏହାକୁ ସିଝାଇ ଓ ବଘରାଇ ଖିଆଯାଏ ।

**ପିଟ୍‌କନ୍ଦା :** ବହୁତ ଲମ୍ବା ହାତେ ମୋଟ ଚେର ଭଳି ରହିଥାଏ । ଭଲ ସୁଆଦ । ଚରେକା କନ୍ଦା ବା ବରିଆ କନ୍ଦା : ପିଟ୍ କନ୍ଦାଠାରୁ ଅଧିକ ଲମ୍ବା । ଏହା ଖାଇଲେ ପାଟି

କୁଣ୍ଡେଇ ହୁଏ । ବାରିହା ଭଳିଆ ଛୋଟଛୋଟ ଚେର ବା ଲୋମ ଥିବାରୁ ଏହା ବାରିହା କନ୍ଦା ବରିଆ ନ ମିଳିଲେ ବରିଆ ବଦଳରେ ଏହି କନ୍ଦାକୁ ପୂଜାରେ ଲଗାଯାଏ ।

ଚେରେଙ୍ଗ୍ କନ୍ଦା : ଆଙ୍ଗୁଳି ମୋଟ ଲମ୍ବା କନ୍ଦା । ମିଠା ସୁଆଦ ।

କଷା କନ୍ଦା : ପିଟ୍ କନ୍ଦା ଭଳି ବଡ଼ ସାଇଜର । ଧୋବ ରଂଗ । ତାକୁ ସିଝାଇ କରି ଖାଆନ୍ତି ।

ତର୍‌ଗାଇ କନ୍ଦା : ଲୋମ ଥିବା ଲାଲୁଆ କନ୍ଦା । ଖୁବ୍ କୁଣ୍ଡେଇ ହୁଏ । କିନ୍ତୁ ଅଧିକ ସିଝାଇ ଖାଇଲେ କିଛି ଅସୁବିଧା ହୁଏନାହିଁ ।

ବାଟି କନ୍ଦା : ପିଟ୍ କନ୍ଦା ଭଳି ସୁଆଦ । କିନ୍ତୁ ଆକାରରେ ଛୋଟ ଓ ସରୁ । ତା'ର ଲଟା ପୁରାପୁଣି ପିଟ୍ କନ୍ଦା ଭଳି । ଜଂଗଲରେ ପ୍ରଚୁର ଦେଖାଯାଏ ।

ତଅଡ଼ା କନ୍ଦା : ଏହି କନ୍ଦା ସବୁବେଳେ ଯାଆଁଳା । ହାତଭଳି ମୋଟା । ବହୁତ ଲମ୍ବା । ତାକୁ ମଧ ସିଝାଇ ଖାଆନ୍ତି ।

ନଙ୍ଗଲ୍ କନ୍ଦା : ଏହାକୁ ଘର ବାଡ଼ିରେ ମଧ ଚାଷ କରନ୍ତି । ଖମ୍ବଆଳୁ ଭଳି । ବହୁତ ମୋଟା ଓ ଲମ୍ବା ହୁଏ । ମଣିଷ ଭଳି ସାଇଜ୍ ହୁଏ । ଖୁବ୍ ସୁଆଦ । ଅର୍ଥନୀତିକ ଭାବରେ ଏହାର ଚାଷ ଲାଭପ୍ରଦ ।

ଫଲ୍ କନ୍ଦା : ତଳେ କନ୍ଦା ଓ ଉପରେ କନ୍ଦା । ସେଇଟା ପିତା ନୁହେଁ କି କଷା ନୁହେଁ । ତଳଠାରୁ ଉପରେ ଅଧିକ ଫଳିଥାଏ । ଏପରିକି ସମୟେ ସମୟେ କାଉଡ଼ି କାଉଡ଼ି ଫଳିଥାଏ । ଏହା ଘର ବାଡ଼ିରେ ମଧ ଚାଷ କରାଯାଇଥାଏ ।

କେଉ କନ୍ଦା : ମାଟି ତଳେ ଆଙ୍ଗୁଠି ଠାରୁ ସାମାନ୍ୟ ଅଧିକ ମୋଟ ହୁଏ । ଏହା ଖାଦ୍ୟ ରୂପେ କମ୍ ବ୍ୟବହାର ହୁଏ । ମୁଖ୍ୟତଃ ପୀତ ବା ମ୍ୟାଲେରିଆ ରୋଗରେ ଔଷଧ ରୂପେ ବାଟି ଦେଇ ଏହାକୁ ମୁଣ୍ଡରେ ଦିଆଯାଏ ଓ ରୋଗୀକୁ ପଥ୍ୟରୂପେ ଦିଆଯାଏ ।

ବାତ୍ରି କନ୍ଦା : ଏହା ସରୁ ଓ ଧଳାଧଳା । ଏହାକୁ ଗୁଣ୍ଡକରି ପାଣିରେ ଛାଣି ଶୁଖାଇ ପାଲୁଅ ତିଆରି କରାଯାଏ । ଛଣା ପାଣିକୁ ବସାଇ ଦେଲେ ପାଲୁଅ ତଳେ ବସିଯାଏ । ଉପର ପାଣି ପକାଇ ଦେଇ ପାଲୁଅ ବାହାର କରି ଶୁଖାଯାଏ । ଏହା ପେଟ ରୋଗପାଇଁ

ତଥା ଖରାଦିନରେ ପାନୀୟ ରୂପେ ବ୍ୟବହାର ହୁଏ । ଏହି ବାଡ଼ି ଶବ୍ଦକୁ ନେଇ ବିଭିନ୍ନ ଗାଁ ମଧ୍ୟ ଗଢ଼ି ଉଠିଛି । ଯେପରିକି ବାଡ଼ିପୁଟ, ବାଡ଼ିଆଟାଲ୍, ବାଡ଼ିଗୁଡ଼ା, ବାଡ଼ ବାହାଲ ଇତ୍ୟାଦି ।

୩୪. କନ୍ଧଣୀ ମାଳି - ଦେ.ବି. : ପର୍ବତ ବିଶେଷ । ପର୍ବତର ଶିଖର ଦେଶକୁ ମାଳି କୁହାଯାଏ । ପର୍ବତ ଟୀଖରେ କନ୍ଧଣୀ, ମାଉଲି, ଡଙ୍ଗର ଦେଇ ପ୍ରଭୃତି ଦେବୀଙ୍କ ଆସ୍ଥାନ ଗୁଡ଼ିକ ରହିଥାଏ । କନ୍ଧଣୀ ଦେବୀଙ୍କ ଆସ୍ଥାନ ରହିଥିବା ପର୍ବତ ଶିଖରକୁ କନ୍ଧଣୀ ମାଳି କୁହାଯାଏ । ଏହା ନବରଂଗପୁର ଜିଲ୍ଲାରେ ଅବସ୍ଥିତ ।

୩୫. କପଟ୍ କାନାଇ - ଦେ.ବି. : ଏକ ପ୍ରକାର ଔଷଧୀୟ ଗଛର ନାମ । ଏହି ଗଛର ଛେଲିକୁ କୁଟି ପେଣ୍ଡମରେ ମିଶେଇଲେ ଏହା ନିଶା ହୋଇଥାଏ । ବିଭିନ୍ନ ପ୍ରକାର ରସ ଜାତୀୟ ପାନୀୟରେ ମଧ୍ୟ ମଦ୍ୟ ପ୍ରସ୍ତୁତ ସକାଶେ ଏହା ବ୍ୟବହାର କରାଯାଏ ।

୩୬. କପୁର୍ - ଦେ.ବି. : ଇନ୍ଦ୍ରାବତୀର ଉପନଦୀ ।

ଏହି ନଦୀଟି ବୋରିଗୁମ୍ମା ପାଖରେ ଥିବା ମୁଣ୍ଡାଗୁଡ଼ାଠାରୁ ବାହାରି ନବରଂଗପୁର ଜିଲ୍ଲା ଖାତିଗୁଡ଼ା ନିକଟସ୍ଥ ସୁର୍ଲୀବାଇ ଠାରେ ଇନ୍ଦ୍ରାବତୀ ସହ ମିଶିଛି । ଏହି ସଂଗମସ୍ଥଳୀରୁ ଦଶକି.ମି. ଦୂରରେ ବର୍ତ୍ତମାନର କପୁର୍ ମାଟିବନ୍ଧ ବନ୍ଧା ଯାଇଛି, ଯାହାକି, ଇନ୍ଦ୍ରାବତୀ ବହୁମୁଖୀ ନଦୀବନ୍ଧ ଯୋଜନାର ଅଂଶ ବିଶେଷ ।

୩୭. କବାଡ଼ି - ଦେ.ବି. : (୧) କମାର / ଲୋହାର ଜାତିକୁ କୁହାଯାଏ । ଏମାନେ ନିଜ ନିଜ ମଧ୍ୟରେ 'ଶରାବ' ନାମରେ ପରିଚିତ । ଏମାନେ ଲୁହାକାମ କରନ୍ତି । ଆଦିବାସୀମାନେ ଏମାନଙ୍କୁ 'କବାଡ଼ି' କହିଥାନ୍ତି । 'ପାଇଟି' ଅର୍ଥରେ କବାଡ଼ି ଶବ୍ଦର ବ୍ୟବହାର ରହିଛି ।

(୨) କମିଆ, ବାରମାସ ପାଇଁ ରହୁଥିବା ଗୋତି । ଏଥିପାଇଁ ଏମାନେ ମାଲିକଙ୍କଠାରୁ ଆଗୁଆ ଧାନ ଓ ଅର୍ଥ ନେଇଥାନ୍ତି । ବାକି ଅର୍ଥ ବର୍ଷ ଶେଷରେ ମିଳିଥାଏ ।

୩୮. କମଜ୍‌ବା - ଦେ.କ୍ରି. : ଝାଉଁଳି ଯିବା, ଅତୀତ କାଳରେ 'କମଜ୍‌ଲା' ହେବ । ମଉଳି ଯିବା ଫୁଲ ବା ପତ୍ର ଝାଉଁଳି ଯିବାକୁ 'କମଜ୍‌ବା' କୁହାଯାଏ ।

ବ୍ୟବହାର : କାଇଟା ହେଲା ହୋ, ପତର ସବୁ କମ୍ଭି ଗାଲା । କାରା କି କିଡ୍ଲ୍କି ? ଅର୍ଥାତ୍, କଣ ହେଲା ଯେ ପତ୍ର ସବୁ ଝାଉଁଳି ଗଲା, ଖରା ପାଇଁନା ପୋକ ପାଇଁ ?

୩୯. କମଟେଡା - *ଦେ.ବି. :* ଆଦିବାସୀ ସମାଜରେ ଜଣେ ମୃତ୍ୟୁ ଲାଭ କଲେ ତାର ସ୍ମୃତି ଉଦ୍ଦେଶ୍ୟରେ ଗାଁ ମୁଣ୍ଡର ଆମ୍ବ, ବର ଆଦି ଏକ ନିର୍ଦ୍ଦିଷ୍ଟ ଗଛମୂଳେ ତୀକ୍ଷ୍ଣ ପଥରଟିଏ ପୋତା ଯାଇଥାଏ । ପଥର ପୋତାରୁ ଗାଁର ପୁରାତନତା ଓ ମୃତ୍ୟୁ ସଂଖ୍ୟା ଜଣାଯାଇଥାଏ । ଏହି ପଥର ପୋତାକୁ କମଟେଡ଼ା ବା କାମଟେଡ଼ା କୁହଯାଏ । ଯେକୌଣସି ପୁରାତନ ଆଦିବାସୀ ସଂପ୍ରଦାୟର ପୁରୁଣା ଗାଁ ମାନଙ୍କରେ ଏହି କମଟେଡ଼ା ପ୍ରଥା ଅନୁଯାୟୀ ପୋତା ହୋଇଥିବା ପଥର ଚିହ୍ନ ଦେଖିବାକୁ ମିଳେ ।

୪୦. କମଲ୍ ପାକ୍ଲା - *ଦେ.ବି. :* ପାଚିଲା କମଳା, ଇଂ. - Orange ଦେଶିଆମାନଙ୍କ ଲୋକଗୀତ ଚଇତ ପରବରେ ଯୁବତୀମାନଙ୍କ ସ୍ତନକୁ ନେଇ ଅନେକ ବର୍ଣ୍ଣନା । ପାକଲ ହୋଇଯାଇଥିବା କମଳା ପରି ସ୍ତନ ଯାହାର ତାକୁ ଉପଲକ୍ଷ ଦେଇ ଗୀତ କୁଡ଼ିଆ ଗୀତକୁଡ଼ିଆଣୀକୁ ଶୁଣାଇ ଦିଏ ପଦେ ଗୀତ -

"ସରଗି ପତର କୀଡ଼ା କଟରେ

ଜୀବନ ଡାଲ ପତରେ

ତମର କମଲା ପାକଲା

ମୂଷା ଚୋରିନବ

ମଲିଫୁଲ ବାସନାରେ

ବାଟେ ବରଗଛ ଉଦୁଂଗା ଚେର

ତମେ ଟେସନେ ରିପଟ୍ କର ।"

ଅର୍ଥାତ୍, ସରଗି ପତରକୁ ପୋକଖାଏ । ତାଳପତ୍ର ଭଳି ଆମର ଜୀବନ ମଧ୍ୟ ପୋକ ଖାଇବ । ତମର ଏଇ ପାଚିଲା କମଳାକୁ ମୂଷା ଚୋରାଇ ନେବ । ହେ, ମଲ୍ଲୀଫୁଲ ବସନା : ବାଟ ବରଗଛର ଓହଳିଥିବା ଚେରକୁ ଡେଇଁ ତମେ ପୋଲିସ ଷ୍ଟେସନରେ ରିପୋର୍ଟ କର ।

୪୧. **କୟା** - *ଦେ.ବି. :* ଛୋଟ କଣ୍ଟା । ରାସ୍ତାରେ ପଡ଼ିଥିବା କଣ୍ଟା । ଚାଲିବା ସମୟରେ ଗୋଡ଼ରେ ଫୋଡ଼ି ହୋଇଯାଏ । କିନ୍ତୁ ଏହା ଲୁହା କଣ୍ଟା ନୁହେଁ । ଗଛଲଟାର ପ୍ରାକୃତିକ କଣ୍ଟା । ଲୁହା କଣ୍ଟାକୁ ଖୁଣ୍ଟି କୁହାଯାଏ ।

ବ୍ୟବହାର : ଟେସା ଗୁଡ଼ଦା ବାଟେ ଯାଇ ରଇଲି । କୟା ମାଡ଼୍‌ଲି ଗଡ଼୍ ଫୁଲି ଗାଲା ଆଚେ । ଅର୍ଥାତ୍, ଅରାସ୍ତାରେ ଯାଇଥିଲି । କଣ୍ଟା ମାଡ଼ିଲି ଯେ, ଗୋଡ଼ ଫୁଲି ଯାଇଛି ।

୪୨. **କର୍‌ଲା ଡାଲ୍** - *ଦେ.ବି. :* ଏକ ଜଙ୍ଗଲୀ ବୃକ୍ଷ ବିଶେଷର ଡାଳ । ଧାନ ଫସଲରେ ନଳୀ ପୋକ, କାଣ୍ଡବିନ୍ଧା ପୋକ ପ୍ରଭୃତି ଲାଗିଲେ ଜଂଗଲରେ କରଲା ନାମକ ପିତା ବୃକ୍ଷକୁ ଡାଳକାଟି ଆଣି ଫସଲ କିଆରିରେ ପକାଇଥାନ୍ତି । କର୍‌ଲା ନାମକ ବୃକ୍ଷର ଡାଳକୁ କରଲାଡାଳ କହନ୍ତି । ଏହାର ଔଷଧୀୟ ଗୁଣ ଥିବାରୁ ଧାନପୋକ ମରିଯାଇଥାନ୍ତି । ବାନ୍ଧାପନା ପର୍‌ବରେ ଏହି କର୍‌ଲା ଡାଲ୍ ପୂଜା କାର୍ଯ୍ୟରେ ଲାଗେ ।

୪୩. **କରସୁ ପେନୁଲୁ** - *ଦେ.ବି. :* ଉଦୁଲିଆ ବିଭା ବା କନ୍ୟା ଅପହରଣ କରିନେଇ ବିବାହ କରିବା ପ୍ରଥା । ଏହାସବୁ ଗୋଷ୍ଠୀର ଆଦିବାସୀ ସମାଜର ଦେଖିବାକୁ ମିଳିଥାଏ । ଦ୍ର. ଉଦ୍‌ଲିଆ ।

୪୪. **କରଂଜ** - *ଦେ.ବି. :* ଜଙ୍ଗଲର ବୃକ୍ଷ ବିଶେଷ, କରଂଜ ଗଛ ଓ କରଞ୍ଜ ଗଛର ଫଳ ।

ଆଦିବାସୀ ଲୋକମାନେ ଜଙ୍ଗଲରୁ ଶୁଖିଲା କରଞ୍ଜ ଫଳ ସଂଗ୍ରହ କରି ସେଥିରୁ ମଞ୍ଜି ବାହାର କରନ୍ତି ଓ ଏହି ମଞ୍ଜିକୁ ଛେଚି ନିଆଁରେ ବସାଇ ତେଲ ବାହାର କରିଥାନ୍ତି । ଏହି ତେଲକୁ ଏମାନେ ଚର୍ମ ରୋଗରୁ ରକ୍ଷା ପାଇବାପାଇଁ ଔଷଧ ରୂପେ ବ୍ୟବହାର କରିଥାନ୍ତି । ବିଲବାଡ଼ିକୁ କାମକୁ ଗଲାବେଳେ ଦେହରେ ଏହି ତେଲ ଲଗାଇ ଗଲେ ପୋକ ଜୋକ ଓ ମଶା ଡାଆଁଶ କାମୁଡ଼ିବାର ଭୟ ରହେ ନାହିଁ । ଏହି ତେଲକୁ ପାଣିରେ ମିଶାଇ ଧାନ ଫସଲରେ ପକାଇଲେ ଧାନଗଛରୁ ଲେଡ଼ା ନାମକ ପୋକ ଛାଡ଼ି ଯାଇଥାନ୍ତି । ଏହି ଗଛ ଛାଲିକୁ କାଠଚମ୍ପା ଗଛର ଛାଲି ସହ ଏକତ୍ର କରି ପୁରୁଣା ତେନ୍ତୁଳି ଦେଇ ବାଟି ଆଦିବାସୀମାନେ ଏକ ମିଶ୍ରଣ ପ୍ରସ୍ତୁତ କରନ୍ତି । ଏହି ମିଶ୍ରଣକୁ ମଲମ ପରି ପଶୁମାନଙ୍କ ଘା'ରେ ଲଗାଇଥାନ୍ତି । ଏପରି ୫/୬ ଥର ଲଗାଇଲା

ପରେ ପଶୁମାନଙ୍କ ଦେହର ଘା ଶୁଖି ଭଲ ହୋଇଯାଇଥାଏ । ମଣିଷମାନଙ୍କ କାଛୁ କୁଣ୍ଡିଆ ଓ ପୁରୁଣା ଘା' ମଧ ଏହି ମଲମ ଦ୍ୱାରା ଭଲ ହୋଇଥାଏ ।

୪୫. କରଡ଼ି - ଦେ.ବି. : ବାଉଁଶଗଜା, ଯାହା ଆଦିବାସୀର ଏକ ପ୍ରିୟ ଖାଦ୍ୟ ରୂପେ ବର୍ଷାଋତୁ ଯାକ ଉପଲବ୍ଧ ହୁଏ । ଏସବୁରୁ ବିଭିନ୍ନ ପ୍ରକାର ଶାଗ ବା ତରକାରୀ ପ୍ରସ୍ତୁତ ହୁଏ । (୧) କରନି ଶାଗ୍ : କରଡ଼ିକୁ ସିଝାଇ ତା'ର ପାଣି ଫିଙ୍ଗି ଦେଇ ପୁଣିଥରେ ଟିକିଟିକି କରି କାଟି ଲୁଣ ଲଙ୍କା ସହ ଭାଜି ଖିଆଯାଏ । ତେଲ ନଥିଲେ ସିଝାଇ ଖିଆଯାଏ । ଏହା ସାଧାରଣରେ ପ୍ରଚଳିତ ଶାଗ୍ ବା କରଡ଼ି ଶାଗ୍ ।

(୨) କାଞ୍ଜି କରଡ଼ି : ପ୍ରଥମେ କାଟି ରାତିରେ ବତୁରାଇ ଦିଆଯାଏ । ତା ପରଦିନ ସକାଳେ ସେହି କରଡ଼ିକୁ ଆମ୍ବିଳ କରି ଅର୍ଥାତ୍ ଖୁଦବଟା ଓ ତେନ୍ତୁଳି ମିଶାଇ ରନ୍ଧାଯାଏ ଏହାର ଅନ୍ୟ ଏକ ନାମ ଆମଟ୍ କରଡ଼ି ବା କରଡ଼ି ଆମଟ୍ ।

(୩) କର୍ଡ଼ି ଉସେରା : ପ୍ରଥମେ କରଡ଼ିକୁ ସିଝାଇ ଦେଇ ଲମ୍ବାଲମ୍ବା କରି କାଟି ଶୁଖାଇ ଦିଆଯାଏ । ଶୁଖିଲା ପରେ ତାକୁ ବର୍ଷାଋତୁ ପରେ ସିଝାଇ ସେ ପାଣିକୁ ଫିଙ୍ଗି ଶାଗ୍ ବା ତରକାରୀ ପ୍ରସ୍ତୁତ କରାଯାଏ । ଏହା ମାଆ ଓ ଶିଶୁମାନଙ୍କୁ ଅଧିକ ଶକ୍ତି ହେବାପାଇଁ ଖାଦ୍ୟ ରୂପେ ଦିଆଯାଏ ।

(୪) ଚୁନା କର୍ଡ଼ି : - ପ୍ରଥମେ ସଂଗୃହୀତ କର୍ଡ଼ିକୁ ସୁକାସୁକ ଗୋଲଗୋଲ କରି କାଟି ଶାବଳରେ ଗୁଣ୍ଡ କରି ଦିଆଯାଏ । ଏହି ଗୁଣ୍ଡ କରଡ଼ିକୁ ଶୁଖାଇ ରଖାଯାଏ । ପରବର୍ତ୍ତୀ ସମୟରେ ସିଜ୍‌ଲା କର୍ଡ଼ି ଢଙ୍ଗରେ ସିଝାଇ ଓ ପାଣି ନିଗାଡ଼ି ଏଥିରୁ ବିଭିନ୍ନ ପ୍ରକାର ଶାଗ ପ୍ରସ୍ତୁତ ହୁଏ । ଏହା ଅଧିକ ଜନପ୍ରିୟ । ଅନ୍ୟ ଏକ ଅର୍ଥରେ କର୍ଡ଼ିକୁ ନେଇ ଅନେଗ ଢଗ ରହିଛି । ଯେଉଁଥିରେ ଉତ୍ପାତ କରୁଥିବା ଲୋକକୁ ଥଟ୍ଟା କରି କୁହାଯାଏ । ଯଥା :

ଅଦିକ୍ ଉତ୍‌ପାତ୍ ନହରେ କର୍ଡ଼ି
ବଡ଼୍‌ଲେ ହେବୁ ବାଉଁଶ
ବୁନ୍‌ଲେ ହେବୁସ୍ ଡାଲା ଚାଙ୍ଗଡ଼ା
ପୋଡ଼ିଲେ ହେବୁ ପାଉଁଶ୍ ।
ଅର୍ଥାତ୍, ଅଧିକ ଉତ୍ପାତରେ ବେଶୀ ପ୍ରମାଦ ।

ଏତଦ୍ ବ୍ୟତୀତ ଏମାନେ ଏଇ କରଡ଼ିକୁ ବତୁରେଇ ଏହାର ପାଣିକୁ ଔଷଧ ଭାବେ ଫସଲ କିଆରିରେ ସିଞ୍ଚନ କରିଥାନ୍ତି । ଏଥିରେ ଫସଲ କିଆରୀର ଗଛ ଗୁଡ଼ିକର ପତ୍ର ପୋଡ଼ା କିଆରିରେ ସିଞ୍ଚନ କରିଥାନ୍ତି । ଏଥିରେ ଫସଲ କିଆରୀର ଗଛ ଗୁଡ଼ିକର ପତ୍ର ପୋଡ଼ା ରୋଗ ଭଲ ହୋଇଥାଏ । ଆଉ ମଧ୍ୟ ଆଦିବାସୀ ସମାଜରେ ପ୍ରକୃତିରୁ ଉତ୍ପନ୍ନ ହୋଇଥିବା ଏଇ ବାଉଁଶ ଗଜା ବା କରଡ଼ିର ପ୍ରଭାବ ଏତେ ଅଧିକ ଯେ, ଏହାକୁ ଉପଲକ୍ଷ୍ୟ ଭାବେ ନେଇ କନ୍ଧ ଆଦିବାସୀମାନେ ପ୍ରତୀକାତ୍ମକ ଶ୍ଳେଷ ଉପସ୍ଥାପନ କରିବାକୁଯାଇ କହିଥାନ୍ତି -

ଇଟିଆ ମିଟିୟା ଇଙ୍ଗଲର କଅଁଳ କରଡ଼ି ଖାନ ଇ ଲାଗିବ ମର୍‌ଡ଼ି । ଯାହାର ଅର୍ଥ : କଅଁଳ କରଡ଼ି ପରି ଭଲ ଖାଦ୍ୟ ଥାଉଥାଉ ଲୋଭରେ ପଡ଼ି ଅନ୍ୟ ପଚାସଢ଼ା ଦ୍ରବ୍ୟ ଖାଇଲେ ମରୁଡ଼ି ଲାଗିବ ବା ମରିବାକୁ ହେବ । ଅନ୍ୟ ଅର୍ଥରେ ଏହା ଆଦିବାସୀ କନ୍ଧ ପରିବାରରେ ଝିଅମାନଙ୍କ ପ୍ରତି ଉଦ୍ଦିଷ୍ଟ ଏକ ଉପଦେଶ ଯେ, କଅଁଳ ବୟସର ଯୁବକମାନେ ଥାଉଁଥାଉଁ ବୁଢ଼ା ବରଟିକୁ ବାଛ ନାହିଁ । ଏପରି କଲେ ବିପଦରେ ପଡ଼ିବ ।

୪୬. **କରସ୍ ପାନି** - *ଦେ.ବି. :* ବିବାହ ସମୟରେ ନୂଆ ହାଣ୍ଡିରେ ଜଳାଶୟରୁ ଅଣାଯାଇଥିବା ପାଣି । କରସ୍ ପାଣିରେ ବର ଓ କନ୍ୟାକୁ ଗାଧୋଇ

ଦିଆଯାଇଥାଏ । ଏହାକୁ କରସ୍ ପାଣି ଢାଳିବା କହନ୍ତି । (ଦ୍ରଷ୍ଟବ୍ୟ : ଧରମ୍ ପାନି ।)

୪୭. **କରଣ ପାଣ୍ଡୁମ୍** - *ଦେ.ବି. :* ନୂଆଖିଆ ପର୍ବ (କୋୟା) କୋୟା ଆଦିବାସୀମାନେ ଶିରାର କହିବା ପ୍ରକାରେ ଉତ୍ପନ୍ନ ଶସ୍ୟକୁ ପୂଜାକରି

ଏଥିରୁ ଚାଉଳ ବାହାର କରିଥାନ୍ତି । ଏହି ନୂଆ ଚାଉଳକୁ ସାହାଜ କାଠରେ ବାନ୍ଧି ଗ୍ରାମଦେବତାଙ୍କ ପାଖରେ ଅର୍ପଣ କରନ୍ତି ଓ ଏହି ନୂତନ ଖାଦ୍ୟକୁ ଶିଆଳି ପତ୍ରରେ ବାଢ଼ି ଖାଇଥାନ୍ତି ଓ ଅନ୍ୟମାନଙ୍କୁ ବାଣ୍ଟନ୍ତି । ଏତଦ୍ ବ୍ୟତୀତ ଏମାନେ ଏହି ନୂଆ ଚାଉଳରେ ଲାନ୍ଦା ବା ଏକ ପ୍ରକାର ମଦ ତିଆରି କରି ପିଇଥାନ୍ତି । ଅନୁରୂପଭାବେ ପରଜା ସଂପ୍ରଦାୟଙ୍କ 'ଲାନ୍ଦା ପରବ୍' ମାଘ ମାସରେ ହୋଇଥାଏ ।

୪୮. କରାପାନି - ଦେ.ବି. : କୁଆପଥର ଇଂ • - Hail Stone. ଦେଶିଆ ଲୋକଗୀତ, ଲୋକକାହାଣୀ ଓ ଲୋକୋକ୍ତିରେ ବହୁଳଭାବେ ବ୍ୟବହୃତ। ସାଇଲୋଡ଼ିଗୀତରେ ଝିଅମାନେ ଗାଉଥିବା ଗୋଟିଏ ଗୀତର ଘୋଷା ହେଉଛି :

ସାଇଲୋ ସାଇଁ କରୁନା
ମଲିଫୁଲ ବାସନା
କାରାପାନି ଜାଇଫୁଲ ବାସନା।

୪୯. କଲଚୁଆ - ଦେ.ବି. : ନଳକୂଅ। ବରିଂ। ଇଂ. - Tube well

ଉଦାହରଣ : ଡକ୍ରୀ, ମାଇଜି, ଟକିମନ୍ କଲଚୁଆର ଥାନେ କାଏ କାଏ କାତା ଲାମାଇ ଦେଲାଇ ମନକେ ନାଇଁମାନେ। (ବୁଢ଼ୀ, ସ୍ତ୍ରୀ ଓ ଝିଅମାନେ ନଳକୂଅ ପାଖରେ ଜମା ହୋଇ କି କି କଥାମାନ ହେଉଛନ୍ତି ଯେ, ସେ କଥାରେ ମନ ପୁରୁନାହିଁ।)

୫୦. କଲ୍ତା - ଦେ.କ୍ରି. : ଲମ୍ବମାପିବା - ଲମ୍ବପ୍ରସ୍ଥ ଇତ୍ୟାଦି କ୍ଷେତ୍ର ମାପିବା କାର୍ଯ୍ୟ ହେଉଛି କଲ୍ତା, ଇଂ. - To Meas me.

ବ୍ୟବହାର : "କଲ୍ତା କରି ଦେଖ୍ତୁ, ସମାନ୍ ଆଚେକି ନାହିଁ।"

୫୧. କଲ୍ପାଇ - ଦୁଇଫାଳ କରିବା। କାଠ ବା ଯେ କୌଣସି କଠିନ ଜିନିଷକୁ ଦୁଇଭାଗ କରିବା। କିନ୍ତୁ କାଗଜ ଚିରିବାକୁ ତାହା ବୁଝାଇବ ନାହିଁ।

ବ୍ୟବହାର : ଟାଙ୍ଗିଆ ଚନେକ୍ ଆନ୍‌ମୁଟ୍‌ଲା କଲ୍ପେଇ ବି।

୫୨. କଲ୍ନି - ଦେ.ବି. : ଖଳି ବା ମଣ୍ଡ। ଭାତପେଜ ସହନୀଳ ଦେଇ ତିଆରି ହେଉଥିବା ମଣ୍ଡ।

ବ୍ୟବହାର - କଲ୍ନି ଦେଲା ଲୁଗା ଆଣ୍ଟ୍ ରଇଚି।

୫୩. କଲ୍ସୀ ପରବ - ଦେ.ବି. : ଗ୍ରାମ ଦେବତୀଙ୍କ ଠାରେ ସଂସାରର (ଗାଁର) ଆରୋଗ୍ୟ କାମନା କରି ରୋଗ ବ୍ୟାଧିରୁ ମୁକ୍ତି ପାଇବା ପାଇଁ କଲସୀ ପର୍ବ ପାଳନ କରାଯାଏ। ଏହା ଘଟ ଯାତ୍ରା ଶ୍ରେଣୀୟ।

୫୪. କଲ୍ଲା - ଦେ.ବି. :

(୧) ବିକଳାଙ୍ଗ, ବିଶେଷ କରି ହାତ ନଥିବା ଲୋକ । ସ୍ତ୍ରୀ ହୋଇଥିଲେ 'କଲୀ' କେମ୍ପା / କେମ୍ପୀ ।

(୨) ତେଲ ବାହାର କରିବାର ଦେଶିଆ ଯନ୍ତ୍ର । ବାଉଁଶ ଓ ରାଶି ଦ୍ୱାରା ତିଆରି ହୁଏ । କୁଦାଲ ରଶିରେ ମାଣ ବୁଣା ହୋଇ ମୁହଁ ସରୁ କରାଯାଇଥାଏ । ସେଥିରେ ରାଶି, ଅଳସୀ ଓ ଟୋଲ ଇତ୍ୟାଦି ତୈଳବୀଜର ଗୁଣ୍ଡ ପକାଇ ଉପର କାଠକୁ ଚାପି ଦିଆଯାଏ । ତଳବାଟେ ତେଲ ଗଡ଼ିଯାଇ ତଳେ ଗୋଟାଏ ଗହୀରିଆ ଗୋଲ କାଠରେ ପଡ଼ିଥାଏ । ଏହାର ଚାରିପଟେ ଏକ ନାଳି ଥାଏ । ଏହି ନାଳି ଦେଇ ତେଲ ଝରିଯାଏ । ତଳେ ଥିବା ପାତ୍ରରେ ଏହା ସଂଗୃହୀତ ହୁଏ । ଯେଉଁ ଦୁଇଟି କାଠ ଉପରେ ଓ ତଳେ ରହିଥାଏ ତାକୁ 'ଚିକନ୍‌ତିଡି' କହନ୍ତି । ଏହି ଦୁଇ କାଠ ମଝିରେ କଲା ରହିଥାଏ । ଦୁଇଟି କାଠ ସନ୍ଧିରେ ପଥର ଚାପ ଦ୍ୱାରା ତେଲ ନିର୍ଗତ ହୁଏ ।

୫୫. କଲାଟ୍ - *ଦେ.ବି. :* ଏକ ପ୍ରକାର ବିଷାକ୍ତ ସାପ ।

ଇଡ଼ିପଡ଼ା ଭଳି ଧଳାକଳା ରଂଗ ଥିବା ସାପ କିନ୍ତୁ ସାଇଜ୍ ଛୋଟ ଜଙ୍ଗଲୀ ଚିତିସାପ । ଭାରୀ ବିଷାକ୍ତ । ବାଡ଼ରେ ଓ ଜଂଗଲରେ ରହେ । ଏହା ପ୍ରତି ଆଦିବାସୀମାନଙ୍କର ରହିଥାଏ ଖୁବ୍ ଭୟ । କାରଣ କଲାଟ୍ ସାପ ଘର ଭିତରେ ଚଳ ପ୍ରଚଳ ହୁଏ ଓ ଶୋଇଥିବା ଲୋକଙ୍କୁ ବହୁ ସମୟରେ କାମୁଡ଼ି ଦେଇଥାଏ ।

୫୬. କଲିଆ - ବିଲୁଆ - ବନ୍ୟଜନ୍ତୁ ବିଶେଷ : ଇଂ. - Jackal.

ବଣ ଜଂଗଲ ଓ ବୁଦା କନ୍ଦିରେ ଗାତ କରି ରହୁଥିବା ଏକ ମାଂସାଶୀ ପ୍ରାଣୀ । ଆଦିବାସୀ ମଣିଷମାନଙ୍କର ଏମାନଙ୍କ ସହ ସଂପର୍କ କାହିଁ କେଉଁ

ଆଦିମ କାଳରୁ । ସେମାନେ ଅତୀତରେ ଏଇ ବନ୍ୟ ପ୍ରାଣୀଟିର ଡାକରେ ସଂଜ ସକାଳ, ଦ୍ୱିପ୍ରହର ସମୟ ଜାଣୁଥିଲେ । କଳିଥିଲେ ଏଇ ଚତୁର ପ୍ରାଣୀଟିର ଭୟାତୁର ଭାବକୁ । ପରିଶ୍ରମ ନକରି ଚତୁରତାର ସହ ଖାଦ୍ୟ ସଂଗ୍ରହ କରୁଥିବା, ପଚାସଢ଼ା ଶବ ତଥା ଅନ୍ୟ ଜୀବଜନ୍ତୁମାନଙ୍କ ଦ୍ୱାରା ସଂଗୃହୀତ ଶିକାରର ବଳକା ଅଂଶକୁ ଖାଇବା ପାଇଁ ଅପେକ୍ଷା କରି ରହିଥିବା ଏଇ ପ୍ରାଣୀଟିକୁ ଲପଲକ୍ଷ୍ୟ କରି ଆଦିବାସୀ ମଣିଷମାନେ ଚାଲାକ ଓ ଧୂର୍ତ୍ତମାନଙ୍କୁ କଲିଆ ସହିତ ତୁଳନା କରିଥାନ୍ତି । ସୋମନେ ବିଶ୍ୱାସ କରନ୍ତି ଯାତ୍ରା ସମୟରେ କଲିଆ ଦେଖିଲେ ଅଶୁଭ ଘଟେ । ଗାଁ

ପାଖରେ ଅଣ୍ଡିରା ବିଲୁଆ, ବୋବାଇଲେ ଗ୍ରାମକୁ ବିପଦ ପଡ଼େ ବା କାହାର ଅପମୃତ୍ୟୁ ଘଟିଥାଏ । ବିଲୁଆ ପରି ଚତୁର ପଣିଆ ଦେଖାଉଥିବା ଯୁବତୀ ବା ସ୍ତ୍ରୀ ଲୋକଟିର ନିଷ୍ଠୁର ପଣିଆକୁ ଲକ୍ଷ୍ୟକରି ତା'ର ପ୍ରେମିକଟି କହିଥାଏ -

ଡଂଗର କଲିଆ ଭେଲୁଆ ନଖୀ
ବରାମାଛି ବସା ମହୁ
ପଥର ପରାଏ ଛାତିକୁ କଲୁ
କେତେ ମୁଁ ସହିବି ଆଉ ।

ଯାହାର ଅର୍ଥ : ଢଙ୍ଗରେ ବିଲୁଆ ପରି ତୁ ତୋର ଚତୁର ପଣିଆକୁ ନେଇ ନିରବ ରହୁଛୁ । ବରାମାଛି ବସା ମହୁ ଫଣାରୁ ମହୁ ଝରିଲା ପରି ତୋର ଏଇ ଅବସ୍ଥା ଦେଖି ମୁଁ ସହ୍ୟ କରିପାରୁନି । ବିରହ ବ୍ୟଥା ମୋତେ ଅସ୍ଥିର କରୁଛି ଇତ୍ୟାଦି ।

ଲୋକ ସଂସ୍କୃତିରେ କଲିଆର ଚତୁରତା ସଂପର୍କରେ ବହୁ ମଜା କାହାଣୀମାନ ଶୁଣାଯାଏ । କୋରାପୁଟର ବିଭିନ୍ନ ଆଦିବାସୀ ସଂପ୍ରଦାୟରେ କଲିଆକୁ କେନ୍ଦ୍ରକରି ଅସଂଖ୍ୟ କାହାଣୀ ରହିଛି ଯଥା : 'ଚତୁର କଲିଆ', 'କଲିଆ ଆରି ସିଂ', 'କଲିଆ ଆରି ବାଗ୍', 'କଲିଆ ହଇଲା ତେରପେତ୍' ଇତ୍ୟାଦି ।

୫୭. କଲିଆ କୁକୁଡ଼ା - *ଦେ.ବି. :* ଗୋଟିଏ ପ୍ରକାର ଖେଳ । ଆଦିବାସୀ ପିଲାମାନଙ୍କ ମଧ୍ୟରେ ପ୍ରଚଳିତ ।

ପିଲାମାନେ ହାତ ଧରାଧରି ହୋଇ ଗୋଲାକାରରେ ଠିଆ ହୋଇଥାନ୍ତି । ଦୁଇଜଣ ପିଲା, ଜଣେ କଲିଆ ଓ ଆଉ ଜଣେ କୁକୁଡ଼ା ହୋଇ ଖେଳ ଖେଳନ୍ତି । କୁକୁଡ଼ା ହୋଇଥିବା ପିଲାଟି ପ୍ରାଣ ବିକଳରେ ଧାଏଁ, ତାକୁ ଧରିବାକୁ ତା ପଛେପଛେ କଲିଆ ହୋଇଥିବା ପିଲା ଧାଇଁଥାଏ । କଲିଆ, କୁକୁଡ଼ା ଧାଉଁଥିବାବେଳେ ପିଲାମାନେ ହାତଟେକି ରାସ୍ତା ଦେଇଥାନ୍ତି । କୁକୁଡ଼ା ହୋଇଥିବା ପିଲାଟି ହାଲିଆ ହୋଇଗଲେ, କଲିଆ ପିଲାଟି ଛୁଇଁବାର ସମ୍ଭାବନା ଥିଲେ, କଲିଆକୁ ଦୁଇଜଣ ପିଲା ଧରାଧରି ହୋଇଥିବା ହାତ ଫାଙ୍କ ରାସ୍ତାରେ ଯିବାକୁ ଦିଅନ୍ତି ନାହିଁ । ଏହି ରାସ୍ତା ଦିଆ ନଯିବା ଖେଳ ସମୟକୁ କବାଟ ବନ୍ଦ କରି ଦେବା କୁହାଯାଏ । କଲିଆ କୁକୁଡ଼ା ଖେଳଟି ହସଖୁସି ଓ କୌତୁକ ଓ ଆମୋଦଦାୟକ ।

୫୮. **କସରା ଭାଟା** - *ଦେ.ବି.* : ମାଲକାନଗିରି ଜିଲ୍ଲାର ଗୋଟିଏ ଗ୍ରାମର ନାମ ବିଶେଷ ।

ପୂର୍ବକାଳରେ ଆଦିବାସୀମାନଙ୍କର ମୁଖ୍ୟ ଖାଦ୍ୟ ଥିବା ସୁଆଁ । ଡଙ୍ଗରମାନଙ୍କର ବିଭିନ୍ନ ପ୍ରକାରର ସୁଆଁ ଆଦିବାସୀମାନେ ଚାଷ କରୁଥିଲେ । ସାଧାରଣ ସୁଆଁକୁ ଛାଡ଼ି ଆଉ ୩ଜାତିର ସୁଆଁ ହେଉଛି - ସାମେଲ୍, ସିକ୍ମା ଏବଂ କସ୍ରା । ଏହି କସ୍ରା ସୁଆଁ ପ୍ରଚୁର ପରିମାଣରେ ଫଳୁଥିବାରୁ ଗାଁର ନାଁ କସ୍ରା ଭାଟା । କସ୍ରାର କେଣ୍ଡା ସାଧାରଣ ସୁଆଁ କେଣ୍ଡାଠାରୁ ଟିକେ ଲମ୍ବା । ବର୍ତ୍ତମାନ ଏହି ଗାଁ ମୌପଦର ପଞ୍ଚାୟତରେ ରହିଛି । କିନ୍ତୁ କସ୍ରା ବିହନ ଧୀରେଧୀରେ ଲୋପ ପାଇବାକୁ ବସିଛି । ଆଉ ମଧ କୋରାପୁଟ ଜିଲ୍ଲାରେ କସ୍ରାକୁଡ଼ା ବୋଲି ଗୋଟିଏ ଗାଁ କୁନ୍ଦ୍ରା ବ୍ଲକ୍‌ରେ ରହିଛି ।

୫୯. **କସା / କଷା** - *ଦେ.* : କ୍ରିୟା : ଔଷଧ ବିଶେଷର ପ୍ରସ୍ତୁତି ପ୍ରକିୟା ।

ପ୍ରସୂତିର ଗର୍ଭବାଧା ଓ ବେଦନାର ଉପଶମ ପାଇଁ ଯେଉଁ ଚେରମୂଳ ପାଚନ ବ୍ୟବସ୍ଥା କରାଯାଏ, ତାକୁ 'କଷା' କରିବା କୁହାଯାଏ । ଏହା ହେଉଛି (ପ୍ରସୂତି ପାଇଁ ପାଚନ ପାଣି । ପ୍ରସବର ତୃତୀୟ ଦିନରେ କଷା କରାଯାଏ । କଷା କରିବା ପାଇଁ ସରଗି (ଶାଳ), ରସନା (ଏକ ପ୍ରକାର ତୀବ୍ର ସୁଗନ୍ଧଯୁକ୍ତ ଗୁଳ୍ମ) ଜରଓଷ (ଏକ ପ୍ରକାର ପିତା ଚେର), ସିନ୍ଧି (ଭୂଇଁ ଖଜୁରୀ) ଚେର, ବେଲଡାଳ, କୋଳଥ ଆଦିକୁ ମିଶାଇ ତାକୁ ପାଣିରେ ଫୁଟାଇ ପାଚନ ପ୍ରସ୍ତୁତ କରାଯାଏ । ପ୍ରସୂତିର ପ୍ରସବ ବାଧା ଦୂରକରିବା ପାଇଁ ସେହି ପାଚନ ପାଣି ଔଷଧରୂପେ ତାକୁ ପିଇବାକୁ ଦିଆଯାଏ । ଅନ୍ୟ କେତେକ ସ୍ଥାନରେ ଗନ୍ଦରି ଚେର, ଭାସ୍ନା ଚେର ଓ ନିମପତ୍ରକୁ ଛେଚି ପାଣିର ସିଝାଇ ଆଉ ଏକ ପ୍ରକାରର ରସାୟନ ପ୍ରସ୍ତୁତ କରାଯାଏ । ଏହାକୁ ମଧ କଷା କରିବା କହନ୍ତି ।

୬୦. **କସ୍‌ବା / କସ୍‌ନା** - *ଦେ.କ୍ରି.* : ହଳ କରିବା, ଲଙ୍ଗଳ କରିବା

କସ୍ନା : ଲଙ୍ଗଳ ଫାଳ ।

ଜମି ସହ ଆଦିବାସୀର ସଂପର୍କ ଖୁବ୍ ବେଶୀ ଦିନର ନୁହେଁ । କୋଡ଼୍‌କିମାରୁ ଚାଷ ଓ ପୋଡୁଚାଷ ପଦ୍ଧତିରୁ ଉପରକୁ ଉଠି ଜମି କଷିବା ପ୍ରକ୍ରିୟା ଖୁବ୍ ବେଶୀରେ

ଶବ୍ଦେବର୍ଷ ହେଲା ଆରମ୍ଭ ହୋଇଥିବ । ଏବେ ମଧ୍ୟ ଖାଦ୍ୟ ସଂଗ୍ରହ ଅର୍ଥନୀତି ଆଦିବାସୀ ଅର୍ଥନୀତିକ ଜୀବନ ଅର୍ଦ୍ଧାଧିକକୁ ଆବୋରି ବସିଛି, ବିଶେଷ କରି କୋରାପୁଟ ଅଞ୍ଚଳରେ ଏହି ଦୃଷ୍ଟିରୁ କସ୍‌ବା ଶବ୍ଦଟି ସଂସ୍କୃତ କର୍ଷଣ ଶବ୍ଦର ପାଖାପାଖି ମନେ ହୁଏ । ସମ୍ଭବତଃ ତେଲୁଗୁ ଭାଷା ଦେଇ ଏହି ଶବ୍ଦଟି ଆଦିବାସୀ ଭାଷାରେ ପ୍ରବେଶ କରିଛି । ଯଦିଓ ବଣ୍ଡାମାନେ ଧାନ୍ ଓ ଧାନ ଚାଷର ଆବିଷ୍କର୍ତ୍ତା ବୋଲି ପ୍ରବାଦ ରହିଛି, ତଥାପି ତାହା କୋଡ୍‌କିମାରୁ ଚାଷ କରିଆରେ ହୋଇଥିବ । ଆଉ ମଧ୍ୟ କୋରାପୁଟ ଅଞ୍ଚଳରେ ଓଡ଼ିଆ ସାହୁକାରମାନଙ୍କ ତୁଳନାରେ ତେଲୁଗୁ ସାହୁକାରମାନଙ୍କ ସଂପର୍କ ଅଧିକ ପୁରୁଣା ଓ ଦୀର୍ଘ । ଏହିସବୁ ଦୃଷ୍ଟିରୁ 'କସ୍‌ନା' ଶବ୍ଦର ଉତ୍ପତ୍ତି ବିଚାର ଯୋଗ୍ୟ ।

ବ୍ୟବହାର : ବେଲ ଅଇଲେ ମିଶା ଏ ବେଡ଼ାକେ କସି ସାରାଇ କରି ଯୁ ।

୬୧. କସ୍‌ଲି - *ଦେ.ବି. :* ମାଛ ବା ସାପର କାତି । ସାପ ଖୋଳପା । ଗୋଧିର ମଧ୍ୟ କସ୍‌ଲି ଥାଏ । ଇଡ଼ିପଡ଼ା ସାପ ତାର କସ୍‌ଲି ଛାଡ଼ିବା ସଂଗେସଂଗେ ଖାଇଦିଏ । ଅନ୍ୟ ସାପ ମାନେ କସ୍‌ଲି ଛାଡ଼ି ପଳାଇଯାନ୍ତି । ଏହା ମୁଖ୍ୟତଃ ନିର୍ଦ୍ଦିଷ୍ଟ ସାପର ରଂଗ ଓ ଆକାର ବହନ କରିଥାଏ, ତେଣୁ ଭୟ ଉଦ୍ରେକ କରେ ।

ବ୍ୟବହାର : (୧) ମାଚ୍ କସ୍‌ଲି ନା ଛାଡ଼ାଇଲେ ବଡ଼ ବାନିଆ ଲାଗ୍‌ସି ।

(୨) ବଡ଼େଟା ସାପ୍ ଗୁଟେ କସ୍‌ଲି ଚାନାଇଲା ଆଚେ ।

୬୨. କସର୍ - *ଦେ.ବି. :* ଲାଭାଂଶ ବା କମିଶନ୍ । ଯେକୌଣସି ଆଦିବାସୀ ହାଟରେ କିଣାବିକା ସମୟରେ ଆଦିବାସୀ ଉତ୍ପାଦକ ବା ବିକ୍ରେତାକୁ କ୍ରେତା ଅଧିକ ଦେବାପାଇଁ ଜିଗରି କରିଥାଏ । ଫଳରେ ସେ ତାର ଲାଭାଂଶରୁ କିଛି କମିଶନ୍ ଆକାରଣେ ଦେଇଥାଏ । ଏହାକୁ 'କସ୍‌ର' କୁହାଯାଏ ।

ବ୍ୟବହାର : (୧) ଏ ନନି, ମୁଇଁ ଜବର୍ ଗେନିଲିଅ ଚେ, କସ୍‌ର ଦେଇଚୁକି ନାଇ ମୁଇଁ ବେଡ଼ା ଗନେ୍‌ଲି କାଇ, ସେଇ ପାଙ୍ଗଟାରେ କସ୍‌ର କାଇଦେଲା ।

୬୩. କସାଝିକା - *ଦେ.କ୍ରି. :* ଧାନ ମାଣ୍ଡିଆ ପ୍ରଭୃତି ଖରିଫ ଫସଲରୁ ଅନାବନା ଗାସ ବାଲୁଙ୍ଗ ସବୁ ବଛାବଚି କରିବାପାଇଁ ଅବିଭକ୍ତ କୋରାପୁଟର ପ୍ରତ୍ୟେକ ଗ୍ରାମରେ ଝାଙ୍କର ବା ଗ୍ରାମଦେବୀଙ୍କ ପୀଠ ନିକଟରେ ପୂଜା ଅର୍ଚ୍ଚନା କଲାପରେ କୃଷକମାନେ

ନିଜନିଜ ଜମିରେ ବଛାବଛି କାର୍ଯ୍ୟ କରନ୍ତି । ଏହାକୁ 'କସାଝିକା' କୁହଯାଏ । ଦ୍ରଷ୍ଟବ୍ୟ : ନିଂଜାନି ।

୬୪. **କାଇଟା** - *କଅଣ :* ଏହା ଏକ ପ୍ରଶ୍ନବାଚକ ଶବ୍ଦ । ଯେକୌଣସି ଘଟଣା ବା ଦ୍ରବ୍ୟ ବା କାର୍ଯ୍ୟ ସଂପର୍କରେ ଜାଣିବାପାଇଁ ପଚାରିବା କ୍ଷେତ୍ରରେ ଏ ଶବ୍ଦଟିର ବ୍ୟବହାର କରାଯାଇଥାଏ ।

୬୫. **କାଉଡ଼ି** - *ଦେ.ବି. :* ବାହୁଙ୍ଗି, ଭାର ବା ଗୋଟିଏ ବାଡ଼ିର ଦୁଇପଟେ ଶିକା ଦ୍ୱାରା ଜିନିଷ ଭର୍ତ୍ତିକରି ତାଲା ବୋହିବା । କାଉଡ଼ି ମୁଖ୍ୟତଃ ପାକଳ ବାଉଁଶରୁ ତିଆରି ହୋଇଥାଏ । ଏହା ପୁରୁଷ ସଂପତ୍ତି । ଆଦିବାସୀ କିଶୋର ଓ ତରୁଣମାନେ ଖୁବ୍ କମ୍ ବୟସରୁ ଜମି କଷିବା, ଟାଙ୍ଗିଆରେ କାଠ ଚିରିବା ଓ କାଉଡ଼ିରେ ଭାର ବହିବା କାମରେ ବଡ଼ ମାନଙ୍କଠାରୁ ପ୍ରଶିକ୍ଷଣ ନେଇଥାନ୍ତି ଓ ଦକ୍ଷତା ହାସଲ କରିଥାନ୍ତି । କାଉଡ଼ିଆ : କାଉଡ଼ିରେ ଭାର ବହିବା ଲୋକ ।

ଗୀତରେ ବ୍ୟବହାର :
"କନ୍ଧ୍‌ର କାଉଡ଼ି କନ୍ଧେ ରଇଲେ
ସରିକାଇ ମର୍‌ବାର ଭୁକେ"

ଅର୍ଥାତ୍ : କାନ୍ଧରେ କାଉଡ଼ି ବୋହି ପାରୁଥିଲେ ଭୋକରେ କାହିଁକି ରହିବା ?

୬୬. **କାଉନି** - *ଦେ. :* ବିଶେଷ୍ୟ : କାହାଣୀ (ଗାଥା କବିତା)

(୧) କାଉନି ଗାଇଲାନି : ଗାଥା କବିତା ଗାଉଅଛି ।

(୨) ଅବିଭକ୍ତ କୋରାପୁଟ ଅଞ୍ଚଳରେ ବିଭିନ୍ନ ଦେଶିଆ (ଆଦିବାସୀ) ଗ୍ରାମରେ ଗୀତ୍ କୁଡ଼ିଆ ଗୀତ୍ କୁଡ଼ିଆନୀମାନେ (ପୁରୁଷ ସ୍ତ୍ରୀ ଗାୟକ ଗାୟିକାମାନେ) ରାଜାରାଣୀ, ରାଜକୁମାର, ରାଜକୁମାରୀ, ପୁରାଣ, ପଶୁପକ୍ଷୀ, ଦେବଦେବୀଙ୍କ କାହାଣୀକୁ ଗୀତ ଆକାରରେ ଗାଇଥାଆନ୍ତି ।

(୩) କେତୋଟି କାଉନିର ନାମ : ଡିଣ୍ଡା ନକୁଲ୍, କୋଦମତି ରାଜା, ନୁର୍‌ପନାଗ, ଯମ୍ ପୁରାନ୍, ବାଇଟୁଣ୍ଡି ରାଜା, ସାଦବରଜା, ଲକ୍ଷ୍ମୀପୁରାଣ - ଜାକଡ଼ା ରାଜା, ମକୁଟ ବାନ୍ଧା କୁମର, ସମର ସାଥି କାଉନି, ସୂରିଜ ରାଜା, ଗୋଇ ରାଜା, ଅନନ୍ତ କୁମର, ଶାଲେବନ୍ ରାଜା, କୁମୁଡ଼ା ଫୁଲିଆ ରାଜା ଇତ୍ୟାଦି ।

(୪) କଳାହାଣ୍ଡି, ସମ୍ବଲପୁର, ବଲାଙ୍ଗୀର ଅଞ୍ଚଳରେ କାଉନିକୁ କଥାନି ନାମରେ ନାମିତ କରାଯାଇଥାଏ । ଏପରିକି କୋରାପୁଟର କେତେକ ଅଞ୍ଚଳରେ ମଧ୍ୟ ଏହାକୁ 'କଥାନୀ' / କାଥାନୀ କୁହାଯାଏ ।

କାଥାନୀ / କଥାନୀ - ଆଦିବାସୀ ପଦ୍ୟାତ୍ମକ କାହାଣୀ । ଲୋକକାବ୍ୟ ଭାବେ ନାମିତ କରାଯାଇଛି । ଏହା ମୁଖ୍ୟତଃ ରାଜାରାଣୀଙ୍କ କାଳ୍ପନିକ ତଥା ଚରିତମୂଳକ ଆଖ୍ୟାନ । ଏଣୁ ଏହାକୁ ରାଜାରାନୀ କଥାନୀ ମଧ୍ୟ କହିଥାନ୍ତି । ଆଦିବାସୀ ସଂପ୍ରଦାୟରେ ବହୁ କାଳ୍ପନିକ, ପୌରାଣିକ ଓ ସାମାଜିକ କଥାନୀ ଗୀତକୁଡ଼ିଆ ଓ ଗୀତକୁଡ଼ିଆନୀମାନେ ମୁହେଁମୁହେଁ ଗାନ କରିଥାନ୍ତି । ରାତି ପାହିଯାଏ ସିନା କଥାନୀ ସରେ ନାହିଁ । ଆଦିବାସୀ ମାନଙ୍କର ଦଶାହ, ବିବାହ ଓ ସନ୍ତାନ ଜନ୍ମ ଅବସରରେ ଗୀତକୁଡ଼ିଆ ଓ ଗୀତକୁନିଆନୀଙ୍କୁ ରାତିରେ କଥାନୀ ଗାଇବାକୁ ନିମନ୍ତ୍ରଣ କରାଯାଇଥାଏ । କେହିକେହି ସାରଙ୍ଗୀ, ଡୁଙ୍ଗ୍‌ଡୁଙ୍ଗା ଓ ରାମଗୁଟା ବଜାଇ କଥାନୀ ପରିବେଷଣ କରନ୍ତି । ପ୍ରଥମେ ମୁଖ୍ୟ କଳାକାର ଗାନ କରିବା ପରେ ଅନ୍ୟମାନେ ଗଂଜାମର ଗାଆଣ ଢଙ୍ଗରେ ପାଳିଧରି ବୋଲିଥାନ୍ତି । ଏ ବାବଦରେ ଏମାନେ ଯଜମାନଙ୍କଠାରୁ ଟଙ୍କା, ଧାନ ଓ ଲୁଗା ଇତ୍ୟାଦି ପାରିତୋଷିକ ପାଇଥାନ୍ତି ।

୬୭. କାଉବୋଦା - *ଦେ.ବି. :* ମହାକାଳ ଫଳ । କାଉବୋଦା ଭିତରେ କଳା ଉପରେ ଲାଲ ସୁନ୍ଦର ଥାଏ । ସାପବିଷ ହରଣ ପାଇଁ କାଉବୋଦାକୁ ଔଷଧ ରୂପେ ଗାଁ ବଇଦମାନେ ବ୍ୟବହାର କରିଥାନ୍ତି ।

୬୮. କାକ୍‌ଡ଼ା - *ଦେ.ବି. :* କଙ୍କଡ଼ା, ଇଂ. - Crab

ଏହାକୁ ଆଦିବାସୀମାନେ ଖାଦ୍ୟ ରୂପେ ବ୍ୟବହାର କରିଥାନ୍ତି । ଏହା ସାଧାରଣତଃ ମାଣ୍ଡିଆ କଙ୍କଡ଼ା ଓ ବେଡ଼ା କଙ୍କଡ଼ା ଭେଦରେ ଦୁଇପ୍ରକାରର । ମାଣ୍ଡିଆ କଙ୍କଡ଼ା ଡଙ୍ଗର ଓ ଝୋଲାମାନଙ୍କର ସଂଗ୍ରହ କଲାବେଳେ ବେଡ଼ା କଙ୍କଡ଼ା ବିଲବାଡ଼ିରୁ ସଂଗ୍ରହ କରାଯାଏ । ପ୍ରଥମଟି ଟାଣ ଖୋଳପା ବିଶିଷ୍ଟ (Stone Crab) ଓ ଦ୍ୱିତୀୟଟି ନରମ ଖୋଳପା ବିଶିଷ୍ଟ । ଏହାକୁ ତେଲ, ଲୁଣ, ହଳଦୀ, ଲଙ୍କା ଦେଇ ପତ୍ରପୋଡ଼ା ଓ ତରକାରୀ କରି ଆଦିବାସୀମାନେ ଖାଇଥାନ୍ତି । କଙ୍କଡ଼ାକୁ ନେଇ ବହୁ କାହାଣୀ, ପ୍ରବାଦ ପ୍ରଚଚନ ଆଦିବାସୀ ସଂସ୍କୃତିରେ ପ୍ରଚଳିତ । ଯେପରିକି, କକ୍‌ଡ଼ା କକ୍‌ଡ଼ିକାଆନି, ବକ୍‌କକ୍‌ଡ଼ା କାଆନୀ ଇତ୍ୟାଦି । ସେହିପରି ଚଇତି ଗୀତରେ କାକ୍‌ଡ଼ାର ବ୍ୟବହାର :

"କାଲିଆ କାକ୍‌ଡ଼ା ଚେପ୍‌ଟା ଦାଡ଼ା, ଫୁଲ୍ ଫୁଟେ ଗାଡ଼ାଗାଡ଼ା,

ମୁଏଁ ମେଶ ନାଇଁ ଟିଟଡ଼ା ଗାଡ଼ା, ସଗରତା ମାଇକି ଲୋଡ଼ା ।"

ଅର୍ଥାତ୍, ମୁଁ ହେଉଛି କଙ୍କଡ଼ା, ମୋର ଧାରୁଆ ଗୋଡ଼କୁ ଦେଖୁଛତ । ଚାରିଆଡ଼େ ପେନ୍ଥାପେନ୍ଥା ଫୁଲ ଫୁଟିଛି (ଅର୍ଥାତ୍, ଝିଅମାନେ ଦଳଦଳ ହୋଇ ନାଟ କରୁଛନ୍ତି) ଆରେ ଶୁଖିଲା ଗୋଡ଼ିଆ ଟୋକା, ତୋ ଗୋଡ଼ରେ ବଳ ନାହିଁକି ମୁହଁରେ ନିଶ ନାହିଁ । (ଅର୍ଥାତ୍ ପୌରୁଷ ନାହିଁ) ତୁ ସଗ୍‌ରତା ମାଇକି ଖୋଜୁଛୁ । (ଅର୍ଥାତ୍ ଯୌନ ଅଭିଜ୍ଞା ସ୍ତ୍ରୀକୁ ଲୋଭ଼ କରୁଛୁ ?)

୬୯. କାକ୍‌ଡ଼ିଗାଡ଼୍ - *ଦେ.ବି. :* ଏକ ନଦୀର ନାମ ବିଶେଷ । ଏହି କାକ୍‌ଡ଼ିଗାଡ଼୍ ମାଛକୁଣ୍ଡର ଏକ ଉପନଦୀ । ମାଛକୁଣ୍ଡ ବନ୍ଧ ବନ୍ଧା ହେବାପରେ ଏହାର ଧାର ଶୁଖିଯାଇଛି । କିନ୍ତୁ, ଉପରମୁଣ୍ଡର ନଦୀ ଏବେବି ପାତୁଆ ଅଞ୍ଚଳରେ ରହିଛି । ଏହି ନଦୀର ଏପରି ନାମ ପଛରେ ଏକ କିମ୍ବଦନ୍ତୀ ରହିଛି ।

ଜଣେ ଗର୍ଭବତୀ କୋଣ୍ଡାଦୋରାଜାତିର ଆଦିବାସୀ ରମଣୀ ପ୍ରସବ ସମୟ ପାଖେଇ ଆସିବାରୁ ବାପା ଘରକୁ ବାହାରିଲା । ବାଟରେ ପଡ଼ିଲା ଗୋଟିଏ ଗାଡ଼୍ ବା ଗିରିନଦୀ । ବର୍ଷାଦିନ । ଉପର ମୁଣ୍ଡର ବର୍ଷା ସକାଶେ ହଠାତ୍ ପାଣି ମାଡ଼ି ଆସିଲା । ବିଚାରୀ ରମଣୀଟି ନଦୀପାର ହୋଇ ପାରିଲାନି । ବନ୍ୟା କମିବ ବୋଲି ଜଗିଜଗି ସଂଜ ହୋଇଗଲା । ଅଗନା ଅଗନି ବନସ୍ତକୁ ଅସଜ ଦେହ । ବିଚାରୀ ବଡ଼ ଆକୁଳରେ ଗାଡ଼ଦେବୀଙ୍କୁ ସୁମରଣା କଲା । ଦେବୀ ଉଭାହୋଇ କହିଲେ 'ତୋତେ ପାର ହେବାର ବ୍ୟବସ୍ଥା କରିଦେବି ଯେ, ଗୋଟିଏ ସର୍ତ୍ତରେ । ତୋର ପୁଅ ହେଉ କି ଝିଅ ହେଉ, ଫେରିଲା ବାଟରେ ପିଲାଟିକୁ ମୋତେ ଦେଇଯିବୁ । କୋଣ୍ଡାଦୋରା ରମଣୀଟି ହଁ ଭରିଲା । ସଂଗେସଂଗେ ନଦୀ ଛାଡ଼ିଗଲା ଓ ଝିଅଟିକୁ ବାଟ ଦେଇଦେଲା । ବାପଘରକୁ ଯାଇ ଭଲରେ ଭଲରେ ତାର ପିଲା ଜନ୍ମ ହେଲା । ଦୁଇ / ତିନିମାସ ପରେ ସେଇ ବାଟରେ ଫେରିଲା ବେଳକୁ ସେ ସାଂଗରେ ଆଣିଥିଲା ବୋଝେ କାକୁଡ଼ି । ତାକୁ ଠିକ୍ ପିଲା ଭଳି କନାରେ ଗୁଡ଼ାରେ କାନ୍ଧରେ ଧରିଥିଲା । ନିଜର ପିଲାକୁ ଆଉ ଜଣକୁ ଧରାଇଥିଲା । ଏଥର ମଧ୍ୟ ନଦୀ ଫୁଲିଥିଲା । 'ନେ ମୋର ପିଲାକୁ ନେ' କହି ଆଦିବାସୀ ମା'ଟି କାକୁଡ଼ି ବୋଝ ନଈରେ ଫୋପାଡ଼ି ଦେଲା । ଗାଡ଼ର ବନ୍ୟା

କମିଗଲା । ଝିଅମାନେ ଗାଡ଼ପାରି ହୋଇ ଚାଲିଗଲେ । କାକୁଡ଼ିଖାଇ ଠକି ଯାଇଥିବାରୁ ସେଇଦିନୁ ସେ ଗାଡ଼୍‌ର ନାମ 'କାକ୍‌ଡ଼ି ଗାଡ଼୍‌' ।

୭୦. କାକିରିଗୁମ୍ମା - *ଦେ.ବି. :* ଗ୍ରାମ ବିଶେଷର ନାମ । କାକର : (ଭୀଷଣ ଥଣ୍ଡା ପଡୁଥିବା) ଗୁମ୍ମା (ଗାଁ), ଖାଂକର (ଜଂଗଲୀ ପଶୁ) ଗୁମ୍ମା (ଗାଁ) ଭୀଷଣ ଥଣ୍ଡା ପଡୁଥିବା ଜଂଗଲୀ ପଶୁ ଅଧ୍ୟୁଷିତ ଗ୍ରାମର ନାମ । ଏହି କାକିରିଗୁମ୍ମା ଗ୍ରାମ ଲକ୍ଷ୍ମୀପୁର ଓ କୋରାପୁଟ ମଧ୍ୟସ୍ଥଳୀରେ ଅବସ୍ଥିତ ।

୭୧. କାଙ୍ଗୁଲାଡ଼ି - *ଦେ.ବି. :* କୋଚିଲାଖାଇ : ଇଂ. Toucan, ପକ୍ଷୀ ବିଶେଷ । ଘଞ୍ଚ ଜଂଗଲରେ ଦେଖାଯାଉଥିବା ଓସାରିଆ ବିରାଟ ବଙ୍କା ହଳଦିଆ ଥଣ୍ଟଥିବା ଏକ ପ୍ରକାର ବିରଳ ପକ୍ଷୀ । ମୁଖ୍ୟତଃ କୋଚିଲା ଫଳ ଖାଇ କିମ୍ବା ଏକ ପ୍ରକାର ଜଂଗଲି ବରଫଳ ଖାଇ ଏହା ଜୀବନଧାରଣ କରିଥାଏ । କୋଚିଲା ଗଛର ଲୋପ ସଂଗେସଂଗେ ଏହି ପକ୍ଷୀ ମଧ୍ୟ ଲୋପ ପାଇ ଆସିଲେଣି । ଏହା ଲୋପ ପାଇବାର ଅନ୍ୟ ଏକ କାରଣ ହେଉଛି, ଏହାର ମାଂସରୁ ପ୍ରସ୍ତୁତ ତେଲର ଔଷଧୀୟ ଗୁଣ ରହିଛି ବୋଲି ପ୍ରଚଳିତ ଧାରଣା । ଏହା ଖାଇଲେ ବିଭିନ୍ନ ପ୍ରକାର ରୋଗ ଭଲ ହୁଏ ବୋଲି ଆଦିବାସୀମାନଙ୍କର ବିଶ୍ୱାସ ।

୭୨. କାଙ୍ଗୋ / କାଙ୍ଗୁ - *ଦେ.ବି. :* ଉଙ୍ଗର ଜମିରେ ଚାଷ ହେଉଥିବା ଏକ ପ୍ରକାରର ଛୋଟ ଧାନ ଜାତୀୟ ଶସ୍ୟ । କାଙ୍ଗୋ ଚାଉଳ ଅତ୍ୟନ୍ତ ସୁସ୍ୱାଦୁ । ମୂଷଳରେ କୁଟିକୁଟି ଏହାକୁ ଛଡ଼ାଯାଏ । ହଳଦୀ ରଙ୍ଗର କାଙ୍ଗୁ ଚାଉଳରେ ଭାତ, କ୍ଷୀରି, ଜାଉ ଓ ଉପମା ଆଦି ପ୍ରସ୍ତୁତ ହୋଇପାରେ । ଏହା କ୍ରମଶଃ ଲୋପପାଇ ଆସିଲାଣି । କାଙ୍ଗୁ ଦୁଇପ୍ରକାରର । ବଡ଼ କାଙ୍ଗୁ ଓ ସାନ କାଙ୍ଗୁ । ବଡ଼ କାଙ୍ଗୁ ପ୍ରାୟ ୫ ଫୁଟ ଉଚ୍ଚା ହୁଏ । ଧାନପତ୍ରଠାରୁ ଅଧିକ ଲମ୍ବ ଓ ଓସାରିଆ ପତ୍ର । ଡିସେମ୍ବର ମାସରେ ଅମଳ ହୁଏ । ସାନ କାଙ୍ଗୁ ତିନିଫୁଟ ଉଚ୍ଚା ହୁଏ । ଅମଳ ସମୟ ବର୍ଷାଋତୁ ।

୭୩. କାଞ୍ଜି କରଡ଼ି - *ଦେ.ବି. :* ଏକ ପ୍ରକାର କରଡ଼ି ତରକାରୀ । କରଡ଼ିକୁ ସରୁସରୁ ବା ଚେକାଚେକା କାଟି ରାତି ଯାକ ବତୁରେଇ ରଖି ସକାଳେ ସେହି ପାଣିକୁ ଫିଙ୍ଗି ଦେଇ ତରକାରୀ ପ୍ରସ୍ତୁତି କରାଯାଏ । ଏହାକୁ 'କାଞ୍ଜି କରଡ଼ି ଶାଗ' ବୋଲି କୁହାଯାଏ ।

୭୪. କାଟ୍‌ଲାସ୍ / କାଟ୍‌ନାମ୍ - *ଦେ.ବି. :* ଦିଶାରୀ, ଗୁରୁମାଈ ଆଦି ଯେଉଁମାନେ ପୂଜାବିଧି କରନ୍ତି, ବିରୁ କାର୍ଯ୍ୟ କରନ୍ତି, ସେମାନଙ୍କୁ ଘରବାଲା ବା ଯଜମାନମାନେ ସେମାନଙ୍କ କାର୍ଯ୍ୟପାଇଁ ଯେଉଁ ଦକ୍ଷିଣା ଖୁସିରେ ଦିଅନ୍ତି, ତାହାକୁ କାଟ୍‌ନାମ / କାଟ୍‌ଲାସ୍ କୁହାଯାଏ । ଯଦିଓ ଏହା ଏକ ପ୍ରକାର ଉପହାର, ତଥାପି ଏହା ଉପହାର ନୁହେଁ । କାରଣ ଏଥିରେ ବାଧ ବାଧକତା ନଥିଲେ ମଧ୍ୟ କିଛି ଅଲିଖିତ ପରମ୍ପରା ଥାଏ । ସେଇ ଅନୁସାରେ ଅର୍ଥ ତଥା ଅନ୍ୟାନ୍ୟ ଜିନିଷ (ଚାଉଳ ଇତ୍ୟାଦି) ଦେବାକୁ ଯଜମାନ ବାଧ ହୁଏ । ସେହି ଅର୍ଥକୁ କାଟ୍‌ନାମ୍ / କାଟ୍‌ଲାସ୍ କୁହାଯାଏ । ଏବେ ଏଥିରେ ବାଧ ବାଧକତାର ଉପାଦାନ ଅଧିକ ଦେଖାଦେଲାଣି । ଏପରିକି ଏହା ୫୦୦ରୁ ୧୦୦୦ଟଙ୍କାରେ ପହଞ୍ଚିଲାଣି ।

୭୫. କାଟା - *ଦେ.ବି. :* ଗୟଳ ଶିଙ୍ଘ ନିର୍ମିତ ଶିଙ୍ଘ । ଏହା ଫୁଙ୍କି ବଜାଇବା ବାଦ୍ୟଯନ୍ତ୍ର ବା ଏକ ସୁମୁରି ବାଦ୍ୟ । କୋୟାମାନେ ବିଭିନ୍ନ ପର୍ବପର୍ବାଣୀ ଓ ନୃତ୍ୟରେ ତଥା ଶିକାରରେ ଏହାର ବ୍ୟବହାର କରିଥାନ୍ତି । ଆନ୍ଦୋଳନ ସମୟରେ ଗାଁକୁ ଗାଁ ଖବର ପହଞ୍ଚାଇବା ପାଇଁ ବା ମୃତ୍ୟୁ ସମୟରେ ଖବର ଦେବାପାଇଁ ଏହା ବ୍ୟବହାର ହୋଇଥାଏ ।

୭୬. କାଡ଼ାମୂଷା - *ଦେ.ବି. :* ଜଂଗଲରେ ଗାତ ଖୋଳି ରହନ୍ତି । ଗୋଟିଏ ଗୋଟିଏ ଜାଗାରେ ୨୦୦/୩୦୦ କାଡ଼ାମୂଷା ପଲ୍ଲା ରହିଥାଏ । ଗୋଷ୍ଠୀର ଗାଁ ଗଣ୍ଡା ଓ ଜଂଗଲ ସହ ଏମାନେ ଅଭ୍ୟସ୍ତ । ଏମାନଙ୍କ ଗାତର ମଧ୍ୟ ଭିତରପଟ ଓସାରିଆ । କିନ୍ତୁ ଫସଲ ସଞ୍ଚୟ ପାଇଁ ନୁହେଁ । ଗୋଟିଏ ଗାତରେ ଅଧିକ ସଂଖ୍ୟାରେ ରହିବାପାଇଁ । ଜଂଗଲର କନ୍ଦା ଏମାନଙ୍କ ପ୍ରିୟ ଖାଦ୍ୟ, ଏମାନେ ସାଧାରଣତଃ ଅନ୍ୟ ମୂଷାଠାରୁ ଅଧିକ ଓସାର ଓ ଲମ୍ବା । କାଡ଼ା ବା ଠେକୁଆ ଭଳି ଧାଉଁଥିବାରୁ ଏମାନଙ୍କୁ କାଡ଼ାମୂଷା କୁହଯାଏ । ଏହାର ଓଜନ ୨ରୁ୩କେ.ଜି. ପର୍ଯ୍ୟନ୍ତ ହୋଇଥାଏ । ଏମାନଙ୍କର ରଂଗ କଳା । କେଳବ ଲାଙ୍ଗୁଡ଼ ଓ ଚାଲିରେ ଫରକ ଦେଖି ଏମାନଙ୍କୁ ମୂଷା ବୋଲି ଚିହ୍ନାଯାଏ ।

୭୭. କାଣାସାପ୍ - *ଦେ.ବି. :* ଲାଞ୍ଜ ପାଦ ବିହୀନ ଏକ ପ୍ରକାର ଝିଟିପିଟି ଜାତୀୟ ଜୀବ । ଏମାନେ ବାହାରେ ଖୁବ୍ କମ୍ ଦେଖାଯାନ୍ତି । ଖୁବ୍ ଜଲଦି ମାଟି ଖୋଳି ଲୁଚି ଯାଆନ୍ତି ।

୭୮. କାଣ୍ଡିଆ ମୂଷା - *ଦେ.ବି. :* ସବୁଠାରୁ ବଡ଼ ସାଇଜ୍‌ର ମୂଷା । ଓଜନ ପ୍ରାୟ ୨କେ.ଜି.ରୁ ୫କେ.ଜି ପର୍ଯ୍ୟନ୍ତ ହେବା ଦେଖାଯାଏ । ଏମାନେ ଘରେ - ବାହାରେ ସବୁଆଡ଼େ ରହନ୍ତି । ଭାରୀ ଦୁର୍ଦ୍ଦାନ୍ତ । ବିଲେଇମାନେ ମଧ୍ୟ ଏମାନଙ୍କୁ ଡରନ୍ତି । ପତଳାକାନ୍ଥ ଖୋଳି ସହଜରେ ଏମାନେ ଖୋଲି ଦିଅନ୍ତି । ଏମାନେ ମୁଖ୍ୟତଃ ନିଶାଚର । ଦିନବେଳେ ଗାତରେ ରହିଥାଆନ୍ତି ।

୭୯. କାଣ୍ଡିକି ପଦର - *ଦେ.ବି. :* ମାଲକାନଗିରି ଜିଲ୍ଲାର ଏକ ଗ୍ରାମ ବିଶେଷ । ଏହା ଏକ ପୁରୁଣା କୋୟା ଗାଁ । ମଧ୍ୟପ୍ରଦେଶରୁ ଆସିଥିବା ଗଣ୍ଡମାନଙ୍କୁ ଓଡ଼ିଶାରେ କହନ୍ତି ଗଣ୍ଡିଆ । କିନ୍ତୁ ଏହି ଗଣ୍ଡିଆମାନେ ଓଡ଼ିଶାର କୋୟା ମାନଙ୍କ ସାଂଗରେ ମିଳାମିଶା କରିବା ପାଇଁ ନିଜକୁ ଗଣ୍ଡିଆ ନ କହି କୋୟା କହନ୍ତି । ସେହିଭଳି କାଣ୍ଡିକି ପଦର ଗଣ୍ଡିଆମାନେ ପ୍ରଥମେ ହେଲେ କୋୟା

ଏବଂ ପରେପରେ ପଇତା ପକାଇ ନିଜକୁ କାଣ୍ଡିକି ବଲାଇଲେ । ହାଲ୍‌ବୀ ରାଜା ରୂପଧର୍ ମାଝୀଙ୍କ ପ୍ରଭାବରେ ଏମାନଙ୍କ ଭାଷା ମଧ୍ୟ କିଛି କିଛି ବଦଳିଗଲା । ତା ସଂଗେସଂଗେ ନିଜର କଓ୍ୱାସୀ ସଂଜ୍ଞା ବଦଳି ହୋଇଗଲା କାଣ୍ଡିକି । ଜାତି ହେଲା ଭୂମେୟା । କୋୟା ହାଲ୍‌ବି ଓ ଭୂମେୟା ଭାଷାର ସମ୍ମିଶ୍ରଣରେ ତିଆର ଏକ ଖେଚୁଡ଼ି ଭାଷା ଏମାନେ କହନ୍ତି । ଏପର୍ଯ୍ୟନ୍ତ ସେମାନଙ୍କ ଗାଁରେ କୋୟା ଦେବତା ରହିଛନ୍ତି ଓ ସମାଧି ମଧ୍ୟ ରହିଛି । କିଛି କଓ୍ୱାସୀ ଡୁରୁନ୍ନା ଓ କରସ୍ତାରେ ମଧ୍ୟ ପରିଣତ ହୋଇଛନ୍ତି । ରିଜର୍ଭ ଜଂଗଲ ଭିତରେ ଏହି ଗାଁ ବସିଥିବାରୁ ପ୍ରଥମେ ଏହି ଗାଁର ନାମ ଥିଲା ଇଡାରଗୁଡ଼ା । ମାଝୀ ରାଜାଙ୍କ ପ୍ରଭାବରେ ପରେ ଏହା ହେଲା କାଣ୍ଡିକି ପଦର । ରକ୍ଷଣଶୀଳ ଭୂମେୟାମାନେ ଏମାନଙ୍କୁ ସହଜରେ ଗ୍ରହଣ କରନ୍ତି ନାହାନ୍ତି ।

କୋରାପୁଟର ଅନ୍ୟାନ୍ୟ ଅଞ୍ଚଳରେ ମଧ୍ୟ ଏମାନଙ୍କ ବଂଶଧର ଅଧ୍ୟୁଷିତ କାଣ୍ଡିକିଗୁଡ଼ା ନାମିତ କିଛି ଗ୍ରାମ ଦେଖିବାକୁ ମିଳେ ।

୮୦. କାନ୍ଦୁଲ - *ଦେ.ବି. :* ହରଡ଼, ଡାଲି ଜାତୀୟ ଫସଲ । ଆଦିବାସୀମାନେ ଉତ୍ପାଦନ କରୁଥିବା କାନ୍ଦୁଲ ଛୋଟବଡ଼ ଓ ମଝିଆ କ୍ରମରେ ୩ ପ୍ରକାରର । ସବୁଠୁ ଛୋଟ କାନ୍ଦୁଲକୁ କୁହାଯାଏ ଚାଞ୍ଚି କାନ୍ଦୁଲ । ଏହାର ରଂଗ ଧଳା । ଗଛର ଉଚ୍ଚତା ପାଞ୍ଚଫୁଟ । ହାତରେ ଏହାର ପେଣ୍ଡା ତୋଳାଯାଏ । ମଝିଲା ସାଇଜର କାନ୍ଦୁଲକୁ

କହନ୍ତି ସିରିକାନ୍ଦୁଲ । ଗଛର ଉଚ୍ଚତା ଛଅଫୁଟ । ସବୁଠୁ ବଡ଼ କାନ୍ଦୁଲ ଜଡ଼ା ମଂଜିଠୁ ସାମାନ୍ୟ ଛୋଟ ହୋଇଥାଏ । ମଣିଷଠୁ ଉଚ୍ଚ ହୁଏ ଏହାର ଗଛ । ଗଛ କାଟି କୁପା କୁଢ଼େଇ ଏହାର ଫସଲ ଅମଳ ହୁଏ । ଏହା ସବୁଠୁ ସୁସ୍ୱାଦ । ଆଦିବାସୀମାନେ କୃଷିକ୍ଷେତ୍ରରେ ଉତ୍ପାଦନ କରୁଥିବା ଫସଲମାନଙ୍କ ମଧ୍ୟରୁ ଡାଲି ଜାତୀୟ ଫସଲ ବା ହରଡ଼ ଅନ୍ୟତମ । ଏମାନେ ଏହି କାନ୍ଦୁଲକୁ ଅମଳ କଲାପରେ ମନଇଚ୍ଛା ଖାଇ ନଥାନ୍ତି । କେହିକେହି ମାଘ ପର୍ବ ବା କେହିକେହି ଚୈତ୍ର ପର୍ବ ଆସିବାଯାଏ ଅପେକ୍ଷା କରନ୍ତି । ଏଇ ପର୍ବ ସମୟରେ ଗାଁର ଦିସାରୀ, ଜାନୀ, ଶିରା ଇତ୍ୟାଦିଙ୍କୁ ପଚାରି ଦିନବାର ସ୍ଥିର କରାଯାଏ । ସେଇ ନିର୍ଦ୍ଧାରିତ ଦିନରେ ଏମାନେ ଏକ ନୂଆ ହାଣ୍ଡିରେ ଏଇ କାନ୍ଦୁଲକୁ ଭାଜି ଏହାକୁ ଚୁନା କଲାପରେ, ଏହାର ଚୁନାରେ ଡାଲି ବା ଖାଦ୍ୟ ପ୍ରସ୍ତୁତ କରି ଡୁମା ଦେବତା, ଇଶାଣ ଦେବତା ଓ ଗୁଡ଼ି ଦେବତାମାନଙ୍କୁ ଅର୍ପଣ କରିବା ପରେ ନିଜେ କାନ୍ଦୁଲ ଡାଲି ଖାଇଥାନ୍ତି । ଏହା ପୂର୍ବରୁ ମନଇଚ୍ଛା କାନ୍ଦୁଲ ଭାଜିଲେ ବା ଖାଇଲେ ସେମାନଙ୍କୁ ବାଘଡୁମ୍ବା ଖାଇଯିବ ବୋଲି ସେମାନେ ବିଶ୍ୱାସ କରନ୍ତି । ଅନ୍ୟପକ୍ଷରେ ଅନ୍ୟ କୌଣସି ଝିଅକୁ ବିବାହ ପାଇଁ ପ୍ରସ୍ତାବ ପକାଯାଉଥିବା ବା ଅନ୍ୟ ଗୋଟିଏ ଝିଅକୁ ବିବାହ କରିଥିବା ଆଦିବାସୀ ଯୁବକର ଯଦି ମାମୁଁ ଝିଅ ଥାଏ ଏବଂ ସେ ସୁନ୍ଦରୀ ଯୁବତୀଟିଏ ହୋଇଥାଏ, ତାକୁ ବିବାହ କରିବାପାଇଁ ମନ ବଳେଇଥିବା ଯବକଟି ଗୀତଛଳରେ କହିଥାଏ,

‘କାଚା କାନ୍ଦୁଲ ଖାଇଲିରେ ମାମା -
ପେଟ୍ ଗୁଡୁ ଗୁଡୁ କାଲା
ତୋ’ର ବେଟିକେ ଦେଖିକାଏ ମାମା
ମୋର ମନ ଗୁରୁମୁରି ଗାଲା ।’

ଯାହାର ଅର୍ଥ : କଞ୍ଚା କାନ୍ଦୁଲ ପରି ଅପରିପକ୍ୱ କନ୍ୟାଟିଏ ବିଭା ହେଲି ଯେ ମନରେ ଜମା ସୁଖ ଓ ସରାଗ ରହିଲା ନାହିଁ । ମାମା ! ତୋର ଝିଅର ରୂପ ଯୌବନ ଦେଖିଲା ଦିନୁଁ ମୁଁ ତା ପ୍ରତି ଏତେ ଆସକ୍ତ ହୋଇ ପଡ଼ିଛି ଯେ ମୋର ମନ ଆଉ ସ୍ଥିର ରହୁ ନାହିଁ ।

୮୧. କାନାର ଧାଙ୍ଗଡ଼ୀ - *ଦେ.ବି. :* ଏକ ପାହାଡ଼ର ନାମ ବିଶେଷ । କାନାର ଧାଙ୍ଗଡ଼ୀ ହେଉଛି ଅବିଭକ୍ତ କୋରାପୁଟର ରାମାୟଣ ସମ୍ବନ୍ଧୀୟ ଏକ ମିଥ୍ ଓ ଧର୍ମୀୟ

ପରମ୍ପରା । ଏକଦା ବାନର ଓ ବାଘ ଗୋଟିଏ ସୁଉଚ୍ଚ ପାହାଡ଼ରୁ ପାଞ୍ଚ କି.ମି. ଦୂରସ୍ଥ ଅନ୍ୟ ଏକ ପାହାଡ଼କୁ ଲମ୍ଫ ଦେବାପାଇଁ ବାଦ କଲେ । ପ୍ରଥମେ ବାଘ ଲମ୍ଫ ଦେଉଦେଉ ତଳକୁ ଖସିପଡ଼ି ମରିଗଲା । କିନ୍ତୁ ବାନରଟି ଲମ୍ଫ ଦେବାରେ ସଫଳ ହେଲା । ବାନରଟି ଲମ୍ଫ ଦେଇ ଦୂର ପାହାଡ଼ର ଶିଳାରେ ହାତ ଥାପି ଥିବାରୁ ସେହି ଶିଳା ଦେହରେ ବାନର ଆଙ୍ଗୁଠି ଚିହ୍ନ ବର୍ତ୍ତମାନ ସୁଦ୍ଧା ଅଛି ଏବଂ ଛିଣ୍ଡି ପଡ଼ିଥିବା ବାନର ଆଙ୍ଗୁଠି ଗୁଡ଼ିକ ପାହାଡ଼ ତଳେ ବର୍ତ୍ତମାନ ପୂଜା ପାଉଛି । ଏହି ଉପାଖ୍ୟାନଟି ରାମାୟଣ ବର୍ଣ୍ଣିତ ହନୁମାନଙ୍କ ନୀଳଗିରି ପର୍ବତରୁ ଲଙ୍କାଗଡ଼କୁ ଲମ୍ଫ ମାରିଥିବା ବର୍ଣ୍ଣନାର କ୍ଷୁଦ୍ର, ଆଞ୍ଚଳିକ ରୂପ ମାତ୍ର । କାନାର୍ ଧାଙ୍ଗଡ଼ୀର ଉପ୍‌ତିସ୍ଥଳୀ ଅର୍ଥାତ୍, କାନାର ଧାଙ୍ଗଡ଼ୀ ପାହାଡ଼ଟି କୋରାପୁଟ ଜିଲ୍ଲାର ବୋରିଗୁମ୍ମା ବ୍ଲକ୍‌ର କାଠରଗଡ଼ା ନିକଟରେ ଅବସ୍ଥିତ ।

୮୨. କାବ୍‌ବା - *ଦେ.ବି. :* କୋୟା ନୃତ୍ୟରେ କୋୟାମାନେ କଳା କପଡ଼ାରେ ତିଆରି କରି ପିନ୍ଧୁଥିବା ହାତ ନଥିବା ସାର୍ଟ । ଅନ୍ୟାନ୍ୟ ଦେଶିଆ ନାଟରେ ମଧ୍ୟ ଅଭିନେତାମାନେ ଏହି କାବ୍‌ବା ପିନ୍ଧିଥାନ୍ତି ।

୮୩. କାବରା - *ଦେ.ବି. :* ଛାଇ ଆଲୁଅ, କଳାଧଳାର ଗୋଲଗୋଲ ଦାଗ । ଯଥା : (୧) ଚିତଲର ପିଟି କାବ୍‌ରା କାବ୍‌ରା ଦିଶିସି ଆଚେ ।

(୨) ଆଁଖି ଆଗେ ବେଶୀ ଦୂରକି ସପ୍‌ନେପରା ଗୋଟେକ୍ ବାନା ଜ୍ବଳଲାନି । ବିନିବିନି ମାୟା ରୂପ । କେତେ ପର୍ବତ, କେତେ ପାହାଡ଼, କେତେକ୍ ଡେପ୍, କେତେକ ଡିଗ୍ ତୁ ଗଛକି ପାକ୍‌ନା ଭଲ୍ ଆର୍ ଆନ୍ଧାର୍ ନିଦା ଆର୍ କାବ୍‌ରା ଦିଶ୍‌ଲାନି ।

ବ୍ୟବହାର : ଜନ୍ ଉଦ୍‌ଲେ ଗଚ୍ ତଳେ ଗଲେ କାବ୍‌ରା କାବ୍‌ରା ଦିଶ୍‌ଲାନି

ଗୀତ : "କାବ୍‌ରା ଚିତ୍ରା ବାଗ୍ ଡୁର୍‌କା ଲୁଡୁକୁ ଲୁଚିଆ ଭାଲୁ କାଇ ଯୋଗେ ନନି କମନେ ଗାଲୁ ଟାଟି ପାର ଶୁଖିଗଲୁ ।" ଅର୍ଥାତ୍, କଲରପତିରିଆ, ଗଧିଆ ବାଘ ଓ ଭାଲୁମାନଙ୍କ ଗହଣରୁ କି ଯୋଗରେ ବେଠି ଖଟିବାକୁ ଗଲୁ ଯେ ତୁ କାଠି ଭଳି ସୁଖିଗଲୁ ।

୮୪. କାମାଗୀତ - *ଦେ.ବି. :* ବାଦୀ - ପ୍ରତିବାଦୀ ଗୀତ ।

ପରଜା ଆଦିବାସୀଙ୍କ ବିବାହ ସମୟରେ ପୁଅ ଓ ଝିଅମାନେ ଦୁଇଦଳ ହୋଇ କୌତୁକିଆ ଗୀତ ବୋଲିଥାନ୍ତି । ଏହି ଗୀତକୁ କାମାଗୀତ ବୋଲାଯାଏ ।

୮୫. କାମିନୀ - ଦେ.ବି. : ଜଳର ଦେବୀ, ଝାକର ଦେବତା । ଇଂ- Goddess of Water. ଆଦିବାସୀମାନେ ସାତକାମିନୀଙ୍କୁ ପୂଜା କରିଥାନ୍ତି । ଯଥା : ୧- ଜଳକାମିନୀ, ୨-ପାତାଳ କାମିନୀ, ୩- ସାତ ଭଉଣୀ, ୪- ସିଙ୍ଗରାଜ, ୫- ଛୋଟି, ୬-ବୂଢ଼ା, ୭-ଝାକାର । ଏମାନଙ୍କୁ କଳାଗୁଣ୍ଡ, ରଂଗଗୁଣ୍ଡ, ଅଣ୍ଡା, କଳାକାଚ, କଳାମାଳୀ, ଦର୍ପଣ, ପାନିଆ, ହଳଦୀ, ସିନ୍ଦୂର ଆଦିଦ୍ୱାରା ପୂଜା କରାଯାଏ । ଭୂମିଆ ସଂପ୍ରଦାୟର ବିଭିନ୍ନ ଅନୁଷ୍ଠାନ ସମୟରେ କାମିନୀ ପୂଜା କରାଯାଇଥାଏ । ଯଥା (୧) ଲୋକ ମରିଗଲେ ଶବ ସତ୍କାର ବେଳେ ପାଣି ଆଣିବା ସମୟରେ, ୨- ବିଭାବେଳେ, କୋଇଲି ପାଣି ଆଣିବା ବେଳେ, ୩-ବିଲ ବାଛିବାବେଳେ, ୪-ଜମି ରୋଇବା ବେଳେ, ୫-ଧାନକାଟିବା ବେଳେ, ୬-ଝିଅ ପ୍ରଥମ ରଜସ୍ୱଳା ହୋଇ ଶୁଦ୍ଧଲୁଗା କାଚିବା ସମୟରେ, ୭- ବୋହୂ ତା'ର ବାପ ଘରକୁ ପ୍ରଥମବାର ଦ୍ୱାରପାଳି ଯାଇ ଲୁଗା କାଚିବାବେଳେ, ୮-ବାହାଘର ପରେ କାଦହାଣ୍ଡି କାଦୁଅଖେଳ ସାରି ଗାଧୋଇବା ବେଳେ । କାମିନୀ ପୂଜାର ଉଦ୍ଦେଶ୍ୟ ହେଲା ସୁଖଶାନ୍ତିରେ ଦିନଯାଉ । ଶୁଭ କାମଟା ସୁରୁଖୁରୁରେ ହେଉ । ଚାଷବାସ ଭଲ ହେଉ । କାମିନୀ ରାଗିଗଲେ ବା କାମିନୀ ପୂଜାରେ ବିଘ୍ନ ଘଟିଲେ ଲୋକ ବିଶ୍ୱାସ ରହିଛି ଯେ, ବିଲରେ ପ୍ରବଳ ଜୋକ ହୁଅନ୍ତି । ଚାଷୀଙ୍କୁ ବିଲକାମ କରାଇ ଦିଅନ୍ତି ନାହିଁ । କୋଚିଆ, ଧଣ୍ଡ ଆଦି ସାପ ପ୍ରବଳ ହୁଅନ୍ତି । ବିଭାଘର ସମୟରେ ଖନ୍ଦା ଶାଳରେ ରୋଷେଇ କରୁଥିବା ହାଣ୍ଡି ମନକୁ ମନ ଭାଂଗିଯାଏ । ମରିଯାଇଥିବା ଲୋକର ଡୁମା ଉଭୟ ସ୍ତ୍ରୀ ଓ ପୁରୁଷଙ୍କ ଦେହରେ ପ୍ରବେଶ କରେ ଏବଂ ଉକ୍ତ ଲୋକ ବିକାରଗ୍ରସ୍ତ ହୋଇ କାମିନୀର କଥା କୁହେ । ଚାଷବାସ ଭଲ ହୁଏନାହିଁ । ଗୋରୁ, ଗାଈ ଓ ମଣିଷ ପାଣିରେ ବୁଡ଼ି ମରନ୍ତି ଏବଂ ନଦୀରେ ଡଙ୍ଗା ବୁଡ଼ିଯାଏ । ଏହି କାମିନୀ ପୂଜାରେ ଖଇରା କୁକୁଡ଼ା ବଳି ଦିଆଯାଏ ।

୮୬. କାରଜ - ଦେ.ବି. : କାର୍ଯ୍ୟ ଇଂ. - Job, work, task

ବ୍ୟବହାର : କାଇ କାରଜ ରିଲା ?

ଗୀତରେ ଅଛି : ଆଇଲା କାରଜ ସିଦ ନଇଲେ

ବାଉଡ଼ିବି କାଇ ଲାଜେ ।

ଅର୍ଥାତ୍ କାର୍ଯ୍ୟ କରିବାକୁ ଥିବା କାର୍ଯ୍ୟ ସିଦ୍ଧ ନହେଲେ କେଉଁ ଆଦରେ ମୁଁ ଫେରିଯିବି ? ଆଦିବାସୀ ସଂସ୍କୃତିରେ ଯେକୌଣସି କଥା ଦେଇଥିଲେ ଆଦିବାସୀ ହୁଡ଼େ ନାହିଁ । ଯେପରି ହେଉ ପଛେ ସେ କାର୍ଯ୍ୟ ସଂପାଦନ କରେ ।

୮୭. କାର୍‌ଲା - *ଦେ.ବି. :* କଲରା - କଲରା ପ୍ରତି ଆଦିବାସୀ ମାନଙ୍କର ବେଶି ଶରଧା ।

ଯେକୌଣସି କଥାନି ସରିବା ପରେ କଥକ କହିଥାଏ - 'ବାଡ଼େ ଫଲଲା କାର୍‌ଲା, ମର୍‌କାଟା ସର୍‌ଲା, ଶିଖ୍‌ଲେ, ତର, ନଶିଖ୍‌ଲେ ମର୍ ।'

୮୮. କାର୍‌ଲିମାଲ୍ - *ଦେ.ବି. :* କାର୍‌ଲାମାଲ୍ - (୧) ଜଂଗଲୀ ଲଟା ବିଶେଷ

(୨) ଏକ ଗାଁର ନାମ ବିଶେଷ ।

ଦେଶିଆ ଭାଷାରେ ମାଲର ଅର୍ଥ ଲଟା । କାର୍ଲିମାଲ୍ ହେଉଛି କଣ୍ଟାଥିବା କଟାକଟା ପତ୍ରର ଏକ ପ୍ରକାର ଡେକୋରସେନ୍ ଅଟା । ଏହାକୁ ଦେବତାମାନଙ୍କର ଲଟା ବୋଲି ଆଦିବାସୀମାନେ ବିଚାର କରନ୍ତି । ସବୁ ଗୋଷ୍ଠୀର ଆଦିବାସୀ ବନ୍ଧାପନା ବା ଚିଟାଲାଗି ଅମାବାସ୍ୟାରେ ଏହି କାର୍ଲିମାଲ୍ ପତ୍ର ସହ ବାତ୍ରିପତ୍ର, ହଳଦୀପତ୍ର ଓ ଭାଲିଆ ପତ୍ରକୁ ବାଉଁଶ ପାତିଆରେ ବୁଣା ଏକ ଛାତଡ଼ିରେ ଗୁନ୍ଥି ଦିଅନ୍ତି । ତାହାପରେ ତାକୁ ଏକ କେନ୍ଦୁ ଲାଠିରେ ଲଗାଇଦେଇ ସେହି କେନ୍ଦୁ ଲାଠିକୁ ନେଇ ବେଡ଼ାରେ ପୋତି ଦିଅନ୍ତି । ଏହି ଲାଠିକୁ ଶସ୍ୟ ଦେବତା ରୂପେ ବନ୍ଧାପନା ଅମାବାସ୍ୟା ଦିନ ପୂଜା କରାଯାଏ । କୋୟାଭାଷାର ଏହି କାର୍ଲିମାଲ୍‌କୁ କୁହାଯାଏ 'ମତୁମୁତେ' ଓ ହଲ୍‌ବାରେ କୁହାଯାଏ 'ଦେଉବାଡ଼ନି' । ପୁଣି ଦେଶିଆ ଭାଷାରେ କେହିକେହି କହନ୍ତି 'କାନ୍ଦ୍‌ଲିମାଲ୍' । ପୂର୍ବେ କାଣ୍ଡାକାମେରୁ ଅଞ୍ଚଳରେ ଏହି ନାମରେ ଏକ ବଡ଼ ଗାଁ ଥିଲା । ଅଧୁନା ତାହା ଚିତ୍ରକୁଣ୍ଡା ଜଳଭଣ୍ଡାରେ ଅବଲୁପ୍ତ । ତେବେ ବର୍ତ୍ତମାନର ଟାପୁ ଅଞ୍ଚଳ ରୂପେ କଥିତ ଚିତ୍ରକୁଣ୍ଡା ପାଖରୁ ପ୍ରାୟ ୩୦ କି.ମି. ଦୂରରେ ବଡ଼ପାଡ଼ା ପଞ୍ଚାୟତରେ ଆଉ ଗୋଟିଏ କାର୍ଲାମାଲ୍ ଗାଁ ଗଢ଼ି ଉଠିଛି । କନ୍ଧ ଓ ଦୋରାମାନଙ୍କ ଏହି ପର୍ବତ ସନ୍ଧିଗାଁରେ ପ୍ରାୟ ୫୦ଘର ରହିଛି । ଚାଷଜମି ଅଭାବରେ ଏଠାକାର ଲୋକମାନେ ଅତ୍ୟନ୍ତ ଦରିଦ୍ର ଭାବରେ ଜୀବନ କଟାଉଛନ୍ତି ।

୮୯. କାରାପାନି - ଦେ.ବି. : ଖରାବର୍ଷା, କୁଆପଥର ପାଣି, ଇଂ.- Hail Stone water

ମୁଖ୍ୟତଃ ଏହା କାବ୍ୟିକ ଅର୍ଥରେ ବ୍ୟବହୃତ ହୋଇଥାଏ ।

ସାଇଲୋଡ଼ି ଗୀତ ଗାଇଲାବେଳେ ଏ ଅଞ୍ଚଳରେ ଆଦିବାସୀ ଯୁବକ, ଯୁବତୀମାନେ ଗାଇଥାନ୍ତି - "ସାଇଲୋ ମୋର ସାଇ କରୁନା ସାଇ କାରାପାନି, ମଲ୍ଲୀଫୁଲ ବାସନା କାରାପାନି ଜାଇଫୁଲ ବାସନା । ଯାହାର ଅର୍ଥ : ହେ; ସଇ ସଂଗାତ ଆସ । ଆମେ ସେମିତି ସବୁଦିନେ ମହକିବା ଯେମିତି ଖରାବର୍ଷାରେ ମଲ୍ଲିଫୁଲ ବାସେ, ଜାଇଫୁଲ ବାସେ ସେମିତି ସବୁଦିନେ ଆମେ ମହକିବା ।

୯୦. କାରିସୁନ୍ଦରୀ - ଦେ.ବି. : କାଳି ସୁନ୍ଦରୀ । ଇଂ.- Black Beauty

(୧) କାଳିକା ମାତା ଦେବୀ

(୨) ଶ୍ୟାମାତନ୍ୱୀ / କୃଷ୍ଣାବର୍ଣ୍ଣା ସୁନ୍ଦରୀ ଯୁବତୀ ।

୯୧. କାଲାକୁରା - ଦେ.ବି. : କରଡ଼ି ଗୁଣ୍ଡରୁ ପ୍ରସ୍ତୁତ ଏକପ୍ରକାର ଖାଦ୍ୟ । କରଡ଼ିର ଗଣ୍ଠିକୁ ଶୁଖାଇ ବାଟି ଚୁନା କରି ପୁଣି ଥରେ ଶୁଖାଇ ରଖାଯାଏ । ପରେ ଆବଶ୍ୟକ ଦିନରେ ତାହାକୁ ସିଝେଇ ପିତା ବା କଷା ପାଣି ବାହାର କରାଯାଇ ଇଚ୍ଛାମତେ ତାହାକୁ ରୋଷେଇ କରାଯାଏ । ମୁଖ୍ୟତଃ ଚଣା ବା ମଟର ଦାନାସହ କିମ୍ବା ଆଳୁ ସହ ମିଶାଇ ଏହାର ତରକାରୀ ପ୍ରସ୍ତୁତ କରାଯାଏ ।

୯୨. କାଲାଟ ମଲୁଆ - ଦେ.ବି. : ଏକ ପ୍ରକାର ମୂଷା । ଏହା ମଧ ଗଛ ଉପରେ କୋରଡ଼ମାନଙ୍କର ରହୁଥାଏ । ରଂଗକଳା କିନ୍ତୁ ଛାତି ଧଳା । ମଲୁଆ ମୂଷାର ଏହା ଅନ୍ୟ ଏକ ଉପଜାତି । ଏହା ୧କେ.ଜି.ରୁ ୨କେ.ଜି. ଓଜନ ହୋଇଥାଏ । ମଲୁଆ ମୂଷାମାନେ ସାଧାରଣତଃ ଗଛ କରୋଡ଼ରେ ରହନ୍ତି ।

୯୩. କାଲିଆଗୁଡ଼ା - ଦେ.ବି. : ଗୋଟିଏ ଗ୍ରାମର ନାମ ବିଶେଷ । ମାଲକାନାଗିରି ଜିଲ୍ଲାର ମାତିଲି ବ୍ଲକ୍‌ର ଚେଡ଼େଙ୍ଗା ପଞ୍ଚାୟତରେ ଅବସ୍ଥିତ ଏହି ଗାଁ ଏକ ଐତିହାସିକ ସ୍ଥାନ । ଚେଡ଼େଙ୍ଗାଗଡ଼ରେ ଅଧିଷ୍ଠିତ ଥାଇ ଦୀର୍ଘଦିନ ଧରି ଡମରାଜାମାନେ ଶାସନ କରୁଥିଲେ । ଜୟପୁର ରାଜା ବା ଜମିଦାରଙ୍କ ଅଧୀନରେ ସେଥିଲେ ଜଣେ ଅଧସ୍ତନ

ରାଜା । ଡମରାଜାଙ୍କ ଥିଲେ ଦୁଇଟି ଘୋଡ଼ା । ବିଦ୍ରୋହୀ ହାଲବୀମାନେ ରଜାଙ୍କୁ ପୂଜିବା (ହତ୍ୟାକରିବା)ବେଳେ ଘୋଡ଼ାମାନେ ବନ୍ଧନ ଫିଟାଇ ଧାଇଁ ପଳାଇଲେ । ଧଳାଘୋଡ଼ା ଜଂଗଲ ଭିତରକୁ ଚାଲିଗଲା । କାଳିଆଘୋଡ଼ା ଧାଇଁଧାଇଁ ଯିବାବେଳେ କେଉଁ ଗାଁରେ ତା'ର ଜିନ୍ ପଡ଼ିଥିଲା, ସେହି ଗାଁର ନାମ ହେଲା କାଳିଆଗୁଡ଼ା । ଘୋଡ଼ାର ସେହି ଜିନ୍ ପାକ୍‌ନା ପାଲଟି ଗଲା ବୋଲି ଲୋକ ବିଶ୍ୱାସ । ଏବେ ସୁଦ୍ଧା ସେହି ଜିନ୍ ପାକ୍‌ନାକୁ କାଳିଆଗୁଡ଼ା ଠାରେ ପୂଜା କରାଯାଏ । ସେହି କାଳିଆଘୋଡ଼ା ଶେଷରେ ଯାଇ ପୂଜାରୀଗୁଡ଼ା ଠାରେ ମୃତ୍ୟୁବରଣ କଲା । ଲୋକ ପ୍ରବାଦ ଅନୁଯାୟୀ ତାହା ମଧ୍ୟ ପଥର ପାଲଟି ଗଲା । ଏବେ ସେଇଠାରେ ରହିଛି ଘୋଡ଼ା ପାକ୍‌ନା । ଏହି ଘୋଡ଼ା ପାକ୍‌ନା ମଧ୍ୟ ପୂଜା ପାଉଛି । ଏହି ପ୍ରବାଦସ୍ଥଳୀକୁ ଛାଡ଼ି ଅବିଭକ୍ତ କୋରାପୁଟ ଜିଲ୍ଲାରେ କାଳିଆଗୁଡ଼ା ନାଁରେ କେତେକ ଗ୍ରାମ ଦେଖାଯାଏ ।

୯୪. କାଲିୟାରିନ୍ - *ଦେ.ବି. :* ବଣ୍ଡା ପାହାଡ଼ରେ ଥିବା ଏକ ଧର୍ମପୀଠ । ପ୍ରତ୍ୟେକ ଆଦିବାସୀ ଗୋଷ୍ଠୀର ବିଶ୍ୱାସ ପରି ବଣ୍ଡା ଆଦିମ ଗୋଷ୍ଠୀର ମଧ୍ୟ ବିଶ୍ୱାସ ଯେ ପ୍ରକୃତିର ପ୍ରତ୍ୟେକ ପଦାର୍ଥର ଜୀବନ ବା ଆତ୍ମା ଅଛି । ସେମାନେ ପାହାଡ଼ର ଆତ୍ମାକୁ କାଲୟାରିନ୍ ବୋଲି ମନେ କରନ୍ତି । ଏହି କାଲିୟାରିନ୍ ମୁଦୁଲିପଡ଼ାର ପବିତ୍ର ସୀତାକୁଣ୍ଡ ନିକଟରେ ଅବସ୍ଥିତ । କୌଣସି ବ୍ୟକ୍ତି ବହୁଦିନ ଧରି ରୋଗଗ୍ରସ୍ତ ହୋଇ ରହିଲେ, ସୀସା ପୂଜାରୀ ରୋଗମୁକ୍ତି ପାଇଁ ଏହି କାଲିୟାରିନ୍ ପୀଠରେ ପୂଜା କରିଥାନ୍ତି ।

୯୫. କିଆ ଝରନ - *ଦେ.ବି.:* ବିଶେଷ୍ୟ : କିଆ ଫୁଲର ବାସ । ଗୀତରେ ମୁଖ୍ୟତଃ କାବ୍ୟିକ ଉଦ୍ଦେଶ୍ୟରେ ବ୍ୟବହାର କରାଯାଏ ।

ବ୍ୟବହାର : ( ୧ ) ପିଲାକେ ଏପୁରେ ମାରେ ପବନ, କିଆ ଝରନ ଦେଶିଆ ଗୀତରେ ଜାଇଫୁଲ, ଗଲାମାଲି, ସାଇଲୋଡ଼ି ଭଳି କିଆ ଝରନ୍ ମଧ୍ୟ ବାରମ୍ବାର ଆବୃତ୍ତି ହୋଇଥାଏ । ମୁଖ୍ୟତଃ ପ୍ରିୟତମାକୁ ତାର ପୁରୁଷ

'କିଆଝରନ୍' ବୋଲି ସମ୍ବୋଧନ କରିଥାଏ ।

୯୬. କିକିରିବୁଟା - *ଦେ.ବି. :* ଔଷଧି ବୃକ୍ଷ ବିଶେଷ । ଏହାର ଅନ୍ୟନାମ କୋଇଲି ଖିଆ । କିକିରି ମଞ୍ଜି ଓ ମୂଳକୁ ବାଟି ସ୍ତମ୍ଭନ ଓ ବଶୀକରଣ ପାଇଁ ବ୍ୟବହାର

କରାଯାଏ । ଏହା ବ୍ୟତୀତ ବହୁମୂତ୍ର, କାମଳ ଓ ସ୍ୱପ୍ନଦୋଷ ସକାଶେ ମଧ ଏହା ଫଳପ୍ରଦ ହୋଇଥାଏ ।

୯୭. କିଙ୍ଗ୍ ବେଡ଼କ୍ - ଦେ.ବି. : ଜଳଦେବୀ : ଭୂମିୟାଙ୍କ କାମିନୀ ଦେବୀ / ଭତରାଙ୍କ କାମିନୀ ପୂଜା ସହ ତୁଳନୀୟ । ମୁଦୁଲିପଡ଼ାର ପବିତ୍ର ସୀତାକୁଣ୍ଡ ବା କୌଣସି ପବିତ୍ର ଜଳାଶୟ ନିକଟରେ ବଣ୍ଡା ଗ୍ରାମବାସୀମାନେ ସମସ୍ତେ ଏକାଠି ହୋଇ ସେହି ସ୍ଥାନକୁ ପରିଷ୍କାର ପରିଚ୍ଛନ୍ନ କରି ଚୈତ୍ର ମାସରେ ଗ୍ରାମର ଅବିବାହିତା ଯୁବତୀମାନଙ୍କ ସୁସ୍ଥତା ଓ ମଂଗଳ କାମନା କରି କିଙ୍ଗ୍ ବେଡ଼କଙ୍ଗାଙ୍କର ପୂଜା କରିଥାନ୍ତି ।

୯୮. **କିଛି କ୍ରିୟାପଦ :**

(୧) ଡାବ୍ : ଡାବିଦେସ୍ : ବନ୍ଦ କରିବା, ଘୋଡ଼େଇଦେବା ଇଂ. - To cover,

(୨) ଇଣ୍ଡ୍ : ଚାଲିବା, ଇଣ୍ଡିଯିବା ଇଂ. - To Walk,

(୩) ଉଦ୍ : ଉଦଲିଯିବା : ଫିଙ୍ଗିଦେଇଯିବା ଇଂ. - To be thrown,

(୪) ଅଦରିଯିବା : ପଡ଼ିଯିବା ଇଂ. - To fall down,

(୫) ଉତର୍ : ଉତରିବା : ତଳକୁ ଓହ୍ଲାଇବା ଇଂ. - To Walk down,

(୬) ପୁଣ୍ଡବା - ନିଃଶ୍ୱାସ ନେବା, ବିଶ୍ରାମ ନେବା, ଇଂ. - To breath, To rest.

(୭) ଭିକ୍ - ବିଡ଼ି ବା ପିକା ଟାଣିବା, ଓପାଡ଼ଇବା

(୮) ହେତ୍ : ହେତିବା - ମନେପକାଇବା ଇଂ. - To remember,

(୯) ନାଡ଼୍ : ନାଡ଼ାଇବା - ଠକିଦେବା ବା ଢଟିଦେବା ଇଂ. - To cheat

(୧୦) ଆମାତ୍ : ଅମାଡ଼ିବା - ପାଟ୍ ଦରିବା, ଆକୋଳ ଧରିବା, ଢାବୁଡ଼ି ଧରିବା ଇଂ. - To embole,

(୧୧) ଟାମଣ୍ଡ୍ : ଟାମଣ୍ଡାଇବା - ଅଣ୍ଡାଳି ଦେବା ଇଂ. - To gvope

(୧୨) ଚାଲ୍ - ଚାଲାଇବା - ଚାଲାଇକରି - ଚାଲୁଣିରେ ଚଲାଇବା

ଜିକ୍ ଝିକିବାବା, ଟାଣିବା, ବିଡ଼ିପିକା ଜିକବା ଅର୍ଥରେ, ପୁଣି ପୋଡ଼ିବା ଅର୍ଥରେ ଘାସ୍ ଟକିବା ବୁଟା ଝକିବା (ଘାସ ଓ ବୁଦା ଟାଣିବା) ନିଂଜାଇବା ଅର୍ଥରେ ବ୍ୟବହୃତ ହୁଏ ।

(୧୩) ଉଚାଟ୍ - ଉଚାଟ କରିବା, ମନେଇବା, ଶରଦା କରିବା, ଛନ୍‌ଛନ୍ ହେବ ।

(୧୪) ମନ କରାକରି - ରାଜିଗୁଜା - ଧାଡ଼ାଧାଂଡ଼ି ମନ୍ କରାକରି ହେବା, ଭଲ ପାଇବା ଇଂ. - To Love

(୧୫) ସୁତୁରି ହେବା, ଇଂ. - To plan for elopement,

(୧୬) ବଅଁଲ - ବଅଁଲିଯିବା - ପାନି ବଅଁଲି ଗଲାନି - ଗଡ଼ିଯିବା ଅର୍ଥରେ ବ୍ୟବହାର ହୋଇଥାଏ । ଇଂ. - To flow down,

**କିଛି ଯୁଗ୍ମଶବ୍ଦ :**

(୧) ପିନ୍ଧା ଓଡ଼ା - ଲୁଗାପଟା ପିନ୍ଧିବା; ବିଶେଷକରି ଶାଢ଼ି ପିନ୍ଧିବା ଅର୍ଥରେ ।

ଧୋତି ବା ପେଣ୍ଟ୍ ପିନ୍ଧିବା ଅର୍ଥରେ କେବଳ 'ପିନ୍ଧା' ବ୍ୟବହାର ହୁଏ ।

ବ୍ୟବହାର : ତୁଇ ବେଗି ପିନ୍ଧାଓଡ଼ା କର୍ ବଜାର ଯିବାର ହେଇସି ।

(୨) ପାଇଟିକାବାଡ଼୍ - କାମଦାମ । ବ୍ୟବହାର : ପାଇଟିକାବାଡ଼୍ ନା କଲେ କାଇବାଟା କେମ୍‌ତି ମିଳିସି ?

(୩) ଆକାସାକା : ଆଶ୍ରୟ । ବ୍ୟବହାର : ଆକେ କୋନ୍ ଆକାସାକା ନାଇ ହୋ, ମଲେ ଏକ୍‌ଲା ଜିଇଲେ ଏକ୍‌ଲା ।

(୪) ବାରବାନି : ବାରପ୍ରକାର । ବ୍ୟବହାର : ବଡ଼୍‌ବଡ଼୍ ଲୋକ ଗୋଟେକ୍ ବାନି ଭାତ୍ ଆରି ବାର୍‌ବାନି ଶାଗ୍ କାଇବେ ।

(୫) ବାଙ୍ଗଟି ଟିଙ୍ଗଟି - ବଙ୍କାଟଙ୍କା । ବ୍ୟବହାର : ଏ ବାଟ୍ ବଡ଼େ ବାଙ୍ଗଟି ଟିଙ୍ଗଟି ଗାଲାଆଚେ !

(୬) ମୁଣ୍ଡା ଚୁଣ୍ଡା - ଭିଡ଼ାଭିଡ଼ି, ଠେଲାଠେଲି । ବ୍ୟବହାର : ବଜାରେ ଭୁତେକ୍ ଲକ୍, ମିଶାମିଶି ଟାନେ ମୁଣ୍ଡାଚୁଣ୍ଡା ହଇଯାଇ ସି ଆଚ୍ଚ ।

(୭) ଦିନ୍‌ସୁପାନି - ଜିନିଷପତ୍ର । ବ୍ୟବହାର : ଆଟେ ଗାଲେ ଅଇସି ହୋ, ଗରେ କାଇ ଜିନ୍‌ସୁପାନି ନାଇଁ ।

୯୯. କୀଡ଼ା - ଦେ.ବି. : କୀଟ : ପୋକ ଇଂ. - worm.

ଆଦିବାସୀ ମଣିଷ କୀଡ଼ା ସହିତ ବେଶ୍ ପରିଚିତ । ତା ଫସଲ କ୍ଷେତରୁ, ବଣ ଜଂଗଲରୁ ସେ ଜାଣିଛି ପୋକମାନେ କିପରି ଗଛର ପତ୍ରକୁ ଟିକିଟିକି କରି ଖାଇଯାନ୍ତି ଓ ଅନୁଭବିଛି ନିଜ ଶରୀରରେ ରୋଗ ଯନ୍ତ୍ରଣା ପରି ଗଛ ପତ୍ରକୁ ପୋକ କାଟିକାଟି ଖାଇବାର ଯନ୍ତ୍ରଣାକୁ । ତେଣୁ ସେ ତା ଲୋକ ଗୀତରେ ଶାଳଗଛର ପତ୍ର ସହ ଜୀବନକୁ ତୁଳନା କର ଗାଇଛି : -

'ସରଗି ପତର କୀଡ଼ା କାଟ୍‌ରେ
ଜୀବନ ଡାଲ ପତରେ
ତମର କମଲା ପାକଲା ମୂଷା ଚୋରିନେବ
ମଲ୍ଲିଫୁଲ ବାସନାରେ
ବାଟେ ବରଗଛ ଉଦୁଙ୍ଗା ଚେର
ତେବେ ଟେସନେ ରିପୋର୍ଟ କର ।'

ଯାହାର ଅର୍ଥ : ସରଗି ପତ୍ର ପରି ଏ ଜୀବନ ଓ ଯୌବନକୁ କୀଟ ଦଂଶିଲା ପରି ଯଦି ଜଣେ ଯୁବତୀ କନ୍ୟାର ରୂପ ଯୌବନରେ ପ୍ରଲୁବ୍ଧ ହୋଇ କୌଣସି ପୁରୁଷ ତା'ର ଜୀବନ ଓ ଯୌବନକୁ ତିଳତିଳ କରି ଉପଭୋଗ କରି ତା'ର କ୍ଷତି ଘଟାଏ ତେବେ ସେ କ୍ଷମଣୀୟ ନୁହେଁ । ଆଦିବାସୀ ସମାଜରେ ଯୌବନ ଉପଭୋଗ୍ୟ ମାତ୍ର ତାହା ଅତ୍ୟାଚାରିତ ହେବା ବା ଯନ୍ତ୍ରଣା ଜର୍ଜରିତ ହେବା ନିଶ୍ଚିତ ଭାବେ ଗର୍ହିତ ଅପରାଧ । ସେମାନଙ୍କ ମତରେ ନାରୀର ଇଚ୍ଛା ବିରୁଦ୍ଧରେ ତା'ର ଯୌବନ ଆଦୌ ଉପଭୋଗ୍ୟ ନୁହେଁ । ଅନ୍ୟ ଏକ ଗୀତ :

ଫୁଲେ ଫୁଲେ ମାଲେମାଲେ କିଡ଼ା ରାଂଗିଲା
ବଅଁର କିଡ଼ାନା କାଇ କିଡ଼ାନା

ଧାଙ୍ଗଡ଼ା ଧାଙ୍ଗିଡ଼ୀ ଆସାରେ
ପାଲାମାରି ପାଲା ରେ ପାରେ ।

କୀଡ଼ା : କୋରାପୁଟ ଅଞ୍ଚଳରେ ବିଭିନ୍ନ ପ୍ରକାରର କୀଡ଼ା ଦେଖାଯାନ୍ତି । ସ୍ଥାନୀୟ ଲୋକଙ୍କ ଭାଷାରେ ଏହିସବୁ କୀଡ଼ାର ଭିନ୍ନଭିନ୍ନ ନାମ ରହିଛି ।

୧. **ଲାଛୁଆନି କୀଡ଼ା :** ଏହି କୀଡ଼ା ଯେକୌଣସି ପତ୍ରରେ ରହିଥାଏ, ସେଇଟା ଲାଗିଲାମାନେ ବିଷକ୍ରିୟା ଦେଖାଯାଏ । ତାହା ଚର୍ମରେ ପ୍ରତିକ୍ରିୟା ସୃଷ୍ଟି କରି ଯାଦୁ ଭଳିଆ ଫଳିଯାଏ ଓ ଯନ୍ତ୍ରଣା ଦିଏ । ଏହାର ରଂଗ କଂଚା ପତ୍ରିୟା ବା ବାନା କିମ୍ବା ହଳଦିଆ ଓ ଲମ୍ବ ଏକଇଞ୍ଚ ବିଶିଷ୍ଟ ।

୨. **ବୁର୍‌ଚା କୀଡ଼ା :** ସମ୍ବାଲୁଆ - ଏହାର ଲୋମ ଲାଗିଲେ ବିଷାକ୍ତ ହୁଏ ଓ କୁଣ୍ଡାଏ । ଅନ୍ୟ ଏକ କୀଡ଼ାର ଲୋମ ନଥାଏ, କୁଣ୍ଡିଆଣ ହୁଏ ନାହିଁ ।

୩. **ଡାଲ୍ କୀଡ଼ା :** ଏହାର ରଂଗ କଞ୍ଚାପତ୍ରିଆ । ଏହା ସମସ୍ତ ପତ୍ରକୁ ଖାଇନିଏ । ଏହାର ଲମ୍ବ ୨ଇଞ୍ଚ । ଇଂରେଜିରେ ଏହାକୁ 'Cater piller' କୁହାଯାଏ ।

୪. **ଅସା କୀଡ଼ା :** ଏହା ୨ଇଞ୍ଚ ଲମ୍ବ ବିଶିଷ୍ଟ । ଏହାର ରଂଗ କଳା । ଏହା ସବୁଜ ଧାନଗଛରେ ଲାଗେ ଓ କାଣ୍ଡ ଖାଇଦିଏ । ଏହା ସଂକ୍ରାମକ ରୋଗ ଭଳି ବ୍ୟାପେ ।

୫. **ଚିତା କୀଡ଼ା :** ଏହାର ରଂଗ କଳା / ଲାଲ । ଏହା ମଧ୍ୟ ଗୋଟିଏ ରୋଗ ଭଳି ଧାନଗଛକୁ ଆକ୍ରମଣ କରି ତାକୁ ସଢ଼େଇ ଦିଅନ୍ତି । ପତ୍ରକୁ ଖାଇ ଦିଅନ୍ତି । ଏହି କୀଡ଼ା ଧାନପତ୍ରରେ ବସା କରି ଦିନବେଳେ ଲୁଚି ରହେ ଓ ରାତିରେ ଖାଇଦିଏ । ଜମିରେ କର୍ଲାଡାଲ ପୋତିଦେଲେ ସେମାନେ ଛାଡ଼ି ଚାଲିଯାଆନ୍ତି ।

୬. **ଗମି କୀଡ଼ା :** ଏହା ବହୁ ପଦ ବିଶିଷ୍ଟ କେଂଚିଡ଼ି ଜାତୀୟ ପୋକ । ଏହାର ଲମ୍ବ ୧ଇଞ୍ଚ । ଏହାର ରଂଗ ଲାଲ । ଆକାର ସରୁସରୁ ଓ କିଛି କୀଡ଼ା ବଡ଼ବଡ଼ । ଏହାକୁ ଛୁଇଁଦେଲେ କେଂଚିଡ଼ି ଭଳି ଗୋଲ ହୋଇ ଯାଆନ୍ତି । ଆଉ କିଛି ଥାଆନ୍ତି ଛୋଟ ଛୋଟ । ଗଦାଗଦା ହୋଇ ରହନ୍ତି । ଛୁଇଁଦେଲେ କିଛି ପ୍ରତିକ୍ରିୟା ପ୍ରକାଶ କରନ୍ତି ନାହିଁ । ସରୁସରୁ ଥିବାବେଳେ ସେମାନେ ମାନ୍ଧାମାନ୍ଧା ରହନ୍ତି । ସେତେବେଳେ

ଦେଶିଆମାନେ କହନ୍ତି "ବର୍ଷା ହେବାପାଇଁ ଡେରି ଅଛି ।" କିନ୍ତୁ ସେମାନେ ଦିଆସିଲି କାଠି ଭଳି ମୋଟ ହୋଇଥିଲେ, ବର୍ଷା ହେବବୋଲି କୁହାଯାଏ ।

**୭. ଗଉଡ଼ୁନି କୀଡ଼ା :** ଏହା କଳା ଓ ଚେପ୍‌ଟା । ଗମିକୀଡ଼ା ଭଳି ବହୁ ପଦବିଶିଷ୍ଟ । ଏହା ମଧ ମାନ୍ଦାମାନ୍ଦା ରହନ୍ତି । କିନ୍ତୁ ବର୍ଷା ସହ ଏହାର କିଛି ସଂପର୍କ ନଥାଏ ।

**୮. ବାପା କୀଡ଼ା :** ଏହା ଏକ ଲମ୍ୱାପୋକ । କଂଚା ପତ୍ରିଆ ବର୍ଣ୍ଣ । ପ୍ରାୟ ଚାରିରୁ ଛଅ ଇଞ୍ଚ ଲମ୍ୱା ରହନ୍ତି । କୁମୁଡ଼ା, ଝଟା, ଲାଉ, ଜହ୍ନି ଇତ୍ୟାଦିର ପତ୍ର ଖାଆନ୍ତି । ଏମାନେ ରାଂଗିରାଂଗି ଅର୍ଥାତ ସିଧାସିଧା ଚାଲନ୍ତି ।

**୯. ଗୋବର କୀଡ଼ା :** ଏହା ପ୍ରାୟ ଦୁଇ ଇଞ୍ଚ ଲମ୍ୱା ଓ ମୋଟା ମୋଟା ଧଳା ପୋକ । ଲୋମ ବିହୀନ ସମ୍ୱାଲୁଆ ଭଳି । ଗୋବର ତଳେ କିମ୍ୱା ଖତଗଦା ହୋଇଥିବା ଜାଗାରେ ଦେଖିବାକୁ ମିଳନ୍ତି ।

**୧୦. ସିନ୍ଧି କୀଡ଼ା :** ଆଦିବାସୀର ଅତି ପ୍ରିୟ ଏହି ପୋକ ସିନ୍ଧି ବୁଟାରେ ସିନ୍ଧି କନ୍ଦା ଖାଇ ରହନ୍ତି । ଏହାର ରଂଗ ଧଳା । ଢ଼ୁରିଗଲେ ହଳଦିଆ । ଲମ୍ୱା ଦୁଇ ଇଞ୍ଚ । ଶାବଳ କିମ୍ୱା ଖଣତି ସାହାଯ୍ୟରେ ବଡ଼ କୌଶଳର ସହ ସିନ୍ଧିବୁଟା ଦେହରୁ ଏହାକୁ ବାହାର କରାଯାଏ । ଏହାକୁ ପୋଡ଼ି କିମ୍ୱା ଅଳ୍ପ ଭାଜି ଖିଆଯାଏ । ଚିଙ୍ଗୁଡ଼ି ମାଛ ଭଳି ଏହା ସୁସ୍ୱାଦ । (ଦ୍ରଷ୍ଟବ୍ୟ : ସିନ୍ଧିକୀଡ଼ା)

**୧୧. ଉତୁ କୀଡ଼ା :** ଇଞ୍ଚେ ଲମ୍ୱର ଏହି ପୋକ ଘର ଭିତରେ ମାଟି ଫାଟରେ ରହିଥାଏ । ଧାନକୁଟିବା ଜାଗା ବା ଢେଙ୍କିଶାଳରେ ରହିଥାଏ । ରଂଗ କଳା । ବହୁତ ସରୁ । ଲୋକ ରହିବା ଜାଗାରେ ରହେ । ଥିରି କିନା କାମୁଡ଼ିଦିଏ ।

**୧୨. ଭୂଇଁ ତୁତୁ / ଗୁଇକୀଡ଼ା :** ଏହା ମାଟିଆ ରଂଗର । ଲମ୍ୱା ପ୍ରାୟ ଏକ ଇଞ୍ଚ । ପାଣି କାଦୁଅ ଜାଗାରେ, କାଦୁଆ ମାଟିରେ ବା ଗାଧୁଆଘରେ ରହିଥାଏ । ସୁଯୋଗ ପାଇଲେ ଚୋବେଇ ଦିଏ । କାମୁଡ଼ିବା ଜାଗା ଫଲିଯାଏ । ଖୁବ୍ ସରୁସରୁ । ମାଟି ତଳେ ଲୁଚି ରହେ ।

**୧୩. ସୁରୁ କୀଡ଼ା :** ଏହା ଉତୁକୀଡ଼ାଠୁ ସରୁ । ଭୂଇଁରେ ଥାଏ । ଗଛ ଛାଲିରେ ମଧ୍ୟ ରହେ । କିନ୍ତୁ ମଣିଷଙ୍କୁ କାମୁଡ଼େ ନାହିଁ ।

**୧୪. ପାଟା କୀଡ଼ା :** ଆଙ୍ଗୁଳି ମୋଟର ଚେପ୍‌ଟା ପୋକ । ଲମ୍ୱା ପ୍ରାୟ ତିନି ଇଞ୍ଚ । ଏହି ପୋକର ଦେହରେ ଫସ୍‌ଫରସ୍ ଜାତୀୟ ରସାୟନ ଥିବାରୁ ଏହା ଦେହରୁ ଆଲୋକ ବାହାରେ । ଚାଲିଗଲେ ପଛରେ ଆଲୁଅର ଦାଗ ଛାଡ଼ିଯାଏ, ଯାହା ଧୀରେଧୀରେ ମିଳେଇ ଯାଏ ।

**୧୫. କେଞ୍ଚୁଆ :** ଏହା ମଧ୍ୟ ଗୋଟିଏ କୀଡ଼ା । ତିନିପ୍ରକାରର କେଞ୍ଚୁଆ ଦେଖାଯାଏ । ନାଲି କେଞ୍ଚୁଆ, ଲାଡ଼ମ୍ କେଞ୍ଚୁଆ ଓ କଳା କେଞ୍ଚୁଆ । ଲାଡ଼ମ୍ କେଞ୍ଚୁଆ ବେଶୀ ଲମ୍ୱା । ଏକ ଫୁଟରୁ ଦେଢ଼ଫୁଟ ଲମ୍ୱା । ବଡ଼ବଡ଼ ମାଛ ଧରିବା ପାଇଁ ଏହା ବ୍ୟବହାର କରାଯାଏ । ଜୈବସାର ରୂପେ ଆଦିବାସୀମାନେ ଏହି ତିନିପ୍ରକାରର କେଞ୍ଚୁଆଙ୍କୁ ବ୍ୟବହାର କରନ୍ତି । ରାସାୟନିକ ସାର ପ୍ରୟୋଗ ଦ୍ୱାରା ଏହା ଲୋପ ପାଉଥିବାରୁ ବ୍ୟକ୍ତିଗତ ଓ ଆନୁଷ୍ଠାନିକ ଉଦ୍ୟମରେ ଏହାର ଉତ୍ପାଦନ କରାଯାଉଛି ।

୧୦୦. କିତୁଙ୍ଗ୍ - *ଦେ.ବି. :* ଶବର ଦେବତା : ଦାରୁରେ ହସ୍ତପାଦ ନଥିବା ମୂର୍ତ୍ତି - ଦାରୁ ଦେବତା - ଜଗନ୍ତା । : ଶ୍ରୀ ଜଗନ୍ନାଥ - ସଉରାମାନଙ୍କ ସର୍ବଶକ୍ତିମାନ ଦେବତା । ସେହିଁ ସୃଷ୍ଟିକର୍ତ୍ତା । ସଉରାମାନେ ନିଜକୁ କିତୁଙ୍ଗ ଦେବତାଙ୍କ ଦ୍ୱାରା ସୃଷ୍ଟି ବୋଲି ମନେ କରନ୍ତି । କିତୁଙ୍ଗ୍ ମହାପ୍ରଭୁଙ୍କ ସହ ଆଦିବାସୀ ସଂସ୍କୃତିର ସଂପର୍କ ଆଦିକାଳରୁ ରହିଛି । କୁହାଯାଏ ଯେତେବେଳେ ପ୍ରଳୟ ହୋଇଥିଲା, ସେତେବେଳେ ପ୍ରଳୟ ଅନ୍ତ କରି ମହାପ୍ରଭୁ ସୃଷ୍ଟି ସର୍ଜନା କରିବାପାଇଁ ଚାହିଁଲେ । ସେ କେଞ୍ଚୁଆ ଦେହରୁ ମାଟି ଆଣି ପୃଥିବୀ ତିଆରି କଲେ ଓ ପ୍ରଳୟ ଜଳରେ । ଏକ ମୁଦ୍ରିତ ପେଟି ଭିତରେ ବନ୍ଦ ହୋଇ ଭାସୁଥିବା ଭାଇଭଉଣୀଙ୍କୁ ଆଣି ପତିପତ୍ନୀ ରୂପେ ସୃଷ୍ଟି ସର୍ଜନା କରିବାପାଇଁ ଆଦେଶ ଦେଲେ । ସେମାନେ ମହାପ୍ରଭୁଙ୍କ ଆଦେଶ ନ ମାନିବାରୁ ସେମାନଙ୍କୁ ବସନ୍ତ ରୋଗ ଦ୍ୱାରା ବିକଳାଙ୍ଗ କରିଦେଲେ । କିଛି କାଳ ପରେ ସେମାନେ ପରସ୍ପରକୁ ଚିହ୍ନି ନ ପାରି ପତିପତ୍ନୀ ଭାବେ ବଞ୍ଚିବାକୁ ଲାଗିଲେ । ସେମାନଙ୍କ ଗର୍ଭରୁ ଯେଉଁ କେତୋଟି ସନ୍ତାନ ଜନ୍ମ ନେଲେ ସେମାନଙ୍କ ମଧ୍ୟରେ ସବା ସାନଭାଇ ଥିଲା ଜଗନ୍ତା । ତାର ଅନ୍ୟ ଛ ଭାଇ ବିଭା ହୋଇଥିଲେ । ସେମାନଙ୍କର ଛଅଟି ସ୍ତ୍ରୀ ଥିଲେ ।

ଜଗନ୍ତା ବାହା ହୋଇ ନଥିଲା । ସେ କିନ୍ତୁ ଅନ୍ୟ ଛଅ ଭାଇଙ୍କ ଠାରୁ ଅଧିକ ସୁନ୍ଦର ଓ ଶକ୍ତିଶାଳୀ ଥିଲା । ଜଗନ୍ତାର ରୂପ ଗୁଣରେ ମୁଗ୍ଧ ହୋଇ ତାର ଭାଉଜମାନେ ତା ସହ ପ୍ରେମ କରିବା ପାଇଁ ଚେଷ୍ଟା କଲେ । କିନ୍ତୁ ଜଗନ୍ତା ସେମାନଙ୍କ ଫାନ୍ଦରେ ପଡ଼ିଲା ନାହିଁ । ଏହି ବିଷୟ ଭାଇମାନଙ୍କୁ କହିଦେବ, ଏଇ ଭୟରେ ଭାଉଜମାନେ ବାଳମୁକୁଳା କରି ଗାଲ, ନାକ ଓ ମୁହଁକୁ ନିଜ ନଖରେ ବିଦାରି, ସେମାନଙ୍କ ସ୍ୱାମୀମାନେ ଯେଉଁ ଡଙ୍ଗରରେ କାମ କରୁଥିଲେ ସେଠାକୁ ଯାଇ ଜଗନ୍ତା ନାମରେ ନାନା କଥା କହିଲେ । ଏଥିରେ ଭାଇମାନେ ରାଗିଯାଇ ଘରକୁ ଆସି ଜଗନ୍ତାର ହାତଗୋଡ଼ ବାନ୍ଧି କରି ନେଇ ପାହାଡ଼ ତଳେ ଏକ ବରଗଛ ମୂଳେ ପକାଇଦେଲେ । କିଛିଦିନ ବିତିଗଲା । ଜଗନ୍ତାର କିଛି କ୍ଷତି ହେଲା ନାହିଁ । ସମସ୍ତେ ଜଗନ୍ତାକୁ ଦେଖି ଆଶ୍ଚର୍ଯ୍ୟ ହେଲେ ଓ ତାକୁ କିତୁଙ୍ଗ୍ ମହାପ୍ରଭୁ ଭାବେ ପୂଜା କଲେ । ପରେ ଜଗନ୍ତା କିନ୍ତୁ ରାବଣ ଗିରିରେ ପଥର ଫଟେଇ ସେଥିରୁ ନିଆଁ ବାହାର କଲେ ଓ ପବନକୁ ଜନ୍ମଦେଲେ । ପଥର ଭାଂଗିବା ବେଳେ ଖଣ୍ଡିଏ ପଥର ତାଙ୍କ ମୁହଁରେ ବାଜିବାରୁ ତାଙ୍କ ମୁହଁ ଚେପ୍ଟା ହୋଇଗଲା ଓ ନିଆଁ ପ୍ରବଳ ହୋଇ ପାହାଡ଼ରେ ଥିବା ଅରଣ୍ୟରେ ବ୍ୟାପିଯିବାରୁ ନିଆଁରେ ଜଗନ୍ତା କିତୁଙ୍ଗ୍ ଗୋଡ଼ହାତ ଜଳିଗଲା । ନିଆଁ ଧାସରେ ସିଝି ତାଙ୍କ ଦେହ କଳା ହୋଇଗଲା । ସେ ରାବଣଗିରି ପାହାଡ଼ରେ ମାଦଳ ହୋଇ ପଡ଼ିରହିଲେ । ତାଙ୍କ ଦ୍ୱାରା ସୃଷ୍ଟି ହୋଇଥିବା ନିଆଁରେ ବହୁ ଜୀବଜନ୍ତୁ ପୋଡ଼ି ହୋଇ ମଲେ । ମଣିଷମାନେ ପୋଡ଼ା ପଶୁପକ୍ଷୀମାନଙ୍କ ମାଂସ ଖାଇ ତା'ର ସ୍ୱାଦ ବାରିବାରୁ ପରେ ନିଆଁକୁ ସାଇତି ରଖି ଖାଦ୍ୟ ରାନ୍ଧିକରି ଖାଇବା ଶିଖିଲେ । ଲୋକମାନେ ନିମ୍ବକାଠ ଗଣ୍ଡିରେ ସେଇକାଳରୁ କିତୁଙ୍ଗଙ୍କ ହାତଗୋଡ଼ ବିହୀନ ଦାରୁମୂର୍ତ୍ତି ନିର୍ମାଣ କରି ପୂଜା କରିବା ଆରମ୍ଭ କଲେ । ଏହି ଜଗନ୍ତା କିନ୍ତୁ ପରବର୍ତ୍ତୀ କାଳରେ ଆର୍ଯ୍ୟମାନଙ୍କ ଦ୍ୱାରା ଅପହରିତ ହୋଇ ଜଗନ୍ନାଥ ରୂପେ ପୂଜିତ ହେଲେ ।

୧୦୧. କନ୍ଦିରିବାଲି - *ଦେ.ବି. :* ଢେମ୍‌ସା ନୃତ୍ୟର ଏକପ୍ରକାର ଶୈଳୀ । ଇଂ.- A form of Dhemsa Dance କୌଣସି ଜିନିଷ ହଜିଯାଇଥିଲେ ଖୋଜିଲାଭଳି ଅଙ୍ଗଭଂଗୀ କରି ବାଦ୍ୟ ଓ ମହୁରୀର ତାଳେତାଳେ ନାଚିବା ଶୈଳୀ । ଏହି ନାଚରେ ପୁଅଝିଅ ବୁଲିବୁଲି ବା କିହ୍ରିକନ୍ଦ୍ରି ନାଚିଥାନ୍ତି । ଢେମ୍‌ସା ନାଚର ଏକ ଶୈଳୀ ବିଶେଷ ।

କିନ୍ଦିରି (କ୍ରିୟାଶବ୍ଦ) : ଘୁରିଘୁରି ବୁଲିବା : ଘୁରିଘୁରି ପ୍ରଥମେ ମନ୍ଥର ଓ କ୍ରମଶଃ କ୍ଷିପ୍ର ପଦପାତରେ ନୃତ୍ୟ କରିବା ଏବଂ ହଜିଥିବା ଜିନିଷ ଖୋଜିବାଭଳି ଅଂଗଭଂଗୀ କରିବା ।

ହାଏ ଟୋକି କିନ୍ଦରସି ଆଛେ । ଅର୍ଥାତ୍ ସେଇ ଝିଅଟି ଘୁରିଘୁରି ବୁଲୁଛି ।

କିନ୍ଦିରି (ବିଶେଷଣ) : ଏକ ପ୍ରକାର ଚୈତପର୍ବ ।

(ଗୀତ) : ଗଟେକ୍ କିନ୍ଦ୍ରି ଗୀତ ଗାବାୟ । ଅର୍ଥାତ୍ ଗୋଟିଏ କିନ୍ଦିରି ଗୀତ ଗାଅ ।

୧୦୨. କିନ୍ଦିରି ଗୀତ - *ଦେ.ବି. :* ଆଦିବାସୀମାନଙ୍କ ଚଇତି ପରବ ଗୀତ । ଢୋଲାପୁଟ, ଲମତାପୁଟ, ପଡ଼ିଆ, ନନ୍ଦପୁର, ନବରଂଗପୁର, ରାୟଗଡ଼ା, ମାଲକାନଗିରି ଆଦି ଅବିଭକ୍ତ କୋରାପୁଟ ଜିଲ୍ଲାର ପ୍ରତି ଅଞ୍ଚଳରେ ଦେଶିଆ ମାନେ କିନ୍ଦିରିଗୀତ ଗାଇଥାନ୍ତି । ଏହା ଚଇତି ପରବ ଗୀତର ଅନୁରୂପ । ଏହି ଗୀତର ଏକ ନିର୍ଦ୍ଦିଷ୍ଟ ଆଙ୍ଗିକ ଥାଏ ।

ଗୀତର ଆରମ୍ଭରେ ଦେବାଦେବୀ ବନ୍ଦନା ଓ ଯୁବକ - ଯୁବତୀ ବା ଧାଙ୍ଗଡ଼ା ଧାଙ୍ଗଡ଼ୀ ମଧ୍ୟରେ ପରସ୍ପର ପ୍ରତି ଛଳୋକ୍ତିଭରା ଆହ୍ୱାନ ଥାଏ । ତା ପରେ ଗୀତ ଆରମ୍ଭ ହୁଏ । ବାଦ ପ୍ରତିବାଦ / ସୁଆଲ ଜବାବ ଭିତରେ ଗୀତ ଗତି କରେ । ଉପସଂହାର ଆଡ଼କୁ ଗୀତର ପ୍ରତ୍ୟେକ ପଦ ଆରମ୍ଭରେ ଏକ ତୀବ୍ର ଲହରିଯୁକ୍ତ ସମ୍ବୋଧନର ରାହା........ "ଓ ନନିରେ" କିମ୍ବା "ଲୋ ........ ଲବିରେ" ବୋଲି ତାପରେ ଆସେ ଗୀତର ପଦ । ପ୍ରତ୍ୟେକ ପଦରେ ପ୍ରାୟ ୭ଟି ଚରଣ ରହେ ।

ଏହି ଗୀତର ଯତିପାତର ନିୟମ ହେଉଛି : - କ....କ / ଖ....ଗ (ଖ) ଘ.... ଘ ।

କ ଏବଂ ଘ ଚରଣରେ ଅକ୍ଷର ସଂଖ୍ୟା ୧୧, ଖ ଚରଣରେ ୮ ଏବଂ ଗ ଚରଣରେ ୬+୫=୧୧ । ପ୍ରଥମ ଦୁଇଧାଡ଼ି ବା ପାଦର ବିଷୟବସ୍ତୁ କୌଣସି ଏକ ପ୍ରାକୃତିକ ଦୃଶ୍ୟର ବିଷୟ ବସ୍ତୁ ବା ପୌରାଣିକ ଆଖ୍ୟାନର ସୂଚନା ଦିଏ ।

ପରବର୍ତ୍ତୀ ତିନିପାଦରେ ରହେ ଗାୟକର ପ୍ରକୃତ ବକ୍ତବ୍ୟ ବା ସୁଆଲ ଯବାବ । (ପ୍ରଶ୍ନ ଉତ୍ତର) । ଶେଷ ଦୁଇପଦରେ ବକ୍ତବ୍ୟ ସରିଥାଏ ଏଥିରେ ପ୍ରତିପକ୍ଷ

ପ୍ରତି ଆଘାତ ଓ ସଂଲଗ୍ନ କୌଣସି ଏକ ସୁଆଙ୍ଗ ମାଧମରେ ଚାତୁର୍ଯ୍ୟପୂର୍ଣ୍ଣ କଟାକ୍ଷ ରହିଥାଏ । ଏହି ଶେଷ ପଦକୁ 'ଚାକନା' କୁହାଯାଏ । ଏହାହିଁ ଯେମିତି କିନ୍ଦିରି ଗୀତର ରସପୂର୍ଣ୍ଣ ରସ । କିନ୍ଦ୍ରି ଗୀତର ଗୋଟିଏ ଉଦାହରଣ :

ଏ ଲୟାରେ ..... ଏ ଲବିରେ.......
ଗାଇବି କିନ୍ଦରି ଶୁନ କାନ ଡେରି ।
ଗଛମୂଳେ ଗଂଗାବରି ଗୋଟେ ଗାଆ ବଏଲେ
ଶହେଟା ଗାଇବି, ପତରେ ଲେକିଲା ପରି ଯେ,
ପତରେ ଲେକିଲା ପରି,
ଏ ଲବିରେ.....
ଗାଡ଼ି ଖଣ୍ଡି ଖଣ୍ଡି କାଣ୍ଡା ବାଉଁଶ, ବାଉଁଶରେ କଟମଟି
ପିଲା ବେଲର କି ବନ୍ଧୁ ମଇତର ଆମ୍ବ କାଇ,
ଆଲେ ଗାଇ ଦେବୁ ଗୋଟି ଗୋଟି ।

କିନ୍ଦିରି ଗୀତ ଦେଶିଆ ଭାଷାରେ ସର୍ବଶ୍ରେଷ୍ଠ ଲୋକଗୀତର ଆଙ୍ଗିକ ବହନ କରି ସମସ୍ତ ମନ ମୋହିଥାଏ । ଏହି ମୌଖିକ ଗୀତର ପଟାନ୍ତର ନାହିଁ ।

୧୦୩. କିର୍‌ସାନୀ – *ଦେ.ବି. :* ବଣ୍ଡା ଆଦିବାସୀ ଗୋଷ୍ଠୀ ମୁଖ୍ୟତଃ ବଣ୍ଡା ମାନଙ୍କର ଗୋଟିଏ କୁଟୁମ୍ବ ବା ଗୋତ୍ରିର ଲୋକ ୯ ଭାବରେ ବିଭକ୍ତ । ସେ ସବୁହେଲେ ବଡ଼ନାୟକ, ଶିଶା, ମୁଦୁଲି, ଚାଲାନ, ଧାଙ୍ଗଡ଼ାମାଝୀ, କିର୍‌ସାନୀ, ଝିଗିଡ଼ି, ହୋର ଓ ମାନ୍ଦ୍ରା । ଶେଷ ତିନୋଟି ଗୋତ୍ର ଅର୍ବାଚୀନ । ସେମାନଙ୍କ ମଧ୍ୟରୁ ଯେଉଁ ଗୋଷ୍ଠୀ ନିଜ ରାଜ୍ୟର ସୁରକ୍ଷା ପାଇଁ ଶତ୍ରୁ ସହ ସମ୍ମୁଖ ସମରରେ ଲିପ୍ତ ରହୁଥିଲେ ସେମାନଙ୍କୁ କିର୍‌ସାନୀ କୁହାଯାଉଥିଲା । ବର୍ତ୍ତମାନ କିର୍‌ସାନୀ ଏକ ସାଂଙ୍ଖାରେ ପରିଣତ ହୋଇଛି ।

୧୦୪. କୀର୍ – *କ୍ରି.ବି. :* (୧) ଜାଟି, କଳିଗୋଳ, ଲାଗାଲାଗି, ଇଂ. – Quarrel

(୨) କ୍ରି. ବହୁତ ଆଉଳି ହେବା, ପାଟିତୁଣ୍ଡ କରିବା । To shout, To create nuisence.

ବ୍ୟବହାର : ଯଥା (୧) ବୁଢେକ୍ ଲୋକ୍ ଇମି କୀର୍ ଅଇଲାଇନି ।

(୨) ଗାଏଁ ସଗରତା ନିଆୟ ଗିନେ ଅଦିକ୍ କୀର ।

ଅର୍ଥାତ୍, ଗାଁରେ ସଗରତା ନିଶାପ ପାଇଁ ଅଧିକ ପାଟିତୁଣ୍ଡ ହୁଏ ।

୧୦୫. କିର୍‌କସା - ଦେ.ବି. : ଏକ ଘନବାଦ୍ୟ ବିଶେଷ । ଦୁରୁଆ ସଂପ୍ରଦାୟ ଲୌହ ନିର୍ମିତ ଏକ ଘନବାଦ୍ୟ । ଏକ ପୋଲା ଲୁହା ଦଣ୍ଡର ପୃଷ୍ଠକୁ ଅନ୍ୟ ଏକ ଦନ୍ତୁରିତ ଲୁହା ପାତିଆରେ ଘର୍ଷଣ କରି ବାଦନ କଲେ 'କିରି କିରି' ଧ୍ୱନି ସୃଷ୍ଟି ହେଉଥିବାରୁ ଏହି ବାଦ୍ୟଟିର ନାମ କିର୍‌କସା ହୋଇଥିବା ଗବେଷଣାରୁ ଜଣାଯାଏ । ଏହା ମୁଖ୍ୟତଃ କୋରାପୁଟ ଜିଲ୍ଲାର ଦୁରୁଆ ଅଧ୍ୟୁଷିତ ବୈପାରୀଗୁଡ଼ା, କୁନ୍ଦ୍ରା ଓ କୋଟପାଡ଼ ବ୍ଲକ୍‌ରେ ଦେଖାଯାଏ ।

୧୦୬. କୁଆକୁକୁଡ଼ା - ଦେ.ବି. : କୁଆଙ୍କୁ ଦିଆଯାଉଥିବା କୁକୁଡ଼ା । ଚୈତ୍ର ପରବ ସମୟରେ ହଳଦୀ ଭାତରେ ଗୋଟା କୁକୁଡ଼ାକୁ ଦୁଇଫଡ଼ା କରି ଭାତ ସହିତ ମିଶି ରନ୍ଧାଯାଏ । ଚଇତ ପରବ ପ୍ରାରମ୍ଭରେ ଜଗ୍‌ରନା ପୂର୍ବ ଦିନ ତିନିଘଣ୍ଟା ରାତିରେ ଶିଆଳୀ ପତ୍ରରେ କାଉମାନଙ୍କୁ ଦିଆଯାଏ । ପୂର୍ବଦିଗରେ ଏହା ଦିଆଯାଏ । ଏହା ସହିତ ସୁଆଁଚାଉଳରେ ତିଆରି ଲାନ୍ଦା ଖିଆଯାଏ । ଏହା ପରଜା ସଂପ୍ରଦାୟରେ ପ୍ରଚଳିତ । (ଦ୍ରଷ୍ଟବ୍ୟ : ଜଗର୍‌ନା)

୧୦୭. କୁଆଁରି ଦାଗା - ଦେ.ବି. : କୁଆଁରୀ ସୂତା । ଲଗ୍ନ ସମୟ ହେଲେ ଦେଶିଆ ସମାଜରେ ଦିଶାରୀ ମନ୍ତ୍ରପଢ଼ି କନ୍ୟାର ହାତଗଣ୍ଠି ଯେଉଁ ନୂଆ ସୂତାରେ ପକାଏ ତାହାକୁ 'କୁଆଁରି ଦାଗା' କୁହାଯାଏ । କୁଆଁରୀ କନ୍ୟା ହାତରେ ଏହା ବନ୍ଧା ହୋଇଥିବାରୁ ଏପରି ନାମକରଣ ହୋଇଛି । ପ୍ରାୟତଃ ସମସ୍ତ ଆଦିବାସୀ ଜନଜାତିର ବିବାହ ବିଧିବିଧାନରେ ଏହା ହୁଏ । ଆର୍ଯ୍ୟ ସମାଜର ବରକନ୍ୟା ହାତଗଣ୍ଠିଠାରୁ ଏହା ଅଲଗା ଓ ଆଦୌ ତୁଳନାରେ ନୁହେଁ ।

୧୦୮. କୁଇଁବା - ଦେ.କ୍ରି. : ପଚିଯିବା, ଗନ୍ଧାହୋଇଯିବା, କୀଡ଼ା ହୋଇଯିବା ।

ଯଥା : (୧) ବାଡ଼େ ଗୁଟେ କୁମଡ଼ା କୁଇଁ ଗଲାଇନି ।

(୨) କାଲିର ବାତ୍ କୁଇଁ ଗଲାନି ।

(୩) ଛେଲି ମରିକରି କୁଇଁ ଗଲାନି ।

୧୦୯. କୁକୁଡ଼ା - *ଦେ.ବି. :* ଗୃହପଳିତ ପକ୍ଷୀ ବିଶେଷ । ବଣଜଂଗଲରେ ମଧ୍ୟ ଏହି କୁକୁଡ଼ା ଦେଖାଯାଆନ୍ତି । ଇଂ. - Fowl, ଅଣ୍ଡିରା କୁକୁଡ଼ାକୁ ଗଂଜା ଓ ମାଈକୁକୁଡ଼ାକୁ ପେଣ୍ଠି କୁହାଯାଏ । ଆଦିବାସୀ ଜନଜୀବନ ଓ ସଂସ୍କୃତିରେ କୁକୁଡ଼ା ଏକ ମହତ୍ୱପୂର୍ଣ୍ଣ ଭୂମିକା ବହନ କରେ । ଶିଶୁ ଜନ୍ମ ଠାରୁ ମୃତ୍ୟୁ ପର୍ଯ୍ୟନ୍ତ ପ୍ରତ୍ୟେକ ଅନୁଷ୍ଠାନରେ କୁକୁଡ଼ା ଅଣ୍ଡା ଓ କୁକୁଡ଼ା ବଳି ଦିଆଯାଏ । ଦେଶିଆ ଭାଷାରେ କୁକୁଡ଼ାର ରଂଗ ଅନୁଯାୟୀ ବର୍ଗୀକରଣ କରାଯାଇଛି । ଯଥା ବିରିବାନିଆ କୁକୁଡ଼ା, କାନ୍ଦୁଲବାନିଆ କୁକୁଡ଼ା, ଖଇରା କୁକୁଡ଼ା, କାଳିଆ କୁକୁଡ଼ା ଇତ୍ୟାଦି । ଆଦିବାସୀ ପୂଜାରେ କାଳିଆ, ଖଇରା କୁକୁଡ଼ା ବହୁଳ ପରିମାଣରେ ପୂଜାରେ ବ୍ୟବହୃତ ହୁଏ । ବନ୍ଧୁ ବା ଗତିଆ ଆସିଲେ କୁକୁଡ଼ା ପୋଡ଼ିବା ଏପ୍ରକାର ମୁଖ୍ୟ ଅତିଥି ସତ୍କାର । ଏହି ଜିଲ୍ଲାରେ କୁକୁଡ଼ା ଗାଲି (ଯୁଦ୍ଧ) ଏକ ମୁଖ୍ୟ ଖେଳ । ଗଞ୍ଜାକୁକୁଡ଼ା ଦୁଇଟିର ଗୋଡ଼ରେ ବିଷ ବୋଳା କାତି ବନ୍ଧାଯାଇ ଯୁଦ୍ଧ କରାଯାଏ । ଏହାକୁ ଗାଲି କୁହଯାଏ ।

କୁକୁଡ଼ା ଗାଲି - କୁକୁଡ଼ା ଲଢ଼େଇ - ହାଟଠାରୁ ଟିକିଏ ଦୂରରେ ଏହି କୁକୁଡ଼ା ଗାଲିର ଆୟୋଜନ କରାଯାଇଥାଏ । ଅବିଭକ୍ତ କୋରାପୁଟ ଜିଲ୍ଲାର ଅନେକ ସ୍ଥାନରେ ସପ୍ତାହର ଗୋଟିଏ ନିର୍ଦ୍ଦିଷ୍ଟ ବାରରେ କୁକୁଡ଼ା ଗାଲିର ଆୟୋଜନ କରାଯାଇଥାଏ । ସାଧାରଣତଃ ୮/୧୦ ଗାଁର ମୁଖ୍ୟ ଲୋକମାନେ ଅଂଶୀଦାର ରୂପେ କୁକୁଡ଼ା ଗାଲିର ଆୟୋଜନ କରିଥାନ୍ତି । ଏଥିପାଇଁ ସ୍ଥାନୀୟ ପୋଲିସ୍‌କୁ ନିୟମିତ ମାମୁଲି ଦିଆଯାଇଥାଏ । କାରଣ ଆଇନତଃ ଏହା ଏକ ଅପରାଧ । ଏଥି ସହିତ ଜଡ଼ିତ ଥାଏ ଜୁଆ ଖେଳ ଓ ମଦ, ପେଣ୍ଡମ୍, ସଲପ ଇତ୍ୟାଦିର ବିକ୍ରୀ । ବଡ଼ବଡ଼ ହାଟ ବା ମେଳା ମହୋତ୍ସବ ସହ ମଧ୍ୟ ଏହା ଜଡ଼ିତ ଥାଏ ।

କୁକୁଡ଼ା ଗାଲିର ଗୋଲେଇ ସ୍ଥାନକୁ କୁହାଯାଏ ଗାଲିଭାଟା । ବାଉଁଶପାଟିଆ କିମ୍ବା କାଠପାଟିଆରେ ଏହି ଗୋଲେଇ ତିଆରି କରାଯାଇଥାଏ । ପ୍ରତି କୁକୁଡ଼ା ଗାଲି ସ୍ଥାନରେ ଏଭଳି ୩/୪ ପର୍ଯ୍ୟନ୍ତ ଭାଟା ଥାଇପାରେ । ଲଢ଼େଇ ଆରମ୍ଭ ଆଗରୁ ଦୁଇପକ୍ଷ ନିଜ ନିଜ କୁକୁଡ଼ାକୁ ନେଇ ସାମ୍ନାସାମ୍ନି ଛାଡ଼ି ଦିଅନ୍ତି । ସେଠାରେ ଦାନା ଖାଉଁ ଖାଉଁ ସ୍ୱାଭାବିକ ଭାବରେ ଯଦି ଦୁଇଟି କୁକୁଡ଼ା ଲଢ଼େଇ ଲାଗିଗଲେ, ତେବେ ପକ୍ଷ ଓ ପ୍ରତିପକ୍ଷ ରୂପେ ସ୍ୱୀକୃତି ଦେବା ପୂର୍ବରୁ ଦୁଇ କୁକୁଡ଼ା ମାଲିକ ଦୁଇ ହାତରେ ଦୁଇଟିଯାକ କୁକୁଡ଼ାକୁ ଉଠାଇ ଓଜନ ପରୀକ୍ଷା କରନ୍ତି । ଆକୃତି, ଓଜଃ ଓ ଓଜନ ଏହି ତିନୋଟିରେ

ସମାନତା ଥିଲେ ଦୁଇପକ୍ଷ କୁକୁଡ଼ା ଗାଲି ପାଇଁ ସମ୍ମତି ଦିଅନ୍ତି । ଏହାପରେ ଉଭୟ କାତିକାରିଆ ପାଖକୁ ଯାଆନ୍ତି । କାତିକାରିଆ ମଧ୍ୟ କୁକୁଡ଼ାମାନଙ୍କ ଆକୃତି ଓ ବିକ୍ରମକୁ ପରୀକ୍ଷା କରି ନିର୍ଦ୍ଦିଷ୍ଟ କାତି ସେମାନଙ୍କ ଗୋଡ଼ରେ ବାନ୍ଧିଥାଏ । ଏହି କାତି ଏକ ବଙ୍କା ସରୁ ଛୁରୀସଦୃଶ ହୋଇଥାଏ ଓ ଏଥିରେ ଚେରମୂଳିକାର ବିଷ ସୋଧନ କରାଯାଇଥାଏ । ଏହି ସବୁ କାତି ସାଧାରଣତଃ ଖୁବ୍ ଦାମୀ ହୋଇଥାଏ । (୫୦୦ ଟଙ୍କାରୁ ୨୫୦୦ ଟଙ୍କା ମଧ୍ୟରେ) ଏବଂ କୁକୁଡ଼ା ଗୋଡ଼ରେ ବନ୍ଧା ହେଲେ ଭଡ଼ା ସ୍ୱରୂପ କେବଳ ଜିତିବା କୁକୁଡ଼ା ମାଲିକଠାରୁ ୩୦ଟଙ୍କା ୭୦ଟଙ୍କା ମଧ୍ୟରେ କାତିକାରିଆ ଆଦାୟ କରିଥାଏ । ଏହି ସବୁ କାତି ନବରଂଗପୁର, ଛତିଶଗଡ଼ର ପୁଷ୍ପପାଲି ଓ କୋଣ୍ଡା ତଥା ଆନ୍ଧ୍ରର ନରସିଂହପେଟା ଠାରୁ ଆମଦାନୀ ହୋଇଥାଏ ।

କୁକୁଡ଼ା ଗାଲିର ମାଲିକ ଜିତିବା ପକ୍ଷ ପାଖରୁ ୧୦ଟଙ୍କା କରି ଆଦାୟ କରିଥାଏ । ଏହା ବ୍ୟତୀତ ସଲପ, ପେଣ୍ଡମ୍ ଓ ମହୁଲିବାଲାଙ୍କଠୁ ଗରିଆ ପିଛା ୧୦ଟଙ୍କା କରି ଆଦାୟ କରିଥାଏ । ଜୁଆ ଖେଳୁଥିବା ଲୋକମାନେ ସମାନ ଅର୍ଥ ଦୁଇ କୁକୁଡ଼ା ଉପରେ ବାଜି ରଖନ୍ତି । ଅର୍ଥାତ୍, ଯାହାର କୁକୁଡ଼ା

ଜିତେ ସେ ଅନ୍ୟପକ୍ଷର ଜୁଆଡ଼ି ଠାରୁ ସେତିକି ଅର୍ଥ ପାଇଥାଏ । ଗାଲି ମାଲିକ ସେଥିରୁ କିଛି ପାଇ ନଥାଏ । ବାଜିଲଗାଇବା ପାଇଁ ଏହି ସବୁ କୁକୁଡ଼ାମାନଙ୍କର ନାମକରଣ କରାଯାଇଥାଏ । ମୁଖ୍ୟତଃ ପଖ ବା ପୁରର ରଂଗ ଓ ଦେହର ଆକୃତି ଅନୁଯାୟୀ ଏହିସବୁ ନାମ ଦିଆଯାଇଥାଏ । ଯେପରି ଧୋବଲା, (ଧଳା), ବୁଡ଼ୁଦି (ପାଉଁସିଆ ପକ୍ଷ), ବିରି ବା ଚିତ୍ରା, କୁଞ୍ଚ କୁଞ୍ଚ, ବାନା, ସାବଲ୍ ବା ଚାଉଲା (ଧୋବ + ନାଲି) ଚାଉଲ୍ ବିରି (ବଡ଼ ଆକୃତିର ଧୋବଯୁକ୍ତ ଅନ୍ୟ ରଂଗର ପର ।), କାନ୍ଦୁଲ ବିରି (ରଂଗ କାନ୍ଦୁଲ ବା ହରଡ଼ ଭଳି ଗୋଲ ଚିତ୍ରିତ ପର) ଗେରୁଆ (ଗେରୁଆ ରଂଗରପର) କୁମାଟ ଗେରୁଆ (ଗେରୁଆ ଯୁକ୍ତ ଲାଲ), ଅନୁଗେରୁଆ (ହନୁ ମାଙ୍କଡ଼ ଦେହର ରଂଗ), କାଲିଆ ଚାଉଲା (କଳା), ସାଇକୁକୁଡ଼ା (ଝିଙ୍କ ଭଳିଆ ଗୋଜି ଗୋଜି ପକ୍ଷ) ଓ ରାବଣ ଚୁଟିଆ (କୁକୁଡ଼ାର ନିମ୍ନଭାଗରେ ପକ୍ଷ ଥିବ କିନ୍ତୁ ଛାତି ବା ଗାଲରେ ନଥିବ, ଓଟ ପକ୍ଷୀଭଳି ଲମ୍ବା ଗୋଡ଼ ହୋଇଥିବ) ଇତ୍ୟାଦି । ଜୁଆଡ଼ିମାନେ ସାଧାରଣତଃ ଏହିସବୁ ନାମରେ ବାଜି ଲଗାଇଥାନ୍ତି ।

ଯେଉଁ କୁକୁଡ଼ା ଜିତିଯାଏ, ତାକୁ କହନ୍ତି ଗୁସା ଗାଞ୍ଜା ବା ବାଣ୍ଟୁ କୁକୁଡ଼ା । ଯେଉଁ କୁକୁଡ଼ା ହାରିଯାଏ, ତାକୁ କହନ୍ତି 'ପାନୁଆ' ବାର ହାର୍‌ଲା କୁକୁଡ଼ା । କୁକୁଡ଼ା ଗାଲିରୁ ଜିତିଥିବା ପାନୁଆକୁ ଗୁଷା ଗାଞ୍ଜାର ମାଲିକ ଏକୁଟିଆ ଖାଏ ନାହିଁ । ପାଖ ପଡ଼ିଶାରେ ତା'ର ମାଂସ ବାଣ୍ଟେ । ସେହିପରି ଗୁସାଗାଞ୍ଜା ଯଦି ଘରକୁ ଫେରିବା ପରେ ଗାଲିର ଆଘାତ ସକାଶେ ମରେ ତେବେ ଗାଲିକୁ ଯାଇଥିବା ମାଲିକ ସେ କୁକୁଡ଼ାର ମାଂସ ଖାଏ ନାହିଁ । ପରିବାରର ଅନ୍ୟମାନେ ଖାଇବାରେ ତାହା ବାରଣ ନାହିଁ । ପୁଣି ପାନୁଆ କୁକୁଡ଼ା ମାନଙ୍କୁ କୌଣସି ପରିସ୍ଥିତିରେ ବିକ୍ରି କରିବାର ବିଧି ନାହିଁ । ପୁଣି ପାନୁଆ କୁକୁଡ଼ାମାନଙ୍କୁ ଗାଲିରୁ ଫେରିବା ପରେ ସିଲେଇ କରି ଚିକିତ୍ସା କରିବାକୁ ପଡ଼େ । ସାଧାରଣତଃ ହଳଦୀ, ମହୁ, ଜଡ଼ାତେଲ, ତଥା ବିଶଲ୍ୟକରଣୀ ପତ୍ର ଲଗାଇ ଏହାର ଚିକିତ୍ସା କରାଯାଏ । ଅଭିଜ୍ଞ ଚିକିତ୍ସକ ନମିଳିଲେ ସାଧାରଣତଃ ଛୁଞ୍ଚି ସୂତାରେ ମଧ୍ୟ ସିଲେଇ କରାଯାଇଥାଏ । ଏହି କୁକୁଡ଼ା ମାନଙ୍କର ପ୍ରତିରୋଧକ ଶକ୍ତି ଖୁବ୍ ବେଶି ହୋଇଥିବାରୁ ଦୁଇ ଚାରିଦିନ ଭିତରେ ଘା ଶୁଖିଯାଇଥାଏ । ଏହିଭଳି ଲଢୁଆ କୁକୁଡ଼ା ମାନଙ୍କର ମୂଲ୍ୟ ଆଶାତୀତ ଭାବେ ଉଚ୍ଚ । ଗୋଟିଏ ସାଧାରଣ ଦେଶୀ ଗଂଜାର ମୂଲ୍ୟ ୨୦୦ଟଙ୍କା ହୋଇଥିବାବେଳେ ଆନ୍ଧ୍ରର କଳିଙ୍ଗା ବା ରାବନ୍ ଚୁଟିଆ ଗଂଜାର ମୂଲ୍ୟ ୨୦୦୦ଟଙ୍କା ମଧ୍ୟ ହୋଇଥାଏ ।

୧୧୦. **କୁକୁର କୁଣ୍ଡ** - *ଦେ.ବି. :* ଏକ ଗିରିନଦୀ ବିଶେଷ, ଯାହା ସହ ବିରି କିମ୍ବଦନ୍ତୀ ଜଡ଼ିତ ଅଛି । ମାଥିଲିର ପଶ୍ଚିମ ପଟେ ରହିଛି ଏକ ବିରାଟ ପର୍ବତ । ଯାହା ଲମ୍ବିଯାଇଛି ଛତିଶଗଡ଼ ଭିତରକୁ । ଅନେକ ସ୍ଥଳରେ ତାହା ଓଡ଼ିଶା ଓ ଛତିଶଗଡ଼ର ସୀମା ହୋଇଥିଲେ ମଧ୍ୟ ଦୁଇ ପ୍ରଦେଶ ମଧ୍ୟକୁ ତା'ର ବିସ୍ତାର । ଏକଦା ଏହା ଘନ ଜଂଗଲପୂର୍ଣ୍ଣ ଥିଲା ଓ ଅଧୁନା ଲୁପ୍ତ ପ୍ରାୟ ବହୁ ପ୍ରକାରର ଜୀବଜନ୍ତୁ ଯଥା - ବଣ ମଇଁଷୀ, ଗୟଳ, ବଳିଆ, ଖଗ ଓ ମହାବଳ ବାଘ ଇତ୍ୟାଦିଙ୍କ ଦ୍ୱାରା ପରିପୂର୍ଣ୍ଣ ଥିଲା । ଏହା ହେଉଛି ତୁଲ୍‌ସା ଡଙ୍ଗର । ଏହି ତୁଲ୍‌ସା ଡଙ୍ଗର ଉପରେ ରହିଛି ବଣ୍ଡାକୁଣ୍ଡ ଓ ତା ତଳକୁ ରହିଛି କୁକୁର୍ କୁଣ୍ଡ । କୁକୁର୍ କୁଣ୍ଡ୍‌କୁ ଲାଗି ଯେଉଁ ଗଣ୍ଡିଆ ଗାଁଟି ରହିଛି, ଏହି କୁଣ୍ଡ ଅନୁସାରେ ତାର ନାମ ମଧ୍ୟ କୁକୁର କୁଣ୍ଡ୍ । ଗୋଟିଏ ସମୟରେ ଏହି ପର୍ବତରେ ବହୁପରିମାଣରେ ବଣ ତୁଳସୀ ବୁଦା ରହିଥିଲା ବୋଲି ଏହାକୁ ତୁଳସା ପର୍ବତ ବା ତୁଲ୍‌ସା ଡଙ୍ଗର ବୋଲି କୁହାଯାଏ ।

ଏହି ବଣ୍ଡାକୁଣ୍ଡ ଓ କୁକୁର କୁଣ୍ଡ୍ ସଂପର୍କରେ ଗୋଟିଏ ଲୋକକଥା ପ୍ରଚଳିତ । ସେହି ପର୍ବତ ଉପରେ ଥିବା କୌଣସି ଗାଁରେ ରହୁଥିଲେ ଭାଇ ଭଉଣୀ । ଭାଇ ସବୁଦିନେ ଇଡ଼ି ବାନ୍ଧିବାବେଳେ ପିନ୍ଦାଓଡ଼ା ବା ପିନ୍ଧା ଲୁଗା ଅର୍ଥାତ୍ ଲେଙ୍ଗୁଟି ମଇଳା ହୋଇଯିବା ଭୟରେ ବାଣ୍ଡା ବା ଡୁମ୍‌ଡ଼ା (ଲଙ୍ଗଳା) ହୋଇ ରହେ । ଭଉଣୀକୁ ସେ କହିଥାଏ ଆଡ଼ବେଳିଆ ପେଜ ଆସିଲାବେଳେ କୁକୁର ବେକରେ ଘଣ୍ଟି ବାନ୍ଧି ନେଇ ଆସିବ । ଘଣ୍ଟି ଶବ୍ଦ ଶୁଣିଲେ ଭାଇଟି ନିଜର ଲେଙ୍ଗୁଟି ପିନ୍ଧି ନିଏ । ଦିନେ ଭଉଣୀ ଭାବିଲା ଭାଇ କ'ଣ କରୁଛି । କାହିଁକି ଘଣ୍ଟି ବାନ୍ଧି କୁକୁରଟିକୁ ଆଣିବାକୁ କହୁଛି । ଆଜି ନିଶ୍ଚୟ ପରୀକ୍ଷା କରି ଦେଖିବି । ତେଣୁ ସେ ଦିନେ କୁକୁର ବେକରେ ଘଣ୍ଟି ନ ବାନ୍ଧି ଆସିଲା ଏବଂ ଉଲଗ୍ନ ଭାଇକୁ ଦେଖିଦେଲା । ଭଉଣୀକୁ ଦେଖି ଲାଜରେ ସେ ବାଣ୍ଡାଭାଇ ପାଖରେ ଥିବା କୁଣ୍ଡକୁ ଅର୍ଥାତ୍ ନଦୀକୁ ଡେଇଁ ପଡ଼ିଲା । ଭାଇକୁ ଡେଇଁବା ଦେଖି ତା ପଛେପଛେ କୁକୁର ମିଶା ସେହି କୁଣ୍ଡକୁ ଡେଇଁ ପଡ଼ିଲା । ବଣ୍ଡା ଭାଇଟି ସେହି କୁଣ୍ଡରୁ ଆଉ ଉଠିଲା ନାହିଁ । ସେହିଦିନୁ ସେ କୁଣ୍ଡର ନାମ ହେଲା 'ବଣ୍ଡାକୁଣ୍ଡ' । ତା ପଛେପଛେ ଡେଇଁ ପଡ଼ିଥିବା କୁକୁର ଭାସି ଭାସି ଆସି ପର୍ବତ ତଳେ ଥିବା କୁଣ୍ଡରେ ଆସି ଉଠିଲା । ତେଣୁ ପର୍ବତ ତଳ କୁଣ୍ଡର ନାମ ହେଲା 'କୁକୁର କୁଣ୍ଡ୍' । ସେହି ଅନୁସାରେ ପାଖ ଗାଁର ନାମ ମଧ୍ୟ 'କୁକୁର୍ କୁଣ୍ଡ୍ ।'

୧୧୧. କୁକୁର ଦାନ୍ତୀ – *ଦେ.ବି. :* ଔଷଧୀ ବୃକ୍ଷ ବିଶେଷ । ଅପାମାରଂଗ : ଏହାକୁ ଦାନ୍ତରୋଗ ଓ ଯାଦୁରୋଗ ବିନାଶ ପାଇଁ ବ୍ୟବହାର କରିଥାନ୍ତି । ଦିଶାରୀ ଓ ଶିରାମାନେ କ୍ରମାଗତ ଭାବେ ବର୍ଷେ ଦୁଇବର୍ଷ ଏବଂ ତିନିବର୍ଷ କୁକୁରଦାନ୍ତୀ ଦାନ୍ତକାଠି ଘସି ବଚନ ସିଦ୍ଧି କରାଇଥାନ୍ତି ।

୧୧୨. କୁଞ୍ଚା – *ଦେ.ବି. :* ଜଂଗଲ ଭିତରେ ଚୋରାରେ ମଦ ରାନ୍ଧୁଥିବା ସ୍ଥାନକୁ 'କୁଞ୍ଚା'କୁହାଯାଏ । ଦେଶୀ ପଦ୍ଧତିରେ ମହୁଲ, ଚାଉଳ, ଗୁଡ଼ର ପୋଚ୍ କରି ମଦ ପ୍ରସ୍ତୁତ କରାଯାଇଥାଏ ଏବଂ ଚୋରାରେ ବିକ୍ରୀ କରାଯାଏ । (ଦ୍ରଷ୍ଟବ୍ୟ : ମହୁଲ)

୧୧୩. କୁଞ୍ଜା – *ଦେ.ବି. :* କାଳରେ ତିଆରି ସୂତା ପରି ମାଳ । ଏହା କୋୟା ରମଣୀମାନେ ନୃତ୍ୟ ସମୟରେ ପିନ୍ଧିଥାନ୍ତି ।

୧୧୪. କୁଟୁମ୍ ରଜା – *ଦେ.ବି. :* କୁଟୁମ୍ବ ରାଜା । ବାସ୍ତବରେ ଏହା ମୃତାହ କ୍ରିୟା ସଂପର୍କିତ ଏକ ବିଧାନ । ପିତା ଛୁଆନି ଦିନ ବା ଦଶାହ ଭୋଜି ଖାଇବା ଦିନ

ବନ୍ଧୁକୁଟୁମ୍ବ ସବୁ ପଂକ୍ତି ଭୋଜନରେ ବସନ୍ତି । ଏହି ସମୟରେ କ୍ରିୟା କରିବା ଲୋକ ଯୋଡ଼ହସ୍ତରେ ଯାଇ କହେ – "ତୁମ୍ଭେମାନେ ସବୁ ମୋର ବନ୍ଧୁ କୁଟୁମ୍ବ – ତୁମ୍ଭେମାନେ ରାଜାଠାରୁ ବି ଅଧିକ ପୂଜନୀୟ – ତୁମକୁ ବସାଇବା ଶକ୍ତି ମୋର ଅଛି । କିନ୍ତୁ ଉଠାଇବା ଶକ୍ତି ନାହିଁ ମୋର ଦୋଷାଦୋଷ କ୍ଷମା କର ।"

୧୧୫. **କୁଟୁଣୀ ଯାତ୍ରା** – *ଦେ.ବି. :* ଏକ ପର୍ବ ବିଶେଷ । ସେମିଳିଗୁଡ଼ା ଓ ପଟାଙ୍ଗି ଅଞ୍ଚଳର ଏହା ଏକ ଆଞ୍ଚଳିକ ପର୍ବ । ସର୍ବଭାରତୀୟ ମହାନ୍ ପରମ୍ପରାର କ୍ଷୁଦ୍ର ଆଞ୍ଚଳିକ ରୂପ ବିଭବ । ଏ ସଂପର୍କରେ ଏକ ପ୍ରବାଦ ରହିଛି । ଗୋଟିଏ ଗ୍ରାମରେ ଭାଇ ଓ ଭଉଣୀ ଏକତ୍ର ବାସ କରୁଥିଲେ । ଭାଇ ଜଣକ ହଳ କରିସାରି ଘରକୁ ଫେରି ଦେଖିଲା ବେଳକୁ ଭଉଣୀ ଉଲଗ୍ନ ହୋଇ ମୂଷଳରେ ଧାନ କୁଟୁଛି । ଭାଇଟି ଏଥିରେ ଲଜ୍ଜିତ ହୋଇ ନିଜ ମୁଣ୍ଡରୁ ପାଗ ବାହାର କରି ଭଉଣୀ ନିକଟକୁ ଫୋପାଡ଼ି ଦେଲା । ପାଗ ପରେ ପରେ ତିତାରୀ ବାଡ଼ି ବା ପାଞ୍ଚଣ ଫୋପାଡ଼ିବାରୁ ମଧ୍ୟ ଭଉଣୀ ସତର୍କ ଓ ସଂଯତ ନ ହେବାରୁ ଶେଷରେ ଲଂଗଳ ଓ ଜୁଆଳି ଭଉଣୀ ଉପରକୁ ନିକ୍ଷେପ କଲା । ଏଥିରେ ଭଉଣୀଟି ମଧ୍ୟ ଲୁଗା ପରିଧାନ କରି ସଂଯତ ନ ହେବାରୁ ଭାଇଟି ଭୀଷଣ ରାଗିଯାଇ ଭଉଣୀର ସ୍ତନ ଦୁଇଟିକୁ କାଟି ନିକଟସ୍ଥ ପାହାଡ଼ ଉପରକୁ ନିକ୍ଷେପ କଲା । ବର୍ତ୍ତମାନ ସ୍ତନ ଦୁଇଟି ପଥର ପାଲଟି ଯାଇ ପାହାଡ଼ ଶିଖର ରୂପରେ ରହିଥିବା କଥା ସମସ୍ତେ ବିଶ୍ୱାସ କରନ୍ତି । ଭଉଣୀଟି ଶେଷରେ ଆମ୍ବ ବୃକ୍ଷଟିଏ ହୋଇଗଲା । ଆମ୍ବ ବୃକ୍ଷଟି ବର୍ତ୍ତମାନ ସୁଦ୍ଧା ବିଦ୍ୟମାନ । ଭଉଣୀର ସ୍ତନ ଛେଦନ ଦିନଟିକୁ କୁଟୁଣୀ ଯାତ୍ରା ରୂପେ ପାଳନ କରି, ମୃତା ଭଉଣୀର ନିରାଜନା କରାଯିବା ହେତୁ ଏହା 'କୁଟୁଣୀ ଯାତ୍ରା' ରୂପେ ଖ୍ୟାତ । କୁଟୁଣୀ ଯାତ୍ରା ପ୍ରାୟତଃ ମାଘ ଓ ଫାଲ୍‌ଗୁନ ମାସରେ ଅନୁଷ୍ଠିତ ହୋଇଥାଏ ।

୧୧୬. **କୁଡ଼ାନ୍‌ମାରାନ୍** – *ଦେ.ବି. :* ଲାଂଜିଆ ସଉରାଙ୍କ ନିଷ୍ଠାପର ପୂଜକ । ଲାଞ୍ଜିଆ ସଉରା ଆଦିବାସୀ ସଂପ୍ରଦାୟରେ ଇଡ଼ିତାଲ୍ (କାନ୍ଥ ଚିତ୍ର) ଆଙ୍କି ଥାଆନ୍ତି ଇଡ଼ିତାଲମାରାନ୍ । କିନ୍ତୁ ଏହି ଚିତ୍ରକୁ ଯେଉଁ ବ୍ୟକ୍ତି ପୂଜା କରନ୍ତି ତାଙ୍କୁ 'କୁଡ଼ାନ୍ ମାରାନ୍' କୁହାଯାଏ । କୁଡ଼ାନ୍ ମାରାନ୍ ଇଡ଼ିତାଲର ପୂଜକ ଅଟନ୍ତି । ଏମାନେ ବଡ଼ ନିଷ୍ଠାର ସହ ଇଡ଼ିତାଲ୍‌କୁ ପୂଜା କରିଥାନ୍ତି ।

୧୧୭. **କୁଡ଼ାଂବୟ** - *ଦେ.ବି. :* ବେଜୁଣୀ, ଗୁରୁମାଇ । ସଉରାମାନଙ୍କ ପୂଜାକର୍ମ କରୁଥିବା ସ୍ତ୍ରୀ ଲୋକ । (ଦ୍ରଷ୍ଟବ୍ୟ ଗୁରୁମାଇ / ବେଜୁଣି ।)

୧୧୮. **କୁଡ଼ି ବା ସଦର** - *ଦେ.ବି. :* ଡଙ୍ଗରିଆ କନ୍ଧମାନେ କୌଣସି ଗ୍ରାମ ବସାଇବା ପୂର୍ବରୁ ଧରଣୀପେନୁ ବା ଦର୍ତ୍ତନୀଙ୍କ ବିଗ୍ରହ ସ୍ଥାପନା କରିଥାନ୍ତି । ଗାଁର ଶେଷ ମୁଣ୍ଡରେ ବା ମଝିରେ ଏହା ସ୍ଥାପନା କରାଯାଇଥାଏ । ଏହା ଉପରେ କୁଡ଼ି ବା ସଦର ଘର ନିର୍ମାଣ କରାଯାଇଥାଏ । ଏହା ଗୁଡ଼ିଘର ବା ହୁଣ୍ଡିଘରର ଅନୁରୂପ ।

୧୧୯. **କୁଡୁମୁଲୁଗୁମା** - *ଦେ.ବି. :* ମାଲକାନଗିରି ଜିଲ୍ଲାର ଏକ ଗ୍ରାମ ବିଶେଷ । ଏବେ ଏହା ଏକ ବ୍ଲକ୍‌ର ସଦର ମହକୁମା । ବଣ୍ଡା ଓ ଡିଡାଇଘାଟିର ମଧ୍ୟସ୍ଥଳୀରେ ଏହା ଅବସ୍ଥିତ । ପାହାଡ଼ ଶୃଙ୍ଗରେ ଥିବା ଗାଁ । ଆଦିବାସୀ ଅଞ୍ଚଳରେ ଯେଉଁ ସବୁ ଗ୍ରାମ ପାହାଡ଼ ପର୍ବତ ଶୃଙ୍ଗର ସର୍ବୋଚ୍ଚ ଶୀର୍ଷରେ ଥାଏ ତାହା ଗିରିଶୃଙ୍ଗର ଗ୍ରାମ ବା ଗୁମା ନାମରେ ନାମିତ ହୋଇଥାଏ । ଯଥା ଗୁମ୍ମା, କାକିରିଗୁମ୍ମା, ବୋରିଗୁମ୍ମା, ଗିର୍ଲିଗୁମ୍ମା, କୁଡୁମୁଲ୍‌ଗୁମ୍ମା ଇତ୍ୟାଦି ।

୧୨୦. **କୁଣ୍ଡରି ପରବ ବା ନାହାନ ପରବ** - *ଦେ.ବି. :* ପର୍ବ ବିଶେଷ । ଶାରିରୀକ ଆରୋଗ୍ୟ କାମନା କରି ବିଭିନ୍ନ ଗାଁର ଲୋକେ ସାମୂହିକ ଭାବେ କୁଣ୍ଡରି ପର୍ବ ପାଳନ କରିଥାନ୍ତି । ଦେବତାମାନଙ୍କ ନିକଟରେ ନିଜକୁ ଉତ୍ସର୍ଗ କରି ହାତକୁ ହାତ ଛନ୍ଦି ଧାଙ୍ଗଡ଼ା ଧାଙ୍ଗିଡ଼ୀ ଉଭୟ ମାଦଳର ତାଳେତାଳେ ଢେମସା ନୃତ୍ୟରେ ମଜ୍ଜି ଯାଆନ୍ତି । ନୃତ୍ୟ ଛନ୍ଦରେ ସେମାନେ ଗାଇ ଉଠନ୍ତି ସେମାନଙ୍କର ଅରୋଗ୍ୟ ଲାଭର ଗୀତ -

> "ଡଙ୍ଗର ଦେବୀ ସୁଡୁବାଇ ବକଡ଼ ଗୋଟେକନେ
> ଗାଁର ଗୁଲା ଜର ମୁଣ୍ଡ୍ ନଦୀକେ ଭସାଇ ଦେ ।"

୧୨୧. **କୁଣ୍ଡଲି** - *ଦେ.ବି. :* ଗୋଲାକାର, ଗୋଲେଇ ହୋଇଥିବା ବର୍ଷର ଯେକୌଣସି ସମୟରେ ଏହା ଅନୁଷ୍ଠିତ ହୋଇଥାଏ । ମୁଖ୍ୟତଃ ଏହାର କାବ୍ୟିକ ବ୍ୟବହାର ହୋଇଥାଏ । ଇଂ. - Round.

ଗୋଲାକାର - ବୃତ୍ତପରି ଗୋଲେଇ ବିଶିଷ୍ଟ ।

'କାଳିଆ ବଳଦ କୁଣ୍ଡଲି ଶିଙ୍ଗ୍ ଉଧୁଳି ମାରୁଛି ନାତ, ଯେ ଦିନ ବାଜିବ ପିତଳ ମହୁରୀ, ସେଦିନ ଧରିବି ହାତ ।'

ଅର୍ଥାତ୍ - ଆଦିବାସୀ ଯୁବତୀଟି ତା ପ୍ରେମିକକୁ କହୁଛି, ତୁମେ ଗୋଲେଇ

ଶିଙ୍ଗ ଥିବା ଅମଣିଆ କାଳିଆ ବଳଦ ପରି ହେଉଛ । କଥା କଥାକେ ଉଚ୍ଛୁଳି ଉଠି ନାତମାରିଲା ପରି ଠାଣିମାଣି ଦେଖାଉଛ । ଯେଉଁଦିନ ମହୁରୀ ବାଜିବ ଓ ତୁମର ମୋର ବାହାଘର ହୋଇଯିବ, ସେଇଦିନ ମୁଁ ତୁମର ହାତଧରି ତୁମକୁ ମଣ କରିଦେବି । ତୁମ ଅମଣିଆ ପଣିଆ କୁଣ୍ଡଳି ସିଙ୍ଗ ପରି ଯେଉଁଠି ଆରମ୍ଭ ହୋଇଥିଲା, ସେଇଠି ହିଁ ଶେଷ ହୋଇଯିବ ।

୧୨୨. **କୁଣ୍ଡାପିଠା** - *ଦେ.ବି. :* କୁଣ୍ଡାରୁ ପ୍ରସ୍ତୁତି ପିଠା । ଆଦିବାସୀର ପ୍ରିୟଖାଦ୍ୟ । ଚାଉଳ ପାଛୁଡ଼ିଲା ବେଳେ ଯେଉଁ କୁଣ୍ଡା କୁଲାରେ ଲାଗିଥାଏ, ସେହି କୁଣ୍ଡାକୁ ସଂଗ୍ରହ କରି ଗୁଡ଼ ମିଶାଇ ଶାଳପତ୍ରରେ ନିଆଁରେ ପୋଡ଼ି ଖିଆଯାଏ । ଏହି କୁଣ୍ଡାପିଠା ସ୍ୱାଦିଷ୍ଟ ଓ ବଳକାରକ ।

୧୨୩. **କୁଣ୍ଡାବୀରୁ** - *ଦେ.ବି. :* ପର୍ବତ ଦେବତାର ପୂଜା । ସବୁବେଳେ ମୁଣ୍ଡ ବ୍ୟଥା ହେଉଥିଲେ ଏହି ରୋଗର ଉପଶମ ପାଇଁ କୁଣ୍ଡାବୀରୁ ବା ପାହାଡ଼ ଦେବତାର ପୂଜା କରାଯାଏ । କୁଣ୍ଡା / କୋଣ୍ଡା (ପାହାଡ଼) । ଚୈତ୍ର ମାସରେ ପାହାଡ଼ ଦେବତା ଉଦ୍ଦେଶ୍ୟରେ କୁକୁଡ଼ା ବଳିଦେଇ ପୂଜା କରାଯାଇଥାଏ ।

୧୨୪. **କୁଦାଲ୍ ମଲୁଆ** - *ଦେ.ବି. :* ଏକ ପ୍ରକାର ବୃକ୍ଷବାସୀ ମୂଷିକ । ଏହାର ରଂଗ ପାଉଁଶିଆ । କଲାଟ୍ ମଲୁଆ ଠାରୁ ଟିକିଏ ବଡ଼ । ୨ରୁ ଅଢ଼େଇ କେ.ଜି. ଓଜନ ହୋଇଥାଏ । ଏମାନେ ଗଛରେ ରହନ୍ତି ଓ ଫଳମୂଳ ଖାଆନ୍ତି । ମଲୁଆ ଜାତିର ମୂଷାମାନେ ସହଜରେ ଧରାପଡ଼ନ୍ତି ନାହିଁ । ଗଛରୁ ଗଛକୁ ଡେଇଁ ଡେଇଁ ସେମାନେ ମଜା ନେଇଥାନ୍ତି ଏବଂ ଶତ୍ରୁ କବଳରୁ ନିଜକୁ ରକ୍ଷା କରିଥାନ୍ତି ।

୧୨୫. **କୁଦୁବ୍** - *ଦେ.ବି. :* ଗୋଟିଏ ପ୍ରକାର ମୃତାହ ବିଧି । ଗାଦବା କୁଳରେ କେହି ବସନ୍ତ ରୋଗରେ ମୃତ୍ୟୁବରଣ କଲେ, ତାର ଶବକୁ ପୋତି ଦିଆଯାଏ । ଏହାକୁ 'କୁଦୁବ୍' କୁହାଯାଏ । ଏଥିରେ କେହି ଦୁଃଖ ପ୍ରକାଶ କରନ୍ତି ନାହିଁ । ଶବର ମୁଣ୍ଡ ଦକ୍ଷିଣ ଆଡ଼କୁ ଓ ପାଦ ଉତ୍ତର ଆଡ଼କୁ ରଖି ପୋତି ଦିଆଯାଏ । ମୃତ ବ୍ୟକ୍ତିଙ୍କର ଦଶାହ କ୍ରିୟା କରାଯାଏ ନାହିଁ । ବସନ୍ତ ଏକ ସଂକ୍ରାମକ ରୋଗ ହୋଇଥିବାରୁ ପାରମ୍ପରିକ ଭାବେ ଆଦିବାସୀମାନେ ଏହି ପ୍ରତିକାର ବ୍ୟବସ୍ଥା ଗ୍ରହଣ କରିଥାନ୍ତି ।

୧୨୬. କୁନୁର ଫଜା - ଦେ.ବି. : ଏକ ଅନ୍ନ ବିଶେଷ । ବଣ୍ଡା କନ୍ୟା ବିବାହ ପରେ ଶାଶୁଘରକୁ ବାପଘରୁ ବିଦାୟ ନେଇ ଗଲାବେଳେ ଯେଉଁ ଭାତରାନ୍ଧି ନେଇଥାଏ । ତାହାକୁ କୁହାଯାଏ 'କୁନୁର ଫଜା' ।

୧୨୭. କୁପୁଲି - ଦେ.ବି. : ଛୋଟ ବୁଦୁ ବୁଦୁଳିଆ ଜଂଗଲ ଥିବା ଛୋଟ ପାହାଡ଼ । ଗାଁ ନିକଟରେ ଥିବା ଛୋଟ ପାହାଡ଼କୁ ଆଦିବାସୀମାନେ କୁପୁଲି କହିଥାନ୍ତି । ଯଥା : ସନ୍ଧି କୁପୁଲି, ରାଜା କୁପୁଲି, ଭାଲୁ କୁପୁଲି ଆଦି । ସେହିପରି କୁପୁଲି ସହ ଯୋଡ଼ି ଅନେକ ଗାଁ ମଧ୍ୟ ସ୍ଥାପିତ ହୋଇଛି । ଯେପରିକି କୁପୁଲଗୁଡ଼ା, ଗୁପୁଲି ପଦର ଇତ୍ୟାଦି ।

୧୨୮. କୁମୁଡ଼ା - ଦେ.ବି. : ବୋଇତି କଖାରୁ, ବୋଇତାଳୁ । ଆଦିବାସୀ ସମାଜରେ ପନିପରିବା ମଧ୍ୟରେ କୁମୁଡ଼ାର ମହତ୍ୱ ଅଧିକ । ବର୍ଷସାରା ମାଣ୍ଡିଆ ପେଜ ସହ କୁମୁଡ଼ା ଡାଳ ଶାଗ୍ର ଯେମିତି ସଂପର୍କ ରହିଛି, ସେମିତି ସଂପର୍କ ରହିଛି ଜୀବନ ଯୌବନ ଓ ରତିକ୍ରିୟାର ଉପଲକ୍ଷ୍ୟ ପାଇଁ ଏଇ କୁମୁଡ଼ା ଫଳଟିର । ଆକସ୍ମିକ ଭାବେ ପ୍ରେମିକ ପ୍ରେମିକାଙ୍କର ଦୀର୍ଘ ବିଚ୍ଛେଦପରେ ଦେଖା ହୋଇଗଲେ ପ୍ରେମିକାକୁ ଲକ୍ଷ୍ୟକରି ପ୍ରେମିକଟି କହିଥାଏ -

"ଅଦିନେ ହୋଇଲା ଘୋର ବରଷା
କଖାରୁ କୁମୁଡ଼ା ବଡ଼ି
ତଡ଼ି ତଡ଼ି ନେବା ଭୂମିରେ ପଡ଼ି
ଦିନେ ଧରିବି ପୋଟାଳି କରି ।"

ଯାହାର ଅର୍ଥ : ଅଦିନରେ ଘୋର ବର୍ଷା ହେଲାପରି ଆମର ଏଇ ଦୀର୍ଘ ବିଚ୍ଛେଦ ପରେ ମିଳନ ଘଟିଛି । ଆସ କଖାରୁ କୁମୁଡ଼ା ଭୂମିରେ ପଡ଼ିଲା ପରି ଆମେ ପରସ୍ପରକୁ ଯାବୋଡ଼ି ଧରି କୋଳାକୋଳି ହେବା ଓ ପ୍ରୀତିରସରେ ମାତିବା । ଏତଦ୍‌ବ୍ୟତୀତ କୁମୁଡ଼ା ଫଳ ପ୍ରତି ଆଦିବାସୀ ମଣିଷଙ୍କର ଆସକ୍ତି ଅଧିକରୁ ଅଧିକ ଥିବାରୁ ଭୋଜିଭାତ ପର୍ବପର୍ବାଣୀରେ ସେମାନେ ଏହାକୁ ସବୁଠାରୁ ମୂଲ୍ୟବାନ୍ ଓ ବଡ଼ ପରିବା ଭାବେ ଗ୍ରହଣ କରିଥାନ୍ତି । ବନ୍ଧୁ ଘରକୁ ସବୁଠାରୁ ମୂଲ୍ୟବାନ୍ ମଦ୍ୟ ସହିତ କୁମୁଡ଼ା ଫଳଟିଏ ନେବାରେ ଭୁଲନ୍ତି ନାହିଁ । ସେମାନେ ବିଶ୍ୱାସ କରନ୍ତି, ଯଦି ଚନ୍ଦ୍ରଗ୍ରହଣ ଦିନ କୁମୁଡ଼ା ଗଛ ଲଗାଯାଏ ତାହା ଅଧିକ ଫଳିଥାଏ । ଏହା ଆଦିବାସୀ ସମାଜର ଏକ ପ୍ରିୟ ପରିବା । ସେମାନେ ଏହାର ଡାଳ ଓ ପତ୍ରକୁ ଭାଜି ଶାଗ ଭାବେ ବ୍ୟବହାର କରନ୍ତି ।

ଫୁଲକୁ ମଧ୍ୟ ଭାଜି ତରକାରୀ କରି ଖାଇଥାନ୍ତି । କୁମୁଡ଼ା ଫଳକୁ ଏମାନେ ପାଚିବା ଯାଏ ରଖନ୍ତି । ଏହାକୁ ଖଣ୍ଡଖଣ୍ଡ କାଟି ଶୁଖାଇ ବର୍ଷ ଯାକର ବ୍ୟବହାର ପାଇଁ ରଖନ୍ତି ଓ ବଜାରରେ ବିକ୍ରୟ କରି ଅର୍ଥ ରୋଜଗାର କରିଥାନ୍ତି ।

୧୨୯. **କୁରୁଚି / କୁରୁସି-** *ଦେ.ବି. :* ବସିବା ଆସନ - ଚେୟାର : କୁର୍ସି, କୁର୍ଚି । ଇଂ. - Chair

(୧) ଚେୟାର ବା କୁର୍ସି (୨) ଆସନ, (୩) କ୍ଷମତା ବା ରାଜ୍ୟ ଶାସନର ପ୍ରତୀକ । ଛତିଶଗଡ଼ ଭାଷାର ପ୍ରଭାବରେ ଏହି ଶବ୍ଦର ପ୍ରଚଳନ ହୋଇଛି ବୋଲି ଅନୁମେୟ ।

ଆଦିବାସୀମାନେ ଏଇ କୁରୁଚି ଶବ୍ଦକୁ ପ୍ରତୀକାତ୍ମକ ଅର୍ଥରେ ବ୍ୟବହାର କରି ପ୍ରେମର ଇସାରା ଦେଇଥାନ୍ତି / ସେମାନେ ପ୍ରେମିକ ବା ପ୍ରେମିକାର କୋଳକୁ କୁରୁଚି ବା ଚଉକି ସହିତ ତୁଳନା କରି କହିଥାନ୍ତି : -

"ମନରେ ମନକୁ ମନେ ମିଶାଇ
ଭୁଜେ ଭିଡ଼ି ମୁଖେ ଚୁମ୍ବନ ଦେଇ
ରତି ରସେ ମାତି ଚେତା ହଜାଇ
ମନରେ ହୋଇବ ତୋଷ
ନୂଆ କୁରୁଚିରେ ବସି ଫଳଧର
ଫୁଲରେ ଘେନିବ ବାସ - ସେ ବାସରୁ ଫଳିବ ଅମୃତ
ଦୁହିଁଙ୍କୁ କରି ତୁପତ ।"

ଏଠି ଜଣେ ଯୁବତୀ ସ୍ତ୍ରୀ ଜଣେ ଅବିବାହିତ ପୁରୁଷକୁ କହୁଛି । ଆସ ! ଆମେ ରତି ରସରେ ମାତିବା, ତୁମେ ତୁମର ସ୍ତ୍ରୀ କୋଳକୁ ଛାଡ଼ି ନୂଆ କୁରୁଚି ଅର୍ଥାତ୍, ମୋ କୋଳରେ ବସ ଓ ମୋର କୁଚ ଯୁଗଳକୁ ଧର । ଏଥିରେ ତୁମର ପ୍ରଥମ ସ୍ତ୍ରୀର ମନ ବିକ୍ଷୁବ୍ଧ ହୋଇ ଉଠିବ । ମାତ୍ର ତୁମେ ଯଦି ବାହାର ଫୁଲରୁ ଅର୍ଥାତ୍ ମୋ ଠାରୁ ଫଳ ବା ସନ୍ତାନ ଉତ୍ପାଦନ କରାଇପାରିବ ତେବେ ମୁଁ ତୁମ ଦୁହିଁଙ୍କୁ ଖୁସି କରାଇପାରିବି ବା ଉଭୟଙ୍କ ମନରେ ତୃପ୍ତି ଭରି ଦେଇପାରିବି ।

ଅନ୍ୟ ଏକ ପ୍ରବାଦ : ପଡୁନ୍ ଲିଖୁନ୍ କୁରୁଚି ବାସା, ରାଇକେ ଚଲାବେ । ଜୋହାର ଲାଗେ ସାଙ୍ଗ୍‌ଲେ ବାବୁ ମୁଣ୍ଡକେ ହଲାବେ । ଅର୍ଥାତ୍, ପଢ଼ି ଚଉକିବସା ବାବୁମାନେ ରାଜ୍ୟକୁ ଚଳାନ୍ତି । ସେମାନଙ୍କୁ ଜୁହାର କଲେ ମୁଣ୍ଡକୁ ହଲାନ୍ତି ।

କାଟା କୁରୁସି : କଣ୍ଟା ଚୌକି । କାଷ୍ଠ ନିର୍ମିତ ଏକ ଛୋଟିଆ ଚୌକି । ଯେଉଁଥିରେ ବସିବା ସ୍ଥାନରେ ଓଲଟା ମରାହୋଇଥିବା ବଡ଼ବଡ଼ କଣ୍ଟା ଉପରକୁ ବାହାରିଥାଏ । ଆଦିବାସୀ ସଂପ୍ରଦାୟରେ କୌଣସି ବ୍ୟକ୍ତି ଦୀର୍ଘଦିନ ଧରି ରୋଗରେ ପଡ଼ିଲେ ସିରାଙ୍କୁ ଡାକନ୍ତି । ସିରା କଳା ପୋଷାକ ପିନ୍ଧି ବଡ଼ ଢୋଲର ତାଳେତାଳେ କେଶ ମୁକୁଳାଇ ଉଦଣ୍ଡ ନୃତ୍ୟ କରିଥାଏ / ସେ ମଧ୍ୟ ଦେବୀଙ୍କ ମହିମା ପ୍ରଦର୍ଶନ କରିବାପାଇଁ କାଟା କୁରୁସିରେ ବସିଥାଏ । ଦେବୀଙ୍କ ମହିମା ବଳରେ ତା'ର କୌଣସି କ୍ଷତି ହୋଇ ନଥାଏ ।

୧୩୦. କୁର୍ଦ୍ଦମା - *ଦେ.ବି. :* ବିବାହ ସଂପର୍କିତ ଏକ ବିଧାନ । ଭୂମିଆ ବାହାଘର ସରିବାପରେ ଯେଉଁ ଫୁଲସଭା ହୁଏ ତାହାକୁ 'କୁର୍ଦ୍ଦମା' କୁହାଯାଏ । ଏଥିରେ ଗାଁର ମୁଖିଆ ଓ ବୟସ୍କ ଲୋକେ କୁଳାଚାର ବିଷୟରେ କଥାବାର୍ତ୍ତା ହୁଅନ୍ତି । ଏଥିରେ ବରପାର୍ଟିକୁ ୫୦ଟଙ୍କା ଦେବାକୁ ହୁଏ ।

୧୩୧. କୁର୍ମା - *ଦେ.ବି. :* (୧) ପେଚା ଇଂ. - Owl

(୨) କୋୟାମାନଙ୍କ ପର୍ବ ବିଶେଷ ।

ଯଥା : କୁର୍ମା ରାତିର୍ ବେଳେ କୁରୁକୁଚ୍ କୁରୁକୁଚ୍ କର୍‌ସି । ଗୁଲା ରାତିଯାକ ସେ ନା ଶୁଇସି । ଅର୍ଥାତ୍, ରାତିବେଳେ ପେଚା ରାବି ଚାଲିଥାଏ । ପୁରା ରାତି ସେ ଶୁଏ ନାହିଁ ।

(୨) ସୁଆଁ ଖିଆ ପର୍ବ । ନୂଆକରି ଅମଳ ହୋଇଥିବା ସୁଆଁ ଚାଉଳରେ ପ୍ରସ୍ତୁତ ଜାଉ ଓ ନଳିତା ପତ୍ରର ଶାଗକୁ ଗ୍ରାମ ଦେବତାଙ୍କ ପାଖରେ ଶିରା ବା ପୂଜାରୀମାନେ ପୂଜା କଲାପରେ ବଣ ଭାଲିଆ ପତ୍ରରେ କୋୟା ଲୋକମାନେ ପୂଜାର୍ଚ୍ଚନା କରି ଏହାକୁ ପ୍ରସାଦ ଭାବେ ପାଇଥାନ୍ତି ।

୧୩୨. କୁର୍‌ମା ରଜା - ବିଳମ୍ବ ଓ ଅବହେଳା କରୁଥିବା ଲୋକ ଉଦ୍ଦେଶ୍ୟରେ 'କୁର୍‌ମା ରଜା' ଢଗଟି ଉଦ୍ଦିଷ୍ଟ । କୁର୍‌ମା ରଜା ଢଗ ସମ୍ବନ୍ଧରେ ସୁନ୍ଦର କାହାଣୀଟିଏ

ଅଛି । କାହାଣୀଟି ଏହିପରି । ଦିନେ ଜଂଗଲର ସମସ୍ତ ପକ୍ଷୀ ମିଳିତ ହୋଇ ଏକ ସଭା କଲେ ଓ ମୟୂରକୁ ରାଜା ରୂପେ ସର୍ବସମ୍ମତି କ୍ରମେ ନିର୍ବାଚିତ କଲେ । ନିର୍ଦ୍ଦିଷ୍ଟ ଦିନ, ବାର ଓ ତିଥି ନିର୍ଦ୍ଧାରଣ କରି ମୟୂରକୁ ରାଜଗାଦିରେ ବସାଇବାକୁ ସ୍ଥିର ହେଲା । ଏକଥା ଜାଣି ମୟୂର ନିଜକୁ, ସୁନ୍ଦର ରୂପେ ସଜାଇ ବସିଲା । ଗୁବ୍‌ଡ଼ା ଚଢ଼େଇକୁ ଲାଲପାଟ ଆଣିବାକୁ ଦୂର ଦେଶକୁ ପଠାଇଥିଲା । ଲାଲରଂଗ ଛଡ଼ା ଅନ୍ୟ ସବୁ ରଂଗରେ ମୟୂର ରଂଗାୟିତ ହୋଇ ସକାଳେ ଗୁବୁଡ଼ା ପଥକୁ ଚାହିଁ ରହିଲା । ସମସ୍ତ ପକ୍ଷୀ ମୟୂରକୁ ଅପେକ୍ଷା କରି ଧୈର୍ଯ୍ୟହରା ହୋଇଗଲେ ଓ ମାହେନ୍ଦ୍ର ବେଳା ଦେଖି କୁରୁମା ଚଢ଼େଇକୁ ରାଜା ରୂପେ ସିଂହାସନରେ ବସାଇଦେଲେ । କୁରୁମା ପକ୍ଷୀ ରାଜା ହୋଇ ସାରିବା ପରେ ଗୁବୁଡ଼ା ଚଢ଼େଇ ପାଟ ଧରି ଆଣିବାରୁ ମୟୂର ରାଗି କରି ପାଟ କ'ଣ କରିବି ତୁ ପିନ୍ଧି ହୋଇଥା ବୋଲି କହିଲା । ସେଦିନରୁ ଗୁବୁଡ଼ା ଚଢ଼େର ପୁଚ୍ଛରେ ଲାଲ୍ ପାଟବର୍ଣ୍ଣ ରହିଆସୁଛି ।

୧୩୩. **କୁରାଇ** - *ଦେ.କ୍ରି.* :

୧. କ୍ଷିଅର ହେବା । ମୁହଁର ଦାଢ଼ି ନିଶ ସଫା କରିବା ।

୨. ଗାଳି ଦେବା ସମୟରେ ଅଶ୍ଳୀଳ ଅର୍ଥରେ ମଧ ବ୍ୟବହାର ହୁଏ । ନିମ୍ନାଙ୍ଗର ବାଳ ସଫା କରିବା ।

ବ୍ୟବହାର : (୧) ମର୍ ମେସ୍ ଦାଢ଼ି ବଢ଼ି ଗାଲା ଆଚେ । ଚବେ କୁରାଇ ଦେସ । (ରାଗିଗଲେ)

(୨) ଏଦେ, ମର୍‌ଟାକେ କୁରେଇ ପାକା ।

୧୩୪. **କୁରୁମ ପାଲି** - *ଦେ.ବି.* : ଗ୍ରାମ ବିଶେଷ । ତୁଲସା ପର୍ବତ ଅଞ୍ଚଳରେ ୩ଟି କୁରୁମ ପାଲି ଗାଁ ରହିଛି । ମାଲକାନଗିରି ଜିଲ୍ଲାର ଅନ୍ୟ ଅଞ୍ଚଳରେ ମଧ ଏହି ନାମରେ ଅନେକ ଗାଁ ରହିଛି । କୋୟା ଭାଷାରେ କୁରୁମ ଶବ୍ଦର ଅର୍ଥ ହେଉଛି ଗୋଟିଏ ଜାତିର ସୁଆଁ । ତୁଲସା ପର୍ବତର ଡଙ୍ଗର ଜମିରେ ଏହି ସୁଆଁ ଜାତୀୟ ଶସ୍ୟ ପ୍ରଚୁର ପରିମାଣରେ ପାଚୁଥିଲା । ତେଣୁ ସେହି ଫସଲଭିତ୍ତିକ ଗାଁ ହେଉଛି କୁରୁମ ପାଲି । ପୁରୁଣା କୁରୁମ ପାଲି ମହୁ ପଦର ପାଖରୁ ପ୍ରାୟ ୪ କି.ମି. ଦୂରରେ । ଏଠାରୁ ଉଠିଯାଇଥିବା କୋୟାମାନେ ଯିଏ ଯେଉଁଠ ବସତି ବାନ୍ଧିଛନ୍ତି ତାର ନାମ ଦେଇଛନ୍ତି କୁରୁମପାଲି ଗୁଡ଼ା ।

୧୩୫. କୁରେଇ ଫୁଲ - ଦେ.ବି. : ଧଳା ରଂଗର ଏକ ଜଂଗଲୀ ଫୁଲ । କୋରାପୁଟ ଅଞ୍ଚଳର ବିଭିନ୍ନ ବଣ ମୂଲକରେ ବସନ୍ତ ଋତୁରେ ଏକ ପ୍ରକାର ବୁଦାଳିଆ ଗଛରେ ପେନ୍ଥାପେନ୍ଥା ହୋଇ ଫୁଟୁଥିବା ଧଳା ରଂଗର ଫୁଲ । ଆଦିବାସୀ ସମାଜରେ ଏଇ କୁରେଇ ଫୁଲର ବିଶେଷ ଆଦର ରହିଛି । ଆଦିବାସୀ ମହିଳାମାନେ ଏହି ଫୁଲକୁ ସେମାନଙ୍କ ଜୁଡ଼ାରେ ପିନ୍ଧନ୍ତି । ଏହି ଗଛର ପତ୍ରକୁ ଏମାନେ ଔଷଧ ରୂପେ ବ୍ୟବହାର କରିଥାନ୍ତି । ଏହି ଫୁଲ ମଉଳିଗଲା ପରେ ଗଛ ମୂଳେ କୁଡ଼େଇ ହୋଇ ପଡୁଥିବାରୁ କେହିକେହି ଏହି ଫୁଲକୁ କୁଡ଼େଇ ଫୁଲ ମଧ୍ୟ କହିଥାନ୍ତି । ଆଦିବାସୀ ଯୁବକମାନେ ରୂପବତୀ ଯୁବତୀ କନ୍ୟାକୁ କୁରେଇ ଫୁଲ ସହିତ ତୁଳନା କରି ସେମାନଙ୍କୁ କୁରେଇ ଫୁଲ ବୋଲି ସମ୍ବୋଧନ କରିଥାନ୍ତି ଏବଂ ଯୁବା ବୟସୀ ଆଦିବାସୀ କନ୍ୟାଟିକୁ ବସନ୍ତ ସ୍ପର୍ଶ କଲାବେଳେ ତାକୁ ଲକ୍ଷ୍ୟ କରି ଏ ମୂଲକର ଲୋକକବି ଚଇତି ପରବ ଗୀତ ଗାଇଲାବେଳେ କହିଥାଏ -

କୁରେଇ ଫୁଲ୍‌ର ବାସ୍‌ନା ନନା
ମନ୍‌ଟା ମଅଁକିଲା
କଅଁଲ୍ ମାଉଁସ୍ କାଇଗୁଲ୍ ଗୁଲା
ରୁସ୍‌ରୁସା ଲାଗୁଲା ।

୧୩୬. କୁସ୍ ମୁସିଆ - ଦେ.ବି. : କୁସୁର ମୁସୁର ଶବ୍ଦ କରୁଥିବା । ଅର୍ଥାତ୍ ପାଳ ବା ଶୁଖିଲା ତୃଣ । ଦେଶିଆ ପ୍ରବଚନ କହେ -

"କୁସ୍‌ମୁସିଆ ଶେଯ, ତାରାଫୁଲିଆ ଘର୍,
ବୁଇଁ ରାଙ୍ଗା ଚୁଲୀ, ପିତଳ୍ ଥାଲୀରେ ଦିନକୁ
ଖାଉଚି ଦିନ୍‌କୁ ପିଙ୍ଗୁଚି" -

ଅର୍ଥାତ୍ "ପାଳ ବା ତୃଣ ଶେଯରେ ଶୋଇଥାଏ, ତାରା ଦେଖାଯାଉଥିବା ଜୀର୍ଣ୍ଣ ଚାଳଘରେ ରହୁଥାଏ, ଏଠି ବର୍ଷା ହେଲେ ଅନ୍ୟ ଜାଗାକୁ ଚୁଲି ଉଠାଇ ନେଉଥାଏ, ସିଆଳୀ ବା କଦଳୀପତ୍ରରେ ଖାଉଥାଏ ଓ ଫୋପାଡ଼ି ଦେଉଥାଏ ।" ଅତି ଗରିବ ଆଦିବାସୀ ଜୀବନଧାରା ସଂପର୍କରେ ଏହି ପ୍ରବଚନ ।

୧୩୭. **କୁହା** - *ଦେ.କ୍ରି. :* କୁହ ବା କହିବା ପାଇଁ ନିର୍ଦ୍ଦେଶ ଦେବା ବା ଅନୁରୋଧ କରିବା । କୌଣସି ଘଟଣା ସଂପର୍କରେ ଜଣେ ଅନ୍ୟ ଜଣକୁ କହିବା ପାଇଁ ଅନୁରୋଧ କରିବା । ବ୍ୟବହାର : ତୁଇ କାଇଟା ଦେକିରେଲୁ କୁହା ।

୧୩୮. **କେଚଲା** - *ଦେ.ବି. :* ଏକ ଐତିହାସିକ ସ୍ଥାନ ବିଶେଷ । ଏକ ଆଦିବାସୀ ଗ୍ରାମର ନାମ । ପ୍ରାଚୀନ ଜୈନ ପୀଠ । ଏକ ପର୍ଯ୍ୟଟନ ସ୍ଥଳୀ । କୋରାପୁଟ ସହରଠାରୁ ଦକ୍ଷିଣ ଦିଗକୁ ୧୫କି.ମି. ଦୂରରେ କୋଲାବ ନଦୀ କୂଳରେ ଦେଓଡଙ୍ଗର ନାମକ ପାହାଡ଼ର ପାଦ ଦେଶରେ ଏକ ଆଦିବାସୀ ଗ୍ରାମର ନାମ କେଚଲା । ଏହା ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ୩ଫୁଟ ଉଚ୍ଚତାର ଏକ ଜୈନ ମନ୍ଦିର ପାଇଁ ପ୍ରସିଦ୍ଧଥିଲା । ଏଇ ମନ୍ଦିରଟି ଏବେ କୋଲାବ ଜଳ ଭଣ୍ଡାର ସୃଷ୍ଟି ହେଲାପରେ ଜଳଭଣ୍ଡାର ଭିତରେ ମଗ୍ନ ହୋଇ ଯାଇଅଛି । ଏହି ମନ୍ଦିରରୁ ସ୍ଥାନୀୟ ବୁଡ଼ି ଅଞ୍ଚଳର ଲୋକମାନେ ସମସ୍ତ ପୁରାତନ ମୂର୍ତ୍ତି ଗୁଡ଼ିକୁ ଉଦ୍ଧାର କରିନେଇ ଆସି ନିଜେ ନୂଆକରି ବସବାସ କରୁଥିବା କେଚଲା ନାମକ ଗ୍ରାମ ନିକଟରେ ଥିବା ଏକ ସୁଉଚ୍ଚ ପାହାଡ଼ରେ ସ୍ଥାପନ କରିଛନ୍ତି । ଏସବୁ ମୂର୍ତ୍ତି ଭୈରବ ଦେବତା ନାମରେ ନାମିତ କରି, ପୂଜା ଅର୍ଚ୍ଚନା କରୁଛନ୍ତି । ଏହି ଜୈନ ମନ୍ଦିରରୁ ସଂଗୃହୀତ ଓ ଜାନୀଗୁଡ଼ା ପାହାଡ଼ରେ ସ୍ଥାପିତ ୫ଟି ମୂର୍ତ୍ତି ମଧ୍ୟରୁ ତିନୋଟି ହେଉଛି ଜୈନ ତୀର୍ଥଙ୍କର ମାନଙ୍କର । ଗୋଟିଏ ହେଉଛି ଅମ୍ବିକା ଦେବୀ, ଯାହାଙ୍କ କାଖରେ ଏ ଛୋଟ ପିଲା । ସେ ଜୈନ ମାନଙ୍କର ଶାସନ ଦେବୀ ରୂପେ ପରିଚିତ । ଏସବୁକୁ ଅନ୍ୟଟି ଯକ୍ଷ ଓ ଯକ୍ଷିଣୀଙ୍କର ଯୁଗ୍ମ ମୂର୍ତ୍ତି । ସେହିପରି କେଚଲା ଗ୍ରାମଦେବୀ ପୀଠରେ ମଧ୍ୟ ୨ଟି ଜୈନମୂର୍ତ୍ତି ରହିଛି । ସମୟକ୍ରମେ ଅଷ୍ଟମ ଶତାବ୍ଦୀର ଏଇ ଜୈନ ମୂର୍ତ୍ତି ଗୁଡ଼ିକ ଦର୍ଶକମାନଙ୍କ ଦୃଷ୍ଟିକୁ ଆସିଛି ଓ କେଚଲା ପାଲଟି ଯାଇଛି ଏକ ଦର୍ଶନୀୟ ପୀଠ । ଏତଦ୍‌ବ୍ୟତୀତ କୋଲାବ୍ ଜଳଭଣ୍ଡାର ମଧ୍ୟରେ କେଚଲା ଗ୍ରାମର ଅନତି ଦୂରରେ କେଚଲା ନାମକ ଏକ ପର୍ଯ୍ୟଟନ କେନ୍ଦ୍ର ମଧ୍ୟ ରହିଛି । ଚାରିପଟେ ଜଳଭାଗ ମଝିରେ ଏକ ସୁନ୍ଦର ଟାପୁ, ଅଦୂରରେ ଶ୍ୟାମଳ ପର୍ବତର ମନମୁଗ୍ଧକାରୀ ଦୃଶ୍ୟ, ଦର୍ଶକମାନଙ୍କୁ ଏଠାକୁ ଟାଣି ଆଣିଥାଏ । ବର୍ଷର ବିଭିନ୍ନ ସମୟରେ ଦର୍ଶକମାନେ ଏଠାକୁ ଆସିଥାନ୍ତି, ଅବସର ବିନୋଦନ ପାଇଁ ।

୧୩୯. **କେଚୁଆ ଚେପ୍‌ଟି** - *ଦେ.ବି. :* ମାଛ ପାଇଁ ଥୋପ ଭାବେ ବ୍ୟବହାର କରାଯାଉଥିବାରୁ କେଞ୍ଚୁଆ ରଖିବାର ବାଉଁଶମୁଣି । ବନ୍‌ଶୀ ଦ୍ୱାରା ମାଛ ଧରିବାରେ ଏହା ବ୍ୟବହୃତ ହୁଏ ।

୧୪୦. କେଦରା ମୂଷା - *ଦେ.ବି. :* ଗୋଟିଏ ପ୍ରକାରର ଜଂଗଲୀ ମୂଷା । ଚୁଟିଆ ଠାରୁ ଟିକେ ବଡ଼ । ଏମାନେ ଜଂଗଲରେ ରହନ୍ତି । ଗଛତଳେ ତଥା ଡାଳରେ ମଧ ରହନ୍ତି । ଆଡୁଆଳ ଜାଗା ଦେଖି କାଠିକୁଟା ଦ୍ୱାରା ଏମାନେ ବସା ବାନ୍ଧନ୍ତି ବର୍ଷା ଆସିବାର ସମ୍ଭାବନା ସେ ଜାଣିପାରେ ଏବଂ ନିଜ ପିଲାମାନଙ୍କୁ ବସା ସମେତ ଗଛ ଉପରକୁ ଚଢ଼ିଯାଏ । ଖରାହେଲେ ତଳକୁ ଓହ୍ଲାଇ ଆସେ ।

୧୪୧. କେରଙ୍ଗ ଶାଢ଼ି / ବନପାଟ ଶାଢ଼ି - *ଦେ.ବି. :* ଗଛତନ୍ତୁରୁ ପ୍ରସ୍ତୁତ ହାତ ବୁଣା ଶାଢ଼ି । ଆଙ୍କୁଲି ଗଛର ତନ୍ତୁରୁ ସୂତା ବାହାରକରି ଏଥିରେ ସବୁଜ ଓ ନାଲି ରଂଗ ମିଶାଇ ଶୁଖାଯାଏ ଏବଂ ପାରମ୍ପରିକ କେରଙ୍ଗ ଲୁଗା ଗାଦବା ଅବିବାହିତା ଯୁବତୀମାନେ ନିଜପାଇଁ ବୁଣନ୍ତି । ଏହି ଲୁଗା ବିବାହ ଅବସରରେ ତଥା ନୃତ୍ୟଗୀତ ସମୟରେ ପିନ୍ଧାଯାଏ । ଏହା ଅତି ଆବଶ୍ୟକ ସାମାଜିକ ବସ୍ତୁ । ଏହି ଲୁଗା ବା ଶାଢ଼ିକୁ ଗ୍ରାମ ଭ୍ରମଣ ଅବସରରେ ପୂର୍ବକାଳରେ ପ୍ରଜାଙ୍କ ପ୍ରିୟ ହେବାପାଇଁ ରାଜା ପିନ୍ଧୁଥିଲେ । ରାଜା ପାଲିଙ୍କି ବୋହୁଥିବା ଗାଦବାମାନେ ପିନ୍ଧୁଥିଲେ । ଆଜିକାଲି ଏଥି ସହ ସୂତା ମିଶାଇ ବୁଣାଯାଉଛି । ଏହା ବୁଣିବାପାଇଁ କୁଟୁରା ସିଙ୍ଗ, ସମ୍ବରସିଙ୍ଗରେ ବୁଣାଯନ୍ତ୍ର ନିର୍ମିତ ହୋଇଥାଏ । ଏହାର ସୂତାକୁ ସାଲିମ ସୂତା କହିଥାନ୍ତି । ଏହା ଏକ କୁଟୀର ଶିଳ୍ପ । ଏକ ପ୍ରଜାତିର ଧାନକୁ ମଧ କେରଙ୍ଗ କୁହାଯାଏ ।

୧୪୨. କେର୍‌ଦି ପଦା - *ଦେ.ବି. :* ଦେଶିଆ ସଂପ୍ରଦାୟର ଏକ ଅବଲୁପ୍ତ ବିବାହ ପରମ୍ପରା । କନ୍ଧ ସଂପ୍ରଦାୟରେ ପୁଅ ଓ ଝିଅଙ୍କ ବିବାହ ଠିକ୍ ହୋଇ ନିବନ୍ଧ ହେବାପରେ ଯଦି ଝିଅଟି ସ୍ୱଇଚ୍ଛାରେ ଅନ୍ୟ ପୁଅ ସହ ଚାଲିଯାଏ, ତେବେ ତାହାକୁ 'କେର୍‌ଦିପଦା' କୁହାଯାଏ । ଥରେ କନ୍ୟା 'କେର୍‌ଦିପାଦା' ହୋଇଗଲେ ତାର କନ୍ଧ ସମାଜରେ ଆଉ ସ୍ଥାନ ନଥାଏ । ଅତୀତରେ ଏପରି ସ୍ୱଇଚ୍ଛାରେ ଚାଲିଯାଉଥିବା ଝିଅ ଓ ପୁଅକୁ ଗ୍ରାମଦେବତା ଝାକରଙ୍କ ନିକଟରେ ସର୍ବସମ୍ମୁଖରେ ଝିଅକୁ ତଳେ ଓ ପୁଅକୁ ଉପରେ ରଖି କେନ୍ଦୁକାଠରେ ବଳି ଦିଆଯାଉଥିଲା । ସଂପ୍ରତି ଏହି ବିବାହ ପ୍ରଥାର ବିଲୋପ ଘଟିଛି । କିନ୍ତୁ ଜୀଇ ଥାଉଥାଉ ଝିଅକୁ ମୃତ ରୂପେ ବିବେଚନା କରି ତାର କ୍ରିୟାକର୍ମ କରାଯାଉଛି ।

୧୪୩. କେର୍‌ମିଟ୍ - *ଦେ.ବି. :* ଏକ ଗ୍ରାମର ନାମ ବିଶେଷ । ଟେମ୍ବୁର୍ ପାଲି ପଞ୍ଚାୟତରେ ଥିବା ଏହି ଗାଁରେ ଦୁରୁଆ ଓ କୋୟା ଲୋକମାନେ ମିଶାମିଶି ହୋଇ

ରହୁଛନ୍ତି । ହାଲ୍‌ବି ଭାଷାରେ କେରା ଶବ୍ଦର ଅର୍ଥ ବଣ କଦଳୀ । ସେହିପରି ମେଟା ଶବ୍ଦର ଅର୍ଥ ପର୍ବତ । ପର୍ବତ ପାଖରେ ଥିବା ଏହି ମୂଳ ଗାଁ ଏହି ଦୃଷ୍ଟିରୁ ହୋଇଛି କେରମିଟ୍ । ଏବେ ମଧ୍ୟ ଏଠାକାର ଜଂଗଲରେ ବହୁ ପରିମାଣରେ ବଣ କଦଳୀ ଗଛ ଦେଖିବାକୁ ମିଳେ । ଏସବୁ ବହୁତ ଛୋଟଛୋଟ କିନ୍ତୁ କଦଳୀ ଗଛ ପରି ଗଣ୍ଡି ଓ ପତ୍ର । ଏଥିରେ ଫଳୁଥିବା କାନ୍ଧିରେ ମାତ୍ର ତିନିଚାରିଟି କଦଳୀ ଫଳେ । କିନ୍ତୁ ଏହା ସେତେଟା ସୁସ୍ୱାଦୁ ନୁହେଁ । ଅନ୍ୟ କେତେକ ସ୍ଥାନରେ ମଧ୍ୟ ଏହି ନାମ ବିଶିଷ୍ଟ ଗାଁ ଦେଖିବାକୁ ମିଳେ । କୋରାପୁଟ ଜିଲ୍ଲାର କୁନ୍ଦ୍ରା ବ୍ଲକ୍‌ରେ ଏହି ନାମ ବିଶିଷ୍ଟ ଏକ ପଞ୍ଚାୟତ ରହିଛି ।

୧୪୪. **କୋଇତୁର / କୋଇତାର** - *ଦେ.ବି. :* ଗଣ୍ଡ ଆଦିବାସୀ ସଂପ୍ରଦାୟର ଏକ ପ୍ରଜାତି । କୋୟାମାନେ ମୂଳ ଗଣ୍ଡ ଜାତିର ଏକ ବିଭାଜିତ ଗୋଷ୍ଠୀ ଓ ନିଜକୁ କୋଇତୁର ବୋଲି ପରିଚିତ କରାଇଥାନ୍ତି । ମୁଖ୍ୟତଃ ଏମାନେ ମାଲକାନଗିରି ଜିଲ୍ଲାରେ ବସବାସ କରନ୍ତି ଏବଂ କୋୟା ନାମରେ ପରିଚିତ ହୁଅନ୍ତି । (ଦ୍ରଷ୍ଟବ୍ୟ - କୋୟା ।)

୧୪୫. **କୋକ୍ (ଗୟଳ ଶିଙ୍ଗ)** - *ଦେ.ବି. :* ଗୟଳ ଟୋପିଯୁକ୍ତ ବାଉଁଶ ନିର୍ମିତ ଟୋପି । କୋୟା ନୃତ୍ୟରେ କୋୟା ନର୍ତ୍ତକ ହାତରେ ବିରାଟ ଢୋଲ ଧରି, କଳା କାବ୍‌ବା ପିନ୍ଧି ମୁଣ୍ଡରେ ଯେଉଁ ବାଉଁଶ ତିଆରି ଟୋପି ପିନ୍ଧିଥାଏ, ତାକୁ 'କୋକ୍' କହିଥାଏ । ଏହି କୋକ୍ ଉପରେ କୋୟା ରଂଗୀନ୍ କନାର ଆବରଣ, କଉଡ଼ି, ମାଳର ଝାଲର, ଚିକ୍‌ଚିକ୍ କରୁଥିବା ଦୁଇଟି ଗୟଳ ଶିଙ୍ଗ, ବଣ କୁକୁଡ଼ାର ଘନନୀଳ ପରଗୁଚ୍ଛ ଓ ମୟୂର ପୁଚ୍ଛରେ ଗୁନ୍ଥିଥାଏ । ଯଦିଓ ସବୁ ଦୃଷ୍ଟିରୁ ସେ ଗୋଟିଏ ଟୋପି, ତଥାପି କୋୟା ତାକୁ 'କୋକ୍' କହେ ।

୧୪୬. **କୋଣ୍ଡା** - *ଦେ.ବି. :* (୧) ପର୍ବତ (୨) ପାହାଡ଼ ପର୍ବତକୁ ନେଇ ଗଠିତ ଦୁର୍ଗ । ବିଭିନ୍ନ ପର୍ବତ ଯଥା କୋଣ୍ଡା କାମ୍ବେରୁ, ଚିତ୍ରକୋଣ୍ଡା, କୋଣ୍ଡଭିଡୁ ଆନ୍ଧ୍ର ପାର୍ବତ୍ୟ ଅଞ୍ଚଳ ଗୁଡ଼ିକ ଗୋଟିଏ ଗୋଟିଏ ଦୁର୍ଗ ଅଞ୍ଚଳ ଥିବା କୋରାପୁଟ ଇତିହାସରୁ ଜାଣିବାକୁ ମିଳିଥାଏ । କୋଣ୍ଡାର ଅନ୍ୟ ଏକ ଅର୍ଥ ପର୍ବତ ।

୧୪୭. **କୋଟ୍‌ପାଡ୍** - କୋଟ୍ (ଦୁର୍ଗ) ପାଡ଼ (ଅଞ୍ଚଳ) : ଦୁର୍ଗ ଥିବା ଅଞ୍ଚଳ କୋଟପାଡ଼ । ଏହା ଜଗଦଲପୁର (ବସ୍ତର) ରାଜାଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା ।

୧୭୭୮ରେ କୋଟପାଡ଼ ପ୍ରଗଣା ଜୟପୁରର ଅନ୍ତର୍ଭୁକ୍ତ ହେଲା । ବର୍ତ୍ତମାନ ଏହା କୋରାପୁଟ ଜିଲ୍ଲାର ଏକ ବ୍ଲକ୍ ସଦର ମହକୁମା । ପୌରାଣିକ ଓ ଐତିହାସିକ ଦୃଷ୍ଟିରୁ ଏହାଥିଲା ନଳ ରାଜାଙ୍କର ଏକ ଗଡ଼ । ଏଠାରେ ଖୋଳା ଯାଇଥିବା ଦମୟନ୍ତୀ ସାଗର ପୌରାଣିକ ସ୍ମୃତି ବହନ କରି ଏବେ ମଧ୍ୟ ବିଦ୍ୟମାନ ।

୧୪୮. **କୋଣ୍ଡାକାମେରୁ** – *ଦେ.ବି.* : ମାଲକାନଗିରି ଜିଲ୍ଲାର ଗୁରୁପ୍ରିୟା ଓ ସଲେରୁ ନଦୀର ସଂଗମସ୍ଥଳରେ ଅବସ୍ଥିତ ଐତିହାସିକ କୀର୍ତ୍ତି ବିଶିଷ୍ଟ ଗାଁ । ଏଠାରେ ଥିଲା ଏକ ବିଖ୍ୟାତ ଶିବ ମନ୍ଦିର / ନୀଳକଣ୍ଠେଶ୍ୱର ମନ୍ଦିର ଯାହାକି, ଚାଲୁକ୍ୟ ରାଜାଙ୍କର କୀର୍ତ୍ତି ବୋଲି ଦେଖାଯାଏ । ବର୍ତ୍ତମାନ ଏହା ଚିତ୍ରକୋଣ୍ଡା ବନ୍ଧ ଦ୍ୱାରା ଜଳମଗ୍ନ । ପୂର୍ବରୁ ଏଠାରେ ଏକ ପୋଲିସ୍ ଥାନା ଥିଲା ଓ ବଡ଼ ଲୋକ ବସତି ଥିଲା । ଏଠାରୁ ପ୍ରାପ୍ତ ତାମ୍ର ଫଳକ ଓ ବିଭିନ୍ନ ଦେବମୂର୍ତ୍ତି ଭୁବନେଶ୍ୱର ମିଉଜିୟମ୍‌ରେ ସଂରକ୍ଷିତ ।

୧୪୯. **କୋୟ୍ୟୁ** – **କୁକୁଡ଼ା** : କନ୍ଧ ସମାଜର ପ୍ରାୟ ପ୍ରତି କାର୍ଯ୍ୟରେ 'କୋୟୁ ହିପା' ବା କୁକୁଡ଼ାଛୁଆ ବଳି ଦିଆଯିବାର ପ୍ରଥା ରହିଛି । (ଦ୍ରଷ୍ଟବ୍ୟ – କୁକୁଡ଼ା ।)

୧୫୦. **କୋୟା** – *ଦେ.ବି.* : ଏକ ଆଦିବାସୀ ଜାତି ବିଶେଷ । କୋୟାମାନେ ମାଲକାନଗିରି ଜିଲ୍ଲାର ସର୍ବବୃହତ ଆଦିବାସୀ ଗୋଷ୍ଠୀ । ଆନ୍ଧ୍ର ବସ୍ତର ଓ ମାଲକାନଗିରିରେ ହିଁ ଏମାନଙ୍କର ବସବାସ । ଏମାନେ ଚାରି ଶ୍ରେଣୀର : ଗତେର, ମେଟାତର, ଗମିନାର ଓ ବଡ଼ଭୂମ୍ । ପୁଣି ବଂଶଗତ ଦୃଷ୍ଟିରୁ ଏମାନେ ପାଞ୍ଚଟି ବଂଶରେ ବିଭକ୍ତ । ଯଥା : (୧) ପଡ଼ିଆମି (୨) ମାଢ଼ି (୩) ମାଡ଼କାମି (୪) କବାସୀ ଓ (୫) ଉଇକେ । ଏହି ପାଞ୍ଚଟି ବଂଶ ପୁଣି କେତେକ ଉପବଂଶ ବା ଉପଗୋଷ୍ଠୀରେ ବିଭକ୍ତ ହୋଇଥାନ୍ତି । ଯେମିତିକି, ପଡ଼ିଆମି ଗୋଷ୍ଠୀ ଅଉଲାଙ୍ଗା, ଓ୍ୱେଟି, କୁଞ୍ଜଡ଼, କୁହୁରା, ବାଣ୍ଡାଲ ଓ ଓ୍ୱେକ୍ ଆଦି ଉପଗୋଷ୍ଠୀରେ ବିଭାଜିତ ହୋଇଥାନ୍ତି । ଏମାନଙ୍କ ଇଷ୍ଟଦେବତା 'ପେରମ୍ କୋଇକାଟା' ଛତିଶଗଡ଼ ଅଞ୍ଚଳରେ ଏକ ମହୁଲ ଗଛରେ ବିଦ୍ୟମାନ । ମାଢ଼ିଗୋଷ୍ଠୀ ଯେଉଁ ଉପଗୋଷ୍ଠୀରେ ବିଭକ୍ତ, ସେଗୁଡ଼ିକ ହେଲା ବାର୍ସେ, ନାକାଲୋଡ଼, ନାଙ୍ଗାଲୋଡ଼ ଓ ତଡ୍ୱେଡ୍ । ଆନ୍ଧ୍ରପ୍ରଦେଶରେ ମାଢ଼ିମାନେ ପେଣ୍ଡେ ଓ ସୟାମ୍ ଇତ୍ୟାଦି ସଂଜ୍ଞା ବ୍ୟବହାର କରିଥାନ୍ତି । ଏମାନଙ୍କ ଇଷ୍ଟଦେବତା ଆନ୍ଦାଲ୍, କୋସଡ଼୍ ଓ ପେନ୍ ବା ଆଦିପୁରୁଷଙ୍କ ପୀଠସ୍ଥଳୀ ବସ୍ତର ଅଞ୍ଚଳରେ ଅବସ୍ଥିତ । ମାଡ଼କାମି ବଂଶର ଉପଜାତି ହେଉଛନ୍ତି : ଗାଡ଼କୁଲି, ମୁଦୁରକ ଓ କାଡ଼୍ତି । ଏମାନଙ୍କ ଇଷ୍ଟଦେବତା ଏୟୁଙ୍ଗା ଜାର୍‌କେମାନା

ସେହି ବସ୍ତର ଅଞ୍ଚଳରେ ରହନ୍ତି । କବାସୀମାନେ ନିଜକୁ କରସ୍ତା, ଓ୍ୱାଜାମି ଓ ମୁସାକି ଆଦି ସଂଜ୍ଞାରେ ନିଜକୁ ପରିଚିତ କରାଇଥାନ୍ତି । ଏମାନଙ୍କର ଇଷ୍ଟଦେବତା ସିର୍‌ମା ପେନ୍‌ଙ୍କ ପୀଠ ସେହି ବସ୍ତର ଅଞ୍ଚଳରେ । ଉଇକେମାନେ ସୋଡ଼ି ଓ ଓଡ଼ି ସାଂଜ୍ଞା ଗ୍ରହଣ କରନ୍ତି । ଏମାନଙ୍କର ଆଦିମାତା ହେଉଛନ୍ତି ବସ୍ତର ଅଞ୍ଚଳ ପୀଠରେ ରହୁଥିବା ତୁଲଡ଼୍‌କ୍‌ରୀ । ଏହି କୋୟାମାନେ ମୁଖ୍ୟତଃ ବସ୍ତର, ଖମାମ୍‌, ବିଶାଖାପାଟଣା, ଗୋଦାବରୀ ତଥା ମାଲ୍‌କାନ୍‌ଗିରିକୁ ନେଇ ଗଠିତ ପୌରାଣିକ ଦଣ୍ଡକାରଣ୍ୟ ଅଞ୍ଚଳରେ ବସବାସ କରନ୍ତି । ଏପରିକି ଅନେକ କୋୟା ଆସାମ ଚାହା ବଗିଚାରେ କାମ କରିବାକୁ ଯାଇ ସେଠାକାର ଶିବ୍‌ସାଗର ଜିଲ୍ଲାରେ ବସତି ସ୍ଥାପନ କରିଛନ୍ତି ।

କୋୟା ସମାଜରେ ପ୍ରଚଳିତ ସୃଷ୍ଟି ପ୍ରବାଦ ଅନୁଯାୟୀ ଆଦିପୁରୁଷ ବୃଦ୍ଧ କବାସୀଙ୍କଠାରୁ ଏହି ବିଶ୍ୱର ସୃଷ୍ଟି ହୋଇଥିଲା । କିମ୍ବଦନ୍ତୀ ଅନୁସାରେ କବାସୀଙ୍କର ଗୋଟିଏ ଝିଅ ଓ ଗୋଟିଏ ପୁଅ ଥିଲେ । ତାଙ୍କୁ ମିଳିଥିବା ଏକ ସ୍ୱପ୍ନାଦେଶ ଅନୁସାରେ ସେ ସାତୋଟି ମଇଁଷିର ଛାଲକୁ ନେଇ ଏକ ତୁମ୍ୱା ତିଆରି କଲେ । ଏହାକୁ କହିଲେ 'ତଲବୁରୁକା' । ତାପରେ କବାସୀ ନିଜର ପୁଅଝିଅ ସହ ଘୁଷୁରୀକୁ ତମ୍ୱା ଭିତରେ ରଖି ସମୁଦ୍ର ଜଳରେ ଭସାଇଦେଲେ । ଏମାନଙ୍କୁ ମାରିବା ପାଇଁ ଅସୁରମାନେ ଖୁବ୍‌ ଚେଷ୍ଟା କଲେ । କିନ୍ତୁ, ବିଫଳ ହେଲେ । ପାଣିରେ ଭାସୁଥିବା ତୁମ୍ୱା କ୍ରମେ ସ୍ଥିର ହେଲା । ଘୁଷୁରୀ ମୁଖରେ ଲାଗିଥିବା ମାଟିରୁ ଭୂଭାଗ ସୃଷ୍ଟି ହେଲା । କବାସୀଙ୍କ ପୁଅଝିଅ ହେଲେ ଆଦି ପିତା ମାତା । ସେମାନଙ୍କ ଠାରୁ ମାନବ ସମାଜ ଜନ୍ମ ନେଲେ । ଅନ୍ୟାନ୍ୟ ଜୀବଜନ୍ତୁ ମାନେ ପ୍ରାକୃତିକ ଭାବେ ସୃଷ୍ଟି ହେଲେ ।

କୋୟାମାନଙ୍କର୍‌ ଏକ ସ୍ୱତନ୍ତ୍ର ଭାଷା ରହିଛି । କିନ୍ତୁ, ସ୍ୱତନ୍ତ୍ର ଲିପି ନାହିଁ । ସେମାନେ ଏକ ପୁରାତନ ଜାତି ହୋଇଥିଲେ ହେଁ ଆଧୁନିକ ସମାଜ ସହ ତାଳଦେଇ ରାଜନୀତିକ ଓ ଅର୍ଥନୀତିକ ଭାବେ କିଛିଟା ଅଗ୍ରଗତି କରିପାରିଛନ୍ତି । ଆଉ ମଧ ଆଲୁରି ସୀତାରାମାୟାରାଜୁଙ୍କ ବିଦ୍ରୋହୀ ବାହିନୀରେ କୋଣ୍ଡା ବୋରାମାନଙ୍କ ସହ ସେମାନେ ଥିଲେ ମୁଖ୍ୟ ଫିତୁରୁଦାର । ଟାମୋଦୋରାଙ୍କ କୋୟା ବାହିନୀର ଲଢ଼େଇ ଐତିହାସିକ ଭାବେ ସ୍ମରଣୀୟ ।

୧୫୧. କୋଲାବ୍‌ - ଦେ.ବି. : କୋରାପୁଟ ଜିଲ୍ଲାରେ ପ୍ରବାହିତ ମୁଖ୍ୟ ନଦୀର ନାମ, ଖରାବର୍ଷାର ପେଣ୍ଟସ୍ଥଳୀ ।

ସାମଗ୍ରିକ ଭାବେ କୋରାପୁଟ ଜିଲ୍ଲାକୁ ପ୍ରଗତି ପଥରେ ଆଗେଇ ନେଇଥିବା ଏହି ନଦୀଟି ବେଶ୍ ପୁରାଣ ପ୍ରସିଦ୍ଧ । ମହାକବି କାଳୀଦାସଙ୍କ ଭାଷାରେ ଏ ନଦୀଟି ହେଉଛି ସଦା ନୀରା ଚଳଚଞ୍ଚଳା ସ୍ରୋତତୀ, ଯାହା ରାମଗିରି ପାଦଦେଶରେ ପ୍ରବାହିତ ଏବଂ ଜନକପୁତ୍ରୀ ସତୀ ସୀତାଙ୍କ ସ୍ନାନରେ ପବିତ୍ରା ହୋଇଛି । ଏହି ନଦୀ ତା'ର ଗତିପଥରେ ସାତଟି ଦୀର୍ଘ ପାହାଡ଼ର ମଥାନ ଦେଇ ଗତି କରି ବିଭିନ୍ନ ସ୍ଥାନରେ ପ୍ରପାତମାନ ସୃଷ୍ଟି କରିଛି । ଏହି ନଦୀର ଜଳ ହଳଦିଆ ବା ସୁନା ରଂଗର ହୋଇଥିବାରୁ ମହାଭାରତରେ ଏହାକୁ 'ହେମନଦୀ' ବା ସ୍ୱର୍ଣ୍ଣନୀରା ନଦୀ ଭାବରେ ବର୍ଣ୍ଣନା କରାଯାଇଛି । କୋରାପୁଟ ଓ ଆନ୍ଧ୍ର ସୀମାନ୍ତ ସ୍ଥାନରେ ଥିବା ସିଂକାରାମକୋଟା ବା ଶ୍ରୀରାମଙ୍କ ବିଶ୍ରାମସ୍ଥଳୀ ପାହାଡ଼ରୁ ଜନ୍ମ ନେଇ କୋରାପୁଟ ସହର ପର୍ଯ୍ୟନ୍ତ ପ୍ରବାହିତ ହେଲାପରେ ଗତିପଥ ପରିବର୍ତ୍ତନ କରି ଜୟପୁର ସହରର ଦକ୍ଷିଣରେ ନିମ୍ନ ଭୂମିକୁ ଲମ୍ଫ ପ୍ରଦାନ କରିଛି । ବାଗ୍ରାଠାରେ ଏହା ତିନୋଟି ସ୍ତରରେ ପାହାଡ଼ ଉପରୁ ନିମ୍ନ ଭୂମିକୁ ଲମ୍ଫ ପ୍ରଦାନ କରି ଏକ ସୁଦୃଶ୍ୟ ପ୍ରପାତ ସୃଷ୍ଟି କରିଛି । ଏହି ପ୍ରପାତକୁ ଭିତ୍ତିକରି ବର୍ତ୍ତମାନର ଅପର କୋଲାବ ଜଳ ବିଦ୍ୟୁତ ଯୋଜନା ଓ ଜଳସେଚନ ଯୋଜନାମାନ କାର୍ଯ୍ୟକାରୀ ହେଉଛି । ମୋଟ୍ ୨୮୦ ମାଇଲ ଦୈର୍ଘ୍ୟର ଏହି ନଦୀଟି କୋରାପୁଟ ଜିଲ୍ଲା ମଧ୍ୟରେ ୨୦୦ ମାଇଲ ପ୍ରବାହିତ ହେଲାପରେ ପଞ୍ଚାବନ ମାଇଲ ଏହି ଜିଲ୍ଲାର ସୀମାରେଖା ଭାବେ ପ୍ରବାହିତ ହୋଇ ଅବଶିଷ୍ଟ ୨୫ ମାଇଲ୍ ଛତିଶଗଡ଼ ରାଜ୍ୟର ବସ୍ତର ଜିଲ୍ଲା ମଧ୍ୟରେ ପ୍ରବାହିତ ହୋଇଛି । ନଦୀଟିର ନାମକରଣ ସଂପର୍କରେ ଜଣାଯାଏ ଯେ, କୋରାପୁଟ ଜିଲ୍ଲାର ଆଦିବାସୀମାନେ ପ୍ରତିଟି ନଦୀନାଳକୁ ତାଙ୍କ ଭାଷାରେ କଲାପ ବା ଖଲାପ ଗାଡ଼ ବୋଲି କହିଥାନ୍ତି । ଯାହାର ଅର୍ଥ କଳକଳ ଶବ୍ଦ କରୁଥିବା ଗର୍ତ୍ତ ବା ଖରାବର୍ଷାର କେନ୍ଦ୍ରସ୍ଥଳ ବା ପେଣ୍ଠ । କୋରାପୁଟ ଜିଲ୍ଲାର ପାହାଡ଼ ନଦୀଗୁଡ଼ିକର ସ୍ରୋତ ଖୁବ୍ ଖର ବା ଭୀଷଣ ହୋଇଥିବାରୁ ଅନ୍ୟ ଅର୍ଥରେ ସୂର୍ଯ୍ୟ ବା ରୁଦ୍ର ମାନଙ୍କ ଦ୍ୱାରା ବହୁ ପ୍ରାଚୀନକାଳରୁ ଏହି ନଦୀ ନାଳମାନ ସୃଷ୍ଟି ବୋଲି ଆଦିବାସୀ ମଣିଷମାନଙ୍କ ଧାରଣା ଥିବାରୁ ସେମାନେ ଏହାକୁ ଖୋଲାପ୍ ଗାଡ଼ କହିଥାନ୍ତି । ରୁଦ୍ରମାନେ ଯେପରି ଭୀଷଣ ଭୟ ଉଦ୍ରେକକାରୀ ହୋଇବି ସୃଷ୍ଟିର ମଂଗଳ ସାଧନ କରିଥାନ୍ତି ସେହିପରି ବର୍ଷା କାଳରେ ଭୟଙ୍କର ରୂପ ନେଇ ପ୍ରବାହିତ ହୋଇ ଶାବର ଭୂମିର ଅଶେଷ ମଂଗଳ ସାଧନ କରିଥିବାରୁ ଉପରମୁଣ୍ଡରେ ଏହା 'ଖଲାପ' ବା 'କୋଲାବ' ନାମରେ

ପରିଚିତ ହୋଇଥିବା ବେଳେ ତଳ ମୁଣ୍ଡରେ ଏହା ଶାବେରୀ ନାମରେ ନାମିତ ହୋଇଛି ।

୧୫୨. **କୋରାପୁଟ୍** - *ଦେ.ବି. :* ଗୋଟିଏ ଜିଲ୍ଲାର ସଦର ମହକୁମାର ନାମ : ପୂର୍ବରୁ ଏହା ଏକ ବଡ଼ ଜିଲ୍ଲା ଥିଲା । କେରାପୁଟ : ୧୯୯୨ ଅକ୍ଟୋବରରେ ଏହା ଚାରୋଟି ଜିଲ୍ଲାରେ ବିଭକ୍ତ ହେଲା । ଯଥା ରାୟଗଡ଼ା, କୋରାପୁଟ, ନବରଂଗପୁର ଓ ମାଲକାନଗିରି । ୧୮୧୯ରେ ରେଭିନ୍ୟୁବୋର୍ଡ଼ର ସଭ୍ୟ ମିଷ୍ଟର ଆକେରେ ଏହି ଅଞ୍ଚଳକୁ "ପାହାଡ଼ ଜଂଗଲ ଘେରା ଏକ ବିରାଟ ଭୂଖଣ୍ଡ, ଯାହାକି ଅସଭ୍ୟ ଓ ପ୍ରକୃତରେ ଅଜେୟ ବର୍ବର ମାନଙ୍କ ଦ୍ୱାରା ଅଧ୍ୟୁଷିତ" ବୋଲି ରେଭିନ୍ୟୁ ବୋର୍ଡ଼କୁ ରିପୋର୍ଟ ଦେଇଥିଲେ । ସେ ପୁଣି ଲେଖିଥିଲେ, "ଏହାର ସୀମା ଏବେ ବି ଅଜଣା । ଅଭିଯାନକାରୀମାନଙ୍କ ପାଦ ଏଠାରେ ଆହୁରି ପଡ଼ିପାରି ନାହିଁ । ମାନଚିତ୍ରର ଏହି ସ୍ଥାନ ଏବେ ମଧ୍ୟ ଶୂନ୍ୟ ।" ୧୭୬୫ରେ ଲର୍ଡ଼କ୍ଲାଇବ୍ ମୋଗଲ ବାଦଶାହଙ୍କ ପାଖରୁ ଏକ ସନନ୍ଦ ବଳରେ ଏହାର ଶାସନ କ୍ଷମତା ପାଇଥିଲେ, ମାତ୍ର ୧୮୭୯ ସୁଦ୍ଧା ବ୍ରିଟିଶ ସରକାର ଏଠାରେ ସାଧାରଣ ପ୍ରଶାସନ ବ୍ୟବସ୍ଥା ପ୍ରତିଷ୍ଠା କରି ପାରିନଥିଲେ । ପରେ ଏଜେନ୍‌ସି ଆଇନ୍ ବଳରେ ସିଧାସଳଖ ରାଜ୍ୟପାଳଙ୍କ ଅଧୀନରେ ଏହା ଶାସିତ ହେବାକୁ ଲାଗିଲା । ୧୯୩୬ରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ବେଳେ ଓଡ଼ିଶା ସହ ମିଶିବା ପୂର୍ବରୁ ଏହା ବିଶାଖାପାଟଣା ଜିଲ୍ଲାର ଅନ୍ତର୍ଭୁକ୍ତ ଥିଲା ।

'କୋରା' ଅର୍ଥ ଠେକୁଆ । ଠେକୁଆ ଗୋତ୍ରଥିବା ଆଦିବାସୀ ଗୋଷ୍ଠୀ ହେଉଛନ୍ତି ରଣା ଓ ପରଜା । ୧୯୪୦ରୁ ୪୫ମଧ୍ୟରେ ଗୋପୀ ମହାନ୍ତି ନିଜର ପରଜା ଉପନ୍ୟାସ ଲେଖିଲାବେଳେ ଉଲ୍ଲେଖ କରିଥିଲେ "କେବେ କେଉଁ ଯୁଗରେ ରଣା ଜାତିର ଲୋକେ ସାନପୁଟ୍ ବା ପଲ୍ଲି ବସାଇଥିଲେ । ସେ ରଣା ଲୋକଙ୍କ ସଂଜ୍ଞା ଥିଲା 'କୋରା'...... ଏବେ ସେ ପୁରୁଣା କୋରାଘରର ଶେଷ ମୁରବୀ ଡମ୍ବରୁ ଖରା ଦୁଧ ବିକୁଛି । ତାର କୋରାପୁଟ ଥିଲା ଖଣ୍ଡେ ଛୋଟିଆ ପଲ୍ଲୀ । ଅଥଚ ତାରି ଘରର ନାଁ ଏବେ ରହିଛି ଏଡ଼େ ବଡ଼ କୋରାପୁଟ ଗୋଟାକର । କୋରା ଘର ଛିଣ୍ଡିଛି, କୋରାପୁଟ ବଢ଼ିଛି, ଅମାନତ ଗୋଟିଏ ଜିଲ୍ଲା ।" (ପରଜା : ଗୋପୀନାଥ) ଆଦିବାସୀ ସଂସ୍କୃତି ବା ଆଦି ସଂସ୍କୃତି ସହି ଏହି କୋରାପୁଟ ନାମଟିର ଯଥେଷ୍ଟ ସଂପର୍କ ରହିଛି । ଏହା ସୂର୍ଯ୍ୟଙ୍କର ସ୍ଥାନ, ଖରା ବା ସୂର୍ଯ୍ୟ କିରଣର ପେଣ୍ଡୁ କହିବାର ଯଥାର୍ଥତା ପ୍ରତିପାଦନ କରିବାକୁ

ଯାଇ ଭରତମୁନିଙ୍କ ନାଟ୍ୟଶାସ୍ତ୍ର, ବାୟୁ ପୁରାଣ, ବ୍ରହ୍ମାଣ୍ଡ ପୁରାଣ ଇତ୍ୟାଦିରେ କୁହାଯାଇଛି ଯେ କାଶ୍ୟପ ଋଷିଙ୍କ ବାସସ୍ଥାନ ଏହି କଳିଙ୍ଗ ରାଜ୍ୟର ମହେନ୍ଦ୍ର ମାଳାଞ୍ଚଳରେ ଥିଲା ଓ ତାଙ୍କର ୧୩ଗୋଟି କନ୍ୟାଙ୍କ ଠାରୁ ଦେବ, ଦାନବ, ମାନବ, ନାଗ, ଗରୁଡ଼, ଯକ୍ଷ, ରକ୍ଷ, କିନ୍ନର ଆଦି ଜନ୍ମ ନେଇଥିଲେ । ଏହି ଦୃଷ୍ଟିରୁ ବିଚାର କଲେ କୋରାପୁଟ ପୌରାଣିକ ଭାବେ ସୂର୍ଯ୍ୟଙ୍କର ବାସସ୍ଥାନ ହୋଇଥାଇପାରେ । ପୁରାଣ ମତରେ ସୃଷ୍ଟିର ମୂଳାଧାର ସୂର୍ଯ୍ୟଙ୍କ ପୁତ୍ର ସ୍ୱୟମ୍ଭୁ ମନୁ ହିଁ ମାନବ କୁଳର ଜନ୍ମଦାତା ଓ ପ୍ରଥମ ବିଧାନକର୍ତ୍ତା ହୋଇଥିବାରୁ ଏବଂ ତାଙ୍କ ଠାରୁ ସୂର୍ଯ୍ୟବଂଶ ଓ ଚନ୍ଦ୍ରବଂଶ ସୃଷ୍ଟି ହୋଇଥିବାରୁ ଏବଂ ସଉରା ସମେତ ଏ ଅଞ୍ଚଳର ସମସ୍ତ ଆଦିବାସୀ ଗୋଷ୍ଠୀ ମୁଖ୍ୟତଃ ସୂର୍ଯ୍ୟବଂଶୀ ତଥା ସୋମବଂଶୀ ହୋଇଥିବାରୁ ଏହାକୁ ସୂର୍ଯ୍ୟଙ୍କର ସ୍ଥାନ ବୋଲି ସେମାନେ କହିଥାନ୍ତି । ପୁନଶ୍ଚ ଏହି ଆଦିବାସୀ ଅଧ୍ୟୁଷିତ ପାର୍ବତ୍ୟ ଅଞ୍ଚଳଟିର ପର୍ବତମାନଙ୍କରେ ବହୁବିଧ ଧାତୁ ଦ୍ରବ୍ୟମାନ ପରିପୂର୍ଣ୍ଣ ହୋଇଥିବାରୁ ଏହି ଅଞ୍ଚଳରେ ସୂର୍ଯ୍ୟ କିରଣ କେନ୍ଦ୍ରୀଭୂତ ହୋଇ ପଡ଼ିଥାଏ । ସୂର୍ଯ୍ୟୋଦୟର ଆଦ୍ୟ ରଶ୍ମି ବା ଖରାର କେନ୍ଦ୍ରସ୍ଥଳୀ । ଏହି ସ୍ଥାନକୁ ଆଦିବାସୀ ଲୋକେ ସୂର୍ଯ୍ୟଙ୍କର ଗାଁ ବା କରା ତଥା ଖରାର ପୁଟ ନାମରେ ନାମିତ କରିଛନ୍ତି ।

ଅତୀତରେ ଏ ଅଞ୍ଚଳରେ ପ୍ରବଳ ଥଣ୍ଡା ହେଉଥିବାରୁ ରାତ୍ରିବେଳେ କରକାପାତ ହେଉଥିଲା । କରକାପାତ ଯୋଗୁଁ ଏହାକୁ କରକା ପେଣ୍ଡ ବା କରାପୁଟ କୁହାଯାଇଥାଇପାରେ । କୁହାଯାଏ ଅତୀତରେ ଏ ଅଞ୍ଚଳଟି ଓ ଦାବ୍ରିଡ଼ ମଣ୍ଡଳର ଓଡ୍ର ରାଜାଙ୍କ କୋଟିଆ ସୈନ୍ୟ ମାନଙ୍କ ବାସସ୍ଥାନ ପାଲଟି ଯାଇଥିଲା । ସେମାନେ ସମସ୍ତେ ସୂର୍ଯ୍ୟବଂଶୀ ତଥା ଖରା ସଂଜ୍ଞାଧାରୀ ଥିଲେ । ସେହିମାନଙ୍କ ଦ୍ୱାରା ଏହି ସ୍ଥାନଟି ବସାଯାଇଥିବାରୁ ସେମାନଙ୍କ ନାମ ଅନୁଯାୟୀ ଏହା ଖରାପୁଟରୁ କାଳକ୍ରମେ କୋରାପୁଟ ପାଲଟି ଯାଇଛି । ଆଉ ମଧ କୋଚିଲା ଗଛ ବା କୋରାଗଛ ଏହି ଅଞ୍ଚଳରେ ବହୁ ପରିମାଣରେ ଦେଖାଯାଉଥିବାରୁ ଏହି ଅଞ୍ଚଳକୁ 'କୋରାପୁଟ' ନାମରେ ନାମିତ କରାଯାଇଛି ବୋଲି କେତେକ କହନ୍ତି ।

□□□



୧. **ଖଇରପୁଟ** - *ଦେ.ବି. :* ମାଲକାନଗିରି ଜିଲ୍ଲାର ଗ୍ରାମ ବିଶେଷର ନାମ ।

ଖଇରପୁଟ ଖଇରି ଗଛର ଗାଁ । ଆଦିବାସୀ ଲୋକମାନେ ଯେଉଁ ଗ୍ରାମରେ ଯେଉଁ ଗଛ ଅଧିକ ଥିବାର ଦେଖିଥାନ୍ତି, ସେଇ ଗଛର ନାମ ଅନୁସାରେ ନିଜ ଗ୍ରାମ ବା ବସ୍ତିର ନାମକରଣ କରିଥାନ୍ତି । ଖଇର ଜଂଗଲ ସଫା କରି ପ୍ରଥମେ ଏହି ସ୍ଥାନରେ ଗ୍ରାମବାସୀ ଯାଇଥିବାରୁ ଏହାର ନାମ ଖଇରପୁଟ ରଖାଯାଇଛି ।

୨. **ଖଗଲା / ଖାଗ୍‌ଲା** - *ଦେ.ବି. :* ଗଳାରେ ପିନ୍ଧୁଥିବା ଅଳଙ୍କାର । ଖଗଲା ଗୋଲାକାର । ପୋଲାରସ ବା ପିତଳ ନିର୍ମିତ ଏହି ବଳାକୁ ଗଳାରେ ବଣ୍ଡା, ଦୁରୁଆ ଓ ଗାଦବା ରମଣୀମାନେ ପିନ୍ଧିଥାନ୍ତି । ବଣ୍ଡା ସ୍ତ୍ରୀମାନେ ବେକରେ ବିଭିନ୍ନ ଆକାରର ଅନେକ ଖଗ୍‌ଲା ପିନ୍ଧିଥାନ୍ତି, ଯାହା ସେମାନଙ୍କର ସମଗ୍ର ବେକ ଓ ଛାତିକୁ ଆବୃତ୍ତ କରିଥାଏ । ଏହି ଖଗ୍‌ଲା ବିଭିନ୍ନ ଶ୍ରେଣୀର । ଏଗୁଡ଼ିକୁ ଡାଟେ, ଉଁସୁଙ୍ଗୁ ମଧ୍ଯ କୁହାଯାଏ, ଗାଦବା, ବଣ୍ଡା ସଂପ୍ରଦାୟରେ ଏହାକୁ ଖାଗ୍‌ଲା କୁହାଯାଏ । ଏହି ଖାଗ୍‌ଲା ବା ଉସୁଙ୍ଗୁର ପ୍ରତିରୋଧକାରୀ ଭୂମିକା ମଧ୍ଯ ରହିଛି । ବେକରେ ଥିଲେ ଏହା ସାଂଜୁଭଳି କାର୍ଯ୍ୟକରେ ।

୩. **ଖୁଦ୍ରା ଠେଗ୍‌ଲାଣି** - *ଦେ.ବି. :* ପିଲାଜନ୍ମ ସଂପର୍କିତ ଏକ ଅନୁଷ୍ଠାନ ବିଶେଷ । ଆବର୍ଜନା ଖାତ ପୋତିବା ବିଧି । ପ୍ରସୂତି ସ୍ତ୍ରୀର ପ୍ରସବ ହେବା ଦିନ ଘର ପଛପଟେ ଏକ ଗାତ ଖୋଳାଯାଇଥାଏ । ଉକ୍ତ ଗାତକୁ ପାଖ ଜଂଗଲର ସରଗି ଡାଳ ଆଣି ଆଡ଼ଆ କରାଯାଇଥାଏ । ଉକ୍ତ ଖାତରେ ପ୍ରସୂତି ସ୍ତ୍ରୀର ୧୧ ଦିନ କିମ୍ବା ୨୧ ଦିନ ପର୍ଯ୍ୟନ୍ତର ଝାଡ଼ା, ପରିସ୍ରା, ସିଏ ଖାଉଥିବା ଖାଦ୍ୟର ଦନା, ଚଉକନି, ପିଲାର ଝାଡ଼ା ତଥା ବିଭିନ୍ନ ଅସନା ଜିନିଷ ପଡ଼ିଥାଏ । ସ୍ତ୍ରୀ ଯେଉଁଦିନ ଶୁଦ୍ଧି ହୁଏ ସେ ଦିନ ଦିଶାରୀକୁ ଡକାଯାଏ । ଦିଶାରୀ ଏକ ପରିଷ୍କାର ସ୍ଥାନରେ ମୁରୁଜକାଟି ପୂଜାବିଧି କରିବା ପରେ ପୂଜାରେ ବ୍ୟବହୃତ କଳା ମୁରୁଜ, ଚାଉଳ ମଦ ଆଦି ଉକ୍ତ ଗାତରେ ପକାଇବା ପରେ ଗାତ ପୋତାଯାଏ । ଗାତ ପୋତା ସରିବା ପରେ ତୁଳସୀ ଜଳ କିମ୍ବା ଆମ୍ବ ଛାଲିର କଷା ପାଣି ଉକ୍ତ ସ୍ଥାନରେ ଶୁଦ୍ଧି ନିମିତ୍ତ ଛିଞ୍ଚା ଯାଇଥାଏ ।

୪. **ଖୋଜମାଡ଼ାନି** - *ଦେ.ବି. :* ବିବାହ ସଂପର୍କିତ ଏକ ଅନୁଷ୍ଠାନ । ପୁଅ ପାଇଁ ଝିଅ ଟିଏ ଦେଖିଯିବା କିମ୍ବା ଉଦୁଲିଆ ପଳାଇଥିବା ଝିଅ ଘରକୁ କଥା ହେବାପାଇଁ ଯିବା କାର୍ଯ୍ୟକୁ 'ଖୋଜ୍‌ମାଡ଼ାନି' କହନ୍ତି । ଏହି ପରମ୍ପରା ପ୍ରତ୍ୟେକ ଆଦିବାସୀ ସମାଜରେ ଦେଖିବାକୁ ମିଳିଥାଏ ।

୫. **ଖଣ୍ଡେକ୍** - *ଦେ.ବି. :* କୌଣସି ଦ୍ରବ୍ୟର କିଛି ଅଂଶ, ଅଳ୍ପ କିଛି, ଇଂ. - Little ଆଦିବାସୀ ଲୋକ କୌଣସି ଦ୍ରବ୍ୟରୁ ଅଳ୍ପ କିଛି ମାଗିଲେ ବା ସାମାନ୍ୟ କିଛି ଜିନିଷ ନେବାକୁ ଚାହିଁଲେ, 'ଅଳ୍ପକିଛି ଦିଅ, ଗଣ୍ଡାଏ ଦିଅ, ମୁଠାଏ ଦିଅ, ଦିଟା ଦିଅ' ଇତ୍ୟାଦି ନ କହି 'ଖଣ୍ଡେକ୍ ଦିଅ' ବୋଲି କହିଥାନ୍ତି । ଯେମିତି ପ୍ରେମିକଟିଏ ତା ପ୍ରେମିକାକୁ ପ୍ରୀତି ମାଗିବାକୁ ଯାଇ କହିଥାଏ -

'ଗୋଠନି ପଦରେ ଗଛ ପୋଲାକା ତହିରେ ଚିଉରା ବସା

କୂଳ କରାଟରୁ ଦୁଙ୍ଗିଆ ଖଣ୍ଡେକ୍ ଦିଆ ଲାଗିଛି ମୋହର ଆଶା ।'

୬. **ଖରା** - *ଦେ.ବି. :* (୧) ସୂର୍ଯ୍ୟ ବା ସୂର୍ଯ୍ୟକିରଣ । ଇଂ. - Sunray (୨) ଠେକୁଆ ଇଂ. - Rabbit ଆଦିବାସୀ ସମାଜରେ ଖରା ଏକ ଗୋତ୍ର ବା ବଂଶର ଲୋକ ଭାବେ ଚିହ୍ନିତ । ଏମାନେ ମୁଖ୍ୟତଃ ସୂର୍ଯ୍ୟବଂଶୀ ଲୋକଭାବେ ଚିହ୍ନିତ ହୋଇଥାନ୍ତି । ପୁଣି ଖରା ବା ଖଡ଼ାର ଅର୍ଥ ଠେକୁଆ । ଏହା ମଧ୍ୟ ଗୋତ୍ର । ପରଜା ଓ କିଛି ହରିଜନ ଏହି ଗୋତ୍ରରେ ପରିଚିତ ହୋଇଥାନ୍ତି । ଏହି ଖଡ଼ା ମଧ୍ୟରୁ 'କୋରାପୁଟ' ନାମକରଣ ହୋଇଥିବାର ପ୍ରବାଦ ରହିଛି ।

୭. **ଖଳା ସାରାଣୀ / ଖାଲା ସାରାନି** - *ଦେ.ବି. :* ଧାନ ଅମଳ ସଂପର୍କିତ ଅନୁଷ୍ଠାନ ବିଶେଷ । ଖଳାରେ କୁପା କରି ରହିଥିବା (ଗଦା ମାରିଥିବା) ଧାନ ସବୁର ଅମଳ ସରିଯିବା ପରେ, ଖଳା ସାରାଣୀ ପୂଜା କରାଯାଏ । ଏହି ଦିନ ଜମିରେ ଏବଂ ଖଳାରେ ଛେଳି, ମେଣ୍ଢା, ପାରା, କୁକୁଡ଼ା ଆଦି ବଳି ଦିଆଯିବା ସହ ଭୋଜିଭାତ କରି ଆମୋଦ ପ୍ରମୋଦ କରନ୍ତି । ଏହାହିଁ ଖାଲା ସାରାଣି ରୂପେ ଖ୍ୟାତ । ସମସ୍ତ ସାହାଯ୍ୟକାରୀ ତଥା କୁଲି ମଜୁରି କରିଥିବା ଲୋକେ ମଧ୍ୟ ଏଥିରେ ଅଂଶ ଗ୍ରହଣ କରନ୍ତି ।

୮. **ଖଲି** - *ଦେ.ବି. :* ପତ୍ର ନିର୍ମିତ ଖାଦ୍ୟପାତ୍ର - ଇଂ.- Leaf Thal ସିଲେଇ କରାଯାଇ ଖାଦ୍ୟପାତ୍ର ରୂପେ ବ୍ୟବହୃତ ହେଉଥିବା ଶାଳ ବା ଶିଆଳୀ ପତ୍ର । ଅନ୍ୟାନ୍ୟ

ଅନେକ ପତ୍ର ଯଥା : ଟେକ୍ ଗମ୍ଭାରୀ ଓ ବଡ଼ ବଡ଼ ପତ୍ର ସବୁକୁ ସିଲେଇ ବା ବିନା ସିଲେଏରେ ବ୍ୟବହାର କରାଯାଏ । ଆଦିବାସୀ ମଣିଷମାନେ ଖାଦ୍ୟ ଖାଇବା ପାଇଁ ସାଧାରଣ ଶାଳପତ୍ର ଓ ଶିଆଳୀ ପତ୍ରକୁ ବ୍ୟବହାର କରିଥାନ୍ତି । ଏମାନେ ପତ୍ରରେଦାନା ବା ଚକ୍‌ନି ତିଆରି କରି ସେଥିରେ ପେଜ ପିଇଥାନ୍ତି ଓ ମଦ୍ୟ ପିଇବା ପାଇଁ ଏକ ଦନା ମଧ ବ୍ୟବହାର କରିଥାନ୍ତି । ଏତଦ୍ ବ୍ୟତୀତ ଭୋଜି ଭାତରେ ଖାଇବା ପାଇଁ ସେମାନେ ଶିଆଳୀ ପତ୍ର ବା ଶାଳପତ୍ରକୁ ସିଲେଇ କରି ଏହାକୁ ବଡ଼ବଡ଼ ଥାଳି କରି ଏଥିରେ ଖାଦ୍ୟ ଖାଇଥାନ୍ତି । ଏହି ପତ୍ର ସିଲେଇ ଥାଳିକୁ ଖଲିପତ୍ର କୁହାଯାଏ । ବ୍ୟବସାୟୀ କରଣ ଦ୍ୱାରା ଏହି ଖଲିପତ୍ରରେ ତିଆରି ଥାଳି ଓ ଚକ୍‌ନି ଭୋଜି ଭାତରେ ସାଧାରଣ ଲୋକେ ମଧ ବ୍ୟବହାର କରୁଛନ୍ତି । ଆଦିବାସୀ ଲୋକମାନେ ବଣରୁ ପତ୍ର ସଂଗ୍ରହ କରି ଏଥିରେ ଖଲି ତିଆରି କରି ଏହାକୁ ବଜାରରେ ବିକ୍ରୟ କରି ଯଥେଷ୍ଟ ଅର୍ଥ ପ୍ରାପ୍ତ ହେଉଛନ୍ତି । ଏହା ସେମାନଙ୍କ ପାଇଁ ଏକ ଲାଭଜନକ ବ୍ୟବସାୟରେ ପରିଣତ ହୋଇପାରିଛି । ଶାଳ ପତ୍ରକୁ ମେସିନ୍ ଦ୍ୱାରା ଅନ୍ୟ ପ୍ଲାଷ୍ଟିକ୍ ପୁଟ / ପାତ ମଡ଼ାଇ ସିଲାଇ କରାଯାଇ ବିକ୍ରି କରାଯାଉଛି ।

୯. ଖାଉରା - *ଦେ.ବି. :* ଲୋଭୀ ଇଂ. - Greedy.

ସ୍ଥାନ, କାଳ, ପାତ୍ରକୁ ନ ଜଗି ଯିଏ ଖାଇବା ଜିନିଷରେ ହାତ ପଟେଇ ଦିଏ । ଯେ କୌଣସି ଭଲ ଜିନିଷ ଦେଖିଲେ ଯିଏ ଖାଇବା ପାଇଁ ମନ ବଳାଏ । ଖାଉରା ଲୋକକୁ ସମସ୍ତେ ଥଟ୍ଟା କରନ୍ତି ।

ବ୍ୟବହାର : ଏମାନାଏ, ଖାଉରା ହୋ, ଯେତେ ଦେଲେ ମିଶା ନିଚି ବଲି କଇବାଟା ନାଇଁ ।

୧୦. ଖାଙ୍ଗାର - *ଦେ.ବି. :* ଦୁଷ୍ଟ ବା ଖଳ ପ୍ରକୃତିର ଲୋକ - ଖଣ୍ଡ - ଲୁଟିଖିଆ, ଡକାୟତ, ଲୁଟେରା । ଇଂ. - Wicked, Dacoit.

ଅବିଭକ୍ତ କୋରାପୁଟ ଜିଲ୍ଲାରେ ଅତୀତରେ ଏହି ଖାଙ୍ଗାରମାନଙ୍କ ଉପଦ୍ରବ ଖୁବ୍ ବେଶୀ ଥିଲା । ଏମାନେ ଅନ୍ୟମାନଙ୍କୁ ଲୁଟି ଖାଇବାରେ ଖୁବ୍ ପାରଙ୍ଗମ ଥିଲେ । ବିଶେଷ କରି ପାଣ ଓ ଡମ ଜାତିର ଲୋକମାନେ ଏ ପ୍ରକାର କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିବାରୁ ସେମାନଙ୍କୁ ଖାଙ୍ଗାର ଲୋକ ଭାବେ ଚିହ୍ନିତ କରାଯାଉଥିଲା ।

ଚୋରୀ ଓ ଖଣ୍ଟ ବୃତ୍ତି କରି ପେଟ ପୋଷୁଥିବା ଏଇ ଲୋକମାନଙ୍କ ଠାରୁ ଅତୀତରେ ରାଜା ବା ଜମିଦାର ଖାଙ୍ଗାର ପାନୁ ବା ଟିକସ ଆଦାୟ କରୁଥିଲେ । ରାଜା ବା ଜମିଦାର ଅମଳରେ ଖଙ୍ଗାର ବୃତ୍ତି କରି ଯେମିତି ଲୋକେ ନିର୍ଭୟରେ ଆଦିବାସୀ ଲୋକଙ୍କୁ ଲୁଟୁଥିଲେ ଆଜିକାଲି ସେମିତି ଖଙ୍ଗାର ବୃତ୍ତି କରୁଥିବା ଲୋକ ନାହାନ୍ତି । ଯେଉଁ କେତେଜଣ ଏମିତି ବୃତ୍ତି କରି ଲୁଚିଛପି ଚୋରିତସ୍କରି କରିଥାନ୍ତି, ଧରାପଡ଼ିଲେ ସେମାନଙ୍କୁ ଦଣ୍ଡ ଦେବାର ବ୍ୟବସ୍ଥା ରହିଛି । ଏହି ଖାଙ୍ଗାର ଲୋକମାନେ ସାଧାରଣ ଲୋକ ଓ ଆଦିବାସୀ ମଣିଷଙ୍କ ଠାରୁ ଅଧିକ ଧୂର୍ତ୍ତ ଓ ଚତୁର । ଆଜିକାଲି ଧୂର୍ତ୍ତ, ଠକ ଓ କଥାରେ ସର ପକାଇ ଲୋକଙ୍କୁ ଲୁଟ୍ କରୁଥିବା ଲୋକମାନଙ୍କୁ ମଧ୍ୟ ଆଦିବାସୀମାନେ ଘୃଣାରେ ଖାଙ୍ଗାର୍ କହିଥାନ୍ତି ।

୧୧. ଖାଦିପିଦି - *ଦେ.ବି. :* ଖାଇବା ପିଇବା କାମ । ଇଂ. - Food Service to the guests, ଏହା ଆଦିବାସୀ ସମାଜରେ ପ୍ରଚଳିତ ଏପରି ଏକ ଶବ୍ଦ ଯାହା ବନ୍ଧୁ ଶଂଖୋଳିବା ବା ଆଦର ସମ୍ମାନ କରୁଥିବା କ୍ଷେତ୍ରରେ ସର୍ବାଗ୍ରେ ପ୍ରୟୋଗର ଆବଶ୍ୟକତା ପଡ଼ିଥାଏ । କୁଣିଆ ଆସିଲେ ଏମାନେ ପ୍ରଥମେ ତାର ଖାଦିପିଦି ସଂପର୍କରେ ପ୍ରଶ୍ନ ପଚାରିଥାନ୍ତି । ଗ୍ରାମକୁ କେହି ସରକାରୀ କର୍ମଚାରୀ, ଅଜଣା ଅତିଥି ବା ବ୍ୟବସାୟୀ ଆସିଲେ ସାରା ଗାଁର ଲୋକେ ତାର ଖାଦିପିଦି କଥା ବୁଝିଥାନ୍ତି ।

୧୨. ଖାରିଦେବା - *ଦେ.ବି. :* ଶିକାରର ଏକ ବିଶେଷ ଉପାୟ । ଜଂଗଲର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଲୁଣ, ଶୁଖୁଆ ଦେଇ ହରିଣ ଓ ସମ୍ବରମାନଙ୍କୁ ଲୁଣ ଓ ଶୁଖୁଆ ପ୍ରତିଦିନ ଖାଇବା ଲାଗି ଅଭ୍ୟସ୍ତ କରାଇ ଶେଷରେ ସେମାନଙ୍କୁ ଶିକାର କରିବା କାର୍ଯ୍ୟକୁ 'ଖାରିଦେବା' କୁହାଯାଏ ।

୧୩. ଖିଚିଡ଼ି - *ଦେ.ବି. :* ଏକ ବିଶେଷ ପ୍ରକାରର ଖାଦ୍ୟ । ଖେଚୁଡ଼ି, ଦିଆଲି ପରବ ସମୟରେ ରନ୍ଧା ଯାଇଥିବା ଧାନ, ନୂଆ ହାଣ୍ଡିରେ ପିଟ୍‌କନ୍ଦା, ସିନ୍ଧିକନ୍ଦା, କଳା ଝୁଡ଼ଙ୍ଗ, ମୂଳା, ବୋଇତାଳୁ, ତେନ୍ତୁଳି, ଛତୁ, ଶୁଖିଲା ମାଛ ଓ ଅଧୁଆ ଚାଉଳରେ ଏହି ଖିଚିଡ଼ି ପ୍ରସ୍ତୁତ କରାଯାଇ ଗୋରୁଗାଈଙ୍କୁ ଖୁଆଯାଏ । ଏହା ଦିଆଲି ପରବ ବେଳେ ଗୋରୁଗାଈଙ୍କୁ ପୂଜା ଅବସରରେ କରାଯାଇଥାଏ ।

୧୪. ଖିଜିବୁଢ଼ି - *ଦେ.ବି. :* ଭାଲୁ । ଇଂ. - Bear ଏହା ଏକ ପ୍ରକାର ଆଦିବାସୀ ଲୋକଙ୍କ ସଂଜ୍ଞା । ଏହି ସଂଜ୍ଞାର ଆଦିବାସୀମାନେ ଭାଲୁଗୋତ୍ରର ଲୋକ ଭାବେ ପରିଚିତ ହୋଇଥାନ୍ତି ।

୧୫. ଖିଲ - *ଦେ.ବି. :* ବାଘ । ଇଂ. - Tiger ଏହି ସଂଜ୍ଞାଧାରୀ ଲୋକମାନେ ବାଘ ବଂଶ ବା ଗୋତ୍ର ଲୋକ ଭାବେ ପରିଚିତ ହୋଇଥାନ୍ତି । ଏ ସଂଜ୍ଞା ମୁଖ୍ୟତଃ ପରଜା ଓ ରଣା ବା ମାଟିଆ ଗୋଷ୍ଠୀରେ ଦେଖାଯାଏ ।

୧୬. ଖୁଣ୍ଟିପୋତ୍ - *ଦେ.ବି. :* ଗାଦ୍‌ବା ମାନଙ୍କର 'ଗତର' କ୍ରିୟାର ମୂଳିକା 'ପୋଢ଼' ଏହି ଗାଁର ନାୟକ ମରିଥିଲେ ତାର ପ୍ରେତ (ଡୁମା) ନାଆଁରେ ଏହି ବଡ଼ ହୃଷ୍ଟପୁଷ୍ଟ ପୋଢ଼ଟିକୁ କିଣା ଯାଇଥାଏ । ଏହାକୁ କଜ୍ଜଳ, ସିନ୍ଦୁର ମାଳି, ପାନିଆ, ଦର୍ପଣ ଆଦି ପିନ୍ଧାଇ ଦିଆଯାଏ । ତାହାକୁ କନ୍ଦ, କଦଳୀ, ମଦ ସଲପ, ଭଲ ଖାଦ୍ୟ ଖୁଆଯାଏ ଏବଂ ଶେଷରେ ବଳି ଦିଆଯାଏ ।

୧୭. ଖୁଦ୍ ଜାଉ - *ଦେ.ବି. :* ଖୀରି ଜାତୀୟ ଏକ ଖାଦ୍ୟ ପଦାର୍ଥ । ଏହା ଚାଉଳ ଖୁଦ, କାଙ୍ଗୁ ଚାଉଳ, ଶୁଆଁ ଚାଉଳରେ ଇତ୍ୟାଦିରେ ପ୍ରସ୍ତୁତ କରାଯାଏ । ନୂଆଖିଆ ପିଲାକୁ ପ୍ରଥମେ ଖାଦ୍ୟ ଖୁଆଇବାବେଳେ ନିଜ ଘରଦେବତାଙ୍କୁ ଏହି ଖୁଦ ଜାଉ ଚରୁଭାବରେ ପୂଜା କରିଥାନ୍ତି । ଏଥିରେ ଗୁଡ଼ ଓ କ୍ଷୀର ଲୁଣ ମିଶାଇ ଏହାକୁ ଅତ୍ୟନ୍ତ ସୁସ୍ୱାଦୁ କରାଇଥାଏ ।

୧୮. ଖୁଦରମାନ୍ଦା - *ଦେ.ବି. :* ଠେକୁଆ (ଖାଡ଼ା - ଦେଶିଆ ଭାଷାରେ) ମାନ୍ଦା : ଦଳ । ଇଂ- A Group of rabbits. ବର୍ଷାଦିନେ ଏହି ଠେକୁଆ ଦଳ ଦେଖାଯାନ୍ତି । ଦେଶିଆ ଲୋକଗୀତରେ ଏହି ଖୁଦର ମାନ୍ଦା ଶବ୍ଦର ପ୍ରୟୋଗ ଖୁବ୍ ଶୁଣାଯାଏ । ଚିକଲ ବେଡ଼ାନେ ଖୁଦର ମାନ୍ଦା ବେଢ଼ା ପାନି ହେଲା ଗାର

ଦାନ୍‌କେ କାମୁନି ଚିନାଇ ନାହୁଏ ପାନି ମାରେ ଝର ଝର । (କାମୁନି - ବାଲୁଙ୍ଗା)

୧୯. ଖୋସା - *ଦେ.ବି. :* ସ୍ତ୍ରୀ ମାନଙ୍କର କେଶ ପ୍ରସାଧନର ଏକ ଶୈଳୀ । ଆଦିବାସୀ ସ୍ତ୍ରୀମାନେ ଜଡ଼ା ତେଲ ଲଗାଇ ନିଜ କେଶର ଶେଷ ଭାଗ ବା ଚେଣ୍ଡିକୁ ମୁଣ୍ଡର ପଛପଟେ କୁଣ୍ଡାଇ ନେଇ ଯେଉଁ ଜୁଡ଼ା ବାନ୍ଧିଥାନ୍ତି, ତାହାକୁ 'ଖୋସା' କୁହାଯାଏ ।

ଏହା ଏକ ବିଶେଷ ଦେଶିଆ ପଦ୍ଧତିରେ ହୋଇଥାଏ । ଓଡ଼ିଆ ଖୋସାଠାରୁ ଏହା ସଂପୂର୍ଣ୍ଣ ଭିନ୍ନ ।

ଡାଲିଆ ଖୋସା - *ଦେ.ବି. :* ଖୋସାର ଏକ ଶ୍ରେଣୀ : ଆଦିବାସୀ ରମଣୀ ବିଶେଷତଃ ପରଜା ସଂପ୍ରଦାୟ ଜଡ଼ା ତେଲ ମାଖି କେଶକୁ ଗୁଚ୍ଛ କରି ଚକାଜୁଡ଼ା ବାନ୍ଧେ । ଜୁଡ଼ାର ଉଭୟ ପାର୍ଶ୍ୱରେ ଆଠ ଦଶଟି ମୁଣ୍ଡକଣ୍ଟା ବା କେଶକଣ୍ଟା ପିନ୍ଧେ । ଏହାକୁ 'ଡାଲିଆ ଖୋସା' କୁହାଯାଏ । ଏହି ଖୋସା ରଂଗବେରଂଗର ଫୁଲ ଓ ରିବନରେ ସୁସଜ୍ଜିତ ହୋଇଥାଏ । ପ୍ରବାଦରେ ବ୍ୟବହାର : "ମନୁଷ୍ୟର ଭାଷା, ମାଈଜୀର ଖୋସା ।"





୧.   **ଗଇ ପରବତ୍** - *ଦେ.ବି. :* ଏକ ପର୍ବତର ନାମ ବିଶେଷ । ମାଲକାନଗିରି ସଦର ମହକୁମାର ପ୍ରାୟ ୫କି.ମି. ଦୂରରେ ପଶ୍ଚିମ ଦିଗକୁ ଥିବା ପର୍ବତର ନାମ ଗଇ ପର୍ବତ । ଆଦିବାସୀମାନଙ୍କର ଧାରଣା ଯେ ଏହି ପର୍ବତ ଶୁଭ ନୁହେଁ । ଏଠାକୁ ଶିକାର ପାଇଁ ଗଲେ ବହୁତ ବିପଦ ପଡ଼େ । ଏହା ପଛରେ ଗୋଟିଏ କାହାଣୀ ଅଛି । ପୂର୍ବକାଳେ ଥିଲେ ଦୁଇ ଡକରା ଡକରି । ଏହି ପର୍ବତ ପାଖେ କୁଡ଼ିଆ ବାନ୍ଧି ରହିଥିଲେ । ବେଣ୍ଟ କରି ଚଳୁଥିଲେ । ବେଣ୍ଟକୁ ଯିବାବେଳେ ସାଂଗରେ ଲକ୍‌ଟି ପୁଡ଼ିଆ ନେଉଥିଲେ । ଲକ୍‌ଟି ହେଉଛି ଶୁଖିଲା ମହୁଲର ଗୁଣ୍ଡ । ଏହାକୁ ପାଣି ସାଂଗରେ ଗୁଳାଇ ଖିଆଯାଉଥିଲା । ଦିନେ ଦୁଇ ଡକରା ଡକରି ବେଣ୍ଟ୍ ଗଲେ । ଡକରି ଧରିଥିଲା ଗୋଟିଏ ବଡ଼ ଲକ୍‌ଟି ପୁଡ଼ା । ଡକରା ସାଂଗେ ଥିଲା ଗୋଟିଏ ଶିକାରୀ କୁକୁର । ବାଟରେ ଗୋଟିଏ ବଡ଼ ଗଇ ବା ଗୋଧି ଦେଖି କୁକୁର ତାକୁ ଗୋଡ଼ାଇଲା । ସେଇପାହାଡ଼ର ଗୋଟିଏ ପଲକା ବା ଛୋଟ ସୁଡ଼ଙ୍ଗ ଭିତରେ ଗଇ ପଶିଗଲା । ତା ପଛେପଛେ କୁକୁର ପଶିଗଲା । କିଛି ସମୟ ବିତିବାପରେ କୁକୁର ନ ବାହାରିବାରୁ ବୁଢ଼ା ମଧ୍ୟ ତା ଭିତରେ ପଶିଗଲା । ଦୀର୍ଘ ସମୟ ବିତିଗଲା । ସେ କୁକୁର କିମ୍ବା ଡକରା କେହିହେଲେ ବାହାରିଲେ ନାହିଁ । ବ୍ୟସ୍ତହୋଇ ସେହି ପୁଡ଼ା ଛାଡ଼ିଦେଇ ସେ ଡକରି ମଧ୍ୟ ପଲ୍‌କା ଭିତରେ ପଶିଗଲା । ସେମାନେ କେହିହେଲେ ବାହାରିଲେ ନାହିଁ । ସେ ତିନିଜଣ ଯାକ ପଲ୍‌କା ଭିତରେ ପ୍ରାଣ ବିସର୍ଜନ ଦେଲେ । ଆଜି ପର୍ଯ୍ୟନ୍ତ ସେ ଲକ୍‌ଟି ପୁଡ଼ା ପାକ୍‌ନା ପାଲଟି ପାଲ୍‌କା ମୁହଁରେ ପଡ଼ି ରହିଛି । ଏବେ ମଧ୍ୟ ସେଇଟିକୁ ଠେଲିଲେ ଘୁଞ୍ଚେ ନାହିଁ । ତାକୁ ପ୍ରତି ତିନିବର୍ଷରେ ଥରେ ଲୋକମାନେ ପୂଜା କରନ୍ତି । ପୂର୍ବରୁ ଏହି ପୂଜା ସମୟରେ ଏଠାରେ ଗୋଟିଏ ଯୁବା ଝିଅକୁ ବଳି ଦଆଯାଉଥିବା ଲୋକେ କହନ୍ତି । ଏବେ ବି ସେ ବଳି ବନ୍ଦ୍ ହୋଇନାହିଁ । ସେଥିପାଇଁ ଏଠାକୁ ଯିବାକୁ ଲୋକେ ଡରନ୍ତି । କିନ୍ତୁ ଏହାର ଆଖ ପାଖରେ ଏବେ ଦୁରୁଆ ଓ କୋୟାମାନଙ୍କ ବସତି ବସିଗଲାଣି । ଆଉ ଏଇ ପର୍ବତକୁ କୁହାଯାଉଛି 'ଗଇ ପର୍ବତ' । (ଗଇର ଅର୍ଥ ଗୋଧି) ।

୨.  ଗଇଲି ଟାଙ୍ଗିରି - *ଦେ.ବି. :* ଏକ କୋୟା ଗ୍ରାମର ନାମ । ଜଂଗଲରେ ଗୈୟଳମାନେ ଠିକ୍ ମଇଁଷୀମାନଙ୍କ ଭଳି ଗୋଠ ବାନ୍ଧି ରହନ୍ତି । ଯେଉଁ ଜାଗାରେ ରହନ୍ତି ସେଠାରୁ ଦୂରଦୂରାନ୍ତର ଜଂଗଲକୁ ଚରିବା ପାଇଁ ଚାଲିଯାଇଥିଲେ ମଧ୍ୟ ଯେତେ ରାତି ହେଲେ ବି ସେହି ଜାଗାକୁ ଫେରି ଆସନ୍ତି । ସେ ଜାଗାର ସମସ୍ତ ବୁଟାଲୁଟା ଓ ଘାସପତ୍ର ସେମାନେ ସଫା କରି ସେହି ଟାଙ୍ଗରା ଭୂଇଁକୁ ଖାଲୁଆ କରି ଦେଇଥାନ୍ତି । ସେଇଭଳି ଏକ ଜାଗା ପାଖରେ ବସିଥିବା ଗାଁର ନାମ ହେଉଛି ଗଇଲି ଟାଙ୍ଗିରି । ଗୟଳମାନେ ବାସ କରୁଥିବା ଟାଙ୍ଗରା ଭୂଇଁ ଦୁଇଫୁଟ ଖାଲୁଆ ହୋଇ ରହିଥିଲା । ଏବଂ ଦେବସ୍ଥଳୀ ରୂପେ ବିବେଚିତ ହେଉଥିଲା । ଏଇ କେଇ ବର୍ଷ ତଳେ ଅର୍ଥାତ୍ ଚାରିପାଞ୍ଚ ବର୍ଷ ହେଲା ଲୋକେ ସେ ଜମିକୁ ଚାଷ କରିବା ଆରମ୍ଭ କରିଛନ୍ତି । ଏଠାରେ କୋୟାମାନେ ରହୁଛନ୍ତି ।

୩.  ଗଉଡ଼ ଖଡ଼ିକା - *ଦେ.ବି. :* ଏକ ଔଷଧି ବୃକ୍ଷର ନାମ । ଏହି ଗଉଡ଼ ଖଡ଼ିକା ପତ୍ର ମ୍ୟାଲେରିଆ ଜ୍ୱର ଭଲ ହେବାପାଇଁ ଲୋକେ ଖାଆନ୍ତି । ଏତଦ୍ ବ୍ୟତୀତ ଦେହ ଦରଜ, ଗଣ୍ଠି ବାତ, ଜ୍ୱର ଓ ଅନ୍ୟାନ୍ୟ ରୋଗ ପାଇଁ ମଧ୍ୟ ଏହା ବ୍ୟବହାର ହୁଏ । ଦିଶାରୀ, ଗୁଣିଆ ଓ ଗୁରୁମାଇମାନେ ଏହି ଗଉଡ଼ ଖଡ଼ିକାକୁ ସମସ୍ତ ଔଷଧୀ ବୃକ୍ଷର ଜନନୀ ରୂପେ ମାନନ୍ତି ଓ ଏଥିରେ ସିଦ୍ଧିଲାଭ କରିବାପାଇଁ ତିଥି, ବାର, ନକ୍ଷତ୍ର ଅନୁଯାୟୀ ଏହର ପୂଜାର୍ଚ୍ଚନା କରନ୍ତି । ଏଥିରେ ସିଦ୍ଧିହାସଲ ନକଲେ ଏମାନଙ୍କର କୌଣସି ମନ୍ତ୍ର ବା ଔଷଧ କାମଦିଏ ନାହିଁ ବୋଲି ଲୋକ ବିଶ୍ୱାସ ।

୪.  ଗଂଜା - *ଦେ.ବି. :* ଗାଣ୍ଡା, ବାରିକ ବା ଚାଲାଣ । ପ୍ରତ୍ୟେକ ଗ୍ରାମରେ ଗ୍ରାମର ଜାନିଯାତ୍ରା, ହାନିଲାଭ, ଭଲମନ୍ଦ ପାଇଁ ଗ୍ରାମସଭା ଆହ୍ୱାନ କରୁଥିବା ଲୋକଙ୍କୁ ଗଂଜା କୁହାଯାଏ । ତେବେ ଏହା ଖୁବ୍ ସୀମିତ ଜାଗାରେ ପ୍ରଚଳିତ । ଦ୍ରଷ୍ଟବ୍ୟ 'ଗାଣ୍ଡା' ।

୫.  ଗଡ଼ମ୍ - *ଦେ.ବି. :* ଗୋଟିଏ ପ୍ରକାରର ଦେଣନେଣ କାରବାର । ନଗଣ୍ୟ ମୂଲ୍ୟଦେଇ ବହୁମୂଲ୍ୟର ଜିନିଷ ବଳାତ୍କାରରେ ହାସଲ କରିବା । କୋରାପୁଟ ଜିଲ୍ଲାର ଆଦିବାସୀ ମାନଙ୍କ ଘରୁ ଛେଳି, କୁକୁଡ଼ା, ପାରା, ମେଣ୍ଢା, କଦଳୀକାନ୍ଧି ଆଦି ଖୁବ୍ କମ୍ ପଇସା ଦେଇ ବଳାତ୍କାରରେ ଛଡ଼ାଇ ନେବାକୁ 'ଗଡ଼ମ୍' କହନ୍ତି । ଆଦିବାସୀମାନଙ୍କ ନିର୍ଦ୍ଧାରିତ ମୂଲ୍ୟଠାରୁ କମ୍ ମୂଲଚାଲ କଲେ 'କାହିଁକି 'ଗଡ଼ମ୍' କରୁଚୁ ବାବୁ' ବୋଲି

କହନ୍ତି । ପୂର୍ବର ସାହୁକାରମାନେ ଅଭ୍ୟନ୍ତର କୋରାପୁଟର ଗାଁ ମାନଙ୍କୁ ଯାଇ ଆଦିବାସୀର ବାଡ଼ରେ, ଜମିରେ, ଥିବା କଂଚା ଶସ୍ୟକୁ ନାମକୁ ମାତ୍ର ଦରରେ ମୂଲଚାଲ କରି ପାଚି ସମୟରେ ଆସି ତାହା ଅମଳ କରି ନେଉଥିଲେ । ଏହି ପ୍ରଥାକୁ ମଧ୍ୟ 'ଗଡ଼ମ୍' କୁହାଯାଏ । ଆଜିକାଲି ମଧ୍ୟ ଏ ପ୍ରକାର କଂଚା ଫସଲର ମୂଲଚାଲ ପ୍ରଥା ବୃକ୍ଷର ଫଳ କ୍ଷେତ୍ରରେ ପ୍ରଚଳିତ । ଯେପରିକି ଆମ୍ବ, ପଣସ, ତେନ୍ତୁଳି, ସିମିଳି ତୁଳା ଇତ୍ୟାଦି ।

୬. **ଗଣ୍ଡ** - *ଦେ.ବି. :* ଏକ ଆଦିବାସୀ ଗୋଷ୍ଠୀ ନାମ

ଏହି ଆଦିବାସୀ ଗୋଷ୍ଠୀର ଲୋକମାନେ ନବରଂଗପୁର ଜିଲ୍ଲାର ବିଭିନ୍ନ ଅଞ୍ଚଳ ସମେତ କୋରାପୁଟ ଜିଲ୍ଲାର ତଥା ପଶ୍ଚିମାଞ୍ଚଳରେ ତଥା କଳାହାଣ୍ଡିର ସିନାପାଲି ଅଞ୍ଚଳରେ ବହୁ ସଂଖ୍ୟାରେ ବସବାସ କରନ୍ତି । ଏଥିସହ ପଡ଼ୋଶୀ ଛତିଶଗଡ଼ ରାଜ୍ୟର ବସ୍ତର ଜିଲ୍ଲାରେ ମଧ୍ୟ ଏମାନେ ସଂଖ୍ୟାଧିକ ଭାବେ ଅବସ୍ଥାପିତ ଥିବା ଜଣାଯାଏ । ଏମାନେ ଗୋଣ୍ଡି ଭାଷାରେ କଥା କହନ୍ତି । ଏମାନଙ୍କ ଭାଷାର ନିର୍ଦ୍ଦିଷ୍ଟ ଲିପି ନାହିଁ । ଏମାନଙ୍କ ଠାରୁ ଭୂଞ୍ଜିଆ, ଭତରା, ପରଘରିଆ, ପହରିଆ, ପ୍ରଧାନ, ଭୀମା, ଅଗରିଆ ପ୍ରମୁଖ ସଂପ୍ରଦାୟ ମାନ ସୃଷ୍ଟି ହୋଇଛି । କୁହାଯାଏ ଉମରକୋଟ ମାଳ ଅଞ୍ଚଳରୁ ବାହାରିଥିବା ଭାସ୍କେଲ ନଦୀର ଜନ୍ମଦାତା ଏଇ ଗଣ୍ଡ ଗୋଷ୍ଠୀର ପୂର୍ବ ପୁରୁଷ । ଥରେ ଜଣେ ଗଣ୍ଡ ଯୁବକ ଶିକାର କରି ଯାଇଥିବା ଅବସରରେ ନିର୍ଜନ ବଣ ମୂଳକରେ ଏକ ହରିଣୀକୁ ଶିକାର କରିବା ଉଦେଶ୍ୟରେ ଯେଉଁ ଶର ମାରିଥିଲା, ତାହା ହରିଣୀ ଦେହରେ ନ ବାଜି ଯେଉଁ ପର୍ବତରେ ଲାଖି ଯାଇଥିଲା, ସେଇଠୁ ଜନ୍ମ ନେଇଥିଲା ଗୋଟିଏ ନଈ । ଗଣ୍ଡ ଯୁବକଟି ଶିକାର ଖୋଜିଖୋଜି ଯାଇ ଏକ ଘଞ୍ଚ ଜଂଗଲ ମଧ୍ୟରେ ଶିକାର ପଶୁ ପରି ଦିଶୁଥିବା ଏକ ଶିଳାଖଣ୍ଡରେ ନିଜ ଶରଟି ଲାଗିଥିବା ଦେଖି ଶରଟି ଉଠାଇ ଆଣିବା ବେଳକୁ ଏଥିରୁ ଝରି ଆସିଥିଲା ଏକ ଜଳସ୍ରୋତ ଏବଂ ଏଇ ଜଳସ୍ରୋତ ସମୟକ୍ରମେ ଏଇ ଛୋଟ ନାଳ ରୂପେ ପ୍ରବାହିତ ହୋଇ ପରେ ଏଇ ନଈର ରୂପ ନେଇଥିଲା । ଏଇ ନଈ କୂଳରେ ଅନେକ ଗଣ୍ଡ ସଂପ୍ରଦାୟ ଏବେବି ବସବାସ କରନ୍ତି । ଏମାନଙ୍କ ପରମ୍ପରାର ଅନେକ କାହାଣୀ ଏହି ନଦୀ ସହିତ ସଂପୃକ୍ତ ଥିବା ଜାଣିବାକୁ ମିଳିଥାଏ । ଏମାନଙ୍କ ବିବାହ ପରମ୍ପରାରେ ଭାସ୍କେଲ୍ ନଦୀକୁ ଏକ ପବିତ୍ର ମାଧ୍ୟମ ରୂପେ ଗ୍ରହଣ କରାଯାଏ । ବିବାହ ସ୍ଥିରୀକୃତ ହେବାପରେ ବରକନ୍ୟା ନଦୀକୂଳକୁ ପୁରୋହିତ ସହିତ ଯାଆନ୍ତି । ନଈର ଦୁଇକୂଳରେ ଦୁଇଟି ଖାଡ଼ି ପୋତି ଦିଆଯାଏ ଓ

ତା'ର ଅଗରେ ସୂତା ବାନ୍ଧି ୨ଟି ସୂତାକୁ ଏକତ୍ର ବାନ୍ଧି ଦେଇ ଏହି ସୂତା ମଝିରେ ପୁରୋହିତ ଜଳସ୍ରୋତରେ ଶୋଇ ରହେ । ବରକନ୍ୟା ପୁରୋହିତଙ୍କୁ ଡେଇଁ ଏହି ସ୍ରୋତକୁ ସାତଥର ପାର ହୋଇଥାନ୍ତି । ଏହି ପ୍ରକ୍ରିୟା ସହିତ ନିଜ ଗୋଷ୍ଠୀ ବ୍ୟତୀତ ଗଣ୍ଡ ଗୋଷ୍ଠୀର ଅନ୍ୟ ସାତଟି କୁଳକୁ ସ୍ମରଣ କରାଯାଏ । କୁହାଯାଏ ଭାସ୍କେଲ୍ ନଦୀର ଆଦ୍ୟ ସନ୍ଧାନ କରିଥିବା ଗଣ୍ଡ ଯୁବକଠାରୁ ଜନ୍ମ ନେଇଥିବା ଆଠଟି ସନ୍ତାନ କାଳକ୍ରମେ ବିଭାଜିତ ହୋଇ ଆଠଟି ବର୍ଗ ରୂପେ ଭିନ୍ନଭିନ୍ନ ଅଞ୍ଚଳରେ ବସତି ସ୍ଥାପନ କରି ନିଜର ରାଜୁତି ବିସ୍ତାର କରିଥିଲେ ।

୭. **ଗଣ୍ଡିଆ ମାର୍କାପାଲି** - *ଦେ.ବି. :* ଗୋଟିଏ ଗ୍ରାମର ନାମ ବିଶେଷ । ମାଥିଲିର ପଶ୍ଚିମକୁ ଥିବା କୋଲାବ ନଦୀର ଦୁଇକୂଳରେ ମୁଖ୍ୟତଃ ବସତି ବାନ୍ଧିଥିଲେ ମଧ ପ୍ରଦେଶର ଗଣ୍ଡ, ହାଲ୍‌ବି ଓ ଦୁରୁଆମାନେ । ତାଙ୍କ ସହ ସ୍ଥାନୀୟ ଭାବେ ରହିଥିଲେ କିଛି ଭୂମିଆ, ମାଟିଆ ଓ କୋୟା । କୋୟା ଓ ଗଣ୍ଡିଆ ଭାଷା ଭିତରେ ବେଶ୍ କିଛି ଫରକ୍ ଥିଲେ ମଧ ଧୀରେଧୀରେ ଏହା ଦୂର ହୋଇଛି । ଗଣ୍ଡିଆମାନେ ଆଜିକାଲି ନିଜକୁ ଗଣ୍ଡିଆ କହିବାକୁ ଲାଜ ପାଉଛନ୍ତି । ତଥାପି ଏହି ଅଞ୍ଚଳରୁ ଉଠି ଆସି ବୀରଲକ୍ଷ୍ମଣପୁର ପାଖରେ ଗାଁ ବାନ୍ଧିଥିବା କିଛି ଗଣ୍ଡିଆମାନଙ୍କର ବସତିକୁ ଏବେ ମଧ ଲୋକମୁଖରେ କୁହାଯାଉଛି ଗଣ୍ଡିଆ ମାର୍କାପାଲି । କିନ୍ତୁ ଏହାର ରେଭିନ୍ୟୁ ନାଁ ହୋଇଛି କେବଳ ମାର୍କାପାଲି । ଗଣ୍ଡିଆ ଭାଷାରେ ମାର୍କା ଶବ୍ଦର ଅର୍ଥ ହେଉଛି ଆମ୍ବ । ଆମ୍ବ ଜଂଗଲ ଭିତରେ ବସିଥିବା ଏହି ଗଣ୍ଡିଆ ଗାଁର ନାମ ଯଥାର୍ଥରେ ଦିଆଯାଇଥିଲା ଗଣ୍ଡିଆ ମାର୍କାପାଲି ।

୮. **ଗତର / ଗୋତର ପର୍ବ** - *ଦେ.ବି. :* ଏକ ପର୍ବ ବିଶେଷର ନାମ । ଏହା ଗାଦବା ମାନଙ୍କର ଏକପ୍ରକାର ଦଶାହ କର୍ମ । ଯାହା ୪/୫ବର୍ଷରେ ଥରେ ମାଘ ମାସରେ ହୁଏ । ଏମାନେ ଡୁମ୍ମା / ମୃତ ବ୍ୟକ୍ତିର ଆତ୍ମାକୁ ଶୁଦ୍ଧ କରିବା ପାଇଁ ଏ ପର୍ବ ପାଳନ କରନ୍ତି । ଯେଉଁମାନଙ୍କର ଆର୍ଥିକ ସ୍ଥିତି ସ୍ୱଚ୍ଛଳ ନଥାଏ, ସେମାନେ ମୃତ ବ୍ୟକ୍ତିର ଶୁଦ୍ଧିକ୍ରିୟା ଅସଂପୂର୍ଣ୍ଣ ରୂପେ କରିଥାନ୍ତି । ଏହା ହିନ୍ଦୁମାନଙ୍କ ଏକାଦଶାହ ଓ ଦ୍ୱାଦଶାହ କର୍ମପରି, କିନ୍ତୁ ଏହା ଭିତରେ ବହୁ ପାର୍ଥକ୍ୟ ରହିଛି । ଯେତେବେଳେ ସେମାନଙ୍କ ପାଖରେ ସମ୍ବଳ ହୁଏ, ସେତେବେଳେ ସେମାନେ ମୃତ ବ୍ୟକ୍ତିର ଶୁଦ୍ଧିକର୍ମ କରିଥାନ୍ତି । ଏହା ଏକ ସାମୂହିକ ଓ ସ୍ୱତନ୍ତ୍ର ପର୍ବ ତଥା ବିସ୍ତାରିତ ଓ ଖର୍ଚ୍ଚ ବହୁଳ ପର୍ବ ।

ଏହି ପର୍ବ ସମୟେ ସମୟେ ମାସମାସ ଧରି ଚାଲେ । ଗତର ମନାଉଥିବା ପ୍ରତ୍ୟେକ ପରିବାର ତଥା ସେ ପରିବାରର ସମସ୍ତ ବନ୍ଧୁବାନ୍ଧବ ଏଥିରେ ସାମିଲ୍ ହୋଇଥାନ୍ତି । ଗୋଟିଏ ଗତରରୁ ପରବର୍ତ୍ତୀ ଗତର ମଧ୍ୟରେ ମୃତ୍ୟୁବରଣ କରିଥିବା ଧନୀ ଗରିବ ନିର୍ବିଶେଷରେ ସମସ୍ତଙ୍କର ଶୁଦ୍ଧିକ୍ରିୟା କରାଯାଏ । ଏହି ପର୍ବରେ ସଗୁଭାଇ / ଚଗୁଭାଇମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପ୍ରତ୍ୟେକ ମୃତ ବ୍ୟକ୍ତିଙ୍କ ନିମିତ୍ତ ଗୋଟିଏ ଗୋଟିଏ ପୋଢ଼ / ମଇଁଷି ପୁରୁଷ ପାଇଁ ପୋଢ଼ ଓ ସ୍ତ୍ରୀ ପାଇଁ ମଇଁଷି ଦରକାର ହୁଏ । ମୃତକର ଦେହର ବର୍ଣ୍ଣକଳା ବା ଗୋରାକୁ ନେଇ ପୋଢ଼ /. ମଇଁଷି କଳା ବା କସରା ରଂଗ / ବର୍ଣ୍ଣର କିଣାଯାଇଥାଏ । ଗ୍ରାମବାସୀମାନଙ୍କ ସମୂହ ଚାନ୍ଦା ଟଙ୍କାରେ ମଧ୍ୟ ଗୋଟିଏ ପୋଢ଼ (କୁଟିପୋଢ଼) କିଣା ଯାଇଥାଏ । ଏହା ଗତରର ମାସେ ପୂର୍ବରୁ କିଣାଯାଇ ଶିମିଳି ଗଛର ଶାଖାରେ ଅନ୍ୟ ପୋଢ଼ ମଇଁଷି ସହ ଏକତ୍ର ବାନ୍ଧି ରଖାଯାଏ । ପରବରେ ବ୍ୟବହୃତ ସମସ୍ତ ଖାଦ୍ୟ ଏମାନଙ୍କୁ ଦିଆଯାଏ । ମଇଁଷି /ପୋଢ଼ମାନଙ୍କୁ ଏହି ପର୍ବ ପାଳନ ଅବସରରେ ମଦ, ପେଣ୍ଡମ, ମାଂସ ଇତ୍ୟାଦି ପରିବେଷଣ କରାଯାଇଥାଏ । ତା ସଂଗେସଂଗେ ନାଚ, ଗୀତ, ପରିବେଷଣ କରାଯାଇଥାଏ । ଏ ପର୍ବ ପାଳନ ନିମିତ୍ତ ବହୁରୀତି ଓ ନୀତି ପରମ୍ପରା ପାଳିବାକୁ ହୁଏ । ଯେପରିକି, ରାଳିପତ୍ର ସଂଗ୍ରହ, "ବଣ୍ଡାଲ ସୋସକ ୟା ନାଇ" (ପୋଢ଼ ନିର୍ବାଚନ / ବାଛି କିଣିବା), ସିକ (ଗତର ପୋଢ଼ର ଖାଦ୍ୟ), ଲୁର ଭୋଜି, (ମିଳିମିଶି ଭୋଜି କରିବା), ଖୁଣ୍ଟିପୋଢ଼, ପାନି ଧୋଇଏନି ଭୋଜି, ପାକନା ତୋଳା (ସମାଧି ପଥର ନିର୍ବାଚନ କରିବା) ସ୍ମୃତି ପଥର ଗତର ପଡ଼ିଆକୁ ନେବା, ଗୁରୁମାଈ ଦିଶାରୀ, ସୁରୁଭାଇ ଇତ୍ୟାଦି ।

ଏହିପର୍ବ ଗାଦବା ମାନଙ୍କର ଏକ ମହାନ୍, ଆଡ଼ମ୍ବର ପୂର୍ଣ୍ଣ ତଥା ଖର୍ଚ୍ଚ ବହୁଳ ପର୍ବ । ଶାନ୍ତି, ଶୃଙ୍ଖଳା ରକ୍ଷା ପାଇଁ ଅଫିସରଙ୍କର ମଧ୍ୟ ଅନୁମତି ଆବଶ୍ୟକ ହୁଏ ଓ ପୋଲିସ୍ ମଧ୍ୟ ଏଥିପାଇଁ ସହଯୋଗ କରିଥାଏ । ଏହି ପର୍ବରେ ପାଳନକର୍ତ୍ତାଙ୍କୁ ଧାନ, ଚାଉଳ, ମୁଗ, ମାଣ୍ଡିଆ, ପୋଢ଼, ଛେଳି, କୁକୁଡ଼ା, ନଡ଼ିଆ, ଧୋତି ଆଦି ଯୋଗାଡ଼ କରିବାକୁ ପଡ଼ିଥାଏ । ଏ ପର୍ବର ବହୁ ନୀତି ନିୟମ ରହିଛି । ଆର୍ଥିକ ଅବସ୍ଥା ଅନୁସାରେ ପାଳନକର୍ତ୍ତା ତାହା କରିଥାନ୍ତି । ଏଥିରେ ସମସ୍ତଙ୍କର ସବୁ ପ୍ରକାର ସହଯୋଗ ମଧ୍ୟ ଥାଏ । ଗତର ପୂର୍ବଦିନ ମୃତବ୍ୟକ୍ତିଙ୍କୁ ମନେ ପକାଇ ପରିବାରର ସମସ୍ତେ ନିଜନିଜ ପୋଢ଼କୁ କୁଣ୍ଢାଇ ବାହୁନି କାନ୍ଦୁଥାନ୍ତି । ଗତରଦିନ ସକାଳେ ଏହି ରାହୁ ପୋଢ଼ମାନଙ୍କୁ

ବଳି ଦିଆଯାଏ । ଅବିଭକ୍ତ କୋରାପୁଟ ଜିଲ୍ଲାରେ ଏକ ପ୍ରବାଦ ରହିଛି, ଯହିଁରୁ 'ଗତର ପର୍ବ'ର ମହାନତା ଉପଲବ୍ଧ । ଯଥା :-

"ରାଜାର୍ ଦଶରା, ଗଦ୍‌ବାର ଗତର
ଝୋଡ଼ିଆର ନାନ୍ଦୀ, ମାଲୀର ବାଲି ।"

ସମୟେ ସମୟେ ଦେଖାଯାଏ ଯେ, ବୃଦ୍ଧ, ବୃଦ୍ଧାମାନଙ୍କର ପୁଅ ନଥିଲେ ସେମାନେ ମୃତ୍ୟୁବରଣ କରିବା ପୂର୍ବରୁ ନିଜ 'ଗତର' କରିଥାନ୍ତି । ଏମାନଙ୍କୁ ପର୍ବ ଅବସରରେ ଲୁଚାଇ ରଖାଯାଏ । ପର୍ବ ସମାପ୍ତିପରେ ସେମାନଙ୍କୁ ଲୁଚାଇ ରଖିଥିବା ସ୍ଥାନରୁ ବାହାର କରାଯାଏ । ସମୟେ ସମୟେ ପର୍ବ ସମୟରେ ଏମାନଙ୍କ ମୃତ୍ୟୁ ମଧ୍ୟ ଘଟିଥାଏ । ଏଭଳି ମୃତ୍ୟୁକୁ ଶୁଭ ବୋଲି ବିବେଚନା କରାଯାଏ । ପୋଢ଼ ବଳି ପୂର୍ବରୁ ବନ୍ଧୁବାନ୍ଧବ ଓ ସଂପର୍କୀୟମାନେ ଆସି ଏହି ପୋଢ଼ମାନଙ୍କୁ ଟୀକା ପିନ୍ଧାଇ ବନ୍ଦାପନା କରନ୍ତି । ତାପରେ ପ୍ରତ୍ୟେକେ ନିଜ ନିଜର ପରିଚୟ ଦିଅନ୍ତି । ଏହାପରେ ହୁଏ ଜୁହାର ଭେଟ । ଦିଶାରୀ ନିର୍ଦ୍ଦିଷ୍ଟ ସମୟର ସୂଚନା ଦେଇ ନିଜ ପସନ୍ଦର ପୋଢ଼ ଦେହରେ ବାଡ଼ି ଛୁଆଇଁ ଦିଏ, ତାପରେ ଶିଶା ବଳିଖଣ୍ଡାରେ ନିର୍ବାଚିତ ପୋଢ଼ଟିକୁ ଦୁଇ ଚୋଟ ହାଣେ । ଏହାପରେ ଅନ୍ୟଜାତିଭାଇ ମାନେ ଗୋଟିଏ ଗୋଟିଏ ପୋଢ଼କୁ ଟାଣିନେଇ ହାଣନ୍ତି ଓ ମୁଣ୍ଡ ସବୁକୁ ଏକତ୍ର ରଖନ୍ତି । ଏହି ମାଂସରେ ଗୋଷ୍ଠୀ ଭୋଜି ହୁଏ ।

୯. ଗତର ମୁଣ୍ଡା - *ଦେ.ବି. :* ଗତର ପର୍ବ ଅନୁଷ୍ଠିତ ହେଉଥିବା ପଡ଼ିଆ । ଯେଉଁଠାରେ ଖୁଣ୍ଟପୋଢ଼ / ମଇଁଷି (କୁଟୀପୋଢ଼)କୁ ସେମିଲି ମୁଣ୍ଡା (ସେମିଲି ଗଛର ଖୁଣ୍ଟ) ପୋତି ବନ୍ଧାଯାଇଥାଏ ସେହି ସ୍ଥାନକୁ (ପଡ଼ିଆକୁ) 'ଗତରମୁଣ୍ଡା' କୁହାଯାଏ । ଏହି ସ୍ଥାନଟି ଗ୍ରାମଠାରୁ ଅଳ୍ପ ଦୂରରେ ଥାଏ । ଅର୍ଥାତ୍, ଗ୍ରାମ ମଧ୍ୟରେ ନଥାଏ ।

୧୦. ଗତିଆ - *ଦେ.ବି. :* (୧) ଗୋତି ଖଟୁଥିବା ଲୋକ ବା ହଳିଆ / ମୂଲିଆ । (୨) କୌଣସି ଲୋକ ଅଭାବ ଅସୁବିଧାରେ ପଡ଼ି ଧନ ଥିଲାବାଲା ଲୋକ ବା ସୁଧଖୋର ବ୍ୟବସାୟୀ ଠାରୁ ଟଙ୍କା କରଜ ନେଲେ, ସେ କରଜ ସୁଝିବା ଯାଏ ବିନା ଦରମାରେ ଯଦି କାମ କରେ, ତାକୁ ଗୋତି ବା ଗୋତିଆ କହନ୍ତି । ଏହି କରଜ ସୁଝିବା ପାଇଁ ଲୋକଟି ସାରା ଜୀବନ କାମ କଲେ ମଧ୍ୟ ତାର କରଜ ସୁଝେ ନାହିଁ କି, ସେ ଗୋତିରୁ ମୁକ୍ତି ପାଇପାରେ ନାହିଁ । ତା ମୃତ୍ୟୁପରେ ତା ପୁଅ ସେହି କରଜଦାତା

ଘରେ ଗୋତି ଖଟିଥାଏ । ଏ ପ୍ରଥାକୁ ସରକାର ଦେଶ ସ୍ୱାଧୀନ ହେଲାପରେ ଆଇନ୍ ପ୍ରଣୟନ କରି ଉଠାଇ ଦେଇଛନ୍ତି । ତଥାପି କୋରାପୁଟ, କଳାହାଣ୍ଡି ଓ ବଲାଙ୍ଗିର ଜିଲ୍ଲା ମାନଙ୍କରେ ଏହା ପାରମ୍ପରିକ ଭାବେ ପ୍ରଚଳିତ ରହିଛି । (ଦ୍ର: ଗୋତି ।)

୧୧. ଗାଦ୍‌ବା - *ଦେ.ବି. :* ଏକ ଆଦିବାସୀ ସଂପ୍ରଦାୟ ବିଶେଷ । କୋରାପୁଟ ଜିଲ୍ଲାର ନନ୍ଦପୁର, ପାଡୁଆ, ଢୋଲାପୁଟ, ବୈପାରୀଗୁଡ଼ା, କୁନ୍ଦ୍ରା ଆଦି ଏକ ବିସ୍ତୀର୍ଣ୍ଣ ଅଞ୍ଚଳରେ ବାସ କରୁଥିବା ଏକ ପୁରାତନ ଆଦିବାସୀ ସଂପ୍ରଦାୟକୁ ଗଦବା କୁହାଯାଏ । ଏମାନେ ଆନ୍ଧ୍ରପ୍ରଦେଶର ଗୋଦାବରୀ ନଦୀ ଅବବାହିକାରୁ ଆସିଥିବାରୁ ଏମାନଙ୍କୁ ଗାଦବା କୁହାଯାଏ । ନିଜର ସାମାଜିକ କାର୍ଯ୍ୟଧାରାକୁ ନେଇ ଗାଦବାମାନେ ତିନିଶ୍ରେଣୀରେ ବିଭକ୍ତ ହୋଇ ଯାଇଛନ୍ତି ଯଥା (୧) ବଣ୍ଡା ଗାଦ୍‌ବା, (୨) ଓଲାର ଗାଦବା, (୩) ପାରେଙ୍ଗା ବା ଉରାଙ୍ଗ ଗାଦବା । ଏମାନଙ୍କର ଭାଷା ଗୁତବ ।

୧୨. ଗନ୍ଧିପାଲି - *ଦେ.ବି. :* ଗୋଟିଏ ଗ୍ରାମର ନାମ ବିଶେଷ । ପର୍ବତ ଯେଉଁଠି ଚକ୍ରାକାରରେ ଘୁରିଘୁରି ଲମ୍ବିଥାଏ ଏବଂ ମଝିରେ ଏକ ଉପତ୍ୟକା ସୃଷ୍ଟି କରିଥାଏ, ତାହା ଅତ୍ୟନ୍ତ ଉର୍ବର ଓ ଗାଁ ବସିବା ପାଇଁ ଉତ୍କୃଷ୍ଟ ସ୍ଥଳୀ ରୂପେ ଆଦିବାସୀମାନଙ୍କ ଦ୍ୱାରା ବିବେଚିତ ହୋଇଥାଏ । ଏହି ଉପତ୍ୟକାକୁ ଦେଶିଆ ଭାଷାରେ ଗନ୍‌ଭି ବା ଗନ୍ଧି କୁହାଯାଏ । ଏହିଭଳି ତୁଳସୀ ପର୍ବତର ଗନ୍ଧିରେ ଅବସ୍ଥିତ ଏକ ଗାଁର ନାଁ ଗନ୍ଧିପାଲି । ମୁଖ୍ୟତଃ ଏହା ହରିଜନମାନଙ୍କ ଗାଁ ହୋଇଥିଲେ ହେଁ ଏଠାରେ କନ୍ଧ, ଗଉଡ଼ ଓ ଝଡ଼ିଆ ପରଜାମାନେ ମଧ୍ୟ ରହୁଛନ୍ତି ।

୧୩. ଗୟଲ ନୃତ୍ୟ - *ଦେ.ବି. :* ଏକ ନୃତ୍ୟ ବିଶେଷ । (ଗଉରା ଏନନ୍ଦନା) : କୋୟା, ଗଣ୍ଡ ଆଦିବାସୀ ଗୋଷ୍ଠୀର ବେଣ୍ଟଯାତ୍ରା (ଚୈତ୍ର ପର୍ବ) କାଳୀନ ଏକ ବିଶେଷ ନୃତ୍ୟ । ଗୟଲ, ନୃତ୍ୟ ସମ୍ବନ୍ଧୀୟ ଏକ କିମ୍ବଦନ୍ତୀ କହେ ।

ବହୁବର୍ଷ ପୂର୍ବେ କୋଇତୁର ଓ (ଗଣ୍ଡ ଓ କୋୟା ଆଦିବାସୀ ଗୋଷ୍ଠୀ) ମାନଙ୍କ ବିଶ୍ୱାସ ଥିଲା ଯେ, ବଣପଶୁ ଶିକାର କରି ସେହି ପଶୁର ରକ୍ତ ଦାର୍ଣ୍ଣିମାତା (ଧରିତ୍ରୀ)କୁ ସମର୍ପଣ କଲେ ଭଲ ବର୍ଷା ହେବ ଓ ମାଟି ମା' ଭଲ ଫସଲ ଦେବେ, ଏହି ବିଶ୍ୱାସକୁ ମୂଳକରି କୋଇତୁରମାନଙ୍କ ପୂର୍ବ ପୁରୁଷମାନେ ଥରେ ଚୈତ୍ର ପର୍ବ ପାଳନ କରି ଶିକାରକୁ ଗଲେ । ପ୍ରଥମେ ସେମାନେ ଗୋଟିଏ ଗୟଲକୁ ଶିକାର

କଲେ । ଗୟଳକୁ ବଣୁଆ ଫୁଲର ମାଳ, କଅଁଳ ପତ୍ରର ଡାଳରେ ମଣ୍ଡଣି କରି କାନ୍ଧେଇ ଗ୍ରାମ ଦେବୀଙ୍କ ନିକଟରେ ବାଜା ବଜାଇ ମହା ଆନନ୍ଦରେ ବୁଢ଼ାବୁଢ଼ୀ ପିଲାଛୁଆ ନଚାଇଲେ । ଏହି ନୃତ୍ୟ ଅତି ଚମତ୍କାର ଦିଶିଲା ଏବଂ ମନ ଆକର୍ଷକ ହେଲା । ଏହାପରେ ସେମାନେ ଯେତେଥର ଶିକାରକୁ ଗଲେ ଭଲ ଶିକାର ସବୁଦିନ ପାଇଲେ ।

ଏଣୁ ଭଲ ଶିକାର ମିଳିବା ବିଶ୍ୱାସରେ ଚୈତ୍ର ପର୍ବ ଶେଷ ଦିନ ଗୟଳର ଛାଞ୍ଚକରି ଗୟଳ ଶିଙ୍ଗ ଯୋଡ଼ି ଗାଁ ସାରା ଲୋକ ନାଚନ୍ତି । ସେହିଦିନଠାରୁ ବାଉଁଶ ପାତିଆରେ ଟୋକେଇବୁଣି ସେଥିରେ ଦୁଇଟି ଗୟଳ ଶିଙ୍ଗ ଯୋଡ଼ି ସେଥିରେ ଲାଲ, କଳା ଆଦି ରଂଗବେରଂଗର କନା ବେଢ଼ାଇ, ଦୁଇ ପାର୍ଶ୍ୱରେ ଧଳା ପୋହଳା ବା କଉଡ଼ିର ମାଳ ବାନ୍ଧି କାଠ ମାଦଳ ବା ଟୁଡ଼ରା ବାଦ୍ୟର ନିନାଦର ନାଚ କରନ୍ତି । ସେହି ଗୟଳ ଶିଙ୍ଗ ବନ୍ଧା ଟୋକେଇ ମଧରେ ମୟୁରପୁଚ୍ଛ କିମ୍ବା କଳାବଣ କୁକୁଡ଼ାର ଘନକୃଷ ଉଜ୍ଜ୍ୱଳ ପର ଖୋସା ଯାଇଥାଏ । ପୁରୁଷମାନେ ଲାଲ କିମ୍ବା କଳା ଲୁଗା ପିନ୍ଧି ନାଚ କରନ୍ତି ଏବଂ ସେମାନଙ୍କ ପାର୍ଶ୍ୱରେ ସ୍ତ୍ରୀମାନେ ଝୁମୁକା ବାଡ଼ି ଧରି ନୃତ୍ୟ କରନ୍ତି । ସଂପ୍ରତି ଏହି ଗୟଳ ନୃତ୍ୟ ମାଲକାନଗିରି ଜିଲ୍ଲାର କୋୟା, ନବରଂଗପୁର ଜିଲ୍ଲାର ଗଣ୍ଡ ତଥା ଛତିଶଗଡ଼ର ଗୋଣ୍ଡାମାନଙ୍କର ସର୍ବଶ୍ରେଷ୍ଠ ନୃତ୍ୟଭାବେ ସର୍ବଭାରତୀୟସ୍ତରରେ ମାନ୍ୟତା ଲାଭ କରିଛି ।

୧୪. ଗରଣ୍ଡି ନୃତ୍ୟ / ଯାତ୍ରା - *ଦେ.ବି. :* ଏକ ପ୍ରକାରର ନୃତ୍ୟ ବିଶେଷ । ରଣପା ନାଚ । ଦୁଇଟି କାଠ ବାଡ଼ିରେ ପାଦ ଥାପିବା ପାଇଁ ୩/୪ ଫୁଟ ଉପରେ ଦୁଇଟି କାଠ ଖଞ୍ଜା ଯାଇଥାଏ । ପିଲାମାନେ ଏହା ଉପରେ ଚଢ଼ି ଯାଆ ଆସ କରନ୍ତି । ଆଷାଢ଼ ମାସରେ ଗରଣ୍ଡି ଯାତ୍ରା ସରିବା ପରେ ଏହା ଚଢ଼ିବା ବିଧି । ଭାଦ୍ରବ ମାସରେ ଏହି ଗରଣ୍ଡି ସବୁକୁ ଏକାଠି ପୂଜାକରି ବିସର୍ଜନ ଦିଆଯାଏ । ତାହାପରେ ତା ଉପରେ ଆଉ କିଏ ଚଢ଼ନ୍ତି ନାହିଁ ।

୧୫. ଗରନ୍ ଦୋଷ୍ - *ଦେ.ବି. :* ସୂର୍ଯ୍ୟ ଓ ଚନ୍ଦ୍ର ଗ୍ରହ ଦୋଷ । ଆଦିବାସୀ ସଂପ୍ରଦାୟରେ ଗର୍ଭବତୀ ସ୍ତ୍ରୀ ଲୋକମାନେ ସୂର୍ଯ୍ୟପରାଗ ଓ ଚନ୍ଦ୍ରଗ୍ରହଣ ସମୟରେ ଘର ବାହାରକୁ ବାହାରନ୍ତି ନାହିଁ । ଏମାନଙ୍କ ବିଶ୍ୱାସ ଯେ ଏହାକଲେ ଜନ୍ମିତ ସନ୍ତାନକୁ ଗ୍ରହଣ ଦୋଷ ଲାଗିବ ଓ ତାର କ୍ଷତି ହେବ ।

୧୬.  **ଗରୁବିଷ** - *ଦେ.ବି. :* ଏକ ପ୍ରକାରର ବୃକ୍ଷଜ ବିଷ । ମହାଗରୁଡ଼ / ପାତାଳ ଗରୁଡ଼ ଶ୍ରେଣୀୟ ବିଷାକ୍ତ ବିଷ ଯାହାର ବାସନାରେ ସାପ ମଧ ପାଖକୁ ଆସେ ନାହିଁ । ଗରୁବିଷ ମୃତ୍ୟୁର କାରଣ ହୋଇଥାଏ । ଗୀତରେ ବର୍ଣ୍ଣିତ :

ତୋ ଲାଗି ଖାଇବି ଗରୁଡ଼ବିଷ /
ଯାଉ ମୋ ଯୁବା ବୟସ । (ଚଇତି ପରବ ଗୀତ) ।

୧୭.  **ଗଲରୀ** - *ଦେ.ବି. :* ଏକ ସାଂଞ୍ଜା ବା ଗୋତ୍ରର ନାମ । ହନୁ ବା ମାଙ୍କଡ଼ । ଏହା ଏକ ପ୍ରକାର ଆଦିବାସୀ ଗୋଷ୍ଠୀର ସାଂଞ୍ଜା । ଏହି ସାଂଞ୍ଜାଧାରୀ ଲୋକମାନେ ମର୍କଟ ବଂଶୀ ବା ମର୍କଟ ଗୋତ୍ର ଭାବେ ଚିହ୍ନିତ ହୋଇଥାନ୍ତି ।

୧୮.  **ଗାଇସେ** - *ଦେ.ବି. :* ମୃତ୍ୟୁ ସଂପର୍କିତ ଏକ ଅନୁଷ୍ଠାନ । ବଣ୍ଡାମାନଙ୍କର ମୃତ୍ୟୁ ସଂସ୍କାରକୁ 'ଗାଇସେ' କୁହାଯାଏ । ବ୍ୟକ୍ତିର ମୃତ୍ୟୁ ହେବାର କିଛିଦିନର ଗାଇସେ କରାଯାଏ । ଗାଇସେ କର୍ମ ହେବା ଯାଏ ପ୍ରତିଦିନ ମୃତ ବ୍ୟକ୍ତିର ସାଏରେମ୍ (ପ୍ରେତାତ୍ମା)କୁ ଭାତ ପାଣି ଓ ସଲପ ଦିଆଯାଏ । ମୃତ୍ୟୁ ସଂସ୍କାର ବେଳେ ଗାଁର ସମସ୍ତଙ୍କୁ ଛେଳି, ଘୁଷୁରି କିମ୍ୱା ଗାଇଟେ ମାରି ଭୋଜି ଦିଆଯାଏ ଏବଂ ମଦ, ସଲପ ପଇବାକୁ ଦିଆଯାଏ ।

୧୯.  **ଗାଓଁ** - *ଦେ.ବି. :* ଗାଁ, ଗ୍ରାମ । ବିଭିନ୍ନ ଆଦିବାସୀ ଗୋଷ୍ଠୀରେ ଗ୍ରାମର ବିଭିନ୍ନ ପ୍ରତିଶବ୍ଦ ଶୁଣିବାକୁ ମିଳେ । ଯଥା : ପୁଟ୍ (ଗ୍ରାମ) : ପଲେକାପୁଟ, କୁମୁଲିପୁଟ, ମକାପୁଟ, କୋରାପୁଟ । ବରଣ୍ଡି : ଦେଓ ବରଣ୍ଡି ପୂଜାରୀ ବରଣ୍ଡି, ସାନବରଣ୍ଡି, ବଡ଼ବରଣ୍ଡି / ଗୁମା : ସାନଗୁମା, ବଡ଼ଗୁମା, ବୋରି ଗୁମା / ପାଲି : ଅନକାପାଲି ଗୋବିନ୍ଦପାଲି, ଟେମୁରପାଲି ଆଦି । ଏହିସବୁ ପୁଟ୍, ବରଣ୍ଡି, ଗୁମା ଓ ପାଲି ହେଉଛି ଆଦିବାସୀ ଗାଓଁର ପ୍ରତିଶବ୍ଦ ।

୨୦.  **ଗାଗଡ଼ା** - *ଦେ.ବି. :* କୁଟୁରି ବା କାତି ପରି ଏକ ଲମ୍ୱା ବେଣ୍ଟଯୁକ୍ତ ଅସ୍ତ୍ର ବିଶେଷ । ଆଦିବାସୀମାନେ ବ୍ୟବହାର କରୁଥିବା ଏକ କାଟିବା ଯନ୍ତ । ଝାଡ଼ ଜଂଗଲ ଭିତରେ ପ୍ରବେଶ କରିବାପାଇଁ ଏବଂ ଉଚ୍ଚଗଛର ତାଳପତ୍ର କାଟିବା ପାଇଁ ଆଦିବାସୀ ଏଇ ଗାରଡ଼ା ନାମ ଯନ୍ତଟିକୁ ବ୍ୟବହାର କରିଥାନ୍ତି । ଅବିଭକ୍ତ କୋରାପୁଟ ଜିଲ୍ଲାର ସବୁ ଶ୍ରେଣୀର ଆଦିବାସୀମାନେ ଟାଙ୍ଗିଆ, କଟୁରୀ, ଫାର୍ସା ପରି ଏହି ଯନ୍ତଟିକୁ

ବ୍ୟବହାର କରନ୍ତି । ଏହି ଯନ୍ତ୍ରଟିର ଆଗପଟ ଦାଆ ପରି ଅଳ୍ପ ବଙ୍କା ହୋଇ ଧାରଯୁକ୍ତ ଓ ସାମାନ୍ୟ ଓସାରିଆ ହୋଇଥାଏ ଏବଂ ବେଣ୍ଟଟି ସରୁ ହୋଇ ବେଶ୍ ଲମ୍ବା ହୋଇଥାଏ । ଏହା ସାହାଯ୍ୟରେ ଉଚ୍ଚଗଛର ତାଳ ପତ୍ରକୁ ସହଜରେ କାଟି ଝାଡ଼ ଜଂଗଲରୁ ଆଦିବାସୀମାନେ ଜାଳେଣିକାଠ, କେନ୍ଦୁପତ୍ର ଇତ୍ୟାଦି ସଂଗ୍ରହ କରିଥାନ୍ତି । ଏହା ଖଣ୍ଡିଏ ଲମ୍ବା ଲୁହାରେ ତିଆରି ହୋଇଥାଏ । ଏହାର ବେଣ୍ଟରେ କାଠ ଲାଗି ନଥାଏ ।

୨୧. ଗାଗଡ଼୍ - *ଦେ.ବି. :* (୧) ସ୍ୱାସ୍ଥ୍ୟ (୨) ଦେହ (୩) ପାଚିଲା ଆମ୍ବ ପରି ହଳଦୀ ଗରଗର୍ ଦେହ । ଉଦାହରଣ : ହାଇ ଟୋକିର ଗାଗଡ଼୍ କାୟ ନିମାନ୍ ଡିଶ୍‌ଲାନି । ଅର୍ଥାତ୍, ସେ ଝିଅର ହଳଦୀ ଗରଗର ଦେହ କେଡ଼େ ସୁନ୍ଦର ଦିଶୁଛି ।

୨୨. ଗାଜୁଲ - *ଦେ.ବି. :* କାଚଚୁଡ଼ି, କାଚରେ ତିଆରି ଶଙ୍ଖା : ଇଂ. -Glass Bengles ଏହା ତେଲୁଗୁ ଭାଷା ଦ୍ୱାରା ପ୍ରଭାବିତ । ଏହା ସାଧାରଣତଃ ପାଣିକାଚ କିମ୍ବା ରଂଗୀନ୍ କାଚ ମଧ ହୋଇପାରେ । କାଚ ନିର୍ମିତ ବିଭିନ୍ନ ଅଳଙ୍କାରକୁ 'ଗାଜୁଲ୍' ଲଗାଇ କୁହାଯାଏ । ଯେପରି ଗାଜୁଲ୍ ମାଲି, ଗାଜୁଲ୍ କଞ୍ଜା ଇତ୍ୟାଦି । କାଚ ନିର୍ମିତ କଳାମାଳା ଆଦିବାସୀ ଝିଅମାନଙ୍କର ଅତିପ୍ରିୟ । ବିବାହିତା, ଅବିବାହିତା ଓ ବିଧବା ସମସ୍ତେ ଏହି

ଗାଜୁଲ ପିନ୍ଧିଥାନ୍ତି । ତେବେ ସ୍ୱାମୀ ମଲା ପରେ ସ୍ତ୍ରୀ ସ୍ୱାମୀର ଶବ ସହ ଯାଇ ବେଢରନା ଠାରେ ଗାଜୁଲ ଖୋଲିଦିଏ ବା ଭାଂଗିଦିଏ । ପୁଣି ଦଶଦିନ

ପରେ ସେ ଗାଜୁଲ ପିନ୍ଧିଥାଏ ।

୨୩. ଗାଙ୍ଗାମା - *ଦେ.ବି. :* ଗଂଗାମାତା - ଏହା ପଟାଙ୍ଗୀ ଅଞ୍ଚଳର ଏକ ପ୍ରତ୍ୟକ୍ଷଦେବୀ । ଜାତି, ଧର୍ମ ନିର୍ବିଶେଷରେ ସମସ୍ତ ଆଦିବାସୀ ସଂପ୍ରଦାୟର ଲୋକେ ଏହି ଦେବୀଙ୍କୁ ବିପଦ ଆପଦ ସମୟରେ ପୂଜା କରନ୍ତି ।

୨୪. ଗାଡ଼୍ - ନଦୀ । *ଦେ.ବି. :* ଯେଉଁଠାରେ ଗଭୀର ଜଳ ଥାଏ - ଗଭୀର ଜଳ ଧାରଣ କରୁଥିବା ଗର୍ତ୍ତ । ଇଂ. - River

କୋରାପୁଟ ଜିଲ୍ଲାର ଆଦିବାସୀମାନେ 'ଗାଡ଼୍' ବୋଲି କହିଥାନ୍ତି । ନାରାୟଣ ପାଟଣା ଅଞ୍ଚଳରେ ଝଂଜାବତୀ ଓ ଚମ୍ପାବତୀ ନାମକ ଦୁଇଟି ନଦୀର ମିଳନ ସ୍ଥଳର

ନାମକୁ 'ଗୋରିଆ ଗାଡ଼' କୁହାଯାଏ । ଏଠାରେ ଜୟପୁର ରାଜ୍ୟର ମହାରାଜା ବିଶ୍ୱମ୍ବର ଦେବ (ଦ୍ୱିତୀୟ)ଙ୍କ ପ୍ରଥମ ରାଣୀ ଝଞ୍ଜାବତୀ ଦେବୀ ଏହି ଗୋରିଆ ଗାଡ଼୍‌ରେ ବା ନଦୀରେ ସ୍ନାନ କରୁଥିବାବେଳେ ଉପର ମୁଣ୍ଡରେ ହଠାତ୍ ପ୍ରବଳ ବର୍ଷା ହୋଇ ବନ୍ୟା ଆସିବାରୁ ସେ ଏଠାରେ ସଲିଳ ସମାଧି ନେଇଥିଲେ ଓ ତାଙ୍କ ନାମ ଅନୁସାରେ ଏହି ନଦୀଟିର ନାମ ରଖାଯାଇଥିଲା ଝଞ୍ଜାବତୀ । ସେହିପରି ପଟାଙ୍ଗି ଅଞ୍ଚଳରେ ଅନ୍ୟ ଏକ ନଦୀର ନାମ ମେରୁଗାଡ଼ ରହିଥିବା ବେଳେ କୁନ୍ଦ୍ରା ଅଞ୍ଚଳର ଏକ ନଦୀ ବେଷ୍ଟିତ ଗ୍ରାମର ନାମ ରହିଛି 'ଗାଡ଼ ଗୁଣ୍ଡାଳ' । ଏହି ଗ୍ରାମଟିକୁ ଚାରିଆଡୁ ନାଳ ଓ ନଦୀ ଘୁଡ଼େଇ ରଖିଥିବାରୁ ଏହାକୁ ଗାଡ଼୍‌ଗୁଣ୍ଡାଳ ନାମରେ ନାମିତ କରାଯାଇଛି । ଅନ୍ୟ ପକ୍ଷେ ଆଦିବାସୀ ଲୋକମାନେ ମନେ କରନ୍ତି ପ୍ରତିଟି ନଦୀ ଏକ ଗର୍ତ୍ତରୁ ଜନ୍ମ ନେଇଥାଏ । କାରଣ ସେମାନେ ଦେଖନ୍ତି ପ୍ରତିଟି ନଦୀର ଉତ୍ପତ୍ତିସ୍ଥଳ କୌଣସି ପାହାଡ଼ ଖୋଲରୁ ବାହାରିଥିବା ନାଳ ବା ଝରଣା ଏବଂ ଏହା ଉଚ୍ଚ ଭୂମିରୁ ନିମ୍ନ ଭୂମିକୁ ଗଡ଼ିଗଲାବେଳେ ଗଭୀର ଗାଡ଼ ମାନ ସୃଷ୍ଟି କରି ଆଗକୁ ବହିଯାଇଥାଏ । ତେଣୁ ସେମାନେ ନଈକୁ ଗାଡ଼୍ ବୋଲି କହିଥାନ୍ତି ।

୨୫. **ଗାଡ଼୍‌ଡୁମ୍ବା** - *ଦେ.ବି. :* ନଦୀନାଳ ଝରଣାରେ ରହୁଥିବା ଭୂତ ବା ମୃତଲୋକର ଆତ୍ମା । ଆଦିବାସୀ ସମାଜରେ ଲୋକମାନେ ବିଶ୍ୱାସ କରନ୍ତି, ଯେଉଁ ଲୋକମାନେ ନଦୀରେ ବୁଡ଼ି ବା ଏହି ନାଳ ବା ଝରଣା କୂଳରେ ପଡ଼ି ମଦପିଇ ବେହୋସ ହୋଇ ମୃତ୍ୟୁବରଣ କରନ୍ତି, ସେହି ଲୋକ ମାନଙ୍କର ଆତ୍ମା ମୃତ୍ୟୁପରେ ଡୁମ୍ବା ବା ଭୂତ ହୋଇ ସେଇ ସବୁ ସ୍ଥାନରେ ରହିଯାଇଥାଏ । କୌଣସି ଲୋକ ନଦୀନାଳ ଝରଣାକୁ ଯାଇ ଯଦି ଭୟପାଏ, ତେବେ ସେ ଆତ୍ମା ଲୋକଟିକୁ ଡରାଇ ତା ଭିତରେ ପ୍ରବେଶ କରେ ଓ ଲୋକଟି ଅସୁସ୍ଥ ହୋଇପଡ଼େ । ଏହାକୁ ସେମାନେ ଗାଡ଼ଡୁମ୍ବା ଗ୍ରାସିଛି ବା ଧରିଛି ବୋଲି କହି ଏହାର ଉପଚାର ପାଇଁ ଦିସାରୀ ବା ଗୁରୁମାଈ ଡକାଇ ଝଡ଼ାଫୁଙ୍କା କରନ୍ତି । ବାସକନ୍ଦା, ବଣହଳଦୀ ପ୍ରଭୃତିକୁ ମନ୍ତ୍ରଦ୍ୱାରା ଅଭିମନ୍ତ୍ରିତ କରି ରୋଗୀକୁ ଔଷଧ ଭାବେ ବ୍ୟବହାର କରିବାକୁ ଦେଇଥାନ୍ତି । ଏତଦ୍ ବ୍ୟତୀତ କେତେକ ଗଛର ଡାଳ ବା ମୂଳକୁ ସୂତାରେ ବାନ୍ଧି ରୋଗୀକୁ ହାତରେ ବା ବେକରେ ତେଉଁରିଆ ଭଳି ପିନ୍ଧିବା ପାଇଁ ଦେଇଥାନ୍ତି ।

୨୬. ଗାଡ଼ଗାମୂଷା - *ଦେ.ବି. :* ଏକ ପ୍ରକାରର ମୂଷା । ଏମାନେ ହାତ ପାପୁଲି ଆକାରର ହୋଇଥାନ୍ତି ଓ ମୁଖ୍ୟତଃ ଘରମାନଙ୍କରେ ରହନ୍ତି । ଘରର ଜିନିଷପତ୍ର ଏଇମାନେ ମୁଖ୍ୟତଃ ନଷ୍ଟ କରିଥାନ୍ତି । ଘରେ ରଖାଯାଇଥିବା ଫସଲ ଖାଇଥାନ୍ତି ।

୨୭. ଗାଣ୍ଡା - *ଦେ.ବି. :* ଖବରଦାତା । ଗଂଜା । ବାରିକ ବା ଚାଲାନ । ୧) ଜୟପୁର ଜମିଦାରଙ୍କ ଦ୍ୱାରା ନିଯୁକ୍ତ ଡମ ଜାତିର ବ୍ୟକ୍ତି ଯିଏ ରୟତଙ୍କ ଠାରୁ ରାଜସ୍ୱ ଆଦାୟ କରୁଥିଲା । (ଏହି ପ୍ରଥା ୧୯୫୨ ଯାଏ ପ୍ରଚଳିତ ଥିଲା ।) ଘରଘର ବୁଲି ଯେଉଁମାନେ ଖବର ଅନ୍ତର ଦିଅନ୍ତି । ୨) ଆଦିବାସୀ ଗ୍ରାମାମାନଙ୍କରେ ଗାଁର ଡାକହାକ ବୋଲ କରିବା ଲୋକକୁ 'ଗାଣ୍ଡା' କୁହାଯାଏ । ଗାଣ୍ଡା ସାଧାରଣତଃ ହରିଜନ ସଂପ୍ରଦାୟର ବ୍ୟକ୍ତି ହୋଇଥାଏ । ଗାଁର ଭଲମନ୍ଦ, ପର୍ବପର୍ବାଣୀ, ସଭାସମିତି ତଥା କୌଣସି ସରକାରୀ ଖବର ଗାଁ ଯାକ ଜଣାଇବା ବା ଗାଁ ମଧ୍ୟରେ ଥିବା ଲୋକମାନଙ୍କୁ ଡାକିବା ତା'ର କାମ । ଏହା ପ୍ରାୟତଃ ବାରିକ ବା ଚାଲାନର କାମ ସହିତ ସମାନ । ୩) ଗାଁ ଗୁଡ଼ିକରେ ରାଜା ଶାସନ କାଳରେ କୃଷକ (ରୟତ) ମାନଙ୍କଠାରୁ ଖଜଣା ଆଦାୟ କରିବା, ବେହରଣ ବା ସଭା ଆଦିରେ ଲୋକଙ୍କୁ ନାୟକ ଆଦେଶରେ ଡକାହକା କରୁଥିବା ବ୍ୟକ୍ତି । ଆଜିକାଲି ପର୍ବପର୍ବାଣୀ ବା ସାମୂହିକ କାର୍ଯ୍ୟ ନିମନ୍ତେ ଚାନ୍ଦା ଆଦାୟ କାର୍ଯ୍ୟ ଏହି ଗାଣ୍ଡାମାନେ କରିଥାନ୍ତି ।

୨୮. ଗାତି - *ଦେ.ବି. :* ଆଦିବାସୀ ସ୍ତ୍ରୀମାନେ ପିନ୍ଧିଥିବା ଲୁଗାର ଗଣ୍ଠି । ଦେଶିଆ ସ୍ତ୍ରୀମାନେ ଗାଢ଼ ରଂଗର ଶାଢ଼ିର । ତିନି ଚତୁର୍ଥାଂଶକୁ ସେମାନଙ୍କ ଅଣ୍ଟାରୁ ଆଣ୍ଠୁ ପର୍ଯ୍ୟନ୍ତ ଏକ ଚତୁର୍ଥାଂଶ ଛାତି ଓ ପିଠିରେ ଗୁଡ଼ାଇ ବାମ କାନ୍ଧର ଉପର ପାର୍ଶ୍ୱରେ ଗୋଟିଏ ଗଣ୍ଠି ପକାଇ ବାନ୍ଧି ଦେଇଥାନ୍ତି । ଫଳରେ କାମ କରିବା ସମୟରେ କିମ୍ବା ନାଚରେ ଅଂଶଗ୍ରହଣ କରିବା ସମୟରେ ଶାଢ଼ିଟି ଖସିଯିବାର ଭୟ ନଥାଏ । ଏହି ଗଣ୍ଠିକୁ 'ଗାତି' କୁହାଯାଏ ।

୨୯. ଗାତିମାରା - *ଦେ.ବି. :* ଆଦିବାସୀ / ଦେଶିଆ ସ୍ତ୍ରୀ ପିନ୍ଧା ଲୁଗାରେ କାନ୍ଧ ଉପରେ ଗଣ୍ଠି ପକାଇବା ବା ବାନ୍ଧିବାର ପ୍ରକ୍ରିୟାକୁ 'ଗାତିମାରା' କୁହାଯାଏ । ବ୍ୟବହାର : "ଗାତି ମାରି କରି ପାଟା ନିମାନ୍ କରି ଓଡ୍ ।"

୩୦. ଗାଦୀ - *ଦେ.ବି. :* ଡଙ୍ଗରିଆ କନ୍ଧଙ୍କ ରଜୋବତୀ ସ୍ତ୍ରୀ ଓ ଗର୍ଭବତୀ ସ୍ତ୍ରୀମାନେ ରହିବା ପାଇଁ ଯେଉଁ ଘର ତିଆରି ହୋଇଥାଏ ତାହା 'ଗାଦୀ' । ଏହିଘରେ ଘୁଷୁରୀ ପଶିଲେ ବିପଦ ବୋଲି ସେମାନେ ମନେ କରନ୍ତି ।

୩୧. ଗାଦିଆ - *ଦେ.ବି. :* ଧାନ ରଖିବା କାଠ ତିଆରି ଅମାର । ଜୟପୁର ରାଜା କୋରାପୁଟ ଜିଲ୍ଲାରେ ରୟତମାନଙ୍କ ଠାରୁ ଧାନ କର ଆଦାୟ କରି ଏହି ଗାଦିଆମାନଙ୍କରେ ରଖୁଥିଲେ । ଏବେ ମଧ୍ୟ ବିଭିନ୍ନ ସ୍ଥାନରେ ସାହୁକାର ଓ ଜମିଦାର ଶ୍ରେଣୀୟ ଲୋକଙ୍କର ଗାଦିଆ ଘର ଦେଖିବାକୁ ମିଳେ । ଗୀତରେ ବ୍ୟବହାର :

ଦିଗି ସିଲପାର ବାହନପତି
ଛକୋନି ଗାଦିଆ ନକୋଟି ଗୋତି
ଗୋତି ବରତନ କେତେ
ଗୋତି ବରତନ କଇବୁ ବଇଲେ
ତେବେ ମୁଁ ଆସିବି ତକେ । (ଚଇତି ପରବ ଗୀତ)

୩୨. ଗାଦିମାଈ - *ଦେ.ବି. :* ଗଣ୍ଡି; ବି : ଗଣ୍ଡ ଗ୍ରାମଦେବତୀଙ୍କ ମୁଖ୍ୟପୀଠ : ଖାଦ୍ୟଦେବୀ । କେତେକ ଗଣ୍ଡ ଗ୍ରାମକୁ ନେଇ କେନ୍ଦ୍ର ସ୍ଥଳରେ ଏକ ଦେବୀ ମନ୍ଦିର ବା ଗୁଡ଼ି ନିର୍ମାଣ କରାଯାଇଥାଏ । ପ୍ରତିବର୍ଷ ମଣ୍ଡେଇ ଯାତ୍ରା (ମାଘରୁ ଚୈତ୍ର ମାସ ମଧ୍ୟରେ ନବରଂଗପୁର ଜିଲ୍ଲା ଓ ଉପାନ୍ତ ଜଗଦଲପୁର ଅଞ୍ଚଳରେ ଆଦିବାସୀଙ୍କ ଦ୍ୱାରା ପାଳନ କରୁଥିବା ଯାତ୍ରା) ଅବସରରେ ବିଭିନ୍ନ ଗ୍ରାମର ଗ୍ରାମଦେବତାଙ୍କ ପ୍ରତୀକ ଲାଠି, କୁର୍ଚ୍ଚି, ପାଲିଙ୍କି, ଶିରା, ଦିସାରୀ, ପୂଜାରୀଙ୍କୁ ନିମନ୍ତ୍ରଣ କରାଯାଇଥାଏ । ଏହି ପ୍ରତୀକଗୁଡ଼ିକ ଗାଦିମାଇ ନିକଟକୁ ଅଣାଯାଇ ବିଶ୍ରାମ ଦିଆଯାଏ ଓ ପୂଜା ଅର୍ଚ୍ଚନା କରାଯାଏ ।

୩୩. ଗାପା - ଗଣ୍ଡି : ବି. ବାଉଁଶ ତିଆରିରେ ଟାଙ୍ଗୁଡ଼ି ଉପରେ ଲାଲ ରଂଗର କନା ମଡ଼େଇ କଉଡ଼ି ସିଲାଇ କରାଯାଇ ମଣ୍ଡେଇ ଯାତ୍ରା କାଳରେ ବୁଢ଼ାଦେଓ ଓ ଅନ୍ୟ ଦେବତାଙ୍କ ପୂଜା ଜିନିଷ ରଖାଯାଇ ପୂଜାସ୍ଥାନକୁ ଅଣାଯାଏ । ଗଣ୍ଡ ଜନଜାତିଙ୍କ ବିହନ ଯାତ୍ରା ଗାଦିମାଈ (ଦେବପୀଠ) ପାଖରେ ହୋଇଥାଏ । ଗାଦିମାଈ ଖାଦ୍ୟର ଦେବୀ, ତାଙ୍କ ପାଇଁ ଶସ୍ୟ ଯାତ୍ରା କରାଯାଏ । ସେ କୃଷକର ଦେବୀ ଭାବେ ପୂଜିତା ଓ ଅର୍ଚ୍ଚିତା ହୋଇଥାନ୍ତି ।

୩୪. **ଗାରାଡ଼ା** - *ଦେ.ବି. :* କଟୁରି ବା କାତି ଭଳି ଏକ କାଟିବା ଯନ୍ତ୍ର ବିଶେଷ । ଏହାର ଆଗପଟ ଦାଆପରି ବଙ୍କା ଧାରଯୁକ୍ତ ଓ ଓସାରିଆ ହୋଇଥାଏ । ବେଣ୍ଟ ସରୁ ହୋଇ ବେଶ୍ ଲମ୍ବା ହୋଇଥାଏ । ଏହା ସାହାଯ୍ୟରେ ବାଡ଼ି ବଗିଚାରେ ଥିବା ଡେଙ୍ଗାଡେଙ୍ଗା ଗଛଗୁଡ଼ିକୁ ସହଜରେ କଟାଯାଇଥାଏ । ଏହା ଖଣ୍ଡିଏ ଲୁହାରେ ତିଆରି ହୋଇଥାଏ । ଏଥିରେ କାଠ ବେଣ୍ଟ ଲାଗି ନଥାଏ ।

୩୫. **ଗାଲୁସ୍‌ନି** - *ଦେ.ବି. :* ବିଦାୟ ସୂଚକ ଶବ୍ଦ, ରହୁଛି, ବା ଯାଉଛି । ଇଂ.- An enlression during farwel ଏହି ଶବ୍ଦଟି ପ୍ରତ୍ୟେକ ଆଦିବାସୀ ଲୋକ ନିଜର ଚିହ୍ନା ପରିଚିତ ବା ଆତ୍ମୀୟସ୍ୱଜନଙ୍କ ଠାରୁ ବିଦାୟ ନେଇ କୌଣସି ସ୍ଥାନକୁ ବା କୌଣସି କାମରେ ଗଲାବେଳେ ପ୍ରୟୋଗ କରିଥାନ୍ତି । ଆମେ ଯେମିତି ଆସୁଛି ବା ରହୁଛି, ବୋଲି ବିଦାୟ ବେଳେ କହିଥାଉ, ସେମାନେ ସେମିତି ଗାଲୁସ୍‌ନି ବୋଲି କହିଥାନ୍ତି ।

୩୬. **ଗିୟାକ ଶାମ** - *ଦେ.ବି. :* ଚୈତ୍ର ପର୍ବଗୀତ । ବଣ୍ଡା ଯୁବକମାନେ ଧନୁଶର, ଛୁରୀ, ଟାଙ୍ଗିଆ ଧରି ଚୈତ୍ର ପରବରେ ଶିକାରକୁ ଯାଇ ଯେଭଳି ଜନ୍ତୁ ବିନ୍ଧି ଆଣନ୍ତି, ଗର୍ବିତ ବଣ୍ଡା ନାରୀ ମଧ ସେମିତି ବିଲ ବେଡ଼ା ବା ଝରଣାକୁ ଯାଇ କଙ୍କଡ଼ା, ମାଛ ଧରି ଆଣିପାରନ୍ତି । ସନ୍ଧ୍ୟା ସମୟରେ ଗାଁର ସିନ୍ଧିବୋର ଠାରେ ସମସ୍ତଙ୍କ ଉପସ୍ଥିତିରେ ନାଚଗୀତର ଆସର ଜମେ । ଆଉ ଚୈତ୍ର ପର୍ବର ଶାମ୍ (ଗୀତ) ଗାଆନ୍ତି । ଗିଆକ୍‌ର ଅର୍ଥ ଚଇତି ପରବ୍ । ଶାମ୍ ଅର୍ଥ ଗୀତ ।

ପୁରୁଷ : ଏୟାଂ-ଏୟାଂ ଗିନିୟାଂ ଗିନିୟାଂ ଗିନିୟାଂ
ଆତେ ଉନୁର୍ ଉରଚନ ସା ଆଣ୍ଡରା ବାଇ
ଆତେ ଫୁନୁର୍ ଫତନେ ସା ଅଣ୍ଡରା... ।

(ଏ ଏବେ ଏବେ ଏବେ । ଚଇତ ପରବ ପରବ ଏ ପଟେ ଧାଇଁବାଟା । ଧାଇଁଲୁ ନାହିଁ, ସେ ପଟେ ଧାଇଁବାଟା ଧାଇଁଲୁ କି ନାହିଁ ।)

୩୭. **ଗିଆସ ସାରୀ** - *ଦେ.ବି. :* ବଣ୍ଡା ଭାଷାରେ ସୁନାରୀ ଫୁଲ । ସୁନାରୀ ଫୁଲ ପରି ରଂଗର ଝିଅ । ଗିଆସ ସାରୀ : ଲାଲଫୁଲ । ଚଇତି ପରବ ଗୀତରେ ବଣ୍ଡାମାନେ ଏହାକୁ ସୁନ୍ଦରୀଝିଅର ପ୍ରତୀକ ଭାବେ ବ୍ୟବହାର କରିଥାନ୍ତି ।

୩୮. ଗିଗେ - *ଦେ.ବି.* : (ପରବ) ବଣ୍ଡାମାନେ ନିଜ ପାରମ୍ପରିକ ଚଳଣି ଅନୁସାରେ ବର୍ଷକ ମଧ୍ୟରେ ଅନେକ ପର୍ବ-ପର୍ବାଣୀ ପାଳନ କରିଥାନ୍ତି । ସେଗୁଡ଼ିକ ମଧ୍ୟରେ କୁମ୍ଭକଡ଼ା ଗିଗେ (ଦଶହରା ପର୍ବ) ଗେବୁର ସିଂ ଗିଗେ (ଦିଆଲି ପର୍ବ) ସୁମେ ଗେଲିରାକ୍ (ପୌଷ ପର୍ବ) ସୁସୁଗିଗେ (ମାଘ ପର୍ବ) ଗିଏଗା ଗିଗେ (ଚୈତ୍ର ପର୍ବ) ପ୍ରଧାନ ।

୩୯. ଗିନ୍ - *ଦେ.କ୍ରି.* : ଘୃଣା କରିବା, ବି - ଘୃଣା ଇଂ.- to hate, Scorn, Hatred

ଆଦିବାସୀ ଭାଷାରେ ଘୃଣା ସଂପୂର୍ଣ୍ଣ ଦୈହିକ ଓ କିଛିଟା ସାଂସ୍କୃତିକ । ଯେପରି ରୋଗରେ ଘାଣ୍ଟି ହେଉଥିବା ଲୋକର ଘା' ପ୍ରତି ଘୃଣା କିମ୍ବା ଅନ୍ୟର ଅଇଁଠା ପ୍ରତି ଘୃଣା । କିନ୍ତୁ ଏହି ସାମାନ୍ୟ ଘୃଣାର ପ୍ରକାଶ କ୍ୱଚିତ୍ ଘଟିଥାଏ । କୁହାଯାଇପାରେ ଯେ ଏହା ଅଲଂଘ୍ୟ ସ୍ତରକୁ କେବେହେଲେ ଯାଇପାରେ ନାହିଁ । ଯଥା : ବିନ୍ ଲୋକ୍‌ର ସଙ୍କ୍‌ଡ଼ି କାଇବାକେ ଗିନ୍ ଲାଗ୍‌ସି । ଅର୍ଥାତ୍, ଅନ୍ୟ ଲୋକର ଅଇଠା ଖାଇବାକୁ ଘୃଣାଲାଗେ । ଆଦିବାସୀ ସଂସ୍କୃତିରେ କେହି କାହାରି ଅଇଁଠା ଖାଆନ୍ତି ବା ଉଠାନ୍ତି ନାହିଁ । ଏହି କାରଣରୁ ଏଠାରେ ରୋଗୀର ସେବା ମଧ କ୍ୱଚିତ୍ କରାଯାଇଥାଏ ।

୪୦. ଗିନେ - *ଦେ.* ଅବ୍ୟୟ - ପାଇଁ, ଲାଗି, କାରଣ କାଜେ ଇଂ - For, Beause of ଯଥା : (୧) କାଇଗିନେ ଯାଇ ରଇଲୁସ୍ (୨) ତୋର୍ ଗିନେ ମୁଇଁ ଜୀବନ ଦେବି । (୩) କାଇବାକେ ନ ମିଳ୍‌ବା ଗିନେ ଲୋକ୍‌ମନ୍

ବୁକେ ମର୍‌ଲାଇନି । ଅର୍ଥାତ୍ ଖାଇବାକୁ ନ ମିଳିବାରୁ ଲୋକେ ଭୋକରେ ମଲେଣି ।

୪୧. ଗିନଂ - *ଦେ.ବି.* : ଝୋଲା / କନ୍ୟାସୁନା : ବଣ୍ଡା ସମାଜରେ ପ୍ରଚଳିତ ଏଇ ପ୍ରଥା ଅନୁସାରେ ବର ତରଫରୁ କନ୍ୟାକୁ ଖଡୁ ଦିଆଯାଏ । କନ୍ୟା ଖଡୁଟିକୁ ଗ୍ରହଣ କଲା ପରେ ବରର ପିତାମାତା 'ସେଲାମ୍ବଏ' ବା କନ୍ୟାର ଘରକୁ ଯାଇ ତାର ବାପା ମାକୁ ଝିଅ ଦେବାକୁ ଅନୁରୋଧ କରନ୍ତି । କନ୍ୟାପିତା ରାଜି ହେଲେ କନ୍ୟା ବାବଦକୁ ବରପିତା କେତେ ଜୋଲା ବା କନ୍ୟାସୁନା । ଗିନଂ ଗିନିଂ ବିବେ ଦେବ ତାହା ସ୍ଥିର ହୁଏ । ଏହି ଗିନିଂ ବିବେ ବା ଗିନଂ ସାଧାରଣତଃ କିଛି ଗାଈ ଗୋରୁ, ମଦ, ପେଣ୍ଡମ୍ ଓ କିଛି ଟଙ୍କା ଆକାରରେ ସ୍ଥିର ହୁଏ ।

୪୨. ଗିନା କୁଡ଼୍‌କା - ଦେ.ବି. : ବାସନ କୁସନ : ଇଂ. - Utensils ଆଦିବାସୀ ଲୋକମାନେ ପ୍ରଥମେ ପତ୍ର ଠୁଙ୍ଗା ବା ଦନାରେ ଖାଦ୍ୟ ପଦାର୍ଥ ଖିଆପିଆ କରୁଥିଲେ । ସମୟକ୍ରମେ ମାଟି ଓ ପଥର ପାତ୍ର ବ୍ୟବହାର କରି ଶିଖଲେ । ପରେ ସେମାନେ ବହିରାଗତମାନଙ୍କ ସଂପର୍କରେ ଆସି କଂସା, ପିତ୍ତଳ, ରସ ଓ ଷ୍ଟିଲ୍‌ରେ ନିର୍ମିତ ବାସନକୁସନକୁ ନିଜର ଖାଇବା ପାତ୍ର ଭାବେ ବ୍ୟବହାର କରି ବସିଲେ । ଏହି ସବୁ ବାସନ କୁସନକୁ ଦେଶିଆ ଭାଷାରେ କୁହାଯାଏ ଗିନାକୁଡକା ।

୪୩. ଗିରିଲାଟି - ଦେ.ବି. : ଲାଠି : ବନଶୀବାଡ଼ି, ମାଛଧରା ବାଉଁଶ ଲାଠି । ସରୁ ଓ ଲମ୍ୱା ଆକାରର ଲାଠି ବା ବନ୍‌ଶୀ । ଆଦିବାସୀ ସମାଜରେ ଏହା ମାଛ ଧରିବାର ଏକ ପୁରାତନ ଯନ୍ତ୍ର । ଏଥିରେ କେଂଚୁଆ ଥୋପ ଦେଇ ମାଛକୁ ଧରାଯାଏ ।

୪୪. ଗିରା - ଦେ.ବି. : ମାଛଧରା ବନଶୀ ଖାଡ଼ି । ଗିରିବା : ଧରିବା ଡୁଟି : ବାଉଁଶ ପାତିଆ ବା ବେତରେ ବୁଣା ସରୁମୁହାଁ ମାଛରଖା ମୁଣି । ଦେଶିଆ ଲୋକଗୀତରେ ଏହି ଶବ୍ଦଗୁଡ଼ିକର ପ୍ରବଳ ପ୍ରୟୋଗ ଦେଖିବାକୁ ମିଳେ ।

ଯଥା : ଗିରାରେ ଗିରିବି ଡୁଟିରେ ରାଖିବି

କାଖେନେ ଓଲାଇରେବି

ତର ପରା ଗୀତ୍ କୁନିଆନିକେ

ଗଛ ଡାଲେ ବାନ୍ଧିଦେବି । (ଚଇତ ପରବ ଗୀତ)

୪୫. ଗିରା ଭଂଗାନି - ଦେ.ବି. : ଗିରା : ଗ୍ରହ ଶବ୍ଦର ଅପଭ୍ରଂଶ / ଭଂଗାନି : ଭାଂଗିବା ରିଷ୍ଟ ଖଣ୍ଡନ ପ୍ରକ୍ରିୟା – ଗ୍ରହ ଶାନ୍ତି ବିଧି ଓ ବିଧାନ : ଭତରା ସଂପ୍ରଦାୟରେ ବିବାହର ତିନି ଚାରିଦିନ ପୂର୍ବରୁ ପୁଅ ଘର ଲୋକ ଝିଅ ଘରକୁ ଯାଇ ତାଙ୍କର ଭାବି ବଧୂକୁ ଘରକୁ ସାଂଗରେ ଆଣନ୍ତି । ଝିଅ ଯଦି ଆଗ୍ରହର ସହିତ ଯାଇଥିବା ଲୋକ ସହିତ ପୁଅ ଘରକୁ ଆସେ, ସେ ସେହି ଘରେ ଘର ସଂସାର କରି ହସ ଖୁସିରେ ରହିବ ବୋଲି ଧରାଯାଏ । ଯଦି ଝିଅ ବାଧବାଧକତାରେ ଆସେ ତେବେ ବିବାହ ପାଇଁ ସେ ଅରାଜି ଏବଂ ଯଦି ବିବାହ ହୁଏ, ତେବେ ସେ ସ୍ୱାମୀ ପାଖରେ ବେଶି ଦିନ ରହିବ ନାହିଁ ବୋଲି ବିଶ୍ୱାସ କରାଯାଏ । ପୁଅ ଘର ଲୋକ ଝିଅକୁ ନିଜ ଘରକୁ ଆଣି ତାର

ଦୋଷ ବା ରିଷ୍ଟ ଖଣ୍ଡନ ପାଇଁ ସଂସ୍କାର କରନ୍ତି । ସଂସ୍କାର କାଳରେ ଗ୍ରାମର ଶିରା (ଗୁଣିଆ / ପୂଜକ) ଅତି ପ୍ରତ୍ୟୁଷରେ ଅନ୍ୟ ସ୍ତ୍ରୀ ଲୋକଙ୍କ ସହିତ ଝିଅକୁ ନଦୀ / ଝରଣା / ପୋଖରୀକୁ ନେଇ ଧୂପ, ଦୀପ, ନଡ଼ିଆ ଦେଇ ପୂଜାବିଧି ସଂପନ୍ନ କରେ । ଏହାକୁ ଗିରା ଭଂଗାନି କୁହାଯାଏ ।

୪୬. ଗିରି - *ଦେ.ବି. :* ଶ୍ରେଷ୍ଠ ପାହାଡ଼ ବା ମୁଣ୍ଡ ପାହାଡ଼ । ଏକ ପର୍ବତ ଶ୍ରେଣୀର ନାମ ବିଶେଷ ।

ଏହା କୋରାପୁଟ ଜିଲ୍ଲାର ନାରାୟଣ ପାଟଣା ମାଳାଞ୍ଚଳ ଠାରୁ ନନ୍ଦପୁର ପର୍ଯ୍ୟନ୍ତ ପରିବ୍ୟାପ୍ତ ଏକ ସୁଦୀର୍ଘ ସୁଦୃଶ୍ୟ ପାହାଡ଼ । ଏହାର ପାଦଦେଶରେ ନନ୍ଦପୁର ରାଜ୍ୟର ରାଜଧାନୀ ନନ୍ଦପୁର ସହର ଏକଦା ଏହାକୁ ଏହି ରାଜ୍ୟର ଶିର ବା ମୁଣ୍ଡ ଭାବରେ ମାନ୍ୟତା ଦେଇଥିଲା । କୁହାଯାଏ ଏହି ପାହାଡ଼ରେ ଥିବା ଅନେକ ସୁଡ଼ଙ୍ଗ ପଥ ମଧ୍ୟରୁ ନାରାୟଣ ପାଟଣା ଯାଏ ପରିବ୍ୟାପ୍ତ ଏକ ସୁଦୀର୍ଘ ସୁଡ଼ଙ୍ଗ ଅନ୍ୟତମ । ଏହି ପାହାଡ଼ରେ ଥିବା ପଥଦେଇ ନନ୍ଦପୁରର ରାଜା ନାରାୟଣପାଟଣା ଯାଏ ଯାଉଥିଲେ ଓ ନାରାୟଣପାଟଣାରୁ ନନ୍ଦପୁରର ରାଜା ନାରାୟଣପାଟଣା ଯାଏ ଯାଉଥିଲେ ଓ ନାରାୟଣ ପାଟଣାରୁ ନନ୍ଦପୁରର ସର୍ବେଶ୍ବର ମନ୍ଦିରକୁ ଆସି ଦେବତା ଦର୍ଶନ କରୁଥିଲେ । ଏହି ପାହାଡ଼ରେ ଅନେକ ବୌଦ୍ଧ, ଜୈନ, ଶୈବ, ଶାକ୍ତ, ଗାଣପତ୍ୟ ଆଦି ଧର୍ମର ସ୍ମୃତି ସ୍ବାକ୍ଷର ବହନ କରି ଭଗ୍ନ ଶିଳା ମୂର୍ତ୍ତିମାନ ପଡ଼ି ରହିଛି ।

୪୭. ଗିରିପୂଜା - *ଦେ.ବି. :* ଏକପ୍ରକାର ପୂଜା ବିଶେଷ । ଡଙ୍ଗରିଆ କନ୍ଧମାନେ ଗିରିପୂଜାରେ ସୀତାକନିଆ ବା ସୀତାପେନୁ ଓ ଲକ୍ଷ୍ମୀପେନୁଙ୍କୁ ଆବାହନ କରିଥାନ୍ତି । ଗିରିପୂଜା ନକରି ଗୋଟିଏ ନୂଆ ଘରେ ରହିଲେ ନିଆଁଲାଗି ଯିବାର ଲୋକ ବିଶ୍ବାସ ସେମାନଙ୍କର ରହିଛି ।

୪୮. ଗୀତକୁଡ଼ିଆ - *ଦେ.ବି. :* ମୁହେଁମୁହେଁ ଗୀତ ରଚନା କରି ଗାଉଥିବା ବ୍ୟକ୍ତି, ଆଶୁ କବି । ଇଂ.- Bard ଆଦିବାସୀ ସମାଜରେ ଲୋକକବି ଭାବେ ଏମାନେ ସ୍ବୀକୃତ । ପଦଯୋଡ଼ି ଗୀତ ଗାଇବାରେ ଅଭ୍ୟସ୍ତ ପୁରୁଷ ଗାୟକ । କୋୟା, ଦୁରୁଆ, ବଣ୍ଡା, ଡିଡାୟୀ, ଭତରା, ଭୂମିଆ, ପରଜା ଓ ହାଲ୍‌ବା ଆଦିସବୁ ଆଦିବାସୀ ଗୋଷ୍ଠୀରେ ଏମାନେ ଦେଖାଯାଆନ୍ତି । ବିଶେଷତଃ ଚଇତି ପରବ ଗୀତ ଗାଇବାରେ ଏମାନେ

ଧୂରୀଣ । ଯେକୌଣସି ପର୍ବପର୍ବାଣୀରେ ଗୀତନାଟ ସମୟରେ ଏମାନେ ଲୋଡ଼ା ପଡ଼ିଥାନ୍ତି । ଗୀତ କୁଡ଼ିଆମାନେ କୌଣସି ମୁଖସ୍ଥ ପଦ ଗାଇ ନଥାନ୍ତି । ପରିବେଶ ଓ ପରିସ୍ଥିତିକୁ ଦେଖି ଏମାନେ ପାରଂପରିକ ଆଙ୍ଗିକରେ ତୁଣ୍ଡେତୁଣ୍ଡେ ନିତ୍ୟ ନୂତନ ଆମ୍ବିକ ଭରି ଦେଇଥାନ୍ତି ।

୪୯. ଗୀତକୁଡ଼ିଆଣୀ / ଗୀତ୍ କୁନିଆନି - ଦେଶିଆ : ବିଶେଷ୍ୟ : ଗୀତ ଗାଉଥିବା ସ୍ତ୍ରୀ ଲୋକ ।

ଗୀତ କୁଡ଼ିଆନି ଆଦିବାସୀଙ୍କ ବିଭିନ୍ନ ପର୍ବପର୍ବାଣୀରେ ଏକତ୍ରିତ ହୋଇଥିବା ଲୋକଙ୍କ ମନୋରଞ୍ଜନ ପାଇଁ ଗୀତକୁଡ଼ିଆ ସହିତ ସୁଆଲ ଜବାବ ଗାଇଥାଏ । କାଥାନୀ ଗାନ, ଚଇତି ପରବ ଗୀତ, ରେଲାଗୀତ, ଲେଜାଗୀତ, ଢଗଢମାଳି, ନାଁ ଦିଆ, ପହେଲି ଆଦି ଗାଇବାରେ ଗୀତ କୁଡ଼ିଆନି ଧୂରୀଣା ହୋଇଥାଏ । ଆଦିବାସୀ ଗ୍ରାମାଞ୍ଚଳରେ ଗୀତକୁଡ଼ିଆ ଓ ଗୀତକୁନିଆନି ବହୁ ସମ୍ମାନର ଅଧିକାରୀ ହୋଇଥାନ୍ତି ଏବଂ ବହୁ ପାରିତୋଷିକ ମଧ୍ୟ ପାଇଥାନ୍ତି ଏମାନେ ଆଦିବାସୀ ମୌଖିକ ସାହିତ୍ୟ ପରମ୍ପରାର ଧାରକ ଓ ବାହକ ଅଟନ୍ତି । ଏମାନେ ବିଲୁପ୍ତି ଆଡ଼କୁ କ୍ରମଶଃ ଗତି କରୁଛନ୍ତି । ଗୀତରେ ଗୀତରେ ଗୀତକୁଡ଼ିଆ ମାନଙ୍କ ସହ ଜବାବ ସୁଆଲକୁ 'ଗୀତ ମରାମରି' କୁହାଯାଏ । ଏଭଳି ଗୀତ ମରାମରିରେ ପରାସ୍ତ ବ୍ୟକ୍ତି ପୁରୁଷ ହେଉକି ସ୍ତ୍ରୀ ହେଉ ବିଜେତା ସହ ସ୍ୱାମୀ ବା ସ୍ତ୍ରୀ ରୂପେ ରହିବାପାଇଁ ବାଧ୍ୟ ହେଉଥିଲା । ଆଜିକାଲି ତାହା କିଛିଟା କମିଛି ।

୫୦. ଗୁଆ କିନ୍ଦ୍ରାନି / ଗୁଆ ସପନି - *ଦେ.ବି. :* ଏକ ପ୍ରକାର ନିମନ୍ତ୍ରଣ ପ୍ରଥା । ଇଂ- A type of invitation.

କେତେକ ଆଦିବାସୀ ସଂପ୍ରଦାୟରେ ବିବାହ ହେଲାପରେ କନ୍ୟାଘର ଯେଉଁ ଗୁଆ ନୂଆ କନାରେ ଗଣ୍ଠିବାନ୍ଧି ପୁଅର ବାପା ମା'କୁ ସମର୍ପିଥାନ୍ତି, ସେହି ଗୁଆକୁ ପୁଅର ଆତ୍ମୀୟସ୍ୱଜନଙ୍କ ଘରକୁ ଘର ବୁଲା ଯାଇଥାଏ । ଏହାକୁ ଗୁଆସପନି ବା ଗୁଆ କିନ୍ଦ୍ରାନି କୁହାଯାଏ । ଏହା ବାହାଘରେ ଯୋଗ ଦେବାର ନିମନ୍ତ୍ରଣ ଉଦ୍ଦେଶ୍ୟରେ କରାଯାଇଥାଏ । ଏହି ନିମନ୍ତ୍ରଣକୁ ସ୍ୱୀକାର କରି ସମସ୍ତେ ବିବାହ କର୍ମରେ ଯୋଗ ଦେଇଥାନ୍ତି । ଅଣ ଆଦିବାସୀ ସଂପ୍ରଦାୟ ଗୁଆ ଦ୍ୱାରା ନିମନ୍ତ୍ରଣ ସହ ଏହା ତୁଳନୀୟ ।

୫୧. ଗୁଇ ସଂଗୁଇ - ଦେ.ବି. : ବିଧବା ବିବାହ ବ୍ୟବସ୍ଥା । ଇଂ- A System of widow marriage. ବିଧବା ବିବାହ, ଯାହାକି ବଣ୍ଡା ସମାଜରେ ପ୍ରଚଳିତ । ଯଦି ବିଧବା ସ୍ତ୍ରୀକୁ କୌଣସି ପୁରୁଷ ପୁନଃ ବିବାହ କରେ, ତେବେ ସେ କନ୍ୟାର ଶ୍ୱଶୁର ଘରକୁ ତିନି ମୁଣ୍ଡ

ଗାଈଗୋରୁ କନ୍ୟାସୁନା ହିସାବରେ ଦେଇଥାନ୍ତି । ଅନ୍ୟ ସଂପ୍ରଦାୟର 'ସଗରତା ବିଭା' ତୁଳନୀୟ ।

୫୨. ଗୁର୍କା - ଦେ.ବି. : ଅଳଙ୍କାର ମାଳା, ଟିୟା, (ରସ ତିଆରି ମୋଟାବଳା)', କାମେ (ରୂପା ବା ପିତଳରେ ତିଆରି ନାକଫୁଲ, ପାଡ଼୍‌କି (କାନଫୁଲ) ଖୋଡ଼୍‌ଟିଆ, (ରସବଳା, ପାହୁଡ଼) ଶୁଜିତ (ଲୁହା ବା କାଠ ବେଣ୍ଟରେ ତିଆରି କଣ୍ଟାଲଙ୍କା ଆକୃତିର ଅଳଙ୍କାର) ଏସବୁ କୋୟା ସ୍ତ୍ରୀମାନେ ପିନ୍ଧିଥାନ୍ତି ।

୫୩. ଗୁଙ୍ଗରଡ଼ି - ଦେ.ବି. : ମାଇଁଲୁଗା : ଭତରା ସଂପ୍ରଦାୟରେ ମାମୁ ଓ ମାଇଁ ବିବାହ କାର୍ଯ୍ୟରେ ମୁଖ୍ୟ ଭୂମିକା ଗ୍ରହଣ କରନ୍ତି । ବିବାହ କାଳରେ ମାଇଁଙ୍କ ପାଇଁ ଯେଉଁ ଲୁଗା ଦିଆଯାଏ ତାଙ୍କୁ 'ଗୁଙ୍ଗରଡ଼ି' କୁହାଯାଏ । ଅନ୍ୟ ସଂପ୍ରଦାୟରେ ମଧ ଏହା ପ୍ରଚଳିତ ।

୫୪. ଗୁଙ୍ଗିପେନୁ - ଦେ.ବି. : ଜନୈକ ଦେବତା । ଝରଣାର ଦେବତା ଭାବେ ବର୍ଷର ଏକ ନିର୍ଦ୍ଦିଷ୍ଟ ସମୟରେ ପୂଜା ପାଆନ୍ତି । କନ୍ଧ ସମାଜରେ ଏହି ଗୁଙ୍ଗିପେନୁଙ୍କ ପୂଜା କରାଯାଏ । ଏହା ଅନ୍ୟ ସଂପ୍ରଦାୟର କାମିନୀ ପୂଜା ସମକକ୍ଷ ।

୫୫. ଗୁଜ୍‌ରୀ - ଦେ.ବି. : କୋୟା ଯୁବତୀମାନେ ନାଚ କଲାବେଳେ ସ୍ୱତନ୍ତ୍ର ଭାବେ ତିଆରି କରାଯାଇଥିବା ପାତିଆ ଜାତୀୟ ଘୁଙ୍ଗୁରୁ ସହ ଗୋଟିଏ ବାଉଁଶ ବାଡ଼ି ଧରିଥାନ୍ତି । ଏହାକୁ 'ଗୁଜ୍‌ରୀ' କୁହାଯାଏ । ଯେତେବେଳେ କୋୟା ଯୁବକ ଢୋଲ ବଜାଇ ନାଚ କରେ, ଝିଅମାନେ ବାହୁରେ ବାହୁଛନ୍ଦି ଗୁଜରୀକୁ ଭୂମି ଉପରେ ଆଘାତ ଦେଇ ସୁନ୍ଦର ତାଳ ସହିତ ନାଚ କରନ୍ତି । ବାଡ଼ିର ଠକ୍ ଠକ୍ ଶବ୍ଦ ସହିତ ପାତିଆର ରୁଣୁଝୁଣୁ ଶବ୍ଦ ମଧୁର ସଂଗୀତ ସୃଷ୍ଟି କରାଇଥାଏ ।

୫୬. ଗୁଜେତ୍ (ଢୋଲ ବଜାଇବା ଦାରୁ ବାଡ଼ି) - ଦେ.ବି. : ଏହି ବାଡ଼ି, ଦ୍ୱାରା ଢୋଲ ବଜାଯାଏ ।

୫୭. ଗୁଞ୍ଜମାଳି - *ଦେ.ବି.* : ଏକ ପ୍ରକାର ରଙ୍ଗୀନ୍ ବନ୍ୟ ଲଟାର ଫଳ । ଏହାର ଉପର ଖୋଳପା କଣ୍ଟକିତ । କାଇଁଞ୍ଚ - ମୁଣ୍ଡରେ ବାଳ ଉପୁଡ଼ିଥିଲେ ଗୁଞ୍ଜମାଳିର ଔଷଧ କରନ୍ତି । ଏହାକୁ ମାଳି କରି ଆସିବାସୀ ଝିଅମାନେ ପିନ୍ଧନ୍ତି । ସୁନାରୀମାନେ ସୁନା ଓଜନ ସମୟରେ ଏହାର ଫଳକୁ ବ୍ୟବହାର କରନ୍ତି । ଗୋଟିଏ ସମୟରେ କାଇଁଚର ବ୍ୟବହାର ଅଳଙ୍କାର ଭଳି କରାଯାଉଥିଲା ।

୫୮. ଗୁଞ୍ଜାଇବା - *ଦେ.କ୍ରି.* : ନଈ ବା ଝରଣାରେ ଏକ ପ୍ରକାର ଜଂଗଲି ଲତାର ଚେରକୁ ପକାଇ ଦିଆଯାଏ । ସେହି ଚେରର ବିଷାକ୍ତ ଗୁଣରେ ମାଛ ସବୁ ଦରମଲା ହୋଇଯାନ୍ତି । ଏହାକୁ 'ଗୁଞ୍ଜାଇବା' କୁହାଯାଏ ! ତାପରେ ସେହି ମାଛମାନଙ୍କୁ ଧରି ନିଆଯାଏ ।

୫୮ (କ) ଗୁଞ୍ଜିକାଢ଼ିବା - *ଦେ.କ୍ରି.* : କାନଧରି ଉଠବସ୍ ହେବା ବିଶେଷକରି ଛାତ୍ରମାନଙ୍କୁ ଦଣ୍ଡଦେବା କ୍ଷେତ୍ରରେ ପ୍ରକୁର୍ଯ୍ୟ । ଏହି ଦଣ୍ଡ ପ୍ରଥା ବିରୁଦ୍ଧରେ ଲୋକମତ ଦେଖା ଦେବାରୁ ଏହାର ପ୍ରଚଳନ କମିଛି ସିନା ସଂପୂର୍ଣ୍ଣ ବନ୍ଦ ହୋଇନି । ଭାଷାରେ ବ୍ୟବହାର "ତୁଇ ଶଏଟା ଗୁଂଜି କାଢ୍ ।"

୫୯. ଗୁଟା - *ଦେ.ବି.* : ମାଛ ବା ମତ୍ସ୍ୟ । ଏହା ଏକ ପ୍ରକାର ଆଦିବାସୀ ଗୋଷ୍ଠୀର ସଂଜ୍ଞା ଅଟେ । ଏହି ସଜ୍ଞାଧାରୀ ଆଦିବାସୀମାନେ ମତ୍ସ୍ୟବଂଶ ବା ମାଛ ଗୋତ୍ରୀଭାବେ ପରିଚିତ ହୋଇଥାନ୍ତି । ଏବଂ ମତ୍ସ୍ୟ ଭକ୍ଷଣ କରି ନଥାନ୍ତି ।

୬୦. ୧) ଗୁଡ଼ା - ଉପ : ଅନ୍ୟ ଏକ ଶବ୍ଦ ସହ ଯୋଡ଼ିହୋଇ କୌଣସି ଗ୍ରାମ ବା ପଡ଼ାର ନାମକୁ ବୁଝାଇବା । ପୁଟ, ପାଲି, ପଲ୍ଲୀ, ଦୋଲା, ଘର, ଗଡ଼, ଗୁମ୍ଫା, କୁଣ୍ଡ, ପାଡ଼, କୋଟ, ପଡ଼ା : ଏହି ସମସ୍ତ ଶବ୍ଦ ଯୋଡ଼ିହେଲା ପରେ ଗ୍ରାମ । ବସ୍ତି ଅର୍ଥ ସୂଚକ ହୋଇଥାଏ । ଗ୍ରାମଗୁଡ଼ିକର ନାମକରଣରୁ ସ୍ଥାନୀୟ ଭୂଗୋଳ, ଇତିହାସ, ବାସକରୁଥିବା ଗୋଷ୍ଠୀ, ସଂପ୍ରଦାୟ, ମଣିଷମାନଙ୍କର ଧର୍ମ, ସଂସ୍କୃତି ଓ ଚଳଣି ଜଣାଯାଏ । ଉଦାହରଣ : କରଂଜଗୁଡ଼ା, ଭାଲୁଗୁଡ଼ା, ଏହା ବ୍ୟତୀତ ପାତ୍ର ପୁଟ, ସନ୍ତେଇପୁଟ, ଖଇରପୁଟ, ଗୋବିନ୍ଦପାଲି, ଡାଙ୍ଗରାପାଲୀ, ଅମ୍ବାଦୋଲା, ଦେଓଘର, ରାଇଘର, ରାୟଗଡ଼, ତେନ୍ତୁଳିଗୁମ୍ଫା, ଗୟଳକୁଣ୍ଡ, କୋଟପାଡ଼, ନୂଆପଡ଼ା, ଉମରକୋଟ ଇତ୍ୟାଦି କିଛି ପ୍ରସିଦ୍ଧ ଗାଁର ନାମ ଉଲ୍ଲେଖନୀୟ ।

୨) ଗୁଡ଼ା - ବଡ଼ବଡ଼ ଗାଁ ପାଖରେ ଥିବା ଛୋଟ ଛୋଟ ନିକଟବର୍ତ୍ତୀ ଗାଁ । ପାଖରେ ଥିବା ଛୋଟ ଛୋଟ ଗ୍ରାମ ସମୂହ ଇଂ. - Hamlet

ଗୋଟିଏ ବଡ଼ ରାଜସ୍ୱ ଗ୍ରାମ ଅଧୀନରେ ଥିବା ଛୋଟଛୋଟ ପଡ଼ା ।

୬୧. ୧) ଗୁଡ଼ି - *ଦେ.ବି. :* ପୀଠ, ଇଂ. - Shrine, ଦେବଦେବୀମାନଙ୍କର ପୂଜାସ୍ଥଳୀ, କାଠ ବା ବାଉଁଶ ଦ୍ୱାରା ସୁରକ୍ଷିତ ପ୍ରତୀକଟି କୌଣସି ଦେବଦେବୀ ସହ ସାମଞ୍ଜସ୍ୟ ଥାଇ ଦୂରରୁ ଦୃଶ୍ୟମାନ । ସମ୍ବଲପୁରୀ ଭାଷାରେ ଦେବଦେବୀଙ୍କ ମନ୍ଦିରକୁ ମଧ୍ୟ ଗୁଡ଼ି କୁହାଯାଏ । ଉଦାହରଣ : ମହାଦେବଗୁଡ଼ି, ଦ୍ୱାରଶନୀ, ଗୁଡ଼ି, ଦେବତା ଗୁଡ଼ି ଇତ୍ୟାଦି ।

୨) ଗୁଡ଼ିଘର - ଗ୍ରାମଦେବୀଙ୍କ ଘର - ହୁଣ୍ଡିଘର, ଝାଙ୍କର ଘର, ଦେବତାଘର, ପୂଜାସ୍ଥାନ, ନିଶାନ ଦେବତା ।

ଅବିଭକ୍ତ କୋରାପୁଟ ଜିଲ୍ଲା ସମେତ ସମସ୍ତ ଆଦିବାସୀ ଅଞ୍ଚଳର ଗ୍ରାମମାନଙ୍କରେ ଗୁଡ଼ିଘର, ହୁଣ୍ଡିଘର, ଝାଙ୍କର ବା ଜାଙ୍କର ଘରଥାଏ । ଏହା ମୂଳତଃ ସେମାନଙ୍କ ଗ୍ରାମର ଗ୍ରାମଦେବତା ବା ଦେବୀଙ୍କ ପୀଠକୁ ବୁଝାଇଥାଏ । ମହୁଲ, ଆମ୍ବ, କେନ୍ଦୁ ବା ସର୍ଗୀ ଆଦି କୌଣସି ପବିତ୍ର ବୃକ୍ଷ ପାଖରେ ଚାଳ ବା ଖପରରେ ଛପର ହୋଇଥିବା ଗୁଡ଼ିଘର ରହିଥାଏ । ଆଜିକାଲିକୁ ଏହା ଇଟା ସିମେଣ୍ଟରେ ନିର୍ମିତ ହେଲାଣି । ଆଦିବାସୀମାନେ ବର୍ଷର ବିଭିନ୍ନ ସମୟରେ, ଯେ କୌଣସି ପର୍ବ ପାଳନ କଲେ କୌଣସି ନୂତନ ଖାଦ୍ୟ ପଦାର୍ଥ ଖାଇଲେ ଚାଷକାମ, ଶିକାର, ବିବାହ, ମୃତାହ ଆଦି ପ୍ରତ୍ୟେକଟି କାମରେ ପ୍ରଥମେ ଏଇ ଗୁଡ଼ିଘରେ ଦେବୀଙ୍କୁ ମଦ୍ୟ ମାଂସ ଓ କୁକୁଡ଼ା, ପାରା ଇତ୍ୟାଦି ବଳି ଦେଇ ପୂଜା କରିବା ସହ ଫୁଲ, ପତ୍ର, ଫଳ ଓ ନଡ଼ିଆ ଇତ୍ୟାଦି ଭୋଗ ଦେଇଥାନ୍ତି ।

୩) କନ୍ଧ ପରିବାରରେ ବାପମାଆ ଘରର ଆଗପଟେ ଯେଉଁ ଗୋଟିକିଆ ଘରେ ରହନ୍ତି, ତାକୁ ମଧ୍ୟ ସେମାନେ ଗୁଡ଼ି ଘର କହିଥାନ୍ତି ।

ଗୁଡ଼ି ଶବ୍ଦଟି ମୂଳ ସଉରା ଶବ୍ଦ 'ଗୁଡ଼ିସା'ରୁ ଆସିଥିବା ଅନୁମେୟ । ଏହାର ଅର୍ଥ ଛୋଟ ପତ୍ର କୁଡ଼ିଆ, ଯେଉଁଠି ଗ୍ରାମଦେବୀଙ୍କ ଅଧିବାସ ହୋଇଥାଏ । ଡ. ବେଣୀ

ମାଧବ ପାଢ଼ୀ ମଧ୍ୟ 'ଗୁଡ଼ିଶା' ଶବ୍ଦରୁ ହିଁ 'ଗୁଣ୍ଡିଚା' ଶବ୍ଦର ସୃଷ୍ଟି ବୋଲି ମତବ୍ୟକ୍ତ କରିଛନ୍ତି ।

୬୨. ଗୁଣପୁର - ଦେ.ବି. : ସ୍ଥାନ ବିଶେଷର ନାମ । ରାୟଗଡ଼ା ଜିଲ୍ଲାର ଏକ ଉପଖଣ୍ଡର ସଦର ମହକୁମା । ଗୁଣି ଜନଙ୍କର ପୁର । ଗଂଗବଂଶୀ ରାଜା ଗୁଣାର୍ଣ୍ଣବଙ୍କ ଦ୍ୱାରା ନିର୍ମିତ ପୁର ବା କଣ୍ଟକ ରାଜ୍ୟର ପ୍ରାଚୀନତମ ରାଜଧାନୀ, ଯାହା ରାଜା ଗୁର୍ଣ୍ଣାର୍ଣ୍ଣବଙ୍କ ଦ୍ୱାରା ଗୁଣପୁର ନାମରେ ନାମିତ ହୋଇଥିଲା । ବଂଶଧରା ନଦୀକୂଳରେ ଅବସ୍ଥିତ ଏହି ସହରରେ ଅନତି ଦୂରରେ ଏବେ

ବି ରହିଛି କିଛି ଭଗ୍ନ ଦୁର୍ଗର ଧ୍ୱଂସାବଶେଷ ଏବଂ ବିଶ୍ୱନାଥ ମନ୍ଦିର ପରି ପ୍ରାଚୀନ କଳାକୃତିର କାଠ ନିର୍ମିତ ମନ୍ଦିର । ପ୍ରାଚୀନତମ ବାଣୁଆ ମନ୍ଦିର, ହନୁମାନ ମନ୍ଦିର, ମାଣିକେଶ୍ୱରୀ ମନ୍ଦିର, ଭେଙ୍କଟେଶ୍ୱର ମନ୍ଦିର, ମରାଠିଗୁଡ଼ାର ରାମେଶ୍ୱର ମନ୍ଦିର ସମେତ ବାଲାଜୀ ମଠ ଓ ନବ ନିର୍ମିତ ଶ୍ରୀ ଜଗନ୍ନାଥ ମନ୍ଦିର ଇତ୍ୟାଦି ବହୁ ଦର୍ଶନୀୟ ସ୍ଥାନ ଓ ପ୍ରାଚୀନ କଳାକୃତି ସମୂହ ରହିଛି । ଏହା ଆଖପାଖରେ ଆଦିମ ଜନଗୋଷ୍ଠୀ ସଉରାମାନେ ବସବାସ କରନ୍ତି ।

୬୩. ଗୁଣ୍ଡୁଗୁଡ଼ା ବା ବକଡ଼ା ଗୁଡ଼ା - ଦେ.ବି. : ଗ୍ରାମ ବିଶେଷର ନାମ । ମାଲକାନଗିରି ଜିଲ୍ଲାର କନାର ପାଲି ପଞ୍ଚାୟତର ଏହି ଗ୍ରାମଟି ଗୁଣ୍ଡୁରାମ ସିଗରଆଙ୍କ ଦ୍ୱାରା ବସାଯାଇଥିଲା ବୋଲି ଏହାର ପ୍ରଥମ ନାମ ଥିଲା ଗୁଣ୍ଡୁଗୁଡ଼ା । କିନ୍ତୁ ପରେ ଲୋକବସତି ବଢ଼ିବା ସଂଗେସଂଗେ ଏଠାରେ ଥିବା ଏକ ପବିତ୍ର ଜମି ବକଡ଼ା ମୁଣ୍ଡାର ନାମ ଅନୁସାରେ ଏହାର ନାମ ହେଲା ବକଡ଼ାଗୁଡ଼ା । ଏହି ବକଡ଼ାଗୁଡ଼ାକୁ ଲାଗି ରହିଛି ଏକ ଛୋଟ ମୁଣ୍ଡା । ଏଠାରେ ଅଛନ୍ତି ଭରମା ଦେଇ ଓ ବାମନ୍ ଦେଇ ଠାକୁରାଣୀ । ତା ସାଂଗକୁ ଅଛନ୍ତି କାରିଆ ଭସି ଦେବତା । ସଗରିଆ ମାନେ କାରିଆ ଭସି ଠାକୁରାଣୀଙ୍କ ପୂଜାରି । ଭରମା ଦେଇଙ୍କ ଠାରେ ବକଡ଼ା ବଳି ପଡୁଥିବା ବେଳେ ବାମନ୍ ଦେଇ ଠାକୁରାଣୀଙ୍କୁ ଦିଆଯାଏ ପାରା, ପଇତା, ଛତା ଓ ମୁଗଡାଲି । କିନ୍ତୁ କାରିଆ ଭସି ଚାହାନ୍ତି ବୋତଲେ ମଦ, ଅଣ୍ଡା ଓ କାଳିଆ କୁକୁଡ଼ା । ଏଠାକାର ମୁଖ୍ୟ ଅଧିବାସୀ ସଗରିଆମାନେ ହରିଜନ ସଂପ୍ରଦାୟର ଓ ଆସିଛନ୍ତି ଛତିଶଗଡ଼ ଅଞ୍ଚଳରୁ । ଏମାନଙ୍କ ଭାଷା ହାଲ୍‌ବି । ଲାଜାରିନ୍ ମାତା, ଇଙ୍ଗ୍‌ଲାଜ୍‌ଦିନ ମାତା,ପରଦେଶିନ୍ ମାତା ଓ ଡଙ୍ଗରଦେଇଙ୍କ ପୀଠ ମଧ୍ୟ ଏଠାରେ ରହିଛି ।

୬୪. ଗୁଦନି ଚିନା - *ଦେ.ବି.* : ଚିତାକୁଟା ଚିହ୍ନ । ଏହା ପ୍ରାୟ ସବୁ ଆଦିବାସୀ ଗୋଷ୍ଠୀରେ ପ୍ରଚଳିତ । ଏବେ ମଧ୍ୟ କନ୍ଧ ଭତରା ଓ ପରଜା ଗୋଷ୍ଠୀରେ ଏହା ଦେଖାଯାଏ । ବାନା ଗୁଦନି, ଗୋଦନା: ଚିତାକୁଟାଇବା, ଚିନା : ଚିହ୍ନ, ବିଭିନ୍ନ ପ୍ରକାର ପ୍ରତୀକ, ସଂକେତ, ଚିହ୍ନ । (ଦ୍ରଷ୍ଟବ୍ୟ : ବାନା ଗୋଦାନା । )ଗୁଦନି : ଚିତା କୁଟାଉଥିବା ସ୍ତ୍ରୀ ଲୋକ (ଗୋଦନି) । ଏହିସବୁ ଚିହ୍ନି ହେଉଛି : ଡାଳ, ପତ୍ର, ଫୁଲଫଳ, ଚନ୍ଦ୍ର, ସୂର୍ଯ୍ୟ, ବିଭିନ୍ନ ରେଖା ଓ ବିନ୍ଦୁ ଇତ୍ୟାଦି ।

୬୫. ଗୁଂନ୍‌ଚା ପାରା - *ଦେ.ବି.* : ଏକ ନିର୍ଦ୍ଦିଷ୍ଟ ସମୟକୁ ବୁଝାଏ । ଗୁନ୍‌ଚା ଯାତ୍ରାର ମାସ । ଆଷାଢ଼ ପାରା - ଶ୍ରାବଣ ମାସ, ଏହି ମାସରେ ବିହନ ରୋପା, ପଲାରୋପା, ନିଷାନି ହୋଇଥାଏ । ଗୁଣ୍ଡିଚା ଯାତ୍ରାର ପରବର୍ତ୍ତୀ ମାସ ଅର୍ଥାତ୍ ଶ୍ରାବଣ ମାସ ଅବଧିକୁ 'ଗୁନ୍‌ଚା ପାରା' କୁହାଯାଏ ।

୬୬. ଗୁନୁଂକୁ - *ଦେ.ବି.* : ବାଦ୍ୟଯନ୍ତ୍ର ବିଶେଷ । ଏହା ବଣ୍ଡା ସଂପ୍ରଦାୟଙ୍କ ବାଉଁଶ ପାତିଆରେ ତିଆରି ଏକ ପ୍ରକାର ଦେଶୀୟ ବାଦ୍ୟ । ଛୋଟ ବାଉଁଶପାତିଆକୁ ଏକ ତନ୍ତୁରେ ସଂଯୋଗ କରି ତାହାର ଏକ ପାର୍ଶ୍ୱକୁ ପାଟିରେ ପୁରାଇ ଦଉଡ଼ି ସଞ୍ଚାଳନ କଲେ ଏକ ପ୍ରକାର ରିଂ ରିଂ ରିଂ ଧ୍ୱନି ସୃଷ୍ଟି ହୋଇଥାଏ । ମୁଖ୍ୟତଃ ଚଇତି ପରବ ସମୟରେ ଏହା ବ୍ୟବହୃତ ହୁଏ । ଏହାର ବ୍ୟବହାର ଧୀରେଧୀରେ କମି ଆସୁଛି ।

୬୭. ଗୁପତେଶର - *ଦେ.ବି.* : ଗୁପ୍ତେଶ୍ୱର - ଗୁପ୍ତରେ ଥିବା ଈଶ୍ୱର - କୋରାପୁଟ ଜିଲ୍ଲାର ଏକ ପ୍ରସିଦ୍ଧ ଶୈବପୀଠ । ଏକ ଦର୍ଶନୀୟ ସ୍ଥାନ । ଦୁରୁଆ ଗୋଷ୍ଠୀ ଦ୍ୱାରା ପୂଜିତ ।

କୋରାପୁଟ ଜିଲ୍ଲା ବୈପାରୀଗୁଡ଼ା ବ୍ଲକ୍ ଡେଇଁଗଲେ ରାମଗିରି ପାହାଡ଼ ଓ କୋଲାବ ନଦୀରେ ତୀରରେ ପଡ଼େ ପ୍ରାକୃତିକ ସୌନ୍ଦର୍ଯ୍ୟର ଏକ ଗନ୍ତାଘର । ଏହି ପାହାଡ଼ ଗୁମ୍ଫାରେ ରହିଛ ଏକ ପ୍ରାକୃତିକ ଶିବ ଲିଙ୍ଗଙ୍କ ଆସ୍ଥାନ । ଏହି ଶୈବପୀଠରେ ଶିବରାତ୍ରୀ ଅବସରରେ ଦୀର୍ଘ ତିନିଦିନ ଧରି ଯାତ୍ରା ଅନୁଷ୍ଠିତ ହୁଏ । ଦୁରୁଆ ଆଦିବାସୀ ଗୋଷ୍ଠୀର ଗୁପ୍ତେଶ୍ୱର ହେଉଛନ୍ତି ପ୍ରସିଦ୍ଧ ଦେବତା । ଦୁରୁଆ ପୂଜାରୀ ଗୁପ୍ତେଶ୍ୱରଙ୍କ ପାରମ୍ପରିକ ଭାବେ ଓ ନିଜସ୍ୱ ରୀତିରେ ପୂଜା କରିଥାନ୍ତି । ଏହି ଗୁମ୍ଫା ମଧ୍ୟରେ ଛାତରୁ ଓହଳିଥିବା ପଥରକୁ କାଳିଗାଈର ଚୀର ବୋଲି କୁହାଯାଏ । ବାସ୍ତବରେ ଏହା

Stalectite Stone, ଯାହାକି, ଛିଦ୍ରଯୁକ୍ତ । ଓଲଟକ୍ରମରେ କ୍ଷୟପ୍ରାପ୍ତ ହୋଇ ଏହି ପଥ୍‌ର କ୍ରମଶଃ ଏହି ଅବସ୍ଥାପ୍ରାପ୍ତ ହୋଇଥାଏ । ଆଦିବାସୀମାନଙ୍କ ଦ୍ୱାରା ଆବିଷ୍କୃତ ଏହି ଗୁପତଗୁମ୍ଫା ଓ ଈଶ୍ୱର ଦେବତାଙ୍କ ସଂପର୍କରେ ଏ ଅଞ୍ଚଳରେ ବହୁ ପ୍ରଚଳିତ ପ୍ରବାଦ ରହିଛି । କୁହାଯାଏ ଅତୀତରେ ଗାଦବା ଜନଗୋଷ୍ଠୀ ବା ବାରଭାୟା ଓଡ଼ମାନଙ୍କର ମୁଖ୍ୟ ମୟ ଦାନବ ଏହି ଗୁପ୍ତଗୁହା ମଧ୍ୟରେ ରହି ଏହି ଈଶ୍ୱରଙ୍କୁ ପୂଜା କରୁଥିଲା ଓ ସେ ଜଣେ ପ୍ରଖ୍ୟାତଶିଳ୍ପୀ ଥିବାରୁ ଏହାକୁ ଏକ କାରୁକାର୍ଯ୍ୟ ଖଚିତ ସୁଶୋଭିତ ଗୁମ୍ଫାରେ ପରିଣତ କରିଥିଲା ।

ରାମାୟଣରୁ ଜଣାଯାଏ ପୁରୁଷୋତ୍ତମ ରାମଚନ୍ଦ୍ର ରାମଗିରିରେ ଅବସ୍ଥାନ କରୁଥିବା ସମୟରେ ଏହି ଗୁପ୍ତଗୁମ୍ଫାରେ ଗୁପ୍ତେଶ୍ୱର ମହାଦେବଙ୍କୁ ସ୍ଥାପନ କରି ପୂଜା ଅର୍ଚ୍ଚନା କରୁଥିଲେ । କେତେକ ଐତିହାସିକ କହନ୍ତି ଗୁପ୍ତ ରାଜତ୍ୱ କାଳରେ ଏହା ସ୍ଥାପିତ ହୋଇଥିବାରୁ ଏହା ଗୁପ୍ତମାନଙ୍କ ଈଶ୍ୱର ବା ଗୁପ୍ତେଶ୍ୱର ନାମରେ ନାମିତ । ଏହି ପୀଠ ଓ ଏହାର ଦେବତାଙ୍କ ଆବିଷ୍କାରକୁ ନେଇ ଯେଉଁ କାହାଣୀଟି ପ୍ରଚଳିତ ଅଛି ତାହା ହେଉଛି : ଏକଦା ଏହି ଶିରୀବେଡ଼ା ଅରଣ୍ୟରୁ ପଶୁପକ୍ଷୀ ଶିକାର କରିବା ଦାୟିତ୍ୱରେ ଥିବା ଜୟପୁର ରାଜାଙ୍କ ଜଣେ କର୍ମଚାରୀ, ଶିକାର ପାଇଁ ଯେଉଁ କେତେଜଣ ଆଦିବାସୀଙ୍କୁ ନିୟୋଜିତ କରିଥିଲେ, ସେମାନଙ୍କ ମଧ୍ୟରୁ ଦିନେ ଜଣେ ଆଦିବାସୀ ଶିକାରୀ ଗୋଟିଏ ହରିଣକୁ ଶିକାର କରିବା ଲକ୍ଷ୍ୟ ନେଇ ତା ପଛରେ ଗୋଡ଼ଉ ଗୋଡ଼ଉ ଏଇ ଗୁପ୍ତ ଗୁମ୍ଫା ମଧ୍ୟରେ ପ୍ରବେଶ କରି ଦେଖିଲା ସେଠାରେ ହରିଣ ବଦଳରେ ଗୋଟିଏ ଜଟାଜୁଟଧାରୀ ଜ୍ୟୋର୍ତିମୟ ପୁରୁଷ ଧ୍ୟାନରେ ବସିଛନ୍ତି । ଏହା ଏକ ପାହାଡ଼ ଗୁମ୍ଫା ହୋଇଥିଲେ ମଧ୍ୟ ଏହା ମଧ୍ୟରେ ମୁକ୍ତ ଆଲୋକ ଓ ବାୟୁ ପ୍ରବେଶ କରିପାରୁଛି । ଆଦିବାସୀ ଶିକାରୀଟି ଆଉ ଆଗକୁ ନ ବଢ଼ି ସେଠାରୁ ଭୟରେ ପଳାଇ ଆସି ରାଜାଙ୍କ ଆଗରେ ଦେଖିଥିବା ଦୃଶ୍ୟ ସଂପର୍କରେ ବର୍ଣ୍ଣନା କରିଥିଲା । ପରେ ବହୁ ଲୋକ ଏହି ଦୃଶ୍ୟ ପ୍ରତ୍ୟକ୍ଷ କରିବାକୁ ଯାଇ ସେହି ଗୁମ୍ଫା ମଧ୍ୟରେ ପ୍ରବେଶ କରି ସେଠାରେ ଜ୍ୟୋର୍ତିମୟ ପୁରୁଷଙ୍କ ସ୍ଥାନରେ ଶିବଙ୍କ ମୂର୍ତ୍ତି ସଦୃଶ ଏକ ଦଶଫୁଟ ଉଚ୍ଚ ଓ ଆଠଫୁଟ ଗୋଲେଇ ବିଶିଷ୍ଟ ଜ୍ୟୋର୍ତିଲିଂଗ ଦର୍ଶନ କରିଥିଲେ । ଏହାପରେ ଜୟପୁର ରାଜାଙ୍କୁ ସ୍ୱପ୍ନାଦେଶ ହେଲା । ସେ ଗୁପ୍ତେଶ୍ୱର ମହାଦେବଙ୍କ ସେବାପୂଜାର ବ୍ୟବସ୍ଥା କରାଇଥିଲେ । ପୁରାଣରେ ଏହି ଗିରିଗୁହାକୁ ପାତାଳ ବିବର ଭାବେ ବର୍ଣ୍ଣନା କରାଯାଇଛି ।

ଏହା ମାଲକାନଗିରି ମାଳଭୂମିଠାରୁ ୨ହଜାରଫୁଟ ନିମ୍ନ ଭୂମିରେ ରହିଛି । ଏହି ଗୁମ୍ଫାଟି ଚତୁଃପାର୍ଶ୍ୱରେ ସ୍ଥଳଭୂମିଠାରୁ ପ୍ରାୟ ୫୦୦ଫୁଟ ଉଚ୍ଚରେ ଥିବା ଏକ ଚୂନପଥର ପର୍ବତରେ ଅବସ୍ଥିତ । ଏହି ଗୁମ୍ଫାଦ୍ୱାରରେ ପ୍ରବେଶ ପାଇଁ ପ୍ରାୟ ୨୦୦ ପାଖାପାଖି ପାହାଚ ଅତିକ୍ରମ କରିବାକୁ ପଡ଼େ । ଏକ ବୃତ୍ତାକାର ଏକ କକ୍ଷ ଭିତରେ ଏଠାରେ ଦେଖିବାକୁ ମିଳେ ପ୍ରାୟ ୬ଫୁଟ ଉଚ୍ଚର ଏବଂ ୮ ଫୁଟ ଗୋଲେଇର ଲିଂଗ ସଦୃଶ । Stale ctite ପଥରର ପ୍ରାକୃତିକ ଶିବ ଲିଂଗ । ଜୟପୁର ରାଜା ବୀର ବିକ୍ରମ ଦେବ (୧୬୪୮-୧୬୬୯)ଙ୍କ ଅମଳରେ ଏହା ଆବିଷ୍କୃତ ହୋଇଥିଲା ଏବଂ ବଡ଼ ଜାକଜମକରେ ଉଦ୍‌ଘାଟନି ପୂଜାପର୍ବ ଅନୁଷ୍ଠିତ ହୋଇଥିଲା । ଏବେ ମଧ୍ୟ ପ୍ରତିବର୍ଷ ଶିବରାତ୍ରିରେ ଏଠରେ ତିନିଦିନ ବ୍ୟାପୀ ଏକ ବିରାଟ ଜାଗରମେଳା ଅନୁଷ୍ଠିତ ହୋଇଥାଏ ।

ଏହି ପ୍ରଥମ ଗୁମ୍ଫାର ପଛକୁ ଥିବା ଦ୍ୱିତୀୟ ଗୁମ୍ଫାରେ ଛାତ ଉପରକୁ ଓହଳିଥିବା ଗାଈ ପହ୍ନା ସଦୃଶ ଷ୍ଟାଲେକ୍‌ଟାଇଟ୍ ପଥରକୁ ଲୋକମାନେ କାମଧେନୁ ପହ୍ନା ରୂପେ ପୂଜା କରନ୍ତି ଏବଂ ଏଥିରୁ ଝରୁଥିବା ପାଣିକୁ ପ୍ରସାଦ ରୂପେ ପାଇବାପାଇଁ ପାପୁଲିରେ ସଂଗ୍ରହ କରନ୍ତି । ଏଭଳି ପାଣି ସଂଗ୍ରହ କରିପାରିଲେ ସବୁ ମନସ୍କାମନା ପୂର୍ଣ୍ଣ ହୋଇଥାଏ ବୋଲି ଲୋକ ବିଶ୍ୱାସ ରହିଛି । ଏହାର ପାଦଦେଶରେ ଶାବେରୀ ବା କୋଲାବ ନଦୀ ପ୍ରବାହିତ ହେଉଛି । ଆଦିବାସୀ ଲୋକମାନେ ପର୍ବ ସମୟରେ ଗୀତ ନାଚ ଆରମ୍ଭ କରିବା ପୂର୍ବରୁ ତାଙ୍କର ଇଷ୍ଟଦେବତା ଭାବେ ଏହି ଗୁପ୍ତେଶ୍ୱରଙ୍କୁ ବର୍ଣ୍ଣନା କରିବାକୁ ଯାଇ ଗାଇଥାନ୍ତି -

"ରାମ ଗିରିତାନେ ଗୁପତ ସର
ତଇରେ ପାକନା ତାରକୁ ତାର
ଭିତରେ ଦେଖିଲେ ବିଙ୍ଗ ଅନ୍ଧାର
ବସିଛି ମାଦେବ ବର
ଦଶ ଆଙ୍ଗୁଠିରେ ବିନତି ଯୋଡ଼ିଲେ
କାଳୀ ଗାଈ ଦେବ କ୍ଷୀର ।" (ଚଇତ ପରବ ଗୀତ)

ଏହି ଗୁମ୍ଫା ମଧ୍ୟରେ ଏକ ପଥରର ଗାଈ ମୂର୍ତ୍ତି ରହିଛି । ଯଦି କେହି ଗୁପ୍ତେଶ୍ୱରଙ୍କ ପାଖେ କିଛି ମାନସିକ କରେ ଏବଂ ତା'ର ମାନସିକ ପୂରଣ ହେବକି ନାହିଁ ଜାଣିବାକୁ ଚାହେଁ ତେବେ ସେ ଏହି କାଳୀ ଗାଈ ଚିର ପାଖରେ ହାତ ପତାଇଲେ ଯଦି ତା ହାତରେ ବୁନ୍ଦା କ୍ଷୀର ଝରିପଡ଼େ, ତେବେ ତା'ର ମାନସିକ ପୂରଣ ହେବ ବୋଲି ସେ ସ୍ଥିର ନିଶ୍ଚିତ ହୋଇଥାଏ । ଘଞ୍ଚ ଅରଣ୍ୟ, ପାର୍ବତ୍ୟ ଗୁମ୍ଫା, ନଦୀ, ଝରଣା ସମନ୍ୱୟରେ ଚିତ୍ତାକର୍ଷକ ଦୃଶ୍ୟ ସୃଷ୍ଟି କରିଥିବା ସ୍ଥାନଟି ଏ ଜିଲ୍ଲାର ପର୍ଯ୍ୟଟନ କେନ୍ଦ୍ରଭାବେ ମଧ୍ୟ ବେଶ୍ ପରିଚିତ । ଏହି ମନ୍ଦିରରେ ପୂର୍ବରୁ ଦୁରୁଆ ଆଦିବାସୀ ମାନେ ସେବା ପୂଜା କରୁଥିଲେ ମାତ୍ର ଜୟପୁର ଜମିଦାରୀ ସମୟରେ ବ୍ରାହ୍ମଣ ପୂଜକ ବ୍ୟବସ୍ଥା କରାଯାଇଥିଲା । ଏବେ ପୁନଶ୍ଚ ଏହି ମନ୍ଦିରରେ ସେବାକାର୍ଯ୍ୟ ପାଇଁ ଦୁରୁଆ ଆଦିବାସୀ ମାନଙ୍କ ଅଧିକାର ଦିଆଯାଇଛି ।

୬୮. ଗୁପାସଙ୍ଗ୍ - *ଦେ.ବି. :* ବଣ୍ଡା ଗୃହ ଦେବତା । ମୁଦୁଲିପଡ଼ା ଓ ଅଣ୍ଡ୍ରାହାଲ ଦୁଇ ଗ୍ରା.ପ.ର ୩୨ଖଣ୍ଡ ଗ୍ରାମ ଯାହାକୁ ବାରଜାଙ୍ଗର ବା ଭାଇ ଭଉଣୀର ଦେଶ ବୋଲି କୁହାଯାଏ, (ମାଲକାନଗିରି ଜିଲ୍ଲା) ସେହି ସବୁ ଗ୍ରାମର ପ୍ରତିଘରେ, ଘର ମଝିରେ ଏକ କାଠଖମ୍ବ ବା ଖୁଣ୍ଟପୋତା ହୋଇଥିବାର ଦେଖିବାକୁ ମିଳେ । (ସ୍ତମ୍ଭ ଦେବତାର ପ୍ରତୀକ ତୁଳନା - ବିମା / ଭୀମା ଦେବତା / ବୀର ଖମ୍ବଦେବତା) ଏହି କାଠଖମ୍ବକୁ ଗୁପ୍‌ସିଙ୍ଗ ବା ଗୃହଦେବତା ରୂପେ ପ୍ରତି ପୂଜା ପାର୍ବଣ ଶୁଭ କାର୍ଯ୍ୟରେ ପୂଜା କରାଯାଏ ।

୬୯. ଗୁବ୍‌ରାଗୁବ୍‌ରା - *ଦେ.ବି. :* ଏଠି ଅଧେ ସେଠି ଅଧେ - ଇଂ. - Heither & Theither. ଇତସ୍ତତଃ । ମନେକର ଜମିରେ ଧାନବୁଣା ହୋଇଛି । ସଂଗେସଂଗେ ଅର୍ଥାତ୍ ଗଜା ହେବା ପୂର୍ବରୁ ବର୍ଷା ହୋଇ ତାହା ଧୋଇଗଲା । ତେବେ ଧାନ ସବୁକୁ ସେହି ବର୍ଷାପାଣି ଧୋଇନେଲା । ଏଠି ଅଧେ ସେଠି ଅଧେ ତାହା ବଢ଼ିଲା । ତେବେ ସେ ସ୍ଥଳରେ 'ଗୁବ୍‌ରା ଗୁବ୍‌ରା'ଶବ୍ଦର ପ୍ରୟୋଗ ହେବ । ଯେପରିକି "ବନ୍-ବୁନ୍‌ଲା ପଚେ ପଚେ ବଡ଼ ବର୍ଷା ହୋଇଗଲା । ଗୁବ୍‌ରା ଗୁବ୍‌ରା ଆକରଲା । ଚଡ଼ ବାନିଆ ଦିଶ୍‌ଲାନି ।"

୭୦. ଗୁମ୍‌ଟା ଗୁମ୍‌ଟା - *ଦେ.ବିଂ. :* (୧) ଗୁଲୁଗୁଳି । ଗ୍ରୀଷ୍ମକାଳର ଗୁଲୁଗୁଳି । ଲୋକଗୀତରେ ଗୁମ୍‌ଟା ଗୁମ୍‌ଟା ଖରା ସହିତ ଅବିଶ୍ୱାସୀ ପୁରୁଷର ତୁଳନା କରାଯାଇଥାଏ ।

(୨) ଛାଇ ଆଲୁଅର ମିଶ୍ରିତ ରୂପ । (୩) ଏକ ଗଭୀର ଭାବ (୪) ଅବିଶ୍ୱାସ୍ୟ, ଯାହାର କିଛି ନିଶ୍ଚିତ ସ୍ୱରୂପ ନଥାଏ ।

ବ୍ୟବହାର : ବାଲିଫୁଲ ମୋର ସେବତୀ ସରା
କାକେ ନାଇ ଦିଏ ଦାରା
ଗୁମ୍‌ଟା ଗୁମ୍‌ଟା ଖାରା
ପୁରୁଷ ଜାତିକେ ପରତେ ନାଇଁ
ଯାର ସନେ ତା'ର ପାରା ।

୭୧. ଗୁମାମ୍ ପେନୁ - *ଦେ.ବି. :* କୋରାପୁଟ ଜିଲ୍ଲାର କେତେକ ଅଞ୍ଚଳର କନ୍ଧ ଆଦିବାସୀ ସଂପ୍ରଦାୟ ଗ୍ରାମର ସବୁ ପ୍ରକାର ଶୁଭ ଓ ମଂଗଳ ପାଇଁ ଗୁମାମ୍ ପେନୁଙ୍କୁ ପୂଜା କରିଥାନ୍ତି । ଏମାନେ ସୀତାକନିଆ ବା ସୀତାପେନୁଙ୍କୁ ଧନର ଦେବତା ଭାବରେ, ବାରନାପେନୁଙ୍କୁ ବର୍ଷାର ଦେବତା ଭାବରେ, ଜଲାପେନୁଙ୍କୁ ପବନ ଦେବତା ଭାବରେ ପୂଜା ଅର୍ଚ୍ଚନା କରିଥାନ୍ତି । ଗୁମାମ୍ ପେନୁ ହେଉଛନ୍ତି ଅନ୍ୟାନ୍ୟ ସଂପ୍ରଦାୟରେ ହୁଣ୍ଡୀ ଦେବତା ଭଳି କନ୍ଧମାନଙ୍କର ଗ୍ରାମ ଦେବତା ।

୭୨. ଗୁରାଙ୍ଗବୀର - *ଦେ.ବି. :* ରୋଗ ବୈରାଗ୍ୟର ଦେବତା । କୌଣସି ବ୍ୟକ୍ତିକୁ ଜ୍ୱର, ଝାଡ଼ା, ବାନ୍ତି ହେଲେ ବଣ୍ଡାମାନେ ଗୋଟିଏ ସିନ୍ଧିବୁଟା (ଭୂଇଁ ଖଜୁରୀ ବୁଦା)କୁ ନେଇ ଚଲାବାଟରେ ଏହି ପୂଜା କରିତାନ୍ତି । କୁକଡ଼ା, ଅଣ୍ଡା, ମନ୍ଦାରଫୁଲ ଓ ମୁରୁଜ ଇତ୍ୟାଦି ଏଥିରେ ଲାଗେ ।

୭୩. ଗୁରାନି - *ଦେ.କ୍ରି. :* ଦରାଣ୍ଡି ହେବା / ବାଟ ନପାଇବା ଅର୍ଥରେ ବ୍ୟବହୃତ ହୁଏ । ଗୁରାନି ହେଉଛି ଖଦି ପଣତେ, ପାଶୁର ନଯିବ ମତେ ।

୭୪. ଗୁରୁମାଇ / ଗୁରୁମାଇଣୀ - *ଦେ.ବି. :* ନାରୀ ପୂଜାରିଣୀ । ଗୁରୁ ହୋଇଥିବା ସ୍ତ୍ରୀ ବା ଦେବୀ ଦେହରେ ପ୍ରବେଶ କରୁଥିବା ସ୍ତ୍ରୀ ବା ମାଈ ବା ମାଆ ଯେଉଁ ଘରର ଝିଅ ଦେହରେ କିଛି ଐଶ୍ୱରିକ ସତ୍ତା ଥାଏ ଏବଂ ତା'ର ଦେହ ଶୁଦ୍ଧ, ପୂତ ଏବଂ ସେଥିପାଇଁ ତା ଦେହରେ ଦେବୀ ଦେବତା ପ୍ରବେଶ କରି ପାରିବେ, ସେ ସବୁ ପରୀକ୍ଷା କରି ସେ ଅଞ୍ଚଳର ପ୍ରସିଦ୍ଧ ଗୁଣିଆ ବା ଶିରା ସେହି ଘରର ଝିଅକୁ କୁମାରୀ ଅବସ୍ଥାରେ ପୁଷ୍ପବତୀ ହେବା ପୂର୍ବରୁ ବିଭିନ୍ନ ରୀତିନୀତିମତେ ଗୁରୁମାଇଣୀ ଭାବେ ନିର୍ବାଚନ

କରେ, ବିଭିନ୍ନ ବିଦ୍ୟା ଶିକ୍ଷା ଦିଏ। ଏହି ଗୁରୁମାଈଣୀ ଦୀକ୍ଷା ସାଧାରଣତଃ ଶ୍ରୀଗୁଣ୍ଡିଚାଦିନ ରଥ ଟାଣିବା ସମୟରେ ଏବଂ ଅନ୍ୟ ଭଲ ଯୋଗ ଦେଖି ଦିଆଯାଏ। ଗୁରୁମାଈଣୀ ବିଭିନ୍ନ ପର୍ବ ପର୍ବାଣୀ ଓ ବାଲିଯାତ୍ରା ଆଦିରେ ଗ୍ରାମରେ ଦେଓବାଦ୍ୟ ବାଜିବା ମାତ୍ରେ ବିଜେ କରେ। ସେ ନିଜ ଭାଷାରେ ମନ୍ତ୍ର ପଢ଼େ। ପରେ ତା' ଦେହରେ ତା'ର ଉପାସ୍ୟ ଦେବୀ ଦେବତା ବିଜେ କରନ୍ତି। ବାଳମୁକୁଳା କରି ସେ ନାଚ କରିବାକୁ ଆରମ୍ଭ କରେ। ତା'ର ବାହ୍ୟ ଚେତନା ଲୋପ ପାଏ। ଗ୍ରାମର ଆର୍ତ୍ତ ଲୋକମାନେ ସେମାନଙ୍କର ସମସ୍ୟା ତା' ଆଗରେ ଉପସ୍ଥାପନ କରନ୍ତି। ସେ ସେହି ସମସ୍ୟାର ସମାଧାନର ବାଟ ବତାଇ ଦିଏ। ଆଦିବାସୀ ସମାଜରେ ଗୁରୁମାଈର ସ୍ଥାନ ଅତି ଉର୍ଦ୍ଧ୍ୱରେ।

କନ୍ଧ ପ୍ରତିଶବ୍ଦ - ବେଜୁଣୀ / ପେଜୁଣୀ। ଭତରା, ପରଜା ଓ ଅନ୍ୟ ଆଦିବାସୀ ସଂପ୍ରଦାୟରେ ପାଳିତ ବାଲିଯାତ୍ରା (ଭୋଦ ବାଲି) ପର୍ବରେ ଏମାନେ ଏକ ସ୍ୱତନ୍ତ୍ର 'ଦୁନ୍ କେଲାବାଦ୍ୟ' (ମାଟିହାଣ୍ଡି ଉପରେ କୁଲା ଓ କୁଲା ଉପରେ ଧନୁ ରଖାଯାଇ ଧନୁର ଦଉଡ଼ି ସଂଚାଳନ କରି ଏହା ବଜାଯାଏ।) ବଜାଇ ପୁରାଣ ଗାଇଥାନ୍ତି। ପରଜା ଗୁରୁମାଈମାନେ ବିବାହ କାର୍ଯ୍ୟ କରିଥାନ୍ତି। ଏମାନଙ୍କୁ କାଳିସୀ ଲାଗିଥାଏ। ଏମାନେ ଦେହରେ ଦେବତା ଉଭା କରାଇ ଭଲମନ୍ଦ ବାଣୀ କହିଥାନ୍ତି। ଆଦିବାସୀ ସମାଜରେ ଗୁରୁମାଈ ସେହି ସଂପ୍ରଦାୟର ଧର୍ମୀୟ ବିଶ୍ୱାସର ପ୍ରତୀକ ଭାବେ ଗୃହୀତା ହୋଇଥାଏ। ଏମାନେ ଝଡ଼ାଫୁଙ୍କା ମଧ୍ୟ କରିଥାନ୍ତି।

ବିଭିନ୍ନ ଜାନିଯାତ୍ରାରେ ବିଶେଷତଃ ଦେଶିଆମାନଙ୍କ ବର୍ଷିକିଆ ବାଲିଯାତ୍ରା, ଭୋଦବାଲି, ତିନିବର୍ଷିଆ ବାଲି, ବାରବର୍ଷିଆ ବାଲିରେ ମାସ ବ୍ୟାପୀ ପୂଜାକରି, ପୁରାଣ, ଗାଉଥିବା ସ୍ତ୍ରୀ ଲୋକ, ପରଜା ସଂପ୍ରଦାୟ (ପେଙ୍ଗୁ ପରଜ)ରେ ଓ କନ୍ଧ ସଂପ୍ରଦାୟରେ ବିବାହ କର୍ମରେ ସହାୟତା କରୁଥିବା ସ୍ତ୍ରୀ ପୂଜାରିଣୀକୁ ଗୁରୁମାଈ ଆଖ୍ୟା ଦିଆଯାଇଥାଏ।

୭୫. **ଗୁରୁମାଈ ନାଟ** - *ଦେ.ବି.* : ଏକ ପ୍ରକାର ଦେବ କାର୍ଯ୍ୟ। ବାଲିଘରେ, ବାଟବିଭା ଏବଂ ବିଭିନ୍ନ ଉପାସନା ସ୍ଥାନରେ ଗୁରୁମାଈମାନଙ୍କୁ ଦେବତା ସବାର ହୋଇଥାଏ ଏବଂ ଗୁରୁମାଈମାନେ କଣ୍ଟାଦୋଳିରେ ବସିବା, ଜଳନ୍ତା ସଳିତାକୁ ପାଟିରେ

ପୁରାଇବା, ରଡ଼ ନିଆଁରେ ପାଦରଖି ନାଚ କରିବା ଇତ୍ୟାଦି କରିଥାନ୍ତି । ଏହାକୁ 'ଗୁରୁମାଈ ନାଚ' କହନ୍ତି ।

୭୬. **ଗୁରୁମାଈ ବସାଇବା** - *ଦେ.କ୍ରି.* : ଏକ ପ୍ରକାର ପୂଜାନୁଷ୍ଠାନ କରିବା । ପରିବାର ମଧ୍ୟରେ ଗୋରୁଗାଈ, ଛେଳିମେଣ୍ଢା, ପାରାକୁକୁଡ଼ା ଆଦି ପଶୁପକ୍ଷୀ ମରିଯାଉଥିଲେ, ଫସଲରେ ରୋଗ, ପୋକ ଲାଗିଲେ ଏବଂ ଗ୍ରାମରେ ଅଶୁଭ ଦେଖାଗଲେ ଗୁରୁମାଈକୁ ଡକାଇ ପୂଜାପାଇଁ ବସାଇଥାନ୍ତି । ଗୋଟିଏ କୁଲାରେ ଚାଉଳ ରଖି ଓ ଚାଉଳ ଉପରେ ଦୀପଟିଏ ଜାଳି ଗୁରୁମାଈ ଦେବାଦେବୀଙ୍କୁ ଆହ୍ୱାନ କରିଥାଏ । କେଉଁ ଦେବତା ଦେବୀଙ୍କ ଆକ୍ରୋଶରୁ ନିର୍ଦ୍ଦିଷ୍ଟ ଅଘଟଣ ଘଟୁଛି ଏକଥା ପରିବାରର ମୁଖ୍ୟ ବା ଗ୍ରାମର ମୁଖ୍ୟକୁ ଗୁରୁମାଈ ଜଣାଇଦିଏ ଏବଂ ତା'ର ପ୍ରତିକାରର ବାଟ ମଧ କରିଥାଏ । ଏହାକୁ ଗୁରୁମାଈ ବସାଇବା କହନ୍ତି ।

୭୭. **ଗୁସାନି : ଜୋଲା / କନ୍ୟାସୁନା** - *ଦେ.ବି.* : (୧) ଆଦିବାସୀ ସଂପ୍ରଦାୟ ଗୁଡ଼ିକରେ ଜୋଲା ବା କନ୍ୟାସୁନା ଦେବାର ପ୍ରଥା ରହିଛି । ବରଘର କନ୍ୟାପାଇଁ କନ୍ୟାପିତାଙ୍କୁ କିଛି ସୁନା, ଟଙ୍କା, ପଇସା, ଚାଉଳ, ମଦ, ମେଣ୍ଢା, ଛେଳି ପ୍ରଦାନ କରିବା ପ୍ରଥାକୁ ଦୁରୁଆ ଆଦିବାସୀମାନେ 'ଗୁସାନୀ' କହନ୍ତି ।

**ଗୁସାନି ରାଣ୍ଡୀ - ଝୋଲା,** - *ଦେ.ବି.* : (୨) ବିଧବା ବିବାହରେ ଦିଆଯାଉଥିବା କନ୍ୟାସୁନା, ଛାଡ଼ପତ୍ର ବିବାହରେ ଦୁରୁଆ ସଂପ୍ରଦାୟର ବରପକ୍ଷ କନ୍ୟାପକ୍ଷକୁ ଦେଇଥିବା କନ୍ୟାସୁନା । କୌଣସି କାରଣରୁ ଛାଡ଼ପତ୍ର ପାଇଥିବା କନ୍ୟାକୁ କୌଣସି ବର ବିବାହ କଲେ ଯେଉଁ କନ୍ୟାସୁନା ରୂପେ ଦେଇଥାଏ, ତାହାକୁ 'ଗୁସାନି' କୁହାଯାଏ ।

୭୮. **ଗେଗ୍ରା** - *ଦେ.ବି.* : ଅଳଙ୍କାର ବିଶେଷ । ଦେଶିଆ କନ୍ଧ ସଂପ୍ରଦାୟରେ ଗୋଡ଼ରେ ପିନ୍ଧା ଯାଉଥିବା ଏକ ଲୁହାର ବଳା । ଏହାର ନଳା ସଂପୂର୍ଣ୍ଣ ଭାବେ ବନ୍ଦ ହୋଇନଥାଏ । ତା ମଧ୍ୟରେ ଛୋଟ ଛୋଟ ଲୁହାର ଗୁଳା ରହିଥାଏ । ନୃତ୍ୟ ସମୟରେ ଏହିଠାରୁ ଝୁଣୁଝୁଣୁ ଶବ୍ଦ ବାହାରିଥାଏ । ସୁରୁଡ଼ି (କନ୍ଧର ଲମ୍ୱା ବଂଶୀ) ବାଦକମାନେ ଏହି ଗେଗ୍ରା ପିନ୍ଧି ବଂଶୀ ବଜାଇଥାନ୍ତି ।

୭୯. **ଗେଟା** - *ଦେ.ବି.* : ମନ୍ତ୍ରିତ ଦଉଡ଼ିରେ ତିଆରି ମାଳ । ଦିଆଲି ପର୍ବର ପୂର୍ବଦିନ ଗାଁର ଗୋରୁ ଜଗାଳି ଗୌଡ଼ ନିଜେ ତିଆରି କରି ମନ୍ତ୍ରପଢ଼ି ଏହି ଦଉଡ଼ି

ଗ୍ରାମର ପ୍ରତ୍ୟେକ ଘରକୁ ଦେଇଥାଏ । ଗୋରୁ ଗାଈର ମାଲିକ ଉକ୍ତ ଗେଟାଗୁଡ଼ିକ ନିଜ ଘରର ହୁଣ୍ଡିରେ ବାନ୍ଧେ ଏବଂ ପ୍ରତି ଗାଈଗୋରୁ ଛେଳିମେଣ୍ଢାକୁ ବାନ୍ଧିଥାଏ । ତାପରଦିନ ଗୋରୁମାନଙ୍କୁ ଖେଚେଡ଼ି ଖିଆଯାଏ । ସେଥିପାଇଁ ପ୍ରବାଦ ଅଛି, "ଗରଲକ୍‌କେ ଚଗ୍ଗୁ, ଗରୁକେ ଖେଚେଡ଼ି ।" ଏହି ଗେଟା କୁଦାଲ, କୁମ୍, ଖଇର, ସିଆଳି ଆଦି ଦଉଡ଼ିରେ ତିଆରି ହୋଇଥାଏ । ଦିଆଲି ପରବ ସମୟରେ ଗାଈଗୋରୁଙ୍କୁ ଉକ୍ତ ଦଉଡ଼ି ବନ୍ଧାଯାଏ । ପ୍ରତିବଦଳରେ ଗୋରୁଗାଈ ମାଲିକଙ୍କଠାରୁ ଗଉଡ଼ ଟଙ୍କା ଓ ଧାନ ବକ୍‌ସିସ୍ ନେଇଥାଏ ।

୮୦. ଗେଡ଼ି - *ଦେ.ବି.* : ଗରଣ୍ଡି, ରଣପା । ନବରଂଗପୁର ଜିଲ୍ଲା ଓ ଛତିଶଗଡ଼ରେ ବ୍ୟବହାର କରାଯାଉଥିବା ରଣପା ପରି ଲମ୍ବାକାଠ ବା ବାଉଁଶ ଦଣ୍ଡରେ ଭୂମିରେ ଫୁଟେ, ଦେଢ଼ଫୁଟ ଉଚ୍ଚରେ ପାଦ ରଖିବା ପାଇଁ ଏକ ପ୍ରକାର ଓସାରିଆ ପଟା ବା କାଠ ଖଞ୍ଜା ଯାଇଥିବା ବସ୍ତୁ, ଯହିଁରେ ପିଲାମାନେ ପାଦରଖି ଏକପ୍ରକାର ଗୀତ ଗାଇଗାଇ ନାଚ କରିଥାନ୍ତି । ଗଣ୍ଡମାନଙ୍କର ଏକ ପର୍ବକାଳୀନ ବ୍ୟବହାର୍ଯ୍ୟ ସାମଗ୍ରୀ । ଗୋଡ଼ରଖି ନାଚ କରୁଥିବାରୁ ତାହାର ନାମ ଗେଡ଼ି । (ଦ୍ରଷ୍ଟବ୍ୟ : ଗରଣ୍ଡି ।)

**ଗେଡ଼ି ପର୍ବ : ଦେ. ବିଶେଷ୍ୟ :**

ଗେଡ଼ି ଦେବତାଙ୍କ ପାଇଁ ଅନୁଷ୍ଠିତ ପର୍ବ । ଭାଦ୍ରବ ମାସର ଶୁକ୍ଳପକ୍ଷରେ ନୂଆଖାଇ ବା ନବାନ୍ନ ପର୍ବ ପାଳନର ପୂର୍ବଦିନ ଗଣ୍ଡ ଆଦିବାସୀ ଗୋଷ୍ଠୀ ଗେଡ଼ି ପର୍ବ ପାଳନ କରିଥାନ୍ତି । ଏହି ଗେଡ଼ି ପର୍ବରେ ଚଉଦବର୍ଷ ଯାଏ ପିଲାମାନେ ଗେଡ଼ି ଚଢ଼ି ଗାଁର ପ୍ରତ୍ୟେକ ଘରକୁ ଯାଇ ଚାଉଳ, ପିଠା, ପଇସା ମାଗିଥାନ୍ତି । ସେମାନେ 'ତୟା ତୟା ଭୁରଶୁଣ୍ଡି, କେଡ଼େମେଡ଼େ ତେଲ' ବୋଲି ଗୀତ ଗାଇଥାନ୍ତି । ଲୋକବିଶ୍ୱାସ ଯେ ଏହି ଗୀତ ଶୁଣି ଭୁରଶୁଣ୍ଡି ବା ସାନସାନ ମଶା ଗୁଡ଼ିକ ସ୍ଥାନ ଛାଡ଼ି ଚାଲଯାଆନ୍ତି ।

**ଗେଡ଼ି ଦେଓ : ଦେ. ବିଶେଷ୍ୟ :** ଗେଡ଼ି ଦେବତା । ଗଣ୍ଡ ଅବିବାହିତ ପିଲାମାନଙ୍କର ଦେବତାଙ୍କ ନାମ ଗେଡ଼ିଦେଓ । ଏ ଦେବତା ଅବିବାହିତ ଓ କୁମାର (କୁଆଁର ଦେବତା) । ନୂଆଖାଇ ପର୍ବ ବାସିଦିନ ଭାଦ୍ରବ ଶୁକ୍ଳପକ୍ଷ ନବମୀ ବା ତା ପୂର୍ବରୁ ପାଳିତ ହୁଏ । ପିଲାମାନେ ଗେଡ଼ି ଗୁଡ଼ିକରେ ଚଢ଼ି ଗାଁରେ ଥିବା ଗେଡ଼ିଦେଓଙ୍କ ନିକଟକୁ ଯାଆନ୍ତି । ବଡ଼ ଓ ଲମ୍ବା ଗେଡ଼ିକୁ ଯୋଡ଼ି ଯୋଡ଼ି ଆମ୍ବପତ୍ର ତୋରଣ ବାନ୍ଧି ଗେଡ଼ି ଦେଓର ପୂଜା

କରନ୍ତି । ଗେଡ଼ି ଦେଓର ମହିମା ଜାଣିବା ପାଇଁ ସେମାନେ ତା' ଉପରକୁ କୁକୁଡ଼ା ଡିମ୍ବ ଫୋପାଡ଼ନ୍ତି । କିନ୍ତୁ ଡିମ୍ବଟି ତଳେ ପଡ଼ି ଫାଟେ ନାହିଁ । ଏପରି ତିନିଥର କରାଯାଏ । ଏହାପରେ ପିଲାମାନେ ଗାଁରୁ ସଂଗ୍ରହ କରିଥିବା ଜିନିଷପତ୍ର ନେଇ ଗାଁ ବାହାରେ ଭୋଜିଭାତ କରନ୍ତି ।

୮୧. ଗେଣ୍ଡ୍‌କି - *ଦେ.ବି. :* ବେଙ୍ଗ ବା ବେଙ୍ଗଟି । ଦେଶିଆ ଭାଷାରେ ବେଙ୍ଗ ବର୍ଷାର ପ୍ରତୀକ । ବର୍ଷା ନହେଲେ ଦେଶିଆମାନେ ଦିସାରୀର ଯୋଗ ଓ ପାଗ ମୁହୂର୍ତ୍ତକ ଅନୁସାରେ ପୂଜାରୀ ବେଙ୍ଗ ଆବାହନ କରି ପୂଜା ଦେଇଥାଏ । ବିଶେଷ ଆୟାଁବେଙ୍ଗ (ବ୍ରାହ୍ମଣୀ ବେଙ୍ଗ)କୁ ପୂଜାକଲେ ବର୍ଷା ହୋଇଥାଏ ବୋଲି ଆଦିବାସୀ ସମାଜରେ ବିଶ୍ୱାସ ରହିଛି ।

୮୨. ଗେରା - *ଦେ.ବି. :* ପତାକା, ଜାଜା, ସିରାଲ୍ - ସଂ - ଚିରାଳ (ପତାକା) ଇଂ. - Flag

ଚଇତି ବା ବେଣ୍ଟ ପରବ ସମୟରେ ଶିକାର ଯିବାକୁ ଜାଜା ବା ସିରାଲ୍ କୁହାଯାଏ । ସେହିପରି ଯେକୌଣସି ସାମାଜିକ କାର୍ଯ୍ୟରେ ବାଡ଼ ଆକାରରେ, ବାଧକ ଆକାରରେ କିମ୍ବା ମାନ୍ୟ, ଚିହ୍ନ ବା ପତାକା ଆକାରରେ ବ୍ୟବହୃତ ଲୁଗା, ଖଣ୍ଡକୁ ଗେରା, ବା ଜାଜା ବା ସିରାଲ୍ ମଧ କୁହାଯାଏ । ସିରାଲ୍ ଶବ୍ଦ ଚିରାଳ ଶବ୍ଦରୁ ଆସି ଥାଇପାରେ । ଯାହାର ଅର୍ଥ ହେଉଛି ପତାକା । ଏଠାରେ ଜାଜା ଓ ସିରାଲ୍ ହେଉଛି ଗେରାର ପ୍ରତିଶବ୍ଦ ଯଥା :

(୧) ଇଜିମନ୍ ଗେରା ଟାନ୍‌ଲାଇ, ସେ ବାଟେ ନ ଯିବା ।

୮୩. ଗଡ୍ଡୁବାଂଟା - *ଦେ.ବି. :* ଅଳଙ୍କାର ବିଶେଷ । ବାହୁଟି, ରୂପା, ପିତଳ ବା ସୀସାରେ ତିଆରି ବାହୁରେ ପିନ୍ଧା ଯାଉଥିବା ଅଳଙ୍କାର । ପ୍ରାୟ ସମସ୍ତ ଆଦିବାସୀ ସଂପ୍ରଦାୟରେ ସ୍ତ୍ରୀମାନେ ଏହି ଗହଣା ପିନ୍ଧିଥାନ୍ତି ।

୮୪. ଗୋତର୍ - *ଦେ.ବି. :* ଗୋତ୍ର, ସନ୍ତକ ଆଦିବାସୀ ମାନଙ୍କ ଲୌକିକ ପରମ୍ପରା କାହାଣୀରୁ ଜଣାଯାଏ ଯେ, ସେମାନଙ୍କର ବଂଶର ପ୍ରଥମ ପୁରୁଷ କୌଣସି ପଶୁ କିମ୍ବା ପକ୍ଷୀର ଦେହରୁ ଆତ୍ମ ପ୍ରକାଶ କରିଥିଲେ । ତେଣୁ ସେମାନେ ନିଜକୁ ସେହି ପଶୁ କିମ୍ବା ପକ୍ଷୀର ବଂଶଜ ବା ସେହି ଗୋତ୍ରର ଲୋକ ବୋଲି ପରିଚୟ ଦିଅନ୍ତି । ନିଜ

ଗୋତ୍ରର ପଶୁପକ୍ଷୀଙ୍କୁ ହତ୍ୟା କରନ୍ତି ନାହିଁ । ଏକ ଗୋତ୍ରର ପୁରୁଷ ଓ ସ୍ତ୍ରୀଙ୍କ ମଧ୍ୟରେ ବିବାହ କଟକଣା ରହିଥିବା ଦେଖାଯାଏ । ଗୋତ୍ର ବିଶ୍ୱାସ ଆଦିବାସୀ ମାନଙ୍କ ମଧ୍ୟରେ ବଳବତ୍ତର ରହିଥିବାରୁ ସେମାନେ ନିଜକୁ ପ୍ରକୃତିର ସନ୍ତାନ ମନେକରି ପ୍ରକୃତି ପାଖରେ ଆପଣାକୁ ଗୋଟାପଣେ ସମର୍ପି ଦେଇଥାନ୍ତି । ଏଭଳି କେତକ ଗୋତ୍ର ହେଉଛି ବାଢ଼ା, ନାଗ, ଖରା, ଡୂରୁପା, ଗୁଣ୍ଠା ଇତ୍ୟାଦି ।

୮୫. ଗୋତି - *ଦେ.ବି. :* ଋଣ ସୁଝିବା ପାଇଁ ବିନା ମଜୁରିରେ କୁଲିକାମ କରିବା :

ଅତୀତରେ କୋରାପୁଟ ଆଦିବାସୀମାନଙ୍କୁ ସେମାନଙ୍କ ଅଭାବ ସମୟରେ ସାମାନ୍ୟ କିଛି ଅର୍ଥ ଦେଇ ମହାଜନ ବା ବ୍ୟବସାୟୀମାନେ ସେଇ ଟଙ୍କାର ସୁଧ ବାବଦକୁ ସେଇ ଲୋକକୁ ନିଜ ଘରେ ବିନା ମଜୁରୀରେ କାମ କରାଉଥିଲେ । ବାପ ଯଦି ସେହି ଋଣ ସୁଝି ପାରୁ ନଥିଲା, ତେବେ ତା'ର ପୁଅ ବିନା ମଜୁରୀରେ କାମ କରି ଏହି ଋଣ ସୁଝିବାକୁ ଚେଷ୍ଟା କରିଥାଏ । ମାତ୍ର ମହାଜନମାନଙ୍କ ହିସାବରେ ସୁଧର ଶେଷ ହୁଏନି କି ଋଣ ବି ସୁଝେନି । ଏହି ପ୍ରଥାର ଲୋପ ପାଇଁ ୧୯୫୫ ମସିହାରେ ଭୂଦାନ ଆନ୍ଦୋଳନ ମାଧ୍ୟମରେ ବିନୋବାଙ୍କ ଆହ୍ୱାନରେ ଚେଷ୍ଟା କରାଯାଇଥିଲା । ପରେ ସରକାରଙ୍କ ଚେଷ୍ଟାରେ ଏହି ହୀନ ଗୋତି ପ୍ରଥାର ଉତ୍ପୀଡ଼ନରେ ସାହୁକାରର ନାଗଫାଶରେ ବନ୍ଧା ପଡ଼ିଥିବା ଗୋତି ପରିବାରମାନଙ୍କୁ ଚିହ୍ନଟ କରାଯାଇ ଗୋତିମୁକ୍ତି ଅଭିଯାନ ଆରମ୍ଭ ହୋଇଥିଲା । ଏବେ କୋରାପୁଟରେ ଏହି ପ୍ରଥା ନଥିଲେ ବି କିଛି ଲୋକ ଆଦିବାସୀ ଲୋକଙ୍କୁ ବଂଶାନୁକ୍ରମେ ଗୋତି ଭଳି ଖଟାଇଥିବା ଦେଖିବାକୁ ମିଳିଥାଏ । ଆଉ ମଧ୍ୟ ଅନ୍ୟ ରୂପ ବା ନୂତନ ସଂସ୍କରଣରେ ଏହି ପ୍ରଥା ଏବେ ମଧ୍ୟ ବିଭିନ୍ନ ଜାଗାରେ ଦେଖିବାକୁ ମିଳୁଚି ।

୮୬. ଗୋରବାଡ଼ା - *ଦେ.ବି. :* ନିମ୍ନ ଭୂମିର ଆତ୍ମା ଦେବତା ବିଶେଷ । ଏହି ଦେବତାକୁ ପୂଜାକଲେ ପେଟ । ବେମାରୀରୁ ମୁକ୍ତି ମିଳିଥାଏ ବୋଲି ବଣ୍ଡା ଲୋକବିଶ୍ୱାସରୁ ଜାଣିବାକୁ ମିଳେ । ଗୋରବାଡ଼ା ହେଉଛନ୍ତି ବଣ୍ଡା ସାମଜର ଅନ୍ୟତମ ରୋଗ ବୈରାଗ୍ୟର ଦେବତା ।

୮୭. ଗୋରିଆ ଗାଡ୍ - *ଦେ.ବି. :* ଗୌରବମୟ ନଦୀ । ଏକ ନଦୀ ବିଶେଷର ନାମ ।

ଏହା ନାରାୟଣପାଟଣା ଅଞ୍ଚଳ ଦେଇ ପ୍ରବାହିତ ହେଉଥିବା ଝଞ୍ଜାବତୀ ଓ ଚମ୍ପାବତୀ ନାମକ ଦୁଇଟି ନଦୀର ମିଳନ ସ୍ଥଳ । ମହାରାଜ ବିଶ୍ୱମ୍ଭର ଦେବଙ୍କ ସମୟରେ ଏହା ଏକ ସୁଦୃଶ୍ୟ ସ୍ଥାନ ପାଲଟି ଥିଲା । ଏହି ସ୍ଥାନ ନିକଟରେ ରାଜା ତାଙ୍କର ରାଣୀହଂସପୁର ନିର୍ମାଣ କରିଥିଲେ । ରାଜ ପରିବାରର ସ୍ତ୍ରୀ ଲୋକମାନେ ଏହି ସ୍ଥାନରେ ସ୍ନାନାଦି କର୍ମ ସମାପନ କରୁଥିଲେ । ଏଠାରୁ ଜଳ ନେଇ ଏ ଅଞ୍ଚଳରେ କୃଷି କର୍ମର ଉନ୍ନତି ପାଇଁ ରାଜା ବ୍ୟବସ୍ଥା କରିଥିଲେ ।

ଆଉ ମଧ୍ୟ ଗୋବିନ୍ଦପାଲ୍ଲୀ ଅଂଚଳରେ ପ୍ରବାହିତ ଗୁଡ଼ିଆଗାଡ଼ ବା ଗୋରିଆଗାଡ଼୍ ବୋଲି ଲୋକମୁଖରେ କୁହାଯାଏ । ଏବେ ଏବେ ଏହି ନଦୀରେ ଏକ ବଡ଼ ବନ୍ଧ ବନ୍ଧା ଯିବାର ଯୋଜନା ଚାଲିଛି ।

୮୮. **ଗୋରୁ ଗୋଠାନ୍** - *ଦେ.ବି. :* ଗୋରୁଗୋଠ : ଏକ ସ୍ଥାନରେ ଜମା ହୋଇଥିବା ଗାଈଗୋରୁଙ୍କୁ ଗୋଠ । ଏହା ଏକ ନିତିଦିନଆ ଦୃଶ୍ୟ । କିନ୍ତୁ ମଣ୍ଡେଇ ପର୍ବ ବର୍ଷକୁ ଥରେ ବସେ, ଯେଉଁଠି ମେଳା ମେଳା ମଣିଷର ଗୋଠ । ଏହି ଦୃଶ୍ୟକୁ ଦେଖି ଦେଶିଆ ଲୋକ କବି ଗାଇଦିଏ !

ଗୋରୁ ଗୋଠାନ୍ ସିନା ଦିନ୍‌କେ

ମାନେର୍ ଗୋଠାନ୍ ତ ଗୋଟେକ ଦିନ୍ ।

୮୯. **ଗୋଲିଆ ଗୁଡ଼ା** - ହାଲ୍‌ବି ଭାଷାରେ ଗୋଲିଆର ଅର୍ଥ କଙ୍କଲପାତି । ସର୍ଗୀଗୁଡ଼ା ଠାରୁ ପ୍ରାୟ ୪କି.ମି. ଦୂରରେ ଥିଲା ଏକ ବିରାଟ ଆମ୍ବ ଜଂଗଲ । ଲୋକେ କହୁଥିଲେ ଆମ୍ ପଦର । ଏହି ଆମ୍ ପଦରରେ ବହୁ ସଂଖ୍ୟରେ ଗୋଲିଆ ଚଢ଼େଇ ରହୁଥିଲେ । ଏହି ଗୋଲିଆମାନଙ୍କ ପାଇଁ ଆମ ପଦର ପାଲଟିଗଲା ଗୋଲିଆ ପଦର । ପ୍ରଥମେ ସୋମରଥ ଓ ଦୁରୁଆମାନେ ଏହି ଗାଁ ବସାଇଥିଲେ । କିନ୍ତୁ କାଳକ୍ରମେ ସୋମରଥମାନେ ଉଠିଗଲେ ଟେମ୍ଭୁରପାଲି ଓ ସାଲିମିକୁ । ପରେପରେ ଆସିଲେ କୋୟା ଓ ଗଣ୍ଡିଆମାନେ । ବର୍ତ୍ତମାନ ଏଠାରେ ବସିଥିବା ଗାଁରେ ଦୁରୁଆ, ଗଣ୍ଡିଆ ଓ କୋୟାମାନେ ବାସ କରୁଛନ୍ତି ।

୯୦. ଗ୍ରାବରାଇ - *ଦେ.ବି. :* ଭତରାମାନଙ୍କ ଲୋକଦେବୀଙ୍କ ନାମ :

ପର୍ବତ ଗର୍ଭରେ ପ୍ରବେଶ ବା (ରାଇ) କରିଥିବାରୁ ନାମ ହେଲା ଗର୍ଭରାଇ ଏବଂ ଲୋକମୁହଁରେ କାଳକ୍ରମେ ଗ୍ରାବରାଇ ମାତାଭାବେ ପ୍ରସିଦ୍ଧି ପାଇଲେ । (ନବରଂଗପୁର ଜିଲ୍ଲା ମଇଦଲପୁର ଅଞ୍ଚଳର ପ୍ରତିଷ୍ଠିତା ଦେବୀ । ଗ୍ରାବରାଇ ନାମକରଣ ସମ୍ବନ୍ଧୀୟ କିମ୍ବଦନ୍ତୀ କହେ : ଆଦିବାସୀ ଲୋକଦେବତାଙ୍କ ସୃଷ୍ଟି ସେମାନଙ୍କ ବିଶ୍ୱାସକୁ ଆଧାର କରି ହୋଇଥାଏ । ଆଦିବାସୀ ମଣିଷ, ଅନ୍ୟ ମଣିଷର ଅଲୌକିକତା ଦେଖି ତାକୁ ଦେବତାର ମାନ୍ୟ ଦିଏ । ସେମିତି ଭତରାମାନଙ୍କ ଏହି କିମ୍ବଦନ୍ତୀ ଗ୍ରାବରାଇଙ୍କୁ ନେଇ ଶୁଣିବାକୁ ମିଳେ । ଭତରା ଆଦିବାସୀ ଗୋଷ୍ଠୀର ସାଂସ୍କୃତିକ ବୀରପୁରୁଷ ଚାଉଁରିଆ ନିଜ ପତ୍ନୀ ମାଓଲି ଓ ଭଉଣୀ କୁସୁମା ଦେଇ ସହିତ ମଇଦଲପୁର ନିକଟରେ ବାସ କରୁଥିଲେ । ଥରେ ଚାଉଁରିଆ ବୀର ବେଣ୍ଟ ବା ପାରିଧି କରିବାକୁ ନିଜ ଘୋଡ଼ାରେ ବସି ବାହାରିଲେ । ଅନେକ ଦିନ ବିତିଗଲା । ସେ ଫେରିଲା ନାହିଁ । ଚାଉଁରିଆଙ୍କ ଅନୁପସ୍ଥିତିରେ ତାଙ୍କ ପତ୍ନୀ ମାଓଲି ନଣନ୍ଦ କୁସୁମା ଦେଇଙ୍କୁ ନାନା ଦୁଃଖ, କଷ୍ଟ, ଯାତନା ଦେଲା । କୁସୁମା ଦେଇର ସୌନ୍ଦର୍ଯ୍ୟ, ସରଳତା, ଭାଇ ପ୍ରତି ସ୍ନେହ, ତା ଭାଉଜ ମାଓଲି ମନରେ ଈର୍ଷା ଆଣିଲା । ଦୁଃଖ କଷ୍ଟ ସହି ନପାରି କୁସୁମା ଦେଇ ଘର ଛାଡ଼ି ବଣ ଭିତର ଦେଇ ଚନ୍ଦନ ପୋଖରୀ କୂଳକୁ ଚାଲିଗଲା । ଚାଉଁରିଆ ବୀର ପାରିଧିରୁ ଫେରି ଭଉଣୀକୁ ଦେଖି ନପାରି ପତ୍ନୀଙ୍କୁ ପଚାରିଲେ । ମାଓଲି, କୁସୁମା ଦେଈ ଚନ୍ଦନପୋଖରୀକୁ ଗାଧୋଇ ଯାଇଛି ବୋଲି କହିବାରୁ ସେ ଘୋଡ଼ା ଝପଟାଇ ସେଠାକୁ ଗଲେ । ଚନ୍ଦନ ପୋଖରୀ କୂଳରେ ଭଉଣୀକୁ ନଗ୍ନ ଅବସ୍ଥାରେ ଦେଖି ସେ ଘୋଡ଼ାରୁ ଓହ୍ଲାଇ ନିଜ ପଗଡ଼ିଟି ଭଉଣୀ ଆଡ଼କୁ ବଢ଼ାଇ ଦେଲେ । ତାହା ପିନ୍ଧିସାରି, କୁସୁମା ଦେଇ କାନ୍ଦିକାନ୍ଦି ନିଜ ଦୁଃଖ କହିଲେ । ଭାଇର କଥା ଅନୁସାରେ ଘରକୁ ଫେରିବା ପାଇଁ ରାଜି ନ ହୋଇ, ନିକଟରେ ଥିବା ପାହାଡ଼କୁ ଫାଟି ଯିବାପାଇଁ କହି ସେଠାରେ ତାକୁ ସ୍ଥାନ ଦେବାକୁ ଅନୁରୋଧ କଲେ । ପାହାଡ଼ ଫାଟିଯାଇ କୁସୁମାଦେଇଙ୍କୁ ସ୍ଥାନ ଦେଲା । କୁସୁମା ଦେଇକୁ ନିଜ ଗର୍ଭରେ ସ୍ଥାନ ଦେବାରୁ ପାହାଡ଼ର ନାମ ଲୋକେ ମୁଖରେ ଗର୍ଭରାଇ ପାହାଡ଼ ହେଲା ଏବଂ କୁସୁମା ଦେଇ ସମୟକ୍ରମେ ଗ୍ରାବରାଇ (ଗର୍ଭରାଇ ଶବ୍ଦର ଲୌକିକ ଶବ୍ଦ) ମାତାରେ ପରିଣତ ହୋଇ ପୂଜା ପାଇଲେ ।

ଗ୍ରାବରାଇ ମାତାଲାଠି - *ଦେ.ବି.* : ଗ୍ରାବରାଇ ମାତାଙ୍କ ପ୍ରତୀକ ଦଣ୍ଡ ବା ଲାଠି । ଜୟପୁର ରାଜା ବିକ୍ରମଦେବଙ୍କ ଆଦେଶ ଅନୁସାରେ ମଇଦଲପୁର ନିକଟସ୍ଥ ନୂଆକୋଟ ଗ୍ରାମର ଅଧିବାସୀମାନେ ପ୍ରତିବର୍ଷ ଚୈତ୍ରମାସରେ ଗ୍ରାବରାଇମାତାଙ୍କ ପ୍ରତୀକ ଭାବେ ଏକ ସୁସଜ୍ଜିତ ଲାଠି ନୀଳକଣ୍ଠେଶ୍ୱର ପାହାଡ଼ (ଗର୍ଭରାଇ ପାହାଡ଼)ରେ ଫୁଟିଥିବା ଫୁଲନେଇ ମହାସମାରୋହରେ ବାଜା ବଜାଇ, ପୂଜା ଓ ଧୂପ ଦେଇ ଜୟପୁର ମହାରାଜାଙ୍କ ଇଷ୍ଟଦେବୀ ଭଗବତୀଙ୍କ ପୀଠକୁ ଆଣନ୍ତି । ଏହି ଲାଠି ପହଞ୍ଚିବା ପରେ ଜୟପୁରଠାରେ ଦଶହରା ଯାତ୍ରାର ଶୁଭାରମ୍ଭ ହୁଏ । (ଏହି ପ୍ରଥା ଏବେ ମଧ୍ୟ ପ୍ରଚଳିତ) । ????





୧.  ଘଟନା - *ଦେ.ବି. :* ଆମିଷ ଭୋଜନ (ପର୍ବକାଳୀନ) । ଘୋଟଣା । ଏହା ଏକ ପ୍ରକାର ଆମିଷ ଭୋଜନ । ଏହି ଭୋଜନ ପାଇଁ ଭାତ, ମାଛ ଓ ମାଂସ ରନ୍ଧା ହୁଏ । ଚଇତି ପର୍ବ ସମାପନ ପରେ ଗାଦବାମାନେ ଚାଷକର୍ମ ଆରମ୍ଭ କରନ୍ତି । ବର୍ଷର ପ୍ରଥମ କୃଷି କର୍ମ ପାଇଁ ଜମିକୁ ହଳ କରିବା ସକାଶେ ପୁରୁଷମାନେ ବାହାରି ଯାଆନ୍ତି । ଖାଇବାବେଳ ହେଲେ ସ୍ତ୍ରୀମାନେ ଏହି ଅନ୍ନ ବ୍ୟଞ୍ଜନାଦି ନେଇ ସେମାନଙ୍କୁ ଜମି (ବେଡ଼ା)ରେ ଖୁଆଇଥାନ୍ତି । ଏହି ଅନ୍ନ ବ୍ୟଞ୍ଜନକୁ 'ଘଟନା' କୁହାଯାଏ ।

**ଘଟନା ପରବ୍ (ଗାଦବାମାନଙ୍କ ବିହନ ପର୍ବ) - *ଦେ.ବି. :***

ଏହି ପର୍ବରେ ଗାଦବାମାନେ ଚୈତ୍ର ଶେଷ ବା ବୈଶାଖ ଆରମ୍ଭରେ ପ୍ରତିଘରୁ ବିହନ ସଂଗ୍ରହ କରି ଜମିରେ ବୁଣନ୍ତି । ବୁଣିବା ପର୍ବ ସରିଲା ପରେ ଘଟନା ପରବ ଆରମ୍ଭ ହୁଏ । ଏହି ପରବରେ ଘଟନା (ଓଡ଼ିଆରେ ଘୋଟଣା) ଖାଇବା ପାଇଁ ସ୍ତ୍ରୀ ଲୋକମାନେ ମାଛ ମାରି ଘରକୁ ଆଣନ୍ତି । ଭାତ, ତରକାରି, ମାଂସ, ମାଛ ରାନ୍ଧି ସ୍ତ୍ରୀ ଲୋକମାନେ ଜମିକୁ ଧରି ଯାଆନ୍ତି । ହଳ କରିସାରିବା ପରେ ସ୍ତ୍ରୀ ଲୋକମାନେ ପୁରୁଷମାନଙ୍କୁ ସେହି 'ଘଟନା'କୁ ଭାଗବାଣ୍ଟି ଖୁଆଇଥାନ୍ତି । ଲଙ୍ଗଳକୁ ମଧ୍ୟ ଧୂଙ୍ଗିଆଧୂପ (ଧୂଆଁପତ୍ର) ଦ୍ୱାରା ପୂଜା କରି ଘଟନା ପରବଶେଷ କରନ୍ତି ।

୨.  ଘଟ୍‌ଯାତ୍ରା - *ଦେ.ବି. :* ଯାତ୍ରା ବିଶେଷ । ଶୀତଳ ବା ବସନ୍ତ ମାତାଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ପାଳନ କରାଯାଉଥିବା ଯାତ୍ରା । ଏହାକୁ କଳସୀ ଯାତ୍ରା ମଧ୍ୟ କୁହାଯାଏ । ଏହି ଯାତ୍ରା ନଅଦିନ ଧରି ଚାଲେ । ଗ୍ରାମଦେବତୀଙ୍କ ଗହଣରେ ଫାଲ୍‌ଗୁନ ଓ ଚୈତ୍ର ମାସରେ ୭ ଜଣ କିମ୍ବା ୯ ଜଣ ଅବିବାହିତା, ୭ରୁ ୧୦ବର୍ଷର କୁମାରୀ କନ୍ୟା ଲାଲଶାଢ଼ି ପିନ୍ଧି, ଦେବତାଙ୍କ ଫୁଲ ସିନ୍ଦୁରରେ ମଣ୍ଡଣି ହୋଇ ୭ କିମ୍ବା ୯ଟି ମାଟି ଘଟରେ ପବିତ୍ର ପାଣି ଧରି ସମସ୍ତଙ୍କ ଘରକୁ ଯାଇ ପାଣି, ପଣା, ଲିଆ (ଖଇ), ଲଡୁ ଆଦି ଭୋଗ ଗ୍ରହଣ କରି ରାତିରେ ଦେବୀ ଆସ୍ଥାନକୁ ଫେରିଥାନ୍ତି ।

ଦିସାରୀ, ପୂଜାରୀ, ଶିରା ଏହି ଘଟଯାତ୍ରାର ପରିଚାଳନା କରିଥାନ୍ତି । ବସନ୍ତ ମିଳିମିଳା ଆଦି ସଂକ୍ରାମକ ରୋଗରୁ ମୁକ୍ତି ପାଇଁ ପ୍ରଥମେ ଆଦିବାସୀ ମଣିଷ ଏହି ଯାତ୍ରା ଆରମ୍ଭ କରିଥିଲା ଏବଂ ଏବେ ମଧ୍ୟ କୋରାପୁଟ ଓ ନବରଂଗପୁର ଜିଲ୍ଲାରେ ଏହି ଯାତ୍ରା ନିଷ୍ଠାର ସହ ପାଳନ କରାଯାଉଛି । ଜୟପୁରର ଶୀତଳାମାତା, ଡଙ୍ଗରଦେଈ, ଜଗତଜନନୀ ମାତା ତଥା ନବରଂଗପୁର ଭଣ୍ଡାର ଘରଣୀ ଓ ଉମରକୋଟର ମଂଗଳା, ପେଣ୍ଡ୍ରାଣୀଙ୍କ ଘଟକୁ ନେଇ ଘଟଯାତ୍ରା ପାଳନ କରାଯାଏ । ଉମରକୋଟର ଏହି ନବଦିନ ବ୍ୟାପୀ ଯାତ୍ରା କଳସୀ ଯାତରା ନାମରେ ଖ୍ୟାତ ଏବଂ ଆଦିବାସୀ ସଂସ୍କୃତିରେ ଏକ ପାରମ୍ପରିକ ଉତ୍ସବ ଭାବେ ପରିଚିତ ।

୩. **ଘରଡୁମା** - *ଦେ.ବି. :* ଘରର ଶୁଭ କରୁଥିବା ପ୍ରେତ, ଇଂ.- Domestic Ghost ଏହା ଭଲ, ମଂଗଳକାରୀ ଡୁମା । ଏହି ଡୁମାର ପୂଜାପାଠି ଠିକ୍ ଭାବରେ ନ କଲେ ସେ ଚାଷବାସର କ୍ଷତି କରେ । ଯେ କୌଣସି ପର୍ବପର୍ବାଣୀ ବା ଭୋଜିଭାତ ସମୟରେ ପ୍ରଥମେ ଘରଡୁମାକୁ ଖାଦ୍ୟ ପାନୀୟ ଅର୍ପଣ କରାଯାଏ ।

୪. **ଘର୍ ମଣ୍ଡାନି** - *ଦେ.ବି. :* ଏକ ପ୍ରକାର ବିବାହ କାଳୀନ ପୂଜା ବିଶେଷ ଏବଂ ପରମ୍ପରା । ଅବିଭକ୍ତ କୋରାପୁଟ ଜିଲ୍ଲାରେ କନ୍ୟାକୁ ଡାକି ଆଣିବା ବେଳେ ବାଟରେ ତିନିଛକିଆ ଜାଗାରେ ପୂଜା କରନ୍ତି । ଏଠି ପୂଜାରୀ କୁକୁଡ଼ା ହାଣି ପୂଜାପାଠି କରେ । ପରେ ଯୋଗପାଗ ଦେଖି କନ୍ୟାକୁ ଘର ଭିତରେ ପୂରାଯାଏ । ଘର ଭିତରେ ପ୍ରବେଶ କରୁକରୁ ପାଣି କାଚ ନୂଆ ବୋହୂକୁ ପିନ୍ଧାଯାଏ । ଏହାକୁ 'ଘରମଣ୍ଡାନି' ବା 'କୋଠାମଣ୍ଡାନି' କୁହାଯାଏ ।

୫. **ଘଣ୍ଟବୁଲା** - *ଦେ.ବି. :* ଏକ ପୂଜାନୁଷ୍ଠାନ । ଚୈତ୍ର ମାସରେ ଗ୍ରାମଦେବତୀ ମାଁ ଠାକୁରାଣୀଙ୍କ ପ୍ରତୀକ କଳସ ଓ ଘଣ୍ଟକୁ ପ୍ରତିଘରେ ବୁଲାଯାଇଥାଏ । ଚୈତ୍ର ମାସର ଏହି ଠାକୁରାଣୀ ପର୍ବକୁ 'ଘଣ୍ଟବୁଲା' କୁହାଯାଏ ।

୬. **ଘରସୋର** - *ଦେ.ବି. :* କନ୍ୟାଘର ଖୋଜିବା ପ୍ରଥା । ପୁଅ ବାହାଘର କରିବାପାଇଁ ପରିବାର ମଧ୍ୟରେ ଆଲୋଚନା ହୋଇ ମାନସିକ ସ୍ତରରେ ପ୍ରସ୍ତୁତି ହେବାପରେ ପୁଅର ବାପା ଜଣେ ମଧ୍ୟସ୍ଥିଙ୍କ ସହିତ ଝିଅର ବାପା ମାଆ ଘରେ ପହଞ୍ଚି ଆସିବାର ଅଭିପ୍ରାୟ ଜଣାଇଥାନ୍ତି । ସକାରାତ୍ମକ ଉତ୍ତର ଯଦି ଝିଅର ବାପା ମାଙ୍କ ଠାରୁ

ମିଳେ, ତେବେ ସେ ତାଙ୍କ ଘରେ ଖିଆପିଆ କରି ଫେରିଆସେ । ଏହା ହେଲା କନିଆ ଖୋଜାର ପ୍ରଥମ ପର୍ଯ୍ୟାୟ, ଯାହାକୁ 'ଘରସୋର' କୁହାଯାଏ (ଘର - କନ୍ୟାଘର / ସୋର - ଖୋଜିବା) ।

୭. ଘାଟ ମାଡ଼ିବା - *ଦେ.ବି. :* କନ୍ୟାର ରଜସ୍ୱଳାକାଳୀନ କର୍ମ । ଆଦିବାସୀ କୂଳରେ ପ୍ରଥମ ରଜସ୍ୱଳା ହେବାପରେ ଝିଅକୁ ନେଇ ହେଉଥିବା ବିଧି ବିଧାନକୁ 'ଘାଟ ମାଡ଼ିବା' କୁହାଯାଏ । ଝିଅ ପ୍ରଥମ ରଜସ୍ୱଳା ହେଲେ ଦିଶାରୀ ଡକାଯାଏ । ଦିଶାରୀ ଝିଅକୁ ପଚାରେ "କେଉଁ ଦିଗକୁ ମୁହଁ କରିଥିଲୁ । କିପରି ଶାଢ଼ି ପିନ୍ଧିଥିଲୁ । କେଉଁବାର ଦିନ ଯୁକ୍ତମାନ ବା ରଜସ୍ୱଳା ହେଲା ।" ତାହାର ୭ଦିନ, ୯ଦିନ କିମ୍ବା ୧୧ ଦିନ ଘାଟ ମଡ଼ାଣି ହୁଏ । ଏହିଦିନ ନଦୀ ଘାଟରେ ଗଣ୍ଡ ଭଂଗାଯାଏ । (ଗଣ୍ଡର ଅର୍ଥ ଗଣ୍ଡଦୋଷ) । କୁକୁଡ଼ା, ନଡ଼ିଆ, ସାରନ୍ଦାକନ୍ଦା, କଦଳୀ, ରାମଫଳ, ହଂସ ଆଦି ପୂଜାରେ ଲାଗେ । ନବଯୁବତୀର ପ୍ରଥମ ରଜସ୍ୱଳା ବେଳର ସମସ୍ତ ପୋଷାକ ନଦୀରେ ଭସାଇ ଦିଆଯାଏ । ମୁଣ୍ଡର ବାଳ ଓ ନଖ କାଟି ନଦୀରେ ଭସାଯାଏ ।

୮. ଘିସିଂ - *ଦେ.ବି. :* କୁକୁଡ଼ା ବଳି । ବଣ୍ଡାଙ୍କ ପର୍ବପର୍ବାଣୀରେ କୁକୁଡ଼ା ପୂଜା (ବଳି) ଦିଆଯାଏ । ତଥା ଅଣ୍ଡା (ନ୍ତସିଂ) ମଧ ବଳି ଦିଆଯାଏ । କୁକୁଡ଼ା ଓ ଏହାର ରଂଗ ସହିତ ବଣ୍ଡାମାନଙ୍କର ବିଭିନ୍ନ ବିଶ୍ୱାସ ଜଡ଼ିତ ରହିଛି । ଯଥା :-

(କ) ଧଳା କୁକୁଡ଼ାକୁ ଦେବତାଙ୍କୁ ଅର୍ପଣ କଲେ ଶୁଭ ହୁଏ ।

(ଖ) କାଳିଆ କୁକୁଡ଼ାକୁ ପାଙ୍ଗଣ, ଗୁଣୀ ବିଦ୍ୟା ତଥା ରୋଗ ଆରୋଗ୍ୟ ପାଇଁ ବ୍ୟବହାର କରାଯାଏ ।

(ଗ) ଖଇରିଆ କୁକୁଡ଼ାକୁ ଡଙ୍ଗର ଦେବତାଙ୍କୁ ସମର୍ପଣ ବେଳେ ବଳି ଦିଆଯାଇଥାଏ । ଏହା ଫଳରେ କୌଣସି ବିପତ୍ତି ପଡ଼ିବ ନାହିଁକି ରୋଗ ହେବ ନାହିଁ ବୋଲି ବିଶ୍ୱାସ । ଏହିଭଳି କୁକୁଡ଼ା ବଳିକୁ 'ଘିସିଂ' କୁହାଯାଏ ।

୯. ଘୁଡୁକି / ଧୁଡୁକି - *ଦେ.ବି. :* ବାଦ୍ୟ ବିଶେଷ । ଏହା ଏକ ଆନନ୍ଦ ବାଦ୍ୟ । ଏହା ଧୁଡୁକି ନାମରେ ମଧ ପରିଚିତ । ବିଶେଷତଃ ଗୁଣୁପୁର ଅଞ୍ଚଳ ଓ ବୈପାରୀଗୁଡ଼ା ବ୍ଲକ୍‌ର ପାବ୍‌ଲିଗୁଡ଼ା ଗ୍ରାମରେ ବାସ କରୁଥିବା ପତର ସଉରା ସଂପ୍ରଦାୟର କେତେକ ଲୋକ ଘୁଡୁକି ବଜାଇ ଗୀତମାନ କରି ଜୀବିକା ନିର୍ବାହ କରିଥାନ୍ତି । ଗମ୍ଭାରୀ କିମ୍ବା

ପଣସ କାଠରେ ଗୋଲେଇ ମାଣର ମୁହଁରେ ଗୋଧି ଚର୍ମ ଛାଉଣି କରାଯାଇ ଏହାର ମଧ୍ୟ ଭାଗରେ ଏକ ରନ୍ଧ୍ର କରାଯାଏ । ଏହି ରନ୍ଧ୍ରରେ ଦୁଇ ହାତ ଲମ୍ବର ଏକ ତାର କିମ୍ବା ଦଉଡ଼ି ଗଣ୍ଠି ପକାଇ ସଂଯୋଗ କରାଯାଏ । ତାରଟିକୁ ସଂଚାଳନ କରିବା ନିମନ୍ତେ ଏହାର ଅଗ୍ର ଭାଗରେ କାଠିଟିଏ ବନ୍ଧାଯାଏ । ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ମଧ୍ୟ ଏହି ଘୁଡୁକି ବାଦ୍ୟ ଓ ନୃତ୍ୟ ପରମ୍ପରା ରହିଛି ।

୧୦. **ଘୁମାଲ୍** - *ଦେ.ବି. :* ପସାରୁଣି । ଏକ ଔଷଧି ଲତା ବିଶେଷ । କୃମିରୋଗ ଓ ଅଣ୍ଟାବ୍ୟଥା ରୋଗର ଉପଶମ ପାଇଁ ଏହାକୁ ବ୍ୟବହାର କରିଥାଆନ୍ତି । ପୁରୁଣା ବଥ, ଫୁଲା ଓ ଜଳା ପୋଡ଼ା କ୍ଷେତ୍ରରେ ପସାରୁଣି ପତ୍ରକୁ ବାଟି ଲେପ ଦିଆଯାଏ । ସର୍ଦ୍ଦି ଓ ଥଣ୍ଡା ରୋଗରେ ଏହି ପତ୍ରକୁ ବାଟି ଓ ରାନ୍ଧି ଖିଆଯାଏ ।

୧୧. **ଘୋଟୁଲ୍, ଘୋଡୁଲ୍, ଗୋଟୁଲ୍ : ଗଣ୍ଡି : ବିଶେଷ୍ୟ :** ଗଣ୍ଡ ଆଦିବାସୀଙ୍କ ସାଂସ୍କୃତିକ, ସାମାଜିକ ଶିକ୍ଷାକେନ୍ଦ୍ର ଓ ଧାଙ୍ଗଡ଼ିବସା ।

ଘୋଟୁଲ୍ କେବଳ ଏକ ସାଂପ୍ରତିକ ଇଂରାଜୀ ଭାଷାର କ୍ଲବ୍ ନୁହେଁ ପରନ୍ତୁ ଏହା ଏକ ଆତ୍ମାନୁଶାସିତ ସାମାଜିକ ଅନୁଷ୍ଠାନ (କମ୍ୟୁନ), ଯେଉଁଠାରେ ଉଭୟ ଗଣ୍ଡ ଆଦିବାସୀ ଯୁବକ ଓ ଯୁବତୀଗଣ ସାମାଜିକତାର ବିକାଶ କରିଥାନ୍ତି । ବୟସ୍କଙ୍କ ନିୟନ୍ତ୍ରଣରୁ ମୁକ୍ତ ହୋଇ ଏହି ଅନୁଷ୍ଠାନରେ ସେମାନେ ସାମାଜିକ ସାଂସ୍କୃତିକ ଓ ଆର୍ଥିକ ଜୀବନର କି କି କର୍ତ୍ତବ୍ୟ କରିବାକୁ ହୁଏ, ତାହା ଶିକ୍ଷା କରିଥାନ୍ତି । ଏଠାରେ ଲୋକାଚାର, କୁଳାଚାର, ପାରମ୍ପରିକ କଳା ଓ ହସ୍ତକର୍ମ ଶିକ୍ଷା ଦିଆଯାଏ । କିଛି ଅର୍ଥ ବିନିମୟରେ ଘୋଟୁଲ୍ ସହ ସଂପୃକ୍ତ ଯୁବକ ଯୁବତୀମାନେ ସାମାଜିକ ସେବା ଯୋଗାଇ ଦେଇଥାନ୍ତି । ଆଉ ମଧ୍ୟ ଏମାନେ ନିଜର ଜୀବନସାଥୀ ଚୟନ କରିଥାନ୍ତି । ଏହି ପ୍ରଥା ବଣ୍ଡା, ଜୁଆଙ୍ଗ, ଡଙ୍ଗରିଆକନ୍ଧ, ଦୁରୁଆ, ହୋ ଓ କୋୟା ସଂପ୍ରଦାୟରେ ପୂର୍ବଭଳି ଦୃଢ଼ ରହିଥିବା ସ୍ଥଳରେ ଅନ୍ୟାନ୍ୟ ସଂପ୍ରଦାୟରେ ଧୀରେଧୀରେ ବିଲୁପ୍ତ ହେବାରେ ଲାଗିଛି । ଘୋଟୁଲ୍‌ର ପ୍ରତିଷ୍ଠାତା ଗଣ୍ଡମାନଙ୍କର ସୃଷ୍ଟିକର୍ତ୍ତା ଲିଙ୍ଗୋପେନ୍ ହୋଇଥିବାରୁ ଏହା ଏକ ପବିତ୍ର ସ୍ଥାନ ବୋଲି ମନେ କରାଯାଏ । ଏହା ଭିତରକୁ କୌଣସି ପାପ ପ୍ରବେଶ କରିପାରେ ନାହିଁ ବୋଲି ସେମାନଙ୍କ ବିଶ୍ୱାସ । ଘୋଟୁଲ୍‌କୁ ଗଣ୍ଡ ଯୁବକ ଯବୂତୀଙ୍କ ସ୍ୱର୍ଗ ବୋଲି କୁହାଯାଏ ।

□□□



୧. ଚଅଁର - *ଦେ.ବି. :* ଚମରୀ ଗାଈ ଲୋମରେ ନିର୍ମିତ ଚାମର, ଯାହା ଦେବ କାର୍ଯ୍ୟରେ ବ୍ୟବହାର କରାଯାଏ । ଆଦିବାସୀ ଶିରା ବା ଶିରହା, କୋୟା ଆଦିବାସୀଙ୍କ ୱାଡ଼େ, କନ୍ଧଙ୍କ ବେଜୁଣୀ ଆଦି ଧର୍ମୀୟ କର୍ମକାଣ୍ଡ କରୁଥିବା ବ୍ୟକ୍ତିମାନେ ଏହି ଚାମର ଦ୍ୱାରା ଦେବତା ମାର୍ଜନା କରିବାର ପ୍ରଥା ବହୁ ପ୍ରାଚୀନ କାଳରୁ ପ୍ରଚଳିତ । ମାଘରୁ ଚୈତ୍ର ମଧ୍ୟରେ ଅନୁଷ୍ଠିତ କୋରାପୁଟ ଓ ନବରଂଗପୁର ଜିଲ୍ଲାର ମଣ୍ଡେଇ ଯାତ୍ରା ଦର୍ଶନୀୟ । ଚଅଁର ସାଧାରଣତଃ ମୁଖ୍ୟ ଶିରହା ହାତରେ ଧରିବା ପ୍ରଥାସିଦ୍ଧ । ଭାରତର ମଠ ଓ ମନ୍ଦିର ମାନଙ୍କରେ ମଧ୍ୟ ଏହା ଦେବଦେବୀଙ୍କ ମାର୍ଜନା ନିମନ୍ତେ ପ୍ରଚଳିତ ।

୨. ଚଇତି ପରବ - *ଦେ.ବି. :* କୋରାପୁଟୀ ଆଦିବାସୀମାନଙ୍କର ସବୁଠାରୁ ବଡ଼ ପରବ । ଚୈତ୍ର ମାସରେ ପାଳନ କରାଯାଉଥିବା ଯାତ୍ରା । ଏହାର ଅନ୍ୟନାମ ପରବ ଓ ବେଣ୍ଟଯାତ୍ରା । କୋୟାମାନେ ଏହାକୁ କହନ୍ତି ବିଜାପାଣ୍ଡୁମ୍ । ଏହି ମାସରେ ପ୍ରାୟ କୋରାପୁଟ ଜିଲ୍ଲାର ସମସ୍ତ ଆଦିବାସୀ ବିଭିନ୍ନ ପୂଜା କରନ୍ତି । ବଣକୁ ଯାଇ ଶିକାର କରି ଶିକାର କରିଥିବା ପଶୁକୁ ଗାଁକୁ ଆଣନ୍ତି । ଗାଁ ଦାଣ୍ଡରେ ଗାଁର ସ୍ତ୍ରୀ ଲୋକମାନେ ଶିକାର ଆଣିଥିବା ପୁରୁଷମାନଙ୍କୁ ବନ୍ଦାପନା କରି ଗୀତ ଗାଆନ୍ତି । ଶିକାର ମାଂସକୁ ସମାନ ଭାଗ କରି ଗାଁର ପ୍ରତି ପରିବାରକୁ ଦିଆଯାଏ । ଗାଁ ମୁଣ୍ଡରେ ଭୋଜିଭାତ ହୁଏ । ପୁରୁଷ ସ୍ତ୍ରୀ ଇନ୍ଦା ଓ ମଦ ପିଇ ଖୁସିରେ ନାଚଗୀତ କରନ୍ତି । ଏହି ପରବ୍ ମୁଖ୍ୟତଃ ବହନ ପୂଜା ଓ ଜନ୍ତୁ ଶିକାରର ପରବ୍ । କୋୟା, ବଣ୍ଡା ଓ ଦୁରୁଆ ଆଜି କେତେକ ଗୋଷ୍ଠୀ ପାଇଁ ବେଣ୍ଟ୍ ବା ଶିକାର ମୁଖ୍ୟସ୍ଥାନ ନେଉଥିଲାବେଳେ ଅନ୍ୟାନ୍ୟ ଗୋଷ୍ଠୀପାଇଁ ବିହନ ପୂଜା ହେଉଛି ମୁଖ୍ୟ । ପୂର୍ବେ ଏହି ପରବ୍‌ଟି ଅବିଭକ୍ତ କୋରାପୁଟ ଜିଲ୍ଲାରେ ଦୀର୍ଘ ଏକମାସ ଧରି ପାଳିତ ହେଉଥିଲା । ତିନି ପର୍ଯ୍ୟାୟର ଏହି ପର୍ବର ପ୍ରଥମଟି ହେଉଛି ଜାଗରନା, ଦ୍ୱିତୀୟଟି ହେଉଛି ବିହନ ପୂଜା, ତୃତୀୟଟି ହେଉଛି ବଡ଼ବେଣ୍ଟ ଓ ଫୁଲ ବେଣ୍ଟ । ଏବେ କିନ୍ତୁ, ଏହାକୁ ସଂକୁଚିତ କରି ତିନିଦିନରୁ ଆଠ ଦିନ ଭିତରେ ସାରିବାକୁ ପଡୁଛି । କାରଣ ସଂକୁଚିତ ଜଂଗଲ ଓ କଠୋର

ଜଂଗଲ ଆଇନ ସକାଶେ ବଡ଼ ବେଣ୍ଟ ତଥା ଫୁଲବେଣ୍ଟ (ଶିକାରର ପୁନରାବୃତ୍ତ) ଆଉ ସମ୍ଭବ ହେଉନି ।

କୌଣସି ନିର୍ଦ୍ଦିଷ୍ଟ ତିଥିରେ ସମସ୍ତ ଆଦିବାସୀ ଗୋଷ୍ଠୀ ଏହି ପର୍ବ ପାଳନ କରନ୍ତି ନାହିଁ । କନ୍ଧ, ରଣା, ମାଟିଆ, ଭୂମିଆ ଆଦି ଗୋଷ୍ଠୀର ଦିଶାରୀମାନେ ଆପଣାର ତଥା କୋୟା, ବଣ୍ଡା, ଡିଡାୟୀ, ଦୁରୁଆ ତଥା ଅନ୍ୟମାନଙ୍କର ତିଥି ଧାର୍ଯ୍ୟ କରନ୍ତି । ଏହା ସଧାରଣତଃ ଚୈତ୍ର କୃଷ୍ଣପକ୍ଷ ପ୍ରଥମା ଠାରୁ ଉଆଁସ ମଧ୍ୟରେ ଧାର୍ଯ୍ୟ ହୁଏ । ତେବେ ଦିସାରୀମାନେ ଅନ୍ୟ ଗୋଷ୍ଠୀପାଇଁ ବହୁ ସମୟରେ ଉଆଁସ ପରେ ମଧ ପାଂଜି ଆଶ୍ରିତ ଶୁଭ ତିଥି ଧାର୍ଯ୍ୟ କରିଥାନ୍ତି । ପରଂପରା ଅନୁଯାୟୀ ଏହି ତିଥି କୃତ୍ତିକା, ମଘା ଓ ସ୍ୱାତୀ ଏହି ତିନି ନକ୍ଷତ୍ର ଅନୁଯାୟୀ ଧାର୍ଯ୍ୟ ହୁଏ । ତେଣୁ ନକ୍ଷତ୍ରାନୁଯାୟୀ ଚଇତି ପରବକୁ ନାମିତ ମଧ କରାଯାଏ । ଯେପରିକି ମଘାପରବ୍, ସ୍ୱାତୀ ପରବ୍ ଓ କୃତ୍ତିକା ପରବ ଇତ୍ୟାଦି । ବଡ଼ଗାଁର ତିଥି ଅନୁଯାୟୀ ତା' ଅଧିନରେ ଥିବା ସମସ୍ତ ଛୋଟ ଗାଁ ପରବ ପାଳନ କରିଥାନ୍ତି । ଗାଁ ହୁଣ୍ଡି ନିକଟରେ ନିର୍ଦ୍ଦିଷ୍ଟ ତିଥିରେ ବଡ଼ଗାଁ ତଥା ସମସ୍ତ ଛୋଟ ଗାଁର ଲୋକେ ନିଜ ଘରର ଧାନ, ମୁଗ, ବିରି, ଅଳସୀ, ଜନା ଇତ୍ୟାଦିର ଶୁଖିଲା ବିହନ ଘେନି ପହଞ୍ଚନ୍ତି । ତା ପୂର୍ବରୁ ଶୁକ୍ଳପକ୍ଷ ଦ୍ୱିତୀୟା ବା ତୃତୀୟାରେ ପର୍ବତ ଉପରେ ଥିବା ମାଉଲୀଙ୍କ ପାଖରେ ଛେଳି ଓ କୁକୁଡ଼ା ବଳି ପକାଇ ପୂଜା ସାରିଥାନ୍ତି । ପୂଜାପରେ ସମସ୍ତେ ପର୍ବତରୁ ଓହ୍ଲାଇ ସେଇ ବଳିମାଂସକୁ ଭୋଜିକରି ଖାଇଥାନ୍ତି ।

'ଜଗରନା' ଦିନ ହୁଣ୍ଡିଘରେ ବିହନ ପୂଜା କରାଯାଏ । କେଉଁଠି କେଉଁଠି କୁକୁଡ଼ା ବଳି ବା ନଡ଼ିଆ କ୍ଷୀର ଭୋଗ ଅର୍ପଣ କରାଯାଏ । ଆମ୍ବ ଓ କାନ୍ଦୁଲକୁ ମଧ ପ୍ରଥମ କରି ଦେବୀ ଓ ଡୁମ୍ବାଙ୍କୁ ଭୋଗ ଲଗାଯାଏ । ସମସ୍ତ ସଂଗୃହୀତ ବିହନକୁ ପୂଜାକରି ଦିସାରୀ ହୁଣ୍ଡି ଘରର କବାଟ ଆଉଜାଇ ଆଣେ । ଚବିଶ ଘଣ୍ଟାପରେ ସେ କବାଟ ଖୋଲେ । ପରବ ନକ୍ଷତ୍ରର ତିଥିରେ ଜନ୍ମିତ ଗୋଟିଏ ପିଲା ସେଇ ସବୁ ବିହନକୁ ଆଣି ଲୋକଙ୍କ ଭିତରେ ବାଣ୍ଟିଦିଏ । ଲୋକେ ତାହା ନିଜ ବେଡ଼ାରେ ନେଇ ବୁଣିଥାନ୍ତି । ଏଥିରୁ ଭଲ ଗଜା ବାହାରିଲେ ସେ ବର୍ଷ ଭଲ ଫସଲ ହୁଏ ବୋଲି ଲୋକଙ୍କ ବିଶ୍ୱାସ ରହିଛି । ଏହି ପରବଦିନ ଘରେଘରେ ଚରୁ ରନ୍ଧାଯାଏ । ଦିନଯାକ ଉପବାସ ପରେ ଲୋକେ ଚରୁଅନ୍ନ ଖାଆନ୍ତି ।

ପରବର ଦ୍ୱିତୀୟ ଦିନ ବିହନବୁଣା ସରିବା ପରେ ଟିଙ୍ଗିରି ବେଣ୍ଟ୍ ବା କିଶୋରମାନଙ୍କର ଶିକାର ପର୍ବ ଅନୁଷ୍ଠିତ ହୁଏ । ତୃତୀୟ ଦିନ ହୁଏ ଧନୁପୂଜା ବା ଅସ୍ତ୍ରଶସ୍ତ୍ର ପୂଜା । ଶସ୍ତ୍ର ପୂଜାପରେ ଦିସାରୀ ଗୋଟିଏ କୁକୁଡ଼ା ଅଣ୍ଡା ଆଣି ଧନୁ ରହିଥିବା ଗଛମୂଳରେ ରଖେ । ସେଠାରୁ ଠିକ୍ ନଅ ଧନୁ ମାପକରି ଚିହ୍ନ ଦିଏ । ସେଇ ଚିହ୍ନ ପାଖରେ ଠିଆହୋଇ ଯେଉଁ ଧାଙ୍ଗଡ଼ା ଗୋଟିଏ ତୀରରେ ସେଇ ଅଣ୍ଡାକୁ ବିନ୍ଧିଦିଏ, ସେ ହିଁ ବଡ଼ ବେଣ୍ଟର ନେତୃତ୍ୱ ନିଏ । ଏଥିପାଇଁ ସର୍ବନିମ୍ନ ତିନିଦିନ ଜଂଗଲରେ କଟେଇବାକୁ ପଡ଼େ । କେହିକେହି ଗୋଷ୍ଠୀ ଏହି ବଡ଼ ବେଣ୍ଟରେ ଦୀର୍ଘଦିନ ଜଂଗଲ ଭିତରେ କଟେଇଥାନ୍ତି । ଏହି ବଡ଼ବେଣ୍ଟ ସମୟରେ ଗାଁର ସମସ୍ତ କାର୍ଯ୍ୟ ବନ୍ଦଥାଏ । ଲୋକମାନେ ନୃତ୍ୟଗୀତରେ ସମୟ ବିତାଇଥାନ୍ତି । ଯେଉଁ ପୁରୁଷ ଶିକାରକୁ ଯାଇ ନଥାଏ ତାକୁ ସ୍ତ୍ରୀଲୋକମାନେ କାଦୁଅ ଓ ଗୋବର ପାଣି ପକାଇବା ସଂଗେସଂଗେ ଅପମାନ ଜନକ ଓ ଅଶ୍ଳୀଳ 'ତଅଡ଼େ ଗୀତ' ଗାଇଁ ଗାଁରୁ ତଡ଼ି ନିଅନ୍ତି । ଶିକାରରୁ କିଛିନା କିଛି ଶିକାର ନେଇ ପୁରୁଷମାନେ ନୃତ୍ୟଗୀତ ଓ ବାଜା ପଟୁଆରରେ ଫେରନ୍ତି । ଖାଲି ହାତରେ ଫେରିଲେ ପୁଣି କାଦୁଆ ଗୋବର ପାଣି ମରାଚାଲେ ।

ଆଣିଥିବା ଶିକାରକୁ ହୁଣ୍ଡିଘରେ ରଖି ଦେବୀକୁ ପୂଜା କରାଯାଏ । ଏହି ଶିକାରର ଚାରିପଟେ ଗୁଣ୍ଡ ହୋଇ ଢେମ୍‌ସା ନାଟ ସଂଗେସଂଗେ ସ୍ତ୍ରୀଲୋକମାନେ ଶିକାର ଅଭିନୟ କରିଥାନ୍ତି । ଏହାକୁ 'ଡାଇ୍ ସମର' କୁହାଯାଏ । ଏହାପରେ ଶିକାର ପଶୁର ମାଂସ ସମସ୍ତଙ୍କ ଭିତରେ ସମାନଭାବେ ବଣ୍ଟାଯାଏ । ପରବ୍ ସମୟରେ ରାସ୍ତାରେ ଗାଡ଼ିମଟର ଅଟକାଇ ଗାଁର ଧାଙ୍ଗଡ଼ୀମାନେ 'ପାଇର୍' ମାଗିଥାନ୍ତି । ସଂଗୃହୀତ ଅର୍ଥରେ ଭୋଜିଭାତ ହୋଇଥାଏ ଓ ଧାଙ୍ଗଡ଼ା ଧାଙ୍ଗଡ଼ୀମାନେ ଚଇତ ପରବ ଗୀତଗାଇ ଢେମ୍‌ସା ନାଚିଥାନ୍ତି । ବଡ଼ ବେଣ୍ଟରୁ ଫେରିବାର ୧୦-୧୫ ଦିନ ମଧ୍ୟରେ ଫୁଲ୍‌ବେଣ୍ଟ୍ ବା ବାହୁଡ଼ା ପରବ୍ ଆରମ୍ଭ ହୁଏ । ଏହାକୁ 'ଗୋବ୍‌ର ଲେଉଟାନି' ବା 'ବାହୁଡ଼ାନି' ବୋଲି ମଧ କୁହାଯାଏ, ଅନ୍ୟ କିଏ ଏହା ପାଳନ କରୁ ବା ନକରୁ କୋୟା, ବଣ୍ଡା, ଡିଡାୟୀ ଓ ଦୁରୁଆମାନେ ନିଶ୍ଚିତ ରୂପେ ଏହା ପାଳନ କରିଥାନ୍ତି । ଏହି ବେଣ୍ଟ ପରବ ସମୟରେ ପ୍ରଚୁର ମଦ୍ୟପାନ କରାଯାଉଥିବାରୁ ଏହାକୁ ସୁରାମ୍ ପରବ୍ ମଧ କୁହାଯାଏ । ଫୁଲବେଣ୍ଟ୍ ପରେ ଦିସାରୀ ଆଉ ଏକ ପୂଜାକରେ, ଯାହାକୁ କୁହାଯାଏ 'ଭତ୍‌ରାନି ପର୍‌ବ' । ସମସ୍ତ ବେଣ୍ଟ କାରିଆ ନିଜନିଜ ତୀରଧନୁ ଜମା କରନ୍ତି । ଦିସାରୀ ମନ୍ତ୍ରପଢ଼ି

ସବୁ ତୀରରୁ ବିଷ ଭତରାଇ ଦିଏ । ଭତରାନି ପରବ୍ ପରେ ଚଇତି ପରବ ବା ବିଜାପାଣ୍ଡୁମ୍‌ର ଯବନିକା ପଡ଼େ ।

୩. ଚଇତି ପରବ ଗୀତ - *ଦେ.ବି. :* ପ୍ରେମଗୀତ । ଶୃଙ୍ଗାରଧର୍ମୀ ଗୀତ । ଚଇତି ପରବ ସମୟରେ ଅବିଭକ୍ତ କୋରାପୁଟ ଜିଲ୍ଲାରେ ଦେଶିଆମାନଙ୍କ ଦ୍ୱାରା ଗାନ କରାଯାଉଥିବା ଲୋକପ୍ରିୟ ମନୋରଂଜନଧର୍ମୀ ଗୀତ । ଏହିସବୁ ଗୀତ ଚଇତି ପରବ ସମୟରେ ଆଦିବାସୀ ଗୀତକୁଡ଼ିଆ / ଗୀତ୍ କୁଡ଼ିଆଣି / ଯୁବକ ଯୁବତୀ ଗାଇଥାନ୍ତି । ଏହି ଗୀତ ବର୍ଷର ଯେ କୌଣସି ସମୟରେ ଯେ କୌଣସି ଅବସରରେ ମଧ୍ୟ ଗାନ କରାଯାଇଥାଏ ।

ଚଇତି ପର୍ବର ଗୀତର ୪ ଗୋଟି ପର୍ଯ୍ୟାୟ ଥାଏ । (୧) ଗୀତ କୁଡ଼ିଆଣୀର ପରିଚୟ, ଜିଜ୍ଞାସା, (୨) ଦେବଦେବୀ ଜୁହାରିନି / ଛାନ୍ଦନା, ବାନ୍ଧନା ଗୀତ (୩) ସୁଆଲ ଜବାବ, (୪) ଗୀତର ନିର୍ଯ୍ୟାସ ବା ଚାଖିବା । ସେହିପରି ଚଇତ ପର୍ବ ଗୀତଗୁଡ଼ିକୁ ବିଷୟବସ୍ତୁ ଅନୁସାରେ ବାରଭାଗ କରି ବା ବାର ଖେଦାରେ ବିଭକ୍ତ କରାଯାଇପାରେ । ସେଗୁଡ଼ିକ ହେଉଛି (୧) ଦେବଦେବୀ ଜୁହାରନି, (୨) ଜବାବ-ସୁଆଲ (୩) ଠେସା, (୪) ରସବିଷ, (୫) ମାଙ୍ଗନି, ଟାକିନି, (୬) ଡାଲ ମୁଲିଆ (୭) ମନ୍ତର-ଜନ୍ତର, (୮) ଘରସଂସାର, (୯) ଛାଡ଼ାଛାଡ଼ି (୧୦) ଶାସତର୍ (୧୧) ବିଭା ବଡ଼ପଣ, (୧୨) ମରନା-ଜୀଉଁନା ।

ଚଇତି ପରବ ଗୀତ କୋରାପୁଟ ମୌଖିକ ସାହିତ୍ୟ ପରମ୍ପରାର ଏକ ସର୍ବୋତ୍ତମ ବିଭବ ଯାହା ସମ୍ବଲପୁରୀ ଲୋକଗୀତ ରସରକେଲି ଓ ମୟୂରଭଞ୍ଜ ଲୋକଗୀତ ଝୁମର ପରି ରସମୟ । ଉଦାହରଣ ସ୍ୱରୂପ - ରସବିଷ ଚଇତି ପରବ ଗୀତରୁ ପଦେ ଦିଆଗଲା : ଗୀତ କୁଡ଼ିଆ :

ଏ ଲୟରେ ......... ଏ ......... ଏ....... ଏ
ଘଡ଼ିମରା ଜନ ଉଆଁସରାତି
କୁକୁଡ଼ା ବାନ୍ଧିବା କାତି
ହାଡ଼ ନୋଇଲାର ଗାଡ଼ପିଲା ମାଛ

ରସରେ ସେ ଯିବ ମାତି
ଦେକା ରସବତୀ ତୋମର ଦୟା
ଦିନ ଗଣି କ୍ଷୀଣ କାୟା ।

ଗୀତ କୁଡ଼ିଆଣି : ସରଗି ଖମନେ ଫୁଟିଲା ଛାତି
ଡାକ୍ ଦେଲା ରସବତୀ
ତମେ ମଧୁବନ ଆମେ ମାଲତି
ସୁସାରେ ଲାକେ ପିରତି
ପୋଟାଲି ଧରିବି କୋଲେ ବସାଇବି
ଯୋଡ଼ି ଚୁମା ଗାଲେ ଦେବି
ଯୋଡ଼ି ଚୁମା ଗାଲେ ଦେବି ।

ଗୀତକୁଡ଼ିଆ : ଗଦ୍ୟାର୍ଥ :

(ଏ ଲୟରେ.... ଏ.... ଏ.... ରାହାଧରି ଗୀତପଦେ ଶୁଣାଉଛି ଅର୍ଥଘେନେ : ପହର ରାତି ପରେ ଜହ୍ନ ବୁଡ଼ିଯିବ, ଅନ୍ଧାର ଘୋଟିବ, କୁକୁଡ଼ା ଯୁଦ୍ଧରେ କୁକୁଡ଼ାର ଗୋଡ଼ରେ ବନ୍ଧା ହୋଇଥିବା କାତି ଅନ୍ୟ କୁକୁଡ଼ା ଛାତିରେ ଭୁଷିଲା ପରି, ମୋର ହାଡ଼ ନଥିବା ସାନମାଛ ତୋ କୋଳରେ ରସ ଖୋଜିବାକୁ ଆତୁର ହେଲାଣି, ଗୋ ରସବତୀ ଯୁବତୀ, ମୋତେ ଦୟାକର, ତୁମ ସହ କେବେ ସଂଭୋଗ ହେବ, ଏହା ଚିନ୍ତାକରି କରି ମୁଁ ଝଡ଼ିଗଲିଣି ।

ଗୀତ କୁଡ଼ିଆଣି :

(ଶାଳବଣରେ ଛତୁ ଫୁଟିଲାଣି । ମୁଁ ରସବତୀ ଯୁବତୀ ଡାକୁଛି ତୁ ଆ । ତୁ ଯଦି ମଧୁଜଳ ହେଉ । ମୁଁ ପୂର୍ଣ୍ଣ ଯୌବନା, ପୁଷ୍ପିତା ମାଳତୀ ପରି । ଆମ ଭିତରେ ଏବେ କାମନାର ଉଦ୍ରେକ ହେଉଛି । ଆ ତୋତେ କୋଳରେ ବସାଇ ଗାଢ଼ ଆଲିଙ୍ଗନ କରି ଦୁଇ ଗାଲରେ ଚୁମା ଦେବି, ଆ) ନିଶାନି ଚଇତି ପରବ ଗୀତରେ ଧାନ ବାଛିବା ସମୟରେ ଗୀତ ଗାଇବାର ଶୁଣାଯାଏ । (ଦ୍ରଷ୍ଟବ୍ୟ - ଗିୟାକ୍ ଣାମ୍ ।)

୪. ଚଉଖ - ବିବାହ ବେଦୀରେ ମଣ୍ଡାଯାଇଥିବା ହଳଦୀଗୁଣ୍ଡ ଓ ଚାଉଳଚୂନା ଦେଇ ଅଙ୍କା ଯାଇଥିବା ଝୋଟି ଓ ଚିତାକୁ 'ଚଉଖ' କୁହାଯାଏ । ଏହା ସାଧାରଣତଃ

ପୂଜାରୀ ଦୋସା (ବିବାହ କାର୍ଯ୍ୟରେ ସାହାଯ୍ୟ କରୁଥିବା ବ୍ୟକ୍ତି) ବେଦୀରେ ଆଙ୍କିଥାନ୍ତି ।

୫. **ଚଉଁରୀ** - *ଦେ.ବି. :* କୃତ୍ରିମ କେଶ । ବଜାରରେ ମିଳୁଥିବା କେଶ । ଆଦିବାସୀ ରମଣୀମାନେ ବଜାରରୁ ଯେଉଁ କେଶ କିଣି ନିଜ ମୁଣ୍ଡର କେଶ ସହ ମିଶାଇ ଖୋସା ବାନ୍ଧିଥାନ୍ତି, ସେଇ କେଶକୁ 'ଚଉଁରୀ' କୁହାଯାଏ ।

୬. **ଚଉଁରିଆ ମୂଷା** - *ଦେ.ବି. :* ଏହା କାଡ଼ାମୂଷା ଭଳି । କିନ୍ତୁ କାନ୍ଧରେ ଧଳାଧଳା ଲୁମ ରହିଥାଏ । ଏମାନେ ଜଂଗଲରେ ଗଛ ଡାଳରେ ବସା କରିଥାନ୍ତି । ଟିଲୁ ମୂଷା ଭଳି ଏମାନେ ଗଛର ଫଳ ଓ ଫୁଲ ତଥା କଢ଼ି ମଧ ଖାଇଥାନ୍ତି । ଯୋଡ଼ିଯୋଡ଼ି କରି ରହନ୍ତି । ଗଛକୋରଡ଼ରେ ଏମାନେ ବସା କରିଥାନ୍ତି ।

୭. **ଚଗ୍‌ବା** - *ଦେ.କ୍ରି. :*

ଚଢ଼ିବା, ଆରୋହଣ କରିବା, ଉପରକୁ ଉଠିବା, ଉପର ମୁଣ୍ଡକୁ ଉଠିବା ।
ଇଂ.- To Climb.

ଯଥା : (୧) ମୂଷା ଗୁଟେକ୍ ଗଚେ ଚଗିଗାଲାନି (୨) ପଇଲି ପାନିକେ ବର୍ଗନି ମାଚ ଚଗିଆଇଲେନି । (୩) ଢିଗାଡିଆ ସଲପ୍ ଗଚେ ଚଗି ସଲପ୍ ଉତ୍‌ରେଇଲା ।

୮. **ଚଙ୍ଗୁ** - *ଦେ.ବି. :* ଏକ ଅଳଙ୍କାର ବିଶେଷ । ବଣ୍ଡା ରମଣୀମାନେ ବେକରେ ଯେଉଁ ଗୋଲାକାର ଆଠ, ଦଶଟି ରସ ଗୋଲାକାର ବଳା ପିନ୍ଧନ୍ତି ତାକୁ 'ଚଙ୍ଗୁ' କୁହାଯାଏ । ଏହା ବେଶ୍ ଓଜନଦାର ।

୯. **ଚଟାଲ** - *ଦେ.ବି. :* ଟୋଲି ବା ଟୋଲା । ମହୁଲ ଫଳ । ମହୁଲ ଫଳ ସବୁ ଶ୍ରେଣୀର ଆଦିବାସୀମାନଙ୍କର ଏକ ପ୍ରିୟ ଖାଦ୍ୟପଦାର୍ଥ । ଏହି ଫଳକୁ ସଂଗ୍ରହ

କରାଯାଇ ଖରାରେ ଶୁଖାଇ ଦିଆଯାଏ । ପରେ ଏହାକୁ ଗୁଣ୍ଡକରି ଏହି ଗୁଣ୍ଡରେ ପିଠା ତିଆରି କରି ଖିଆଯାଏ । ଏତଦ୍‌ବ୍ୟତୀତ ମହୁଲ ଫଳ ବା ଟୋଲାରୁ ଆଦିବାସୀମାନେ ଆହୁରି ଅନେକ ପ୍ରକାର ସୁସ୍ୱାଦୁ ଖାଦ୍ୟ ପଦାର୍ଥ ପ୍ରସ୍ତୁତ କରିଥାନ୍ତି । ଏହି ଫଳ ଭିତରେ ଥିବା ମଞ୍ଜିରୁ ଟୋଲା ତେଲ ସଂଗ୍ରହ କରାଯାଇ, ଏଇ ତେଲକୁ ଖାଦ୍ୟ ପ୍ରସ୍ତୁତି ପାଇଁ ତଥା ବିଭିନ୍ନ ଚର୍ମରୋଗର ଆରୋଗ୍ୟ ପାଇଁ ବ୍ୟବହାର କରାଯାଇଥାଏ । (ଦ୍ରଷ୍ଟବ୍ୟ : ଟୋଲ ।)

୧୦. ଚଣ୍ଡି / ଚେଣ୍ଡି - *ଦେ.ବି. :* ଅଗ, ଯେ କୌଣସି ପଦାର୍ଥର ଅଗ୍ରଭାଗ, କୁକୁଡ଼ା, ବା ପକ୍ଷୀର ଥଣ୍ଟର ଅଗ୍ରଭାଗ । ଚୁର୍‌କି ବା ମୁଣ୍ଡରେ ରଖାଯାଉଥିବା ଚୁଟି ।

ଦେଶିଆ ପ୍ରବାଦ ଅଛି :

"ବାଚି ଚୋର୍ ପରଜା
ଗାଣ୍ଡି ଚୋର ରାଣା
ଚଣ୍ଡି ଚୋର କମାର୍ ।

ଅର୍ଥାତ୍ ପରଜା ଲୋକମାନେ ହିଡ଼୍ କାଟିକାଟି ଜଳ ମଡ଼ାଇବାରେ ଓସ୍ତାଦ୍ । ରଣାମାନେ ମାଇକିନା ଧନ୍ଦାରେ ଓସ୍ତାଦ । କମାରମାନେ ଲୁହା ପିଟିପିଟି ଲୁହାର ଅଗ ଚୋରାଇବାରେ ଓସ୍ତାଦ୍ ।

୧୧. ଚମ୍ପାବତୀ - *ଦେ.ବି. :* (୧) ନଦୀ ବିଶେଷ । (୨) ଏକ ନଗର ବିଶେଷ । ଚମ୍ପାଫୁଲ ରଂଗର ପାଣି ପ୍ରବାହିତ ହେଉଥିବା ନଦୀ ।

କୋରାପୁଟ ଜିଲ୍ଲାର ନାରାୟଣପାଟଣା ଅଞ୍ଚଳରେ ପ୍ରବାହିତ ଏକ ନଦୀର ନାମ । ଏହା ନାରାୟଣପାଟଣା ଠାରେ ଅତୀତରେ ଥିବା ରାଜା ବିଶ୍ୱମ୍ଭର ଦେବଙ୍କ ଦ୍ୱାରା ସ୍ଥାପିତ ଏକ ନଗରର ନାମ ମଧ୍ୟ । ଏହି ନଦୀ ଓ ନଗର ସହିତ କୋରାପୁଟ ଜିଲ୍ଲାର ଯେଉଁ କିମ୍ବଦନ୍ତୀ ଜଡ଼ିତ ରହିଛି ତାହା ହେଉଛି :ରାଜା ଦ୍ୱିତୀୟ ବିଶ୍ୱମ୍ଭର ଦେବଙ୍କ ଶାସନ କାଳର କଥା । ତାଙ୍କର ପ୍ରଥମ ପତ୍ନୀ ଝଂଜାବତୀ ଦେବୀଙ୍କର ମୃତ୍ୟୁପରେ, ସେ ନାରାୟଣପାଟଣା ଅଞ୍ଚଳର ବଜ୍ରଗଡ଼ ମୁଠାରେ ଥିବା ମୁଠାଦାର କନ୍ଧ ସର୍ଦ୍ଦାରଙ୍କର କନ୍ୟା ଚମ୍ପାବତୀଙ୍କୁ ବିବାହ କରିଥିଲେ । ମାତ୍ର ରାଜା ପରିବାର ତରଫରୁ ଏହି ବିବାହକୁ ବିରୋଧ କରାଯାଇ କନ୍ଧ କନ୍ୟା ଚମ୍ପାବତୀଙ୍କୁ ରାଜା ପ୍ରାସାଦରେ ରହିବାର ସୁଯୋଗ ଦିଅଯାଇନଥିଲା । ତେଣୁ ସେ ନାରାୟଣପାଟଣା ଠାରେ ଚମ୍ପାବତୀଙ୍କ ନାମରେ ଏକ ନଗର ବସାଇ ସେଠାରେ ନିର୍ମିତ ରାଜ ଉଆସରେ ରାଣୀ ଚମ୍ପାବତୀଙ୍କୁ ରଖାଇଥିଲେ । ରାଣୀ ଚମ୍ପାବତୀ କୁଶଳା ଓ କାର୍ଯ୍ୟନିପୁଣା ହୋଇଥିବାରୁ ତାଙ୍କ ସାହାଯ୍ୟରେ ରାଜା ବିଶ୍ୱମ୍ଭର ଦେବ ଅନେକ ରାଜନୀତିକ ସଂକଟ ଏଡ଼ାଇବା ସହ ତାଙ୍କ ରାଜ୍ୟର ଅନେକଗୁଡ଼ିଏ ହରାଇଥିବା ମୁଠାକୁ ଫେରି ପାଇଥିଲେ । ରାଜା ରାଣୀଙ୍କ ନାମରେ ସେ ଅଞ୍ଚଳରେ ପ୍ରବାହିତ ଛୋଟ ନାଳ ବା ଗିରି ନଦୀକୁ ରାଣୀଙ୍କ ସ୍ମୃତିରେ ଚମ୍ପାବତୀ ନାମରେ ନାମିତ କରିଥିଲେ ।

୧୨. ଚରୁ - *ଦେ.ବି.* : ଯଜ୍ଞ ଅନ୍ନ, ପବିତ୍ର ଅନ୍ନ, ଦିବ୍ୟ ଅନ୍ନ । ପୁରାଣ ଯୁଗରୁ ଋଷି ଓ ଋଷିପତ୍ନୀମାନେ ଚରୁ ରାନ୍ଧିବାର ପ୍ରଥା ରହିଛି । ଆଦିବାସୀ ସମାଜରେ ଚରୁ ଏକ ସ୍ୱତନ୍ତ୍ର ସ୍ଥାନ ଦାବି କରେ । ଚରୁ ସାଧାରଣ ଚାରୋଟି କାର୍ଯ୍ୟ ଉପଲକ୍ଷେ ରନ୍ଧାଯାଏ ।

**(କ) ପିଲାଜନ୍ମ ଚରୁ :** ସନ୍ତାନ ଜନ୍ମ ହେବା ପୂର୍ବରୁ ସ୍ତ୍ରୀ ଲୋକଟି ଅଶୌଚ ହୋଇଯାଇଥାଏ । ଏଗାର ଦିନ ପରେ ସେ ଶୁଦ୍ଧ ସ୍ନାନ କରି ନୂଆ ଆଟିକାରେ ଚରୁ ରାନ୍ଧି ପିତୃପୁରୁଷ ଓ ଦେବତାଙ୍କୁ ପୂଜା କରେ । ତାହାପରେ ତାକୁ ପ୍ରସବ କରାଇଥିବା ଧାଇ ଏବଂ ଛୁଆକୁ ପ୍ରଥମେ ଧରିଥିବା ସ୍ତ୍ରୀ ଲୋକଙ୍କୁ ସେ ଚରୁ ଖୁଆଏ ।

**(ଖ) ବିବାହ ଚରୁ :** ବିବାହ ପରେ ଆଦିବାସୀ କନ୍ୟାଟି ଶୁକୁଲି ପିରି (ଛଣ)ରେ ଛପର ହୋଇଥିବା ଏକ ରନ୍ଧା ଘରେ ଚରୁ ରାନ୍ଧେ । ପିତୃ ଓ ଦେବତାଙ୍କୁ ଅର୍ପଣ ପରେ ସେ ନିଜ ସ୍ୱାମୀକୁ ସେହି ଚରୁ ଖୁଆଇ ଦିଏ ଏବଂ ସ୍ୱାମୀ ନବ ବିବାହିତା କନ୍ୟାକୁ ଖୁଆଇଦିଏ ।

**(ଗ) ଦଶା ବା ପିତା ଚରୁ :** ଜଣେ ଲୋକ ମରିଗଲେ ମୃତ୍ୟୁର ତିନିଦିନ ବା ଦଶଦିନରେ ବି ମୃତ ପରିବାରର ଜ୍ଞାତିପୁରୁଷ ଲୋକମାନେ ଚରୁ ରାନ୍ଧନ୍ତି । ପ୍ରଥମେ ମୃତ ବ୍ୟକ୍ତିର ପ୍ରେତ ପାଇଁ ଏବଂ ପୂର୍ବରୁ ମୃତ୍ୟୁବରଣ କରିଥିବା ପ୍ରେତମାନଙ୍କ ପାଇଁ ସରଗିପତ୍ର, ଚିପିଲିଚକନିରେ ନେଇ ବେଜରଣା ଭଟାରେ ଦନି ଦିଅନ୍ତି । ଚରୁ ସହିତ ବିଡ଼ି, ଗୁଡ଼ାଖୁ, ନାସ, ଧୂଆଁ ଆଦି ପ୍ରେତର ଅଭ୍ୟାସ ଥିବା ଜିନିଷ ଦିଆଯାଏ । ପରେ ଏହି ଚରୁକୁ ଏକାଠି କୁଟୁମ୍ବ ଲୋକେ ଖାଆନ୍ତି । ଏହି ଚରୁରେ କଲରା ବା ପିତା ଫଳ ଏବଂ ମାଛ (ଆମିଷ) ପଡ଼ିଥାଏ ।

**(ଘ) ନୂଆଖିଆ ଚରୁ :** ଘରର ଘରଣୀ ଆମ୍ବ ନୂଆଖିଆ ଓ ଧାନନୂଆ ଖିଆ ପର୍ବରେ ଶୁଦ୍ଧପୂତ ଭାବରେ ନୂଆ ଆଟିକାରେ ଚରୁ ରାନ୍ଧି ପିତୃ ଓ ଦେବତାଙ୍କୁ ସମର୍ପଣ ପରେ ସରଗିପତ୍ର ଚିପିଲିରେ ଚରୁ, ମଦ ଏବଂ କୁକୁଡ଼ା ମାଂସ ଖାଇ ନୂଆଖାଇ ପାଳନ୍ତି ।

୧୩. ଚରୁଯାତ୍ରା - *ଦେ.ବି.* : କୃଷିଭିତ୍ତିକ ଏକ ପୂଜାନୁଷ୍ଠାନ । ମାଟି ମା'କୁ ଅନ୍ନ ରାନ୍ଧି ଭୋଗ ଦେବାର ପ୍ରଥା । ଆଦିବାସୀ ରୟତମାନେ କାର୍ତ୍ତିକ ମାସରେ ସର୍ବପ୍ରଥମେ ଜମିରେ ପାଚିଥିବା ଧାନକୁ କାଟିବା ପାଇଁ ନିଜ ଜମିରେ ଜମା ହୋଇ ମାଟି ମାତା (ପୃଥିବୀମାତା)କୁ ପୂଜା କରି ଅନୁମତି ମାଗନ୍ତି । ପାଗା ଓ କୁକୁଡ଼ା ବଳି ଦେଇ ଉକ୍ତ

ବଳି ପଦାର୍ଥକୁ ଜମି ନିକଟରେ ରୋଷେଇ କରନ୍ତି । ଏହାକୁ 'ଚରୁଯାତ୍ରା' ବୋଲି କୁହାଯାଏ ।

୧୪. ଚଲ୍‌ବା - *ଦେ.କ୍ରି. :* ଲଟାରୁ ଚୋପା ଛଡ଼ାଇ ରଶି ବା ଡୋର ତିଆରି କରିବା, ଡୋର ଚଲ୍‌ବା ବା ଛାଲିବା ଅର୍ଥରେ ଏହା ବ୍ୟବହାର କରାଯାଏ । ବିଭିନ୍ନ ଲଟାରୁ ଡୋର ଚଲା ଯାଉଥିଲେ ମଧ ମୁଖ୍ୟତଃ ଶିଆଡ଼ି ଲଟା ଡୋର ଅଧିକ ବ୍ୟବହାର ହୁଏ । ବ୍ୟବହାର : ସିଆଡ଼ି ଡୋର୍‌କେ ଯାଇ ରଇଲୁ ହୋ, ଡୋର ଚଲି ଚଲି ଆତ୍ ଦୁକ୍‌ଲାନି । ଅର୍ଥାତ୍, ଶିଆଡ଼ି ଡୋର ଛାଲିବାପାଇଁ ଯାଇଥିଲୁ । ଡୋର ଛାଲିଛାଲି ହାତଗୋଡ଼ ବିନ୍ଧିଲାଣି ।

୧୫. ଚଲାଣ / ଚାଲାନ୍ - *ଦେ.ବି. :* ଚାଲାଣ : ଡାକୁଆ ।

ଚାଲାଣର କାମ ହେଲା ପର୍ବପର୍ବାଣୀ ସମୟରେ ଲୋକଙ୍କୁ ସୂଚନା ଦେବା, ଚାନ୍ଦା ଆଦାୟ କରିବା, ରେଭିନ୍ୟୁ (ରାଜସ୍ୱ ପରିଦର୍ଶକ) ଗାଡୁ (ଜଂଗଲ ରକ୍ଷି), ଜମାନ୍ (ପୋଲିସ୍) ଆସିଲେ ସେମାନଙ୍କର ଭାତିଆ ପାଣି (ଭୋଜନ)ର ବ୍ୟବସ୍ଥା କରିବା ଇତ୍ୟାଦି । ଗ୍ରାମର ବିଭିନ୍ନ ଲୋକଙ୍କ ସଂଯୋଗକାରୀ ହେଉଛି ଚାଲାଣ । ହରିଜନ ସଂପ୍ରଦାୟର ବ୍ୟକ୍ତି ଚାଲାଣ କାମ କଲେ ତାକୁ 'ଗାଣ୍ଡା' କୁହାଯାଏ ।

ରାଜାଙ୍କ ଅମଳରେ ଏହି ଚାଲାଣ ମାନଙ୍କୁ ଇନାମ୍‌ଦାରୀ ଜମି ପଟ୍ଟା ଦିଆଯାଉଥିଲା । ଏହି ଚାଲାଣମାନେ ନାୟକର ନିର୍ଦ୍ଦେଶରେ ଗ୍ରାମସଭା ଡାକନ୍ତି ଓ ଅନ୍ୟାନ୍ୟ ସମସ୍ତ ନିର୍ଦ୍ଦେଶ ପାଳନ କରନ୍ତି ।

୧୬. ଚଲାଣଗୁଡ଼ା - *ଦେ.ବି. :* ବାର୍ତ୍ତା ସଂଗ୍ରହ କରୁଥିବା ଲୋକମାନଙ୍କର ଗାଁ । ମୁଖ୍ୟତଃ ବଣ୍ଡା ଜନଗୋଷ୍ଠୀର ଲୋକମାନେ ୪ଟି ସାହିରେ ବିଭକ୍ତ ହୋଇଥାନ୍ତି । ସେମାନଙ୍କ ମଧ୍ୟରୁ ଯୁଦ୍ଧ ସମୟରେ ଯେଉଁ ଲୋକମାନେ ଶତ୍ରୁ ପକ୍ଷର ଗୁପ୍ତ ତଥ୍ୟମାନ ସଂଗ୍ରହ କରି ଆଣିଥାନ୍ତି ସେମାନଙ୍କୁ ଚଲାଣ ବା ଚାଲାଣ ବୋଲି କୁହାଯାଏ । ଯେଉଁ ଗ୍ରାମଟି ଏହି ବୃତ୍ତିଧାରୀ ଲୋକଙ୍କ ଦ୍ୱାରା ସ୍ଥାପିତ ହୋଇଥାଏ, ବାହା ଚାଲାଣଗୁଡ଼ା ନାମରେ ପରିଚିତ ହୋଇଥାଏ ବା ଯେଉଁଠାରେ ଏହି ଚାଲାଣ ସଂପ୍ରଦାୟର ବଣ୍ଡାଲୋକମାନେ ବସବାସ କରନ୍ତି, ତାହା ଚାଲଣଗୁଡ଼ା ନାମରେ ନାମିତ ହୋଇଥାଏ । ଅବିଭକ୍ତ କୋରାପୁଟ ଜିଲ୍ଲାରେ ଏହିପରି ନାମରେ ଅନେକ ଗ୍ରାମ ଅଛି । ଏପରିକି ବଣ୍ଡାମାନେ ନଥିବା ଅଂଚଳରେ ମଧ ଏଭଳି ଗ୍ରାମ ରହିଛି ।

୧୭. **ଚଲାବା** - *ଦେ.ବି. :* ଚଳାଇବା ବା ପରିଚାଳନା କରିବା । ଆଦିବାସୀ ଲୋକ ଗୀତରେ କୁହାଯାଇଛି "ପଢୁନ୍, ଲିଖୁନ୍ କୁର୍ସି ବସା, ରାଜକେ ଚଲାବା" ।(ହଲାବୀ)

୧୮. **ଚାଉର୍ ଧୁଆନି ଯାତରା** - **ଗଣ୍ଡି : ବିଶେଷ୍ୟ : ଚାଉଳ ଧୂଆ ଯାତ୍ରା :**

ଗଣ୍ଡ ଆଦିବାସୀ ଗୋଷ୍ଠୀର ଏକ ଯାତ୍ରା । କାର୍ତ୍ତିକ ମାସରେ ଗଣ୍ଡ ଜନଜାତି ଅନ୍ୟ ଆଦିବାସୀ ଗୋଷ୍ଠୀଙ୍କ ପରି ଚାଉର୍ ଧୁଆନି ଯାତରା (ଚାଉଳ ଧୂଆ ଯାତ୍ରା) ପାଳନ କରିଥାନ୍ତି । ଏହି ମାସରେ ଅମଳ ହୋଇଥିବା ଧାନରୁ ଚାଉଳ ବାହାର କରି ପ୍ରଥମ କରି ପାଣିରେ ଧୋଇ ଭାତ ରନ୍ଧାଯାଏ । ଏହା ପୂର୍ବରୁ ନୂଆ ଧାନର ଚାଉଳ ଧୋଇବା ବିଧି ନିଷେଧ । ଏହି ଯାତ୍ରାରେ ଚାଉଳ ଧୋଇ ଭାତ ରାନ୍ଧିଲା ପରେ ଗ୍ରାମଦେବତା, ଗୃହଦେବତା ଓ ଗାଈ ଗୋରୁଙ୍କୁ ଦିଆଯାଏ । ପୂଜା ଅବସରରେ କୁକୁଡ଼ା, ପାରା ଆଦି ବଳି ଦିଆଯାଏ । ଲୋକ ବିଶ୍ୱାସ ଯେ, ବଳି ଦେଲେ ଦେବତା, ସନ୍ତୁଷ୍ଟ ହୋଇଥାନ୍ତି । ଅମଂଗଳ ଓ ରୋଗ ଆଦି ଦୂର ହୋଇଥାଏ । ବାହାରୁ ବନ୍ଧୁବାନ୍ଧବ ଆସିଥାନ୍ତି । ନୂଆ ଲୁଗା ପିନ୍ଧନ୍ତି । ପରିବାର୍‌ରେ ଭୋଜିଭାତ କରାଯାଏ ।

୧୯. **ଚାଉଳି / ଚାଉଲି** - *ଦେ.ବି. :* ଏକ ପ୍ରକାର ନିଶାଯୁକ୍ତ ପାନୀୟ ଦ୍ରବ୍ୟ । ପ୍ରଥମେ ଚାଉଳକୁ ରାନ୍ଧି ଶୁଖାଯାଏ ଓ ଏଥିରେ ଏକ ପ୍ରକାର ଗଛର ଚେର ମିଶାଯାଏ ଏବଂ ଏହାକୁ ଏକ ହାଣ୍ଡିରେ ରଖାଯାଇ ଏଥିରେ ପାଣି ଦିଆଯାଇ ପୋଚ ତିଆରି କରି ଏହାକୁ ପିଇଥାନ୍ତି । ଏହାକୁ କେହି କେହି 'ପେଣ୍ଡମ୍' ବୋଲି ମଧ୍ୟ କହିଥାନ୍ତି । ଆଜିକାଲି ପେଣ୍ଡମ୍ ପ୍ରସ୍ତୁତ ପାଇଁ ଏକ ପ୍ରକାର ମସଲା ବଜାରରେ ସହଜଲଭ୍ୟ ହୋଇଛି ।

୨୦. **ଚାଉଁରିଆ / ଚାଉଁରିଆ ଦେବ** - *ଦେ.ବି. :* ଗୋଟିଏ ପୁଷ୍କରିଣୀ ଓ ଜଣେ ଦେବତାଙ୍କର ନାମ ବିଶେଷ ।

ଚାଉଁରିଆ ପାପଡ଼ାହାଣ୍ଡିର ଏକ ପୋଖରୀର ନାଁ ଏବଂ ସେଇ ଅନୁସାରେ ଏକ ଦେବତାଙ୍କର ନାଁ । ଚାଉଁରିଆ ଦେବଙ୍କ ଯାତ୍ରା ପ୍ରତିବର୍ଷ ଚୈତ୍ର ମାସରେ ପ୍ରଥମେ ପାପଡ଼ାହାଣ୍ଡିରେ ପାଳନ କରାଯାଏ ଏବଂ ତା ପରେ ନବରଂଗପୁର ଚାଉଁରିଆ ତୋଟାରେ କରାଯାଏ । ଏହି ପୂଜା ଓ ଯାତ୍ରା ନବରଂଗପୁର ରାଜାଙ୍କ ଦ୍ୱାରା ପ୍ରଚଳିତ । କିମ୍ବଦନ୍ତୀ ଅଛି ଯେ, ପୂର୍ବେ ନବରଂଗପୁର ରାଜା ପ୍ରବଳ ଶତ୍ରୁ ଆକ୍ରମଣରୁ ରକ୍ଷା

ପାଇବା ପାଇଁ ଚାଉଁରିଆ ଦେବଙ୍କ ଶରଣାପନ୍ନ ହୋଇଥିଲେ । ଚାଉଁରିଆ ଦେବ ଧଳା ଘୋଡ଼ାରେ ଚଢ଼ି ଶତ୍ରୁମାନଙ୍କୁ ଘଉଡ଼ାଇ ଦେଇଥିଲେ । ସେହିଦିନୁ ଚାଉଁରିଆ ଦେବଙ୍କୁ ଅଶ୍ୱପୃଷ୍ଠରେ ବସାଇ ପୂଜା କରାଯାଉଛି । ଚାଉଁରିଆ ସର ନିକଟରେ ଏକ କୁଣ୍ଡ ଅଛି ଯାହାକୁ କୁହାଯାଏ ହଳଦୀ କୁଣ୍ଡ । ପ୍ରବାଦ ଅଛି ଯେ, ସେଠାରେ ପାର୍ବତୀ ସ୍ନାନ କରୁଥିବାରୁ ତାର ଜଳ ଆଜି ମଧ୍ୟ ହଳଦିଆ ଦେଖାଯାଉଛି । ପାପାଡ଼ାହାଣ୍ଡିରେ ଚାଉଁରିଆ ସର ସଂପର୍କରେ ପ୍ରବାଦ ରହିଛି ଯେ, ଏହି ସର ମଧ୍ୟରୁ ପ୍ରତି ବାରବର୍ଷରେ ଏକ କାଠ ଗଣ୍ଡି ଭାସି ଉଠିଥାଏ । ତାହାର ମସ୍ତିଷ୍କରେ ଥାଏ ଚକ୍ରଚିହ୍ନ । କେବେକେବେ ଏହି କାଠଗଣ୍ଡି ପୂର୍ବଦିଗକୁ ଢଳିଥାଏ ଓ ଆଉ କେବେ ଦକ୍ଷିଣ ଦିଗକୁ ଢଳିଥାଏ । ନବରଂଗପୁର ରାଜା ତଥା ପ୍ରଜାମାନେ ଜଳରେ ଭାସମାନ ଏହି ଗଣ୍ଡିକୁ ଉଦ୍ଧାର କରିଥାନ୍ତି । ପୂର୍ବଦିଗକୁ ଢଳିଥିଲେ ଏଥିରେ ମୂର୍ତ୍ତି ଗଢ଼ାଇ ପାପଡ଼ାହାଣ୍ଡି ପୂଜା ପାଆନ୍ତି । ଦକ୍ଷିଣ ଦିଗକୁ ଢଳିଥିଲେ ମୂର୍ତ୍ତି ଗଢ଼ାଇବା ପରେ ନବରଂଗପୁରରେ ପୂଜା ପାଆନ୍ତି । ଶ୍ରୀ ଜଗନ୍ନାଥଙ୍କ ଉତ୍ପତ୍ତି ସଂପର୍କରେ ଭାସମାନ ଦାରୁ ମିଥ୍ ସହ ଏହା ତୁଳନୀୟ ।

୨୧. ଚାଉଁରିଆ ବୀର - *ଦେ.ବି. :* ଭତ୍ରା ଆଦିବାସୀ ଗୋଷ୍ଠୀର ସାଂସ୍କୃତିକ ବୀର ପୁରୁଷଙ୍କ ନାମ । (ସମ୍ବନ୍ଧ : ଦେଖନ୍ତୁ ଗ୍ରାବରାଇ) ନବରଂଗପୁର ଜିଲ୍ଲା ଓ ଛତିଶଗଡ଼ ଜଗଦଲପୁର ଓ ବସ୍ତର ଅଞ୍ଚଳରେ ଚାଉଁରିଆ ବୀର ଜଣେ ଅଲୌକିକ ଶକ୍ତିର ଅଧିକାରୀ ଭାବେ ଦେବତାଙ୍କ ମାନ୍ୟତା ପାଇଛନ୍ତି । ଏହି ଲୌକିକ ଦେବତା ପାହୁଣ୍ଡକେ ଦଶକୋଶ ଗତି କରିପାରୁଥବା ଜନଶ୍ରୁତି ଶୁଣିବାକୁ ମିଳେ । ସେ ଭାରି ଶିକାର ପ୍ରିୟ ଓ ଅଶ୍ୱାରୋହଣରେ ତାଙ୍କ ପଟାନ୍ତର ନଥିଲା ।

୨୨. ଚାଉଁରିଆଗୁଡ଼ା - *ଦେ.ବି. :* ଏକ ଗ୍ରାମର ନାମ ବିଶେଷ ।

ଚାଉଁରିଆ ଦେବତାଙ୍କ ନାମରେ ସ୍ଥାପିତ ଏକ ଗ୍ରାମର ନାମ । ନବରଂଗପୁର ଜିଲ୍ଲା ସଦର ମହକୁମା ନବରଂଗପୁର ସହର ଉପକଣ୍ଠରେ ଏହି ଦେବତାଙ୍କ ଗୁଡ଼ି ସ୍ଥାପିତ ହୋଇ ଯେଉଁ ଜନବସତି ଗଢ଼ି ଉଠିଥିଲା, ତାହାର ନାମ ଚାଉଁରିଆ ଗୁଡ଼ା ।

୨୩. ଚାଖନା ଗୀତ - *ଦେ.ବି. :* ଦୁଇପାଦ ବିଶିଷ୍ଟ ଗୀତ :

ପ୍ରଥମ ପାଦର ଗୀତର ବିଷୟ ଅବତାରଣା ଓ ଦ୍ୱିତୀୟ ପାଦରେ ଗୀତ୍ କୁଡ଼ିଆ ବା ଗୀତ୍ କୁଡ଼ିଆନିର ଅଭୀପ୍ସା ରୂପ ନେଇଥାଏ । ଭାତ ଗିଳିବାକୁ ଯେଉଁପରି

ଚାଖଣା ବା ବ୍ୟଞ୍ଜନ ଲୋଡ଼ା ପଡ଼ିଥାଏ, ସେମିତି ଗୀତର ଅର୍ଥ ବୁଝିବାକୁ ଗୀତର ଶେଷ ପାଦରେ ଗୁରୁତ୍ୱ ଦିଆଯାଇଥାଏ। ଏହାକୁ 'ଚାଖନା ଗୀତ' କୁହାଯାଏ। ଉଦାହରଣ :

୧. ବାରଙ୍ଗ ଦଉଡ଼ି ଟେଣ୍ଡକା ଫାଶ
ଆମ ଗାଁଏ ଭାରି ଆସ।
୨. ପାନି ମାରି କରି ଛେକିଲା ଖରା
ସତେ ପ୍ରୀତି ହେଲା ପରା।
୩. କଞ୍ଚା ଜାମ ଡାଲ ଟିପ ସୁନ୍ଦର
ଖାଇଲେ ସିନା ମଧୁର।

ଅର୍ଥ : (୧) ବାରଙ୍ଗ ନାମ ଘାସରେ ତିଆରି ଫାଶରେ ଏଣ୍ଡୁଅ ପଡ଼ିଲା ପରି, ମୁଁ ତୋ ଫାଶରେ ପଡ଼ିଛି ଯେ, ଆ, ଆମ ଗାଁକୁ ଚାଲିଆ।

(୨) ପ୍ରଥମରେ ପାଣି ବର୍ଷା ହୋଇ ତା ପରେ ଖରା ହେଲେ ଯେମିତି ପ୍ରୀତିପ୍ରଦ ମନେ ହୁଏ, ତା'ର ଅନୁଭବ ତୋତେ ପ୍ରକୃତ ପ୍ରୀତି କଲା ପରି ଯେ !

(୩) ପାଚି ନଥିବା ଜାମୁକୋଳି ଗଛର ଅଗ୍ରଭାଗ ଯେମିତି ସୁନ୍ଦର ସେମିତି, ତୋ ସହିତ ରତି ହେଲେ କେତେ ମଧୁର ଅନୁଭବ ନ ହୁଅନ୍ତା ସତରେ।

୨୪. ଚାଖ୍ନା ବେଣ୍ଟ - *ଦେ.ବି. :* ଚୈତ୍ର ପର୍ବବେଳେ ଲାଗଲାଗ ଦୁଇଦିନ ଶିକାରକୁ ଯିବା ପରେ ଏବଂ ଶୀକାର କରି ଗାଁକୁ ଆସି ମାଂସ ଖାଇ ସାରିବା ପରେ ତୃତୀୟ ଦିନର ବେଣ୍ଟକୁ 'ଚାଖ୍ନା ବେଣ୍ଟ' କୁହାଯାଏ। ଏହିଦିନ ଶୀକାର ମିଳୁ ବା ନମିଳୁ, ସେଥିରେ କିଛି କଟକଣା ନଥାଏ।

୨୫. ଚାଣ୍ଟି - *ଦେ.ବି. :* ପିମ୍ପୁଡ଼ି ଇଂ. - Ant

ଏହି ଚାଣ୍ଟି ଅନେକ ପ୍ରକାର ଅଛନ୍ତି।

(୧) ଅନ୍ତରୁ ଚାଣ୍ଟି - କଳାଜନ୍ଦା

(୨) କନ୍ତେରି ଚାଣ୍ଟି - ଅନ୍ତରୁ ଠାରୁ ଟିକେ ବଡ଼ ଜନ୍ଦା।

(୩) ବଡ଼ ମୁଣ୍ଡା - ବଡ଼ ମୁଣ୍ଡଥିବା ଜନ୍ଦା।

(୪) ବୁରୀ ଚାଣ୍ଟି : ସରୁ ପିମ୍ପୁଡ଼ି : ରଂଗ ଲାଲ୍ ଓ ଧଳା -

ଏହିପରି ଦୁଇ ପ୍ରକାରର ବୁରୀ ଚାଣ୍ଟି ଦେଖାଯାନ୍ତି । ଏମାନେ କାମୁଡ଼ିଲେ ଖୁବ୍ କାଟେ ।

(୫) ବିଷ୍ ଚାଣ୍ଟି - କଳା ବାଲି ଜନ୍ଦା । କାମୁଡ଼ିଲେ ଖୁବ୍ ବିଷ । ସଂଗେସଂଗେ ଫଳିଯାଏ ।

(୬) ମାକ୍ନାଗଣ୍ଟି ବା ମଡିଚାଣ୍ଟି - ଲାଲ୍ ରଂଗର ସାଧାରଣ ପିମ୍ପୁଡ଼ି । ଭୂଇଁରେ ଗାତକରି ରହନ୍ତି ।

(୭) ଟାପେଙ୍ଗା : କାଇ : ବଡ଼ ଆକାରର କାଇ । ଏହାକୁ ମଧ ଚାଖ୍ନା କରାଯାଏ । ସାମାନ୍ୟ ଭାଜିଦେଇ ସଲପ୍ ବା ମହୁଲି ମଦ ସଂଗେ ଏପରିକି ଭାତ ସାଂଗରେ ମଧ ଖିଆଯାଏ । ଗଛ ଡାଳରେ ଏମାନେ ବସା କରନ୍ତି । ଟାପେଙ୍ଗା ଅଣ୍ଡା ଆଦିବାସୀ ମାନଙ୍କର ଭାରି ପ୍ରିୟ । ଟାପେଙ୍ଗାର ଆମ୍ବିଳା ଝୋଳ ସଂଗେ ଭାତ ଜଂଗଲବାସୀଙ୍କର ପ୍ରିୟ ଆହାର । ହାଟ ବଜାରରେ ମଧ ଏହା ବିକ୍ରି ହୁଏ ।

(୮) ନିଦୁକୀ : ଅତିସାନ ଲାଲ୍ ପିମ୍ପୁଡ଼ି । ବିଷାକ୍ତ କାମୁଡ଼ା । ଲୁଗାପଟାରେ ପଶିଯାଇ କାମୁଡ଼ନ୍ତି ।

(୯) ଅଲମା-ଉଇ । ଏମାନେ ସାଧାରଣତଃ ଜଂଗଲରେ, ଗାଁରେ ଘରେ 'ବିନ୍', ବିଡ଼ମ୍ ବା ହୁଙ୍କା କରି ରହନ୍ତି । ଏହା ଭାଲୁର ଅତି ପ୍ରିୟ ଖାଦ୍ୟ । ଆହୁରି ମଧ ମଞ୍ଜୁର୍ ବା ମୟୂର ମଧ ଅଲ୍ମା ଖାଇଥାଏ । ଅଲ୍ମା ଦେହରେ ପର ଲାଗିଗଲେ ତାକୁ 'ବତର୍ କିଡ଼ା' ବୋଲି କୁହାଯାଏ ।

(୧୦) ଠକ୍-ବିଡିମ୍ ଭିତରେ ରହୁଥିବା ଅଲମାମାନଙ୍କର ଖଣ୍ଡିକିଆ ବସା ବା କଲୋନିକୁ ଠକ୍ କୁହଯାଏ । ଭାଲୁ ଏହି ଠକ୍କୁ ହୁଙ୍କା ଭିତରୁ କାଢ଼ି ଖାଇଯାଏ । ଆଡ଼୍ସାଲିମ୍ (ବଜ୍ରକାପ୍ତା) ମଧ ଉଇ ଖାଇ ବଞ୍ଚେ ।

(୧୧) ପରଣ୍ଡ ଚାଣ୍ଟି : ଯେ କୌଣସି ଚାଣ୍ଟି ଦେହରେ ପର ଲାଗିଗଲେ ତାକୁ ପରଣ୍ଡ ଚାଣ୍ଟି କହନ୍ତି । ଜନ୍ଦା ଓ ପିମ୍ପୁନି ଆଦି ସବୁ ପ୍ରକାର ଚାଣ୍ଟି ପରଣ୍ଡ ଚାଣ୍ଟି ହେବାପରେ ମୃତ୍ୟୁ ମୁଖରେ ପଡ଼ନ୍ତି ।

୨୬.   ଚାପଡ଼ା - *ଦେ.ବି. :* କାଇ ଅଣ୍ଡା । ବିଶେଷତଃ ଆମ୍ବଗଛ, କୁସମ ଗଛ, କଷି ଗଛ, ଜାମକୋଳି ଓ କରଂଜ ଗଛ ପ୍ରଭୃତରେ ବହୁ ପରିମାଣରେ ଦେଖାଯାଇଥାଏ । ଏହା ଏକ ପ୍ରକାର ଇନ୍ଦା ବା ପିମ୍ପୁଡ଼ି ଜାତୀୟ ପ୍ରାଣୀର ଅଣ୍ଡା ଅଟେ । ଆଦିବାସୀମାନେ ଏହାକୁ ଅତି ପ୍ରିୟ ଖାଦ୍ୟ ଭାବେ ଖାଇଥାନ୍ତି । ଏହାକୁ ଲୁଣ, ମରିଚ ଓ ହଳଦୀ ଦେଇ ଚଟଣୀ ଝୋଳ ବା ପତ୍ରପୋଡ଼ା କରି ଖାଆନ୍ତି । ଏହି ପତ୍ରପୋଡ଼ା ଚାପଡ଼ାକୁ ସଲପ, ମଦ, ପେଣ୍ଡମ ଓ ପେଜ ସହିତ ଚାକ୍‌ନା କରି ଖାଇଥାନ୍ତି । ଏହାର ଔଷଧୀୟ ଗୁଣ ମଧ୍ୟ ରହିଛି । ଏହା ପୀତନାଶକ ଔଷଧ ଭାବେ ବ୍ୟବହାର କରାଯାଏ ।

୨୭.   ଚାପରା - *ଦେ.ବି. :* ଅଲଣା, ଲୁଣ ବା ଚିନି ନ ଥିବା ସୁଆଦ, ସ୍ୱାଦହୀନ ଇଂ. - Testless, Without Salt, Without Sugar

(୧) ଯେକୌଣସି ଖାଦ୍ୟରେ ରୁଚି ମୁତାବକ ଲୁଣ, ଚିନି ବା ଗୁଡ଼ ପଡ଼ି ନଥିଲେ, ତାକୁ ଚାପରା ଲାଗିଲାଣି ବୋଲି କହନ୍ତି ।

(୨) ଅଭ୍ୟାସ ବଶତଃ ଖାଉଥିବା ନିଶାଦ୍ରବ୍ୟକୁ ଦୀର୍ଘ ସମୟ ଧରି ନ ଖାଇଲେ ପାଟିରେ ଦେଖାଦେଉଥିବା ଅରୁଚିକର ସ୍ୱାଦ । ପାଟି ଖରାପ ଲାଗିବା । ଚାପ୍‌ରା ଲାଗିବା ।

ଯଥା : (୧) ଆଜିର ଶାଗ୍ ପଡ଼େ ଚାପ୍‌ରା । ନୁନ୍ ଲାଗେ ନାଇଁ ।

(୨) ଆଡ଼ାରେ ନାପିଲି ଲଙ୍କା ମରିଚ ମାଣରେ ନାପିଲି ଘିଅ ।

ମୋର ପାନ୍‌କିଆ ଟଣ୍ଡ୍ ଚାପ୍‌ରା ଲାଗ୍‌ଲା, ଦୁଙ୍ଗିଆ କଣ୍ଡେକ୍ ଦିଅ ।

୨୮.   ଚାମ୍ ଛାଆଁନି ବାଇଦ୍ - *ଦେ.ବି. :* ଆନଦ୍ଧ ଚର୍ମ ଛାଉଣୀ ବାଦ୍ୟ : ଢୋଲ ଶ୍ରେଣୀୟ ଆନଦ୍ଧ ବାଦ୍ୟ । କୋୟାମାନଙ୍କ ବୃହତ୍‌କାୟ ଢୋଲ, ବଣ୍ଡାମାନଙ୍କ କ୍ଷୁଦ୍ରକାୟ ଢୋଲ "ଟିଡିଂ," ସଉରାମାନଙ୍କର ପୃଥୁଳକାୟ ଢୋଲ "ଡୁଡୁଂ," ଗଣ୍ଡମାନଙ୍କର ଖୁଟ୍ ମାନ୍ଦରା ଓ ମାଟି ମାନ୍ଦର "ମାନ୍ଦ୍ର", ଚାମ୍ ଛାଆନି ବାଇଦ୍ ଭାବେ ଅତି ପରିଚିତ । ଏହି ବାଦ୍ୟର ବାମ ଓ ଡାହାଣ ପଟେ ଚମଡ଼ା ଛାଉଣୀ କରାଯାଇଥାଏ । ଏଗୁଡ଼ିକୁ ଦଣ୍ଡ, କାଠି ଓ ହାତ ପାପୁଲି ଦ୍ୱାରା ବଜାଯାଏ । ଏହା ବ୍ୟତୀତ ଦେଶିଆ ମାନଙ୍କର ଅନ୍ୟ ଆନଦ୍ଧ ବାଦ୍ୟ ଗୁଡ଼ିକ ହେଲା ଟୁଡୁବୁଡ଼ି, ଟାମକ୍, ଢାପ୍ । ଏ ସମସ୍ତ ବାଦ୍ୟର

ନିର୍ମାଣ କାର୍ଯ୍ୟ ମୁଖ୍ୟତଃ ହରିଜନ ସଂପ୍ରଦାୟର ଲୋକେ କରିଥାନ୍ତି । ଜନ୍ତୁର ଚମଡ଼ା ଛାଲିବା, ତାକୁ ଶୁଖାଇ ଛାଉଣି ସକାଶେ ନରମ କରିବା କାର୍ଯ୍ୟ ପୁରୁଷାନୁକ୍ରମେ ଏମାନେ କରିଆସିଥିବାରୁ 'ବାଇଦ କାରିଆ' ରୂପେ ମଧ ପରିଚିତ । ସେହି ସକାଶେ ଚାମ୍‌ଛାଉଣି ବାଦ୍ୟର ତାଳ, ଛନ୍ଦ ଓ ବ୍ୟାକରଣରେ ମଧଏମାନେ ଧୁରନ୍ଧର ।

୨୯. ଚିକ୍‌ନି - *ଦେ.ବି.* : ଔଷଧି ବୃକ୍ଷବିଶେଷ । ବଜ୍ରମୂଳା : ହାତଗୋଡ଼ ଭାଂଗିଗଲେ ଚିକ୍‌ନି ଚେର ଭଂଗା ଯାଗାରେ ବନ୍ଧାଯାଏ ଓ ଖାଇବାକୁ ଦିଆଯାଏ । ଚିକ୍‌ନି ପତ୍ର ରସ କାନରେ ପକାଇଲେ କାନଟଣା ଓ ପଚା ଭଲହୁଏ । ଚିକ୍‌ନି ଚେର ବାଟି ଭଂଗାହାଡ଼ ଜାଗାରେ ଠିକ୍‌ଭାବେ ବାନ୍ଧିଦେଲେ । (ଜୀବଜନ୍ତୁ ତଥା ମଣିଷଙ୍କ) ଏହା ଯୋଡ଼ି ହୋଇଥାଏ ।

୩୦. ଚିକ୍‌ଲଣ୍ଡି - *ଦେ.ବି.* : ଗଦବା ସଂପ୍ରଦାୟର ବାହାଘର ଉପରାନ୍ତେ ହେଉଥିବା ବେଦି କର୍ମ ଓ କାଦୁଅ ଖେଳ ବିଧି । ବାହାଘର ବେଦି ଉପରେ ଆମ୍ବ, ଜାମୁ, ଡୁମୁରି, ଝଡ଼ି ମହୁଲ ଡାଳ ଏକତ୍ର କରି ପୋତି ଏକ ନୂଆ ସୂତାରେ ସାତଘେରି କରି ବନ୍ଧା ଯାଇଥାଏ । ବେଦୀ ଉପରେ ଦିଶାରୀର ପରାମର୍ଶ ଅନୁଯାୟୀ ଆଣିଥିବା କୋଇଲି ପାଣି ଏକ ନୂଆ ହାଣ୍ଡିରେ ଶିକାରେ ଓହଳା ଯାଇଥାଏ । ବିବାହ ସରିବା ପରେ ଏକ ଘୋରଣା (ଚକି)ରେ ବରକନ୍ୟାକୁ ଛିଡ଼ା କରାଇ ଉକ୍ତ ହାଣ୍ଡିରେ ଥିବା ହଳଦୀପାଣି ଢଳାଯାଏ । ତା'ପରେ ପୋତା ଯାଇଥିବା ଡାଳଗୁଡ଼ିକୁ ଉପୁଡ଼ାଇ ମାଆଲାକାରିଆ ଡାଳ ବୋହି ଆଗେଆଗେ ଯାଇଥାଏ । ତାପରେ ବର ସହିତ ଥିବା ଯୁବକ (ସଙ୍ଗ୍ ଧାଙ୍ଗଡ଼ା) କନ୍ୟା ସହିତ ଥିବା ଯୁବତୀ (ସଙ୍ଗ୍ ଧାଙ୍ଗଡ଼ୀ)କୁ ପିଠିରେ ବୋହି ଏବଂ ବରକନ୍ୟାକୁ ପିଠିରେ ଲାଉ କରି ପାଣି ଘାଟକୁ ଯାଆନ୍ତି । ଦିଶାରୀର ପୂଜାପାଠି ସରିଲା ପରେ ଡାଳ ଉପରେ ବରକୋଳରେ କନ୍ୟା ଏବଂ ସଙ୍ଗ୍ ଧାଙ୍ଗ୍‌ଡ଼ା କୋଳରେ ସଙ୍ଗ୍ ଧାଙ୍ଗଡ଼ି ବସିଥାନ୍ତି । ଅନ୍ୟ ଲୋକମାନେ ବରକନ୍ୟା ବସିଥିବା ଡାଳକୁ ଟାଣି ଟାଣି ପାଣି ଭିତରକୁ ନିଅନ୍ତି । ସମସ୍ତେ କାଦୁଅ ବୋଳାବୋଳି ହୋଇ ଖେଳିବା ପରେ ଗାଧୁଆ ପାଧୁଆ ସାରି ଘରକୁ ଫେରନ୍ତି ।

୩୧. ଚିକନ ପୁଛାନି - *ଦେ.କ୍ରି.* : ଏକ ବିବାହ ବିଧି ବିଧାନ ।

ଉଦୁଲିଆ ହେଉ ବା ମାଙ୍ଗାନି ହେଉ କନ୍ୟାକୁ ଘର ଭିତରକୁ ପ୍ରବେଶ କରାଇବା ସମୟରେ ଲଙ୍ଗଳର ଫାଳ ଓ ବରତ (ଜୁଆଳି ଦଉଡ଼ି) ମଡ଼ାଇ, ପାଦରେ

କୁକୁଡ଼ା ବଳି ଦିଆଯାଏ । ପରେ ବିରିଦାନା ଓ ଜଡ଼ା ତେଲକୁ ଏକତ୍ର ଭାଜି ଉତ୍ତପ୍ତ ବିରିକୁ ଚଟୁ ସାହଯ୍ୟରେ ଉପସ୍ଥିତ ଲୋକମାନଙ୍କ ଉପରକୁ ଛାଟି ଦିଆଯାଏ । ଝିଅ ମୁଣ୍ଡରେ ଜଡ଼ାତେଲ ବୋଳି ଦିଆଯାଏ । ଏହାକୁ 'ଚିକନ ପୁଛାନି' କହନ୍ତି ।

୩୨. **ଚିକଲ ଲଣ୍ଡି** - ଭତ୍ରୀ : ବି: ଭତରା ତଥା ଅନ୍ୟାନ୍ୟ ବହୁ ଆଦିବାସୀ ସଂପ୍ରଦାୟରେ (ଚିଖଲ) କାଦୁଅ; ଲଣ୍ଡି : ବୋଳାବୋଳି ହେବା । କାଦୁଅ ବୋଳାବୋଳି ବିଧି । ଭତରାଙ୍କ ବିବାହ କର୍ମପରେ ଉପସ୍ଥିତ ବରପକ୍ଷ ଓ କନ୍ୟାପକ୍ଷ ଲଗିନ୍ ମାରିଲା ପରେ (ଲୁଗାରେ ବ୍ରହ୍ମଗଣ୍ଠି ପକାଇଲା ପରେ) ହଳଦୀ ଓ କାଦୁଅ ବୋଳାବୋଳି ହୋଇ ଗୀତ ଗାଇ ନାଚ କରିଥାନ୍ତି । ଆନନ୍ଦ ଉଲ୍ଲାସକୁ ସେମାନେ ନିମ୍ନ ଗୀତରେ ପ୍ରକାଶ କରିଥାନ୍ତି ।

**ଚିକଲ୍ ଲଣ୍ଡି ଗୀତ :**

ପିପ୍‌ଡ଼ି ପତର ପିପ୍‌ଡ଼ି ସରଗେ ଲାଗିଲା ଧୂଳି, ବେଡ଼ାର କାକ୍‌ଡ଼ା ଢାଲର ମାର୍‌ଲା ବେଙ୍ଗ୍ ଦେଲା ଉଲୁଭଲି । (ଏହି ବିବାହର କୋଳାହଳରେ ପିପଳ ଗଛର ପତ୍ର ଏତେ ଆନନ୍ଦରେ ଥରୁଛି ଯେ, ତା'ର ପବନର ସ୍ପର୍ଶରେ ମାଟି ପୃଥିବୀର ଧୂଳି ସ୍ୱର୍ଗ ଛୁଇଁଛି । ଗାତରେ ଥିବା କଙ୍କଡ଼ା ବାଇଦ ବଜାଉଛି ଓ ବେଙ୍ଗ ହୁଳୁହୁଳି ଦେଉଛି । ଅର୍ଥାତ୍, ବିବାହରେ କେବଳ ମଣିଷ ନୁହଁନ୍ତି, ପ୍ରକୃତି ଓ ଇତର ପ୍ରାଣୀ ମଧ୍ୟ ଉଲ୍ଲସିତ ହେଉଛନ୍ତି ।)

୩୩. **ଚିକଲ ବେଢ଼ା** - *ଦେ.ବି. :* କାଦୁଆଜମି । ଇଂ.- Muddy Field ଭୀଷଣ ବର୍ଷା ଯୋଗୁଁ କାଦୁଅ ହୋଇଥିବା ଜମି, ଚିକଲ କାଦୁଅ ବେଢ଼ା : ଧାନଜମି ।

୩୪. **ଚିତର୍ କୁପା** - *ଦେ.ବି. :* ମାଲକାନଗିରି ଜିଲ୍ଲାର ଏକ ଗାଁର ନାମ ।

ଓଡ଼ିଶା ଛତିଶଗଡ଼ ସୀମାର ଥିବା ଏହି ଗାଁଟି ଚେକାବେକା ନଦୀକୂଳରେ ଅବସ୍ଥିତ । ଏହି ନଦୀ ପାଲି ପାଲି ଏକ ପ୍ରକାର ଭାଜି ଶାଗ ହୁଏ ଯାହାକୁ କୁହାଯାଏ ଚିତର୍ । ଏହାକୁ ଭାଜି ଖାଇଲେ, ପାଟି ଟିକେ କୁଣ୍ଡାଇ ହୁଏ । ଓଲୁଅ ଭଳି । ତେଣୁ ତେନ୍ତୁଳି ଦେଇ ତାହାକୁ ରନ୍ଧାଯାଏ । କୁପାର ଅର୍ଥ ହେଉଛି ସ୍ଥଳଭାଗ । ଏହିଭଳି ଚିତର୍ କୁପା ଗାଁର ସୃଷ୍ଟି । ଏହା ଗଣ୍ଡିଆମାନଙ୍କର ଏକ ଗାଁ ।

୩୫. ଚିତାପାରୁ - *ଦେ.ବି.* : ଏକ ଔଷଧୀୟ ବୃକ୍ଷ ବିଶେଷ । ଚିତାମୂଳକୁ ଚିତାପାରୁ କୁହାଯାଏ । ବଥ, ଶୋଥ, କୃମି ରୋଗ ପାଇଁ ଦିଶାରୀମାନେ ଏହାକୁ ବ୍ୟବହାର କରିଥାନ୍ତି । ଡାହାଣପଟେ ଅଣ୍ଡକୋଷ ବୃଦ୍ଧି ହୋଇଥିଲେ ଚିତାପାରୁ ବାମ ବାହୁରେ ଏବଂ ବାମ ପାର୍ଶ୍ୱ ଅଣ୍ଡକୋଷ ବୃଦ୍ଧି ହୋଇଥିଲେ ଡାହାଣ ବାହୁରେ ଚିତାପାରୁ ମୂଳ ବନ୍ଧାଯାଏ । ଏହା ବିଷାକ୍ତ ହେତୁ ଘାଆ ହୋଇଯାଏ । କିନ୍ତୁ କୋଷ ବୃଦ୍ଧି ବ୍ୟଥାରୁ ଉପଶମ ମିଳେ ।

୩୬. ଚିତ୍ରକୋଣ୍ଡା - *ଦେ.ବି.* : ଗୋଟିଏ ନଦୀ ତଥା ମାଲକାନଗିରି ଜିଲ୍ଲାର ଏକ ସ୍ଥାନର ନାମ ବିଶେଷ । ଏହି ଚିତ୍ରକୋଣ୍ଡାଠାରେ ଏବକୁ ଏକ ବନ୍ଧ ନିର୍ମାଣ କରାଯାଇଛି । ଚିତ୍ରଗିରି ବା ବହୁବିଧ ପ୍ରାକୃତିକ ଚିତ୍ରରେ ବିମଣ୍ଡିତ ପାର୍ବତ୍ୟ ଅଞ୍ଚଳ । କଥିତ ଅଛି ଯେ, ଗିରିନଦୀ ଓ ଝରଣା ପରିପୂର୍ଣ୍ଣ ଏହି ପାର୍ବତ୍ୟ ଅଞ୍ଚଳର ପ୍ରାକୃତିକ ଚିତ୍ର ଅତୀବ ଚିତ୍ତାକର୍ଷକ ହୋଇଥିବାରୁ ଏହା ଚିତ୍ରକୋଣ୍ଡା ନାମରେ ନାମିତ ହୋଇଛି । ଏହାର ପ୍ରାକୃତିକ ଚିତ୍ରପଟକୁ ଯଥାର୍ଥଭାବରେ ଉପଲବଧି କରିବା ପାଇଁ ରାମଚନ୍ଦ୍ର ଏହି ଅଞ୍ଚଳରେ କିଛିକାଳ ଅବସ୍ଥାନ କରିଥିଲେ ବୋଲି ପ୍ରବାଦ ଅଛି । ଏହା ବାଲିମେଳା ଜଳ ବିଦ୍ୟୁତ୍ କେନ୍ଦ୍ରଠୁ ୩୦କି.ମି. ଓ ମାଲକାନଗିରିଠାରୁ ୬୦କି.ମି ଦୂରରେ ଅବସ୍ଥିତ ।

୩୭. ଚିତ୍ରାଖାଇବା - *ଦେ.ବି.* : ଚିତାପୋକ ଲାଗିବା । ଧାନ ଫସଲରେ ନଳୀପୋକ ଲାଗିଲେ ପତ୍ରସବୁ ପାଉଁଶରେ ଚିତ୍ରିତ କଲାପରି ଦେଖାଯାଏ ଏବଂ ଧାନଗଛ କ୍ରମେ ଥୁଣ୍ଟା ହୋଇଯାଏ । ଏହି ନଳୀ ପୋକ ଆକ୍ରାନ୍ତ ଫସଲକୁ 'ଚିତ୍ରାଖାଉଚି' ବୋଲି କୁହାଯାଏ ।

୩୮. ଚିନ୍‌ଦେବା / ସିନ୍‌ଦେବା - *ଦେ.କ୍ରି.* : ଚିହ୍ନଟ ପାଇଁ ଚିତାକୁଟା ପ୍ରକ୍ରିୟା । ଇଂ.- To put a mark. ନନ୍ଦପୁର / ଜୟପୁରର ରାଜାମାନଙ୍କର ଶାସନ କାଳରେ ଗାଦବାମାନଙ୍କୁ ଚିହ୍ନଟ ନିମିତ୍ତ ବାହୁରେ 'ଗଦନି' କଣ୍ଟା ସାହାଯ୍ୟରେ ଚିହ୍ନ ଦିଆଯାଉଥିଲା । ବସନ୍ତ ରୋଗର ଚିହ୍ନ ଥିଲେ ସେହି ବ୍ୟକ୍ତିକୁ ଆଉ ଚିହ୍ନ ଦିଆଯାଉ ନଥିଲା । ଏହି ଚିହ୍ନକୁ 'ଗଦନି' କୁହାଯାଏ । ଏବେ ଏ ପ୍ରଥାର

ଆଉ ପ୍ରଚଳନ ନାହିଁ । ଏହି ଚିହ୍ନ ଯେଉଁମାନଙ୍କୁ ଦିଆଯାଉଥିଲା ସେମାନଙ୍କୁ 'ଭୋଇ ଗାଦବା' ବୋଲି କହନ୍ତି ।

୩୯. ଚିପ୍‌ନା - *ଦେ.ବି. :* ଟିଣ ବା ପ୍ଲାଷ୍ଟିକ୍‌ରେ ତିଆରି କ୍ଲିପ୍ ।

ଝିଅମାନେ ବାଳ ବାନ୍ଧିବାକୁ ଏହା ବ୍ୟବହାର କରନ୍ତି । ପୂର୍ବେ କାଠ ବାଉଁଶରେ ଚିପ୍‌ନା ତିଆରି ହେଉଥିଲା ।

ଚିପ୍‌ନାର ଅର୍ଥ ଚାପି ରହିବା । ବାଲ୍ ଚିପ୍‌ନା - କେଶ କଣ୍ଟା । ଇଂ.- Hair Pin, ବିଭିନ୍ନ ଆଦିବାସୀ ସଂପ୍ରଦାୟରେ ରମଣୀମାନେ ରୁପା ଓ ଆଲୁମିନିୟମ୍‌ର କେଶ କଣ୍ଟାମାରି ସୁନ୍ଦର ଭାବେ ମୁଣ୍ଡରେ ଖୋସା ବାନ୍ଧିଥାନ୍ତି । ବିଶେଷତଃ ପରଜା, କନ୍ଧ ତଥା ଦୁରୁଆ ସଂପ୍ରଦାୟର ଝିଅମାନେ କେଶରେ ଜଡ଼ା ତେଲ ଜୁଡ଼ା ବାନ୍ଧି ଚିପ୍‌ନା ବ୍ୟବହାର କରିଥାନ୍ତି ।

୪୦. ଚିପିଲି - *ଦେ.ବି. :* କଅଁଳ ସର୍ଗି ପତର ଠୋଲା । ଦେଶିଆ ମାନଙ୍କର ସମସ୍ତ ପୂଜା ପାର୍ବଣରେ ଏହି ଚିପିଲି ବ୍ୟବହୃତ ହୋଇଥାଏ । ଦେବୀ ଦେବତା ପାଖରେ ଝୁଣା ଦେବାପାଇଁ, ଭୋଗ ଲଗାଇବା ପାଇଁ, ବଳି ପଶୁ ବା ପକ୍ଷୀର ରକ୍ତରଖିବା ପାଇଁ ଓ ସଲପ ମହୁଲୀ ବା ପେଜ୍ ପରଷିବା ପାଇଁ ଚିପିଲି ବ୍ୟବହାର ହୁଏ । ମଧ୍ୟମ ଆକାରର ଠୋଲାକୁ ଚକନି ଓ ବଡ଼ ଠୋଲାକୁ ଦନା କୁହାଯାଏ ।

୪୧. ଚିମରା - *ଦେ.କ୍ରି.ବିଂ. :* ଶୁନ୍‌ଶାନ୍, ନିଛାଟିଆ, ଏକାଏକା, ଏକୁଟିଆ, ନିଃସଙ୍ଗ, ଅସତ୍, ଭୟ, ଡରଡର, ଭୌତିକ । ଇଂ.- Lonly, Alone, Empty, Friendless, Helpless, Fearful, Ghostly.

ଦେ.ବିଂ : ଚିମରାୟ - ଚୁପ୍‌ଚାପ୍, ଚୁପ ହୋଇ ରହିବା - Quiet, Quietly.

ବ୍ୟବହାର : (୧) ଚିମ୍‌ରା ଚାପ୍‌ଲାନି । ଅର୍ଥାତ୍, ନିସ୍ତବ୍ଧ ହୋଇ ଆସିଲା ।

(୨) ଗରେ ଗତିଆ ଲୋକ୍ ରଇଲାବେଲେ ଗର୍ ଉଷୁମ୍ ଇଲା । ସବୁଲକ୍ ଗଲାକେ ଚିମରା ଅଇଗଲା ।

(୩) ଗରେ ଏକ୍‌ଲା ରଇବା ବେଲେ ରାତି ଏଲେ ବଡ୍ ଚିମ୍‌ରା ଲାଗ୍‌ସି (ଡର ଲାଗିବା ଅର୍ଥରେ)

(୪) ଆଜି ମକେ ନିକ ଲାଗେ ନାଇଁ ଗିନେ ଦିନ୍‌ଯାକ୍ ଚିମ୍‌ରାୟ ଇଇଲି । (ଚୁପ୍‌ଚାପ୍ ଅର୍ଥରେ)

୪୨. ଚିଲିଂ - *ଦେ.ବିଂ.* : ଏକଦମ୍, ଏକ୍‌ବାର, ସଂପୂର୍ଣ୍ଣ । ଇଂ. - Extreme, Extremely : ପ୍ରତିଶବ୍ଦ : ସିଲ୍ । ସାଧାରଣତଃ ଚିମ୍‌ରା ପୂର୍ବରୁ ଏହି ଶବ୍ଦ ବିଶେଷ ରୂପେ ବ୍ୟବହୃତ ହୁଏ । ଅନ୍ୟ କୌଣସି ଶବ୍ଦ ପୂର୍ବରୁ ବ୍ୟବହୃତ ହୁଏ ନାହିଁ । ଏହି ବ୍ୟବହାରରେ କେବେକେବେ ନିଃସତାବୋଧ ପ୍ରକଟିତ ହୁଏତ ଆଉ କେବେ ଭୌତିକ ଆତଙ୍କ ପ୍ରକଟିତ ହୁଏ ।

ଯଥା : (୧) ଢମାନ୍ (ପୋଲିସ୍) ଆସ୍‌ବାକେ ଗାଁୟେ ଗୁଟେକ୍ ଲୋକ ମିଶାର ଅତ୍ ନାଇଁ । ଚିଲିଂ ଚିମ୍‌ରା ଅଇଗଲା ଅଚେ । (ଶୂନ୍‌ଶାନ୍ ଅର୍ଥରେ)

(୨) ଆନ୍ଧାରବେଲେ ଯାଇତେ ରଇଲି । ତୁମା ଡରାଇବାକେ ଗାଗଡ଼୍ ମୁଣ୍ଡ୍ ଚିଲିଂ ଚିମ୍‌ରା ଆଇଗଲା । (ଡରିଯିବା ଅର୍ଥରେ)

୪୩. ଚୁଟି - *ଦେ.ବି.* : ପୁଡ଼ା - ଚାଉଳପୁଡ଼ା - ଗଦବାମାନଙ୍କର ଗତର (ବିରାଟ ସାଧାରଣ ଶ୍ରାଦ୍ଧ ଶୁଦ୍ଧି କ୍ରିୟା) ସମୟରେ ପାଙ୍ଗିଆ ବାଇକୁ କୋଡୋଟି ପୋଢ଼ ମିଳିବ, କିଏ କିଏ ଦେବେ ସେ ଜାଣି ନଥାଏ । ତାକୁ ଗତର ମେଳିବା ଘରର ଲୋକେ ଶିଆଳୀ ପତ୍ରରେ ଚାଉଳ ପୁରାଇ ପୁଡ଼ା କରିଦିଅନ୍ତି । ଏହାକୁ 'ଚୁଟି' କୁହାଯାଏ । ତା'କୁ ଯେତୋଟି ପୁଡ଼ା (ଚୁଟି) ଦିଆଯାଇଥାଏ, ଯେ ଯେଉଁ ଯେଉଁ ପୋଢ଼କୁ ତାହା ଖୁଆଇ ଥାଏ, ଠିକ୍

ସେହି ପୋଢ଼ମାନଙ୍କୁ ଗତର ସରିବା ପରେ ତା'ର ନିଜ ଘରକୁ ଅଡ଼ାଇ ନିଏ ।

୪୪. ଚୁଡ଼ାଗୁଡ଼ଖିଆ ଘର - *ଦେ.ବି.* : ନିର୍ବନ୍ଧ ଅନୁଷ୍ଠାନ । କନ୍ୟା ଖୋଜିଖୋଜି ବରପକ୍ଷ ପ୍ରଥମେ ନିର୍ଦ୍ଧାରିତ ବରପକ୍ଷର ଲୋକେ ଝିଅ ପସନ୍ଦ ହେଲେ ଚୁଡ଼ାଗୁଡ଼, ଫେଣି, କଦଳୀ ଆଦି ନେଇଥାନ୍ତି । ସମସ୍ତଙ୍କୁ ଚୁଡ଼ାଗୁଡ଼ ଦନାରେ ଦିଆଯାଏ ଓ ନିର୍ବନ୍ଧ ସମାପନ ହୁଏ ।

୪୫. ଚୁତଡ଼୍ - *ଦେ.ବି.* : ପିଚା । ଇଂ- Buttock. ଆଦିବାସୀ ସଂସ୍କୃତିରେ ଚୁତଡ଼୍ ଏକ ଅଶ୍ଳୀଳ ଶବ୍ଦ ନୁହେଁ । ଅଧିକାଂଶ ବୟସ୍କ ଲୋକେ ଏବେ ମଧ୍ୟ ଲେଙ୍ଗୁଟି ପିନ୍ଧନ୍ତି ଓ ଚୁତଡ଼୍ ଲୁଚାନ୍ତି ନାହିଁ । ବ୍ୟବହାର :

କାୟ କାୟ ଲୋକ୍‌ମନ୍ ଅଗିକରି ମିଶା ଚୁତଡ଼୍ ଦୋଇ ହଅତ୍ ନାଇଁ ।

୪୬. ଚୁନ୍‌ଗୁନି ଡୁମା : ଚିରିଗୁଣି : - *ଦେ.ବି. :* ଚିରିଗୁଣୀ । ଗର୍ଭିଣୀ ସ୍ତ୍ରୀ ଛୁଆ ପ୍ରସବ କରି ନପାରି ମୃତ୍ୟୁବରଣ କଲେ ସେ ଚୁନ୍‌ଗୁନି ଡୁମା ହୁଏ । ଏହି ଡୁମାକୁ ଦିଶାରୀ ମଧ୍ୟରାତ୍ରିରେ ଉଠାଇ ପୋତିବା ବା ପୋଡ଼ିବା ଜାଗାରେ ଲୁହାକଣ୍ଟା ମାରେ । ଏହି ଚୁନ୍‌ଗୁନି ଡୁମା ବଡ଼ ମାରାତ୍ମକ । ଆଦିବାସୀମାନେ ଏତି ଡୁମାକୁ ବେଶି ଭୟ କରନ୍ତି । ଏହା ଘରକୁ ଆସି ଧାନ ମାଣ୍ଡିଆ ଶୁଆଁକୁ ମିଶାଇ ଦିଏ । ଫଳରେ ସେସବୁ ଶସ୍ୟକୁ ଅଲଗା କରିବା କଷ୍ଟକର ହୁଏ । ହନୁଭଳିଆ ଶବଦ କରେ ।

୪୭. ଚୁନ୍‌ଟି - *ଦେ.ବି. :* ବଟୁଆ ଭଳି ଏକ ପାତ୍ର । ଧୂଆଁପତ୍ର ଗୁଣ୍ଡ ରଖିବାପାଇଁ ବେଲ ଫଳରେ ତିଆର ଏକ ପାତ୍ର । ପାଚିଲା ଛୋଟ ବେଲଫଳ ବା କାଠକୁ କୋରି ଗୋଲାକାର ଆକାର ଦେଇ, ମୁହଁରେ ଠିପି ବନ୍ଦକରି ଧୂଆଁପତ୍ର ଗୁଣ୍ଡ ରଖାଯାଏ । ଏଥିରେ କୋଟୀକାମ ମଧ୍ୟ ହୋଇଥାଏ । ଲୋକଗୀତରେ ଏହି ଶବ୍ଦର ପ୍ରୟୋଗ ଶୁଣିହୁଏ- ବ୍ୟବହାର :

ବେଡ଼ାନେ ପଶିଲି, ଧାନ ନିଈାଇଲି
ପାତୀପାଥେ ଥେବିଗଲି
ଚୁନ୍‌ଟି ହିଟାଇ, ଧୁଙ୍ଗିଆ କାଇ
ଛନେ ପୁରେ ନିହାରିଲି ।
ନିହାରି ହୋଇଲି ଛନ
ଧାନବେଡ଼ା ଥାନେ ଉତରି ଗାଲାକି
ପୁନିଆ ରାତିର ଜନ !
କି ବୋଲି ଡାକିବି ଅଜଣା ଅଚିନା
ସାଙ୍ଗି ଦେକା ତୋମ ନାମ । (ଚଇତି ପରବ ଗୀତ)

୪୮. ଚେକା ବକା - *ଦେ.ବି. :* ଏକ ଛୋଟ ଉପନଦୀର ନାମ । ମାଲକାନଗିରି ଜିଲ୍ଲାରେ ଓଡ଼ିଶା ଓ ଛତିଶଗଡ଼ ସୀମାରୂପେ ବହିଯାଉଥିବା ଏହି ନଦୀଟି ସାବେରୀର ଏକ ଉପନଦୀ । ଛତିଶଗଡ଼ରେ ପ୍ରବେଶ କରିବା ପରେ ଏହି ନଦୀରେ ଚେକ୍ କରି ବନ୍ୟା ଆସେ, ଅଙ୍କା ବଙ୍କା ହୋଇ ବହିଯାଏ ଏବଂ ଯାଉଥିବା ଲୋକଙ୍କୁ ଭସାଇଦିଏ ।

ଚେକ୍‌ର ଅର୍ଥ ଅଚାନକ ଓ ବକାର ଅର୍ଥ ଅଙ୍କାବଙ୍କା । ଆଉ ମଧ ହଲ୍‌ବି ଭାଷାରେ ଚେକ୍‌ର ଅର୍ଥ ହଠାତ୍ ଟାଙ୍ଗିଆ ବା ଖଣ୍ଡା ଚଳାଇ ହାଣିଦେବା । ବାସ୍ତବରେ ଏହି ନଦୀ ପାର ହେବାକୁ ଯାଇ ଅଚାନକ ବନ୍ୟା ମୁହଁରେ ପଡ଼ି ଅନେକ ଲୋକ ପ୍ରାଣ ହରାଇଛନ୍ତି ।

ଅନ୍ୟ ଗୋଟିଏ ପ୍ରବାଦ ଅନୁସାରେ ବହୁକାଳ ପୂର୍ବେ ଓଡ଼ିଶାର ଗୋଟିଏ ପୁଅ ମଧ ପ୍ରଦେଶର ଝିଅକୁ ବିଭା ହୋଇଥିଲା । କିନ୍ତୁ ସେ ଝିଅକୁ ଓଡ଼ିଶା ଭଲ ଲାଗୁ ନଥିଲା । ସେ ସୁଯୋଗ ପାଇବାମାତ୍ରେ ବାପ ଘରକୁ ପଳାଇ ଯାଉଥିଲା ଓ ମାସ ମାସ ଧରି ରହିଯାଉଥିଲା । ଫଳରେ ତା'ର ସ୍ୱାମୀ ଭାରି ହଇରାଣ ହୋଇଯାଉଥିଲା । ଦିନେ ଦୀର୍ଘଦିନ ପରେ ତା ସ୍ତ୍ରୀ ବାପାଘରୁ ଫେରୁଥିବାବେଳେ ଏହି ଗାଡ଼ ପାଖରେ ବା ନଦୀ ପାଖରେ ଜଗିଥିବା ତାର ସ୍ୱାମୀ ତାର ବେକକୁ ଟାଙ୍ଗିଆରେ ଚେକ୍ କରି କାଟିଦେଲା । ସେହିଦିନୁ ସେଇ ଗିରି ନଦୀର ନାମ ହେଲା ଚେକାବେକା । ପରେ ଅପଭ୍ରଂଶ ହୋଇ ଚେକାବକା । ଖରାଦିନେ ଏଥିରେ ପାଣି ନଥାଏ । ଏହି ନଦୀ ସଂପର୍କରେ ଏକ ପ୍ରବାଦ ଅଛି । ଯଥା:

ନଦୀର ନାମ ଚେକାବକା
ଗାଁର ନାମ ଚିତର କୁପା
ନାଇକର ନାଁ ଗାଇତା ମୁକା
ମାଇଜିର ନାଁ ଏରାବକା
କୁପୁଲିର ନାଁ ମୁଣ୍ଡୁରି କୁପା ।

୪୯. **ଚେଡ଼େଙ୍ଗା : ରାଣୀଗୁଡ଼ା ଓ ରାଣୀ ଧାରା** - *ଦେ.ବି. :* ମାଲକାନଗିରି ଜିଲ୍ଲା ମାତିଲି ବ୍ଲକ୍‌ର ଏକ ଗାଁର ନାମ । ପୂର୍ବ କଥିତ ଗ୍ରାମପୁଞ୍ଜ ମଧ୍ୟରେ ଆଉ ଏକ ବଡ଼ ଗାଁ ହେଉଛି ଚେଡ଼େଙ୍ଗା । ତା ପାଖରେ ଥିବା ପର୍ବତ ହେଉଛି ଚେଡ଼େଙ୍ଗା ପର୍ବତ । ପୂର୍ବରୁ ଏଠାକାର ଜଣେ ରାଜା ଥିଲେ ଡମ୍ ରାଜା । ତାଙ୍କର ଗଡ଼ ଏହି ଚେଡ଼େଙ୍ଗା ପର୍ବତ ଉପରେ ଥିଲା ସେ ରାଜା ଜୟପୁର ରାଜାଙ୍କୁ ସ୍ୱୀକାର କରୁନଥିଲେ । କୌଣସି ଖଜଣା ବା ମାନ୍ୟ ଦେଉନଥିଲେ । ତାଙ୍କ ଅଧୀନରେ ଥିଲା ପାଞ୍ଚ ଗଡ଼ା ବା ପାଞ୍ଚଟି ବଡ଼ ବଡ଼ ଗାଁ । ଏଗୁଡ଼ିକ ହେଲା କ୍ୟାଂ, ମେକା, ଦାମାପଡ଼ା, ସର୍ଗୀଗୁଡ଼ା, ବିଜାପଦର ଓ ମେଣ୍ଡକୁଲି । ଏ ସମସ୍ତ ଏବେ ମଧ ବଡ଼ ପରବ ପୂର୍ବରୁ ଚେଡ଼େଙ୍ଗାଠାରେ ହେଉଥିବା ବଡ଼ ଲାଠି ପୂଜାବେଳେ ଏକତ୍ରିତ ହୁଅନ୍ତି ।

ଏହି ପାଞ୍ଚ ପଡ଼ାର ଲୋକମାନେ ପାଳିକରି ଡମରାଜାଗଡ଼କୁ ଯାଇ ବେଠିଆ ବା କାରିଆ କାମ କରନ୍ତି । ଚେଡ଼େଙ୍ଗା ପାଖରେ ବୋହି ଯାଉଛି କୋଲାବ ନଈ । ସେତେବେଳେ ଏହା ଆଜି ଭଳି ଓସାରିଆ ନଥିଲା । ତା'ର ଗୋଟିଏ

ପଟେ ଥିଲା ଘଞ୍ଚ ବାଉଁଶ ବୁଟା । ମଝିରେ କୋଲାବ ନଦୀ ଉପରେ ଗୋଟିଏ କାଠ ପଟା ପଡ଼ିଥିଲା । ଏଇବାଟ ଦେଇ କାରିଆମାନେ ଆସନ୍ତି । ସେ ଡମ୍‌ରାଜା ଥିଲେ ଖୁବ୍ ମାୟାବୀ । ତାଙ୍କୁ କେହି ଦେଖିପାରନ୍ତି ନାହିଁ । ସେ କେଉଁଦିନ କୁକୁର ହୋଇଥାନ୍ତି ତ କେଉଁଦିନ ବିଲେଇ । ତାଙ୍କର ସାତରାଣୀ କାରିଆମାନଙ୍କୁ ବିଭିନ୍ନ କାମ ବରାଦ୍ କରନ୍ତି ।

ଦିନେ କ୍ୟାଂ କାରିଆ ଲୋକଙ୍କର ପାଳିଥିଲା । କ୍ୟାଂ କାରିଆଙ୍କ ସାଥିରେ ପାଞ୍ଚପଡ଼ାର ଲୋକମାନେ ବି ଆସିଥିଲେ । କ୍ୟାଂ କାରିଆଙ୍କର ନେତା ଥିଲେ ଜଣେ ମାଝୀ । ତାଙ୍କର ନାମ ସୋମନାଥ ମାଝୀ । ସେ ସେତେବେଳେ ନଗଦ ଛତିଶଗଡ଼ ରାଜାଙ୍କ ସଂଗେ ଗଣ୍ଡଗୋଳ କରି ଓଡ଼ିଶା ଆସିଥାଆନ୍ତି । ସେଇ ବିଦ୍ରୋହୀ ସୋମନାଥ ମାଝୀ ପାଞ୍ଚ ପଡ଼ାର ଲୋକଙ୍କୁ ଏକତ୍ରିତ କରି ତନ୍ତ୍ରବିଦ୍ୟାରେ ବଳିଷ୍ଠ ଡମ୍ ରାଜାକୁ ଶିକ୍ଷା ଦେବା ପାଇଁ ସ୍ଥିରକଲେ । ସେଦିନ ସେ ଜଣେ ରାଣୀଙ୍କୁ ଫୁସୁଲାଇ ପଚାରିଲେ, "ସବୁଦିନେ କାରିଆ କାମ କରିବାକୁ ଆସୁଛୁ । କେବେହେଲେ ରାଜାଙ୍କୁ ତ ଦେଖିଲୁ ନାହିଁ । ସେଇଠୁ ସେ ରାଣୀ ଗୋଟିଏ କୁକୁରକୁ ଦେଖାଇଦେଲେ । କହିଲେ ଏହି ହେଉଛନ୍ତି ରାଜା ।" ସୋମନାଥ ମାଝୀ ଛପର ପାଇଁ ପିରି ନେଇଗଲାବେଳେ ସେ ପିରି ଭିତରେ ଗୋଟିଏ ଖଣ୍ଡା ଲୁଚାଇ ନେଇଥିଲା । ହଠାତ୍ ସେ ଖଣ୍ଡା ବାହାର କରି କୁକୁର ରୂପୀ ରାଜାକୁ ହାଣିଦେଲେ । ସେ କୁକୁର ମୁଣ୍ଡ ପାହାଡ଼ ଉପରେ ରହିଗଲା ଓ ଗଣ୍ଡି ତଳକୁ ଗଡ଼ିପଡ଼ିଲା । ଚେଡ଼େଙ୍ଗା ପାହାଡ଼ ଉପରେ ସେହି କୁକୁର ମୁଣ୍ଡ ଓ ଡମ ରାଜାର ଗଡ଼ ପାକ୍‌ନା ପାଲଟି ଯାଇଛି । ଚେଡ଼େଙ୍ଗାର ଏହି କୁକୁର ମୁଣ୍ଡ ପାକ୍‌ନାରେ ପ୍ରତିବର୍ଷ ପୂଜା ଦିଆଯାଏ । ଏଠାରେ ଥିବା ହାତୀଶାଳା ଓ ହାତୀ ପାକ୍‌ନାରେ ମଧ ପୂଜା ଦିଆଯାଏ ।

ରାଜା ମରିବା ଦେଖି ଭୟଭୀତ ରାଣୀମାନେ ଜଣେ ପରେ ଜଣେ ପାଖରେ ଥିବା ଦୂଡ଼ମାକୁ ଡେଇଁ ପଡ଼ିଲେ । ସେହିଦିନୁ ସେ ଦୂଡମାର ନାମ ହେଲା ରାଣୀଧାରା ।

ରାଣୀଧାରା ପାଖରେ ଥିବା ଗାଁର ନାମ **ରାଣୀଗୁଡ଼ା** । ମେକା ପଞ୍ଚାୟତରେ ଥିବା ଏହି ଗାଁ ମୁଖ୍ୟତଃ ଭୂମିୟାମାନଙ୍କ ଆବାସସ୍ଥଳୀ । ଏହି ରାଣୀ ଧାରା ଏକ ଗଭୀର କୁଣ୍ଡ, ଯାହାକି ଏବେ କୋଲାବ ନଦୀର ଗର୍ଭରେ ରହିଛି ।

୫୦. ଚୋରମୁଠା - *ଦେ.ବି. :* ପାଳ ବା ନଡ଼ାର ବିଡ଼ା । ଚୈତ୍ର ପର୍ବ ପୂର୍ବରୁ ଘର ଛପର କରାଗଲେ ଗୋଟିଏ ପାଳ ମୁଠାକୁ ଘର ଖୁଣ୍ଟର ବାନ୍ଧି ଦିଆଯାଏ । ଏମିତି କଲେ ପାଳମୁଠା ଉଡେଇଯାଏ ନାହିଁ ବୋଲି ଲୋକ ବିଶ୍ୱାସ ରହିଛି । ଘର ଖୁଣ୍ଟରେ ବନ୍ଧା ଯାଇଥିବା ପାଳ ମୁଠାଟିକୁ 'ଚୋର୍ ମୁଠା' କହନ୍ତି । ଏଭଳି ଚୋରମୁଠା ବନ୍ଧା ନଗଲେ ଯେତେ ପାଳ ବା ପିରିଘର ଛାପରରେ ବ୍ୟବହାର କଲେ ମଧ୍ୟ ତାହା ନଅଣ୍ଟ ପଡ଼ିବ ବୋଲି ବିଶ୍ୱାସ ରହିଛି ।





୧. **ଛତର୍** - *ଦେ.ବି. :* ଛତ୍ର । ଗୋଲାକାର କନା ଛୁଆଣି ବଡ଼ଛତ୍ର ।

ପୂଜା ବା ପର୍ବକାଳରେ ଦେବତା ପ୍ରତୀକ ଆଗରେ କନା ତିଆରି ଗୋଲାକାର ଛତ୍ର ଶୋଭାଯାତ୍ରା ସମୟରେ ବ୍ୟବହାର କରାଯାଏ । ଦେବତାଙ୍କ ସମ୍ମାନ ଉଦ୍ଦେଶ୍ୟରେ ଛତ୍ର, ଚାମର ବାହାର କରିବାର ବିଧି । ଏହା ରାଜା ପ୍ରଦତ୍ତ ହୋଇଥାଏ । ମଣ୍ଡେଇ ପର୍ବ, କଳସୀ, ପର୍ବ, ଘଟଯାତ୍ରା ଆଦିରେ ଏହା ବ୍ୟବହାର କରାଯାଏ ।

**ଛତରଯାତରା** - *ଦେ.ବି. :* କଳାହାଣ୍ଡିର ପ୍ରସିଦ୍ଧ ଲୋକଦେବୀ ମାଣିକେଶ୍ୱରୀଙ୍କ ଦଶହରାକାଳୀନ ପ୍ରସିଦ୍ଧ ଯାତ୍ରା । ଏଥିରେ ବ୍ୟବହୃତ ଛାତ୍ର ଅନୁସାରେ ଏହାର ନାମ ଛତର ଯାତରା ।

୨. **ଛାତୋଡ଼ି** - *ଦେ.ବି. :* ପତ୍ର - ପଖିଆ । ବାଉଁଶ ପାତିଆରେ ତିଆରି ଛାଞ୍ଚ ମଧ୍ୟରେ ସିଆଳୀ ପତ୍ରର ଛାଉଣୀ ହୋଇଥାଏ । ଛତା ବଦଳରେ ଅବିଭକ୍ତ ଜିଲ୍ଲାର ପ୍ରାୟ ଅଧିକାଂଶ ଛାତୋଡ଼ି ବ୍ୟବହାର କରିଥାନ୍ତି । ସାଧାରଣତଃ ବିଲ କାମ କଲାବେଳେ ଛାତୋଡ଼ି ଭଲ କାମରେ ଲାଗେ । ବଉଲାଣି ଯାତ୍ରା ସମୟରେ ଫଟା ଛାତୋଡ଼ିକୁ ତିନିଛକିଆ ରାସ୍ତାରେ ବିସର୍ଜନ କରାଯାଏ । ଛତା ଧରିଲେ ଦୁଇହାତ କାମରେ ଲାଗେ ନାହିଁ କେବଳ କୃଷି ଶ୍ରମିକ ଆଦିବାସୀ ଛତୋଡ଼ିକୁ ଆପଣା ସଂସ୍କୃତିରେ ଅଧିକ ମର୍ଯ୍ୟାଦା ଦେଇଥାଏ । କେବଳ ମୁଣ୍ଡକୁ ଘୋଡ଼ାଉ ଥିଲେ ଏହାକୁ ତାଲରା କୁହାଯାଏ ।

୩. **ଛାତି** - *ଦେ.ବି. :* ଛତୁ ଇଂ- Mushroom । ବର୍ଷାକାଳରେ ଆଦିବାସୀମାନେ ଅନେକ ପ୍ରକାର ଛତୁ ସଂଗ୍ରହ କରି ଖାଦ୍ୟରୂପେ ବ୍ୟବହାର କରିଥାନ୍ତି । ବିଭିନ୍ନ ଛତୁ ମଧ୍ୟରେ ବଡ଼ା ଛାତି (ଏହା ଗୋଲାକାର ଓ ବାଟି ଭଳି ଦେଖାଯାଏ; ସାଧାରଣତଃ ଶାଳଗଛ ମୂଳେ ମାଟି ଉପରକୁ ବାହାରିଥାଏ), ଡେଙ୍ଗୁରି ଛାତି (ଶ୍ରାବଣ ଛତୁ), ପତର ଛାତି (ବଡ଼ ଛତା ଆକାରର ଧଳାଛତୁ, ଏହା ଗଛ ଛାଇରେ ବାହାରିଥାଏ) । ଶ୍ରାବଣ ମାସରେ ଏହି ଛତୁ ପ୍ରଚୁର ପରିମାଣରେ ମିଳିଥାଏ । ବାଉଁଶ

ଛାତି (ପଚିଯାଇଥିବା ବାଉଁଶ ବୁଦା ମୂଳରୁ ବାହାରେ), ବାସଁତା ଛାତି (ପାଳଛତୁ), ଖୁଟ୍ଛାତି (କଟାଯାଇଥିବା ଶାଳଗଛ ମୂଳରୁ ବାହାରିଥିବା ଛତୁ) ଇତ୍ୟାଦି ଜନପ୍ରିୟ । ବଡ଼ାଛତୁ ଦୁଇପ୍ରକାରର । ଯଥା : ଜାତ୍‌ବଡ଼ା ଓ ଲକ୍‌ଡ଼ିବଡ଼ା । ପ୍ରଥମ ବର୍ଷାରେ ଯେଉଁ ବଡ଼ାଛତୁ ହୁଏ, ତାହା ଆକାରରେ ବଡ଼ ହୁଏ । ତାହାକୁ ଜାତିଆ ବଡ଼ା ବା 'ଜାତ୍‌ବଡ଼ା' କୁହାଯାଏ । ବର୍ଷା କମିବା ସମୟରେ ହେଉଥିବା ଛୋଟଛୋଟ ଛତୁକୁ ଲକ୍‌ଡ଼ିବଡ଼ା ବା ବୁରିବଡ଼ା କୁହାଯାଏ । ଆଉ ପ୍ରକାରେ ଛତୁ ହେଉଛି କନ୍‌କି ଛାତି । ଏହାକୁ ଖୁଦଛତୁ ବା ଭାତଛତୁ ଓ ଦ୍ରାବିଡ଼ିଛତୁ ମଧ କୁହାଯାଏ । ଏହା ଖୁଦଭଳିଆ ଫୁଟିଥାଏ । ଏହାକୁ ରାନ୍ଧି ସୁସ୍ୱାଦୁ ବ୍ୟଞ୍ଜନ ରୂପେ ଖାଇବା ସଂଗେସଂଗେ ଏହାକୁ ସୁଖାଇ ସଂରକ୍ଷଣ ମଧ କରାଯାଏ । ଦିଆଲି ପରବ ସମୟରେ ସୁଖିଲା ଛତୁ ଓ ପନିପରିବା ରାନ୍ଧି ଗାଈଗୋରୁଙ୍କୁ ଦିଆଯାଏ ।

୪. **ଛୁଲିକି ଦୁଲି** - *ଦେ.ବି. :* ଦୁଇଦୁଇଟା, ଯୋଡ଼ିକୁ ଯୋଡ଼ି ଇଂ.- Pairs

ବ୍ୟବହାର : ବାଉଁଶ ମାରିଲ୍ଲି / କାଟିଲି ଜୁଲିକିଜୁଲି,
କୁଞ୍ଜବନେ ବୁଲିବୁଲି,
ସାଂଗ ଲୋକ ବୋଲି ଜଗାଡେଇ ହେଲି
ଅଧିକା ଯାଉଛ ଫୁଲି ।

୫. **ଛେର୍‌ଛେରା** - *ଦେ.ବି. :* ପୌଷ ପର୍ବର ଏକ ଅନୁଷ୍ଠାନ । (୧) ପୌଷ ପର୍ବଦିନ ପିଲାମାନେ ଚିତ୍ର ବିଚିତ୍ର ହୋଇ ଗୋଦିଆ ବାଡ଼ି ଧରି ଘରଘର ବୁଲି ଧାନ, ଚାଉଳ, ପଇସା, ମାଗିବା ପ୍ରଥାକୁ 'ଛେର୍‌ଛେରା' କୁହାଯାଏ ।

(୨) ଛେର୍‌ଛେରା ହେଉଛି ପୌଷ ପରବ ସମୟରେ ଘରଘର ବୁଲି ଶ୍ରଦ୍ଧାରେ ମାଗି ବୁଲୁଥିବା ବେଳେ ଉଚ୍ଚାରଣ କରୁଥିବା ଧ୍ୱନୀର ନାମ । ବାଳକମାନେ ବିଭିନ୍ନ ରଂଗରେ ନିଜକୁ ସଜାଇ ପୌଷ ପର୍ବରେ "ଛେର୍‌ଛେରା ଧାନ୍ ଦିଆ ତା କୁଟା ଘରା ଗୁଆ ତା' ବୋଲି ଗୃହକର୍ତ୍ତା ବା କର୍ତ୍ତୀ ମାନଙ୍କୁ ମାଗନ୍ତି ।

(୩) ଛେର୍‌ଛେରା ନାଟ୍ - ଏକ ପ୍ରକାର ହାସ୍ୟୋଦ୍ଦୀପକ ଲୋକନୃତ୍ୟ । ଅବିଭକ୍ତ କୋରାପୁଟ ଜିଲ୍ଲାର ଦେଶିଆ ଭାଷୀ ଅଞ୍ଚଳରେ ପୌଷମାସରେ ସବୁ ସଂପ୍ରଦାୟର ଆଦିବାସୀ ପୌଷପୂର୍ଣ୍ଣମୀ ପୂର୍ବରୁ ଶୁକ୍ଳ ପକ୍ଷରେ ନାଚକରି ଘରଘର

ବୁଲନ୍ତି । ଧାନ, ଚାଉଳ, ଜମାକରି ଭୋଜି କରନ୍ତି । ପୌଷ ତ୍ରୟୋଦଶୀଠାରୁ ପୂର୍ଣ୍ଣମୀ ଯାଏ, ମାଘ କୃଷ୍ଣପକ୍ଷ ପ୍ରତିପଦ ତିଥିରୁ ତୃତୀୟା ଯାଏ, ଏହିପରି ଛଅଦିନ, ପୁଅ, ଝିଅ, ବଡ଼ମାନେ ମୁହଁରେ ରଂଗବୋଳି ହୋଇ, ପିଲାମାନେ ତାଳପତ୍ର (କଲରା ଲଟା)ପିନ୍ଧି ଲୋକବାଦ୍ୟ ଡବା, ଟିଣ, ପଟାକାଠ, ମୃଦଙ୍ଗ, ଗିନି ଆଦିର ତାଳେତାଳେ ଗୀତ ଗାଇ ନାଚନ୍ତି । ଏହି ନାଚକୁ 'ଛେରଛେରା ନାଟ୍' କୁହାଯାଏ । ଏହି ନାଟ ସମଗ୍ର ପଶ୍ଚିମ ଓଡ଼ିଶାରେ ମଧ୍ୟ ପ୍ରଚଳିତ ।

୬. **ଛେରଛେରା ଗୀତ୍** - *ଦେ.ବି. :* ପୌଷପର୍ବରେ ଛେରଛେରା ନାଚକାଳୀ ଗୀତ । ଏହା ଏକ ପ୍ରକାର ଲୋକଗୀତ । ପିଲା ଓ ବଡ଼ମାନେ ପାରମ୍ପରିକ ଭାବେ ଏହି ଗୀତ ଗାଇଥାନ୍ତି । ଏହି ଗୀତ ସଂକ୍ଷିପ୍ତ ଓ ବ୍ୟଙ୍ଗାତ୍ମକ ହୋଇଥାଏ । ଉଦାହରଣ -

(୧) ମର ମାଇଜି ଦୁମୁଣ୍ଡା
ଛାନି ଉପରେ କୁମଣ୍ଡା
ଛେରଛେର୍ ଅଇଁ ଅଇଁ

(୨) ପାନିଆ ଦୁନିଆ ଚାଉର ମୋଟେକ୍ ଦିଆକିନା, ଦେଲେ ଦିଆ ନ ଦେଲେ ନାଦିଆ
କପାଟ ଉଗାଡ଼ା
ଅମର ସାଇକେ ଆସା କିନା
ଛେରଛେରା ଛେଅର୍ ଛେରା, ଅଇଁ, ଅଇଁ ।

(୩) ଛେରଛେରା ଦିନେ ମାରିଲି ଖୁଣ୍ଟି, ଓଲଟି ଦେଶ୍‌ରେ କାବ୍‌ରୀପେଟୀ, ଛେରଛେରା ଛେର୍ ଛେରା ।

୭. **ଛେଲା** - *ଦେ.ବି. :* ଧାନକେଣ୍ଡାର ମାଳା, ଯାହାକୁ ଦୁଆର ବନ୍ଧ ଉପରେ କଣ୍ଟାମାରି ତୋରଣ ବନ୍ଧାଯାଏ । ଗୋରୁଗାଈ ମୁଣ୍ଡରେ ଲଙ୍ଗଳରେ ବନ୍ଧାଯାଏ । ଦିଆଲି ପରବ ସମୟରେ ଛେଲା ତିଆରି କରି ଫୁଲଚନ୍ଦନ ସହ ଘର ଓ ଗୋଶାଳା ବା ଗୁହାଳ ଓ ଗାଇଗୋରୁଙ୍କୁ ପୂଜା କରିବାର ବିଧି ପ୍ରଚଳିତ ।





୧.  ଜଅଲା - *ଦେ.ବି. :* ଝୋଲା : ଝରଣା, ଇଂ- Spring.

ଡଂଗରରୁ ବହି ଆସୁଥିବା ପାଣିଧାର, ଯାହା ବର୍ଷଯାକ ଝରୁଥାଏ । ଏହି ଝରଣା ଆଦିବାସୀ ସଂସ୍କୃତି ସହ ଗଭୀର ଭାବେ ଜଡ଼ିତ । ଝୋଲା ପାଣିକୁ ଦେଖି ଝୋଲା ଧାରେଧାରେ ବିଭିନ୍ନ ଆସିବାସୀ ଗାଁ ଗଢ଼ି ଉଠିଥାଏ । ପ୍ରଭୂତ ପରିମାଣରେ ବକ୍‌ସାଇଟ୍ ଥିବା ଅଂଚଳରେ ବହୁ ସଂଖ୍ୟାର ଜଅଲା ଦେଖାଯାଏ । ଆଦିବାସୀ ଅଞ୍ଚଳର କିଛି ଗାଁ ଏହି ଝୋଲା ସହ ଯୁକ୍ତ । ଯେପରି ପିତାତଙ୍ଗ ଫଟିତଙ୍ଗ, ତଙ୍ଗ୍‌ଗୁଡ଼ା, ଝୋଲାଗୁଡ଼ା ଇତ୍ୟାଦି । ବିଭିନ୍ନ ପର୍ବପର୍ବାଣୀରେ ଝୋଲାର ପାଣି ଲୋଡ଼ା ପଡ଼ିବା ସଂଗେସଂଗେ ମଦ୍ୟ ପ୍ରସ୍ତୁତି, ବେଣ୍ଟ କାରିଆଙ୍କ ଶୀକାର ଅଭିଯାନ ଏବଂ ଉଦଲିଆ ବିଭା ହେଉଥିବା ଧାଙ୍ଗଡ଼ା ଧାଙ୍ଗଡ଼ୀ ମାନଙ୍କର ପଳାୟନ ପଥ ରୂପେ ଏହି ଝୋଲାର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ ।

୨.  ଜଗର୍‌ନା - *ଦେ.ବି. :* ଚଇତି ପରବର ତିନି ପର୍ଯ୍ୟାୟ ମଧ୍ୟରୁ ପ୍ରଥମ ପର୍ଯ୍ୟାୟ । ଚୈତ୍ର ପର୍ବ ଆରମ୍ଭ ଦିବସର ପୂର୍ବ ରାତ୍ରିରେ ଗ୍ରାମର ହୁଣ୍ଡି ଘରେ ଜାଗର ଜାଳି ଗାଁ ଯାକର ଲୋକ ପୂଜା ଆରାଧନା ପୂର୍ବକ ନାଟ ତାମସା ମଉଜ ମଜଲିସ୍ କରି ରାତି କଟାଇବାକୁ 'ଜଗର୍‌ନା' - ଉଜାଗର ବା ଜାଗର ବୋଲି କୁହାଯାଏ । ଚଇତି ପରବର ୩ ପର୍ଯ୍ୟାୟ ହେଉଚି (୧) ଜଗର୍‌ନା, ୨. ବେଣ୍ଟା ବା ବଡ଼ବେଣ୍ଟା, ୩. ଫୁଲବେଣ୍ଟ ।

୩.  ଜଗମଣ୍ଡା - *ଦେ.ବି. :* ଏକ ପାହାଡ଼ର ନାମ, ଯେଉଁଠାରେ ଯଜ୍ଞମଣ୍ଡପ ରହିଛି । ଏହି ପାହାଡ଼ଟି ରାୟଗଡ଼ା ଜିଲ୍ଲାର ଗୁଣପୁର ଉପଖଣ୍ଡର ପଦ୍ମପୁର ନିକଟରେ ରହିଛି । ଏହି ପାହାଡ଼ରେ ପ୍ରାଚୀନ ବୌଦ୍ଧ ବିହାରର କୀର୍ତ୍ତି ଓ ସ୍ମୃତି ରହିଛି । ଏଠାରେ ଅବସ୍ଥିତ ମାଣିକେଶ୍ୱର, ଧବଳେଶ୍ୱର, ନୀଳକଣ୍ଠେଶ୍ୱର, ପୋଡୁକେଶ୍ୱର ଓ ମଲ୍ଲିକେଶ୍ୱର ମନ୍ଦିରରେ ତିନିଜଣ ବିଶିଷ୍ଟ ବୌଦ୍ଧାଚାର୍ଯ୍ୟ ଚନ୍ଦ୍ରଲେଖ, ଉଦ୍ଧଖନ ଓ ଧର୍ମକୀର୍ତ୍ତି ରହିଥିବାର

ଉଲ୍ଲେଖ ରହିଛି । ନୀଳକଣ୍ଠେଶ୍ୱର ମନ୍ଦିରରେ ଥିବା ପ୍ରସ୍ତର ଫଳକରେ ଏମାନଙ୍କ ନାମ ଲିପିବଦ୍ଧ ରହିଛି । ଜଗ୍‌ମଣ୍ଡା ପର୍ବତରେ ଅଧୁନା କେତେକ ଗୁମ୍ଫା, ଜଳଭଣ୍ଡାର ଓ ଛୋଟ ବଡ଼ ମନ୍ଦିରର ଧ୍ୱଂସାବଶେଷ ରହିଥିବା ଦେଖିବାକୁ ମିଳେ ।

୪. **ଜଙ୍ଗଲ୍** - *ଦେ.ବି.* : ବନ, ଖମନ, ଜାଆର୍ ଇଂ.- Jungle, Forest, Woods.

ଦେଶିଆ ସଂସ୍କୃତିର ମୂଳଭିତ୍ତି, ମୁଖ୍ୟ ଉତ୍ସ ଏବଂ ସାମଗ୍ରିକ ଗଢ଼ଣର ପୃଷ୍ଠଭୂମି ହେଉଛି ବନ୍ ବା ଖମନ୍ । କେତେକ ଅଞ୍ଚଳରେ ଏହାକୁ 'ଜାର୍' ବୋଲି ମଧ୍ୟ କହନ୍ତି । ତେବେ 'ଜଂଗଲ୍' ଶବ୍ଦଟିକୁ ପ୍ରାୟ ପ୍ରତି ସଂପ୍ରଦାୟର ଆଦିବାସୀ ଗ୍ରହଣ କରିଯାଇଛନ୍ତି । ବୋଧହୁଏ ଗତ ଦେଢ଼ଶହ ବର୍ଷଧରି ଯେଉଁସବୁ ଜଂଗଲ ଆଇନ୍ ପ୍ରଣୀତ ହୋଇଛି, ତାର ପ୍ରଭାବରେ ଏବଂ ଜଂଗଲ ବିଭାଗର ଜମାନ୍‌ମାନଙ୍କ ଜଂଗଲ୍ କେସ୍‌ର ତାଡ଼ନାରେ ଏହି ଶବ୍ଦଟି ଦେଶିଆ ଭାଷାକୋଷକୁ ଆସିଯାଇଛି । ଫଳରେ ମୂଳବନ, ଖମନ୍ ଓ ଜାର୍ ଶବ୍ଦ ପଛକୁ ହଟିଯାଇ ଚଇତି ଗୀତର ବ୍ୟବହାର୍ଯ୍ୟ ପଦରୂପେ ରହିଯାଇଛି ।

ଅନେକ ସଂପ୍ରଦାୟ ଏବେ ମଧ୍ୟ ଜଂଗଲକୁ ଦେବୀ ରୂପେ ପୂଜା କରନ୍ତି । ଆଦିବାସୀର ଅଧିକାଂଶ ଦେବଦେବୀ ଘଞ୍ଚ ଜଂଗଲ ଭିତରେ ଥିବା ଡଂଗର ଓ ପର୍ବତ ବା ଗୁମ୍ଫା ମାନଙ୍କ ଭିତରେ ଅବସ୍ଥାନ କରନ୍ତି । ବଣ୍ଡାମାନଙ୍କର ପାଟଖଣ୍ଡା ହେଉ ବା କୋୟାମାନଙ୍କର ଭୀମା ଦେବତା ହୁଅନ୍ତୁ, ବଡ଼ପରବର ତିନିଦେବତା - ବାଲରାଜୁ, କାନମ୍‌ରାଜୁ ଓ ପୋତୁରାଜୁ ହୁଅନ୍ତୁ ବା ଦେବୀ ମୁତ୍ୟାଲୁମ୍ମା ହୁଅନ୍ତୁ, ସବୁ ମାଉଲୀ ଓ ଦେବତାମାନଙ୍କର ଆସ୍ଥାନ ହେଉଛି ଜଂଗଲ୍ ଓ ଡଙ୍ଗରରେ । ଆଦିବାସୀ ବ୍ୟବହାର କରୁଥିବା ସମସ୍ତ ଔଷଧୀ ଗଛଲଟା, ଚେରମୂଳୀ, ସଂଗ୍ରହ କରୁଥିବା ସମସ୍ତ ଜଂଗଲୀ ଖାଦ୍ୟ ପଦାର୍ଥ ଓ ବିକ୍ରିଯୋଗ୍ୟ ଦ୍ରବ୍ୟର ଉତ୍ସ ହେଉଛି ଏହି ଜଂଗଲ । ବୃକ୍ଷର ପତ୍ର, କାଠି, ବକକଲଠୁ ଆରମ୍ଭ କରି ଜୀବଜନ୍ତୁ କୀଟ ପତଙ୍ଗ ପର୍ଯ୍ୟନ୍ତ ସମସ୍ତେ ମିଶି ଗଠନ କରନ୍ତି ଏକ ସାମଗ୍ରିକ ଆଦିବାସୀ ସଂସ୍କୃତି । ଏଠାରେ ଜଣକୁ ଆଉଜଣକ ପାଖରୁ ବିଚ୍ଛିନ୍ନ କରି ହେବ ନାହିଁ । ସେଥିପାଇଁ ଆଦିବାସୀ ଜଂଗଲରୁ ବିସ୍ଥାପିତ ହେବାକୁ ଭୀଷଣ ଭୟ କରେ । ମାଛକୁ ପାଣିରୁ ହଟାଇଦେଲେ ମାଛର ଯେଉଁ ଅବସ୍ଥା ହୁଏ, ଆଦିବାସୀ ଜଂଗଲ ବିହୁନେ ସେଇଭଳି ଅବସ୍ଥାର ସମ୍ମୁଖୀନ ହୁଏ । ସେଥିପାଇଁ କେତେନା

କେତେ ଗୀତ ରଚିତ ହୋଇଯାଏ । ଗୋଟିଏ କଥାରେ କହିଲେ ଆଦିବାସୀର ନାଚଗୀତ, ପିତୃପୁରୁଷର ଡୁମ୍ବା ଓ ଦେବତା, ଦିଶାରୀର ମନ୍ତ୍ର ଓ ଗ୍ରହନକ୍ଷତ୍ର ସାଧନା, ଗୁରୁମାଈର ଦୈବୀନୃତ୍ୟ, ପିଲାଠୁ ବୂଢ଼ା ପର୍ଯ୍ୟନ୍ତ ସଭିଙ୍କର ଜୀବନ ଓ ଜୀବିକା, ପ୍ରେମ ଓ ବିରହ, ବିବାହ ଓ ବିଚ୍ଛେଦ, ଜନ୍ମ ଓ ମୃତ୍ୟୁ ସବୁକିଛିକୁ ଆବୋରି ରହିଛି ଏହି ଜଂଗଲ । ଜଂଗଲ ନଥିଲେ ଆଦିବାସୀର ବେଣ୍ଟ, ଚଇତି, ବାଲି କି ପୁଷ୍ ପରବ ହୋଇ ପାରେନି କିମ୍ୱା ଦିଶାରୀ ଗୁରୁମାଈର ରହସ୍ୟମୟ ଭୂମିକାର କିଛି ଅର୍ଥ ନାହିଁ । ସୁତରାଂ, ଜଙ୍ଗଲ ଓ ଆଦିବାସୀ ଏକ ଓ ଅବିଚ୍ଛିନ୍ନ ।

୫. ଜଙ୍ଗଲ୍ ପାନୁ - ଦେ.ବି. : ଜଙ୍ଗଲ୍ ଟିକସ । ଜଂଗଲରେ ଜମିଦାରୀ ଶାସନ ସମୟରେ ଆଦିବାସୀ ଅଞ୍ଚଳର ଲୋକମାନେ ଜଂଗଲରୁ ଘାସ, ପତ୍ର, ଫୁଲ, ଫଳ, ମଞ୍ଜି ଇତ୍ୟାଦି ସଂଗ୍ରହ କଲେ ସେମାନଙ୍କୁ ଯେମିତି ଟିକସ ବା କର ଦେବାକୁ ପଡୁଥିଲା, ସେମିତି ଜଂଗଲ ଭିତରେ ଗାଈ ଗୋରୁ ଚରାଇଲେ ବା ଘାସ କାଟିଲେ ମଧ ଲୋକଙ୍କୁ 'ଜଂଗଲ ପାନୁ' ବା କର ଦେବାକୁ ପଡୁଥିଲା । ଏହି ଟିକସ ମୁଠାଦାରମାନେ ଆଦାୟ କରୁଥିଲେ । ପରବର୍ତ୍ତୀ ସମୟରେ ଅର୍ଥାତ୍, ଦେଶ ସ୍ୱାଧୀନ ହେବାପରେ ଜଂଗଲ ବିଭାଗର ଅଧିକାରୀମାନେ ଜଂଗଲପାନୁ ବେଆଇନ ଭାବେ ଆଦାୟ କଲେ ଏବଂ ଏବେ ମଧ ଅନେକତ୍ର ଆଦାୟ କରୁଛନ୍ତି । ଏହା ବିରୋଧରେ ଅନେକ ଜାଗାରେ ଆନ୍ଦୋଳନ ହୋଇଛି ଓ ହେଉଛି ।

୬. ଜଂଗାଦେଓ - ଗଣ୍ଡି ଦେ.ବି. : ଏକ ଦେବତା ବିଶେଷ ।

ନବରଂଗପୁର ଜିଲ୍ଲା ଓ ଉପାନ୍ତ ଛତିଶଗଡ଼ ଆଦିବାସୀମାନଙ୍କର ଶ୍ରେଷ୍ଠ ଦେବତା ଜଂଗାଦେଓ ସୃଷ୍ଟିକର୍ତ୍ତା ଏବଂ କୃଷିକାର୍ଯ୍ୟର ଉଦ୍ଭାବକ । ଚୈତ୍ରମାସରେ ଏହି ଦେବତାଙ୍କର ପୂଜା କରାଯାଏ । ଇଏ କୃଷିଭିତ୍ତିକ ପର୍ବର ଦେବତା । ଏହାଙ୍କ ପଛରେ ଥିବା 'ମିଥ୍' ଶାବର ଦେବତା ଜଗନ୍ନାଥ ଓ ଜଂଗାଦେଓଙ୍କ ମଧରେ ଏକ ଆଶ୍ଚର୍ଯ୍ୟଜନକ ସଂପର୍କର ସୂଚନା ଦିଏ । ଗଣ୍ଡମାନଙ୍କ ଦ୍ୱାରା ପୂଜିତ ଦେବତା ଆର୍ଯ୍ୟ ମାନଙ୍କ ଦ୍ୱାରା ଅପହୃତ ହୋଇ ନୀଳକନ୍ଦରକୁ ଯିବାପରେ ଗଣ୍ଡମାନେ ଦେବତାଙ୍କ ଆସ୍ଥାନ ପାଖରେ ଅଧିଆ ପଡ଼ିବାରୁ ସେ ଆଦେଶ ଦେଲେ ଯେ ମୁଁ ଅର୍ଦ୍ଧେକ ମାତ୍ର ପୁରୀରେ ପୂଜା ପାଉଚି । ବାକି ଅଧକ ତୁମେ ପୂଜାକର । ସେହି ଜଂଗାଦେଓ ଦେବତାଙ୍କ ଜଙ୍ଘ ପର୍ଯ୍ୟନ୍ତ ଅର୍ଦ୍ଧନିର୍ମିତ ।

୭. ଜଟା/ଜୋଟା - *ଦେ.ବି. :* ଝଟା, ଗୋଟିଏ ପ୍ରକାରର ଶିମ୍ବ, ଯାହାର ଚୋପା ବାହାର କରି ମଂଜି ଖିଆଯାଏ । ଏହା ପାଞ୍ଚ ପ୍ରକାରର । ମୁଖ୍ୟତଃ ବାହାରୁଥିବା ମଂଜିକୁ ନେଇ ଏଇ ପ୍ରକାରଭେଦ । ଉପର ଚୋପା ଛଡ଼େଇ ସାରିଲା ପରେ ଟଟକା ଧଳା ମଂଜି ଯେକୌଣସି ତରକାରୀରେ ପକାଯାଇପାରେ ବା ସ୍ୱତନ୍ତ୍ର ଭାବେ ରନ୍ଧାଯାଇପାରେ । କେ.ବି.କେ. ଅଞ୍ଚଳର ସମସ୍ତ ଲୋକଙ୍କ ଭିତରେ ଏହା ଅତ୍ୟନ୍ତ ଜନପ୍ରିୟ ।

୮. ଜଟାଇବା - *ଦେ.କ୍ରି. :* ଠକାଇବା, ଠକିଦେବା : ଇଂ- To cheat, tbe cheated.

ବ୍ୟବହାର :

(୧) ଦୋକାନେ ଗୋନ୍‌ବା ଲୋକ୍‌ମାନ୍‌କେ ସାହୁକାର୍‌ମାନ୍ ବେଶୀ ଜଟ୍‌ବେବା ଜଟ୍‌ବାଏ ।

(୨) ବିପିଏଲ୍ ଚାଉଲ୍ ଗେନ୍‌ବାଟାନେ ଦେଶିଆ ଲୋକ୍ ଜଟି ଅଇବାଏ ।

୯. ଜଟିଆରାଓ - *ଦେ.ବି. :* ଜନୈକ ଦେବତା । ଭୈରବ ଦେବତାଙ୍କ ଦ୍ୱାରପାଳ ।

ଲୌକିକ ବିଶ୍ୱାସ ଅନୁସାରେ ଜଟିଆ ରାଓ ଭୈରବ ଦେବତାଙ୍କ ଦ୍ୱାରପାଳ ଭାବେ ଆଦିବାସୀଙ୍କ ଦ୍ୱାରା ଗୃହୀତ । ପୋଡ଼ାଗଡ଼ ମଣ୍ଡେଇରେ ଜଟିଆ ରାଓଙ୍କ ଲାଠି ବା ପ୍ରତୀକଙ୍କୁ ବେନୋରା ଗ୍ରାମରୁ ଅଣାଯାଏ । ଏହି ବିଧି ଏବେ ସୁଦ୍ଧା ପ୍ରଚଳିତ ।

୧୦. ଜଡ଼ା - *ଦେ.ବି. :* ଜଡ଼ାଗଛ । ଆଦିବାସୀ ଲୋକମାନେ ମୁଣ୍ଡ ବ୍ୟଥାରୁ ରକ୍ଷା ପାଇବାକୁ ଏହି ଗଛର ପତ୍ରରେ ଜଡ଼ାତେଲ ଦେଇ ଏଇ ପତ୍ରକୁ ଗରମ କରି ମୁଣ୍ଡରେ ଲଗାଇଲେ ମୁଣ୍ଡବ୍ୟଥା ଭଲ ହୁଏ ।

୧୧. ଜଡ଼ାତେଲ - ଜଡ଼ା ମଂଜିରୁ ଉତ୍ପନ୍ନ ତେଲ୍ । ଏହା ଆଦିବାସୀଙ୍କ ଅତି ଆବଶ୍ୟକୀୟ ତେଲ । ଏମାନେ ଜଡ଼ା ମଞ୍ଜିରୁ ତେଲ ବାହାରକରି ଦୈନିକ କେଶ ଓ ଶରୀରରେ ମାଖିଥାନ୍ତି । ଏହି ତେଲକୁ ମଧ୍ୟ ଔଷଧଭାବେ ବ୍ୟବହାର କରିଥାନ୍ତି ।

୧୨. ଜନ୍ / ଲେଂଜୁ - *ଦେ.ବି. :* ଜହ୍ନ, ଉଜ୍ଜ୍ୱଳ, ଜ୍ୟୋତ୍ସ୍ନା, ଚନ୍ଦ୍ର ଇଂ- moon, moon light, brightness of the moon light. ଜହ୍ନ ବାଦଲ୍ ଆଦିବାସୀ

ସଂସ୍କୃତି ସହିତ ଘନିଷ୍ଠ ଭାବେ ଜଡ଼ିତ । ଜହ୍ନ ଉଇଁଲେ ଧାଂଡ଼ାଧାଂଡ଼ିଙ୍କର ନାଚ ଆରମ୍ଭ ହୁଏ । ସବୁ ଜହ୍ନ ରାତି ପାଲଟିଯାଏ ନାଚଗୀତର ରାତି । ଆଦିବାସୀ ମାନେ ସୁନ୍ଦର ରୂପକୁ ଜହ୍ନ ସହିତ ତୁଳନା କରିଥାନ୍ତି । ସେମାନେ ନାରୀର ରୂପ ଯୌବନର ପ୍ରକାଶକୁ ଉଇଁ ଆସୁଥିବା ଜହ୍ନ ସହ ତୁଳନା କରିଥାନ୍ତି । କନ୍ଧ ସମାଜରେ ଜହ୍ନର ସ୍ୱତନ୍ତ୍ର ସ୍ଥାନ ରହିଛି । ଦିଶାରୀ ପୂର୍ଣ୍ଣମୀ ଜହ୍ନକୁ ଦେଖି ଯୋଗ ସ୍ଥିର କରେ । ଧାଙ୍ଗଡ଼ା ଧାଙ୍ଗିଡ଼ୀଙ୍କ ପ୍ରେମ ଗୀତରେ ଜହ୍ନର ସ୍ଥାନ ସ୍ୱତନ୍ତ୍ର । ଏହି ଜହ୍ନ ଆଦିବାସୀ ଗୀତ ଓ କବିତାରେ ଏକ ସୁନ୍ଦର ପ୍ରତୀକ ଓ ରୂପକଳ୍ପ ଭାବେ ବ୍ୟବହାର ହୋଇଥାଏ ।

(କ) ଜନ୍ ଉଦ୍‌ଲେ ଉଜିଲ୍ ଦିଶ୍‌ଚି ।<br>
(ଖ) ଆଜି ଉଦିଲାରେ କଅଁଲି ଜନ୍<br>
କାଲିକି କେଲିବା ମନ୍<br>
ଆମର୍ ଦାଣ୍ଡବାଟେ ଆରେ ଜନ୍<br>
ବଲି ଦେବି ଚନ୍ଦନ୍ । (ସାଇଲୋଡ଼ି)<br>
'ବେଡ଼ାନେ ପଶିଲି ଆସତ୍ ଦାଇଲି ପାତିପାଛେ ଖେଦିଗଲି<br>
ଚୁନ୍ ଟିହିଟାଇ ଧୁଙ୍ଗିଆ ଖାଇ ଛନେ ପୁରେ ନିହାରିଲି<br>
ନିହାରି ହୋଇଗଲି ଛନ୍ । ଧାନବେଡ଼ା ଥାନେ ଉତୁରି ଗଲାକି<br>
ପୁନିଆ ରାତିର ଜନ୍ । ପୁନିଆ ରାତିର ଜନ୍ କି ବୋଲି<br>
ଡାକିବି ଅଜଣା ଅଚିନା କହି ଦିଆ ତମର ନାମ୍ ।

ଏଠି ପୁରୁଷଟିଏ ତାର କର୍ମକ୍ଷେତ୍ରରେ ଜଣେ ଅଜଣା ଅଚିହ୍ନା ଯୁବତୀକୁ ଦେଖି କହୁଛି 'ସତେ ଯେମିତି ତା ଧାନ କିଆରି ଆଡୁ ପୂର୍ଣ୍ଣିମା ରାତିର ଜହ୍ନଟିଏ ଉଇଁ ଆସୁଛି ।' ସେ ତାକୁ ସମ୍ବୋଧନ କରି କହୁଛି, 'ହେ ପୁନେଇ ଜହ୍ନ ପରି ସୁନ୍ଦରୀ, ମୁଁ ତୁମକୁ ଜାଣିନାହିଁ କି ଚିହ୍ନିନାହିଁ । ତୁମ ନାମ ଗ୍ରାମ କହି ମୋତେ ଚିହ୍ନା ଦିଅ' ଇତ୍ୟାଦି ।

୧୩. ଜଣା / ଜନା - *ଦେ.ବି. :* ମକା, ଇଂ. - Maize. ଏହା ସାଧାରଣତଃ ଦୁଇ ପ୍ରକାରର । କୁଆ ଜନା ଓ ମକା ଜନା । କୁଆଜନା ପୁଷ୍ ମାସରେ ଅମଳ ହେଉଥିବାବେଳେ ମକାଜନା ଦଶରାମାସରେ ଅମଳହୁଏ । ଏହି ମକା ଆଦିବାସୀର ଯେପରି ପ୍ରିୟ ଖାଦ୍ୟ ଡାଲୁ ଓ ବାରିହାର ମଧ ସେହିପରି ପ୍ରିୟ । ତେଣୁ ମକା ଅମଳ ପାଇଁ ଆଦିବାସୀକୁ ଡଙ୍ଗର ଜମିରେ, ପାହାଡ଼ ଖୋଲରେ, ଝୋଲା କୂଳରେ ଜନା

ଚାଷ ଖୁବ୍ ଭଲ ହୁଏ । ଏହାକୁ କଞ୍ଚା ଅବସ୍ଥାରେ ପୋଡ଼ି ଖାଇବା ସଂଗେସଂଗେ ପାକଳ ହେଲେ ତାହାକୁ ଗୁଣ୍ଡକରି ଜାଉ ତିଆରି ହୁଏ ନଚେତ୍, ଲିଆ ବନେଇ ଖିଆଯାଏ ।

ଅନ୍ୟ ଏକ ଜନା ହେଉଛି ଖେଡ଼୍‌ଜନା । ଏହାର ଗଛ ବହୁତ ଲମ୍ବା ଓ ବଡ଼ବଡ଼ ଖେଡ଼୍ (ପେନ୍ଥା)ରେ ଧଳା ଓ ଗୋଲ ଜନା ଫଳିଥାଏ । ଏହା ମଧ ପ୍ରଚୁର ଅମଳ ହୁଏ । ଡଙ୍ଗର ଜାଗାମାନଙ୍କରେ ଧାନ ସହ ଏହାକୁ ବୁଣି ଦିଆଯାଏ । ମୁଖ୍ୟତଃ ଏଥିରେ ଲିଆ ପ୍ରସ୍ତୁତ କରି ଖିଆଯାଏ ।

୧୪. **ଜନ୍ଦ୍ରାଗୁଡ଼ା** - *ଦେ.ବି. :* ଏକ ଗ୍ରାମର ନାମ । ହଲ୍‌ବା ଭାଷାରେ ମକାକୁ କୁହାଯାଏ ଜନ୍ଦ୍ରା । କୋୟା ଓ ଦେଶିଆ ଭାଷାରେ ଏହା ଜନା ବା ଜଣା । ଏହି ପ୍ରିୟ ଶସ୍ୟ ନାମକୁ କେନ୍ଦ୍ରକରି ଟେମୁରପାଲି ପଂଚାୟତରେ ରହିଛି ଜନ୍ଦ୍ରାଗୁଡ଼ା । ଏହି ଗୋଟିଏ ହାଲ୍‌ବାଗାଁ । ତେବେ ଅନ୍ୟ ଜାତିର ଲୋକମାନେ ମଧ ଏଠାରେ ବସବାସ କଲେଣି । ଜନ୍ଦ୍ରା ଶବ୍ଦରୁ ଉଦ୍ଭବ ଆଉ ଏକ ଗାଁ ହେଉଛି ଜନ୍ଦ୍ରି । ଏହା ତେନ୍ତୁଳିଗୁଡ଼ା ପଞ୍ଚାୟତରେ ଅବସ୍ଥିତ । କିନ୍ତୁ ଜନ୍ଦିରୁ ଅପଭ୍ରଂଶ ହୋଇ ଅନ୍ୟ ଏକ ସ୍ଥାନରେ ନାମ ଯନ୍ତ୍ରୀ । ଏହା ଏକ କୋୟା ଗାଁ ।

୧୫. **ଜଳେନ୍ଦ୍ରି** - *ଦେ.ବି. :* ନିର୍ମଳୀ : ଏହା ହଳଦିଆ ତା'ର ଭଳି ଏକ ଲଟା ଜାତୀୟ ପରଜୀବୀ ଉଦ୍ଭିଦ । ଅଳସୀ ଡଙ୍ଗରରେ ଜଳେନ୍ଦ୍ରି ଶିଘ୍ର ମାଡ଼େ । ଏହି ଜଳେନ୍ଦ୍ରିକୁ ଚର୍ମରୋଗ, ମୁଣ୍ଡବୁଲା, ପ୍ଲିହା, ଯକୃତ ଇତ୍ୟାଦି ରୋଗର ଔଷଧ ଭାବେ ବ୍ୟବହାର କରାଯାଏ ।

୧୬. **ଜଲା** - *ଦେ.ବି. :* କନ୍ୟା ଝୋଲା ବା କନ୍ୟାସୁନା ଇଂ.- Bride price.

ଝିଅପାଇଁ ଦାବି କରାଯାଉଥିବା ଅର୍ଥ ଓ ବିଭିନ୍ନ ପଦାର୍ଥର ବୋଝ । ଏହି ଝୋଲା ଚାରି ପର୍ଯ୍ୟାୟର । ପୁଅ ଓ ଝିଅ ପରସ୍ପରକୁ ବିଭା ହେବାପାଇଁ ସମ୍ମତି ଦେଲାପରେ ବରପକ୍ଷ ଲୋକ ପ୍ରଥମେ ଝିଅ ଘରକୁ ଯାଇଥାନ୍ତି । ସାଂଗରେ କାଚେକ୍ ମଦ ଆଣିଥାନ୍ତି । ଏହାକୁ କୁହାଯାଏ 'ବାଟ୍ ଦେକାନି' । ବରପକ୍ଷ ନିଜର ବନ୍ଧୁବାନ୍ଧବ, ଗାଁର ନାୟକ ଏବଂ ବଡ଼ ଲୋକମାନଙ୍କୁ ବା ମଧସ୍ଥିଙ୍କୁ (ରାଇବାଡ଼ିଆ) ଧରି ଆସିଥାନ୍ତି । ପ୍ରଥମେ କେବଳ ଝିଅ ଦେଖିଥାନ୍ତି । ତା'ର ମନ ଏବଂ ତା ବାପାମାଆଙ୍କ ମନ ଅଛି କି ନାହିଁ ବୁଝନ୍ତି । ଦ୍ୱିତୀୟ ପର୍ଯ୍ୟାୟରେ 'ଦିନ୍ ଦାରାନି' । ସେଥିରେ ମଧ ସାଂଗରେ ଦୁଇ/

ତିନି କାଚ୍ ମଦ ଆଣିଥାନ୍ତି । ଝିଅ ଗାଁର ନାୟକ ଓ ବଡ଼ ସାନଙ୍କୁ ଡାକି କଥାବାର୍ତ୍ତା କରନ୍ତି । ଫଲ୍‌ନା ଦିନେ, ଛିଡ଼ା ପାଇଁ ଆସିବୁ ବୋଲି କହନ୍ତି । ଏହି କଥାବାର୍ତ୍ତାକୁ 'ଦିନ୍ ଦାରାନି' ବୋଲି କୁହାଯାଏ । ଏହି ଦିନ ଝିଅ ପକ୍ଷକୁ କେତେ ଟଙ୍କା, ଚାଉଳ, ଛେଳି ମଦ ଓ ଲୁଗା ଦେବାକୁ ପଡ଼ିବ, ସେସବୁ ବିଷୟ ନିଷ୍ପତ୍ତି ହୁଏ ।

ତୃତୀୟ ପର୍ଯ୍ୟାୟରେ 'ଛିଡ଼ାପଡ଼ା' । ଏହିଦିନ ରାଇବାଡ଼ିଆ ଓ ଗାଁ ନାୟକ ସହ ବରପକ୍ଷ ଲୋକ ଆସି ଟଙ୍କା ଓ ଜିନିଷପତ୍ର ଝିଅ ଘରେ ଦିଅନ୍ତି । ବର୍ତ୍ତମାନ ପ୍ରଚଳିତ ନିୟମ ଅନୁସାରେ ଏକ ହଜାର ଟଙ୍କା ପୁଟେକ୍ ବା ଦୁଇପୁଟି ଚାଉଳ, ଛେଳି, ଗାଁ ଲୋକଙ୍କୁ ଡାବାଏ ମଦ, ମାଆପାଇଁ ଲୁଗା, ମାମୁ ପାଇଁ ଖଦୀ ବା କମ୍ବଳ ଓ କାଚେକ ମଦ, ଘର କୁଟୁମ୍ବକୁ କାଚେକ୍ ମଦ, ନାୟକ ପାଇଁ କାଚେକ୍ ମଦ ଝୋଲା ଦେଇ ଜଲା ଖାଇବା ଅର୍ଥାତ୍ ଝିଅ ନେବାର ଦିନଧାର୍ଯ୍ୟ କରନ୍ତି । ଏହା ହେଉଛି ପ୍ରକୃତରେ ବିବାହ ତିଥି ଧାର୍ଯ୍ୟ । ସାଧାରଣତଃ ଅଲ୍‌ପଡ଼ା ଦିନେ ଅର୍ଥାତ୍ ପୂର୍ଣ୍ଣିମା ସରିବା ସକାଳେ ଝିଅ ନେବା ପାଇଁ ଦିନ ଧାର୍ଯ୍ୟ ହୁଏ । ଏହି ଛିଡ଼ା ପଡ଼ା ଦିନ ହିଁ ସବୁ ଝୋଲା / ଜଲାଟଙ୍କା ଓ ପଦାର୍ଥ ଦେଇ ଦିଆଯାଏ ।

ଚତୁର୍ଥ ପର୍ଯ୍ୟାୟରେ ଜଲା ଖାଇବା ଅର୍ଥାତ୍ ବିଭାଭୋଜି । ସେଦିନ ବରପକ୍ଷରେ ଗ୍ରାମବାସୀ ଅନେକ ପୁଅ ଝିଅ ଓ ବନ୍ଧୁବାନ୍ଧବ କନ୍ୟାର ଗାଁକୁ ଆସନ୍ତି । କନ୍ୟାପକ୍ଷର ଧାଙ୍ଗଡ଼ା ଧାଙ୍ଗଡ଼ି ଏବଂ ବନ୍ଧୁବାନ୍ଧବ ଭୋଜିରେ ଯୋଗ ଦିଅନ୍ତି । ତା'ପରେ କନ୍ୟା ପକ୍ଷର ଧାଙ୍ଗଡ଼ା ଓ ଧାଙ୍ଗଡ଼ୀମାନେ ଝିଅକୁ ନେଇ ବର ଗାଁରେ ପହଞ୍ଚାଇ ଦିଅନ୍ତି । ବର ଗାଁରେ ପହଞ୍ଚିଲାବେଳେ ଧାଙ୍ଗଡ଼ା ଓ ଧାଙ୍ଗଡ଼ୀର ସାଂଗମାନଙ୍କୁ ଗାଁ ମୁଣ୍ଡରେ ଦୁଲିବାତ୍ ଓ ଦୁଲିସୁର ଖୁଆଇ ଦିଆଯାଏ । ଏହିପରି ଧାଙ୍ଗଡ଼ାର ଘରେ ପହଞ୍ଚିବା ପରେ ଦିଶାରୀ ଆସି ପ୍ରକୃତ ବିବାହ କାର୍ଯ୍ୟ ଆରମ୍ଭ କରେ । ଏହିଚାରି ପର୍ଯ୍ୟାୟ ସରିଲେ ଜଲାପର୍ବ ଶେଷ ହୁଏ ।

୧୭. **ଜଲାପୁଟ : ଝୋଲା / ଜୋଲା / ଜଲା (ଝରଣା) ପୁଟ, (ଗାଁ) -** *ଦେ.ବି. :* କୋରାପୁଟ ଜିଲ୍ଲାର ଲମତାପୁଟ ବ୍ଲକ୍‌ରେ ଏହି ଗ୍ରାମ ଅବସ୍ଥିତ । ଝରଣା କୂଳରେ ଗଢ଼ି ଉଠିଥିବା ଗ୍ରାମ । ମାଛକୁଣ୍ଡ ନଦୀବନ୍ଧ ଯୋଜନା ସମାପ୍ତ ହେବା ପରେ ଏହି ଜଲାପୁଟ ଗ୍ରାମ ସମସ୍ତ ବୁଡ଼ି ଅଞ୍ଚଳ ଗ୍ରାମମାନଙ୍କର କେନ୍ଦ୍ରସ୍ଥଳରେ ପରିଣତ ହୋଇଛି ।

୧୮. **ଜୟପୁର** - *ଦେ.ବି. :* ଜିତିଥିବା ପୁର ବା ଯୁଦ୍ଧରେ ଜୟ ହୋଇ ପ୍ରାପ୍ତ ହୋଇଥିବାପୁର । ଜୈନମାନଙ୍କର ପୁର ବା ଜୈନପୁର ବୋଲି ମଧ୍ୟ ଅଭିହିତ । ବର୍ତ୍ତମାନ କୋରାପୁଟ ଜିଲ୍ଲାର ମୁଖ୍ୟ ବ୍ୟବସାୟିକ ସହର ।

ଆଦ୍ୟରେ ଏହାର ନାମ ଥିଲା ଜୟନଗର ବା ଜୈନନଗର । ଜୈନ ରାଜା ସୋମେଶ୍ୱର ଦେବ ଏକଦା ଏ ଅଞ୍ଚଳକୁ ଶାସନ କରୁଥିବା ଶାଳବଂଶୀ ବା ଶୈଳ ଉଦ୍ଭବ ବଂଶୀ ରାଜାମାନଙ୍କୁ ପରାସ୍ତ କରି ଏ ଅଞ୍ଚଳକୁ ଜୟକରି ଏଠାରେ ନଗର ବସାଇ ଏହାର ନାମ ରଖିଥିଲେ ଜୟନଗର । ଏହା ସ୍ଥଳବିଶେଷରେ ଜୈନ ନଗର ନାମରେ ପରିଚିତ ହେଉଥିଲା । ଏଠାରେ ଜୈନ ସନ୍ନ୍ୟାସୀମାନେ ମଧ୍ୟ ବସବାସ କରୁଥିଲେ । ସପ୍ତମ ଅଷ୍ଟମ ଶତାବ୍ଦୀରେ ଏହା ଜୈନ ଧର୍ମର କେନ୍ଦ୍ରସ୍ଥଳୀ ଥିଲା । ଏ ଅଞ୍ଚଳର ବିଭିନ୍ନ ପାହାଡ଼ ପର୍ବତରେ ଏବେ ମଧ୍ୟ ଅକର୍ମା ଶିଳା ଭାବରେ ପଡ଼ି ରହିଥିବା ବହୁ ଜୈନ ମୂର୍ତ୍ତି ଓ ବିଭିନ୍ନ ଦେବଦେବୀ ମନ୍ଦିରରେ ପୂଜା ପାଉଥିବା ବହୁ ଦେବଦେବୀ ମୂର୍ତ୍ତିମାନଙ୍କରେ ଜୈନ ସ୍ମୃତିର ସ୍ୱାକ୍ଷର ଦେଖିବାକୁ ମିଳିଥାଏ ।

୧୯. **ଜହୁପାହାଡ଼** - *ଦେ.ବି. :* ଏକ ପାହାଡ଼ର ନାମ ବିଶେଷ । ମାଲକାନଗିରି ଜିଲ୍ଲାର ମାତିଲି ବ୍ଲକ୍‌ରେ ଟିଣ ପଥର ଅଧ୍ୟୁଷିତ ପାହାଡ଼ ।

ଏହା ବାସ୍ତବରେ ଜଉ ପାହାଡ଼ରୁ ସମୟକ୍ରମେ ଜହୁ ପାହାଡ଼ ନାମରେ ପରିଚିତ ହୋଇଛି । କୁହାଯାଏ ଅତୀତରେ ଏଠାରେ କୌରବମାନଙ୍କ ଦ୍ୱାରା ଜଉରେ ଗୃହ ନିର୍ମାଣ କରି ପାଣ୍ଡବମାନଙ୍କୁ ରହିବାର ସୁଯୋଗ ଦିଆଯାଇ ଉକ୍ତ ଗୃହରେ ଅଗ୍ନି ସଂଯୋଗ କରାଯାଇଥିଲା । ମାତ୍ର ପାଣ୍ଡବମାନେ ଉକ୍ତ ଗୃହରେ ରହି ନଥିବାରୁ ପାଣ୍ଡବଙ୍କ ପରିବର୍ତ୍ତେ ଗୋଟିଏ ଗରିବ ବ୍ରାହ୍ମଣର ପରିବାର ପୋଡ଼ିହୋଇ ମରିଥିଲେ । ଏହା ମହାଭାରତ ଯୁଗର ସେହି ଜଉ ପାହାଡ଼ ଯେଉଁଠି ପାଣ୍ଡବମାନେ କିଛିକାଳ ଅଜ୍ଞାତବାସରେ କଟାଇଥିଲେ ।

୨୦. **ଜାକ୍‌ରିପେନୁ** - *ଦେ.ବି. :* ଧରଣୀ ଦେବତା । ଇଂ.- The earth goddess. ଧରତି ପେନୁର ଅନ୍ୟନାମ । କନ୍ଧମାନଙ୍କର ପୂଜାସ୍ଥଳୀ । ଗ୍ରାମର ସମସ୍ତ ପୂଜାପର୍ବରେ ଏଠାରେ ପୂଜା କରାଯାଏ । କନ୍ଧ କର୍ମକାଣ୍ଡରେ ବରଷକେ ଚାରିଥର ତା'ର ବଡ଼ ପୂଜା । ଗଣ୍ଡ (ମାର୍ଗଶିର) ମାସରେ, ବୁଣାବୁଣି ଆଗରୁ ମାଘ ମାସରେ ନୂଆଖିଆ ବେଳେ ଥରେ, ଚୈତ୍ରରେ

ଆମ୍ବ ଖାଇବା ପୂର୍ବରୁ ଶିଆଳୀ ଫଳ ଖାଇବା ପୂର୍ବରୁ ଥରେ ଏହିପରି ଚାରିଥର ଏଠାରେ ପୂଜା ଦିଆଯାଏ ।

୨୧. ଜାଗାଧରିଆଣି - *ଦେ.ବି.* : ପେଙ୍ଗୁ ପରଜାଙ୍କ ଧରତୀପେନୁ । ପେଙ୍ଗୁ ପରଜାଙ୍କ ପୃଥିବୀ ମାତା (ବସୁମତୀ)ଙ୍କୁ ସମ୍ବୋଧନ କରୁଥିବା ଏକାର୍ଥବୋଧକ ଶବ୍ଦ, କୌଣସି ସ୍ଥାନକୁ ଧରି ରଖୁଥିବା ମାତା (ମାଟି ମାଆ) ।

୨୨. ଜାଂଜିଙ୍ଗା - *ଦେ.ବି.* : ଏକ ପ୍ରକାରର କାଠିବାଦ୍ୟ । ରାମତାଳି ପରି ଏକ ବାଦ୍ୟଯନ୍ତ୍ର । ଡଙ୍ଗରିଆ କନ୍ଧମାନେ ୮ସେ.ମି. ଦୈର୍ଘ୍ୟର କାଠ ଆଣି କାଠ ଦୁଇଟିର ଦୁଇପଟକୁ କମ୍ ଓସାରିଆ କରିଥାନ୍ତି । ପ୍ରତ୍ୟେକ କାଠରେ ତିନୋଟି କଣାକରି ଉପରେ ଓ ତଳକଣାର ଦୁଇଟି କିମ୍ବା ତିନୋଟି ଟିଣ ପାତକୁ

ବାନ୍ଧିଥାନ୍ତି । ମଝି କଣାରେ ବାମ ହାତରେ ଆଙ୍ଗୁଠି ସାହାଯ୍ୟରେ ବଜାଇଥାନ୍ତି । ଏହା କେବଳ ଧାଙ୍ଗଡ଼ାମାନେ ବଜାଇଥାନ୍ତି । ଧାଙ୍ଗଡ଼ାବସାରେ ଗୀତ ବୋଲିବା ବେଳେ ଏହା ବାଦନ କରାଯାଇଥାଏ ।

୨୩. ଜାଟି - *ଦେ.ବି.* : ଜଞ୍ଜାଳ, ଗଣ୍ଡଗୋଳ, ହଇରାଣ; *ଦେ.କ୍ରି.* : ହରକତ ହେବା । ଇଂ- Turbalence, Trouble, Verb: To be trowbled. ଭାଷାରେ ବ୍ୟବହାର : ହାୟ ମଦୁଆମନ୍ ଜବର ଜାଟି କର୍‌ବାର ଆଚତ୍ ନା (ସେହି ମଦୁଆମାନେ ବେଶୀ ହଇରାଣ ହରକତ କରୁଅଛନ୍ତି ।)

(୨) ଜାଟି - (ଝାଟି) *ଦେ.ବି.* : ବାଡ଼ ପାଇଁ କାଠକାଟି ସରୁଡାଳ ଛନ୍ଦାଯାଏ । ଏହି ସରୁ ସରୁ ଲମ୍ବାଡାଳକୁ ଜାଟି (ଝାଟି) କୁହାଯାଏ । ଇଂ- Small Branches.

(୩) ଜାଟି - *ଦେ.ବି.* : ଅଗ୍ରୀମ, ବଇଣା ଦେବା । ଇଂ- Advance, Verb: To take advance । ଦୁଇଟଙ୍କା ଜାଟି ଧାରି ରନା, ପାଛେ ବାକି ଡାବୁ ନେବୁ (ଦୁଇଟଙ୍କା ଆଗତୁରା ମଜୁରୀ ଅଗ୍ରୀମ ଭାବରେ ନେଇଥା, ପରେ ବଳକା ପଇସା ନେବୁ ।)

(୪) ଜାଟି - ଗାଦବା : କ୍ରି : ଡୁମା ନାମରେ ଗାଦବା ଆଦିବାସୀ ଗୋଷ୍ଠୀର ବଳି ଦେବା କ୍ରିୟା : ଇଂ- Sacrifice ଗାଦବା ଆଦିବାସୀ ଗୋଷ୍ଠୀରେ କୌଣସି

ଗର୍ଭବତୀ ମହିଳା ମୃତ୍ୟୁବରଣ କଲେ, ତା ଶବକୁ ପୋତି ଦିଆଯାଏ । ତା'ପରେ ଗୋଟିଏ ମୂଷା ଧରି ନଈ ବା ଝରଣା ପାଖରେ ଡୁମ୍ବା (ଡୁମ୍ବା, ମୃତ ବ୍ୟକ୍ତିର ପ୍ରେତାତ୍ମା) ନାମରେ ବଳି ଦିଆଯାଏ । ଏହାକୁ 'ଜାଟି' କୁହାଯାଏ ।

୨୪. ଜାନୀ / ଇଞ୍ଜାଜାନୀ - *ଦେ.ବି. :* ପୁରୋହିତ ପୂଜାରି । ଇଂ- Prist ଗ୍ରାମର ସମସ୍ତ ପୂଜା ପର୍ବପର୍ବାଣୀର ସମସ୍ତ ଦାୟିତ୍ୱ ଏହି ଜାନୀ ଉପରେ ନ୍ୟସ୍ତ ଥାଏ । ତା ଦାଣରେ ଛା ମୁଣ୍ଡିଆ ପକାଇ ପୂଜା ପାର୍ବଣ କରାଯାଏ । ଏଥି ସକାଶେ ପାରିଶ୍ରମିକ ବାବଦକୁ ଗ୍ରାମ ଲୋକଙ୍କ ଠାରୁ ସେ କିଛି ଜମି ପ୍ରାପ୍ତ ହୋଇଥାନ୍ତି ।

ଏହି ଜାନୀ ମାନେ କନ୍ଧ ଆଦିବାସୀ ଗୋଷ୍ଠୀର ଗୋଟିଏ ବିଶେଷ ସଂଜ୍ଞାଧାରୀ ଗୋଷ୍ଠୀ ବା ଜାତି, ଯେଉଁମାନେ କନ୍ଧ ସମାଜର ପୂଜା କାର୍ଯ୍ୟ କରିଥାନ୍ତି । ବାସ୍ତବରେ ଏମାନେ ହେଉଛନ୍ତି ପୂଜାରୀ । ସେମାନଙ୍କୁ ଜାନୀ ଭାବରେ ଚିହ୍ନିତ କରାଯାଏ । ପେଙ୍ଗୁ ପରଜା ମାନଙ୍କର ପୂଜାରୀଙ୍କୁ ମଧ୍ୟ ଜାନୀ କୁହାଯାଏ । ଇଂଚା ଜାନୀ ହେଉଛି ଜାନୀଙ୍କର ସହାୟକ ପୂଜାରୀ ।

୨୫. ଜାପା - *ଦେ.ବି. :* ଚାଙ୍ଗୁଡ଼ି । ଏହା ବାଉଁଶ ତିଆରି ଏକ ଛୋଟ ଡାଲା । ଇଂ. - Flower Basket

ଭାଷାରେ ବ୍ୟବହାର :

(୧) କୁସୁମ ଧରା ଜାପାରେ (ଫୁଲଭର୍ତ୍ତି ଚାଙ୍ଗୁଡ଼ି) ।

(୨) ଜାପାତାନେ ଫୁଲ ଘୁରେଇ କନ ଆନା ।

୨୬. ଜାମ୍ - *ଦେ.ବି. :* ଏକ ବୃକ୍ଷ ଓ ସେହି ବୃକ୍ଷରଫଳ । ପିଜୁଳି । ଏହା ଆଦିବାସୀ ଲୋକଙ୍କର ଏକ ପ୍ରିୟ ଫଳ । ସେମାନେ ଜାମ୍ ଗଛର କଢ଼କୁ ପିଲାମାନଙ୍କୁ ଛେରା ଝାଡ଼ା ପାଇଁ ବାଟି ଔଷଧ ରୂପେ ପିଆନ୍ତି । ଜାମ୍ ଫଳକୁ ବଣରୁ ସଂଗ୍ରହ କରି ବା ବାଡ଼ିରେ ଲଗାଇଥିବା ଜାମ ଗଛର ଫଳକୁ ସଂଗ୍ରହ କରି ବଜାରରେ ବିକ୍ରି କରି ଅର୍ଥ ରୋଜଗାର କରିଥାନ୍ତି ଓ ନିଜ ଘରେ ଖାଦ୍ୟରୂପେ ବ୍ୟବହାର କରିଥାନ୍ତି ।

୨୭. ଜିଗିଡ଼ିଆ - *ଦେ.ବି. :* ସଲପ ଗଛ ଚଢ଼ିବା ଲୋକ । ସେହି ଲୋକ ମଧ୍ୟ ଗଛରୁ ସଲପ ଓହ୍ଲାଇଥାଏ । ସଲପ୍ ଗଛରେ ବାହାରିଥିବା କେର୍ ବା ପିଲ୍‌କୁ ସମୟ

ଦେଖି ଯେଉଁ ଲୋକ କାଟିଥାଏ, ତାକୁ 'ଜିଗିଡ଼ିଆ' କୁହାଯାଏ । ଗଣ୍ଠିଯୁକ୍ତ ବାଉଁଶ ବା ଶିରା ସାହାଯ୍ୟରେ ଜିଗିଡ଼ିଆ ଏହି ସଲପ୍ ଗଛକୁ ଚଢ଼ିଥାଏ । କିନ୍ତୁ ସଲପ୍ ଗଛର ପ୍ରଥମ ରସ ହେବା ପରେ ଓ ପ୍ରଥମ ସଲପ୍ ହାଣ୍ଡି ଓହ୍ଲାଇବା ବେଳେ ଦିଶାରୀ ଆସି କୁକୁଡ଼ା ବା ହଂସ ଟିପିକରି (ବଳିଦେବା) ବୀରୁ କରିଥାଏ । ଜିଗିଡ଼ିଆ ବୀରୁ କରେ ନାହିଁ । (ବୀରୁ : ପୂଜା) ଜିଗିଡ଼ିଆ ଏଥି ନିମିତ୍ତ କିଛି ପାରିଶ୍ରମିକ ସଲପ କିମ୍ବା ଅର୍ଥ ଆକାରରେ ନେଇଥାଏ ।

୨୮. ଜିରାମ୍ ନଦୀ / ବାରୁନଦୀ - *ଦେ.ବି. :* ଏକ ନଦୀର ନାମ । ତଙ୍ଗ ପାଲି ଦେଇ ବୋହି ଆସୁଥିବା ଛୋଟ ଗିରିନଦୀ ଛତିଶଗଡ଼ ଭିତରେ ଚେକାବକା ସାଂଗରେ ଗୋଟିଏ ଜାଗାରେ ଶାବେରୀ ନଦୀ ସହ ମିଶିଛି । ହଲ୍‌ବୀ ଭାଷାରେ ବାରୁର ଅର୍ଥ ବାଲି । ଏହି ନଦୀ ବର୍ଷଯାକ ପ୍ରାୟ ବାଲୁକାମୟ ଥାଏ । ବର୍ଷାଦିନେ ପ୍ରବଳ ବେଗରେ ବହି ଚାଲେ । ଏହାର ଉପରମୁଣ୍ଡର ନାମ ହେଉଛି ଜିରାମ୍ । ଜିରାମ୍ ଏକପ୍ରକାର ଖଟା ଶାଗ । ଏହା କୂଳରେ ପ୍ରଚୁର ଖଟା ଶାଗ ହୋଇଥିବାରୁ ସେଠାରେ ଏହାକୁ 'ଜିରାମ୍ ନଦୀ' କୁହନ୍ତି ।

୨୯. ଜୁଆକ୍ - *ଦେ.କ୍ରି. :* ଶୁଭ ମୁହୂର୍ତ୍ତ : ଇଂ- Anspecious moment । ଦିଶାରୀ ଯୋଗପାଗ ଗ୍ରହ, ନକ୍ଷତ୍ର, ରାଶି ଦେଖି ଶୁଭ ଘଡ଼ି ବାହାର କରିବାର କ୍ରିୟାକୁ ବଣ୍ଡାମାନେ 'ଜୁଆକ୍' ବୋଲି କହିଥାନ୍ତି । (ସମ୍ବନ୍ଧ : ଅନ୍ୟ ଆଦିବାସୀ ସଂପ୍ରଦାୟର ଯୋଗ୍ ବା ଲଗିନ୍ (ଲଗ୍ନ) ।)

୩୦. ଜୁଗୁତାଙ୍ଗିୟନ୍ / ଜୁଗତ୍‌ମାନ୍ - ଦେଶଜ, ବିଶେଷଣ କନ୍ୟାର ରଜୋବତୀ ହେବାକାଳ, ବର୍ତ୍ତମାନ, ଯୁଗତ୍‌ମାନ, ଇଂ.- Puberty

ପ୍ରଥମ ରଜ ଦର୍ଶନ କାଳରେ ଆଦିବାସୀ ଝିଅଟିକୁ ଗାଁର ବୟସ୍କା ସ୍ତ୍ରୀ ଲୋକମାନେ ଗାଁ ପାଖ ନଦୀକୁ ନିଅନ୍ତି । ସେଠାରେ ଝିଅଟି ମୁଣ୍ଡରୁ ପାଦଯାଏ ସଂପୂର୍ଣ୍ଣ ସ୍ନାନ କରି ଘରକୁ ଫେରେ । ପ୍ରଥମ ରଜ ଦର୍ଶନର ଆଠରୁ ଦଶ ଦିନ ଯାଏ ଅଶୁଚ କାଳ ବୋଲି ମନେ କରାଯାଏ । ତାକୁ ଘର ଭିତରକୁ ଯିବା ନିଷେଧ କରାଯାଏ । ସେ ଘରର ପିଣ୍ଡାରେ ବା କଣିକିଆ ଘରେ ରୁହେ । ଏହି ସମୟରେ ଗାଁର ଜ୍ଞାତିକୁଟୁମ୍ବ ଅନ୍ୟ ଗାଁର ବନ୍ଧୁବାନ୍ଧବ ଉପହାର ସୁସ୍ୱାଦୁ ଖାଦ୍ୟ, ମଦ ନେଇ ଝିଅ ଘରକୁ ଆସନ୍ତି । ସେଠି

ଝିଅକୁ ସମସ୍ତେ ଆଶୀର୍ବାଦ ଦିଅନ୍ତି । ଝିଅ ପ୍ରଥମ ଦୁଇଦିନ ପିଣ୍ଡାରେ ରହି ତୃତୀୟ ଦିନ ଲୁଗାପଟା ସିଝାଇ ସାରି ଗାଧୋଇପାଧୋଇ ଘର ଭିତରେ ପ୍ରବେଶ କରେ । ଗାଁର ତଥା ନିମନ୍ତ୍ରିତ ଜ୍ଞାତି କୁଟୁମ୍ବଙ୍କୁ ଭୋଜିଦେଇ ଆପ୍ୟାୟିତ କରାଯାଏ ।

୩୧. **ଜୁଡୁଙ୍ଗ୍** - *ଦେ.ବି. :* ଝୁଡ଼ଙ୍ଗ - ଏହା ଏକ ବିନ୍‌ସ ଜାତୀୟ ପରିବା ଫସଲ । ଆଦିବାସୀ ଅଞ୍ଚଳରେ ପାଞ୍ଚ ପ୍ରକାରର ଝୁଡ଼ଙ୍ଗ ଚାଷ କରାଯାଏ । ( ୧ ) ସାଧାରଣ ଝୁଡ଼ଙ୍ଗ୍ ଏହା ପ୍ରାୟ ୯ ଇଞ୍ଚରୁ ୧ଫୁଟ୍ ପର୍ଯ୍ୟନ୍ତ ଲମ୍ବା ହୋଇଥାଏ । ( ୨ ) ଧଳା ଝୁଡୁଙ୍ଗ - ଏହା ତିନିଇଞ୍ଚରୁ ପାଞ୍ଚ/ଛ'ଇଞ୍ଚ ଲମ୍ବା ହୋଇଥାଏ । ପାକଳ ହୋଇଥିଲେ ଝଟା ଭଳି ଚୋପା ଛଡ଼ାଇ ଏହାକୁ ଖିଆଯାଏ । (୩) ସାନଝୁଡୁଙ୍ଗ - ଏହା ବେଡ଼ାରେ ହୁଏ ଓ ମନ୍ଦାରେ ଫଳେ । ଏହା କଞ୍ଚାଥିଲାବେଳେ ତରକାରୀ ହୁଏ ଓ ପାକଳ ହେଲେ ମଂଛି ବାହାର କରି ତରକାରି କରାଯାଏ । (୪) ଗୋଦରା ଝୁଡୁଙ୍ଗ - ଏହା ବହୁତ ଲମ୍ବା ଏବଂ ନରମ । (୫) ବାନାସରୁ ଝୁଡୁଙ୍ଗ - ଏହା ଦେଖିବାକୁ ସବୁଜ ରଂଗର ଓ ୧ଫୁଟରୁ ଦେଢ଼ଫୁଟ ଲମ୍ବା ହୋଇଥାଏ । ଏହାର ଲଟା ମାଡ଼ିବା ପାଇଁ ମଞ୍ଚା ତିଆରି କରିବାକୁ ପଡ଼େ ।

୩୨. **ଜୁଜ୍ / ଜୁଦ୍** - *ଦେ.ବି. :* ଯୁଦ୍ଧ, ଆନ୍ଦୋଳନ, ଲଢ଼େଇ, ବିପ୍ଳବ । ପ୍ରତିଶବ୍ଦ ଫିତୁରି, ବୁମ୍ବୁ : ଇଂ. - Struggle, Movement, Revolt, Revolution ଯଥା : ( ୧ ) ତାମାଦୋରା ବ୍ରିଟିଶ ସରକାର ସଂଗେ ଜବର୍ ଯୁଦ୍ଧ କଲା । ସେ ଜୁଜ୍ ସବୁ ଲୋକର ମନେ ଆଚେ । ଆଲୁରି ସୀତାରାମ ରାଜୁର୍ ଫିତୁରି ତା'ର ଟାନୁ ଅଦିକ୍ । ( ୨ ) କୁଇଦିନା ବୁମ୍ବୁ ଗାଡ଼ି (କୁଇ ଅଞ୍ଚଳର ଆନ୍ଦୋଳନର ଗୀତ) (ରାୟଗଡ଼ା ଅଞ୍ଚଳର ଲୋକକବି ଦାସୁରାମ ମଲିକଙ୍କ ଗୋଟିଏ ଗୀତ ବହିର ନାମ)

୩୩. **ଜୁନୁଙ୍ଗ୍ ସଙ୍ଗ୍** - *ଦେ.ବି. :* ସିଆଡ଼ି ଦଉଡ଼ିରେ ପଟା ବାନ୍ଧି ଓହଳାଇଥିବା ଭାଡ଼ି, ଇଂ. - Rake, ଏଥିରେ ବଣ୍ଡା ସ୍ତ୍ରୀମାନେ ଶୁଆଁ, କୋଦ, ଚାଉଳ, ଶୁଖୁଆ ଆଦି ହାଣ୍ଡିରେ ପୁରାଇ ରଖନ୍ତି । ରୋଷେଇଘରର ଏହି ଜୁନୁଙ୍ଗ୍ ସଙ୍ଗ୍ ସ୍ତ୍ରୀ ସଂପତ୍ତି ।

୩୪. **ଜେଖନା ଖୋନ୍ଦା** - *ଦେ.ବି. :* ଦୁଇକେନିଆ ତାଳ :

ବ୍ୟବହାର : ଜେଖନା ଖୋନ୍ଦାରେ କାପ୍‌କା ଜଡ଼େ ଘଡ଼୍‌ଘଡ଼ି ବହୁତ ପଡ଼େ । ( ୨ ) ଦେଖ୍‌ନା ଖୋନ୍ଦା ଉପରେ ବିଜ୍‌ଲି ପଡ଼ି କରି ସର୍‌ତେ ପୋଡ଼ିଗାଲା ଆଚେବେ ।





୧.  ଝଞ୍ଜାବତୀ - *ଦେ.ବି. :* ଏକ ନଦୀର ନାମ ବିଶେଷ । ଝଞ୍ଜାପରି ପ୍ରବଳ ବେଗରେ ପ୍ରବାହିତ ନଦୀ । ଏକ କ୍ଷୁଦ୍ର ନଦୀର ନାମ । ଏହି ନାଳଟି ନାରାୟଣପାଟଣା ମାଳଭୂମିରୁ ବାହାରି ଅଛି । ଏହି ନଦୀରେ ମହାରାଜା ବିଶ୍ୱମ୍ଭର ଦେବଙ୍କ ପ୍ରଥମ ରାଣୀ ଝଞ୍ଜାବତୀ ଦେବୀ ସ୍ନାନ କରୁଥିବା ସମୟରେ ହଠାତ୍ ଉପର ମୁଣ୍ଡରେ ବର୍ଷା ହୋଇ ନଦୀର ସ୍ରୋତ ପ୍ରଖର ହେବାରୁ ସେ ଭାସିଯାଇ ମୃତ୍ୟୁବରଣ କରିଥିଲେ । ସେହି ପ୍ରଥମ ରାଣୀଙ୍କ ସ୍ମୃତିରେ ମହାରାଜ ବିଶ୍ୱମ୍ଭର ଦେବ ଏହି ନଦୀର ନାମ 'ଝଞ୍ଜାବତୀ' ଦେଇଥିଲେ ।

୨.  ଝରନିଆ ଆମ୍ବ - *ଦେ.ବି. :* ଝରଣା କୂଳର ଆମ୍ବଗଛ ଇଂ.- A Mango tree near the spring.

ବ୍ୟବହାର : ଝରନିଆ ଆମ୍ବ ପଡ଼ିଲା ଲେନ୍ତି
କାଲାଜିରା ଧାନ ମୁଗ ପଇତି
ଏ ଯୁବା କାଲରେ ଦିନେ ଦେଇଥିଲେ
ବନ୍ଧୁର ମୁଖ ଦେଖନ୍ତି ।

୩:  ଝଲ୍‌କା ଖୋସା - *ଦେ.ବି. :* ଏକ ପ୍ରକାର କୃତ୍ରିମ ଖୋସା । ସ୍ତ୍ରୀମାନେ ବାନ୍ଧିଥିବା ଯୋଡ଼ା, ଯହିଁରେ ପ୍ରାକୃତିକ ବାଳ ସହିତ ଟ୍ୟାସିଲ୍ ବା ଘୋଡ଼ାବାଳ ଯୋଡ଼ି ବଡ଼ ଆକୃତି କରି ମୁଣ୍ଡ ପଛର ଡାହାଣ ଆଡ଼କୁ ଚିପ୍‌ନା ବା ମୁଣ୍ଡ କଣ୍ଟା ଦେଇ ବନ୍ଧାଯାଇଥାଏ । ଖୋସା ଅନେକ ପ୍ରକାରର । ଡାଲିଆ ଖୋସା, ଡାଳିମ୍ବ

ଖୋସା ଆଦି । ଏଥିପାଇଁ ଥିବା ଲୋକୋକ୍ତି :
"ଅଲପ୍ କାଲକୁ ଝଲ୍‌କା ଖୋସା

ଅଧା ଘୋଡ଼ାବାଳ ମିଶା ।" ଆଜିକାଲି ଘୋଡ଼ାର ଅଭାବରେ ଏହି ଘୋଡ଼ାବାଳ ବଦଳରେ ଝୋଟରୁ ପ୍ରସ୍ତୁତ କୃତ୍ରିମ ବାଳ ବ୍ୟବହାର ହେଉଚି ।

୪. ଝାଙ୍କର /ଜାକର - *ଦେ.ବି.* : ଭୂମି, ବୃଷ୍ଟିର ଓ ଶସ୍ୟର ସୃଷ୍ଟି ଓ ରକ୍ଷାକାରୀ ଦେବତା । ଏ ଦେବତା ଯେଉଁ ସ୍ଥଳରେ ରହିଥାନ୍ତି, ସେହି ସ୍ଥଳକୁ ମଧ୍ୟ 'ଝାଙ୍କର' କୁହାଯାଏ । ଏ ଦେବତାଙ୍କ ପୂଜାସ୍ଥଳରେ ବଡ଼ବଡ଼ ପବିତ୍ର ବୃକ୍ଷ ରୋପଣ କରି ତା'ର ଚତୁଃର୍ଦ୍ଦିଗରେ ଗୋଲାକାର ପଥର ରଖାଯାଏ । ଏହି ଦେବତାଙ୍କ ନିକଟରେ ଗୋରୁ ମଇଁଷୀ ବଳି ଦିଆଯାଏ । ଆଜିକାଲି ଗୋରୁ ମଇଁଷି ବଦଳରେ ଛେଳି ମେଣ୍ଢା ବଳି ଦିଆଯାଉଥିବା ଦେଖାଯାଉଛି ।

(୨) ଝାଙ୍କର ଠାକୁରାଣୀ / ନିଶାନ / ହୁଣ୍ଡି / ଜାକର - ଏ ହେଉଛନ୍ତି ଗ୍ରାମର ଦେବତା, ଏହି ଦେବତାଙ୍କ ନାମ ଅନୁସାରେ ସ୍ଥଳର ମଧ୍ୟ ନାମକରଣ ହୋଇଥାଏ । ଏହି ସ୍ଥାନଟି ଏକ ଛୋଟିଆ ଜଂଗଲ । ଏଠାରେ ଗଛପତ୍ରରେ ଗହଳି ହୋଇଥାଏ । ଏହି ସ୍ଥାନର ଗଛ, ପତ୍ର ଆଦିକୁ କେହି ହାଣନ୍ତି ନାହିଁ ବା ନିଅନ୍ତି ନାହିଁ । କେତେକ ଗ୍ରାମରେ ଏହି ଠାକୁରାଣୀଙ୍କ ସ୍ଥାନ ଗ୍ରାମର ମୁଖ୍ୟସ୍ଥଳ । ଯେଉଁ ଝରଣାର ପାଣି ବ୍ୟବହାର କରନ୍ତି, ତା କୂଳରେ ଜାକର ଦେବୀଙ୍କର ଆସ୍ଥାନ ରହିଥାଏ । ବିମାପୂଜା ସମୟରେ ଏହାକୁ ମଧ୍ୟ ପୂଜା କରାଯାଏ । ବେଣ୍ଟ ପର୍ବ ସମୟରେ ମରାଯାଇଥିବା ଜନ୍ତୁମାନଙ୍କୁ ପ୍ରଥମେ ଏ ସ୍ଥଳକୁ ଆଣି ରଖାଯାଏ ଓ ଏହି ସ୍ଥଳରୁ ନାଚ, ଗୀତ, ବାଜା, ବଜାଇ ମୃତ ଜନ୍ତୁମାନଙ୍କୁ ଗ୍ରାମର ସଦରକୁ ନେଇ ରଖାଯାଏ । ଏହି ଅବସରରେ ଠାକୁରାଣୀଙ୍କୁ କିଛି ନା କିଛି ବଳି ଦେଇ ଭୋଗ ଦିଆଯାଏ । ଏହି ଠାକୁରାଣୀଙ୍କୁ ଭୂମି ଦେବତା ମଧ୍ୟ କୁହାଯାଏ ।

(୩) ଗାଁ ମୁଣ୍ଡରେ ଥିବା ପର୍ବତ ତଳେ କେତୋଟି ବଡ଼ ବଡ଼ ବୃକ୍ଷ ଥାଏ । ବୃକ୍ଷତଳେ କେତୋଟି ପଥରକୁ ସ୍ଥାପନ କରାଯାଇ ଝାଙ୍କର ଦେବୀ ରୂପେ ଉପାସନା କରାଯାଏ । ଝାଙ୍କର ଆଦିବାସୀମାନଙ୍କ ସମାଜ ଓ ଧର୍ମୀୟ ଜୀବନକୁ ଖୁବ୍ ପ୍ରଭାବିତ କରିଥାଏ । ଝାଙ୍କର ଠାରେ ବିହନ ପୋତା, କାନ୍ଦୁଲ ଭଜା ପରି ଅନେକ ଧର୍ମୀୟ କାର୍ଯ୍ୟ ହେଲାପରେ ଗ୍ରାମରେ ଗ୍ରାମବାସୀମାନେ ନିଜ ଘରେଘରେ ସେ ସବୁ ପାଳନ କରିଥାନ୍ତି । ଝାଙ୍କର ଆଦିବାସୀଙ୍କର ସ୍ଥାନୀୟ ମୁଖ୍ୟ ଦେବୀ ।

(୪) ଜାକର - ପୂଜାରୀ (ଗଣ୍ଡି) ଗଣ୍ଡ ଆଦିବାସୀଙ୍କ ବିଶେଷତଃ ନବରଂଗପୁର ଜିଲ୍ଲା ଉପାନ୍ତରେ ପୂଜାରୀ ବା ଦେବପୂଜା କାର୍ଯ୍ୟ କରୁଥିବା ବ୍ୟକ୍ତି ବିଶେଷ  ଏହା

ବଂଶାନୁକ୍ରମିକ ପଦବୀ ଭାବେ ଉତ୍ତରାଧିକାର ସୂତ୍ରରେ ବାପ ଠାରୁ ପୁଅମାନେ ପାଇଥାନ୍ତି । ଏହା କନ୍ଧ ପରଜାଙ୍କ ଜାନି ସଉରାମାନଙ୍କ ଶଅନ୍, ଭତରାମାନଙ୍କ ପୂଜାରୀ ପଦବୀର ସମାର୍ଥ ସୂଚକ ସାଂସ୍କୃତିକ ଶବ୍ଦ ।

୫. ଝାଂକ୍କନା - *ଦେ.ବିଂ. :* ଦହଗଞ୍ଜ, କ୍ରି : ଦହଗଂଜ ହେବା ।

୬. ଝାଟି - ମୃତାହ ବିଧି - ଗର୍ଭବତୀ ମହିଳାମାନଙ୍କ ମୃତ୍ୟୁରେ କରାଯାଇଥିବା ପ୍ରେତକର୍ମ । (ଦ୍ର: ଝାଟି)

୭. ଝାମ୍ପି - *ଦେ.ବି. :* ଘୁଙ୍ଗୁରମାଳି । (୧) ଘୁଙ୍ଗୁର ମାଳିକୁ ଝାମ୍ପି କୁହାଯାଏ । ଗୁରୁମାଇ, ଘୁମୁରା ନୃତ୍ୟକାରୀ, ପୂଜାରୀ ଏବଂ ଦେଶିଆ ନାଟର ଅଭିନେତାମାନେ ଦୁଇପାଦରେ ଝାମ୍ପି ବାନ୍ଧି ନୃତ୍ୟ କରିଥାନ୍ତି । ଛୋଟ ଛୋଟ ଘାଗୁଡ଼ିକୁ ସୂତାରେ କଳାତ୍ମକ ରୂପେ ଗୁନ୍ଥା ହୋଇଥାଏ । ଝାମ୍ପି ପ୍ରତି ଆଦିବାସୀମାନଙ୍କ ଖୁବ୍ ଆକର୍ଷଣ ରହିଛି । ଅଣ୍ଟାରେ ଘୁମୁରା, ପାଦରେ ଝାମ୍ପି, ଧାଙ୍ଗଡ଼ୀ ଉପରେ ଆଖିପରି ସୁନ୍ଦର ଲୋକଗୀତ ଶୁଣାଯାଏ ।

(୨) ଝାମ୍ପି : ଗଣ୍ଡି : ବି : ବାଉଁଶିଆ : ମାଟି ପର୍ବରେ ନୂଆ ବାଉଁଶ ପାତିଆରେ ତିଆରି ବାଉଁଶିଆ । (ଟୁକୁନା / ଟୋକେଇ / ତାକେଲ / ଟାକ୍ଲା)ରେ ଗୃହସ୍ୱାମୀ ପୂଜା ସାମଗ୍ରୀ ରଖି ଜମିକୁ ଯିବା ସମୟରେ ବ୍ୟବହାର କରାଯାଏ ।

୮. ଝାଲିଆ : *ଦେ.ବି. :* **ଅଣ୍ଡିରା / ପୁରୁଷ** - *ଦେ.ବି. :* (ପୌରୁଷ ଯୁକ୍ତ) : ଝାଲିଆ ନିନା (ପୌରୁଷ ଥିଲା ଯୁବକ) ଝାଲିଆ ମଜୁର (ମଂଜୁର) : ଅଣ୍ଡିରା ମୟୂର ।

ଗୀତରେ : ତର ପରାପରା ଝାଲିଆ ନିନା

ଗଡ଼ ତଳେ ତଳେ ଗଡ଼ି ।

୯. ଝାଲିଆ ମଜୁର - *ଦେ.ବି. :* (ମଞ୍ଜୁର) ମୟୂର ।

ଆଦିବାସୀ ଲୋକଗୀତରେ ଝାଲିଆ ମଜୁରକୁ ପ୍ରେମର ପ୍ରତୀକ ଭାବେ ଗ୍ରହଣ କରାଯାଏ । ଆଷାଢ଼ ମେଘକୁ ଦେଖି ମୟୂର ଯେତେବେଳେ ଶିଖାମେଲାଇ କେକାରବ କରି ନୃତ୍ୟକରେ, ମୟୂରୀ ତାକୁ ଦେଖି ଆକର୍ଷିତ ହେଲାପରି ପ୍ରେମଲଗ୍ନା

ଆଦିବାସୀ ଯୁବତୀଟିଏ, ତାର ପ୍ରେମିକ ପୁରୁଷକୁ ଦେଖି ଆକର୍ଷିତ ହୁଏ । ଲୋକଗୀତରେ ବ୍ୟବହାର :

(୧) ଗୀତ ହେଲେ ମିତ ଶୁନିତ ଚକିତ
ଶରଧା ନିମନ୍ତେ ଗାଇ
ଝାଲିଆ ମଳୁର ଛିଡ଼ି ପଡ଼ିଲା
ଝରନିଆ ପାନି ଖାଇ । (ଚଇତ ପରବ ଗୀତ)
(୨) ଶିରି ପରବେତ ଝାଲିଆ ମଳୁର
ଟେକ୍ ଟୋକାଯଲା
ତୋମର ଆମର ପିରତି ନନି
ଦଇବ ଭେଟାଯଲା । (ଚଇତ ପରବ ଗୀତ) ।

୧୦. ଝିକାଟାନା - *ଦେ.କ୍ରି.* : ଟଣା ଓଟରା - ଝିକି କରି ନେବା - ଜବରଦସ୍ତି କରିବା :

ଆଦିବାସୀ ସମାଜରେ ଝିକାଟଣା ପରମ୍ପରା ରହିଛି । ଯଦି କୌଣସି ଆଦିବାସୀ ଯୁବକ ଜଣେ ଆଦିବାସୀ ଯୁବତୀକୁ ବିବାହ କରିବା ପାଇଁ ପସନ୍ଦ କରେ ଏବଂ କୌଣସି କାରଣରୁ କନ୍ୟାର ବାପା ମାଆ ବା ଗ୍ରାମବାସୀ ପ୍ରତିବନ୍ଧକ ହେଲେ ସେ ଝିଅଟିକୁ ସୁଯୋଗ ଦେଖି ତା ସାଂଗ ସାଥି ମେଳରୁ, ହାଟରୁ ବା କର୍ମକ୍ଷେତ୍ରରୁ ଝିକି ନେଇଯାଇଥାଏ । ଝିଅଟି ପୁଅର କବଳରୁ ରକ୍ଷା ପାଇବା ପାଇଁ ଚେଷ୍ଟା କରେ । ଝିଅର ସାଂଗସାଥିମାନେ ଝିଅଟିକୁ ଯୁବକର କବଳରୁ ମୁକୁଳେଇବାକୁ ଟଣାଓଟଣା କରିଥାନ୍ତି ଏବଂ ଯୁବକକୁ ମାଡ଼ଗାଳି ଦେଇଥାନ୍ତି । ଏସବୁ ସତ୍ତ୍ୱେ ଝିଅଟିକୁ ଯଦି ପୁଅଟି ନେଇଗଲା ତେବେ ସିଏ ତାକୁ ବିବାହ କରିଥାଏ । ଅନେକ କ୍ଷେତ୍ରରେ ଏହା ପଛରେ ଝିଅର ସମ୍ମତି ରହିଥାଏ । ଏତଦ୍ ବ୍ୟତୀତ ଏମାନେ ସ୍ୱାମୀ-ସ୍ତ୍ରୀ ମଧ୍ୟରେ ସଂପର୍କକୁ ନେଇ ମଧ୍ୟ ଏଇଝିକାଟନା ଶବ୍ଦକୁ ପ୍ରୟୋଗ କରି କହିଥାନ୍ତି -

"ଉମୁରି ଗାଆଁର ଡୁମରି ଦାରୁ, ମଝିରେ ଅତରା ଦାରୁ

ତମ ବାନାପାଟା ଓଛନା କରୁ, ଆମ ମାଠଲୁଗା ଓଢୁ । ଆମ ମାଠଲୁଗା ମଝିରେ କାନା ଗୁଲ୍ଲାରାତି - ଝିକାଟାନା ।

ଏଠି ପୁରୁଷ ସ୍ତ୍ରୀ ଦୈହିକ ସଂପର୍କ ପାଇଁ ଯେଉଁ ବଳ ପ୍ରୟୋଗ କରାଯାଏ, ଯାହା ତାହାକୁ ସ୍ପଷ୍ଟ କରି ଦିଆଯାଇଛି ।

୧୧. **ଝୁଡ୍‌ରା** - *ଦେ.ବି. :* ଡୁଡ୍‌ରା, ଟୁଡୁରା, ଏକ ପ୍ରକାର ଦେଶୀୟ ବାଦ୍ୟ । କାଠଗଣ୍ଡିକୁ ମଝିରୁ ଖୋଳି ଦୁଇଟି କାଠଦଣ୍ଡ ସାହାଯ୍ୟରେ ବେକରେ ଓହଳାଇ ବଜାଯାଏ । ଗଣ୍ଡ, ଭୂମିଆ ଓ ଗାଦବାମାନେ ବିଭିନ୍ନ ପର୍ବପର୍ବାଣୀରେ ଏହା ବଜାଇଥାନ୍ତି । ଗଣ୍ଡମାନଙ୍କ ଶିକାର ନୃତ୍ୟରେ ଓ ଗୟଳ ଏଦାନାରେ ଏହି ବାଦ୍ୟକୁ ବିଶେଷ ଗୁରୁତ୍ୱ ଦିଆଯାଇଥାଏ । କେବଳ ପୁରୁଷ ବାଦ୍ୟକାରମାନେ ନୃତ୍ୟ ଦଳର ମଝିରେ ବା କେନ୍ଦ୍ରରେ ଛିଡ଼ା ହୋଇ ଏହା ବଜାଇଥାନ୍ତି । ସ୍ଥାନ ବିଶେଷରେ ଏହାକୁ ଡୁଡ୍ରା ନାମରେ ନାମିତ କରାଯାଇଥାଏ । ଏବଂ 'ଟୁଡୁରା' ମଧ୍ୟ କୁହାଯାଇଥାଏ । (ଦ୍ର : ଟଡରା)

୧୨. **ଝୁନୁ ଟୁଙ୍ଗୁଲୁ** - *ଦେ.ବି. :* ବଣ୍ଡା ଯୁବତୀ ରମଣୀମାନେ ପିନ୍ଧୁଥିବା କାନର ଉପରି ଭାଗରେ ତମ୍ବା କିମ୍ବା ପିତଳ ରିଂ ପରି ସରୁ ବଳା । ଏହାକୁ କାନଫୋଡ଼ି ପିନ୍ଧାଯାଏ ।

୧୩. **ଝୁପି : ଗଣ୍ଡି : କ୍ରିୟା :** କାଳିସୀ ଧରିବା / ଦେହରେ ଦେବତା ଉଭା କରାଇବା । ପୂଜା ପାର୍ବଣ ସମୟରେ ଗଣ୍ଡ ଆଦିବାସୀ ଗୋଷ୍ଠୀର ଶିରା (ଗୁଣିଆ) ନିଜ ଦେହରେ ଦେବତା ଆହ୍ୱାନ କରିବାର କ୍ରିୟା ପ୍ରକ୍ରିୟାକୁ 'ଝୁପି' କୁହାଯାଏ ।





୧. ଟକ୍‌ଟକା - *ଦେ.ବି. :* ସ୍ଥିର, ଅଚଳ, ଅବିଚଳ, ପ୍ରତିକ୍ରିୟା ହୀନ ଇଂ : Unmoved, Unperturbed, Without Reaction ବ୍ୟବହାର : ( ୧ ) ଏ ଲୋକ୍ କାଇକାତା କଇଲେ ମିଶା ଟକ୍‌ଟକା ଏଇ ରଇସି ।

( ୨ ) ତାର ମାଇଜିକି କିଏ ନେଲେ ମିଶା ସେ ଟକ୍‌ଟକା ଏଇ ରଇସ୍ । (ନଞାତ୍ମକ ଅର୍ଥରେ) । (ତାର ସ୍ତ୍ରୀକୁ କିଏ ନେଇଗଲେ ସୁଦ୍ଧା ତାର ପ୍ରତିକ୍ରିୟା ନଥିବ ।)

୨. ଟକି - *ଦେ.ବି. :* ସାନଝିଅ, ଅବିବାହିତା କୁମାରୀ କନ୍ୟା । ଇଂ.- Spinster, Virgin

ଆଦିବାସୀ ସମାଜରେ ଟକି ବା ଝିଅମାନଙ୍କର ଏକ ସ୍ୱତନ୍ତ୍ର ପରିଚୟ ରହିଛି । ଅଣ ଆଦିବାସୀ ସମାଜର ଝିଅମାନଙ୍କ ଭଳି ସେମାନେ ପରାଧିନ । ନୁହଁନ୍ତି ବା ବିଭିନ୍ନ ସାମାଜିକ ଆକଟ ଓ କଟକଣା ଦ୍ୱାରା ଆବଦ୍ଧ ନୁହଁନ୍ତି । ଉଭୟ ସାମାଜିକ ଓ ଅର୍ଥନୀତିକ ଭାବେ ସ୍ୱାଧୀନ ଏଇ ଟକିମାନେ ନିଜର ଜୀବନସାଥୀ ବାଛିବାରେ ଯେପରି ପ୍ରୋତ୍ସାହନ ପାଇଥାନ୍ତି, ବିଲବାଡ଼ି, ଖଣି, ଖାଦାନ ଯାଇ ଦୈହିକ ଶ୍ରମ କରିବାପାଇଁ ମଧ୍ୟ ପାରିବାରିକ ପରିବେଶ ପାଇଥାନ୍ତି । ତେଣୁ ଯୌତୁକ ପ୍ରଥା,

ସତୀଦାହ ପ୍ରଥା, ଗଣିକା ପ୍ରଥା, ବୈଧବ୍ୟ ପ୍ରଥା ଇତ୍ୟାଦି ଆଦିବାସୀ ସମାଜରେ ସଂପୂର୍ଣ୍ଣ ଅଲଗା ଅର୍ଥ ବହନ କରେ । ବିଧବା ବିବାହ ଓ କନ୍ୟା ଝୋଲା ଏଠାରେ ଏକ ସାଧାରଣ ପ୍ରଚଳିତ ସାମାଜିକ ପ୍ରଥା । ସତୀତ୍ୱ ଓ କୁମାରୀତ୍ୱ ଇତ୍ୟାଦି ପୁରୁଷ କେନ୍ଦ୍ରିକ ମୂଲ୍ୟବୋଧ ଓ ନୈତିକତା ଏଠାରେ ଅଚଳ । ପୁରୁଷ ଭଳି ନାରୀ ଏଠାରେ ପରିବାରର ଅର୍ଥନୀତିକୁ ଦୃଢ଼ କରିବାପାଇଁ ସବୁ ପ୍ରକାରର ଶ୍ରମ କରିଥାଏ । କୋୟା, ବଣ୍ଡା, ଦୁରୁଆ ଓ ଡିଡାୟୀ ରମଣୀମାନଙ୍କର ଜମିରେ ହଳ କରିବାର ଦୃଶ୍ୟ ଯିଏ ଦେଖିଥିବ, ସେ ହିଁ ଜାଣିଥିବ ଯେ, ଏଠାରେ ନାରୀର ମୂଲ୍ୟ କେତେ ? ବରଂ, ଗୋଟିଏ ପୁଅ ନିଧଡ଼କ ଅଳସୁଆ ଓ ମଦ୍ୟପ ହୋଇ ଅଣ୍ଡିରା ମହୁମାଛି ପରି ଜୀବନ ବିତାଇପାରେ, କିନ୍ତୁ

ଟୋକିଟିଏ ବଞ୍ଚିଥିବା ଯାଏଁ ପରିଶ୍ରମ କରି ରୋଜଗାର କରିବାର କ୍ଷମତା ରଖେ । ତେଣୁ କନ୍ୟାଭ୍ରୂଣ ହତ୍ୟା ଓ ଯୌତୁକ ହତ୍ୟା ଏଠାରେ ଅକଳ୍ପନୀୟ । ସେଥିପାଇଁ ଟୋକି ଜନ୍ମରେ ଆଦିବାସୀ ପରିବାରରେ ଆନନ୍ଦର ଲହରୀ ଖେଳିଯାଏ । ସବୁ ଦିଗରୁ ଦେଖିଲେ ଆଦିବାସୀ ପରିବାର ପାଇଁ ଟୋକିଟିଏ ଆଶୀର୍ବାଦ ହିଁ ଆଁଶୀର୍ବାଦ । ସାଂସ୍କୃତିକ ଦିଗରୁ ମଧ ଆଦିବାସୀ ନାରୀ ହିଁ ଭାଷା ଓ ସଂସ୍କୃତିର ମୁଖ୍ୟ ବାହକ ହୋଇଥାଏ । ନୃତ୍ୟଗୀତ, ପାରମ୍ପରିକ ଚିତ୍ରକଳା, କୁଟୀର ଶିଳ୍ପ, ପାରମ୍ପରିକ ଓ ମୌଖିକ ଲୋକ ସାହିତ୍ୟ - ସବୁଥିରେ ଏଇ ଟକିମାନେ ଅଗ୍ରଣୀ ଭୂମିକା ଗ୍ରହଣ କରିଥାନ୍ତି ।

୩. ଟକିମାରା - *ଦେ.ବି. :* କନ୍ଧ, ପେଙ୍ଗୁ ପରଜାଙ୍କ ମେରିଆ ପର୍ବର ପରିବର୍ତ୍ତିତ ରୂପ । ନବରଂଗପୁର, ରାୟଗଡ଼ା, କୋରାପୁଟ ଜିଲ୍ଲା ପରଜା ଆଦିବାସୀଙ୍କ ପର୍ବ । କନ୍ଧମାନଙ୍କର ଏକ ଶାଖା ହେଉଛନ୍ତି ପେଙ୍ଗୁ ପରଜା । ଏହି ପରଜାମାନେ ଟୋକିମାରା ପରବ୍ ପାଳନ କରିଥାନ୍ତି । ଏହି ପରବ୍ ମାଧମରେ ଦୂରଦୂରାନ୍ତର ସ୍ୱଗୋତ୍ରୀୟ ବନ୍ଧୁକୁଟୁମ୍ବକୁ ନିମନ୍ତ୍ରଣ କରାଯିବାର ବିଧି ରହିଛି । ଏହା ସାମାଜିକ ମେଳଣର ଏକ ଉତ୍ସବ । କନ୍ଧ ପରଜାମାନଙ୍କ ବର୍ଷ ମଧରେ ଯେତେ ପର୍ବ ପାଳନ କରାଯାଏ, ପ୍ରାୟ ଅଧିକାଂଶ କୃଷି ଭିତ୍ତିକ ଅଟେ । ପରଜାମାନଙ୍କ ଟୋକିମାରା ପରବ୍ ଯେତିକି ସାମାଜିକ ତା ଠାରୁ ଅଧିକ ଧର୍ମୀୟ । ସମୂହ ନୃତ୍ୟ, ସଂଗୀତ ଓ ବାଦ୍ୟର ଅନୁଷ୍ଠାନ ଏହି ପର୍ବର ଅନ୍ୟତମ ଆକର୍ଷଣ । ଭୂମିର ଉର୍ବରତା ଦୁଷ୍ଟଶକ୍ତିର ପ୍ରକୋପ ହ୍ରାସ ଓ ଫସଲ ପ୍ରାଚୁର୍ଯ୍ୟ ପାଇଁ ପେଙ୍ଗୁ ପରଜାମାନେ ଏହି ପର୍ବ ପାଳନ କରିଥାନ୍ତି ।

**ଟୋକିମାରା ପରବ ପଛରେ ଥିବା କିମ୍ବଦନ୍ତୀ :**

ଦର୍ତ୍ତିନୁ (ଦାଣ୍ଡିମାତା / ଧରିତ୍ରୀ / ବସୁମାତା / ପୃଥିବୀ)କୁ କେନ୍ଦ୍ରକରି ରାୟଗଡ଼ା ଜିଲ୍ଲା ବିଷମ କଟମ ଅଞ୍ଚଳର ଡଙ୍ଗରିଆ କନ୍ଧମାନେ ମେରିଆ ପର୍ବ, ଫୁଲବାଣୀର ଦେଶିଆ କନ୍ଧମାନେ କେଡୁପର୍ବ ତଥା କାଶୀପୁର ଜଂଗଲର କନ୍ଧ ପରଜାମାନେ

(ପେଙ୍ଗୁ / ପେଙ୍ଗୋ ପରଜା) ଟୋକିମାରା ପରବ୍ ପାଳନ କରିଥାନ୍ତି ।

କନ୍ଧମାନଙ୍କର କିମ୍ବଦନ୍ତୀ କହେ, ଅନେକ ବର୍ଷ ପୂର୍ବେ ମେଘପାଣି ବର୍ଷିଲା ନାହିଁ । ଡଙ୍ଗରରେ ନା ପାଚିଲା ମାଣ୍ଡିଆ ନା ହେଲା 'ଜଣା' । ପୋଡୁ ଜମିରେ ଉଙ୍କୁରିଲା ନାହିଁ କାନ୍ଦୁଲର ଗଛ, ଝୁଡ଼ଙ୍ଗର ଲଟା । ଶିରାକୁ ଲାଗିଲା ଦେବତା । ସେ

ନିଜ ଦେହରେ ଦେବତା ଉଭା କରାଇଲା । ଲୋକେ ପଚାରିଲେ ତାକୁ ବର୍ଷା ନ ହେବାର, ଚାଷ ନ ହେବାର କାରଣ । ଶିରା ବା କାଳିସୀକୁ ବଳି ଭୋଗ ଦେଲେ । କାଳିସୀ କହିଲା "ତାରିପେନୁ (ଧରିତ୍ରୀ) ରୋଷ୍ କରିଛି, ରକ୍ତ ଦେବାକୁ ହେବ । ମଣିଷ ରକ୍ତ। ତା ହେଲେ ମେଘ ପାଣିଦେବ । ନିଖୁଣ ଧାଙ୍ଗଡ଼ାଟିଏ ଧରାପଡ଼ିଗଲା । ମେରିଆ ମିଳିଗଲା ବଳି ପାଇଁ । ତାକୁ ସମର୍ପି ଦିଆଗଲା । ଜାନି (କନ୍ଧ ପୁରୋହିତ ହାତରେ) ନିର୍ଦ୍ଦିଷ୍ଟ ତିଥିରେ ବଳି ଦିଆହେବ । ଦିଶାରୀ ଯୋଗ, ପାଗ, ନକ୍ଷତ୍ର ଚଳନ ଦେଖି ତିଥି ଦେଲା । ହେଲେ ବିଧିର ବିଧାନ ଅଲଗା । ମେରିଆ ଖସି ଚାଲିଗଲା ଜାନୀ କବଳରୁ । ଜାନୀ ନିର୍ବାକ । ଅପସକୁନ ଏହା । ଗାଁ ଲୋକେ ଶଙ୍କିତ ଆତଙ୍କିତ ହୋଇପଡ଼ିଲେ । ବଣକୁ କିଏ ମେରିଆ ଖୋଜିବାକୁ ଗଲେ ବାଘ ଘୋଷାଡ଼ି ନେବ । ଠାକୁରାଣୀ ମାତା ଆସି ଖାଇଦେବ ଗାଁ ଲୋକଙ୍କୁ । ଗୋରୁଙ୍କୁ ହେବ ମହାମାରୀ । ଜାନୀ ଚିନ୍ତିତ ହୋଇପଡ଼ିଲା । ସେ ତା କର୍ତ୍ତବ୍ୟରେ ଅବହେଳା କରିଛି । ପ୍ରାୟଶ୍ଚିତ୍ତ କରିବାକୁ ହେବ । ଆଉ ଏକ ମଣିଷ ବଳି ଖୋଜିବାକୁ ହେବ । ସେ ଦେଖିଲା ତା'ର ଟୋକିକୁ । ବିବାହ ବୟସ ହେବାକୁ ଆହୁରି ଅନେକ ବରଷ ବାକି ଅଛି । ସେ ନିର୍ଦ୍ଦିଷ୍ଟ ତିଥି ଦିନ ନିଜ ହାତରେ ତା ଟୋକିକୁ ଗାଧୋଇ ଦେଲା ହଳଦୀ ପାଣିରେ । ପିନ୍ଧାଇଦେଲା ନୂଆ ତିଆରି ଲାଲ ଲୁଗା । ଢାପ ବାଇଦର ତୀବ୍ର ନିନାଦ ଭିତରେ ମଧ୍ୟ ରାତ୍ରିରେ ଗଭୀରତା ଭିତରେ ଗାଁଠୁ ଦୂରରେ ବଣ ଭିତରେ ଜାନୀ ମହୁଲ ନିଶାରେ ଉନ୍ମତ୍ତ ତା'ର ଟୋକିକୁ ଗଣ୍ଡିରୁ ମୁଣ୍ଡ ଅଲଗା କରିଦେଲା । ମଣିଷ ରକ୍ତରେ ଗାଧୋଇ ପଡ଼ିଲା ପୃଥିବୀ । ଏମିତି ଭାବେ ଟୋକିକୁ ମାରି ପର୍ବ ପାଳନ କରିଥିବା ସ୍ମୃତିରେ ଆରମ୍ଭ ହେଲା ଟୋକିମାରା ପର୍ବ । ପରବର୍ତ୍ତୀ କାଳରେ ଏହି ଟୋକି ପାଲଟିଗଲା ପେଙ୍ଗୁ ପରଜାମାନଙ୍କ କୁଳ ଦେବତା - ଟୋକିମାରା ଦେବତା ଇଷ୍ଟଦେବୀ । ସମସ୍ତ ମଂଗଳର ହେତୁ । କଲ୍ୟାଣମୟୀ । ପ୍ରତି ତିନିବର୍ଷ କିମ୍ବା ବାରବର୍ଷରେ ଥରେ ଟୋକିମାରା ପରବ ପାଳନ କରାଗଲା । ଏହି ପରବ ସାଧାରଣତଃ ପୌଷ ବା ମାଘ ମାସରେ ପାଳିତ ହୁଏ । ବ୍ରିଟିଶ ସରକାର ଦ୍ୱାରା ମେରିଆ ବା ନରବଳି ନିଷିଦ୍ଧ କରି ଦିଆଯିବା ପରେ ମଣିଷ ବଦଳରେ ମଇଁଷି ବା ମେଣ୍ଢାବଳି ଦିଆଯାଉଛି । (ତଥ୍ୟ : ମୁଦୁଲି ଜାନି, ହାଣ୍ଡିଗୁଡ଼ା ଗ୍ରାମ, କଣ୍ଟା ଗାଁ, ଗ୍ରା.ପ. ନବରଂଗପୁର ଜିଲ୍ଲା)

ଚୋକିମାରା ପରବର ଗୋଟିଏ ଗୀତ :

ବାପୁଡ଼େରେ ଗାବଡାଣ୍ଡାବାପୁଡ଼େ ସାରିସ
ନାନା ତାକେ ହାଲାମ୍ ଦେ / ଜାଗା ତାକେ ହାଲାମ୍ ଦେ
ଜାଗା ସିତରାଇ କିନ୍ନାୟା ନାନାରୋଇ
ମାଟି ସିତରାଇ ଇ କିନ୍ନାୟା
ନର ଲୋଗୁନ ପଶି କିନ୍ନାୟା
ନରୁ ଲୋଗୁନ୍ ଛିନ୍ କିନ୍ନାୟା (ପରଜାଭାଷା)

ଅର୍ଥାତ୍ ଏହି ମେଣ୍ଡାକୁ ସମ୍ମାନ ଜଣାଅ, ସମ୍ମାନ ଜଣାଅ । ହେ ଗାଁର ବୟସ୍କ ବ୍ୟକ୍ତିମାନେ ସମ୍ମାନ ଜଣାଅ । ହେ ସ୍ଥାନ (ଗାଁ) ତୁ ଏହାକୁ ସମ୍ମାନ ଦେ । ଏହା ଗ୍ରାମକୁ ଶାନ୍ତିରେ ରଖିବ । ମାଟି ମା' ଶୀତଳ ହେବ । ମଣିଷ ସବୁ ରୋଗ ବଇରାଗରୁ ରକ୍ଷା ପାଇବେ । ପାପତାପରୁ ରକ୍ଷା ପାଇବେ ।

୪. ଟଙ୍ଗ୍‌ଟଙ୍ଗଡ଼ା - *ଦେ.ବି.* : ଏକ ଦେଶଜ ବାଦ୍ୟ ବିଶେଷ । ଶସ୍ୟ କ୍ଷେତ୍ରରେ ପଶୁପକ୍ଷୀମାନଙ୍କୁ ଘଉଡ଼ାଇବା ପାଇଁ ଏକ ପୋଲାବାଉଁଶର ଏହା ଏକ ବାଦ୍ୟ । ଏହାକୁ ଆଦିବାସୀ ଶିଶୁମାନେ ମଧ ବାଦନ କରି ଖେଳିଥାନ୍ତି । ଟଙ୍ଗ୍ ଟଙ୍ଗ୍ ଧ୍ୱନି ସୃଷ୍ଟି କରୁଥିବାରୁ ଏହାର ନାମ 'ଟଙ୍ଗ୍‌ଟଙ୍ଗ୍‌ଡ଼ା' ହୋଇଛି । ମୁଖ୍ୟତଃ ଏହା ଡଙ୍ଗର ଓ ବେଡ଼ା ଜମିରେ ଜନ୍ତୁ ଘୋଡ଼ାଇବା ପାଇଁ ବ୍ୟବହାର ହୋଇଥାଏ । ସମ ପର୍ଯ୍ୟାୟର ବାଦ୍ୟ ହେଉଛି ଲଡ଼କ, ଯାହା; ଗୋରୁ ବେକ ଘାଗୁଡ଼ି ସହ ତୁଳନୀୟ । ଆଉ ମଧ ଟଡ଼୍‌କା ଓ ରକ୍‌ଡ଼ି ହେଉଛି ଦଉଡ଼ି ଖଞ୍ଜା ଦେଶୀୟ ବାଦ୍ୟ, ଯାହାକୁ ମଂଚା ଉପରେ ଜଗିଥିବା ଚାଷୀମାନେ ରଣିଟାଣି ବଜାଇଥାନ୍ତି ଓ ଜୀବଜନ୍ତୁଙ୍କୁ ଘଉଡ଼ାଇ ଥାନ୍ତି ।

୫. ଟଡ଼୍‌ଟଡ଼ା - *ଦେ.ବି.* : ଶୀର୍ଣ୍ଣ, ଦୁର୍ବଳ, ପତଳା, ଶୁଖିଲା ଇଂ.: Thin, Sick, dry

ବ୍ୟବହାର : (୧) ବେଡ଼ାଏ ଟୋପେକ୍ ପାନିନାଇ, ଟଡ଼୍‌ଟଡ଼ା, ଶୁକି ଗାଲା ଆଚେ ।

(୨) ଏ ପିଲା ଟଡ଼୍‌ଟଡ଼ା ଏଇକରି ଆଚେ, ତେବେ ମିଶା ତାକେ ମାଇଭି ଲୋଡ଼ା

୬. ଟଡ଼୍‌ରା / ଟୁଡ୍‌ରା - *ଦେ.ବି. :* ଏକ ପ୍ରକାର ଦେଶୀୟ ବାଦ୍ୟ ଓ ନୃତ୍ୟ ବିଶେଷ ।

ଅବିଭକ୍ତ କୋରାପୁଟ ଜିଲ୍ଲାର ଭତରା, ହାଲ୍‌ବା, ପେଣ୍ଡିଆ, ଅମାନତ୍ୟ ପ୍ରଭୃତି ଆଦିବାସୀ ସଂପ୍ରଦାୟରେ ଟଡ଼୍‌ରା ନୃତ୍ୟ ପ୍ରଚଳିତ । ଏହି ନୃତ୍ୟରେ ଟଡ଼୍‌ରା ଯାହାକି ଏକ ଆୟତାକାର ପୋଲାକାଠ ପେଟିକା / ଅର୍ଦ୍ଧ ଗୋଲାକାର ପୋଲାକାଠ ପେଟିକାକୁ ମୁଖ୍ୟବାଦ୍ୟ ରୂପେ ବ୍ୟବହାର କରାଯାଇଥାଏ । ଏହାକୁ ଦୁଇଟି କାଠ ବା ବାଉଁଶ କାଠି ଦ୍ୱାରା ଆଘାତ କରି ଧ୍ୱନି ସୃଷ୍ଟି କରାଯାଏ ।

୭. ଟମ୍‌ଟମା - *ଦେ.ବି. :* ଏହା ଏକ ପ୍ରକାର ଆନଦ୍ଧ ଶ୍ରେଣୀୟ ଡେଙ୍ଗୁରାବାଦ୍ୟ ।

ହାଣ୍ଡି ଆକାରର ଏକ କାଠଖୋଳ ମୁହଁରେ ମୋଟା ଚମଡ଼ାର ଘୋଡ଼ଣୀ ଦିଆଯାଇ ଏହି ଘୋଡ଼ଣୀକୁ ଚମଡ଼ା ରସି ଦ୍ୱାରା ଏହି କାଠ ଖୋଳ ଦେହରେ ଚାରିଦିଗରୁ ଭିଡ଼ି କରି ବନ୍ଧା ଯାଇଥାଏ । ଏହାକୁ ଗୋଟିଏ ରସିରେ ବାନ୍ଧି କାନ୍ଧରେ ପକାଇ ୨ଟି କାଠି ଦ୍ୱାରା ଦୁଇ ହାତରେ ଜୋରରେ ବଜାଇଲେ ଏହା ଟମ୍‌ଟମ୍ ବା ଡିବିଡିବି ହୋଇ ଶବ୍ଦ କରିଥାଏ । ଏହି ବାଦ୍ୟକୁ ଗ୍ରାମରେ

କୌଣସି ସୂଚନା ପ୍ରଦାନ ପାଇଁ ବିଶେଷ ଭାବେ ବ୍ୟବହାର କରାଯାଇଥାଏ । ଏହି ବାଦ୍ୟ ଗ୍ରାମ ମଝିରେ ବଜା ଗଲେ କ'ଣ ଘଟିଛି ବା କ'ଣ ହେବାକୁ ଯାଉଛି, ଏ ସଂପର୍କରେ ସୂଚନା ପାଇବା ପାଇଁ ଲୋକେ ସମବେତ ହୋଇ ଡେଙ୍ଗୁରା ବଜାଉଥିବା ଲୋକଠାରୁ ତଥ୍ୟ ସଂଗ୍ରହ କରିଥାନ୍ତି । ଏହା ବାସ୍ତବରେ ଏକ ପାରମ୍ପରିକ ଓ ପୁରାତନ ବାଦ୍ୟ । ହାଟ, ବଜାର ବା ଗାଁ ମଝିରେ ଏହା ବଜାଇ ଗାଁ ଲୋକଙ୍କୁ ସୂଚନା ପ୍ରଦାନ କରିଥାନ୍ତି । (ବିଶେଷଭାବେ ଏହି ସୂଚନା ପ୍ରଦାନକାରୀ ବ୍ୟକ୍ତି ଗାଣ୍ଡା ନାମରେ ପରିଚିତ ।)

୯. ଟାକ୍‌ନି - *ଦେ.ବି. :* ବିବାହ ପାଇଁ ଅପେକ୍ଷା ।

ବ୍ୟବହାର : ମୁଁ ତାକେ ଟାକିଟାକି କୁଡ଼ିଦିନ୍ ଗାଲା ।

ଟାକ୍‌ଲା ଆଚେ - ଅପେକ୍ଷା କରି ରହିଛି,

୧୦. ଟାକୁଚପା - *ଦେ.କ୍ରି. :* ଟାକୁ ଫଟାଇବା । କୋରାପୁଟର ଆଦିବାସୀମାନେ ଆମ୍ବ ଟାକୁଆ ସଂଗ୍ରହ କରିଥାନ୍ତି । ଶୁଭ ମୁହୂର୍ତ୍ତରେ ଜାନି ପ୍ରଥମେ ଝାଙ୍କର ଦେବୀଠାରେ

ପୂଜାପାଠ କରି ଆମ୍ବ ଟାକୁଆ କେତୋଟିକୁ ଛେଚି କୋଇଲି ବାହାର କରିଥାଏ । ଏହାପରେ ପ୍ରତ୍ୟେକ ଘରେ ଆମ୍ବ ଟାକୁଆ ସବୁକୁ ଛେଚି ବା ଡଗିକରି କୋଇଲି ବାହାର କରାଯାଇ ପେଜ୍ ବା ପିଠା ତିଆରି କରି ଖାଇଥାନ୍ତି । ଝାଙ୍କର ଠାରେ ପ୍ରଥମେ ଜାନି ଟାକୁଆ ଛେଚିବା କାର୍ଯ୍ୟକୁ 'ଟାକୁ ଚପା' କୁହାଯାଏ । ଏହା 'ଟାକୁ ଷ' ପରବର ଏକ ଅଂଶ ବିଶେଷ ।

୧୧. ଟାଙ୍ଗିଆ - *ଦେ.ବି. :* କାଠକଟା ଯନ୍ତ୍ର । କୁଠାର - କୁରାଢ଼ି । ଇଂ.- Axe.

ଟାଙ୍ଗିଆ ଆଦିବାସୀ ମଣିଷର ସବୁଦିନିଆ ସାଥୀ । ସିଏ ବିଲ, ବଣ, ପାହାଡ଼, ଜଂଗଲ ଯେଉଁଆଡ଼େ ଯାଉ କାନ୍ଧରେ ଟାଙ୍ଗିଆଟିଏ ପକାଇ ଘରୁ ବାହାରିଥାଏ । ଏହି ଅସ୍ତ୍ରଟିକୁ ସେ ନିଜର ଆତ୍ମରକ୍ଷା ପାଇଁ ବ୍ୟବହାର କରିଥାଏ । ହାତରେ ଟାଙ୍ଗିଆଟିଏ ଥିଲେ ଆଦିବାସୀ ମଣିଷ ବାଘ, ଭାଲୁ, ସହ ଲଢ଼େଇ କରିବାକୁ ଡରେନି । ଏଇ ଟାଙ୍ଗିଆରେ ବଣପାହାଡ଼ ଓ ଜଂଗଲରୁ କାଠ କାଟିଆଣି ସେ ବଜାରରେ ବିକି ପେଟ ପୋଷେ । ଏପରିକି ନିଜ ବିବାହ ସମୟରେ କନ୍ୟା ଘରକୁ ଗଲାବେଳେ ଆଦିବାସୀ ଯୁବକମାନେ କାନ୍ଧରେ ଟାଙ୍ଗିଆଟିଏ ପକାଇ ଯାଇଥାନ୍ତି । ଆଦିବାସୀ ସମାଜରେ ଆତ୍ମରକ୍ଷା, ସାହସିକତା ତଥା ଆଦିବାସୀ ମଣିଷର ପରିଶ୍ରମ ପଣିଆର ପ୍ରତୀକ ଭାବେ ତା ସାଥିରେ ଥାଏ ତା'ର ଏଇ କ୍ଷୁଦ୍ର ଶାଣିତ ଧାରଯୁକ୍ତ ଅସ୍ତ୍ର ଟାଙ୍ଗିଆ । ଏହି ଟାଙ୍ଗିଆ ସାଧାରଣତଃ ଚାରିପ୍ରକାରର । ସାଧାରଣ ଟାଙ୍ଗିଆଠାରୁ ଟିକିଏ ଛୋଟ ଟାଙ୍ଗିଆକୁ କୁହାଯାଏ 'ବୁଟି ଟାଙ୍ଗିଆ' । ଜଂଗଲରେ ମୁଣ୍ଡ ଉପରେ ଥିବା ଛୋଟ ଡାଳିଆ ଓ ଲଟାବୁଟା ସଫା କରିବାପାଇଁ ଏହା ବ୍ୟବହୃତ ହୁଏ । ଗଛ କାଟିବା ବା କାଠ ଫାଳେଇବା ପାଇଁ ବ୍ୟବହାର କରାଯାଏ 'କୁରାଢ଼ୀ' । ଏହାର ଲୁହା ଅଂଶ ଯେତେ ଓଜନିଆ ହେବ, ସେ କୁରାଢ଼ୀ ସେତେଭଲ । ଏହାକୁ ଛାଡ଼ି ରହିଛି 'ଗିଦିନି ଟାଙ୍ଗି' । ଏହା ଠିକ୍ ପର୍ଶୁ ଭଳି । ଛେଳି ଓ ଜୀବଜନ୍ତୁ ପୂଜିବା ବା ହାଣିବା ପାଇଁ ବଳିକାର୍ଯ୍ୟରେ ଏହା ବ୍ୟବହାର କରାଯାଏ ।

୧୨. ଟାଟି - *ଦେ.ବି. :* ବାଉଁଶ ପାତିଆରେ ତିଆରି ପଟି । ଇଂ.- Bamboo door, Bamboo mat ସାଧାରଣ ପଟି ବା ଛାପାଠାରୁ ଏହା ଅଧିକ ମୋଟା ଓ ଟାଣ । ଆଦିବାସୀ ଘରମାନଙ୍କରେ ଆଗରେ କବାଟ ଥିଲେ ମଧ୍ୟ ଘର ଭିତରେ ବାରିପଟେ, ଗାଈ, ଛେଳି ଘର ଏବଂ କୁକୁଡ଼ା ରହିବା ଘରମାନଙ୍କରେ ଏଇ ବାଉଁଶ

ପାତରେ ତିଆରି ଟାଟି କବାଟ ଲାଗିଥିବା ଦେଖିବାକୁ ମିଳିଥାଏ । ଆଦିବାସୀ ଲୋକେ ହେଁସ, ମଶିଣା ବଦଳରେ ଘରେ ଏଇ ବାଉଁଶ ପାତିରେ ପଟି ପକାଇ ଶୋଇଥାନ୍ତି । ଏଇ ପଟିରେ ଧାନ, ମାଣ୍ଡିଆ, ସୁଆଁ ଶୁଖାଇବା ଏବଂ କୁଣିଆମଇତ୍ର ଆସିଲେ ଘର ବାରଣ୍ଡାରେ ଏଇ ବାଉଁଶ ତାଟି ପକାଇ ବସିବାକୁ କହି ଏମାନେ ଅତିଥି ଚର୍ଚ୍ଚା କରିଥାନ୍ତି । କେତେକ ଅଞ୍ଚଳରେ ଏହାକୁ 'ବେଶୀ ଟାଟି' ବୋଲି ମଧ କୁହାଯାଏ । କିଛି ନିର୍ଦ୍ଦିଷ୍ଟ ଆଦିବାସୀ ସଂପ୍ରଦାୟର ଲୋକେ ଯଥା : ଦୁରୁଆ, ପରଜା ଲୋକେ ଏହା ବୁଣିଥାନ୍ତି ।

୧୩. **ଟାମକ୍ / ଟମକ୍ -** *ଦେ.ବି. :* ଆନଦ୍ଧ ବାଦ୍ୟ ବିଶେଷ ।

ଅର୍ଦ୍ଧ ଗୋଲେଇ ମାଟି କିମ୍ବା ଲୁହାରେ, ଗାଈ / ଗୋରୁ ଚମଡ଼ାରେ ତିଆରି ହୋଇଥିବା ବାଦ୍ୟଯନ୍ତ୍ର । ସମସ୍ତ ପର୍ବପର୍ବାଣୀରେ ଏହାକୁ ବଜାଯାଏ । ଏହା ସହ ମହୁରୀ, ଢୋଲ, ତିଡ଼ିବିଡ଼ି ଚାଙ୍ଗୁ ମଧ ସହାୟକ ହୋଇଥାଏ ।

କୋରାପୁଟର ବହୁ ପୁରାତନ ଆନଦ୍ଧ ଶ୍ରେଣୀୟ ବାଦ୍ୟ । ଓସାରିଆ ଗୋଲାକାର ମାଟିପାତ୍ରରେ ଗୋରୁ ଚମଡ଼ାର ଛାଉଣୀ ଦିଆଯାଇ ତାରି ଉପରେ ରାଶି ପିଡ଼ିଆର ଗୋଲ ଆସ୍ତରଣ ଦିଅଯାଏ । ଏହାକୁ କିରଣ ବା ଖର୍‌ଲି କୁହାଯାଏ । ପରସ୍ତ ପରସ୍ତ ହୋଇ ଯୋଡ଼ା ଯାଇଥିବା ପ୍ରାୟ ୧ ଫୁଟ ଲମ୍ବାର ଦୁଇଖଣ୍ଡ ରବର ଦ୍ୱାରା ଜୋର୍‌ରେ ଆଘାତ କରି ଏହାକୁ ବଜାଇଲେ ଗୁରୁଗମ୍ଭୀର ନାଦ ସୃଷ୍ଟି ହୋଇଥାଏ । କୋରାପୁଟର ବିଭିନ୍ନ ଆଦିବାସୀ ସମାଜର ନୃତ୍ୟ ଗୀତରେ ବିଶେଷତଃ ଢେମ୍‌ସା ନୃତ୍ୟରେଟମକ ସହ ଅନ୍ୟାନ୍ୟ ବାଦ୍ୟଯନ୍ତ୍ର ବାଦନ କରାଯାଏ ।

୧୪. **ଟୀକା ଡେମେନ୍ -** *ଦେ.କ୍ରି. :* ଦେହ କିଳିବା । ଗଦବା ସଂପ୍ରଦାୟରେ ବର ଯେତେବେଳେ କନ୍ୟା ଆଣିବାକୁ ଯାଏ, ସେତେବେଳେ ବର ଘରୁ ବାହାରିବା ପୂର୍ବରୁ ବରର ମା ବା ଭାଉଜ ବରକୁ ଟୀକା ଲଗାଇ ଦିଅନ୍ତି । କିଛି ଚାଉଳରେ ପିଠଉ କରି ବରର ପାଦଠାରୁ ଆରମ୍ଭକରି ହାତ, କାନ୍ଧ ଓ କପାଳରେ ଲଗାଇ ଦେଇ ଆଶୀର୍ବାଦ କରନ୍ତି । ତାପରେ କୌଣସି ଅପଦେବତାର ନଜର ନ ପଡ଼ିବା ପାଇଁ ଓ ଖୁସିରେ ବିବାହିତ ଜୀବନଯାପନ କରିବା ପାଇଁ 'ଟୀକା ଡେମେନ୍' କରାଯାଇଥାଏ । ତନ୍ତ୍ର ସଂସ୍କୃତିରେ ଦେହ କିଳିବା ସହ ଏହାକୁ ତୁଳନା କରାଯାଇପାରେ ।

୧୫. ଟିକାବସା - *ଦେ.କ୍ରି.* : ବରକନ୍ୟାଙ୍କ ମୁଣ୍ଡରେ ହଳଦୀ ଚାଉଳ ପକାଇ ଆଶୀର୍ବାଦ ପ୍ରଦାନ କରିବା । ଭୂମିଆ ଓ ଅନ୍ୟାନ୍ୟ ସଂପ୍ରଦାୟର ବାହାଘର ଶେଷରେ ବନ୍ଧୁବାନ୍ଧବ ଏକାଠି ହୋଇ ବରକନ୍ୟାଙ୍କ ମଥାରେ ହଳଦୀ ଚାଉଳ ପକାଇ ଆଶୀର୍ବାଦ ପ୍ରଦାନ କରିଥାନ୍ତି ଓ କିଛି ଟଙ୍କା ପଇସା ମଧ୍ୟ ଦେଇଥାନ୍ତି । ଏହାକୁ 'ଟିକାବସା' ବା 'ଟିକା ଦେବା' କୁହାଯାଏ । ଅନ୍ୟାନ୍ୟ ଆଦିବାସୀ ସଂପ୍ରଦାୟରେ ମଧ୍ୟ ଏହା ପ୍ରଚଳିତ । ବାହାଘର ପରେପରେ ଏହି ଅନୁଷ୍ଠାନ କରାଯାଏ ।

୧୬. ଟିକିମୁଦି - *ଦେ.ବି.* : ଟଙ୍କା ମୁଦି । ହାତ ଆଙ୍ଗୁଠିରେ ପିନ୍ଧିବା ରୂପା ଟଙ୍କା ଓ ଆଠଣିରେ ତିଆରି ମୁଦି । ବିଭିନ୍ନ ଆଦିବାସୀ ସଂପ୍ରଦାୟରେ ଏଭଳି ଟଙ୍କା ମୁଦି ବା ଟାକା ମୁଦି ବା ଟିକିମୁଦି ବେଶ୍ ଜନପ୍ରିୟ । ସୁନାରିମାନେ ଏହା ତିଆରି କରନ୍ତି ।

୧୭. ଟିକିରା ଗଡ଼ିଆନୀ - *ଦେ.ବି.* : ଏକ ଦେବୀପୀଠର ନାମ । ବୈପାରୀଗୁଡ଼ା ବ୍ଲକ୍ ହଳଦୀକୁଣ୍ଡ ପଞ୍ଚାୟତର ପୂଜାରୀପୁଟ ଗ୍ରାମ ନିକଟରେ ଟିକରା ଗଡ଼ିଆଣୀ ଦେବୀପୀଠ ଅବସ୍ଥିତ । ଏହା ଗୁପ୍ତେଶ୍ୱରକୁ ନିକଟତର । ଏଠି ଲୁହା ଶିକୁଳି ଆଦିକୁ ପୂଜା କରାଯାଏ । ସେହି ଜାଗାରେ ଖଣ୍ଡା ତଲୱାର ପୋତା ହୋଇଛି । କେବଳ ତା'ର ଅଗ୍ରଭାଗ ଦେଖାଯାଉଛି । ସେହି ଖଣ୍ଡାକୁ ଦେବୀ ରୂପେ ପୂଜା କରାଯାଏ । ଏଠାରେ ମୁସଲମାନ ଶାସକମାନଙ୍କ ସହ ଯୁଦ୍ଧ ହୋଇଥିଲା ବୋଲି ଲୋକ କହନ୍ତି । ପୂର୍ବେ ଏଠାରେ ଏକ ରାଜଗଡ଼ ଥିଲା ।

୧୮. ଟିକିରି ବେଣ୍ଟ - *ଦେ.ବି.* : (୧) ଛୋଟ ବେଣ୍ଟ ବା ଶୀକାର । (୨) କ୍ଷୁଦ୍ରବଳି । ବିଭିନ୍ନ ଆଦିବାସୀ ସଂପ୍ରଦାୟରେ ନିଜ ଗୃହ ଦେବତା / ଦେବୀଙ୍କୁ ବଳି ପୂଜା ଦେବା । ଚଇତି ପର୍ବର ମଧ୍ୟ ଦିବସରେ ଦେବୀ ଦୁର୍ଗା / ଠାକୁରାଣୀ ମାତାଙ୍କ ନିକଟରେ ସ୍ୱଗୃହରେ କୁକୁଡ଼ାଟିଏ ବଳିଭୋଗ କରିଥାନ୍ତି । ଏହି ମାଂସକୁ ରୋଷେଇ କରି ଗୃହରେ ସମସ୍ତେ ମଧ୍ୟାହ୍ନ ଭୋଜନରେ ଖାଇଥାନ୍ତି । ଏହାପରେ ଗୃହର ଦେବୀ ଦୁର୍ଗାଙ୍କୁ ସଦରକୁ ନିଆଯାଇ ରଖାଯାଏ । ବିଶେଷ ଭାବେ ଗାଦବା ସଂପ୍ରଦାୟରେ ଏହା ଦେଖାଯାଇଥାଏ ।

**ଟିକିରି ବା ଟିଙ୍ଗିରି ବେଣ୍ଟ -**

ଚୈତ୍ର ପର୍ବର ଦ୍ୱିତୀୟ ଦିବସରେ ଗ୍ରାମର କିଶୋରମାନେ ହୁଣ୍ଡିଘର ପୂଜାପରେ ପିଆଇ ଚାଉଳର ଭାତରାନ୍ଧି ଖାଇବା ପରେ ପାଖ ଜଂଗଲକୁ ଶିକାର ପାଇଁ ଯାଇ

କେବଳ ପକ୍ଷୀ, ମୂଷା, ଏଣ୍ଡୁଅ ଆଦି ଶିକାର କରି ଖଜୁରୀ ବାହୁଙ୍ଗାରେ ଏକ ବିମାନରେ ସଜାଇ ହୁଣ୍ଡିଘରେ ଟିକା ଦେବାପରେ ଗାଁର ଘରଘର ବୁଲି ଚାଉଳ ପଇସା ଆଦି ସଂଗ୍ରହ କରନ୍ତି । ଛୋଟ ପିଲାଙ୍କର କ୍ଷୁଦ୍ରଧରଣର ଶିକାର ଅଭିଯାନ ଅର୍ଥରେ ଏହାକୁ ଟିକିରି ବା ଟିଙ୍ଗିରି ବେଣ୍ଟ କୁହାଯାଏ ।

୧୯. **ଟିପା** - *ଦେ.ବି. :* ଏହା ବାଉଁଶ ଗଣ୍ଡିରେ ନିର୍ମିତ 'ଲଡ଼କା' ପରି ଗାଈ, ମଇଁଷି ବା ଛେଳିରେ ବେକରେ ବନ୍ଧାଯାଉଥିବା ଶବ୍ଦ ସୃଷ୍ଟିକାରୀ ଯନ୍ତ୍ର । ଅନ୍ୟାନ୍ୟ ଅଞ୍ଚଳର ଘାଗୁଡ଼ି ସହ ଏହା ତୁଳନୀୟ । ବାଉଁଶ ଦେହରେ କଣାକରି ଏକ କାଠଘଣ୍ଟି ଲାଗିଥାଏ, ଯାହାକୁ ଟିପା କହନ୍ତି ।

୨୦. **ଟିଲୁ ମୂଷା** - *ଦେ.ବି. :* ଗୁଣ୍ଡିଚି ମୂଷା / ଇଂ- Squirrel ଗଛରେ ରହନ୍ତି । ଟିଲୁ ମୂଷା ଆଦିବାସୀର ପ୍ରିୟ ଖାଦ୍ୟ । ଗୁଲ୍‌ଚା ବା ବାଟୁଲୀ ସାହାଯ୍ୟରେ ଏହି ମୂଷାମାନଙ୍କୁ ମରାଯାଇଥାଏ ।

୨୧. **ଟୁଡ଼୍‌ରା** - *ଦେ.ବି. :* ଏକ କାଠ ନିର୍ମିତ ଦେଶୀୟ ବାଦ୍ୟ ବିଶେଷ । (ଦ୍ର. ଟୁଡ଼୍‌ରା ।)

୨୨. **ଟୁରୀ ନଦୀ** - *ଦେ.ବି. :* ଏକ ଐତିହାସିକ ନଦୀର ନାମ । ନବରଂଗଜିଲ୍ଲା ପାପଡ଼ାହାଣ୍ଡି ବ୍ଲକର ତୁରଞ୍ଜିଆଗୁଡ଼ାଠାରୁ ବାହାରି ନିମ୍ନଦେଶରେ ଭାସ୍କଲ୍ ନଦୀ ସହ ମିଶିଛି । ୧୯୪୨ ମସିହା ଅଗଷ୍ଟ ୨୪ ତାରିଖ ଦିନ ପାପଡ଼ାହାଣ୍ଡିଠାରେ ଏହି ଟୁରୀନଦୀ ପୋଲ ଉପରେ ଘଟିଥିବା ଐତିହାସିକ ଗୁଳିକାଣ୍ଡରେ ବହୁ ବୀର ସନ୍ତାନ ପ୍ରାଣବଳି ଦେଇଥିଲେ ଓ ଶତାଧିକ ଆହତ ହୋଇଥିଲେ । ପ୍ରାଣବିକଳରେ ଶହଶହ ଆହତ ବ୍ୟକ୍ତି ଏହି ଟୁରୀ ନଦୀକୁ ଲମ୍ଫ ପ୍ରଦାନ କରିଥିଲେ । ଶହୀଦ ତଥା ଆହତ ବ୍ୟକ୍ତିଙ୍କ ରକ୍ତରେ ଟୁରୀନଦୀର ପାଣି ଲାଲ ହୋଇ ଉଠିଥିଲା । ବ୍ରିଟିଶ ଗୁଳିରେ ଶହୀଦ ହୋଇଥିବା ଏଇ ସଂଗ୍ରାମୀ ମାନଙ୍କ ସ୍ମୃତିରେ ପାପଡ଼ାହାଣ୍ଡିଠାରେ ଏକ ଶହୀଦସ୍ତମ୍ଭ ନିର୍ମାଣ ହୋଇଛି ।

୨୩. **ଟେଣ୍ଡ୍‌କା** - *ଦେ.ବି. :* ଏଣ୍ଡୁଅ - ରଂଗ ବଦଳଉଥିବା ଏକ ସରୀସୃପ ଜାତୀୟ ପ୍ରାଣୀ । ଇଂ- Chamelion

ଆଦିବାସୀ ସମାଜରେ ଏଣ୍ଡୁଅକୁ ଅବିଶ୍ୱାସହୀନତାର ପ୍ରତୀକ ଭାବେ ନିଆଯାଉଥିବାବେଳେ ଅନେକତ୍ର ଏହା ଶୃଙ୍ଗାର ରସର ପ୍ରତୀକ ଭାବେ ମଧ୍ୟ ପ୍ରୟୋଗ କରାଯାଇଥାଏ ।

ବ୍ୟବହାର : (୧) "ଅତି ଯତନରେ ଚାଷ କରିଥିଲି ଧାନବୁନ୍ଦ ଗଲାନାଶ

ବାରଙ୍ଗ ଦଉଡ଼ି ଟେଣ୍ଡ୍‌କା ଫାଶ ଆସ ମୋ କୋଳରେ ବସ ।

ଅର୍ଥାତ୍ - ଆସ, ତୁମର ସବୁ ଚେଷ୍ଟା ବିଫଳ ହେବାରେ ତୁମେ ଗୋ ଚର୍ମ ଫାଶରେ ପଡ଼ିଯାଇଛ ।

ବ୍ୟବହାର : (୨) : ଟେଣ୍ଡକା କିଡ଼ା କାଇସି ଆଚେ (ଏଣ୍ଡୁଅ ପୋକ ଖାଉଛି ।)

ବ୍ୟବହାର : (୩) ପତର ତୋଲି ନାଁଇ ଯା ନନି
ଟେଣ୍ଡକା ଡରାଇସି
ସିଦିବୁଟା ତଲେ ଡୁର୍‌କା ରେଲେ
ଉପରେ ଡେଗେଇଛି ।

(ଅର୍ଥାତ୍ - ପତ୍ର ତୋଳି ଯାଆନା ତୁ / ତୁ ଯୁବତୀ ଟୋକୀ / ଯଦି ଜଣେ ସେ କେଉଁ ଯୁବକ ରହଥିବ ଛକି / ଉତ୍ତେଜିତ କାମନାରେ / ତୋତେ ଭିଡ଼ି ନେବ / ଭୂଇଁଖଜୁରୀ ମୂଳରେ ଛପିଥିବା ହେଟା ବାଘ ପରି / ତୋତେ କେତେ ହିନସ୍ତା କରିବ ।) ଆଉ ମଧ୍ୟ ଦିଶାରୀମାନେ କେତେକ ବୀରୁ ବା ପୂଜାରେ ଟେଣ୍ଡ୍‌କାକୁ ବଳି ଦେଇଥାନ୍ତି ଓ କେତେକ କ୍ଷେତ୍ରରେ ଏଥିରୁ ଔଷଧ ମଧ୍ୟ ପ୍ରସ୍ତୁତ କରିଥାନ୍ତି ।

୨୪. ଟେମ୍ବୁର୍ ପାଲି - *ଦେ.ବି. :* ଏକ ଗ୍ରାମର ନାମ ବିଶେଷ । ଏହା ମାଥିଲି ବ୍ଲକ୍‌ର ସର୍ଗୀଗୁଡ଼ା ଠାରୁ ୩କି.ମି. ଦୂରରେ ଅବସ୍ଥିତ । ହଲ୍‌ବା ଭାଷାରେ ଟେମ୍ବୁରର ଅର୍ଥ କେନ୍ଦୁ । କେନ୍ଦୁ ଜଂଗଲ ଭିତରେ ଏହି ଗାଁ ବସିଥିବାରୁ ଏହାର ନାମ ଟେମ୍ବୁର୍ ପାଲି । କିମ୍ବଦନ୍ତୀ ଅନୁସାରେ ବିଦ୍ରୋହପରେ କ୍ୟାଂରେ ଲୁଚି ରହିଥିବା ସୋମନାଥ ମାଝୀ ଡମ୍ ରାଜାଙ୍କୁ ହଟାଇଦେବା ପରେ ନିଜ ଅଞ୍ଚଳର ଆଉ ଦଳେ ହାଲ୍‌ବିଙ୍କୁ ଏଠାକୁ ଡକାଇ ଆଣିଥିଲେ । ସେମାନେ ଥିଲେ ସୋମରଥ ସଂଜ୍ଞାଧାରୀ । ମାଝୀ ରାଜାର ବିଶ୍ୱସ୍ତ କର୍ମଚାରୀ ରୂପେ ଏମାନେ କାମ କରୁଥିଲେ । ସୋମରଥମାନେ

ପ୍ରଥମେ ଆସି ରେଙ୍ଗାଓ୍ୱାଡ଼ାରେ ରହିଥିଲେ । ସେଠାରୁ ଆସିଲେ ଟେମ୍ପୁରପାଲି । ସେମାନଙ୍କ ସହ କିଛି ମାଦ୍ରି ପରିବାର ମଧ୍ୟ ଛତିଶଗଡ଼ରୁ ଆସିଥିଲେ । ଏହି ମାଦ୍ରିମାନେ ହରିଜନ । ଏବେ ଏଠାରେ ବାରକୁଳ ବା ୧୨ସଂପ୍ରଦାୟ ବାସ କରୁଛନ୍ତି । ମାଦ୍ରି, କେନାଲ, କୋୟା, ଦୁରୁଆ, ମାଳି, ପାନାଡ଼ି, ସିଉନିଆ, ଭୂମିଆଁ, ଧାକଡ଼, ଜିରାମ୍ ହଲବା ଓ ରଣା ।

୨୫. ଟେସା ଗୁଡ଼ଦା / ଗାଟି ଟିକ୍‌ରା - *ଦେ.ବିଂ. :* ଅରମା, ବନ୍ଧୁର କଦର୍ଯ୍ୟ, ଅରାସ୍ତା, ଖାଲଢିପ, ଉଚ୍ଚାନିଚା ଇଂ- Rough । ବ୍ୟବହାର : ଟେସା ଗୁଡ଼ଦା ବାଟେ ନା ଯାଉ । "ଏ ରାସ୍ତା ବଡ଼େ ଗାଟି ଟିକ୍‌ରା ।"

୨୬. ଟୋଲ୍ / ଟୋଲା / ଚଟାଲ୍ - *ଦେ.ବି. :* ମହୁଲ ଗଛର ଫଳ । ଏକ ତୈଳବୀଜ । ଇଂ- Mahua Fruit

ମହୁଲ ଗଛର ଫଳକୁ 'ଟୋଲ' ଟୋଲା ବା ଚଟାଲ୍ କୁହାଯାଏ । ଏହା ଭିତରେ ଦୁଇରୁ ଚାରିଟା ପର୍ଯ୍ୟନ୍ତ ମଂଜି ଥାଏ । ଉପରକୁ ଚୋପା କଷିଥିବା ବେଳେ ସବୁଜ ଥାଏ । ଏହା ପାଚିଗଲେ ହଳଦିଆ ପଡ଼ିଯାଏ । ଏହି ଟୋଲାର ଚୋପା ଛଡ଼ାଇ ଭିତର କୋଇଲି ବାହାର କରି ତାକୁ ଶୁଖାଯାଏ । ଭଲଭାବେ ଶୁଖାଗଲାପରେ ତାକୁ କୁଟି ଗୁଣ୍ଡ କରାଯାଏ । ଏହି ଗୁଣ୍ଡକୁ ଅଳ୍ପ ପାଣି ସହ ଫେଣ୍ଟି ମଣ୍ଡ ତିଆରି କରାଯାଏ । ଏହି ପ୍ରକ୍ରିୟାକୁ ପିଡ଼ାମାରିବା ବୋଲି କୁହାଯାଏ । ପିଡ଼ା ମାରିବା ପରେ ତାକୁ ମାଣ୍ଡ୍ରପୁଡ଼ାରେ ପୁରାଇ ପାଣି ହାଣ୍ଡିରେ ରଖି ଫୁଟାଇ ପାଣିରେ ସିଝାଯାଏ । ଗରମ ବାଷ୍ପଦ୍ୱାରା ତାହା ସିଝିଗଲା ପରେ ତାହାକୁ ଟାକ୍‌ଲାରେ ଢାଳି ନିଆଯାଇ 'କୁଲା'ରେ ରଖାଯାଏ । ଏହି କୁଲା ହେଉଛି ବେତ ବା ବାଉଁଶ ବା କୁଦାଲ ରଶି ବା ଶିଆଡ଼ି ରସିରେ ତିଆରି ଏକ ପାତ୍ର । ବର୍ତ୍ତମାନ ଏହି କୁଲାରେ ଠେସିଠେସି ଏହି ମଣ୍ଡକୁ ପୁରାଇଲା ପରେ ଏହାକୁ ପେଡ଼ିବା ପାଇଁ ନିଆଯାଏ । ଏହି ପେଡ଼ିବା ଯନ୍ତ ଦୁଇ ପ୍ରକାର ହୋଇଥାଏ । ପ୍ରଥମ ଯନ୍ତକୁ 'ତିଡ଼ି' କହିଲାବେଳେ ଦ୍ୱିତୀୟଟାକୁ 'ଡାଣ୍ଡି' ବୋଲି କୁହାଯାଏ ।

ଏଥିପାଇଁ ଲୋଡ଼ା ପଡୁଥିବା ଉପକରଣ ହେଉଛି - ପ୍ରଥମ ପଦ୍ଧତି ପାଇଁ ଗୋଟିଏ ଡାଣ୍ଡି, କିଛି ଓଜନ ପଥର ଓ ଗୋଟିଏ 'ତିଡ଼ି' । ଦ୍ୱିତୀୟ ପଦ୍ଧତି ପାଇଁ ଡାଣ୍ଡି,

ଦୁଇଟି ମୋଟା ରଶି ଓ ଗୋଟିଏ ଲାଠି । ଉଭୟ ପଦ୍ଧତିରେ ତେଲ ରଖିବା ପାଇଁ ଗୋଟାଏ ନକି ବା ପାତ୍ର ଦରକାର । ତିଡ଼ି ହେଉଛି କାଠ ତିଆରି ଏକ ଛାଞ୍ଚ । ଏହା ଗୋଲ୍ ହୋଇ ଚାରିପଟକୁ ନାଳଥାଏ ଓ ଏହି ନାଳ ଗୋଟିଏ ମୁଖ୍ୟ ନଳା ସହ ସଂଯୁକ୍ତ ହୋଇଥାଏ ।

**ପ୍ରଥମ ପଦ୍ଧତି :**

ଗୋଟିଏ ଗଛ ଦେହରେ ଡାଣ୍ଡି ପଶିବା ପାଇଁ ଏକ କଣା କରାଯାଏ । ଏହି ଡାଣ୍ଡିର ପଛ ଅଂଶ ଓସାରିଆ ହୋଇଥାଏ । ଏହି ଓସାର ଅଂଶ ଉପରେ ପଥର ଓଜନ ଲଦାଯାଏ । ଗଛମୂଳରୁ ପ୍ରାୟ ଏକଫୁଟ ଛାଡ଼ି ଏହି କଣା କରାଯାଏ । କଣାରେ ଡାଣ୍ଡି ପୁରାଇ ଓସାର ପଟରେ ପଥର ଲଦିବା ପରେ ଗଛମୂଳରେ ତିଡ଼ି ଥୋଇ ଏହାର ମୁଖ୍ୟ ନଳା ମୁହଁରେ ନଳି ରଖାଯାଏ । ଏହି ତିଡ଼ି ଉପରେ ତିନି ବା ଚାରୋଟି ମଣ୍ଡପୂର୍ଣ୍ଣ କଲା ଉପରାଉପରି ରଖି ଓସାର ପଟରୁ ଚାପ ଦିଆଯାଏ ବା ଅଧିକ ଓଜନ ଲଦାଯାଏ । କଲାମାନଙ୍କ ଉପରେ ଚାପ ପଡ଼ିଲେ ସେଥିରୁ ତେଲ ଝରି ତିଡ଼ିରେ ପଡ଼େ ଓ ନଳାବାଟେ ନଳିରେ ପହଞ୍ଚେ । କଲାରୁ ସବୁ ତେଲ ନିଗିଡ଼ି ଗଲାପରେ ଶୁଖିଲା ପିଡ଼ିଆକୁ ଟୋଲାପେଣ୍ଡି କୁହାଯାଏ । ସାବୁନ୍ ତିଆରି ପାଇଁ ଏହା ବ୍ୟବହାର ହୁଏ । ଟୋଲ ତେଲ ଆଦିବାସୀର ଏକ ପ୍ରିୟ ଖାଇବାତେଲ ।

**ଦ୍ୱିତୀୟ ପଦ୍ଧତି :**

ଦୁଇଟି ହାଣ୍ଡିରୁ ପ୍ରଥମଟିକୁ ମାଟିରେ ପୋତି ଦିଆଯାଏ । ପୋତା ଡାଣ୍ଡିର ଉପର ଅଂଶ ଦ୍ୱିତୀୟ ଡାଣ୍ଡିର ଏକ କଣା ଦ୍ୱାରା ସଂଯୁକ୍ତ ହୋଇଥାଏ । ଏହି ଦ୍ୱିତୀୟ ଡାଣ୍ଡିର ମଝି ଅଂଶରେ ତିଡ଼ି ଖେଳା ହୋଇଥାଏ । ଏହାର ଠିକ୍ ଉପରକୁ ଆଉ ଏକ ଡାଣ୍ଡି ସମାନ୍ତରାଳଭାବେ ପୋତା ହୋଇଥିବା ଡାଣ୍ଡି ସହ କଣା ଦ୍ୱାରା ସଂଯୁକ୍ତ କରାଯାଏ । ଏହି ଦୁଇ ସମାନ୍ତରାଳ ଡାଣ୍ଡିକୁ ଦୁଇ ମୁଣ୍ଡରେ ରଶି ଦ୍ୱାରା ବନ୍ଧାଯାଏ । ଉପର ଡାଣ୍ଡିର ବାହାର ପଟର ମୁଣ୍ଡରେ ଆଉ ଏକ ଲାଠି ବାନ୍ଧି ଦବାଇ ଦେଲେ ତିଡ଼ି ଉପରେ ରଖାଯାଇଥିବା କଲା ଚାପି ହୋଇ ତେଲ ନିଗିଡ଼ି ଆସେ । ଏହି ତିଡ଼ି ତଳେ ରଖାଯାଇଥିବା ନକିରେ ତାହା ପଡ଼େ । ନକି ପୂର୍ଣ୍ଣ ହେବା ପରେ ତାହାକୁ ପରିବର୍ତ୍ତନ କରାଯାଏ । ଆଉ ଏକ ନକି ବସାଯାଏ ।

ତିଡ଼ି : ଏହା ଗୋଟିଏ ଫାଳିକିଆ କାଠ ଗଣ୍ଡିରୁ ତିଆରି । ସାଧାରଣତଃ ବିଜା ବା ମୁଣ୍ଡି ଭଳି ଗଛର କାଠରେ ଏହି ଛାଞ୍ଚ ନିର୍ମାଣ କରାଯାଇଥାଏ । ଗଛ ଗଣ୍ଡିକୁ ମଝିରୁ ଫଡ଼ା ଯାଇଥିବାରୁ ତିଡ଼ିର ନଳା ତଳେ ନକି ବସାଇବା ସୁବିଧା ହୁଏ । ଦ୍ୱିତୀୟ ପ୍ରକାରର ତିଡ଼ି ହାଣ୍ଡି ଦେହରେ ହିଁ ଖୋଳା ହୋଇଥାଏ । ଏହି ଟୋଳା ତେଲ ଆଦିବାସୀର ରୋଷେଇବାସରେ ବ୍ୟବହାର ହେବା ସଂଗେସଂଗେ ବିଭିନ୍ନ ଚର୍ମରୋଗର ଉପଶମ ପାଇଁ ମଧ୍ୟ ବ୍ୟବହାର ହୁଏ । ଏତଦ୍ ବ୍ୟତୀତ ଟୋଳ କୋଇଲି ଗୁଣ୍ଡରୁ ପିଠା ତଥା ଅନ୍ୟାନ୍ୟ ସୁସ୍ୱାଦୁ ଖାଦ୍ୟ ତିଆରି କରାଯାଏ ।





୧. **ଠାକୁରାଣୀ ହୁଣ୍ଡି ବା ବୁଣ୍ଡି** - *ଦେ.ବି. :* ଗ୍ରାମଦେବତୀ । ଗ୍ରାମର ଅଧିଷ୍ଠାତ୍ରୀ ଦେବୀ । ଗ୍ରାମଦେବୀ । ପ୍ରତି ଗାଁରେ ନିଶ୍ଚିତ ଭାବେ ହୁଣ୍ଡିଙ୍କର ଆସ୍ଥାନ ବୃକ୍ଷ ଗହଳି ମଧ୍ୟରେ ରହିଥାଏ । ଗାଁର ଯେକୌଣସି ପର୍ବ ପାଳନ ଅବସରରେ ହୁଣ୍ଡିଙ୍କ ପୂଜା ପ୍ରଥମେ କରାଯାଏ । ସେ ଗାଁରେ ଯଦି ବିଶେଷ ବିପଦ ପଡ଼େ ତେବେ ସେହି ହୁଣ୍ଡିଙ୍କର ପୁନର୍ସ୍ଥାପନା ବା ହୁଣ୍ଡି ଚପା କରାଯାଏ । ଏଥିପାଇଁ କିଛି ବଡ଼ଜନ୍ତୁ ବା ଛେଳି ବଳି ଦିଆଯାଏ । ବଣ୍ଡା ଗୋଷ୍ଠୀର ଆରାଧ ଦେବୀ ରାଣୀ ବୁଣ୍ଡି ମହାଦେଇ ଯିଏ ବଣ୍ଡାମାନଙ୍କୁ ବିଭିନ୍ନ ଦିଗରୁ ସଂଗଠିତ କରି ଏକ ଦୁର୍ଦ୍ଧର୍ଷ ଯୁଦ୍ଧ ଖୋର ଜାତି ରୂପେ ପରିଚିତ କରାଇ ପାରିଥିଲେ । ସେଇ ରାଣୀ ବୁଣ୍ଡି ମହାଦେଇଙ୍କୁ ବଣ୍ଡାଗୋଷ୍ଠୀର ବିଭିନ୍ନ ଶାଖାର ଲୋକେ ଗ୍ରାମଦେବୀ ବା ହୁଣ୍ଡିଦେବୀ ଭାବେ ପୂଜା କରିଥାନ୍ତି ।

୨. **ଠାକୁରାଣୀ ପୂଜା** - *ଦେ.ବି. :* ମାର୍ଗଶିର ମାସରେ ଗାଦବାଙ୍କ ପୋଢ଼ବଳି ପୂଜା ।

ଗାଦବାମାନଙ୍କ ବିଶ୍ୱାସ ଠାକୁରାଣୀମାତା ନିଶାନ ଓ ଜାକରଙ୍କୁ ଜନ୍ମ ଦେଇଛନ୍ତି । ପ୍ରତି ମାସରେ ଗାଁର ଗାଈଗୋରୁଙ୍କ ମଂଗଳ ଓ ରୋଗରୁ ମୁକ୍ତି ପାଇଁ ଗାଦବାମାନେ ଠାକୁରାଣୀ ମାତାଙ୍କୁ ପୋଢ଼ବଳି ଦେଇ ପୂଜା କରିଥାନ୍ତି । ଅନ୍ୟାନ୍ୟ ସଂପ୍ରଦାୟରେ ମଧ୍ୟ ଏଭଳି ଠାକୁରାଣୀ ପୂଜାର ବିଧି ପ୍ରଚଳିତ ।

୩. **ଠାଢ଼** - *ଦେ.ବି. :* ଚଇତି ପରବ ବେଳେ ଆମ୍ବନୂଆ ଖାଇବା ପରେ ଗାଁର ୩ ଘରୁ କିମ୍ବା ୭ ଘରୁ ଚାଉଳ ମଗାଯାଏ । ଏହାକୁ 'ଠାଢ଼' କୁହାଯାଏ । ପୂଜାରୀ ଚଇତ ପରବ ଉପଲକ୍ଷେ ହେଉଥିବା ଟିଙ୍ଗିରି ବେଣ୍ଟ ଦିନ ବଣରେ ଏହି ଚାଉଳରେ ଚରୁ ରନ୍ଧାଯାଏ । ପୂଜାରୀ ସରଗି ପତ୍ରରେ ଚରୁ ବାଢ଼ି ବନଦେବୀଙ୍କୁ ପୂଜା କରେ । ଏହାକୁ ଟିଙ୍ଗିରି ବେଣ୍ଟରେ ଯାଇଥିବା ଲୋକେ ସେବନ କରନ୍ତି ।

୪. **ଠେଙ୍ଗୁଆ** - *ଦେ.ବି. :* ଅବିବାହିତ ପୁରୁଷ, - ଇଂ. - Bachelor, ଅବିବାହିତା ସ୍ତ୍ରୀକୁ କୁହାଯାଏ ଡିଣ୍ଡା । ବ୍ୟବହାର : ଠେଙ୍ଗୁଆ ଲୋକ୍ ବଡ଼େ ଟିଙ୍ଗା





୧. ଡଗରାଇବା - *ଦେ.କ୍ରି. :* ଖୋଜିବା । ମୁଖ୍ୟତଃ ହଜି ଯାଇଥିବା ଜିନିଷକୁ ଖୋଜିବା । ଦେ.ବି. ସନ୍ଧାନ, ଇଂ. Look for, Search

ଯଥା : (୧) ବନ୍ ବିତରେ ମୋର୍ ଚେଲି ଆଜି ରଇଲା, ଡଗରାଇ ଡଗ୍‌ରାଇ ଥାକିଗଲି ।

(୨) ତୋର ଡଗର୍ ଯାଇ ରଇଲି । ଅର୍ଥାତ୍, ତୋର ସନ୍ଧାନରେ ଯାଇଥିଲି ।

ଗୀତରେ ବ୍ୟବହାର :

"ପାନି ମାରିଗଲା ଜିମଟି ଭାଇଁ, କୁକୁର କାନ୍ଦିଲା କୁଇଁ

ଗୀତ୍ କୁଡ଼ିଆନିକେ ଡଗରାଇ ଡଗରାଇ ଡକରା ଅଇଲି ମୁଇଁ ।"

୨. ଡଗାଇବିରୁ - *ଦେ.ବି. :* ଗୋଟିଏ ପ୍ରକାରର ପାରିବାରିକ ପୂଜାନୁଷ୍ଠାନ । ପ୍ରାୟ ପ୍ରତ୍ୟେକ ବଣ୍ଡା ପରିବାର ନିଜ ଜୀବନକାଳ ମଧ୍ୟରେ ଥରେ ଦୁଇଥର ଏହି ଡଗାଇବାରୁ କରିଥାନ୍ତି । ପରିବାରର ସାମଗ୍ରିକ ମଂଗଳ ପାଇଁ ଏହା କରାଯାଇଥାଏ । ଏହା ଏକ ବ୍ୟୟସାପେକ୍ଷ ପୂଜା । ଏହି ପୂଜାରେ ଗୋରୁବଳି ଦେବାକୁ ପଡ଼ିଥାଏ । ସମସ୍ତ ଗ୍ରାମବାସୀଙ୍କୁ ଭୋଜିଭାତ ଦେବାକୁ ହୁଏ ।

୩. ଡଙ୍ଗର - ପାହାଡ଼ିଆ ଭୂମି । ଉଚ୍ଚ ଜମି : ମୁଖ୍ୟତଃ ପୋଡୁଚାଷ ଦ୍ୱାରା ପ୍ରସ୍ତୁତ ଜମି । ଇଂ.- Highland. ପାହାଡ଼ିଆ ଅଞ୍ଚଳରେ ୧୫°ରୁ ଅଧିକ ସମସ୍ତ ଜମିକୁ ଡଙ୍ଗର ଜମି କୁହାଯାଏ । ସାଧାରଣତଃ ପୋଡୁଚାଷ କରି ଏହି ଜମି ପ୍ରସ୍ତୁତ କରାଯାଇଥାଏ । ପୋଡୁଚାଷର ପ୍ରଥମ ତିନିଚାରିବର୍ଷ ଭଲ ଚାଷ ହୋଇଥାଏ । କିନ୍ତୁ ପରବର୍ତ୍ତୀ ସମୟରେ ଏଥିରେ କେବଳ ମାଣ୍ଡିଆ, ଶୁଆଁ, କାଙ୍ଗୁ, ଜନା ଓ ଖେଡ଼ଜନା ଆଦି ଚାଷ ହୋଇଥାଏ । ଜୀବଜନ୍ତୁଙ୍କ ଦାଉରୁ ଫସଲକୁ ରକ୍ଷାକରି ଅମଳ କରିବା ଖୁବ୍ କଷ୍ଟସାଧ ହୋଇଥାଏ । ଅବିଭକ୍ତ କୋରାପୁଟ ଜିଲ୍ଲାର ଅର୍ଦ୍ଧେକରୁ ଅଧିକ ଚାଷ ଯୋଗ୍ୟ

ଜମି ଏହି ଡଙ୍ଗର ଜମି ପର୍ଯ୍ୟାୟଭୁକ୍ତ । ସେଥିପାଇଁ ଏକ ଆଦିବାସୀ ଲୋକୋକ୍ତି କହେ, "ଡଙ୍ଗ୍‌ର ନୁହେଁ ଡିଙ୍ଗର୍, ବାଟା ନୁହେଁ ଟାଟା ।" (ଦ୍ର. ଡିଙ୍ଗର)

ଆଦିବାସୀ ମଣିଷ କିନ୍ତୁ ଏଇ ଡଙ୍ଗରକୁ କେତେବେଳେ ପୃଥିବୀ ବା ଦୁନିଆ ସହିତ ତୁଳନା କରେ ତ ଆଉ କେତେବେଳେ ହୃଦୟ ସହିତ ତୁଳନା କରିଥାଏ । କାରଣ ଡଙ୍ଗର ତାର ଜୀବନ । କଥା ଛଳରେ ସେ ତା'ର ସାଂଗସାଥୀଙ୍କୁ କହିଥାଏ -

"ବାର ମାସ ସିନା ବାଉଁଶ ଗଛ -

ଆମେ ଆସିଅଛୁ ଡଙ୍ଗର ଦେଖିବାର -

ଦିନ୍‌ମାନ୍ କେତେ କହିବାର ଆଛେ ।"

ଯାହାର ଅର୍ଥ : ବାରମାସ ଯାକ ସିନା ବାଉଁଶ ଗଛ କଅଁଳ ଥାଏ । ସେମିତି ତମର ଆମର ସଂପର୍କ । ଆମେତ ଅଳ୍ପଦିନ ପାଇଁ ଏଇ ଡଙ୍ଗର ଦେଖିବାକୁ ଆସିଚୁ । ଆସ କଅଁଳ ଥିବା ବାଉଁଶ ପରି ତମ ଆମ ସଂପର୍କକୁ ସଦା ସତେଜ ରଖିବା ଏବଂ ନିତିଦିନ ପାଇଁ ଯାହା ଅଛି ସବୁ କହିଦିଅ । ଏଠାରେ ଜୀବନ କାଳକୁ ବାଉଁଶ ଗଛପରି ସଦା ସତେଜ ରଖିବା ଏବଂ ଡଙ୍ଗରକୁ ପୃଥିବୀ ସହିତ ତୁଳନା କରି କୁହାଯାଇଛି ଯେ, ଯେତେଦିନ ଆମେ ଏଇ ପୃଥିବୀରେ ରହିବା, ସେତେଦିନ ସୁଖ, ଶାନ୍ତିରେ ପ୍ରେମ ପ୍ରଣୟ ଭାବ ନେଇ ବଞ୍ଚି ରହିବା । ଯାହାକୁ ଯାହା କହିବାକୁ ଅଛି ସବୁ କିଛି ମନଖୋଲି କହିଦେବା ।

ବସନ୍ତ ଋତୁ ଆସିଲେ ଆଦିବାସୀ ମଣିଷ ଡଙ୍ଗରେ ପାହାଡ଼ରେ ନିଆଁ ଲଗାଇ ଜଂଗଲର କିଛି ଅଂଶରୁ ଅରମା ଗଛ ଲତାକୁ ପୋଡ଼ି ଡଙ୍ଗର ଜମିକୁ ଚାଷ ପାଇଁ ପ୍ରସ୍ତୁତ କରେ । ଏଇ ଡଙ୍ଗରରେ ନିଆଁ ଲାଗିବା ସମୟ ସାଧାରଣତଃ ବସନ୍ତଋତୁ ବା ଚଇତ୍ର ମାସ ହୋଇଥିବାରୁ କନ୍ଧ ଯୁବତୀମାନେ ଏଇ ଡଙ୍ଗରରେ ନିଆଁ ଲାଗିବା ଦୃଶ୍ୟକୁ ହୃଦୟରେ ନିଆଁ ଲାଗିବା ସହିତ ତୁଳନା କରି ଅନେକ ଗୀତ ଗାଇଥାନ୍ତି । ସତ କହିବାକୁ ଗଲେ ଡଙ୍ଗର ହିଁ ଆଦିବାସୀ ସମାଜର ଜୀବନ । ଏଇଠୁ ସେ କନ୍ଦା କରଡ଼ି ସଂଗ୍ରହ କରିବାଠୁ ଚାଷବାସ କରି ଖାଦ୍ୟ ପଦାର୍ଥ ସଂଗ୍ରହ କରେ । ଏଇଠି ଘର କରି ମଧ୍ୟ ରହେ । କନ୍ଧମାନଙ୍କ ଏକ ଗୋଷ୍ଠୀଡଙ୍ଗରରେ ଘର କରି ରହୁଥିବାରୁ ସେମାନେ

ଡଙ୍ଗରିଆ କନ୍ଧ ବୋଲି ପରିଚୟ ଦେଇଥାନ୍ତି । ଡଙ୍ଗରରେ ଫଳୁଥିବା ଏକ ପ୍ରକାରର ବଡ଼ ବିରି ଜାତୀୟ ଫସଲକୁ ଏମାନେ 'ଡଙ୍ଗର ରାଣୀ' ନାମରେ ନାମିତ କରିଥାନ୍ତି । ଡଙ୍ଗର ଉପରେ ରହୁଥିବା ବହୁ ଆଦିବାସୀମାନଙ୍କ ଗ୍ରାମର ନାମ 'ଡଙ୍ଗରୀ ଗୁଡ଼ା' ଡଙ୍ଗରଛିଞ୍ଚି, ଡଙ୍ଗର ବେଜା, ଡଙ୍ଗରପାଉଁଶି, ଏବଂ ବହୁ ଲୋକଙ୍କ ନାମ ସହିତ ଡଙ୍ଗରୀ ସଂଜ୍ଞା ଜଡ଼ିତ ରହିଥାଏ । ଡଙ୍ଗର ଅଞ୍ଚଳରେ ଯେଉଁ ଯାତ୍ରା ହୁଏ - ତାହା ସାଧାରଣତଃ 'ଡଙ୍ଗର ଯାତ୍ରା' ଓ ଡଙ୍ଗରରେ ରହୁଥିବା ଦେବାଦେବୀ ମାନଙ୍କୁ ଡଙ୍ଗର ଦେବତା ବା ଡଙ୍ଗରଦେଈ କୁହାଯାଇଥାଏ । କୋରାପୁଟସ୍ଥ ଶାବର ଶ୍ରୀକ୍ଷେତ୍ର ତରଫରୁ ୨୦୦୧ ମସିହାରୁ ଡଙ୍ଗର ଯାତ୍ରା ନାମରେ ଏକ ଯାତ୍ରାର ପ୍ରଚଳନ କରାଯାଇଛି । ଏତଦ୍ ବ୍ୟତୀତ ଡଙ୍ଗରରେ ପୂଜିତ ଦେବାଦେବୀମାନଙ୍କ ମଧ୍ୟରେ ବୈପାରୀଗୁଡ଼ା ଅଞ୍ଚଳର '**ଡଙ୍ଗରଦେଈ**' ଠାକୁରାଣୀ ପ୍ରସିଦ୍ଧି ଲାଭ କରିଛନ୍ତି । ଏହି ଠାକୁରାଣୀ ପୀଠ ବୈପାରୀଗୁଡ଼ା ବ୍ଲକ୍‌ଠାରୁ ଦଶମନ୍ତପୁର ଯିବା ରାସ୍ତାରେ ଗିଲିପୁଟ ନିକଟସ୍ଥ 'ପୋଡ଼ାମାରୀ' ଠାରେ ଅବସ୍ଥିତ । ଏଠି ଆଗରୁ ଦେବୀଙ୍କ ନିକଟରେ ପୋଢ଼ମରା ହୋଇ ବଳି ପଡୁଥିଲା । ଦଶହରା ସମୟରେ ଏଠି ଅତି ଜାକଜମକରେ ସ୍ଥାନୀୟ ଆଦିବାସୀମାନେ ଦେବୀ ପୂଜା ଓ ଦଶହରା ଯାତ୍ରାର ଆୟୋଜନ କରିଥାନ୍ତି । ଏତଦ୍‌ବ୍ୟତୀତ ଅବିଭକ୍ତ କୋରାପୁଟ ଜିଲ୍ଲାର ସମସ୍ତ ଡଙ୍ଗର ଜମିକୁ ୩ ଭାଗରେ ବିଭକ୍ତ କରି ସର୍ବୋଚ୍ଚ ପାହାଡ଼ିଆ ଜମିକୁ ଡଙ୍ଗର-୧ , ମଧ୍ୟମ କିସମ ପାହାଡ଼ିଆ ଜମିକୁ ଡଙ୍ଗର-୨ ଓ ନିମ୍ନସ୍ଥ ଜମିକୁ ଜଂଗଲ-୩ ଭାବେ ଚିହ୍ନିତ କରାଯାଇଥାଏ ।

୪. **ଡଙ୍ଗର ଦେଈ** - *ଦେ.ବି. :* ଜଣେ ଦେବୀ ବିଶେଷ । ଭୂମିଆ ଉପଜାତିର ଉପାସ୍ୟ ଦେବୀ । ବରାଳୀ ଓ ଡଙ୍ଗର ଦେଈଙ୍କୁ ଦୁଇ ଭଉଣୀ ଭାବେ ଭୂମିଆ ସଂପ୍ରଦାୟଙ୍କ ବିଶ୍ୱାସ କରନ୍ତି । ପୁଣି କୁହାଯାଏ ବୀର ଖମ୍ବ ହେଉଛନ୍ତି ଡଙ୍ଗର ଦେବୀଙ୍କ ଭାଇ । ଡଙ୍ଗର ଦେଈଙ୍କୁ ଦଶରା, ଚଇତି ପରବରେ ବଳି ଦାନ ପୂର୍ବକ ପୂଜା କରାଯାଏ । ବୋରିଗୁମ୍ମା ନବରଂଗପୁର ରାସ୍ତାରେ କାମରାପାଖ ପାହାଡ଼ ଉପରେ ଆଉ ଏକ ଡଙ୍ଗର ଦେବୀଙ୍କ ମନ୍ଦିର ମଧ୍ୟ ପ୍ରସିଦ୍ଧ ।

୫. **ଡଙ୍ଗିଆବୋର** - *ଦେ.ବି. :* ସାନ ବଗିଚା, ଇଂ.- Kichen garden ବଣ୍ଡାମାନେ ନିଜ ଘରକୁ ଲଗାଇ ତିଆରି କରିଥାନ୍ତି ଡଙ୍ଗିଆ ବୋର, ଯେଉଁଥିରେ ଚାରିପଟେ ବାଉଁଶ ତାଟି ଘେରା ଯାଇ ପନିପରିବା ଲଗାଯାଇଥାଏ ।

୬. ଡଣ୍ଡିଆ - *ଦେ.ବି. :* ଏକ ବିଷହୀନ ପାଣିସାପ । ଇଂ.- A non Poisonous Snake. ଧଣ୍ଡ ସାପ । ମୁଖ୍ୟତଃ ପାଣିରେ ରହେ । ବିଷ ନଥାଏ । କିଛି ସଂପ୍ରଦାୟର ଆଦିବାସୀ ଡଣ୍ଡିଆ ସାପକୁ ଖାଦ୍ୟ ରୂପେ ବ୍ୟବହାର କରିଥାନ୍ତି ।

୭. ଡୋର୍ - *ଦେ.ବି. :* ଦଉଡ଼ି-ରସି-ପଘା-ଡୋର୍ : ଇଂ.- Rope, String

ଏହି ଦଉଡ଼ି, ରସି ବା ଡୋର୍ ଆଦିବାସୀ ସମାଜରେ ଏକ ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟ । ବଣରୁ କାଠ କାଟି ବାନ୍ଧି କରି ଆଣିବା, ଗୃହପାଳିତ ପଶୁପକ୍ଷୀଙ୍କୁ ବାନ୍ଧିବା, ବାଡ଼ ବାନ୍ଧିବା, ଘର ଛପର କରିବା, କାଉଡ଼ି ବା ଭାରରେ ଜିନିଷ ରହିବାପାଇଁ ଏମାନେ ଏହି ଦଉଡ଼ି ବା ଡୋର୍‌କୁ ବ୍ୟବହାର କରିଥାନ୍ତି । ଏହା ଝୋଟ, କତା, ସିଆଡ଼ି, ମୁର୍ଗା କିମ୍ବା କୌଣସି ଗଛର ତନ୍ତୁର ତିଆରି କରାଯାଇଥାଏ । ଆଦିବାସୀମାନେ ବିଶେଷ କରି ସିଆଡ଼ି ଲଟାର ତନ୍ତୁରୁ ତିଆରି ଡୋର ଏବଂ ଆହୁରି ଅନେକ ଗଛର ଛାଲି ବା ସେଥିରେ ମାଡ଼ିଥିବା ସରୁସରୁ ଲଟାକୁ ଶୁଖାଇ ନିଜ ଘରର ଛପର ତଥା ବାଡ଼ ବନ୍ଧା ଇତ୍ୟାଦି କାମରେ ଯେମିତି ବ୍ୟବହାର କରିଥାନ୍ତି, ସେମିତି ଛଣ ବା ଝୋଟରେ ତିଆରି ରସିରେ ଏମାନେ ଶିକା ତଥା ଗୃହପାଳିତ ପଶୁମାନଙ୍କ ପାଇଁ ପଘା ତିଆରି କରିଥାନ୍ତି । ଆଜିକାଲି ଏକ ଅଭିନବ ଉପାୟରେ ଆଦିବାସୀ କାରିଗରମାନେ ପ୍ଲାଷ୍ଟିକ୍ ଅଖା ବା ଜରିଖୋଳରୁ ଡୋର ତିଆରି କରୁଛନ୍ତି ।

୮. ଡର୍‌ଲି ନଦୀ - *ଦେ.ବି. :* ଏକ ଗିରିନଦୀର ନାମ ବିଶେଷ । ଅଧୁନା ଏହା ମାଲକାନଗିରି ଜିଲ୍ଲାର ମାଥିଲି ବ୍ଲକ୍‌ରେ ପ୍ରବାହିତ । ଡର୍‌ଲୀ ନଦୀ ତୁଲ୍‌ସା ପର୍ବତ ସେପଟେ ଥିବା ମୁଣ୍ଡାଗଡ଼ ପର୍ବତରୁ ବାହାରି ସନାପଦର ଗାଁ ପାଖେ ସାବେରୀ ନଦୀରେ ମିଶିଛି । ଡଙ୍ଗରରେ ବର୍ଷା ହେଲେ ଏଥିରେ ଦର୍‌ଦର୍ କରି ବନ ପାଣି ମାଡ଼ିଆସେ ଓ ବାଟରେ ଯାହାକୁ ପାଏ ତାକୁ ଧରି ନେଇଯାଏ । ସେଥିପାଇଁ ତାକୁ ଦର୍ଲି ବା ଡର୍ଲି କୁହାଯାଏ । ପୂର୍ବକାଳରେ ବର୍ଷଯାକ ଏ ନଈ ଶୁଖିଲା ରହି ବର୍ଷା ହେଲେ ଯାଇ ବାହାରୁଥିଲା । ଧୀରେଧୀରେ ଏହାର ଶଯ୍ୟା ବିସ୍ତାର ହୋଇ ଏହା ଏକ ବଡ଼ ଗିରି ନଦୀରେ ପରିଣତ ହୋଇଛି । ଏଥିରେ ସବୁବେଳେ ପାଣି ରହୁଛି । ବର୍ଷାଦିନେ ଏହାର ସୁଅ ଅତି ପ୍ରଖର । ଏବେ ହଳଦୀକୁଣ୍ଡ ଠାରେ ଏହା ଉପରେ ଏକ ପୋଲ ନିର୍ମାଣ ହୋଇଛି ।

୯. ଡଲ୍ ଯାତ୍ରା - *ଦେ.ବି. :* ଏହା ଏକ ପୂଜାନୁଷ୍ଠାନ ବିଶେଷ । ବିଶେଷକରି ଭୂମିଆ ସଂପ୍ରଦାୟରେ ନୂଆ ମହୁଲର ମଦ ରାନ୍ଧି ପ୍ରଥମେ ପିତୃ ଦେବତାଙ୍କୁ ବା ଆନିଦାଦିଙ୍କୁ ଏହି ଯାତ୍ରାରେ ପୂଜା କରନ୍ତି । ଦୋଳ ପୂର୍ଣ୍ଣିମା ବାସୀ ଦିନ ଏହି ଯାତ୍ରା ହୁଏ । ହଳପୋଡ଼ଇକୁ ହଲ୍ ଓ ତାର ବାସୀ ଦିନର ଏହି ଯାତ୍ରାକୁ ଡର୍ଲ, ଏହିଭଳି ହଲ୍-ଡଲ୍ କୁହାଯାଏ ।

୧୦. ଡଲିୟଙ୍ଗ୍ - *ଦେ.ବି. :* ବୃକ୍ଷର ଆତ୍ମା । ଇଂ- Sprit of the tree. ବଣ୍ଡା ମଣିଷ ଯେ କୌଣସି ବୃକ୍ଷର ଆତ୍ମାକୁ 'ଡଲିୟଙ୍ଗ୍' ବୋଲି ବିଶ୍ୱାସ କରନ୍ତି । କୌଣସି ଲୋକକୁ ରକ୍ତ ବାନ୍ତି ହେଲେ ସୀସା (ପୂଜାରୀ) କୌଣସି ଏକ ପ୍ରବାହିତ ଜଳ ଉତ୍ସ (ନଦୀ / ଝରଣା / ଝୋଲା) ନିକଟରେ ଡଲିୟଙ୍ଗ୍‌ଙ୍କୁ ପୂଜା କରିଥାଏ । ଏହି ବୃକ୍ଷ ଦେବତାଙ୍କର ପୂଜା ଅନ୍ୟ ସମସ୍ତ ଆଦିବାସୀ ସଂପ୍ରଦାୟରେ ମଧ ପ୍ରଚଳିତ ।

୧୧. ଡାଙ୍ଗଯାତ୍ରା - *ଦେ.ବି. :* ଏକ ପୂଜାନୁଷ୍ଠାନ ଓ ଯାତ୍ରା ବିଶେଷ । ଏହି ପୂଜା । ଦିଆଲି ପରବ ସମୟରେ ଅନୁଷ୍ଠିତ ହୁଏ । ଗୋଟିଏ ଗାଁର ୩/୪ଜଣ ଗୋରୁ ଜଗାଳି ଥାଆନ୍ତି । ସେମାନଙ୍କୁ ଗାଁରେ ଗାଣ୍ଡା (ହୁଲିଆଜାରୀ କରିବା ଲୋକ) ଜଣାଇଦିଏ ଯେ, ଅମୁକ ଦିନ ଗାଁରେ ଡାଙ୍ଗଯାତ୍ରା ହେବ । ସେହିଦିନ ଗାଁର ଘରଣୀମାନେ କୁଲାରେ କୁଲେ ଧାନ ଓ ତା' ଉପରେ ଗୋଟିଏ ଦୀପ ରଖି ଗାଁର ସଦର ଦାଣ୍ଡରେ ରଖନ୍ତି । ପରେ ଗଉଡ଼ମାନେ ଗାଇଗୋରୁଙ୍କୁ ବାଡ଼େଇବା ପାଇଁ ବ୍ୟବହାର କରୁଥିବା ଡାଙ୍ଗ ସବୁକୁ ଏକାଠି କରି ଅଣ୍ଡା, କୁକୁଡ଼ା, ମଦ ଉପଚାର ଦ୍ୱାରା ପୂଜା କରିଥାନ୍ତି । ଗୃହିଣୀମାନେ ନେଇଥିବା ଧାନ ସବୁକୁ ଗଉଡ଼ମାନେ ବାଣ୍ଟାକରି ନେଇଯାନ୍ତି ଏବଂ ଗୃହିଣୀମାନଙ୍କୁ ଲଡୁ ଖାଉଣୀ ନାଁରେ କିଛି ପଇସା ଦିଅନ୍ତି । ଯେଉଁ ଗୃହିଣୀ କୁଲାର ଧାନକୁ ଗୋରୁ ଗାଇ ଖାଆନ୍ତି, ସେ ଗଉଡ଼ ମାନଙ୍କୁ ଅଧିକ ଧାନ ଦେଇଥାଏ । ଏହାପରେ ସବୁ ଗଉଡ଼ ଏକାଠି ମିଳି କାଦୁଅ ବୋଳି ହୋଇ କିକରିନାଟ କରନ୍ତି ।

୧୨. ଡାଣ୍ଡା - *ଦେ.ବି. :* ଆଖୁ ଗଛ । ଇଂ- Suger cane

(କ) ଡାଣ୍ଡାରସ : *ଦେ.ବି. :* ଆଖୁକୁ ପେଡ଼ିଲେ ଯେଉଁ ରସ (ଓଡ଼ିଆ: ଦୋରୁଅ) ବାହାରିଥାଏ ତାହାକୁ ଡାଣ୍ଡାରସ କହନ୍ତି ।

(ଖ) ଡାଣ୍ଡାରସ ଦେ.ବି. : ଲୋକଗୀତରେ ପ୍ରତୀକ ଭାବେ ଏହାକୁ ବ୍ୟବହାର କରାଯାଏ । ଦେଶିଆ ଭାଷାରେ ରସବତୀ ବା ପୂର୍ଣ୍ଣଯୌବନା ଯୁବତୀ ଅର୍ଥରେ ଏହି ପ୍ରତୀକ ଲାଗୁ ହୁଏ ।

ଉଦାହରଣ : ତୁଇ ଡାଣ୍ଡାରସ, ପୁନିଅ ଜନ

ତକେ ଦେକି ମନଛନ ।

(ତୁ ଆଖୁରସ ପରି ମଧୁର ଯେ, ପୂର୍ଣ୍ଣମୀର ଜହ୍ନ ପରି ସୁନ୍ଦର ଯେ, ତୋତେ ଦେଖିଲା ବେଳୁ ମୋ ମନ ଉଛନ୍ନ ହେଲାଣି ।)

(ଗ) ବେଲାଗୁଡ଼ - ଆଖୁରସରୁ ପ୍ରସ୍ତୁତ ଖଣ୍ଡ ଗୁଡ଼ । ତାହା ବେଲା ବା ବଡ଼ପାତ୍ର ସାଇଜ୍‌ର ହୋଇଥାଏ ।

ଆଦିବାସୀ ଅଞ୍ଚଳରେ (ଅବିଭକ୍ତ କୋରାପୁଟ)ପାରମ୍ପରିକ ପଦ୍ଧତିରେ ଏବେ ମଧ ଡାଣ୍ଡାରସରୁ ଗୁଡ଼ ପ୍ରସ୍ତୁତ ହେଉଛି । ପ୍ରଥମେ ଏକ ବଡ଼ ପାତ୍ରରେ ଡାଣ୍ଡାରସକୁ ନିଆଁରେ ଫୁଟାଇ ଜଳୀୟ ଅଂଶ ବାହାରିକରି, ଏକ ବଡ଼ବେଲାରେ ଶୀତଳକରି ବେଲାଗୁଡ଼ ପ୍ରସ୍ତୁତ କରିଥାନ୍ତି । ଥଣ୍ଡା ଓ ଘନ ହେବାପରେ ଏହାକୁ ବେଲାରୁ ବାହାର କରି ବିକ୍ରି କରାଯାଏ ଓ ମଦ ପ୍ରସ୍ତୁତ ହୁଏ ।

୧୩. ଡାଣ୍ଡିଆ - ଦେ.ବି. : ବାଉଁଶ ବା କାଠ ତିଆରି ଭାର ବୁହା ଦଣ୍ଡ । ଆଦିବାସୀମାନେ ବେଣ୍ଟ କରି ଶିକାର ପାଇବାପରେ ଦୁଇଟି ଲମ୍ବା କାଠକୁ ସମାନ୍ତର ଭାବେ ବାନ୍ଧି ଧାଡ଼ିରେ କେତୋଟି ସରୁ କାଠକୁ ଯୋଡ଼ି ସିଡ଼ି ଭଳିଆ କରନ୍ତି । ଏହା ଉପରେ ଶିକାରକୁ ଲଦି ଏହା ଉପରେ ବଣୁଆ ଫୁଲ, କଅଁଳ ଡାଳ ଘୋଡ଼ାଇ କାନ୍ଧରେ ବୋହି ଆଣନ୍ତି । ଏହାକୁ 'ଡାଣ୍ଡିଆ' କୁହାଯାଏ । ଅଣ ଆଦିବାସୀ ସଂପ୍ରଦାୟର କୋକେଇ ସହ ଏହା ତୁଳନୀୟ । ମୃତ୍ୟୁପରେ କାଠ ବା ବାଉଁଶର ଡାଣ୍ଡିଆରେ ଶବ ବୁହାଯାଏ ।

୧୪. ଡାବପିରି - ଦେ.ବି. : ଏକ ଜଂଗଲୀ ତୃଣ ବିଶେଷ । ଦାବ୍ - ଗଛର ପତ୍ର - ଏକ ସରୁସରୁ ଲମ୍ବାପତ୍ର ଥିବା ତୃଣ । ତୀକ୍ଷ୍ଣ ଧାର ବିଶିଷ୍ଟ ଏକ ପ୍ରକାର ତୃଣର ପତ୍ର । ଏହାକୁ ଘର ଛପର ସମୟରେ ଅନ୍ୟାନ୍ୟ ନରମ ପିରି ବା ନଡ଼ା ସହ ବ୍ୟବହାର

କରାଯାଏ । ଏହି ପତ୍ରକୁ ଗୋରୁ ଗାଈ ଖଆନ୍ତି ନାହିଁ । ତେଣୁ ଘରଛପର ପାଇଁ ବିଶେଷ କରି ଗୋରୁ ମୁହଁ ବଢ଼ାଇ ଛୁଇଁ ପାରୁଥିବା ଚାଳ ଅଂଶ ବା 'ଉଛୁନା'କୁ ଏହି ପିରି ଦ୍ୱାରା ଛପର କରାଯାଏ ।

୧୫. **ଡାବେଣୀ** - *ଦେ.ବି. :* ଅର୍ନ୍ତବାସ : ଭିତରେ ପିନ୍ଧା ବସ୍ତ୍ର : ଇଂ- Under-garment

ଆଦିବାସୀ ମହିଳାମାନେ ଶାଢ଼ି ତଳେ ଲେଙ୍ଗୁଡ଼ି ପରି ପିନ୍ଧୁଥିବା ଛୋଟ କପଡ଼ାକୁ 'ଡାବେଣୀ' କୁହାଯାଇଥାଏ । ଏମାନେ ଦେହରେ ପିନ୍ଧୁଥିବା ଶାଢ଼ି ବା ଖଦିପଟାକୁ ସବୁବେଳେ ଧୁଅନ୍ତି ନାହିଁ । ମାତ୍ର ଗାଧୋଇବା ବେଳେ ପ୍ରତିଦିନ ଅର୍ନ୍ତବାସକୁ ଧୋଇ ଶୁଖାଇ ପିନ୍ଧିଥାନ୍ତି । ଏହା ପୁରୁଷମାନଙ୍କର କୌପୁନୀ ବା ଲେଙ୍ଗୁଟି ସହ ତୁଳନୀୟ ।

୧୬. **ଡାଲଖାଇ** - *ଦେ.ବି. :* ଠାକୁରାଣୀ ବିଶେଷ । କୋରାପୁଟ ଜିଲ୍ଲାର ବୈପାରୀଗୁଡ଼ା ତେଇଁ ରାମଗିରି ପଟେ ଡକରା ଡକରି ଘାଟ ଅତିକ୍ରମ କଲେ ପଡ଼େ ଗୁପ୍ତେଶ୍ୱର ଶୈବପୀଠ । ଡକରାଡକରୀ ଘାଟି ଅତ୍ୟନ୍ତ ତୀଖ ଘାଟୀ ହୋଇଥିବାରୁ ନିରାପଦରେ ଏହି ଘାଟି ଅତିକ୍ରମ କରିବାପାଇଁ ଘାଟିର ଏକ ସ୍ଥାନରେ ଦେଶିଆ ମଣିଷ ସ୍ଥାପନ କରିଛି ଡାଲଖାଇ ଠାକୁରାଣୀ ଆସ୍ଥାନ । ପଥଚାରୀମାନେ ସେଠି ପହଞ୍ଚି ନିରାପଦ ଯାତ୍ରା ପାଇଁ ନିକଟସ୍ଥ ଜଂଗଲର କୌଣସି ଗଛରୁ ଡାଳଖଣ୍ଡେ ଭାଂଗି ସେଠି ସମର୍ପଣ କରନ୍ତି । ଏଣୁ ସେହି ଆସ୍ଥାନର ଦେବୀ କାଳକ୍ରମେ ଲୋକମୁଖରେ ଡାଲଖାଇ ଠାକୁରାଣୀ ରୂପେ ପରିଚିତା ହୋଇଛନ୍ତି । ଏହିପରି ଅବିଭକ୍ତ କୋରାପୁଟ ଜିଲ୍ଲାର ଅନେକ ସ୍ଥାନରେ ତଥା ପଶ୍ଚିମ ଓଡ଼ିଶାର ଅନେକ ଜାଗାରେ ଏ ଠାକୁରାଣୀ ରହିଛନ୍ତି । ଡାଲଖାଇ ଦେବୀଙ୍କ ସମ୍ମାନରେ ପଶ୍ଚିମ ଓଡ଼ଇଶାରେ ଡାଲଖାଇ ନୃତ୍ୟ ଓ ଗୀତ ପ୍ରଚଳିତ ଓ ବେଶ୍ ଜନପ୍ରିୟ । ଡାଲଖାଇ ଗୀତ ଗୁଡ଼ିକର ଆରମ୍ଭ ଓ ଶେଷରେ 'ଡାଲ୍‌ଖାଇରେ ବା ଡାଲ୍‌ଖାଇ ବୋ....' ପଦକୁ ଘୋଷାରୂପେ ବ୍ୟବହାର କରାଯାଉଥିବାରୁ ଏହାକୁ ଡାଲ୍‌ଖାଇ ଗୀତ କୁହାଯାଏ । ଏହି ଗୀତ ଅନୁରୂପ ନୃତ୍ୟ ମଧ ଏକ ଲୋକନୃତ୍ୟ । ଏହା ପଶ୍ଚିମ ଓ ଦକ୍ଷିଣ ଓଡ଼ିଶାର କେତେକ ଅଞ୍ଚଳରେ ମଧ ପ୍ରଚଳିତ । ଡାଲଖାଇ ଦେବୀ ସବୁବେଳେ ମନ୍ଦିର ବିହୀନ ।

୧୭. ଡାଲ୍‌ମୂଲିଆଗୀତ - *ଦେ.ବି. :* ଚଇତି ପରବରେ ଗାନ କରାଯାଉଥିବା ବାର୍‌ ପ୍ରକାର କେନ୍ଦା ବା ଗୀତରୁ ଏହା ଅନ୍ୟତମ । ଚଇତି ପର୍ବରେ ଗାନ କରାଯାଉଥିବା ଏକ ପ୍ରକାର ଗୀତ ।

ଡାଳମୂଲ ଗୀତ : ଆଦିବାସୀ ଲୋକେ ଦେହକୁ ଗୋଟିଏ ଗଛ ସହିତ ତୁଳନା କଲାବେଳେ ଜୀବନକୁ ଏହାର ମୂଳ ଭାବେ ଗ୍ରହଣ କରିଥାନ୍ତି । ଜନ୍ମଠାରୁ ମୃତ୍ୟୁଯାଏ ଜୀବନର ସମସ୍ତ କଥାକୁ ଯେଉଁ ଗୀତରେ ପ୍ରକାଶ କରାଯାଏ ତାହା ହିଁ ଡାଳମୂଳିଆ ଗୀତ ଭାବେ ନାମିତ ହୋଇଥାଏ ।

ଉଦାହରଣ : "ରସରୁ ରସିକା ଭାବରୁ ଭାବିକା ଏ ରସରୁ ରସ ନାହିଁ,

ଚଇତି ପରବ୍ ଡାଲମୂଲିଆ ଗୀତ ଜୀବନ୍ ଯାଉ ଗାଇଗାଇ ।" ଜୀବନରେ ଜନ୍ମରୁ ମୃତ୍ୟୁ ଯାଏ ମାନବୀୟ ଅନୁଭବର ଏହା ହେଉଛି ପ୍ରତୀକ ଧର୍ମୀ ଗୀତ । ସାଧାରଣତଃ ସମସ୍ତ ଦେଶିଆ ଲୋକଗୀତରେ ଡାଲମୂଲ୍ୟାଗୀତ ପ୍ରମୁଖ ସ୍ଥାନ ଗ୍ରହଣ କରିଥାଏ ।

ଉଦାହରଣ :

ନଦୀ ଖଣ୍ଡି ଲଗେ ମହୁଲ ଗଛ,
ଶୁଖା ଖାଇଗଲା ରସ,
ଭେଣ୍ଡିଆ ପିଲାର ମୋହନି ଓଷ
ଆକି ମାରିଦେଲେ ଆସ ।

ଅର୍ଥାତ୍ - ଦେଖ, ନଈ ତଟରେ ମହୁଲଗଛକୁ । ମହୁଲ ଫୁଲର ରସକୁ ଶୁଆ ଥଣ୍ଟ ମାରି ଖାଇଲା ପରି ମୁଁ ତୁମକୁ ଆଖିରେ ଆଖିରେ ସଂକେତ ଦେଉଛି, ଭେଣ୍ଡିଆ ପିଲାର ଯୌନ ଉନ୍ମାଦକୁ ଭୋଗ କରିବାକୁ ଆସ । (ଧାଙ୍ଗଡ଼ାର ଧାଙ୍ଗିଡ଼ୀ ପ୍ରତିଗୀତ) ।

୧୮. ଡାଲ୍ ସୟର - *ଦେ.ବି. :* ଚଇତି ପର୍ବ ସମୟରେ ଅନୁଷ୍ଠାନ ବିଶେଷ । ସ୍ତ୍ରୀମାନଙ୍କ ପ୍ରତୀକ ସୟର ଶିକାର । ଚୈତ୍ର ପରବର ଚତୁର୍ଥ ଦିବସରେ ଏହା ଅନୁଷ୍ଠିତ ହୁଏ । ଯେତେବେଳେ ଗ୍ରାମର ସମସ୍ତ ପୁରୁଷ ଜଂଗଲକୁ ବେଣ୍ଟପାଇଁ ଚାଲିଯାଆନ୍ତି । ସେତେବେଳେ ସ୍ତ୍ରୀମାନେ ପ୍ରତୀକ ଶିକାର କରନ୍ତି । ଦିଶାରୀ ଜଣକ ନାମ କରିଥାଏ । ଅମୁକ ନାମର ସ୍ତ୍ରୀଲୋକଟି ସୟର ହେବ ଏବଂ ସମୁକ ନାମଧାରିଣୀ ସ୍ତ୍ରୀଲୋକଟି

ଶିକାରୀ ବେଶରେ ଶିକାର କରିବ । ମାଟି ଓ ଗୋବରରେ ପିତୁଳି ତିଆରି କରାଯାଇଥାଏ । ଉକ୍ତ ପିତୁଳିରେ ପୁରୁଷର ସମସ୍ତ ଲକ୍ଷଣ ସୂଚିତ ହୋଇଥାଏ । ତାହା ହାତରେ ଧନୁତୀର ଧରାଇ ଦିଆଯାଇଥାଏ ଏବଂ ତାକୁ ଏକ ପିତୁଳି ଶିକାର କରୁଥାଏ । ଯେତେବେଳେ ଶିକାରୀ ବେଶି ସ୍ତ୍ରୀ ଲୋକ ସମ୍ବର ବେଶୀ ସ୍ତ୍ରୀକୁ ଧନୁଶରରେ ଧୀରେ ମାରିଦିଏ, ସିଏ ତଳେ ପଡ଼ିଯାଏ । ପରେ ଛଅଜଣ ସ୍ତ୍ରୀ ଲୋକ ସରଗି (ଶାଳ) ଡାଳ କାନ୍ଧରେ ଦେଇ ତାକୁ ବୋହି ନାଚିନାଚି ଘରଘର ବୁଲି ଚାଉଳ ପଇସା ମାଗନ୍ତି । ଢେମସା ଚାଲିଥାଏ । ଏହି ଅନୁଷ୍ଠାନ ଓ ତତ୍ସଂପୃକ୍ତ ନୃତ୍ୟ କେବଳ ନାରୀମାନଙ୍କ ଦ୍ୱାରା ଅନୁଷ୍ଠିତ ହୁଏ ।

୧୯. **ଡିଆସୁଂ** - *ଦେ.ବି. :* ବଣ୍ଡାକନ୍ୟାର ଶାଶୁଘର ଯାତ୍ରା ପ୍ରଥା । ବିବାହ ପରେ ବଣ୍ଡା କନ୍ୟା କିମିବଏ ଶାଶୁଘରକୁ ପଠାଇବା ପ୍ରଥା । ପୌଷ ପର୍ବ ବା ସୁମେଗେଲିରାକ୍ ସମୟରେ ବଣ୍ଡା ଝିଅ ଶାଶୁଘରକୁ ପଠାଯାଏ ।

୨୦. **ଡିଙ୍ଗର** - *ଦେ.ବି. :* (୧) ସର୍ବହରା, ଇଂ- Havenots. (୨) ଲଢୁଆ ଗାଈ । ଇଂ- Fighting Cow

ପ୍ରଥମ ଅର୍ଥରେ ଏହି ଶବ୍ଦଟି ଅଧିକ ବ୍ୟବହାର ହୋଇଥାଏ । ଏ ନେଇ ଏକ ଦେଶିଆ ପ୍ରବଚନ ରହିଛି । ଯଥା :

ଡଙ୍ଗର ନାହିଁ ଡିଙ୍ଗର
ବାଟା ନାହିଁ ଟା ଟା ।"

ଅର୍ଥାତ୍, ଡଙ୍ଗର ଜମି ଚାଷକଲେ ପ୍ରଥମେ ତାହା ଭଲ ଫସଲ ଦେଇଥାଏ ଓ ସେଇ ଲୋକଟିକୁ ଊର୍ଦ୍ଧ୍ୱକୁ ଉଠାଇ ଦିଏ । କିନ୍ତୁ ସେ ଯଦି ସେଇ ଡଙ୍ଗରକୁ ଭରସା କରି ରହେ ତେବେ ଡିଙ୍ଗର ବା ସର୍ବହରା ହୋଇଯିବ । ବାଟା ହେଉଛି ଭଲ ଜମି । ବର୍ଷା ହେଲେ ଚାଷ । ବର୍ଷା ନ ହେଲେ ମରୁଡ଼ି ବା ଟାଟା ।

୨୧. **ଡିଣ୍ଡା / ଦିଣ୍ଡା** - *ଦେ.ବି. :* ଅବିବାହିତା କନ୍ୟା, କୁମାରୀ କନ୍ୟା । ଇଂ- Virgin ବୟୋଃପ୍ରାପ୍ତ କନ୍ୟା । ଆଦିବାସୀ ସଂପ୍ରଦାୟରେ କନ୍ୟାଟି ରଜବତୀ ହେଲେ ସେହି କନ୍ୟାକୁ ଡିଣ୍ଡା କୁହାଯାଏ । ଏହା କୁମାରୀ ଅର୍ଥରେ ମଧ ବ୍ୟବହୃତ ହୁଏ । ଆଦିବାସୀ ସଂସ୍କୃତିରେ ଡିଣ୍ଡାମାନଙ୍କର ଅବଦାନ ସ୍ୱତନ୍ତ୍ର । କାରଣ ନୃତ୍ୟଗୀତରେ ଏମାନେ ଅଗ୍ରଣୀ ଭୂମିକା ଗ୍ରହଣ କରିଥାନ୍ତି ।

୨୨. ଡିଣ୍ଡାଘାଟି - *ଦେ.ବି.* : ଏକ ଘାଟିର ନାମ । ଅବିବାହିତମାନଙ୍କ ଘାଟି ରାସ୍ତା ବା ବିବାହିତମାନଙ୍କ ପାଇଁ ଅପେକ୍ଷା କରିବାର ବାଟ ବୋଲି ଏହି ଡିଣ୍ଡାଘାଟିକୁ କୁହାଯାଏ । ନାରାୟଣପାଟଣାଠାରୁ ପାର୍ବତୀପୁର ଯିବା ରାସ୍ତାରେ ପଡୁଥିବା ଏହି ଡିଣ୍ଡାଘାଟି ଦେଇ ଏକଦା ଜୟପୁରର ମହାରାଜା ବିଶ୍ୱମ୍ଭର ଦେବ କନ୍ଧ କନ୍ୟା ଚମ୍ପାବତୀକୁ ବିବାହ କରି ଫେରିଥିଲେ । ସେତେବେଳେ ନାରାୟଣ ପାଟଣା ଅଞ୍ଚଳର ସମସ୍ତ ଅବିବାହିତ ବା ଡିଣ୍ଡା କନ୍ଧ କନ୍ୟା ସମବେତ ହୋଇ ଏହି ଘାଟି ରାସ୍ତାରେ ରାଜା ଓ ରାଣୀଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଥିଲେ । ସେହିଦିନଠାରୁ ରାଜା ବିଶ୍ୱମ୍ଭର ଦେବ ଏହି ଘାଟିକୁ 'ଡିଣ୍ଡା ଘାଟି' ନାମରେ ନାମିତ କରିଥିଲେ ।

୨୩. ଡିଣ୍ଡା ପାନି - *ଦେ.ବି.* : ବିବାହ ସମୟର ଅନୁଷ୍ଠାନ ବିଶେଷ । ପାଣିରକାଣି ବେଳେ ଓ ବିଭାବେଳେ ଦିଶାରୀ କହିବା ଯୋଗ ଅନୁସାରେ ପାହାନ୍ତିଆରୁ ପାଖରେ ଥିବା ଜଳଉତ୍ସରୁ ଶୁଭପାଣି ଅଣାଯାଏ । ଏହାଦ୍ୱାରା ବରକନ୍ୟାଙ୍କୁ ଗାଧୁଆଯାଏ । ଏହାକୁ 'ଡିଣ୍ଡାପାନି' କହନ୍ତି । ଗାଧୋଇବା ପୂର୍ବରୁ ସେମାନଙ୍କୁ ହଳଦୀବଟା ଲଗାଯାଇଥାଏ । ଏବଂ ଗାଧୁଆପରେ ନୂଆବସ୍ତ୍ର ପିନ୍ଧାଯାଏ । ବିବାହ ବେଳେ ଝିଅକୁ ଗାଧୋଇ ଦିଆଯିବାର ପ୍ରଥାକୁ ଡିଣ୍ଡାପାନ ବୋଲି କୁହାଯାଏ । ଅର୍ଥାତ୍ ଏହାପରେ ସେ ଡିଣ୍ଡା ଜୀବନରୁ ବା କୁମାରୀ ଜୀବନରୁ ଅବସର ନେଇଥାଏ । ଅଣଆଦିବାସୀ ସଂପ୍ରଦାୟରେ ଏହି ଡିଣ୍ଡାପାନି ପ୍ରଥାକୁ ବାଡୁଅ ପାଣି ବା କୋଇଲି ପାଣି ବୋଲି କୁହାଯାଇଥାଏ ।

୨୪. ଡିଣ୍ଡା ହେବା - *ଦେ.କ୍ରି.* : ଝିଅ ପ୍ରଥମ ରଜସ୍ୱଳା ହେବା । ଝିଅ ପ୍ରଥମେ ରଜସ୍ୱଳା ହେଲେ ବା ଡିଣ୍ଡା ହେଲେ ତାକୁ ଏକ ଅନ୍ଧାର ଘରେ ନଅ ଦିନ କାଳ ବସାଯାଏ । ଯେଉଁ ଜାଗାରେ ଝିଅ ବସିଥାଏ ତା'ର ଚାରିପଟେ ଧନୁଶର ପୋତି ଧନୁଶରକୁ ସାତ ଘେରି କରି ସୂତା ଗୁଡ଼ା ଯାଇଥାଏ । ଝିଅ ବସିବା ବା ଶୋଇବା ସ୍ଥାନର ଚାରିପଟେ ଆୟତକାର ଆକାରରେ ଧାନ ଚାଉଳରେ ସଜାଇ ଘର ତିଆରି କରାଯାଇଥାଏ । ଏହି ଡିଣ୍ଡା ସମୟରେ ଲୁଣ, ମରିଚ, ତେଲ, ଖାଇବା ମନା । ସେହି ସମୟରେ ମିଠା ଭାତ ଓ କ୍ଷୀର ଆଦି ଦିଆଯାଏ । ନଦୀକୁ ନେଇ ନଅ ଦିନର ପାହାନ୍ତିଆରେ ଗାଧୁଆ ଯାଏ । ଔଷଧ ସିଝା ଯାଇଥାଏ । ନଅଦିନ ଦିନ ପାହାନ୍ତିଆରେ ଲାଉତୁମ୍ବାରେ ଓଷ ପୁରାଇ ଗାଧୁଆ ପୂର୍ବରୁ ଝିଅ ମୁଣ୍ଡରେ ଢଳାଯାଏ । ଦିଶାରୀ ନଦୀ

କୂଳକୁ ଯାଇଥାଏ, ଝିଅକୁ ଲୁଗାବାଡ଼ କରି ରଖାଯାଏ । ଦିଶାରୀ ନବଗ୍ରହ କୋଠି କାଟି ପୂଜା କଲାପରେ ପଞ୍ଚାମୃତ ଝିଅ ମୁଣ୍ଡରେ ଛିଞ୍ଚେ । ତାହା ପରେ ପୁରୁଷ ବ୍ୟକ୍ତି ତାହାକୁ ଦେଖନ୍ତି । ଗାଧୋଇସାରି ଘରକୁ ଫେରିବା ପରେ ଘୋରଣା (ଚକି) ଉପରେ ତାକୁ ବସାଇ ପୁଣି ଗାଧୋଇ ଦିଆଯାଏ । ଏହାପରେ ତାକୁ ବେଦି ଉପରେ ବା ଘରେ ନୂଆ ଲୁଗା ପିନ୍ଧାଇ ବସାଯାଏ । ତାର କୋଳରେ ଏକ ବେସରବଟା ପଥରକୁ ପୁଅ ବା ଝିଅ ବୋଲି ଧରାଇ ଦିଆଯାଏ । ତାପରେ ଗାଁର ଝିଅବୋହୂ ଯାଇ ଚାଉଳ ପକାଇ ତାକୁ ବନ୍ଦାପନା କରନ୍ତି ଓ ଭୋଜିଭାତ ଖାଇ ଘରକୁ ଫେରନ୍ତି । ଏହି ଉତ୍ସବ ପରିବାର ମୁଖ୍ୟଙ୍କ ପାଇଁ ଗର୍ବ ଓ ଆନନ୍ଦର ବିଷୟ । ଉତ୍ସବ ଜରିଆରେ ଆଦିବାସୀ ଯୁବକମାନଙ୍କୁ ଏକ ଅଲେଖ ସନ୍ଦେଶ ପଠାଯାଇଥାଏ । (ଦ୍ର. ଜୁଗୁତାଙ୍ଗିୟନ)

୨୫. ଡିସାରା / ଡିସାରି - *ଦେ.ବି.* : ଦିଶାରୀ । ଯୋଗ ନିରୀକ୍ଷକ ଯେ କୌଣସି ପର୍ବପର୍ବାଣୀ, ନାଁ ଦିଆ, ଚାଷ ଶିକାର, ଜନ୍ମ, ମୃତ୍ୟୁ, ବିବାହ ଆଦି କାର୍ଯ୍ୟରେ ଡିସାରି ବା ଦିସାରୀ ଯୋଗ ଦେଲେ ହିଁ କାର୍ଯ୍ୟ ଆରମ୍ଭ କରାଯାଇଥାଏ । 'ଯୋଗ'ର ଅର୍ଥ ଲଗ୍ନ ବା ନିର୍ଦ୍ଦିଷ୍ଟ ଶୁଭ ମୁହୂର୍ତ୍ତ । ବାସ୍ତବରେ ଦିଶାରି ହେଉଛି ଅଣ ଆଦିବାସୀ ସଂପ୍ରଦାୟର ଜ୍ୟୋତିଷ ଭଳି । ସେ ଗ୍ରହ ନକ୍ଷତ୍ରାଦିଙ୍କ ଗତି ଓ ସ୍ଥିତି ଓ ଶୁଭାଶୁଭ ଫଳ ବିଷୟରେ ଗଣନା କରୁଥିବା ଲୋକ / ଗଣକ : ବୈଦ୍ୟ : ଡିସାରା (କନ୍ଧ) । ପରଜା, ଭୂମେୟା, ବଣ୍ଡା, କୋୟା, ଗଦ୍‌ବା, କନ୍ଧ ଆଦି ବହୁ ଆଦିବାସୀ ସଂପ୍ରଦାୟର ଲୋକମାନେ ଦିଶାରୀ ମାନନ୍ତି । ଦିଶାରୀ କଥା ସେମାନଙ୍କ ପାଇଁ ବେଦର ଗାର ପରି ଅକାଟ୍ୟ । ଦିଶାରୀ ଆକାଶକୁ ଅନାଇ ସୂର୍ଯ୍ୟ ଚନ୍ଦ୍ରକୁ ଦେଖି ରାଶି ନକ୍ଷତ୍ର ଗଣନା କରି ଯୋଗ ବାର ଠିକ୍ କରେ । ସେ ନିର୍ଣ୍ଣୟ କରିଥିବା ଯୋଗରେ ଫସଲ କଟାହୁଏ, ଅମଳ ହୁଏ, ଜ୍ୱର, ରୋଗ ଭଲ କରିବା ପାଇଁ ଦିଶାରୀ ଶୁଭବେଳା ଦେଲେ ବେଜୁଣି ନାଚେ ଓ ରୋଗୀକୁ ଔଷଧ ବତାଇ ଦିଏ । ଦିଶାରୀ କହିଲେ, ଧାଙ୍ଗଡ଼ାମାନେ ଧାଙ୍ଗଡ଼ି ଖୋଜିବାକୁ ବାହାରନ୍ତି । ବିଭାଘର ହୁଏ । ସେ ନିର୍ଣ୍ଣୟ କରିଥିବା ତିଥି ବାରରେ ବିଭିନ୍ନ ପର୍ବପର୍ବାଣୀ ପାଳନ କରାଯାଏ । ପୋଡୁଚାଷର ଶୁଭ ଦିଆଯାଏ । ଦିଶାରୀ କହିଲେ ବେଜୁଣୀ ଅରୁଆ ଚାଉଳ, କୁକୁଡ଼ା, ମଦ୍ୟ, ପ୍ରଭୃତି ଦେଇ ପୋଡୁଚାଷର ଅଧିଦେବତା ବନ୍ଦୁଣୁ ଦେବତାଙ୍କୁ ପୂଜା କରେ । ଦିଶାରୀ ଦିନ ଧଇଲେ ଆଦିବାସୀମାନେ ବେଣ୍ଟକୁ ଯାଆନ୍ତି । ବେଣ୍ଟକୁ ଗଲାବେଳେ କେଉଁ ଦିଗକୁ ଗଲେ ଜନ୍ତୁ ମିଳିବେ ବା ମରାଯିବ ସେ କଥା ମଧ ସେ

କହେ । ଦିଶାରୀ ମଧ୍ୟ ମଶାଣିରେ ଭୂତପ୍ରେତ ଓ ଡୁମ୍ବାମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ପୂଜାକରେ । ଚେରମୂଳୀ ଔଷଧ ଦିଏ । ମୋଟାମୋଟି ଭାବେ ଆଦିବାସୀ ସାଂସ୍କୃତିକ ଜୀବନରେ ଦିଶାରୀର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଭଲ ଦିଶାରୀଠାରୁ ଯୋଗ ନିର୍ଣ୍ଣୟ ପାଇଁ ଆଦିବାସୀମାନେ ଦୂରଦୂରାନ୍ତର ଗ୍ରାମକୁ ଯିବା ମଧ୍ୟ ଲକ୍ଷ୍ୟ କରାଯାଏ । ବଣ୍ଡା ଓ ଡିଡାୟୀମାନେ ପ୍ରାୟତଃ ଦୂର ସ୍ଥାନର ଦିଶାରୀମାନଙ୍କଖୋଜିଥାଆନ୍ତି । ପୂଜାରୀ, ସିରା, ଶିଶା, ଜାନୀ ବା ଗୁରୁମାଈ ପ୍ରାୟ ପ୍ରତ୍ୟେକ ଗାଁରେ ରହିଥାନ୍ତି । ଏବଂ ଦିଶାରୀକୁ ତାର କାର୍ଯ୍ୟରେ ସହଯୋଗ କରନ୍ତି । ଦିଶାରୀ ନିର୍ଦ୍ଦିଷ୍ଟ ଭାବେ ଗୋଟିଏ ଗୋଟିଏ ଅଞ୍ଚଳର ଦାୟିତ୍ୱ ସମ୍ଭାଳିଥାଏ । ଦୂର ଦୂରାନ୍ତରର ପୂଜାରୀ ଓ ଶିଶାମାନେ ମଧ୍ୟ ପରମ୍ପରାଗତ ଦିଶାରୀମାନଙ୍କୁ ଲଗ୍ନ ନେବାପାଇଁ ପାହାଡ଼ ପର୍ବତ ଡେଇଁ ଆସିଥାନ୍ତି । ଛୋଟଛୋଟ ଗ୍ରାମ୍ୟ ଅନୁଷ୍ଠାନ (ଜନ୍ମ, ମୃତ୍ୟୁ, ବିବାହ, ଜୁକତ୍‌ମାନ ଇତ୍ୟାଦି) ପୂଜାରୀ ବା ଜାନୀମାନେ ଚଳେଇ ନେଉଥିବାବେଳେ ସାମୂହିକ ପର୍ବପର୍ବାଣୀ ବା ଅନୁଷ୍ଠାନ ସକାଶେ ଦିଶାରୀର ପରାମର୍ଶ ନିଶ୍ଚିତଭାବେ ଲୋଡ଼ା ହୁଏ ।

ଏହି ଦିଶାରୀ ବିଦ୍ୟା ଗୁରୁଶିଷ୍ୟ ପରମ୍ପରା କ୍ରମେ କିମ୍ବା ବଂଶ ପରମ୍ପରା କ୍ରମେ ଗଢ଼ି ଆସିଥାଏ । ଜଣେ ଦିଶାରୀ ପାଖରେ ୨/୪ଜଣ ଯୁବକ ଶିଷ୍ୟ ପ୍ରଶିକ୍ଷଣ ପାଇଁ ପ୍ରାୟତଃ ରହିଥାନ୍ତି । ଦିଶାରୀ ସହ ସେମାନେ ବିଭିନ୍ନ ଗ୍ରାମକୁ ଯାଆନ୍ତି ଓ ଟିକିଏ ଅଭିଜ୍ଞ ହେଲାପରେ ଦିଶାରୀର ନିର୍ଦ୍ଦେଶ ଅନୁସାରେ ସ୍ୱାଧୀନଭାବେ ବିଭିନ୍ନ ଗ୍ରାମକୁ ଯାଇଥାନ୍ତି ।

ଏହି ଦିଶାରୀ ପରମ୍ପରାରେ ପୋଖତ ହେଉଛନ୍ତି କନ୍ଧମାନେ । ଏହା ବ୍ୟତୀତ ପରଜା, ରଣା ଓ ଭୂମିଆମାନେ ମଧ୍ୟ ଏ ଦିଗରେ ପୋଖତ । ବଣ୍ଡା ଓ ଡିଡାୟୀମାନଙ୍କ ଭିତରେ କନ୍ଧ ଓ ରଣା ଦିଶାରୀମାନଙ୍କ ଉପରେ ଖୁବ୍ ବେଶୀ ନିର୍ଭରଶୀଳତା ଦେଖାଯାଏ । କୋୟାମାନଙ୍କ ଭିତରେ ଏହି ଦିଶାରୀ ପରମ୍ପରା 'ଓ୍ୱାଡ଼େ' ପରମ୍ପରା ରୂପେ ପ୍ରଚଳିତ ।

୨୬. ଦୁଆଶାଗା - *ଦେ.ବି.* : ଔଷଧି ବୃକ୍ଷ ବିଶେଷ । ବ୍ରାହ୍ମୀ । ସ୍ମରଣଶକ୍ତି ବୃଦ୍ଧି ଏବଂ ଦେହ ଥଣ୍ଡା ରଖିବାପାଇଁ ଏହି ଶାଗ ଭଲକାମ ଦେଇଥାଏ । ଏଥିରୁ ତେଲ ବାହାର କରି ମୁଣ୍ଡରେ ମାଲିସ୍ କରାଯାଏ ଏବଂ ଘୃତ ପ୍ରସ୍ତୁତ କରି ବିଭିନ୍ନ ରୋଗପାଇଁ ସେବନ କରାଯାଏ । ମସ୍ତିଷ୍କ ବିକୃତି ଓ ମେହରୋଗ ପାଇଁ ଏହାକୁ ଦିଶାରିମାନେ ବ୍ୟବହାର କରିଥାନ୍ତି ।

୨୭.     ଢୁଙ୍ଗୁଢୁଙ୍ଗା – *ଦେ.ବି. :* ଏକତାରା : ଲାଉରେ ତିଆରି ଏକ ତାରା ବାଦ୍ୟ । ପରଜାଙ୍କ ନୃତ୍ୟ ସଂଗୀତରେ ବ୍ୟବହୃତ ବାଦ୍ୟଯନ୍ତ୍ର । ଏହାକୁ ଚାଙ୍ଗୁ, ଢୋଲ, ମର୍ଦଳ ସହିତ ଆଦିବାସୀମାନେ ବଜାଇଥାନ୍ତି । ଏହା ଏକତତ ବାଦ୍ୟ । ପରଜା ସଂପ୍ରଦାୟର ଏହା ନିଜସ୍ୱ ଏବଂ ମୁଖ୍ୟବାଦ୍ୟ । ଏହାକୁ 'ଡଡୁଙ୍ଗା' ବା ଟଙ୍ଗିଲା ମଧ୍ୟ କୁହାଯାଏ । କନ୍ଧମାନେ ଏହି ଏକତାରା ବିଶିଷ୍ଟ ବାଦ୍ୟଯନ୍ତ୍ରକୁ ଡୁଣ୍ଡୁଣି କହନ୍ତି । ଏହାର ତାରକୁ ଆଘାତ କଲେ ଯେଉଁ ଢୁଙ୍ଗ୍ ଢୁଙ୍ଗ୍ ଧ୍ୱନି ହୁଏ, ସେହି ଧ୍ୱନିକୁ ନେଇ ଏହି ବାଦ୍ୟଯନ୍ତ୍ରର ନାମ ଢୁଙ୍ଗଢୁଙ୍ଗା ହୋଇଛି । ଏହା ପରଜାମାନଙ୍କ ରିଂଝୋଡ଼ି ଓ ଅନ୍ୟାନ୍ୟ ସଂପ୍ରଦାୟର ଗୋଷ୍ଠୀ ନୃତ୍ୟମାନଙ୍କରେ ବ୍ୟବହୃତ ହୁଏ । ଗୋଟିଏ ପାଚିଲା ଲାଉର ଓସାରିଆ ଅଂଶକୁ ଗୋଲେଇ କରି କାଟି ଭିତର ଭାଗକୁ ସଫା କରାଯାଏ । ଲାଉର କଟାଯାଇଥିବା ଭାଗକୁ ଛେଳି ଚମଡ଼ାରେ ଅଠା ଦେଇ ଆଚ୍ଛାଦିତ କରାଯାଏ । ଲାଉ ଭିତରେ ଦୁଇ ତିନି ହାତ ଲମ୍ବର ଏକ ବାଉଁଶ ଦଣ୍ଡ ଲଗାଯାଇ ଚମଡ଼ା ଉପରେ ଦେଇ ଏକ ଆଲୁମିନିୟମ୍ ସରୁ ତାର କାଠଖିଲ ସହ ଉଡ଼ି ଯାଇଥାଏ । ପୂର୍ବେ ତାର ବଦଳରେ ବୃକ୍ଷର ତନ୍ତୁ ବ୍ୟବହାର କରାଯାଉଥିଲା । ଏହି ଢୁଙ୍ଗଢୁଙ୍ଗାର ବାଉଁଶ ଦଣ୍ଡକୁ କାନ୍ଧରେ ରଖି ବାମ ହାତରେ ଲାଉ ତୁମ୍ବାଟିକୁ ଧରି ତାର ଉପରେ ଡାହାଣ ହାତ ଆଙ୍ଗୁଠି ଚାଳନା କଲେ ଓ ପାପୁଲିରେ ଲାଉ ତୁମ୍ବାଟିକୁ ଆଘାତ କଲେ ତାର ଓ ତୁମ୍ବାର ସମ୍ମିଳିତ ଧ୍ୱନି ଅତି ଉପଭୋଗ୍ୟ ଓ ଶ୍ରୁତି ମଧୁର ହୋଇଥାଏ । ଏହା ସହିତ ଅଣ ଆଦିବାସୀ ସଂପ୍ରଦାୟର ଏକତାରା ବା ଗୋପୀଯନ୍ତ୍ର ତୁଳନୀୟ । ପରଜାମାନଙ୍କୁ ଏହା ନିଜସ୍ୱ ବାଦ୍ୟଯନ୍ତ୍ର ହେଲେ ମଧ୍ୟ କୋରାପୁଟ ଜିଲ୍ଲାର କନ୍ଧ, ଗାଦବା କିମ୍ବା ଗଣ୍ଡିଆ ଓ ଅନ୍ୟ କେତେକ ଆଦିବାସୀ ଗୋଷ୍ଠୀ ନୃତ୍ୟ ଗୀତରେ ଏହି ଏହି ଢୁଙ୍ଗଢୁଙ୍ଗା ବ୍ୟବହାର କରିଥାନ୍ତି । ସମସ୍ତ ଆଧୁନିକ ଜଟିଳ ତତ ବାଦ୍ୟର ଜନକ ହେଉଛି ଏହି ଢୁଙ୍ଗଢୁଙ୍ଗା ।

୨୮.     ଢୁଂଢୁଣୀ – *ଦେ.ବି. :* ଢୁଙ୍ଗୁଢୁଙ୍ଗା । ଏକତାରା : ଲାଉରେ ତିଆରି ଏକତାରା । ଏହି ଢୁଂଢୁଣୀ ବଜାଇ ଗ୍ରାମର ବୃଦ୍ଧମାନେ ଗୀତ ଗାନ କରିଥାନ୍ତି ଏବଂ ଶାସ୍ତ୍ର ଶୁଣାଇଥାନ୍ତି । କନ୍ଧ ସଂପ୍ରଦାୟରେ ଏହା ପ୍ରଚଳିତ । କନ୍ଧମାନଙ୍କର ପ୍ରତି ଗ୍ରାମରେ ଗୋଟିଏ ଗୋଟିଏ ଢୁଂଢୁଣୀ ବସା ଥାଏ ।

୨୯.     ଢୁଡ଼ଙ୍ଗ୍ / ଡାଡେଙ୍ଗ୍ – *ଦେ.ବି. :* ସାହୁକାର । ଇଂ. – Money Lender ଅଣ ଅଳାର ଗାଦବା ଭାଷାଭାଷୀ ଲୋକମାନଙ୍କୁ ଅଳାର ଗାଦବା ଭାଷୀର ଲୋକମାନେ

ଡୁଡ଼ଙ୍ଗ କହନ୍ତି । ଏହା ସାନ୍ତାଳୀ ଭାଷାର 'ଦିକୁ' ଶବ୍ଦର ସମାର୍ଥକବୋଧକ ଶବ୍ଦ । ଅନ୍ୟ ଆଦିବାସୀ ସଂପ୍ରଦାୟରେ ଏହାର ସମର୍ଥବୋଧକ ଶବ୍ଦ ହେଉଛି 'ଗଡ଼ିଆ' ।

୩୦. **ଡୁଟି : ଦେଶିଆ : ବିଶେଷ୍ୟ** - *ଦେ.ବି. :* ବାଉଁଶ ବା ବେତ ତିଆରି ଖୋଳେଇ ।

ବାଉଁଶ ବା ବେତ ତିଆରି ମାଛ କଙ୍କଡ଼ା ଧରି ରଖିବା ସରୁ ମୁହାଁ ମୁଣି । ଅନେକ ଆଦିବାସୀ ଲୋକଗୀତରେ ଏହି ଡୁଟି ଶବ୍ଦର ପ୍ରୟୋଗ କରାଯାଇଥାଏ ।

ଉଦାହରଣ :

ବାଟା ବେଡ଼ା ଜରନପାନି
କାଲା ପାନି ଡୁମର ରାନି
ରେ ଛିତ୍ ବାରା ଡଣ୍ଡି
ଟାବଲ୍ ଟେଙ୍ଗି ବେତବଡ଼ନି
କାଡ଼ି ବେକାର ବେଉଁଲି ଡୁଟି
କସା ପତରିଆ ଚଉଁରି ମୁଣ୍ଡି
(ପଦ୍ଦି ଶୁକ୍କ ବା ସର୍ସରା ପାଟା)

ପଡ଼ିଆ ଜମି, କଳା ସ୍ୟାହି ପରି ଦେଖା ଯାଉଥିବା ପାଣି, ଗଛ ମାନଙ୍କର ରାଣୀ ଡିମିରି ଗଛକୁ ପାର ହୋଇ ଇଂରେଜମାନଙ୍କ ପାଇଁ କାଉଡ଼ି (ବାରଡଣ୍ଡି) ଧରି, ଅଣ୍ଟାରେ ଫାର୍ସା (ଟାଙ୍ଗା) ଖୋସି, ହାତରେ ବେତବାଡ଼ି ଧରି, ବେତବୁଣା ସରୁମୁହାଁ ଥିବା ମାଛ ରଖା ମୁଣି (ଡୁଟି) ଯାହାର ରଂଗ ତିଆରି କଲାବେଳେ କଅଁଳ ପତ୍ର ପରି ସବୁଜ ଥିଲା ଏବେ ସ୍ତ୍ରୀ ଲୋକର କହଁରିଆ (ଧୂସର) ଦିଶୁଥିବା ଖୋସା ପରି, ରେଶମ ପୋକର ଖୋସାପରି ଦେଖାଯାଉଛି, ସେହି ମାଛ ଧରା ମୁଣି ଧରି ଯାଉଛି ।

୩୧. **ଡୁମା ଚକନି** - *ଦେ.ବି. :* ଡୁମା ବା ପିତୃପୁରୁଷଙ୍କ ଆତ୍ମା ବା ଦେବାଦେବୀଙ୍କୁ ପଣାପଣି ଅର୍ପଣ କରାଯିବା ଉଦ୍ଦେଶ୍ୟରେ ନିର୍ମିତ ଶାଳ ବା ଶିଆଳି ପତ୍ରର ଦନାକୁ ଡୁମା ଚକନି କହନ୍ତି । ଡୁମା ଚକନି ଅବିଭକ୍ତ କୋରାପୁଟ ଆର୍ଯ୍ୟ, ଅନାର୍ଯ୍ୟ, ହରିଜନ ଆଦି ସବୁ ସ୍ତରର ଲୋକ ବ୍ୟବହାର କରନ୍ତି ।

ଚକନି : ଛୋଟ ପତ୍ରର ଦନା ବା ଠୋଲା

୩୨. **ଡୁମୁରି** - *ଦେ.ବି. :* ଡିମରି ଗଛ : ସଂ- ଉଦୁମ୍ବର ।

ଏହା ଆଦିବାସୀ ଲୋକମାନଙ୍କର ଏକ ପ୍ରିୟ ଗଛ । ସେମାନେ ଏହି ଗଛର କଂଚା ଫଳକୁ ତରକାରି କରି ଖାଇଥାନ୍ତି । ପାଚିଲା ଫଳ ମଧ୍ୟ ଏମାନଙ୍କ ପ୍ରିୟ ଖାଦ୍ୟ । ଏହି ଗଛର ଚେରକୁ ଓ ପତ୍ରକୁ ଔଷଧ ଭାବେ ବ୍ୟବହାର କରିଥାନ୍ତି । ରତିକ୍ରିୟା ସମୟରେ ଦେହରେ ଏହି ଡିମିରି ଚେର ଧାରଣ କଲେ ଏହା ବେଶ ଆମୋଦଦାୟକ ହୋଇଥାଏ ବୋଲି ସେମାନେ ବିଶ୍ୱାସ କରନ୍ତି । ଡୁମୁରି ଚେରରୁ ବାହରୁଥିବା ପାଣି ପିଇଲେ ମେହପ୍ରଦର ଆଦି ରୋଗ ଆରୋଗ୍ୟ ହୁଏ । ଡିମିରି ଫଳକୁ ଘିଅରେ ଭାଜି ଖାଇଲେ ନିମ୍ନ ରକ୍ତଚାପ ଭଲହୁଏ ।

୩୩. **ଡୁମୁରି ଫୁଲ୍** - *ଦେ.ବି. :* ଡିମିରି ଗଛର ଫୁଲ, ଯାହା ଦୃଶ୍ୟ ହୁଏ ନାହିଁ । ଆଦିବାସୀ ଲୋକଗୀତରେ ଅତି ସୁନ୍ଦର, ଅଲଭ୍ୟ ଆନନ୍ଦର ପ୍ରତୀକ ଭାବରେ ଏହାକୁ ପ୍ରୟୋଗ କରାଯାଇଥାଏ । ଉଦାହରଣ :

କେଡ଼େ ଛନଛନ ଚନ୍ଦ୍ରମା ବଦନ
କେଉଁଠାରେ ତୋର ମନ
ନା ମିଲାଇ କରି ମିଲାଇଲି ଆଚେ ଉମର କୋଟିଆନୀ
ଡୁମୁରି ଫୁଲ ସାମନ । (ଚଇତି ପରବ ଗୀତ)

(ତୁ କେତେ ଛନଛନ ହେଉଛୁ, ଜହ୍ନ ପରି ସୁନ୍ଦର ତୋର ମୁହଁ, ତୁ କାହିଁକି ଏଡ଼େ ଅନ୍ୟମନସ୍କ, କେତେ କଷ୍ଟରେ ଗୋ ଉମରକୋଟ ଗାଁର ଯୁବତୀ, ଅଲଭ୍ୟ ଡିମିରି ଫୁଲକୁ ପାଇଲା ପରି, କେତେ କାଳକୁ ତୋର ସାନ୍ନିଧ ପାଇଛି ଯେ !)

୩୪. **ଡୁମୁରି ପୁଟ** - *ଦେ.ବି. :* ଏକ ଗ୍ରାମ ବିଶେଷର ନାମ । ଡିମିରା ପାହାଡ଼ ବା ବହୁ ଡିମିରି ଗଛ ଥିବାର ଗାଁ । ଅବିଭକ୍ତ କୋରାପୁଟ ଜିଲ୍ଲାରେ ଏହି ନାମ ଥିବା ବହୁ ଗାଁ ରହିଥିବାର ଦେଖାଯାଏ । କୋରାପୁଟରୁ ସୁନାବେଡ଼ା ବସରେ ଯିବାବେଳେ ଯେଉଁ ଡୁମୁରିପୁଟ ଗାଁ ପଡ଼େ ତାହା ଏକ ବିଶାଳ ହନୁମାନ ମୂର୍ତ୍ତିପାଇଁ ପ୍ରସିଦ୍ଧ । ଏହି ନାମରେ ରାୟଗଡ଼ାଲାଇନ୍‌ରେ ଏକ ରେଲବାଇ ଷ୍ଟେସନ୍ ମଧ୍ୟ ରହିଛି ।

୩୫. ଡୁମ୍ବା / ଡୁମା / ଡୁମ୍ମା - ଦେ.ବି. : ପ୍ରେତ, ପରଲୋକଗତ ଆତ୍ମା, ଇଂ.- Ghost, Sprit ଭୂତ ବା ପୂର୍ବ ପୁରୁଷମାନଙ୍କ ଆତ୍ମା - ମରିଯାଇଥିବା ଲୋକଙ୍କ ଆତ୍ମା । ଏହି ଡୁମ୍ମା ଦେବତା ବା ପେନୁ ଭାବେ ମଧ୍ଯ ଆଦିବାସୀ ସମାଜରେ ପୂଜିତ । ଆଦିବାସୀ ସମାଜରେ ଭୂତପ୍ରେତରେ ଗଭୀର ବିଶ୍ୱାସ ରହିଛି । ସେମାନଙ୍କ ପରିବାରର କେହି ମରିଗଲେ ସେହି ମୃତ ଲୋକର ଆତ୍ମାକୁ ଡୁମ୍ବା ଦେବତା ଭାବେ ପୂଜା କରିଥାନ୍ତି । କନ୍ଧମାନେ ତଥା ଅନ୍ୟ ସବୁ ସଂପ୍ରଦାୟର ଆଦିବାସୀ ମାନେ ବିଶ୍ୱାସ କରନ୍ତି ଯେ, ଅପୂର୍ଣ୍ଣ ଇଚ୍ଛା ପାଇଁ ମୃତାତ୍ମା ଡୁମ୍ବା ପେନୁ ହୁଏ । ସେମାନଙ୍କର ବିଶ୍ୱାସ ମୃତଲୋକର ଆତ୍ମା ବା ଡୁମ୍ବା ଦେବତା ଅସନ୍ତୁଷ୍ଟ ହେଲେ ସେହି ପରିବାରର ଅନିଷ୍ଟ ହୁଏ । ତେଣୁ ସେ ପ୍ରତିଟି ପର୍ବପର୍ବାଣୀ ଓ ପୂଜା ପାର୍ବଣରେ ନିଜ ଘରର ଲୋକମାନଙ୍କ ପରି ଏହି ମୃତ ଆତ୍ମାମାନଙ୍କ ଉଦ୍ଦେଶ୍ୟରେ ଖାଦ୍ୟ ପଦାର୍ଥ, ମଦ, କୁକୁଡ଼ା ଇତ୍ୟାଦି ଅର୍ପଣ କରିଥାଏ । ଯଦି ଏଥିରେ ବ୍ୟତିକ୍ରମ ହୁଏ ତେବେ ଘରର କାହାକୁ ନା କାହାକୁ ଡୁମ୍ବା ଲାଗେ । ଏମାନଙ୍କ ପାଇଁ ଗୃହ ମଧ୍ଯରେ ଅନେକ ସ୍ଥଳରେ ଏକ କ୍ଷୁଦ୍ର କୋଠରୀ ରହିଥାଏ । ଏହାକୁ 'ଡୁମ୍ବା ଘର' କୁହାଯାଏ । ଡୁମ୍ବାଙ୍କର ସନ୍ତୋଷ ବିଧାନ କଲେ ସମସ୍ତଙ୍କୁ ସୁଖଶାନ୍ତି ମିଳେ ବୋଲି ଏମାନଙ୍କର ବିଶ୍ୱାସ । ତେବେ ମୁଖ୍ୟତଃ ଡୁମ୍ବାମାନେ ପରିବାର ତଥା ନିଜ ଗାଁର ଶୁଭ ସାଧନ କରିଥାନ୍ତି । ଯେତେବେଳେ ଗୋଟିଏ ପରିବାର ବା ଗୋଟିଏ ଗାଁ ଯେକୌଣସି କାରଣରୁ ବିସ୍ଥାପିତ ହୁଏ, ସେତେବେଳେ ସେହି ଡୁମ୍ମାମାନେ ବେଘର ହୋଇଯାନ୍ତି ଓ ବିକ୍ଷୁବ୍ଧ ହୋଇ ଉଠନ୍ତି ବୋଲି ଲୋକଙ୍କ ବିଶ୍ୱାସ । ତେଣୁ ଆଦିବାସୀମାନେ ସହଜରେ ବିସ୍ଥାପନକୁ ଗ୍ରହଣ କରିପାରିନାହାନ୍ତି । ପ୍ରତି ପର୍ବପର୍ବାଣୀ ବା ଘରୋଇ ଉତ୍ସବ ଅନୁଷ୍ଠାନରେ ଡୁମ୍ମାମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ପୂଜା ଓ ଖାଦ୍ୟ ପାନୀୟର ବ୍ୟବସ୍ଥା କରାଯାଇଥାଏ । କିନ୍ତୁ ଗାଦବାମାନେ ସେମାନଙ୍କ ପାଇଁ ସ୍ୱତନ୍ତ୍ର ଭାବେ ଏକ ପର୍ବ ଅନୁଷ୍ଠାନ କରାଯାଇଥାଏ, ଯାହାକୁ କୁହାଯାଏ 'ଗୋତର' । (ଦ୍ର. ଗୋତର)

୩୬. ଡୁମ୍ବା ପୁଢ଼େଲ - ଏହା ଗାଦବାମାନଙ୍କର ଏକ ଶବସଂସ୍କାର ପ୍ରଥା । ମୃତବ୍ୟକ୍ତିର ଶବକୁ ଶ୍ମଶାନକୁ ବୋହି ନେବା ପୂର୍ବରୁ ଏକ ପ୍ରଥା ପାଳନ କରାଯାଏ । ଏହା କରିବା ପାଇଁ ଦିଶାରୀର ମୁଖ୍ୟ ଭୂମିକା ରହିଛି । ଏହା ହେଉଛି ଅଳ୍ପ ପରିମାଣରେ ଧାନ ମୃତ ଶରୀର ପାଖରେ ରଖାଯାଏ ଏବଂ ଦିଶାରୀ ଏପରି କହିଥାଏ;

"ଯେତେ ପରିମାଣର ଋଣ କିମ୍ବା ଅନ୍ୟ କିଛି ଜିନିଷ ଯେଉଁଟାକି ତୁମେ, ତୁମେ ଜୀବନ ଦଶା ମଧ୍ୟରେ କରିଥିଲ, ଏହା ଚାଲିଗଲା ଓ ତୁମେ ଏବେ ମୁକ୍ତ ।" ସେ ପୁଣି କହେ, "ତୁମେ ତୁମ ଘରକୁ ଯାଅ ଏବଂ ରନ୍ଧାଭାତ ସେଠାରେ ଖାଅ । ଆଉ ତା'ପରେ ପୁନର୍ବାର ଏହି ଗୃହରେ ଜନ୍ମ ହୁଅ ।" ଏ ପ୍ରଥାକୁ 'ଡୁମ୍ବା ପୁଡ଼େଲ' କହନ୍ତି ।

୩୭. **ଡୁମ୍ବା ମନ୍ତ୍ର - ଗାଦବା :** *ବି. :* ଗାଦବା ଦିସାରୀ ମାନଙ୍କ ଭୂତ ଛଡ଼ାଇବା ମନ୍ତ୍ର । ଅନ୍ୟ ଆଦିବାସୀ ସଂପ୍ରଦାୟରେ ମଧ୍ୟ ଏହା ପ୍ରଚଳିତ । (କ) ଡୁମ୍ବାଙ୍କ ପ୍ରକାର ଭେଦ; (୧) ଗାଡ଼ା ଡୁମ୍ବା, (୨) ବାଘ୍ ଡୁମ୍ବା, (୩) ଘର ଡୁମ୍ବା (୪) ଭୂତମଶାନ ।

(୧) ଗାଡ଼ଡୁମ୍ବା : ଗାଡ଼ (ଝରଣା) ମଦ ତଥା ନିଶାଦ୍ରବ୍ୟ ଖାଇ ଯେଉଁମାନେ ଝରଣା ନଈ ଆଦି ସ୍ଥାନରେ ମୃତ୍ୟୁବରଣ କରନ୍ତି, ସେମାନେ ଗାଡ଼ ଡୁମ୍ବା ହୁଅନ୍ତି । ଏ ଡୁମ୍ବା ଧରିଲେ (ମଣିଷ ଦେହରେ ପ୍ରବେଶ କଲେ) ଦିଶାରୀ / ଗୁରୁମାଇଙ୍କୁ ଡକା ହୁଏ । ସେ ମନ୍ତ୍ର ଓ ଔଷଧ ଦେଇ ଝଡ଼ାଫୁଙ୍କା କରି ଭୂତ ଛଡ଼ାଇଥାଏ । ଏ ଡୁମ୍ବା ଛଡ଼ାଇବା ପାଇଁ ନିମ୍ନ ମନ୍ତ୍ର ସଂଗେସଂଗେ ଔଷଧର ପ୍ରୟୋଗ କରାଯାଏ ।

ମନ୍ତ୍ର : "ଆରେ ଅଙ୍ଗନ୍ ସୂତ, ପବନ ଭୂତ
ଗାଡ଼୍ ଡୁମ୍ବା ପଳାଅବେ, ପାଲାଅବେ ।
ଆଲାବାନ୍ ଜାଲବାନ୍
ଚାରି ସମରା ଦେବୀ ପାଲାଅ
ଦେହକୁ ଛାଡ଼ି ପଲା ପଲା ।"

ଏହି ମନ୍ତ୍ର ଉଚ୍ଚାରଣ କରି ଝଡ଼ାଫୁଙ୍କା କରାଯାଏ । ବାସକନ୍ଦ, ବଣହଳଦୀ ଆଦି ଔଷଧ ଦିଆଯାଏ । ଡୁମ୍ବା ତାପରେ ସେହି ପୀଡ଼ିତ ବ୍ୟକ୍ତିର ଦେହଛାଡ଼ି ପଳାଏ ।

(୨) **ବାଘ ଡୁମ୍ବା :** ଯେଉଁମାନେ ବଣ ପାହାଡ଼ରେ ବା ହିଂସ୍ରଜନ୍ତୁଙ୍କ ଆକ୍ରମଣରେ ମରିଥାନ୍ତି ସେମାନେ ନାଲିବର୍ଣ୍ଣ ବିଶିଷ୍ଟ ବାଘ ଡୁମ୍ବା ହୁଅନ୍ତି । ଏ ଡୁମ୍ବା ପ୍ରତିକାର ପାଇଁ ନିମ୍ନ ମନ୍ତ୍ର ବୋଲାଯାଏ ।

ଆଦିଗୁରୁ, ଦାବିଗୁରୁ
ଯା ଗୁରୁ ଯା..... ଯା.... ଗୁରୁ
ଦେହକୁ ଛାଡ଼ି ଯା, ପରର ଡୁମ୍ବା ଛାଡ଼ିଯା ।

(୩) ଘର୍‌ଡୁମ୍ବା : ଏହା ଏକ ଉପକାରୀ ଡୁମ୍ବା । ଏହା ପରିବାରର ମଂଗଳ କରିଥାଏ । କାହାର କିଛି କ୍ଷତି କରେ ନାହିଁ । ତାର ପୂଜା ପାଠ ଠିକ୍ ଭାବେ ନ କଲେ ଚାଷବାସର କ୍ଷତି କରେ ।

(୪) ଭୂତ / ମଶାନ୍ : ଯଦି କାହାକୁ ଭୂତ, ମଶାନ୍ ଆଦି ଧରେ, ତେବେ ତାହାକୁ ଦିଶାରୀ / ଗୁରୁମାଈ ଝଡ଼ାଫୁଙ୍କା ଓ ଔଷଧ ଦେଇ ଭୂତ ଛଡ଼ାଇଥାନ୍ତି ।

ମନ୍ତ୍ର : ଆଲବନ୍, ଜାଲବାନ୍

ସାରି (ଚାରି) ସଙ୍ଗରା ଦେବୀ ଦେବତା

ଅସ (ଓଷ) ପତର ଦେଲେ ଶୁସି (ଘୁଞ୍ଚି) ଯା

ଦେହକ ଛାଡ଼ି ।

ଏହାର ଔଷଧ : ବାସକନ୍ଦା, ବଣ ହଳଦୀ, ସୁରଙ୍ଗ୍, କାଲିଆବୁନ୍ଦ, ପଟକିତାଲ । ଏସବୁର ଚେର ଆଣି ବେକରେ ସୂତାଦ୍ୱାରା ବନ୍ଧାଯାଏ । ଜ୍ୱର ହୋଇଥିଲେ ମନ୍ତୁରା କରି ଧୂପ ଦେଇ ପୀଡ଼ିତର ବେକରେ ବାନ୍ଧି ଦିଆଯାଏ । ପେଟ ବଥାରେ ଓ ଶରୀର ପୀଡ଼ାରେ ଏହି ଔଷଧକୁ ଗୁଣିଆ ବ୍ୟବହାର କରିଥାଏ ।

ଆଦିବାସୀମାନେ ଯେକୌଣସି ରୋଗ, ବ୍ୟାଧି ହେଲେ ସେମାନେ ତାକୁ ଭୂତ ପ୍ରେତର କୁଦୃଷ୍ଟି ପଡ଼ିଛି ବୋଲି ବିଶ୍ୱାସ କରି ଦିଶାରୀ ବା ଗୁରୁମାଈର ସାହାଯ୍ୟ ନେଇଥାନ୍ତି । ଏମାନେ ବୈଦ୍ୟ ବୃତ୍ତିରେ ପାରଙ୍ଗମ ହୋଇଥାନ୍ତି ଏବଂ ପୂର୍ବ ପୁରୁଷଙ୍କ ଠାରୁ ଔଷଧ ବୃକ୍ଷ, ଜଡ଼ିବୁଟି ଚିହ୍ନିବା, ସଂଗ୍ରହ କରିବା ଓ ପ୍ରୟୋଗ କରିବା ଶିଖିଥାନ୍ତି । ଏହି ଜ୍ଞାନ ବଂଶ ପରମ୍ପରା କ୍ରମେ ପରବର୍ତ୍ତୀ ପିଢ଼ିକୁ ହସ୍ତାନ୍ତରିତ ହୋଇଥାଏ ।

୩୮. ଡୁବା - *ଦେ.ବି.* : ଛୋଟଗିନା । ଡାଟିଆ ।

ତରକାରୀ ରଖିବାପାଇଁ ଦରକାର ପଡ଼େ । ଟିକିଏ ବଡ଼ ଆକାରରେ ଡୁବାକୁ ଗିନା କୁହାଯାଏ । ତାଠାରୁ ବଡ଼ ଆକାରର ଡୁବାକୁ 'କୁଡୁକା' କୁହାଯାଏ । ଯଥା : ସାନ୍ ପିଲାକେ ଡୁବାୟେ କାଇବାକେ ଦେବାଏ, ବଡ଼ ପିଲାମାନ୍‌କେ ଗିନାୟେ କାଇବାକେ ଦେବାଏ ।

୩୯. ଡୁଲା ଦେଓ / ଦୁଲା ଦେଓ - ଗଣ୍ଡି, ବି. : ଗଣ୍ଡି ଆଦିବାସୀ ଗୋଷ୍ଠୀର ଗୃହ ଦେବତା / ଏହାଙ୍କ ଅନ୍ୟନାମ ରନ୍‌ହା ।

ଗଣ୍ଡାମାନଙ୍କ ବଡ଼ ଦେବତା ଠାକୁର ଦେଓ ଥରେ ଅନ୍‌କୁଆଁରିନ୍‌ମାତା (ପୃଥିବୀ ଦେବୀଙ୍କୁ) ଦେଖି କାମାସକ୍ତ ହୋଇପଡ଼ିଲେ । ଭୀଷଣ ଜଂଗଲ ଭିତରେ ଦୁହେଁ ସଂଗମରତ ଥିବା ସମୟରେ ରନ୍‌ହା ଏହା ଦେଖି ଠାକୁର ଦେଓଙ୍କ (ମହାଦେବ) ପିତା କୁଲିତରାଙ୍କୁ ଏହା କହିଲେ । ଏହା ଶୁଣି ଅନ୍‌କୁଆଁରିନ୍ ମାତା କ୍ରୁଦ୍ଧ ହୋଇ ରନ୍‌ହାକୁ ଅଭିଶାପ ଦେଲେ ଯେ ତାଙ୍କ ଦେହସାରା ଯୋନିମୟ ହେଉ । ତାଙ୍କୁ କେହି ବାହାରେ ନ ଦେଖନ୍ତୁ । ସେ କେବଳ ଘର ଭିତରେ ରହନ୍ତି । ସେହି ଦିନୁ ରନ୍‌ହା ଗଣ୍ଡମାନଙ୍କ ଘର ଭିତରେ ରହି ଦୁଲାଦେଓ ନାମରେ ପୂଜା ପାଇଲେ । ଏହି ମିଥ୍ ସହ ରାମାୟଣରେ ଥିବା ଅହଲ୍ୟା ଇନ୍ଦ୍ର - ମିଥ୍ ତୁଳନୀୟ ।

୪୦. **ଡୁଲାଇ ଦେଇ / ଜୁଲାଦେଇ -** *ବି.* : ଗଣ୍ଡି : ଗଣ୍ଡମାନଙ୍କର ଗୃହଦେବୀ : ନୂଆ ଖାଇବା (ଭାଦ୍ରବ) ଅବସରରେ ଗୃହସ୍ୱାମୀ ଏହି ଦେବୀଙ୍କୁ ପୂଜା କରିଥାନ୍ତି ।

୪୧. **ଡେକାର୍ / ଡେକାର୍ ମାର୍‌ବା -** *ଦେ.କ୍ରି.* : ଢକାର ମାରିବା, ହାକୁଟି ମାରିବା ଇଂ.- Hiccup

ଦକ୍ଷିଣ ଓଡ଼ିଶାର ଉଚ୍ଚ ଜାତିର ଲୋକମାନଙ୍କ ଭିତରେ ପରିତୃପ୍ତ ଭୋଜନ ସହ ହାକୁଟି ମାରିବାର ଏକ ଘନିଷ୍ଠ ସମ୍ପର୍କ ରହିଛି । କିନ୍ତୁ ଗରିବ ଶ୍ରମଜୀବି ଆଦିବାସୀ କ୍ଷେତ୍ରରେ କେବେ କେମିତି ପରିତୃପ୍ତ ଭୋଜନ ଘଟିଥାଏ । ତେଣୁ ଖାଦ୍ୟ ସହ ଡେକାରର୍ ସଂପର୍କ ଏତେ ଘନିଷ୍ଠ ନୁହେଁ । ଏଠି ଡେକାରର ସଂପର୍କ ପେଟ ଅଜୀର୍ଣ୍ଣ ସହ ବଦହଜମି ସହ ଓ ପେଟର ବାୟୁ ସହ । ଯଥା : ବୁଡେକ୍ ବେଲେ କାଇବା ଗିନେ ପେଟ ଫୁଲାଇଲା, ଡେକାର୍ ଆଇଲାନି । ଅର୍ଥାତ୍, ଅବେଳରେ ଖାଇବା ସକାଶେ ପେଟ ଅଜୀର୍ଣ୍ଣ ହୋଇ ହାକୁଟି ଆସିଲାଣି ।

୪୨. **ଡେଗୟ -** *ଦେ.କ୍ରି.* : କୁଦା ମାରିବା : ଇଂ. To leap forward ବି : କୁଦା, ଡିଆଁ, ଲମ୍ଫ, ଇଂ. Leap, jump

ପାହାଡ଼ ପର୍ବତ ଅଞ୍ଚଳରେ ବାସ କରୁଥିବା ଆଦିବାସୀମାନଙ୍କ ଜୀବନରେ ଚାଷବାସ, ଜଂଗଲରୁ ଫଳ ସଂଗ୍ରହ ଓ ଜନ୍ତୁ ଶିକାର ସକାଶେ ଝୋଲା ଓ ଗାଡ଼ ଲଂଘିବା, ପର୍ବତ ପରେ ପର୍ବତ ଡେଇଁଯିବା ଏକ ନିତିଦିନିଆ ଘଟଣା । ସେଥିପାଇଁ ସେମାନଙ୍କ ଭାଷାରେ ଡେଗାୟ ଶବ୍ଦର ପ୍ରଚଳନ ବେଶୀ । ପୁଣି ସେମାନଙ୍କର ଗାଁ ଗାଁ

ତଥା ଗୋଷ୍ଠୀ ଗୋଷ୍ଠୀ ଭିତରେ ଥିବା ଅନ୍ତଃ ସଂପର୍କ ଯଥା : ପ୍ରେମ, ବିବାହ, ମୃତ୍ୟୁ ଓ ବିଭିନ୍ନ ପର୍ବପର୍ବାଣୀ ସକାଶେ ପର୍ବତ ସନ୍ଧିରେ ଥିବା ଗାଁମାନଙ୍କୁ ଯିବା ଆସିବା କଲାବେଳେ ରାସ୍ତାରେ ବହୁବାର ଡେଗାଇବାକୁ ପଡ଼ିଥାଏ ।

ବ୍ୟବହାର :

ଯଥା : (୧) ଡଙ୍ଗର୍ ଉପରେ ରଇବା କାନିବାଟ୍‌କେ ଡଗାୟ ଡଗାୟ ଯିବାର ଅଇସି । ଅଲପ୍ ଗୋଡ଼୍ ଏବାଟ ସେବାଟ୍ ଅଇଲେ ଅଦରି ଯିବାର ଅଇସି । ଅର୍ଥାତ୍, ଡଙ୍ଗର ଉପରେ ଥିବା ସରୁରାସ୍ତାରେ ଡେଇଁ ଡେଇଁ ଯିବାକୁ ପଡ଼େ । ଟିକେ ଗୋଡ଼ ଏପଟ ସେପଟ ହେଲେ ପଡ଼ିଯିବାର ଆଶଙ୍କା ଅଛି ।

(୨) ପିଲାଟୋକିମନ୍ ଡୋର୍‌ଡଗା କେଲ୍‌ଲାଇନି ।

ଅର୍ଥାତ୍, ପିଲାଟୋକିମାନେ ଦଉଡ଼ି ଡିଆଁ ଖେଳୁଛନ୍ତି ।

୪୩. ଡେସା ଗୀତ - *ଦେ.ବି. :* ଦଶହରା ପୂଜାଠାରୁ ପୌଷ ପୂର୍ଣ୍ଣିମା ପର୍ଯ୍ୟନ୍ତ ବୋଲାଯାଉଥିବା ପରଜା ଗୀତ । ଦଶହରା ବେଣ୍ଟରୁ ଫେରିଲା ପରେ ପରଜା ଧାଙ୍ଗଡ଼ୀମାନେ ଜାନି ମୁଦୁଲିକୁ ଫୁଲ ପିନ୍ଧାଇ ଡେସାଗୀତ ବୋଲନ୍ତି ଏବଂ ସେହିଦିନଠାରୁ ପ୍ରତ୍ୟହ ରାତିରେ ଡେସା ଗୀତ ବୋଲି ଡେସା ନାଚ କରି ପରଜା ଧାଙ୍ଗଡ଼ି ଗାଁ ଦାଣ୍ଡକୁ ମୁଖରିତ କରିଥାଏ । ପୁଷ୍ ପୁନି ବା ପୌଷ ପୂର୍ଣ୍ଣିମା ପର୍ବ ଶେଷରେ ଡେସାଗୀତ ଓ ନାଚର ଉଦ୍‌ଯାପନ ହୋଇଥାଏ ।

□□□



୧.  **ଢାଙ୍ଗରା** - *ଦେ.ବି.* : ଢାପୁ ସଦୃଶ ଏକ ଆନଦ୍ଧ ବାଦ୍ୟଯନ୍ତ୍ର । ଏହା ହେଉଛି କନ୍ଧମାନଙ୍କର ଏକ ପ୍ରିୟ ବାଦ୍ୟଯନ୍ତ୍ର ।

୨.  **ଢାପ୍ / ଢାମ୍ପ / ଢାପୁ / ଢାପ୍ଲୀ** - *ଦେ.ବି.* : ଚାଙ୍ଗୁ । କାଠ ଓ ଚମଡ଼ାରେ ନିର୍ମିତ ଆଦିବାସୀ ବାଦ୍ୟଯନ୍ତ୍ର । ପରଜା ଓ କନ୍ଧ ସଂପ୍ରଦାୟଙ୍କ ଦ୍ୱାରା ନୃତ୍ୟଗୀତରେ ଢାପ୍‌ର ବ୍ୟବହାର ଥିଲେ ମଧ୍ୟ ଏହା ମୁଖ୍ୟତଃ ସଉରା ସଂପ୍ରଦାୟଙ୍କ ମୁଖ୍ୟ ବାଦ୍ୟଯନ୍ତ୍ର ଭାବେ ବ୍ୟବହୃତ । ଗୁଣୁପୁର ଅଞ୍ଚଳର ସଉରାମାନେ ପିତୃକାର୍ଯ୍ୟ, ନୂଆଖିଆ ପର୍ବ, କାନ୍ଦୁଲ -ରାଣୀପର୍ବ, ବାଉଁଶ ପର୍ବ ଓ ଅନ୍ୟାନ୍ୟ ପର୍ବ ପର୍ବାଣୀରେ ଢାପ ବଜାଇବା ଏକ ପାରମ୍ପରିକ ବିଧି । ଏକ ଗୋଲେଇ କାଠ ବଳୟର ଗୋଟିଏ ପାଖକୁ ସରୁ ଗୋ-ଚର୍ମରେ ଅଠାଦ୍ୱାରା ଛାଉଣୀ କରାଯାଏ । ଏହାକୁ ନିଆଁରେ ସେକି ଦୁଇଟି ସରୁକାଠି ଦ୍ୱାରା ଆଘାତ କଲେ ଏକ ଭିନ୍ନ ରକମର ନାଦ ସୃଷ୍ଟି ହୋଇଥାଏ । ସେଇଠୁ ପରଜାମାନେ ବାଲିଯାତରା ଅବସରରେ ଯେଉଁ ଢାପ ବାଲିଦେବତା ଆଗରେ ବଜାନ୍ତି ତାକୁ 'ବାଲି ଢାପ୍' ବୋଲି କୁହାଯାଏ । ଏହାକୁ ଅତି ପବିତ୍ର ମନେ କରାଯାଏ ଏବଂ କେବଳ ବାଲି ସମୟରେ ହିଁ ବ୍ୟବହାର କରାଯାଇଥାଏ । ଏହି ବାଦ୍ୟ ଅବିଭକ୍ତ କୋରାପୁଟ, ଓଡ଼ିଶା, ଛତିଶଗଡ଼ ଓ ଆନ୍ଧ୍ର ଆଦି ସମସ୍ତ ଆଦିବାସୀ ଅଞ୍ଚଳରେ ପ୍ରଚଳିତ ।

୩.  **ଢେକାର୍** - *ଦେ.ବି.* : ଫୁଟାଣି, ଅହଂକାରୀ କଥା । କିନ୍ତୁ ତା ଅବାସ୍ତବ ଓ ମୂଲ୍ୟହୀନ, କାରଣ ବେଳ ପଡ଼ିଲେ ଗୋଡ଼ ଧରିବାକୁ ଏହି ଲୋକେ ପଛାନ୍ତି ନାହିଁ । ଏ ସଂପର୍କରେ କୋରାପୁଟରେ ପ୍ରଚଳିତ ପ୍ରବାଦ :

"ମାଲି ଶୁଣ୍ଡୀ ଆକାରି

ବାମନ୍ ଭିକାରୀ

ଡମ୍ ଢେକାରୀ ।

ଅର୍ଥାତ୍ ମାଳି ଓ ଶୁଣ୍ଢୀ ହେଉଛନ୍ତି ଅହଂକାରୀ । ବ୍ରାହ୍ମଣ ହେଉଛନ୍ତି ଭିକାରୀ ଜାତି ।

ଡମ ହେଉଛନ୍ତି ଫୁଟାଣି କଥା କହିବା ବାଲା, କିନ୍ତୁ ବେଳ ପଡ଼ଇଲେ ଗୋଡ଼ ଧରିବେ ।

୪. ଢେକୁନ୍ - *ଦେ.ବି. :* ଛାରପୋକ : ଓଡ଼ଶ-ମଣିଷମାନଙ୍କ ରକ୍ତ ଶୋଷି ପିଉଥିବା ଏକ ପ୍ରକାର ପୋକ । ଇଂ- Bedbug

ଆଦିବାସୀ ସମାଜରେ ସମସ୍ତେ ଢେକୁନ୍ ସହ ବେଶ ପରିଚିତ । ଢେକୁନ୍ ସଂପର୍କରେ ଏକ ପ୍ରବାଦ ହେଉଛି "ଗଲା ଜନମର ଢେକୁନ୍ ଚାବରା ହେଇ ରଇଲେ ମନୁଷ୍ ମନର୍ ରକତ୍ ଖାଇ ରଇଲେ ପରୁଜନମକେ ସେମନ୍ ମନୁଷ୍ ହେବାର, ଆରି ମୁନୁଷ୍ ମନ୍ ଚାବରା ଢେକୁନ୍ ହେବାର ।" ଆଦିବାସୀ ସମାଜର ଲୋକମାନେ କର୍ମଫଳ ଓ ପୁନର୍ଜନ୍ମ ଉପରେ ଗଭୀର ବିଶ୍ୱାସ ରଖନ୍ତି । ସେମାନେ କହନ୍ତି ମଣିଷକୁ ତା ପୂର୍ବ ଜନ୍ମର କଳାକର୍ମର ଫଳ ଭୋଗିବାକୁ ହିଁ ପଡ଼ିଥାଏ । ଯିଏ ଏ ଜନ୍ମରେ ଯେଉଁ ପ୍ରକାର କର୍ମ କରିଥାଏ ସିଏ ଆର ଜନ୍ମରେ ସେଇ ପ୍ରକାର କର୍ମର ଫଳ ଭୋଗ କରିଥାଏ । ଅନ୍ୟ ଦ୍ୱାରା ଲୁଣ୍ଠିତ ହେଉଥିବା ଲୋକଙ୍କୁ ଏମାନେ ଢେକୁନ୍ ବା ଛାରପୋକ ସହିତ ତୁଳନା କରନ୍ତା । ସେମାନଙ୍କ ମତରେ ଏବେ ଯେଉଁ ଲୋକମାନେ ଚାକିରି କରି ଲାଞ୍ଚ ନେଉଛନ୍ତି, ଯେଉଁମାନେ ଅନ୍ୟମାନଙ୍କୁ ଲୁଟି ମାରି ଖାଇବାର ପ୍ରକୃତିକୁ ଛାଡ଼ି ପାରୁ ନାହାନ୍ତି, ସେମାନେ ପୂର୍ବ ଜନ୍ମରେ ଛାରପୋକ ହିଁ ଥିଲେ । ଏ ଜନ୍ମରେ ମଣିଷ ହୋଇ ଜନ୍ମ ନେଇଥିଲେ ବି ନିଜର ରକ୍ତ ଶୋଷିବାର ପ୍ରକୃତିକୁ ଭୁଲି ପାରିନାହାନ୍ତି । ସେମିତି ସେତେବେଳେ ଯେଉଁମାନେ ମଣିଷ ହୋଇ ଛାରପୋକମାନଙ୍କ କାମୁଡ଼ା ସହ୍ୟକରି ପଡ଼ି ରହିଥିଲେ । ସେମାନେ ଏବେ ଛାରପୋକ ହୋଇ ଏହି ଶୋଷକ ଗୋଷ୍ଠୀକୁ ଆହୁରି ଅଧିକ ଯନ୍ତ୍ରଣା ଦାୟକ ଭାବେ ଶୋଷି ଲୁଟିମାରି ଖାଇବାରେ ଲାଗିଛନ୍ତି । ଏହା ବାସ୍ତବରେ ସାଂପ୍ରତିକ ସମାଜରେ ଶୋଷକ, ଶାସକ ତଥା ଶୋଷିତ ଓ ଶାସିତ ମାନଙ୍କ ପାଇଁ ଏକ ଅର୍ଥପୂର୍ଣ୍ଣ ସଂକେତ କହିଲେ ଅତ୍ୟୁକ୍ତି ହେବ ନାହିଁ ।

୫. ଢେଗ : ଢଗ୍ - *ଦେ.ବି. :* ଢଗଢମାଳି । ଇଂ- Proverb. ଆଦିବାସୀ ସଂପ୍ରଦାୟରେ ବହୁ ସଂଖ୍ୟାରେ ଢଗଢମାଳି ପ୍ରଚଳିତ । ଏହା ଉଭୟ ଗଦ୍ୟ ଓ

ପଦ୍ୟଧର୍ମୀ । ଯେକୌଣସି ଆଦିମ ଜନଗୋଷ୍ଠୀର ଅଭିଜ୍ଞତା ସମୃଦ୍ଧ ଜୀବନର ମାର୍ମିକ ଆଲେଖ୍ୟ ହେଉଛି 'ଢେଗ୍' ବା ଢଗଢମାଳି । ପ୍ରତ୍ୟେକ ଜାତି ବା ଗୋଷ୍ଠୀର ଲୋକ ସାହିତ୍ୟର ଆଦି ରୂପ ହେଉଛି ଢଗଢମାଳି ଓ କଥାନୀ । ସଂଗୀତର ଶୃଙ୍ଖଳା ଭଳି ଶୃଙ୍ଖଳିତ ଶବ୍ଦ ସଂଯୋଜନାର ଚତୁର କଥନ ଭଂଗୀରେ ସମୃଦ୍ଧ ଏହି ଢେଗ୍ ପ୍ରତି ଜନଗୋଷ୍ଠୀର ଜୀବନ ନାଟିକା କହିଲେ ଅତ୍ୟୁକ୍ତି ହେବ ନାହିଁ । ଜୀବନାନୁଭବର ସାନ୍ଦ୍ରତା, ଉପଲବ୍ଧିର ଗଭୀରତା ଓ ସତ୍ୟପ୍ରକାଶ ବା ଅନ୍ଧକାର ଦିଗକୁ ଆଲୋକିତ କରିବା ହେଉଛି ଏହାର ବିଶେଷତ୍ୱ । ଲୋକମୁଖର ଭାଷା ଓ ପ୍ରାଣ ସ୍ପନ୍ଦନରେ ଅନୁରଣିତ ଏହି ସବୁ ଢେଗ୍ ଜଣେ ବ୍ୟକ୍ତି, କିଛି ବ୍ୟକ୍ତି କିମ୍ବା ଏକ ସମୂହର ଅନୁଭୂତି ପ୍ରସୂତ ଅଭିବ୍ୟକ୍ତି ହୋଇଥାଏ । ହୁଏତ ଏହା କିଛି ଘଟନା ବା ପରିବେଶ ବା ଜୀବନ ଦର୍ଶନ ବା ତିକ୍ତମଧୁର ଅନୁଭୂତିର ପରିପ୍ରକାଶ କରିଥାଏ, ତେବେ ମୁଖ୍ୟ ବିଷୟ ହେଉଛି ଥରେ ଜନଗୋଷ୍ଠୀରେ ଗୃହୀତ ହୋଇଯିବା ପରେ ଏହା ପାଲଟିଯାଏ ସେହି ଜନଜାତିର କୋଠ ସଂପତ୍ତି । ଅନ୍ୟାନ୍ୟ ସମସ୍ତ ଲୋକ-ସାହିତ୍ୟର ଅୟମାରମ୍ଭ ଏହିଠାରୁ ହିଁ ହୋଇଥାଏ ।ଅବିଭକ୍ତ କୋରାପୁଟର ଦେଶିଆଭାଷାରେ ଏଭଳି ସମୃଦ୍ଧିଶାଳୀ, ସଂକ୍ଷିପ୍ତ, ସହଜ ଓ ତୀକ୍ଷ୍ଣ ରସାଳ ଅଭିବ୍ୟକ୍ତି ଶହଶହ ସଂଖ୍ୟାରେ ଦୈନନ୍ଦିନ ବ୍ୟବହାର ହୋଇଥାଏ । ନିଜ କଳାକୁଶଳତାର ପରିଚୟ ଦେବାପାଇଁ ବିଭିନ୍ନ ପାତ୍ରମୁଖରେ ଏହା ବ୍ୟବହାର ହେଲାବେଳେ ଏଥିରେ ଫୁଟିଉଠେ କବିତ୍ୱ, କଳ୍ପନାବିଳାସ, ବ୍ୟଙ୍ଗ, ଅନୁରାଗ, ବିରହ, ହାସ୍ୟ ଓ ଆଦି ରସବୋଧ । ଆଉ ବି ଅନେକ ସମୟରେ ଏଥିରେ ଥାଏ, ଡାକବଚନ ବା ଖନା ବଚନ ଭଳି ଉପଦେଶାତ୍ମକ ଆପ୍ତବାଣୀ । ଏହି ଢେଗ୍ ବିଭିନ୍ନ ରୂପରେ ପରିପ୍ରକାଶ ହୋଇଥାଏ । କେତେବେଳେ ଏହା ବାକ୍‌ନା, କେତେବେଳେ ଏହା ଆପ୍ତବାକ୍ୟ । କେତେବେଳେ ଏହା ଗୀତକବିତା ଓ କେତେବେଳେ ଏହା ଖଣ୍ଡଗଦ୍ୟ । ଦେଶିଆ ଢେଗ୍ ଉପରେ ଏ ପର୍ଯ୍ୟନ୍ତ ବିଶେଷ କାର୍ଯ୍ୟ ହୋଇନାହିଁ । ଏହି ଅନୁଦ୍‌ଘାଟିତ ଲୋକସଂପଦ ଏବେବି ଗବେଷକମାନଙ୍କର ପଦପାତକୁ ଓ ଅନୁସନ୍ଧାନକୁ ଅପେକ୍ଷା କରିଛି । ସେଥିରେ କେତୋଟି ଦୃଷ୍ଟାନ୍ତ ହେଉଛି :

ଖଣ୍ଡକାବ୍ୟଧର୍ମୀ : (୧) ନିଶା ହେଲେ ଦିଶା । ଅର୍ଥାତ୍, ନିଶା ଖାଇଲେ ଚଉଦ ଭୁବନ ଦିଶେ । (୨) ଘରେ ନାଇଁ ରନ୍ଧା ଦୁଆରେ ଉଁଇଷାବନ୍ଧା । ଅର୍ଥାତ୍, ଅଣ୍ଡିରେ ନଥାଇ ଧନ, ପୁଅ ବାହା କରି ମନ । (୩) ରକତ୍ ହେଲେ ଅକତ ନାଇଁ, ଅକତ ହେଲେ ରକତ ନାଇଁ । ଯଥା : କେଉଁ ଆଡ଼କୁ ନଅଣ୍ଡିବା ।

ଗୀତଧର୍ମୀ ବାକ୍‌ନା - ତାର ଉପରେ ତାର୍
ତାର୍ ଉପରେ ବସ୍‌ଲା ଅଚେ ତହସିଲ୍‌ଦାର ।
(ଉତ୍ତର : ବୁଢ଼ିଆଣି ବା ମାଙ୍କଡ଼ସା)

ଗୀତଧର୍ମୀ ଢେଗ୍ (୧) ଈଶର୍ କାଇଲା ମୁଗ୍‌ନି କଦଲୀ
ପାରବତୀ କାଇଲା ଚପା
ବନସ୍ତ ବିତରେ ଗାଈ ପକାଇଲେ
ବଲଦ୍‌କେ ମାରେ ଦୁକା ।

ଅର୍ଥାତ୍, ଈଶ୍ୱର ପାଚିଲା କଦଳୀ ଖାଇଲେ ପାର୍ବତୀ ପାଇଲେ ଚୋପା । ବଣରେ ଗାଈ ପ୍ରସବକଲେ ବଳଦକୁ ହେଲାଣି ପ୍ରସବ ବେଦନା । ଅର୍ଥାତ୍, ଅନ୍ୟ କଥାରେ ମୁଣ୍ଡ ପୁରାଅ ନାହିଁ ।

(୨) ଗଟେକ୍ ଆକି ଆକି ନାଇଁ
ଗଟେକ୍ ସାକି ସାକିନାଇଁ ।

କବିତାଧର୍ମୀ ଢେଗ୍ : ସୁଜାକେ ସୁଜେ
ବୁଜାକେ ବୁଜେ
ବାର୍‌ବରଷ୍ ପାନି ମାର୍‌ଲେ
ପତର୍ ନାଇ ବିଜେ ।

ଅର୍ଥାତ୍, ବୁଝିବା ଲୋକ ବୁଝିଯାଆନ୍ତି । ଅବୁଝା ଲୋକକୁ ଯେତେ ବୁଝାଇଲେ ମଧ୍ୟ ବୁଝନ୍ତି ନାହିଁ ।

ବାକ୍‌ନାଧର୍ମୀ କବିତା : କିକ୍‌ରି କସ୍‌ନେ ଯାଇ ରେଲି
କିକ୍‌ରି କାଣ୍ଡାକେ ମାଡ଼ିରେଲି
ଉଦ୍‌ଲି ଉଦ୍‌ଲି ଡଗାଇଲି ।
ଉତ୍ତର : (ଲିଆ ବା ଖଇ ଭାଜିବା)

*୬.* ଢେମ୍‌ସା - *ଦେ.ବି. :* ଆଦିବାସୀ ମାନଙ୍କ ପ୍ରଧାନ ନୃତ୍ୟ । ଏକପ୍ରକାର ସଂଘବଦ୍ଧ ନାଚ : ପ୍ରାୟ ୧୨ରୁ ୧୫ ଝିଅ ହାତ ଧରାଧରି ହୋଇ ସମବେତ ଗୀତଗାନକରି ନୃତ୍ୟ କରିଥାନ୍ତି । ରାତିସାରା ଢେମ୍‌ସା ନୃତ୍ୟ ଚଇତ୍‌ପରବ୍ ତଥା ଅନ୍ୟାନ୍ୟ ପର୍ବ ଅବସରରେ ହୋଇଥାଏ ।

୭. **ଢେମସା ଗୀତ୍** - *ଦେ.ବି. :* ଢେମସା ନାଚରେ ଗାନ କରାଯାଉଥିବା ଗୀତ । ଆଦିବାସୀ ଦେଶିଆ ଯୁବକ ଯୁବତୀ ଢେମସା ନାଚୁଥିବା ବେଳେ ନାଚର ଗୀତ ଯେବେ ମନ୍ଥ ବା ଧୀର ହୋଇଯାଏ ସେତେବେଳେ ଉଭୟ ଧାଙ୍ଗଡ଼ା ଧାଙ୍ଗଡ଼ୀ ମିଳିତ ସ୍ୱରରେ ଗାଇ ଉଠନ୍ତି -

"ବାଟେ ବାଟେ ଗାଲା ବାୟା ବାମୁନ
ଧାନର ନାମତ କରି ବାମନ
ଉଦିଲା କଅଁଲି ଜନ
ତମର ସାଂଗେ ଆମେ ଢେମସା ଡେଙ୍ଗଁଲେ
ଡୁମୁରି ଫୁଲ ସମାନ...
ସାରି ଗାଲି.... ସାରିଗାଲିରେ ।
ଲେ୍ ଲେ ରିରି ଲୋୟ ରେଲା ରେଲା ।"

୮. **ଢେମସା ନାଚ୍ / ଢେମସା ନୃତ୍ୟ** - *ଦେ.ବି. :* ଢେମ୍‌ସା ନାଟ । ଇଂ- DHEMṢA DANCE. ଏହା ଏକ ପ୍ରକାର ପ୍ରମୁଖ ଆଦିବାସୀ ନୃତ୍ୟ । ଏହି ନୃତ୍ୟ କେବଳ ଅବିଭକ୍ତ କୋରାପୁଟ ଜିଲ୍ଲାରେ ପ୍ରଚଳିତ । ଏ ଜିଲ୍ଲାରେ ପ୍ରାୟତଃ ସମସ୍ତ ପ୍ରକାର ଆଦିବାସୀମାନେ ଏହି ନୃତ୍ୟକୁ ବିଭିନ୍ନ ଅବସର ଯଥା : ଭଲମନ୍ଦ, ଯାନିଯାତ୍ରା ଏବଂ ପର୍ବପର୍ବାଣୀମାନଙ୍କରେ ପରିବେଷଣ କରିଥାନ୍ତି । ଏହି ନୃତ୍ୟରେ ଧୁମ୍‌ସା ନାମକ ଏକ ବାଦ୍ୟ ତଥା ମହୁରୀ ହିଁ ପ୍ରଧାନ ବାଦ୍ୟ । ଆଜିକାଲି ଟାମକ୍ ଢୋଲ, ତିଡ଼ିବିଡ଼ି, ବଂଶୀ ଆଦି ବାଦ୍ୟଯନ୍ତ୍ର ଗୁଡ଼ିକ ସାମିଲ୍ କରାଯାଉଛି । 'ଧୁମ୍‌ସା'ରୁ ଢେମସା ହୋଇଥିବା ମନେହୁଏ । ଆଗକାଳରେ ଏ ନୃତ୍ୟ ପରିବେଷଣ ସମୟରେ ନିଜ ପାରମ୍ପରି ପାରିକ ଅଳଙ୍କାର ପିନ୍ଧୁଥିଲେ । ଆଜିକାଲି ଆଧୁନିକ ଅଳଙ୍କାର ବ୍ୟବହାର କରୁଥିବା ଦେଖାଯାଉଛି । ସ୍ତ୍ରୀ ଲୋକମାନେ ରଂଗରଂଗିଆ ଶାଢ଼ି ପିନ୍ଧିଥାନ୍ତି ଓ ପୁରୁଷମାନେ ଧୋତି, ଲୁଂଗି, କାମିଜ ଆଦି ପିନ୍ଧିଥାନ୍ତି ।

ଏ ନୃତ୍ୟରେ ବହୁ ସ୍ତ୍ରୀ, ପୁରୁଷ, ଧାଂଡ଼ାଧାଂଡ଼ୀ, ପୁଅ ଓ ଝିଅମାନେ ସାମିଲ୍ ହୋଇଥାନ୍ତି । ଏଥିରେ ଯିଏ ଯେତେବେଳେ ସାମିଲ ହୋଇପାରେ ବା ଦଳରୁ ବାହାରିଯାଇ ପାରେ । ସମୟେ ସମୟେ ଗୋଟିଏ ନୃତ୍ୟ ଦଳରେ ଦୁଇ ଶହରୁ ଅଧିକ ଲୋକ ସାମିଲ ହୋଇଥିବା ଦେଖାଯାଏ । ଏହି ନୃତ୍ୟର ସବା ଆଗରେ ଜଣେ ଅଭିଜ୍ଞ ବ୍ୟକ୍ତିଥାନ୍ତି ।

ତାଙ୍କୁ 'ବାଟକଢ଼ା' କହନ୍ତି । ସେ ହାତରେ ମୟୂରପୁଚ୍ଛ ବା ଗାମଛା ବା ବାଡ଼ିଟିଏ ଧରିଥାନ୍ତି । ଢେମସା ନାଚର ସ୍ୱତନ୍ତତା ହେଉଛି, ଯୁବକ ଯୁବତୀଗଣ (ଯେଉଁମାନେ ନୃତ୍ୟରେ ଭାଗ ନେଇଥାନ୍ତି) ଅଣ୍ଟାରେ ହାତକୁ ଛନ୍ଦ, ଲମ୍ବା ଧାଡ଼ିରେ ସର୍ପ ପରି ଅଙ୍କବଙ୍କା ଧାଡ଼ିରେ, ଗୋଲାକାର ବା ଅର୍ଦ୍ଧ ଗୋଲାକାର ଧାଡ଼ିରେ ବାଦ୍ୟର ତାଳେତାଳେ ଆଗକୁ ପଛକୁ ନାଚ କରିଥାନ୍ତି ଓ ଗୀତ ଗାଇଥାନ୍ତି ।

ପ୍ରକାର ଭେଦ : ଢେମସା ନୃତ୍ୟକୁ ପ୍ରଚଳିତ ନୃତ୍ୟଶୈଳୀ ଦୃଷ୍ଟିରୁ ନିମ୍ନମତେ ବର୍ଗୀକରଣ କରାଯାଇଛି, ଯଥା :

(୧) ଖୁନ୍ଦା ଢେମସା : ଅଣ୍ଟା ନୁଆଁଇ ବସିବା ଭଳି ଭଂଗି ପ୍ରଦର୍ଶନ ପୂର୍ବକ ନୃତ୍ୟ କରିବା ।

(୨) ଦଉଡ଼ାଣି ଢେମସା : ଧାଇଁଧାଇଁ ନୃତ୍ୟ ପ୍ରଦର୍ଶନ କରିବା । ଏହି ନୃତ୍ୟର ପଦପାତ କ୍ଷିପ୍ର ।

(୩) ମାଣ୍ଡିଲଚ୍‌କାନି : ଆଗକୁ ଧାଡ଼ି ହୋଇ ପାଦ ପକେଇ ଓ ପଛକୁ ଫେରି ପାଦ ପକେଇ ନୃତ୍ୟ କରିବା । ଦୁଇପାଦ ଯୋଡ଼ି ନିତମ୍ବକୁ ତଳକୁ ଉପରକୁ ଝୁଲାଇ ନୃତ୍ୟ କରାଯାଏ । ଏହି ନୃତ୍ୟରେ ମହୁରିଆ ମହୁରୀ ବଜାଇବା କୌଶଳ ଅତ୍ୟନ୍ତ ଚମତ୍କାର ।

(୪) ଆଣ୍ଠାଝୁଲାନି : ତିନିପାଦ ଆଗକୁ ଯାଇ ଗୋଟାଏ ପାଦରେ ଆଣ୍ଠାକୁ ପଛକୁ ଝୁଲାଇ ନୃତ୍ୟ କରିବା ।

(୫) ଗୁଡ଼ି ବେଟାନି : ଦଳର ସମସ୍ତେ ନଇଁ ନଇଁ ଆଗକୁ ଚାରିପାଦ ଯାଇ ଓ ପଛକୁ ଚାରିପାଦ ଆସି ତଳୁ ଗୋଡ଼ି ଗୋଟାଇବା ଭଂଗୀରେ ନୃତ୍ୟ କରିବା ।

(୬) ଲୁହୁରା ମରା ଢେମସା : ବାମ ପାଦ ଡାହାଣ ହାତ କହୁଣି / ଡାହାଣ ପାଦ ବାମ ହାତ କହୁଣି ମାରି ନୃତ୍ୟ କରିବା । ଏହି ନୃତ୍ୟରେ ଲୁହୁରା (କମାର) ହାତୁଡ଼ି ପିଟିବା ଶୈଳୀରେ ନୃତ୍ୟ କରାଯାଏ ।

(୭) ସାଧା ଢେମସା / ହିଣ୍ଡାସି ଢେମସା : ଚାଲିବା ଭଳି ନୃତ୍ୟ, ଯାହାକି ଢେମ୍‌ସାର ପ୍ରଥମ ପର୍ଯ୍ୟାୟ ।

(୮) **ରିଂଜୋଡ଼ି :** ଏହା ପରଜାମାନଙ୍କ ଏକ ପ୍ରମୁଖ ନୃତ୍ୟ ଶୈଳୀ ଏହି ନୃତ୍ୟରେ ପୁଅ ଝିଅମାନେ ନୃତ୍ୟ କରିଥାନ୍ତି ।

(୯) **ସିରା ଢେମସା :** ଏହି ନୃତ୍ୟରେ ସିରା ବା କାଳିସୀ ଲାଗିଲା ଭଳି ନୃତ୍ୟ କରାଯାଏ ।

(୧୦) **ବଣ୍ଡା ଢେମସା :** ବଣ୍ଡାମାନଙ୍କ ନୃତ୍ୟ ଶୈଳୀ ଅନୁଯାୟୀ ମନ୍ଥର ପଦପାତରେ ନୃତ୍ୟ କରାଯାଏ । ଦୁଇପାଦ ମିଶାଇ ଡାହାଣ ଓ ବାମକୁ ଡେଇଁ ନୃତ୍ୟ କରାଯାଏ ।

(୧୧) **ଅକ୍‌ସେ ଗୁଣ୍ଡାର ଢେମସା :** ଏହି ନୃତ୍ୟ ଗାଦବା ସଂପ୍ରଦାୟଙ୍କ ନିଜସ୍ୱ ନୃତ୍ୟଶୈଳୀ । ଏଥିରେ ମହୁରୀ ଓ ଖିରିଡିବାଦ୍ୟର ମନମୁଗ୍ଧକରି ଧ୍ୱନି ଅତ୍ୟନ୍ତ ଉପଭୋଗ୍ୟ ।

୯. **ଢେଲାପିଟାଣି ପରବ୍ -** *ଦେ.ବି. :* ଦେଶିଆ ସମାଜର ଏକ ପର୍ବ ବିଶେଷ । ବର୍ଷାମାସ ପୂର୍ବରୁ ଏହା ପାଳନ କରାଯାଏ । ଉକ୍ତ ପର୍ବରେ ଗାଁର ଧାଙ୍ଗଡ଼ା ଧାଙ୍ଗିଡ଼ୀମାନେ ନୂତନ ବସ୍ତ୍ର ପରିଧାନ କରି ଜମିକୁ ଯାଇ ଚାଷ କରାଯାଇଥିବା ଜମିକୁ ପୂଜାର୍ଚ୍ଚନା କରନ୍ତି । ପୂଜାପରେ ଜମିର ମାଟିକୁ କୋଡ଼ଣ ଦ୍ୱାରା ଗୁଣ୍ଡ କରାଯାଏ । ଲଟାବୁଟା କଟାଯାଏ । ମାଟିକୁ ଗୁଣ୍ଡ କରିବାବେଳେ ସେମାନେ ସେମାନଙ୍କର ଗୋଷ୍ଠୀ ନୃତ୍ୟର ଆଶ୍ରା ନିଅନ୍ତି । ମାଟିର ଉର୍ବରତା କାମନା କରନ୍ତି ଓ ଆନନ୍ଦରେ ଢୋଲ ମହୁରୀର ତାଳେତାଳେ ଗାଇ ଉଠନ୍ତି :

ମାଟିମା ମାଟିମା ଜୁହାର ଆମର ତୋକେ
ପରୁର୍ କାଜେ, ଶାଗ୍ ଭାତ ଦେ' ନଇଲେ ମରିବୁ ଭୁକେ ।

୧୦. **ଢୋଲ -** *ଦେ.ବି. :* ଏହା ଏକ ଆନଦ୍ଧ ବାଦ୍ୟ । ବିଭିନ୍ନ ଆଦିବାସୀ ସଂପ୍ରଦାୟରେ ଏହି ଲୋକପ୍ରିୟ ବାଦ୍ୟଟିର ପ୍ରଚଳନ ରହିଛି । ବଣ୍ଡାମାନଙ୍କ କ୍ଷୁଦ୍ର ଢୋଲ 'ଟିଡିଂ' ସଉରାମାନଙ୍କ ଢୋଲ 'ଡୁଡୁଂ', ଗଣ୍ଡମାନଙ୍କ ଡମ୍ବରୁ, ଆକୃତିର ଢୋଲ 'ଡୁମୁରୀ', ଦୁରୁଆମାନଙ୍କ ମଧ୍ୟମ ଆକାରର ଢୋଲ, 'ଢୋଲା' ନାମରେ ପରିଚିତ । କୋୟାମାନଙ୍କ ୩/୪ ଫୁଟ ଲମ୍ବର ଢୋଲ ସବୁଠାରୁ ବୃହତ୍ ଢୋଲ । ଆଦିବାସୀଙ୍କ ବିଭିନ୍ନ ନୃତ୍ୟଗୀତରେ ଢୋଲ ଏକ ମୁଖ୍ୟ ବାଦ୍ୟଯନ୍ତ୍ର ଭାବେ ବାଦନ କରାଯାଏ ।

୧୧. ଢୋଲେ - *ଦେ.ବି. :* ଢୋଲ ବା ମାଦଳ ଶ୍ରେଣୀୟ ବାଦ୍ୟଯନ୍ତ୍ର । କୋୟା ଆଦିବାସୀ ଗୋଷ୍ଠୀ ମାଦଲ ଶ୍ରେଣୀୟ ଏକ ପ୍ରକାର ବାଦ୍ୟ ତିଆରି କରି ବ୍ୟବହାର କରିଥାନ୍ତି, ଯାହାର ବାମପଟରେ ଗାଈ ଚମଡ଼ା ଓ ଡାହାଣ ପଟରେ ଛେଳି ଚମଡ଼ା ଲାଗିଥାଏ । ଏହାର ଦୈର୍ଘ୍ୟ ପ୍ରାୟ ତିନିଫୁଟ୍ ବା ତା ଠାରୁ ଅଧିକ ଓ ଗୋଲେଇ ପାଖାପାଖି ୨୪-୩୦ଇଞ୍ଚ ହୋଇଥାଏ । ଏହା ସହିତ ଗଣ୍ଡମାନଙ୍କ କାଠମାନ୍ଦାର ତୁଳନା କରାଯାଇପାରେ । ଢେମ୍ସା ନାଟ ବେଳେ ଢୋଲ ସହ ଟମକ୍, ତିଡ଼ିବିଡ଼ି ଓ ମହୁରୀ ବାଦନ କରାଯାଇଥାଏ ।





୧. **ଦଣ୍ଡକାରଣ୍ୟ** - *ଦେ.ବି. :* ଦଣ୍ଡଙ୍କ ରାଜ୍ୟର ଅରଣ୍ୟ । ସଂପ୍ରତି ଆନ୍ଧ୍ରପ୍ରଦେଶର ଖମାମ ଜିଲ୍ଲା, ମଧ୍ୟପ୍ରଦେଶର ବସ୍ତର ଜିଲ୍ଲା, ମାଲକାନଗିରି ଜିଲ୍ଲାର କିଛି ଅଂଶ, ନବରଂଗପୁର ଜିଲ୍ଲାର କିଛି ଅଂଶ ଓ କଳାହାଣ୍ଡି ଜିଲ୍ଲାର କିଛି ଅଂଶକୁ ନେଇ ଅତୀତରେ ଏକ ବନରାଜ୍ୟ ଗଢ଼ି ଉଠିଥିଲା । ସେଠାରେ (ପୌରାଣିକ) ସତ୍ୟଯୁଗରେ ଦଣ୍ଡ ନାମରେ ଜଣେ ରାଜା ଶାସନ କରୁଥିଲେ । ଦଣ୍ଡ ବା ଦଣ୍ଡକ ରାଜାଙ୍କର ଏହି ରାଜ୍ୟଟି ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟଙ୍କ ଅଭିଶାପରେ ଧ୍ୱଂସ ପ୍ରାପ୍ତ ହୋଇ ପରବର୍ତ୍ତୀ ସମୟରେ ଦଣ୍ଡକ ଅରଣ୍ୟ ବା ଦଣ୍ଡକାରଣ୍ୟରେ ପରିଣତ ହୋଇଛି । ଏହି ଅରଣ୍ୟ ଦଣ୍ଡଙ୍କ ଶାସନର ପରବର୍ତ୍ତୀ ସମୟରେ ମୁନିଋଷିମାନଙ୍କ ତପସ୍ୟା ପାଇଁ ବ୍ୟବହୃତ ହୋଇଥିବାରୁ, ଏହା ଜନସ୍ଥାନ ଭାବେ ଖ୍ୟାତି ଲାଭ କରିଥିଲା । ରାମାୟଣ ଯୁଗରେ ରାମଚନ୍ଦ୍ର ବନବାସରେ ଆସି ଏହି ଦଣ୍ଡକାରଣ୍ୟ ଅଞ୍ଚଳରେ ଅବସ୍ଥାନ କରୁଥିବା ସମୟରେ ଏଠାରୁ ତାଙ୍କ ପତ୍ନୀ ସୀତାଙ୍କୁ ରାବଣ ନାମକ ଅସୁର ରାଜା ଅପହରଣ କରି ନେଇଥିବା କଥା ରାମାୟଣ ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି । ରାବଣର ଭଉଣୀ ସୁର୍ପଣଖା ଦଣ୍ଡକାରଣ୍ୟ ଅଞ୍ଚଳରେ ତା'ର ମାଉସୀ ପୁଅ ଭାଇଙ୍କ ସହିତ ଅବସ୍ଥାନ କରୁଥିଲା ଓ ସେ ରାମଙ୍କ ଭାଇ ଲକ୍ଷ୍ମଣଙ୍କୁ ବିବାହ କରିବାକୁ ଚାହିଁବାରୁ ଲକ୍ଷ୍ମଣ ତା'ର ନାକ କାନ କାଟି ଛାଡ଼ି ଦେଇଥିଲେ । ପରବର୍ତ୍ତୀ ସମୟରେ ଓଡ଼ିଶାର ମାଲକାନଗିରି ଓ ନବରଂଗପୁର ଜିଲ୍ଲାର ଏଇ ଦଣ୍ଡକାରଣ୍ୟ ଅଞ୍ଚଳରେ ଷଷ୍ଠ ଦଶକରେ ଭାରତ ପାକିସ୍ତାନ ଯୁଦ୍ଧ (୧୯୬୫)ରେ ଅତ୍ୟାଚାରିତ ବାଂଗଲାଦେଶୀ ହିନ୍ଦୁ ରିଫ୍ୟୁଜିମାନେ ଭାରତକୁ ପଳାଇଆସି କେନ୍ଦ୍ର ସରକାରଙ୍କ ଦ୍ୱାରା ଥଇଥାନ ହୋଇଥିଲେ । ସେଇ ଥଇଥାନ ପ୍ରକଳ୍ପର ନାମ ଦଣ୍ଡକାରଣ୍ୟ ପ୍ରକଳ୍ପ । ୧୯୯୦ ସୁଦ୍ଧା ଏଇ ପ୍ରକଳ୍ପ ଓଡ଼ିଶା ସରକାରଙ୍କ ହାତକୁ ହସ୍ତାନ୍ତରିତ ହୋଇ ଯାଇଛି ।

୨. **ଦଣ୍ଡି** - *ଦେ.ବି. :* ନାକରେ ପିନ୍ଧା ଯାଉଥିବା ଅଳଙ୍କାର ବିଶେଷ । ନାକତଳେ ପିନ୍ଧୁଥିବା ଏକ ସୁନା ଅଳଙ୍କାର ବିଶେଷ, ଯାହାକି, ସ୍ୱଚ୍ଛଳ ଘରର ଆଦିବାସୀ ଲଳନାମାନେ ପିନ୍ଧିଥାନ୍ତି ।

ଏହା ନାକତଳୁ ଓଠ ପର୍ଯ୍ୟନ୍ତ ଲମ୍ବିଥାଏ । ଏହା ମଝିରେ 'ଖଣ୍ଡି' ବସିଥାଏ । ଗୀତରେ ବ୍ୟବହାର : ଆସିବୁକି ଡୁଇ ପଇସା ମୁଣ୍ଡି, ତକେ ଘେନିଦେବି ନାକର ଦଣ୍ଡି ।

୩. ଦଣ୍ଡିପଦର - *ଦେ.ବି. :* ଏକ ଗ୍ରାମ ବିଶେଷର ନାମ । ମାଲକାନଗିରି ଜିଲ୍ଲା ମହୁପଦର ପଞ୍ଚାୟତର ଅନ୍ୟ ଏକ ଗାଁ ହେଉଛି ଦଣ୍ଡିପଦର । କୋୟା ଜାତିର ଜଣେ ଆଦିବାସୀ ପୁରୁଷ ଦଣ୍ଡିପଡ଼ିଆମି ବହୁକାଳ ପୂର୍ବେ ଏହି ଗାଁ ବସାଇଥିଲେ । କିନ୍ତୁ ସାଲମିର ଆଦିପୁରୁଷ ବିରାମାଝୀ ଓ ତାରାମାଝୀଙ୍କ ଭଳି ସେ ଦଣ୍ଡିପୂଜା ପାଆନ୍ତି ନାହିଁ । ତାଙ୍କର ନାଁ ଅନୁସାରେ ଗାଁରନାମ ଦଣ୍ଡିପଦର । ପଡ଼ିଆମି ସଂଜ୍ଞାଧାରୀ ଏହି କୋୟାମାନେ ଏବେ ବି ଏହି ଗାଁର ମୁଖ୍ୟ ବାସିନ୍ଦା ।

୪. ଦଦିଆ - *ଦେ.ବି. :* ଗୋଟିଏ ଜିନିଷ ଯେପରିକି 'ଲଂଗଳ' ବା ତରକାରୀ ବା ଭାତ ଇତ୍ୟାଦି ତିଆରି କରୁକରୁ ଯଦି ତାହା ଖରାପ ହେଇଗଲା, ତେବେ ତାକୁ ଦଦିଆ କୁହାଯାଏ । ଲୋକଙ୍କ ପ୍ରତି ଦଦିଆ ଶବ୍ଦର ପ୍ରୟୋଗ ହୁଏ ନାହିଁ । କେବଳ ବସ୍ତୁ ପ୍ରତି ଏହା ପ୍ରୟୋଗ କରାଯାଏ । ଇଂ- Defective, faculty.

ବ୍ୟବହାର : ନଙ୍ଗଲ୍‌କେ ଚାଞ୍ଚତେ ରଇଲି । ଚାଞ୍ଚିଚାଞ୍ଚି ଦଦିଆ କରିଦେଲି ।

ଅର୍ଥାତ୍ : ଲଙ୍ଗଳଟି ଚାଞ୍ଛୁଥିଲି । ଚାଞ୍ଛିଚାଞ୍ଛି ଖରାପ କରିଦେଲି ।

୫. ଦନ୍ତେଶ୍ୱରୀ - *ଦେ.ବି. :* ଆଦିବାସୀ ଜନଜାତିର ପ୍ରମୁଖ ଦେବୀ ବିଶେଷ । ବାଲଗୌରୀ (ଦ୍ରାବିଡ଼ ଦେବୀ) । ସ୍ଥାନୀୟ ଆଦିବାସୀ ନାମ ପଣ୍ଡରି ମାଉଲି, (ମାଓଲି) ମା । ପରଜାମାନଙ୍କର ଇଷ୍ଟଦେବୀ । ଆଦିବାସୀ ଲୋକ ବିଶ୍ୱାସରେ ଦେବୀ ଦନ୍ତେଶ୍ୱରୀ ବହୁ ଲୋକ ଦେବତାଙ୍କ ମଧ୍ୟରେ ଜଣେ ମୁଖିଆ ଦେବୀ । ମଧ୍ୟପ୍ରଦେଶ (ଏବେ ଛତିଶଗଡ଼) ଓ ଜୟପୁର ସୀମାନ୍ତ ଆଦିବାସୀ ଗ୍ରାମଗୁଡ଼ିକରେ ଦନ୍ତେଶ୍ୱରୀ ଦେବୀ ଅଧିଷ୍ଠିତା । ସର୍ବୋପରି ଯେତେବେଳେ କୌଣସି କାରଣରୁ କେତେକ ଆଦିବାସୀ ପ୍ରଜାତି (ଗଣ୍ଡ, ଭତରା ଆଦି) ଓଡ଼ିୟାନ୍ ବା ଓଡେଶା (ଓଡ଼ିଆ ଭାଷା କହୁଥିବା ଅଞ୍ଚଳ)କୁ ବସତି ସ୍ଥାପନ ପାଇଁ ଆସିଲେ, ଏବଂ ନୂତନ ଗ୍ରାମ ବସାଇଲେ, ବସ୍ତର ରାଜାଙ୍କ ଅନୁମତି କ୍ରମେ ସେମାନେ ଦନ୍ତେଶ୍ୱରୀ ଦେବୀଙ୍କ ପ୍ରତିମୂର୍ତ୍ତି ପ୍ରତି ଗାଁରେ

ପ୍ରତିଷ୍ଠା କରି ପୂଜା ଅର୍ଚ୍ଚନା କଲେ ଏବଂ କାଳକ୍ରମେ, ବସ୍ତର, ନବରଂଗପୁର, ଜୟପୁର ଇତ୍ୟାଦି ସୀମାନ୍ତ ଅଞ୍ଚଳରେ ଇଷ୍ଟଦେବୀ ଭାବେ ପ୍ରକୀର୍ତ୍ତିତା ହେଲେ ।

ଦନ୍ତେଶ୍ୱରୀ ଦେବୀଙ୍କୁ ଶକ୍ତିଙ୍କ ପ୍ରତୀକ ଭାବେ ଗ୍ରହଣ କରାଯାଏ ଏବଂ ଧାର୍ମିକ ମାନ୍ୟତା ଅନୁସାରେ ଦେବୀ ନବଦୁର୍ଗାଙ୍କ ମଧ୍ୟରୁ ଅନ୍ୟତମ ବୋଲି କୁହାଯାଏ ।

**ଦନ୍ତେୱ୍ୱଡ଼ା ଶିଳାଲେଖରେ ଦେବୀ ଦନ୍ତେଶ୍ୱରୀ :**

ବସ୍ତର ରାଜବଂଶ (ରାଜଧାନୀ : ଜଗଦଲପୁର) ନିଜକୁ କାକତୀୟ ବଂଶ ଭାବେ ପରିଚିତ କରାଇଥିଲେ ଏବଂ ଦନ୍ତେଶ୍ୱରୀ ଦେବୀ ଏମାନଙ୍କ କୁଳ ଦେବୀ ଭାବେ ପୂଜା ପାଇଥିଲେ । କୁହାଯାଏ ଯେ, କାକତୀୟ ବଂଶର ରାଜା ଅନ୍ନମ୍ ଦେବ (ପ୍ରତାପ ରୁଦ୍ରଦେବଙ୍କ ଭାଇ) ଯିଏକି ଆନ୍ଧ୍ରପ୍ରଦେଶର ୱାରଙ୍ଗଲ ଅଞ୍ଚଳରେ ପ୍ରତିଷ୍ଠିତା ଦେବୀ ଦନ୍ତେଶ୍ୱରୀ ଦେବୀଙ୍କ ପରାମର୍ଶ କ୍ରମେ ବସ୍ତର ରାଜ୍ୟକୁ ଆସି ବସତି ସ୍ଥାପନ କଲେ ଏବଂ ଦେବୀ ସ୍ୱଇଚ୍ଛାରେ ତାଙ୍କ ସଂରକ୍ଷିକା ଭାବେ ୱାରଙ୍ଗଲ ଛାଡ଼ି ରାଜାଙ୍କର କୁଳଦେବୀ ଭାବେ ବସ୍ତର ଜଗଦଲପୁର ରାଜ୍ୟର ପୂର୍ବରେ ଥିବା ଡାକିନି (ଡକିନି) ଓ ଶଙ୍ଖିନି ନଦୀ ଦ୍ୱୟର ସଂଗମସ୍ଥଳ ତାରଲାପାଲ ଗ୍ରାମରେ ରହିଲେ । ଏହି ସ୍ଥାନରେ ରାଜା ଅନ୍ନମ୍‌ଦେବ ଦେବୀଙ୍କ ପାଇଁ ମନ୍ଦିର ନିର୍ମାଣ କଲେ । ଏହା ପ୍ରାୟ ୧୪୦୦ ଖ୍ରୀଷ୍ଟାବ୍ଦର କଥା । ପରବର୍ତ୍ତୀ କାଳରେ ଏହି ସ୍ଥାନ ଦନ୍ତେୱାଡ଼ା ନାମରେ ପ୍ରସିଦ୍ଧ ହେଲା ଏବଂ ଆଦିବାସୀ ମାନେ ମଧ ଏହି ଦେବୀଙ୍କୁ ଇଷ୍ଟଦେବୀ ଭାବେ ମାନିନେଲେ । (ଜନ୍ତେୱାଡ଼ା ଶିଳାଲେଖ : ୧୯୭୦)

*୬.* ଦନ୍ତେଶ୍ୱରୀ ମିଥ୍ - *ଦେ.ବି. :* ଦନ୍ତେଶ୍ୱରୀ ଦେବୀଙ୍କ ସୃଷ୍ଟି ସଂପର୍କିତ ଆଖ୍ୟାନ । ବସ୍ତରର ମାଉଳି ମାଇ ଦନ୍ତେୱାଡ଼ିନ୍ (ଦନ୍ତେୱାଡ଼ା ଗ୍ରାମବାସୀ)

ମାତାର ଜୀବନ ଏପରି ଅଛି ଯେ, ସେ ନିଜର ସଂପୂର୍ଣ୍ଣ ଜୀବନ । ବସ୍ତର ରାଜାର ସୁରକ୍ଷା ଓ ତହିଁର ନିବାସୀଙ୍କ ମଂଗଳ ପାଇଁ ଦେଇଥିଲେ । ସେ ଭଦ୍ରାଅଞ୍ଚଳମ୍ ରାଜ୍ୟର କନ୍ୟା । ତାର ମୂଳନାମ ଥିଲା ପଣ୍ଡିର ମାଓଲି ମାଇ (ଗୌରବର୍ଣ୍ଣା ମାଓଲି ମାତା) । ସେ ଘୋର ତପସ୍ୟା କଲେ । ତପସ୍ୟା ପୂର୍ଣ୍ଣ ହେବା ଠାରେ ସେ କୋବା ବଂଶର ଗଣ୍ଡ ରାଜକୁମାରଙ୍କୁ ବିବାହ ହେବାର ସ୍ଥିର ହେଲା । କିନ୍ତୁ ବିବାହ ପୂର୍ବରୁ କୋବା ବଂଶର ରାଜକୁମାର ଭବାନୀପାଟଣାର ବର୍ମା ରାକ୍ଷସ ସହ ଯୁଦ୍ଧ କରି ବୀରଗତି

ପାଇଲେ । ଏହା ଜାଣି ଭଦ୍ରାଞ୍ଚଳମ୍ ରାଜକନ୍ୟା ପଣ୍ଡରି ମାଓଲି ମାଇ ନିଜ ପିତାଙ୍କ ସୈନ୍ୟ ବାହିନୀକୁ ନେଇ ବର୍ମାରାକ୍ଷସ ସହ ଯୁଦ୍ଧ କରିବାକୁ ବାହାରିଲେ । ବର୍ମା ରାକ୍ଷସ ସମ୍ବନ୍ଧରେ ସବିଶେଷ ତଥ୍ୟ ଜାଣିବା ପାଇଁ ସେ ଡଙ୍କିନୀ ଓ ଶଙ୍ଖିନୀ ନଦୀର ସଂଗମ ନିକଟରେ ଡେରା ପକାଇ ରହିଲେ । ବସ୍ତର ରାଜାଙ୍କୁ ସାକ୍ଷାତ୍ କରିବାକୁ ଇଚ୍ଛା ପ୍ରକାଶ କଲେ । କିନ୍ତୁ ବସ୍ତର ରାଜା ଯୁଦ୍ଧରେ ତାଙ୍କୁ ସାହାଯ୍ୟ କରିବାକୁ ମନା କରିଦେଲେ ।

ଏହା ବହୁ ପୂର୍ବକାଳର କଥା । ତାପରେ ପାଣ୍ଡରି ମାଓଲି ମାଇ ପିତା ଘରକୁ ଫେରି ସେହି ଦୁଇ ନଦୀର ସଂଗମ ତୀରରେ ରହିଗଲେ । କେତେବର୍ଷ ଉତ୍ତାରେ ଭଗବାନ ଶମ୍ଭୁ (ମହାଦେବ) ନିଜ ପିତା କୁଲିତରାଙ୍କ ଆଦେଶରେ ସଂସାରର ଭଲମନ୍ଦ ଜାଣିବା ପାଇଁ ବୃଷଭ ପିଠିରେ ବସି ଜମ୍ବୁଦ୍ୱୀପରେ ପହଞ୍ଚିଲେ । ତାପରେ କୌମୁରି ପେଜିଆର ଦ୍ୱୀପ ବୁଲୁବୁଲୁ ଡଙ୍କିନୀ ଓ ଶଙ୍ଖିନୀ ନଦୀ ସଂଗମ ଠାରେ ପହଞ୍ଚିଲେ ।

ମାତା ମାଓଲି ନଦୀ ସଂଗମ ମୁହାଣ ନିକଟରେ ବାଳଗୌରୀ ରୂପ ହୋଇ ବାଲିଘର କରି ଖେଳୁଥିଲେ । ତାଙ୍କର ଜଣେ ଦେହରକ୍ଷୀ ଥିଲା । ଭୈରବ ରୂପୀ ଶିବ ମାଓଲି ମାତାଙ୍କୁ ଦେଖି ବୃଷଭରୁ ଓହ୍ଲାଇଲେ । ବୃଷଭକୁ ବାଲିଘର ଭାଂଗିଦେବାକୁ ଆଦେଶ ଦେଲେ । ବୃଷଭ ବାଲିଘର ଭାଂଗିଦେବାରୁ ମାଓଲି ବୃଷଭର ମାଲିକକୁ ଗାଳି ଦେଲେ । ଶମ୍ଭୁ ଏହାଦେଖି ହସିଲେ ଓ ମାଓଲି ମାତାଙ୍କୁ ବୃଷଭ ଚୂଳରେ ବସାଇ ବୈଲାଡ଼ିଲା ଗ୍ରାମକୁ ନେଇ ଆସିଲେ । (ବୈଲାଡ଼ିଲାର ଅର୍ଥ ବୃଷଭର ଚୂଳ) । ଏହାପରେ ପିତା କୁଲିତରାଙ୍କ ଆଦେଶରେ ଭୈରବ ମାଓଲି ମାତାଙ୍କୁ ବିବାହ କଲେ । ହେଲେ ବଣ ଜଂଗଲରୁ ତାଙ୍କୁ ପାଇଥିବାରୁ ମାତା ମାଓଲି ବଣଦେବୀ ଭାବେ ପୂଜିତା ହେଲେ ଏବଂ ଗୋଣ୍ଡୱାନାର ଦକ୍ଷିଣାଞ୍ଚଳରେ ଏହି ମାତା ମାଓଲିଙ୍କୁ ଦନ୍ତେଶ୍ୱରୀ ନାମ ଦେଲେ ଓ ଆଦିଶକ୍ତି ମହାମାୟୀ ବୋଲି ମାନ୍ୟ କଲେ । ଦନ୍ତେଶ୍ୱରୀ (ମାଓଲି / ମାଉଲି ମାତା) କୋଇତର (ଗଣ୍ଡ କୋୟା ତଥା ବହୁ ଉପଜାତିଙ୍କର ଆସ୍ଥା, ସଂସ୍କୃତି, ସଭ୍ୟତା ଓ ଧର୍ମର ପ୍ରତୀକ ।)

୭. ଦନ୍ତେୱାଡ଼ିନ୍ - *ଦେ.ବି. :* ଦନ୍ତେଶ୍ୱରୀ ଦେବୀଙ୍କ ଅନ୍ୟ ଏକ ନାମ ଓ ରୂପ । ଦନ୍ତେୱାଡ଼ା (ଛତିଶଗଡ଼) ଓ ବସ୍ତରାଅଞ୍ଚଳର ପ୍ରସିଦ୍ଧ ଲୋକଦେବୀ ଦନ୍ତେଶ୍ୱରୀଙ୍କୁ ଦନ୍ତେୱାଡ଼ିନ୍ କୁହାଯାଏ । ଦନ୍ତେଶ୍ୱରୀ ଓ ଜଗଦଲପୁର ରାଜପରିବାର ଇଷ୍ଟଦେବୀ । ଅବିଭକ୍ତ କୋରାପୁଟ ଜିଲ୍ଲାର ବହୁ ଗ୍ରାମରେ ଏହି ଦେବୀଙ୍କର ଗୁଡ଼ି ରହିଛି ଓ ପୂଜା କରାଯାଉଛି । (ଦ୍ରଷ୍ଟବ୍ୟ - ଦନ୍ତେଶ୍ୱରୀ ।)

୮. ଦର୍ତ୍ତନୁ - *ଦେ.ବି. :* ଧରିତ୍ରୀ, ବସୁମାତା, ସମାନାର୍ଥକ ଆଦିବାସୀ ଶବ୍ଦ ସମୂହ : ଦାର୍ଣ୍ଣି, ମାଟିମାତା, ଦର୍ତ୍ତନୁ ଶସ୍ୟ ଓ ଖାଦ୍ୟଦାତ୍ରୀ ଦେବୀ ଭାବେ ଆଦିବାସୀମାନଙ୍କ ଦ୍ୱାରା ପୂଜିତା (ସମ୍ବନ୍ଧ : ବହୀପୁଟନି ଯାତ୍ରା, ବାଲିଯାତ୍ର) । କନ୍ଧମାନଙ୍କର ସବୁଠାରୁ ବଡ଼ ଦେବତା ଦର୍ତ୍ତନୁ ପେନୁ ବା ଧରଣୀ ଦେବୀ । ଇଂ- Mother Earth

୯. ଦର୍ମୁ - *ଦେ.ବି. :* କୁଭିକନ୍ଧ : ଧର୍ମଦେବତା / ଆକାଶ ଦେବତା । ଇଂ- Sky god

କନ୍ଧ ଆଦିବାସୀ (କନ୍ଧ ପରଜା, ପେଙ୍ଗୁ ପରଜା, ଯୋଡ଼ିଆ, ପରଜା, ଡଙ୍ଗରିଆ କନ୍ଧ, ଦେଶିଆ କନ୍ଧ) ଆଦିଙ୍କ ଶ୍ରେଷ୍ଠ ଦେବତା । କନ୍ଧ ମନ୍ତ୍ରରେ ଦର୍ମୁ ଶବ୍ଦର ପ୍ରୟୋଗ : ଅଲେ ଅଁ ଦର୍ମୁ : ଡୋଇଁ ଦର୍ତ୍ତନୁ । ଆଜି ହିଲ୍ଲେଏ ।" (ମୁଣ୍ଡ ଉପରେ ଧର୍ମ ଦେବତା, ପାଦତଳେ ବସୁମାତା, ଆମକୁ ଭୟହୀନ କର ।)

୧୦. ଦରମ୍ ପାନି - *ଦେ.ବି. :* ଭତ୍ରୀ : ଭତରା ମାନଙ୍କ ବିବାହ ସମୟରେ ବ୍ୟବହାର କରାଯାଉଥିବା ଧରମ ପାଣି ବା ପବିତ୍ର ପାଣି ।

ଝିଅକୁ ଗାଧୋଇ, ନୂଆ ହଳଦିଆ ଲୁଗା ପିନ୍ଧାଇ କଟନି ଗୀତ ଗାଇଗାଇ କନ୍ୟାର ମା, ବରର ମା ଓ ଗାଁର ଅନ୍ୟ ସ୍ତ୍ରୀ ଲୋକମାନେ ନୂଆ ମାଠିଆରେ ଗାଁ ପାଖ ନଈ କିମ୍ୱା ନାଳରୁ ବଡ଼ି ଭୋରରୁ ଯେଉଁ ପାଣି ସଂଗ୍ରହ କରିଆସନ୍ତି ତାକୁ ଦରମ ପାନି କୁହାଯାଏ । ଏହି ପାଣି ବିବାହ ବେଦୀରେ ଗୋଟିଏ ନୂଆ ଶିକାରେ ଓହଳାଇ ରଖାଯାଏ ଏବଂ ବିବାହ କାର୍ଯ୍ୟର ଏକ ପର୍ଯ୍ୟାୟ, ପୁଅ ଝିଅଙ୍କ ଲଗ୍ନ ଗଣ୍ଠି ପଡ଼ିଲା ପରେ ବେଦୀରେ ପୋତା ଯାଇଥିବା ମହୁଲଡାଳ (ଏହା ପବିତ୍ର ଓ ଶୁଭଫଳଦାୟୀ ବୋଲି ଲୋକ ବିଶ୍ୱାସ) ଚାରିପଟେ ସାତଥର ପରିକ୍ରମା କରିବା (ଯାହାକୁ 'ମାଣ୍ଡ କିନ୍ଦରା' ବୋଲି କୁହାଯାଏ) ପରେ ବରକନ୍ୟାକୁ ବେଦୀରେ ବସାଇ ପୂର୍ବରୁ ଶିକାରେ ଓହଳାଯାଇ ରଖାଯାଇଥିବା (ଦରମ୍ପାନି) ଉଭୟଙ୍କ ଉପରେ ଇଡ଼ି ଦିଆଯାଏ ଏବଂ ଲଗିନ୍ କାରିଆ କନ୍ୟାର କାଣି ଆଙ୍ଗୁଠିକୁ ବରହାତରେ ଧରାଇ ଦିଅନ୍ତି ।

୧୧. ଦର ବା ଦୋରା - *ଦେ.ବି. :* ଏକି ନିର୍ଦ୍ଦିଷ୍ଟ ଜାତିର ପକ୍ଷୀ ବିଶେଷ । ରାମି ବଣି ଚଢ଼େଇ (୨) ଦରା ବା ଦୋରା ମଧ କଟିଆକନ୍ଧ ସଂପ୍ରଦାୟର ଏକ ପ୍ରକାର ସଂଜ୍ଞା । ଏହି ସଂଜ୍ଞାଧାରୀ ଲୋକମାନେ ବଣି ଗୋତ୍ରୀ ବା ରାମି ଗୋତ୍ରୀ ଭାବେ ପରିଚିତ ।

୧୨. ଦଶମନ୍ତପୁର, ଦଶମନ୍ତ (ପାହାଡ଼) ପୁର (ଗାଁ) - *ଦେ.ବି. :* ଗୋଟିଏ ଗାଁର ନାମ ବିଶେଷ । ଦଶ ପାହାଡ଼ର ଗାଁ । କୋରାପୁଟ ଜିଲ୍ଲାର ଏହି ନାମରେ ଦୁଇଟି ବଡ଼ ଗାଁ । ଗୋଟିଏ ହେଉଛି ଲକ୍ଷ୍ମୀପୁର ଓ କୋରାପୁଟ ବ୍ଲକ୍ ମଝିରେ ଥିବା ଏକ ବ୍ଲକ୍ ମହକୁମା । ଅନ୍ୟଟି ବୈପାରୀଗୁଡ଼ା ବ୍ଲକ୍‌ରେ ଥିବା ଏକ ପଞ୍ଚାୟତ ମହକୁମା ।

୧୩. ଦଶରା ପର୍ବ - *ଦେ.ବି. :* ଏକ ବିଶିଷ୍ଟ ପର୍ବ । ଇଂ- Dussera ଗ୍ରାମର ଗ୍ରାମଦେବତୀ ପାଖରେ ଆଶ୍ୱିନ ଅଷ୍ଟମୀ ଠାରୁ ଦଶମୀ ମଧ୍ୟରେ ପୂଜା । ଦେଇ ଦଶରା ପର୍ବ ପାଳନ କରାଯାଏ । ଆଗରୁ ରାଜା ରାଜୁଡ଼ା ଅମଳରେ ପ୍ରତି ଗ୍ରାମରେ ଦେବୀପୀଠ ଗୁଡ଼ିକରୁ ଲାଠି ମାନ ଜୟପୁରଠାରେ ଥିବା ଦଶରାଭଟ୍ଟାକୁ ଯାଉଥିଲେ । ସଂପ୍ରତି ଏହି ପ୍ରଥାକୁ ପୁନର୍ଜୀବିତ କରାଯାଇଛି । ଜୟପୁରର ଦଶରା ପଡ଼ିଆଠାରେ ଶହଶହ ଲାଠି ଆସି ପହଞ୍ଚୁଛି ଏବଂ ପୁରୁଣା ପରମ୍ପରାକୁ ଅନୁକରଣ କରି ନୃତ୍ୟଗୀତ, ଲାଖବିନ୍ଧା, ରାବଣ ପୋଡ଼ି ଏବଂ ଜୟପୁର ରାଜାଙ୍କ ଇଷ୍ଟଦେବୀ କନକ ଦୁର୍ଗାଙ୍କ ପୂଜାଅର୍ଚ୍ଚନା ହେଉଛି । ସେହିପରି ଶାବର ଶୀକ୍ଷେତ୍ର କୋରାପୁଟର ନିଶାଣମୁଣ୍ଡାଠାରେ ବିଭିନ୍ନ ଗ୍ରାମର ହୁଣ୍ଡି ବା ଗ୍ରାମଦେବୀଙ୍କ ପ୍ରତୀକ ବାଉଁଶଦଣ୍ଡ ବା ଲାଠି ଅଣାଯାଇ ପର୍ଣ୍ଣଶବରୀଙ୍କ ସମ୍ମୁଖରେ ଉପସ୍ଥିତ ହୁଅନ୍ତି । ପର୍ଣ୍ଣ ଶବରୀଙ୍କ ବିଜେ ପ୍ରତିମାକୁ ଦୋଳିରେ ବସାଇ ସମସ୍ତ ପତାକା ଶୋଭିତ ଲାଠି ସହ ସହର ପରିକ୍ରମା କରି ନିଶାଣିମୁଣ୍ଡାଠାରେ ବିରାଟ ସମାବେଶ ଅନୁଷ୍ଠିତ ହୁଏ । ଏହି ପୂର୍ବ ସମୟରେ କୋରାପୁଟର ମୁଖ୍ୟ ଆକର୍ଷଣ ଥାଏ, ଆଦିବାସୀ ଯୁବକଙ୍କ ଲାଖବିନ୍ଧା ପ୍ରତିଯୋଗିତା ।

୧୪. ଦାନ୍ତୁନ - *ଦେ.ବି. :* ଦାନ୍ତକାଠି । ଇଂ.- Natural tooth brush, Tooth Stick.

ଦାନ୍ତ ସଫା କରିବା ପାଇଁ ନିମ୍ବ, କରଞ୍ଜ, ଶାଳ, ଗବ ବା ଜଡ଼ା କିମ୍ବା ବାହାଡ଼ା ଇତ୍ୟାଦି ଗଛର ଛୋଟଛୋଟ ଡାଳକୁ କାଟି ତା'ର ଗୋଟିଏ ମୁଣ୍ଡକୁ ଚୋବାଇ ବା ଛେଚି ତା'ର ଗୁଆଳିଆ ଅଂଶ ଦ୍ୱାରା ଦାନ୍ତ ଘସାଯାଏ । ଏହାକୁ 'ଦନ୍ତୁନ୍' କୁହାଯାଏ । ସବୁଠାରୁ ଜନପ୍ରିୟ ଦାନ୍ତୁନ୍ ହେଉଛି କରଂଜ ଦାନ୍ତୁନ୍ ।

୧୫. ଦାନ୍ଦର - *ଦେ.ବି. :* ମୁଗୁରା : ଏକପ୍ରକାର ମାଛଧରା ଯନ୍ତ୍ର ।

ସରୁସରୁ ବାଉଁଶ କାଠିରେ ତିଆରି ଏକ ଲମ୍ବ ପଟିରେ ଏକ ଗୋଲାକାର ବୃତ୍ତ କରାଯାଇ ଏହାର ଗୋଟିଏ ମୁଣ୍ଡକୁ ଏକତ୍ର ମିଶାଇ ବାନ୍ଧି ଦିଆଯାଏ ଓ ଅନ୍ୟ ମୁଣ୍ଡଟି ଖୋଲା ରହେ । ବନ୍ଧା ଯାଇଥିବା ମୁଣ୍ଡର ଭିତର ପଟେ କେତୋଟି ଛୋଟଛୋଟ ପଟି ବୁଣାଯାଇ ଏକ ଅମୁହାଁ ଘରପରି କରାଯାଇ ଭିତରକୁ ଗୋଟିଏ ମାତ୍ର ବାଟ ରଖାଯାଇଥାଏ । ଏହି ଯନ୍ତ୍ରକୁ ପାଣି ପଡୁଥିବା ସ୍ଥାନରେ ମାଟି ସହିତ ସଂଲଗ୍ନ କରି ରଖିଦେଲେ ପାଣି ସୁଅ ସହିତ ମାଛମାନେ ଯାଇ ଏଇ ମୁଗୁରା ଭିତରେ ପଶିଯାଆନ୍ତି । ଯେତେ ଚେଷ୍ଟା କଲେ ମଧ୍ୟ ମୁଗୁରାର ଏଇ ଘର ଭିତରୁ ବାହାରି ପାରନ୍ତି ନାହିଁ । କୋରାପୁଟର ଦେଶିଆମାନଙ୍କ ଭିତରେ ଏହି ଦାନ୍ଦର ଏକ ଜନପ୍ରିୟ ମାଛଧରା ଯନ୍ତ୍ର ।

୧୬. **ଦାବପିରି** - *ଦେ.ବି. :* ଏକ ପ୍ରକାର ତୀକ୍ଷ୍ଣଧାର ଯୁକ୍ତ ବଣୁଆଘାସ, ଯାହା ନଡ଼ା ବା ଛଣ ଭାବେ ଘର ଛପରରେ ବ୍ୟବହାର କରାଯାଏ ।

୧୭. **ଦାମନଯୋଡ଼ି** - *ଦେ.ବି. :* ଏକ ବଡ଼ ଗାଁର ନାମ ବିଶେଷ । ଏହା କୋରାପୁଟ ଜିଲ୍ଲାରେ ଅବସ୍ଥିତ । ଡାମଣା ସାପର ଯୋଡ଼ି ପ୍ରଥମେ ଦେଖିଥିବାରୁ ଯେଉଁ ଆଦିବାସୀ ଲୋକଟି ଏଠି ଗାଁ ବସାଇଲା, ତାକୁ ନାମ ଦେଲା ଦାମନ୍ (ଧାମଣା ସାପ) ଯୋଡ଼ି (ମାଇ-ଅଣ୍ଡିରା) ଏବେ ଏହା ନାଲ୍‌କୋ ଶିଳ୍ପାଞ୍ଚଳ ପାଇଁ ପ୍ରସିଦ୍ଧ । ଏହି ଅଞ୍ଚଳ ମଧ୍ୟ ବକ୍ସାଇଟ୍ ପାଇଁ ପ୍ରସିଦ୍ଧ । ଏହି ଦାମନଯୋଡ଼ି ପାଖରେ ଅବସ୍ଥିତ ପଞ୍ଚପାଟମାଳୀ ପର୍ବତ ।

୧୮. **ଦାରାଦାରି** - *ଦେ.ବି. :* ଠେଲାପେଲା, କଳିଗୋଳ : ଏହାର ପ୍ରତିଶବ୍ଦ : ଜାଟି, ଇଂ. - Jostling. ସଲପ ବା ମହୁଲି ମଦ ପିଇ ରାଟୁ କରବା କିମ୍ବା ଦାରାଦାରି ହବାଟା ଗାଁ ଗାଁରେ ମାମୁଲି ଘଟଣା । ଏହା ଅଧିକ ହେଲେ ମାରପିଟ୍ ହଣାକଟା ମଧ୍ୟ ହୋଇଯାଏ । ଆଗରୁ ଗାଁ ସ୍ତରରେ ଏହା ସମାଧାନ ହେଉଥିଲା । ଆଜିକାଲି ଦଲାଲ କଥାରେ ପଡ଼ି ଥାନା ଓ କୋର୍ଟ କଚେରୀକୁ ଲୋକେ ଧାଇଁଲେଣି । ଫଳରେ ଲୋକେ ଭାଗ ଭାଗ ହେଲେଣି । ଦାରାଦାରି ବନ୍ଦ କରିବାକୁ ଯାଇ ଲୋକମାନେ ମଦ ବନ୍ଦ ଆନ୍ଦୋଳନ କଲେଣି । ଭାଷାରେ ବ୍ୟବହାର :

ମଦ୍ ଖାଇକରି ଦାରାଦାରି ଅଇବା ଲୋକ୍ ମନ୍‌କେ ବୁଜାଇବାର୍ ବଡ଼୍ ପିଚ୍‌କାଟି (କଷ୍ଟ) ।

୧୯. ଦିଓ ବାନ୍ଧ ବାଏ - *ଦେ.ବି. :* ବେଦୀର ଚାରିକୋଣରେ ପୋତା ହୋଇଥିବା ଚାରି ଗୋଟି ସର୍ଗିଖୁଣ୍ଟି (ଶାଳଖମ୍ବ) ସହିତ ଚାରିଗୋଟି ମାଟିଦୀପ ସୂତାରେ ବନ୍ଧାଯାଇଥାଏ । ଏହାକୁ 'ଦିଓ ବାନ୍ଧବାଏ' କୁହାଯାଏ । ବିବାହ ସମୟରେ ଏହି ବେଦୀ ତଥା ଦିଓବାନ୍ଧବାଏ ପ୍ରସ୍ତୁତ କରାଯାଇଥାଏ ।

୨୦. ଦିଆଲି ପର୍ବ - *ଦେ.ବି. :* ଏକ ବିଶିଷ୍ଟ ପର୍ବ । କାର୍ତ୍ତିକ ବା ମାର୍ଗଶିର ମାସରେ ଦିଆଲି ପର୍ବ ଗୋ ସଂପଦର ସୁରକ୍ଷା ଓ ପୂଜା ଉଦ୍ଦେଶ୍ୟରେ ଅନୁଷ୍ଠିତ ହୋଇଥାଏ । ଦିଆଲି ପର୍ବରେ ଗୋରୁଗାଈଙ୍କୁ ନୂତନ ଚାଉଳରେ ପ୍ରସ୍ତୁତ ଭାତ, ଚରୁ ଓ ନୂତନ ପରିବାରେ ପ୍ରସ୍ତୁତ ବ୍ୟଞ୍ଜନ ଖାଇବାକୁ ଦିଆଯାଏ । ଦିଆଲି ପର୍ବ ଦିନଠାରୁ ହିଁ ଘରେ ନୂଆ ଚାଉଳକୁ ଧୋଇକରି ରନ୍ଧାଯାଇଥାଏ । ଦିଆଲି ପର୍ବରେ ପିତୃପୁରୁଷ ଭୋଗ ଦେବା ସାଂଗକୁ ସୁନ୍ଦର ସୁନ୍ଦର ଝୋଟି ଆଙ୍କିଥାଏ ଅବିଭକ୍ତ କୋରାପୁଟର ଆଦିବାସୀ । ଏହିଦିନ ଗୋରୁ ଗଉଡ଼ (ଗୋରୁ ଚରାଇବା ଲୋକ)ଙ୍କୁ ପିଠା, ଭାତ, ଗାମୁଛା, ମଦ ଆଦି ଦେଇ ସନ୍ତୁଷ୍ଟ କରାଯାଏ । ଏହି ପର୍ବଠାରୁ ନୂତନ ଭାବେ ଗାଈ ଜଗିବା ଲୋକ ନିଯୁକ୍ତ ହୁଅନ୍ତି । ସମତୁଲ ପରବ ହେଉଛି ଦୁରୁଆମାନଙ୍କର ବାଡ଼ା ଓ କୋୟାମାନଙ୍କର ତିତିତାମ୍ । ଏହି ପର୍ବର ଆଉ ଏକ ବିଶେଷତ୍ୱ ହେଉଛି କିକିର୍‌ନାଟ । ଏହି ଦିନ ବିଶେଷ ଭାବେ ସମ୍ମାନିତ ଗଉଡ଼ସମାଜ ନିଜର ସାମାଜିକ କର୍ମର ଗୁରୁତ୍ୱ ପ୍ରତିପାଦନ କରିବା ପାଇଁ ଉତ୍‌ଫୁଲ୍ଲହୋଇ କିକିର୍ ନାଟ ନାଚିଥାନ୍ତି । ଏହି କିକିର୍‌ନାଟରେ ସେମାନେ ଗୋଡ଼ରେ ଘଣ୍ଟବାନ୍ଧି, ଦେହରେ କାଦୁଅ ବୋଳି ହୋଇ ଓ ହାତରେ କାତି ଧରି ନିଜ ଦେହକୁ ଆଘାତ କରିବାର ଅଭିନୟ କରି ଢାପ, ଢୋଲ, ଟମକ ବାଦ୍ୟର ତାଳେତାଳେ ନାଚିଥାନ୍ତି ।

୨୧. ଦିଣ୍ଡାଘର / ଡିଣ୍ଡାଘର - *ଦେ.ବି. :* ଧାଙ୍ଗିଡ଼ୀ ବସା : ଅବିବାହିତ ଯୁବତୀମାନଙ୍କ ଶୋଇବାଘର । ଧାଙ୍ଗିଡ଼ୀ ବସା ପରି ଧାଙ୍ଗଡ଼ାମାନଙ୍କ ପାଇଁ ମଧ୍ୟ ଗ୍ରାମରେ ଏମିତି ଏକ ସ୍ୱତନ୍ତ୍ର ଶୋଇବା ଘର ରହିଥାଏ । ଯାହାକୁ 'ଧାଙ୍ଗଡ଼ା ବସା' କୁହାଯାଇଥାଏ । ଏହି ଧାଙ୍ଗଡ଼ା ଧାଙ୍ଗିଡ଼ି ବସା ଆଦିବାସୀର ସାମାଜିକ ଜୀବନ କ୍ରିୟାରେ ଏକ ସ୍ୱତନ୍ତ୍ର ପାରମ୍ପରିକ ପରିବେଶ ସୃଷ୍ଟି କରି ଆଦିବାସୀ ଜୀବନକୁ ସରସ, ସୁନ୍ଦର ତଥା ପ୍ରାଣବନ୍ତ କରିଥାଏ । ଏହା ଏକ ସର୍ବପ୍ରାଚୀନ ସାଂଗଠନିକ ବ୍ୟବସ୍ଥା । ଯୁବକ ଯୁବତୀମାନଙ୍କ ପାଇଁ ଉଦ୍ଦିଷ୍ଟ ଏହି ଧାଙ୍ଗଡ଼ା ବସା ଓ ଧାଙ୍ଗଡ଼ୀ ବସାରେ ଯଥାକ୍ରମେ

ଗ୍ରାମର ଯୁବକ ଓ ଯୁବତୀମାନେ ରାତି କଟାନ୍ତି । ରାତିସାରା ନୃତ୍ୟ ସଂଗୀତ ମାଧ୍ୟମରେ ଏଠାରେ ଭାବର ଆଦାନ ପ୍ରଦାନ ହୁଏ । ଅନେକ ସମୟରେ ଗୋଟିଏ ଗାଁର ପୁଅ ବା ଝିଅ ଦଳ ଅନ୍ୟ ଗାଁର ପୁଅ ଝିଅ ଦଳଙ୍କ ସହିତ ନୃତ୍ୟ ସଂଗୀତରେ ଯୋଗଦେବା ପାଇଁ ନିମନ୍ତ୍ରିତ ହୋଇଥାନ୍ତି । ଅନ୍ୟ ଗାଁର ଧାଙ୍ଗଡ଼ା କିମ୍ବା ଧାଙ୍ଗିଡ଼ୀ ବସାରୁ ସେମାନେ ଜୀବନସାଥୀ ବାଛନ୍ତି । ଆଦିବାସୀ ସମାଜର ବୈବାହିକ ପରମ୍ପରା ପାଇଁ ଏହା ଏକ ଅଲିଖିତ ସୁନ୍ଦର ପରମ୍ପରା କହିଲେ ଅତ୍ୟୁକ୍ତି ହେବନାହିଁ । ବଣ୍ଡାମାନଙ୍କ ସୋଲାନି ଡିଙ୍ଗୋ, ଗଣ୍ଡମାନଙ୍କ ଘୋଟୁଲ ଏହି ଡିଣ୍ଡାଘରର କାର୍ଯ୍ୟ କରିଥାନ୍ତି ।

୨୨. ଦିସାରି - *ଦେ.ବି. :* ଆଦିବାସୀ ଜ୍ୟୋତିଷ । ଇଂ.- tribal future teller.

ଆଦିବାସୀ ପୂଜକ ଇଂ.- tribal prest,
ଆଦିବାସୀ ବୈଦ୍ୟ ଇଂ.- tribal doctor,

ଦିସାରି କୋରାପୁଟ ଜିଲ୍ଲା ଆଦିବାସୀ ସମାଜର ଜଣେ ପ୍ରତିଷ୍ଠିତ ବ୍ୟକ୍ତି ଭାବେ ସମ୍ମାନିତ । ବିବାହ, ନାଇ ଦିଆନି, ବିହନ ବୁଣିବା, ନୂଆ ଖାଇବା, ବିଭିନ୍ନ ପର୍ବପାଳନ କରିବା ପାଇଁ ଯେଉଁ ବ୍ୟକ୍ତି ଯୋଗ ଠିକ୍ କରେ, ଲଗ୍ନ ଠିକ୍ କରେ ତାକୁ ଦିସାରି କୁହାଯାଏ । (ସମ୍ବନ୍ଧ : ପାଞ୍ଜିଆ) ପାଞ୍ଜିକାରିଆ : ଯିଏ ପାଞ୍ଜି ଦେଖି ଯୋଗଦିଏ । ଗ୍ରହ ନକ୍ଷତ୍ର, ଚାଳନା ଦେଖି ଶୁଭ, ଅଶୁଭ ଲଗ୍ନକଥା କହେ । (ଦ୍ର. ଡିଶାରି) ।

୨୩. ଦୁଆରି - *ଦେ.ବି. :* ନାଟରେ ସୂତ୍ରଧର : ଇଂ- Director ଦେଶିଆ ନାଟରେ ଯେଉଁ ଚରିତ୍ର ନାଟର ସୂତ୍ରଧର ଭାବେ କାର୍ଯ୍ୟକରି ବିଭିନ୍ନ ଅଂଗଭଂଗୀ, ଫାର୍ସ, ପ୍ରହସନ ଓ କୌତୁକ ଦ୍ୱାରା ଦର୍ଶକଙ୍କ ମନୋରଞ୍ଜନ କରିବା ସଂଗେସଂଗେ ନାଟକକୁ ଗତିଶୀଳ କରାଯାଇଥାଏ, ତାହାକୁ ଦୁଆରି କୁହାଯାଏ । ଉଦାହରଣ - "ମୁଇଁ କାଏ ରାଜାର ଦୁଆରି ମକେ କୋନି ନାଇଁ ପାରି ।" ଅର୍ଥାତ୍ ମୁଁ ହେଉଛି ରାଜାର ଦୁଆରି / ମୋତେ କେହି ଜିଣି ପାରିବେ ନାହିଁ । (ଦ୍ରଷ୍ଟବ୍ୟ : ଦେଶିଆ ନାଟ)

୨୪. ଦୁଉଁରି - *ଦେ.ବି. :* କୁହୁଡ଼ି : ଇଂ.- Fog.

ପାହାଡ଼, ପର୍ବତ, ବଣ, ଜଂଗଲ ଓ ଝୋଲାଗାଡ଼ ନଦୀ ଭରା ଅବିଭକ୍ତ କୋରାପୁଟ ଜିଲ୍ଲାରେ ଶୀତଦିନେ ଦୁଉଁରିର ଦୃଶ୍ୟ ଏକ ସାଧାରଣ ଅଥଚ ଅପୂର୍ବ

ଅନୁଭବ । ଅଧିକାଂଶ ଦିନ ଦ୍ୱିପ୍ରହର ପର୍ଯ୍ୟନ୍ତ ଏହି ଦୁଉଁରି ଲାଗି ରହିଥାଏ । ଘାଟି ଅଞ୍ଚଳ ଏବଂ ଟାପୁ ଅଞ୍ଚଳମାନଙ୍କର (ବଡ଼ବଡ଼ ନଦୀବନ୍ଧ ଯୋଜନା ଦ୍ୱାରା ସୃଷ୍ଟି) ଏହା ଏକ ନିୟମିତ ଦୃଶ୍ୟ । ଶୀତଦିନ ସକାଳ ୮ଟା ୯ଟା ପର୍ଯ୍ୟନ୍ତ ଦୁଉଁରି ଏତେ ଗାଢ଼ ହୋଇଥାଏ ଯେ, ସୂର୍ଯ୍ୟକିରଣ ସୁଦ୍ଧା ଦେଖାଯାଏ ନାହିଁ । ରାସ୍ତାଘାଟ ସଂପୂର୍ଣ୍ଣ ଅନ୍ଧକାରାଚ୍ଛନ୍ନ ଥିବାରୁ କୌଣସି ପ୍ରକାର ଚଳାଚଳ ଅସମ୍ଭବ ହୋଇଉଠେ । ଗୀତରେ ଏହାର ବ୍ୟବହାର : ଯଥା : "ଆଷାଢ଼ ମାସର କାକଡ଼ାଚେରା,ଲାଡ଼,ମାସର କାରା । ଗୀତ କୁଡ଼ିଆନୀର ମୁଁକେ ଦେକାନି ଦୁଉଁରି ଉଂଲା ପାରା ।" ଅର୍ଥାତ୍ ଆଷାଢ଼ ମାସର ନିର୍ଘାତ ବର୍ଷା ଓ ଜ୍ୟୋଷ୍ଠମାସର ଖରା, ଦୁଉଁରି ଉଠିଲା ଭଳି ରହସ୍ୟମୟ ହେଉଛି ଗୀତ୍‌କୁଡ଼ିଆନୀର ମୁହଁ ।

୨୫. ଦୁକ୍ ଦୁକା - *ଦେ.ବି.* : ଡର, ଚମକ : Frightened.

କ୍ରି : ଦୁକ୍ ଦୁକା ଲାଗ୍‌ବା - ଖର୍‌ଖରି ଯିବା । ଭୟରେ ଦେହ ଶିହରି ଉଠିବା ଯଥା :

(୧) ଚମ୍‌କ ଗାଲି, ମୋର୍ ଜୀବନ ବଡ଼ ଦୁକ୍‌ଦୁକା ଲାଗ୍‌ଲା ।

(୨) ଯାଉ ଯାଉ କାଇଟା ଗୁଟେକଟାଲା (ଶବ୍ଦ) ଯେ ଜୀବନ୍ ଦୁକ୍‌ଦୁକା ଗାଲା । ଅର୍ଥାତ୍ ଯାଉଯାଉ କଣ ଗୋଟେ ଶବ୍ଦ ହେଲା ଯେ ଦେହ ଶୀତେଇ ଉଠିଲା ।

ଗୀତରେ ବ୍ୟବହାର : "ଡକ୍‌ଡାକ୍ ଦୁକା ଶଗଡ଼, କମି କସିଗଲେ ଗାଲା
ଗୀତକୁଡ଼ିଆନୀର କବର ଶୁନି ଜୀବନ୍ ଦୁକ୍‌ଦୁକା ଏଲା ।"

୨୬. ଦୁକା - *ଦେ.ବି.* : ବ୍ୟଥା, ବେଦନା : ଇଂ.- Pain, Agony

ଏହି ଶବ୍ଦର ଅର୍ଥ ବଡ଼ ବ୍ୟାପକ । ସାଧାରଣ ମୁଣ୍ଡବ୍ୟଥା, ଗୋଡ଼ହାତ, ଅଣ୍ଟା ବ୍ୟଥାଠୁଁ ଆରମ୍ଭ କରି ପେଟ ଛାତି ବା ଅନ୍ୟ ଯେକୌଣସି ଅଙ୍ଗର ଯେକୌଣସି ରୋଗକୁ 'ଦୁକା' ବୋଲି କୁହାଯାଇଥାଏ । ମେଲେରିଆ, ଟାଇଫଏଡ୍ ଭଳି ରୋଗକୁ ମଧ୍ୟ 'ଗାଗଡ୍ ଦୁକା' ବୋଲି କୁହାଯାଏ । ଟି.ବି. କ୍ୟାନସର ଭଳି ରୋଗ ମଧ୍ୟ ଦୁକା । ଦୁଃଖ ଶବ୍ଦ ସହ ଏହର ସଂପର୍କ ବହୁତ ବ୍ୟାପକ । ଏହାର ଗଭୀରତା ଏତେ ବେଶୀ ଯେ ଅଣ ଆଦିବାସୀ ଡାକ୍ତର ରୋଗୀର କଥା ବୁଝିବା ଓ ରୋଗ ଚିହ୍ନିବା ବଡ଼ କଷ୍ଟସାଧ ହୋଇଥାଏ । ଦଶ ପନ୍ଦର ପ୍ରକାର ପ୍ରଶ୍ନ ପଚାରିଲେ ଯାଇ ପ୍ରକୃତ ରୋଗ ନିର୍ଣ୍ଣୟ

କରାଯାଇପାରେ । ଏଥି ସହ ପାଙ୍ଗଣ କଥାଟି ମିଶିଯାଏ । ଫଳରେ ଡାକ୍ତରୀ ବିଜ୍ଞାନର ପ୍ରୟୋଗ ଏକ କଷ୍ଟସାଧ୍ୟ ବ୍ୟାପାର ତଥା ଏକ ଅସାଧରଣ ସାମାଜିକ ଘଟଣାରେ ପରିଣତ ହୋଇଥାଏ । ଅଥଚ ଏଥିପାଇଁ ଡାକ୍ତରମାନେ ପ୍ରସ୍ତୁତ ନଥିବାରୁ ଏବଂ ଅର୍ଥ ରୋଜଗାର ସେମାନଙ୍କର ମୁଖ୍ୟଲକ୍ଷ୍ୟ ହୋଇଥିବାରୁ ଆଦିବାସୀର ପ୍ରକୃତ ଦୁକାର ପ୍ରତିକାର ହୋଇପାରୁନି । କାରଣ ରୋଗୀ ପଛରେ ମାନବିକ ସଂପର୍କ ପ୍ରତିଷ୍ଠା କରି ଅସଲରୋଗର ସଂଧାନ ପାଇଁ ଡାକ୍ତର ପାଖରେ ନିଷ୍ଠା ବା ସମୟ ନଥାଏ ।

୨୭. **ଦୁକ୍‌ଦୁକ୍** - *ଦେ.କ୍ରି.ବି. :* ଦୁକ୍‌ଦୁକ୍ କରିବା । ମୁଖ୍ୟତଃ ଛାତି ଜୋର୍‌ରେ ଦୁକ୍‌ଦୁକ୍ କରିବା ବା ପୁଣ୍ଡାହେବା । ଜୋର୍‌ରେ ଶ୍ୱାସ ପ୍ରକ୍ରିୟା ଚାଲିବା । ଇଂ.- Asthmatic breathing, Bireathlessness.

୨୮. **ଦୁଦ୍‌ବୋଡ଼ା** - *ଦେ.ବି. :* ଏହା ଆଦିମ ଜାତୀୟ ସାପ । ଅଜଗର ଜାତୀୟ । ଇଂ.- **Python** ଲୋକଙ୍କୁ ଆକ୍ରମଣ କରେ ନାହିଁ । ଗଛଗଣ୍ଡି ଭଳି ମୋଟା ଓ ଲମ୍ୱା ପଚିଶିରୁ ତିରିଶ ଫୁଟ । ରଂଗ୍ ଇଷତ୍ ମାଟିଆ । ଏମାନେ ଜଂଗଲରେ ଛୋଟଛୋଟ ଜୀବଜନ୍ତୁକୁ ଶିକାର କରନ୍ତି । ତେବେ ସମ୍ୱର ଓ କଟ୍‌ରାକୁ ମଧ୍ୟ ସହଜରେ ବାନ୍ଧି ଧୀରେଧୀରେ ଗିଳି ଦିଅନ୍ତି । ସମ୍ୱର ଇତ୍ୟାଦିର ଶିଙ୍ଗ ଅଂଶଛାଡ଼ି ଦିଅନ୍ତି । ଏମାନଙ୍କୁ କନ୍ଧ ଭାଷାରେ 'ପଂଦୁ' ବୋଲି କୁହାଯାଏ ।

୨୯. **ଦୁଦ୍‌ଲିମାଲ୍** - *ଦେ.ବି. :* ଏକ ଔଷଧି ବୃକ୍ଷ ବିଶେଷ । ସୁଗନ୍ଧି । କର୍କଟରୋଗ, ଦନ୍ତରୋଗ, ମେହ, ରକ୍ତଚାପ, ଗଣ୍ଡଦୋଷ ଆଦିରେ ଏହା ଔଷଧରୂପେ ବ୍ୟବହାର ହୁଏ । ଦୁଦଲିଚେର, ଡିକାସିନିରେ ବା ଲାଲ୍ ଚା'ରେ ପକାଇ ପିଇଲେ ପରିସ୍ରା ସଫା ହୁଏ । ଅର୍ଥାତ୍, ପରିସ୍ରା ସଂକ୍ରମଣ ଆରୋଗ୍ୟ ହୁଏ ।

୩୦. **ଦୁନୁପନ୍ତି** - *ଦେ.ବି. :* ଏକ ପ୍ରଜାତିର ସର୍ପ ବିଶେଷ । ଏହା ଏକ ପ୍ରକାର ଉଡ଼ନ୍ତା ସାପ । ଏହା ଖୁବ୍ ଡେଇଁପାରେ ଓ ଗଛ ଅଗରୁ ଅନ୍ୟ ଏକ ଗଛକୁ ଉଡ଼ିଯାଇପାରେ । ଏହାର ଲମ୍ୱ ପ୍ରାୟ ୫ଫୁଟରୁ ୬ ଫୁଟ । ଉଡ଼ିବାବେଳେ ଖରର୍ ଶବ୍ଦ କରି ଉଡ଼ିଯାଏ । ଏହା ସରୀସୃପର ଏକ ସ୍ୱତନ୍ତ୍ର ପ୍ରଜାତି ।

୩୧. **ଦୁରୁଆ** - *ଦେ.ବି. :* ଆଦିବାସୀ ଜନଜାତି ବିଶେଷ । ଗଣ୍ଡଙ୍କଠାରୁ ବିଭାଜିତ ଗୋଷ୍ଠୀର ମଣିଷ । ଏମାନେ ଦ୍ରାବିଡ଼ ଭାଷା ପରିବାରର, କୋରାପୁଟ, ନବରଂଗପୁର,

ଛତିଶଗଡ଼ରେ ଦେଖାଯାନ୍ତି । ଏମାନେ ମାଲକାନଗିରି ଜିଲ୍ଲା, କୋରାପୁଟ ଜିଲ୍ଲାର ବୈପାରିଗୁଡ଼ା କୁନ୍ଦ୍ରା, ଓ କୋଟପାଡ଼ ବ୍ଲକ୍‌ର ରାମଗିରି ପାର୍ବତ୍ୟାଞ୍ଚଳରେ ବାସ କରୁଥିବା ପ୍ରାୟ ୧୦୦୦୦ ଜନସଂଖ୍ୟା ବିଶିଷ୍ଟ ପ୍ରାଚୀନ ଆଦିବାସୀ ଗୋଷ୍ଠୀ । ଏମାନଙ୍କ ଏକ ନିଜସ୍ୱ ସଂସ୍କୃତି ରହିଛି । ଛତିଶଗଡ଼ ଅଞ୍ଚଳରେ ମଧ୍ୟ ଏମାନେ ବହୁ ସଂଖ୍ୟାରେ ବସବାସ କରନ୍ତି । ଏମାନଙ୍କର ଏକ ସ୍ୱତନ୍ତ୍ର ଭାଷା ମଧ୍ୟ ଅଛି ।

୩୨. ଦୁରୁଆ ଦେଓ - *ଦେ.ବି.* : ଦୁରୁଆ ଆଦିବାସୀଙ୍କ ଦେବଦେବୀ ।

ଦୁରୁଆ ଆଦିବାସୀମାନେ ବହୁ ଦେବାଦେବୀଙ୍କୁ ପୂଜା କରିଥାନ୍ତି । ସେମାନେ ହେଲେ ବାମନ ଦେଇ (ପାହାଡ଼ ଦେବତା,) ଡଙ୍ଗର ଦେଇ (ଡଙ୍ଗରର ଦେବତା) କାମିନୀ ଦେଇ (ଜଳଦେବତା) ଦୁଲାଦେଓ (ଗୃହ ଦେବତା), ମାଉଲି (ଦନ୍ତେଶ୍ୱରୀ ଦେବୀ) ଇତ୍ୟାଦି ।

୩୩. ଦୁରୁଆ ପାଟା - *ଦେ.ବି.* : ଦୁରୁଆ ଆଦିବାସୀ ଗୋଷ୍ଠୀ ବ୍ୟବହାର କରୁଥିବା ବୋଲି ବା କଥିତ ଭାଷା (ପାଟା)

ଉଦାହରଣ : (୧) ଝିଂଜି ଆଛେ ମଂଜିନାଇଁ

ଝିକି ରପିଲେ ଜିଏ ନାଇଁ (ଉତ୍ତର ଛତ୍ରୁ)

(ଦେଶିଆ ଭାଷାଭାଷୀ ଦୁରୁଆମାନଙ୍କ ବାକ୍‌ନା)

(୨) "ବାଲୁରାଇ ବାଲୁରାଇ......

ଚଲିନିତ ବୁଲେ ତରି କେନ୍ଦାମନେ ବାଲୁରାଇ

ଚଲିନିତ ବୁଲେ ତରି କେନ୍ଦାମନେ ବାଲୁରାଇ

ଆଲୁରାଲେ ଆଲୁରି ଦୁଦୁକାଇ ବାଲୁରାଇ

ଇନେଇନେଦ୍ କୁଦୁଲାଟ୍ ଗେନା ବାଲୁରାଇ

ଇନେ ନିନେ ଦାଣ୍ଡାଇଡ଼ି ମେନାରିବେ ବାଲୁରାଇ

ଚଲିନିତ କୁଦୁ ପୁଟକି କୋୟା ଏରଡ୍ ବାଲୁରାଇ ।" (ଦୁରୁଆ ଭାଷାର ଗୀତ)

ଅର୍ଥାତ୍, ରେ, ସାଂଗ ଆଜି ତତେ ଆମେ ବିଦାୟ ଦେଉଛୁ । ଆଜିଯାଏ ଆମେ ତୋ ସହିତ ମିଶି ଗାଁ ଦାଣ୍ଡରେ କେତେ ଖେଳୁଥିଲୁ, ବୁଲୁଥିଲୁ । ହସି ଖେଳି ସମୟ ବିତାଉଥିଲୁ । ତୋତେ ଆମେ କେତେ କଥା କହୁଥିଲୁ । ସାଂଗ, ଆଗେ ତୋ ସହିତ ମନକୁ ମନ ଓ ଛାତିକୁ ଛାତି ମିଶାଇ କେତେ ଦୁଃଖ ସୁଖ ହେଉଥିଲୁ । ଆଜି ତୋତେ ବିଦାୟ ଦେଉଛୁ ।

୩୪. ଦୁଶା ନାଡ଼୍ - *ଦେ.ବି.* : ମାଲକାନଗିରି ଜିଲ୍ଲାର ମାଥିଲି ବ୍ଲକ୍‌ର ଗ୍ରାମ ବିଶେଷ । ଏହି ଗ୍ରାମ ସଂପର୍କରେ ରହିଛି ଏକ ସୁନ୍ଦର ଲୋକମିଥ୍ ଏବଂ ଏକ ପ୍ରବାଦ । ମାଟିଆ ଜାତିର ଯେଉଁ ଲୋକମାନେ ଏହି ପୁରାତନ ଗାଁଟିକୁ ବସାଇଥିଲେ, ସେମାନଙ୍କ ସଂଜ୍ଞାଥିଲା ଦୁଶା । ଥରେ ଏମ୍.ପି.ର ତଙ୍ଗପାଲି ସେ ପାଖେ ଥିବା କକାନାଡ଼ରେ ମଣ୍ଡେଇ ବେଳେ ଲୋକମାନେ ପୂଜା ଦେଲେ । ବହୁ କୁକୁଡ଼ା ବଳି ଦେଲେ । କିନ୍ତୁ କୁକୁଡ଼ାମାନଙ୍କ ଗଣ୍ଡି ସବୁ ସେଠାରେ ପଡ଼ିଲା, ମୁଣ୍ଡ କୁଆଡ଼େ ଉଡ଼ିଗଲା । ଯେତେ ଖୋଜିଲେ ମଧ ମିଳିଲା ନାହିଁ । କୋକାନାଡ଼ରେ ଦେବୀ ହେଉଛନ୍ତି ଜଲାନୀ ବୁଢ଼ୀ । ସେ ବାରଟା ଭଣ୍ଡାରର ମାଲିକ । ଭଣ୍ଡାରର ଅର୍ଥ ଇଲାକା । ଏହି କୋକାନାଡ଼ ଠାରେ ପ୍ରଥମେ ଦୁଶାନାଡ଼ର ଦୁଶାମାନେ ରହୁଥିଲେ । ସେଠାରୁ ଆସିଥିଲେ ଓଡ଼ିଶା । କିନ୍ତୁ ସାଂଗରେ ଆଣିଥିଲେ ଜଲାନୀ ବୁଢ଼ୀର ଭଉଣୀ ରଙ୍ଗ୍‌ଲାଜୀ ମାତାଙ୍କୁ । କୁକୁଡ଼ାର ମୁଣ୍ଡ ଯେତେବେଳେ ମିଳିଲା ନାହିଁ, କୋକାନାଡ଼ରେ ଯାଇ ଖବର ପହଞ୍ଚିଲା ଯେ ସେ ମୁଣ୍ଡସବୁ ଯାଇ ଦୁଶାନାଡ଼ରେ ଉଠିଛି । ବୋଧହୁଏ ଜଲାନୀ ଦେବୀ ତାଙ୍କ ଭଉଣୀ ଇଙ୍ଗ୍‌ଲାଜୀ ମାତାଙ୍କ ନିକଟକୁ ପଠାଇ ଦେଇଛନ୍ତି । ସେଇଦିନୁ ଲୋକ ମୁଖରେ ପ୍ରବାଦ ରହିଗଲା -

କୁକୁଡ଼ି ମୁଣ୍ଡି ଦୁଶାନାଡ଼୍
ବାରବାଣ୍ଡା କୋକାନାଡ଼୍ ।

ବର୍ତ୍ତମାନ ସେହି ଦୁଶାମାନେ ଆଉ ଦୁଶାନାଡ଼ରେ ନରହି ଉଠିଯାଇଛନ୍ତି ଜବାଗଡ଼ । କିନ୍ତୁ ରହିଯାଇଛନ୍ତି ତାଙ୍କର ଠାକୁରାଣୀ । ଏବେ ଏହି ଗାଁରେ ମାଟିଆ ଓ ଭୂମେୟା ଲୋକମାନେ ରହୁଛନ୍ତି । ସେମାନଙ୍କ ଅନ୍ୟ ଜଣେ ମେରାର୍ ବା ଦେବୀ ହେଉଛନ୍ତି ବରୁଆଦେଇ ।

୩୫. ଦେଓଘର - *ଦେ.ବି.* : ମନ୍ଦିର ବା ପୂଜାପୀଠ । ଇଂ.- Place of worship

ଆଦିବାସୀମାନେ ପୂଜାପୀଠ୍‌କୁ ଦେଓ (ଦେବତା)ଙ୍କ ଘର ବୋଲି କହନ୍ତି । ମନ୍ଦିର ବା ଗୁଡ଼ିରେ ଠାକୁର ଠାକୁରାଣୀ ଆସ୍ଥାନକୁ 'ଦେଓଘର' କୁହାଯାଏ ।

୩୬. ଦେଓବାଡ଼ନି - *ଦେ.ବି.* : (୧) ଫୁଲଝାଡୁର ଗଛ : ଦେବତାଙ୍କ ଝାଡୁ : ତୃଣ ଜାତୀୟ ସରୁ ବାଉଁଶ ଭଳି ଏକ ଗଛ, ଏହାର ଉପର ଆଡ଼େ ଚଅଁର ଭଳି ହଳଦୀ ସବୁଜ ଫୁଲ ବାହାରିଥାଏ, ଯେଉଁଥିରେ ଘର ଝାଡୁ କରାଯାଇଥାଏ । ଏହା କୋରାପୁଟ ଜଂଗଲ ଅଞ୍ଚଳରେ ଉତ୍ପନ୍ନ ହେଉଥିବା ଏକ ପ୍ରକାର ଘାସ ଜାତୀୟ ବୁଦା ଗଛ । ଏହି ଗଛର ଫୁଲକୁ ସଂଗ୍ରହ କରାଯାଇ ଏଥିରେ ଝାଡୁ ପ୍ରସ୍ତୁତ କରି ଆଦିବାସୀ ଲୋକମାନେ ବିକ୍ରୟ କରିଥାନ୍ତି । ଏହାକୁ ଫୁଲଝାଡୁ କୁହାଯାଏ । ବର୍ତ୍ତମାନ ଏହି ଦେଓବାଡ଼ନିର ଉତ୍ପାଦନ ଓ ଝାଡୁ ପ୍ରସ୍ତୁତ କାର୍ଯ୍ୟକୁ ଶିଳ୍ପର ମାନ୍ୟତା ଦିଆଯାଇଛି ଏବଂ ଝାଡୁ ନିର୍ମାଣପରେ ଏସବୁର ବିକ୍ରି ପାଇଁ ବିଭିନ୍ନ ସଂସ୍ଥା ଦ୍ୱାରା ଦେଶ ବିଦେଶକୁ ପଠାଯାଉଛି । ଏହି ଫୁଲଝାଡୁରେ ଆଗକାଳରେ ଦେଓଘର ବା ଦେବତା ମନ୍ଦିର ପରିଷ୍କାର କରାଯାଉଥିବାରୁ ଏହାକୁ ଦେବତାଙ୍କ ଝାଡୁ ବା 'ଦେଓବାଡ଼ନି' କୁହାଯାଇଥାଏ । ଆଦିବାସୀ ଲୋକେ ଏହି ଅରଣ୍ୟଜାତ ପଦାର୍ଥକୁ ସଂଗ୍ରହ କରି ଅର୍ଥ ରୋଜଗାର କରିବାରେ ମଧ୍ୟ ସକ୍ଷମ ହୋଇ ପାରୁଛନ୍ତି । ଅନ୍ୟ ପକ୍ଷରେ ଏହି ଗଛର ଫୁଲ ଧରିବା ଅବସ୍ଥାକୁ ଦେଖି ଆଦିବାସୀ ଲୋକମାନେ ସେ ବର୍ଷର ପାଣିପାଗ କିପରି ହେବ, ତାହାର ପୂର୍ବାନୁମାନ କରିପାରିଥାନ୍ତି । ଶୀତ ଋତୁରେ ଫୁଲ ଧରୁଥିବା ଏହି ଗଛର ମୂଳରୁ ଫୁଲ ଫୁଟି ଧୀରେଧୀରେ ଗଛର ଅଗ ପର୍ଯ୍ୟନ୍ତ ଫୁଟିଗଲେ ବର୍ଷାଋତୁ ଆରମ୍ଭରୁ ଶେଷଯାଏ ନିୟମିତ ବର୍ଷା ହୋଇଥାଏ । ଗଛର ମୂଳରୁ ମଝି ଅଂଶ ପର୍ଯ୍ୟନ୍ତ ଫୁଲ ଫୁଟିଲେ ବର୍ଷା କେବଳ ଆରମ୍ଭ ହୋଇ ମଝି ସମୟ ପର୍ଯ୍ୟନ୍ତ ରହେ । ଶେଷ ଆଡ଼କୁ ବର୍ଷାର ଅଭାବ ପରିଲକ୍ଷିତ ହୋଇଥାଏ । ଯଦି ଫୁଲଗୁଡ଼ିକ ମୂଳରୁ ଅଗଯାଏ ଛାଡ଼ି ଛାଡ଼ି ବା ମନ୍ଦା ମନ୍ଦା ହୋଇ ଫୁଟିଥାଏ, ତେବେ ଅନିୟମିତ ଭାବେ ବର୍ଷା ହୋଇଥାଏ । ବାସ୍ତବତା ସହ ଏହାର ସଂପର୍କ ଥାଉ ବା ନଥାଉ, ଏହାହିଁ ହେଉଛି ଆଦିବାସୀ ଲୋକ ବିଶ୍ୱାସ ।

ଦେଓବାଡ଼ନି : (୨) ଏହାର ସାଂସ୍କୃତିକ ଓ ଔଷଧୀୟ ପ୍ରୟୋଗ :

ଚିତାଲାଗି ଆମାବାସ୍ୟାରେ ବିଲରେ କେନ୍ଦୁକାଠ ଉପରେ ଏହା ରଖାଯାଏ । ଏହାଦ୍ୱାରା ରୋଗ ଓ ପୋକ ଆକ୍ରମଣରୁ ଫସଲକୁ ରକ୍ଷା କରାଯାଇଥାଏ ବୋଲି

ଲୋକମାନଙ୍କର ବିଶ୍ୱାସ ରହିଛି । ଆଦିବାସୀ ସମାଜର ବିବାହ ବେଦୀରେ ଏହା ପୋତାଯାଏ । ପେଟ ଥଣ୍ଡା ପାଇଁ ଅଜୀର୍ଣ୍ଣ ଓ ସ୍ତ୍ରୀରୋଗର ଆରୋଗ୍ୟ ନିମିତ୍ତ ଏହାକୁ ଔଷଧ ଭାବେ ବ୍ୟବହାର କରାଯାଏ ।

୩୭. ଦେଓ: ଦେବତା : ଦେଓଣ୍ଡୁ - *ଦେ.ବି. :* ଦେବତା, ଭଗବାନ । ଇଂ- God. ସୃଷ୍ଟି ପ୍ରକ୍ରିୟା ସହିତ ସଂପୃକ୍ତ ଥିବା ସର୍ବଶକ୍ତିମାନ ଦେବତାଙ୍କୁ କୋୟାମାନେ ଦେଓଣ୍ଡୁ (ଭଗବାନ) ଓ ତାଙ୍କ ସ୍ତ୍ରୀଙ୍କୁ ଦେଓଣ୍ଡୁ ସୁତେ (ଦେଓଣ୍ଡୁ ମୁତେ) ରୂପେ ବିଶ୍ୱାସ କରିଥାନ୍ତି । ଏହି ଦେବତାଙ୍କୁ ମଣିଷର ପ୍ରାଣଦାତା ରୂପେ ମାନନ୍ତି । ପୁଣି ପୁତ୍ର ସନ୍ତାନର କାମନା କରି ଏହାଙ୍କୁ ପୂଜା କରାଯାଇଥାଏ । ଦେଉଣ୍ଡୁଙ୍କ ସ୍ୱତନ୍ତ୍ର ମୂର୍ତ୍ତି ନଥାଏ । ପାଲେ ଭୀମା ଓ ତାଙ୍କ ସ୍ତ୍ରୀଙ୍କ ପାଇଁ ଭୀମୁଡୁ ପାଣ୍ଡୁପର୍ବରେ ଗୋଟିଏ ଲେଖାଏଁ ମାଟିର ପ୍ରତୀକ ମୂର୍ତ୍ତି ତିଆରି କରାଯାଇ ପୂଜା କରାଯାଏ ।

୩୮. ଦେଓଘାଟ - *ଦେ.ବି. :* ଦେବତାମାନେ ବାସ କରୁଥିବା ଉଚ୍ଚଘାଟୀ । ପର୍ବତ ଶିଖର । କୋରାପୁଟ ଜୟପୁର ରାସ୍ତାରେ ଦେଓଘାଟୀ ନାମରେ ଏକ ଗାଁ ରହିଛି । (ଦ୍ରଷ୍ଟବ୍ୟ - ଦେଓମାଳୀ)

୩୯. ଦେଓମାଳୀ - *ଦେ.ବି. :* କୋରାପୁଟ ଜିଲ୍ଲାର ତଥା ଓଡ଼ିଶାର ସର୍ବୋଚ୍ଚ ପର୍ବତମାଳା । ଦେବତାମାନଙ୍କ ବାସସ୍ଥଳ ରୂପେ ପର୍ବତମାଳା । ଏହା ପଟାଙ୍ଗିଠାରୁ ପ୍ରାୟ ୧୫ କି.ମି. ଦୂରରେ ଅବସ୍ଥିତ । ପୂର୍ବେ ଏହି ପର୍ବତ ମାଳାରେ ବହୁ ଜୈନ ସାଧୁ ତଥା ଋଷିମୁନିମାନେ (ଯାହାକୁ ଆଦିବାସୀ ଲୋକେ ଦେବତା ବୋଲି କହୁଥିଲେ) । ବାସ କରୁଥିବାରୁ ଓ ତପସ୍ୟାରତ ଥିବାରୁ ଏହାକୁ 'ଦେଓମାଳି' ନାମରେ ଚିହ୍ନିତ କରାଯାଇଛି । ପ୍ରାକୃତିକ ଶୋଭାରେ ପରିପୂର୍ଣ୍ଣ ଏହି ପର୍ବତଟି ଏ ଅଞ୍ଚଳର ଏକ ଦର୍ଶନୀୟ ସ୍ଥାନ । ବକ୍ସାଇଟ୍ ସମୃଦ୍ଧ ଏହି ପର୍ବତମାଳାରେ ରହିଛି ଅନେକ ଝରଣା, ଗିରିନଦୀ ଓ ଜଳ ପ୍ରପାତ । ସଂପ୍ରତି ପ୍ରତିବର୍ଷ ପରବ ସମୟରେ ଦେଓମାଳି ଆରୋହଣର ଆୟୋଜନ ହୋଇଥାଏ । ଏହା ମଧ୍ୟ ଏକ ବିଶିଷ୍ଟ ପର୍ଯ୍ୟଟନ ସ୍ଥଳୀ ।

୪୦. ଦେଓତେଲ - *ଦେ.ବି. :* ଭତରା, ଗଣ୍ଡ ଜନଜାତି ଓ ଅନ୍ୟ ଗୋଷ୍ଠୀର ପୁଅ ଓ ଝିଅର ବିବାହ ପୂର୍ବଦିନ ଉଭୟ ପକ୍ଷର ଆତ୍ମୀୟସ୍ୱଜନ, ସମ୍ବନ୍ଧୀ, ପୂଜାରୀ, ମହାଲା କାରିଆ ଇତ୍ୟାଦି ଗାଁର ଦେଓଗୁଡ଼ି (ମାତାଗୁଡ଼ି)କୁ ଯାଇ ଦେବୀଙ୍କୁ ହଳଦୀ, ତେଲ

ଲାଗି କରନ୍ତି । ଏହି ଦେଓ ତେଲ ଦେବୀଙ୍କୁ ଛୁଆଁଇ ଆମ୍ବପତ୍ର ଠୋଲାରେ ନେଇ ଘରକୁ ଫେରନ୍ତି । ଏହି ତେଲ ବିବାହର ପରବର୍ତ୍ତୀ ପର୍ଯ୍ୟାୟରେ ତେଲ ଚେପାନିରେ ବ୍ୟବହାର କରାଯାଏ । ଦେଓ ତେଲ ପରଗାନି ପରେପରେ କରାଯାଏ ।

୪୧. ଦେଓ୍ୱାଡ଼ ମୁତେ : *ଦେ.ବି. :* କୟାମାନଙ୍କର ଆଦିଦେବୀ – ମାଲକାନଗିରି ଜିଲ୍ଲାରେ ବସବାସ କରୁଥିବା କୋୟାମାନଙ୍କ ବିଶ୍ୱାସ ଯେ ଦେଓ୍ୱାଡ଼ ମୁତେ (ଆଦିମାତା) ଏବଂ ଦେଓ୍ୱାଡ଼୍‌ପାଲ (ଆଦିଦେବତା) ଏହି ସୃଷ୍ଟି ସର୍ଜନା କରିଛନ୍ତି । ସେମାନଙ୍କଠାରୁ ପ୍ରଥମେ ପ୍ରଳୟ ଜଳରୁ ପୃଥିବୀ, ମଣିଷ, ବୃକ୍ଷଲତା, ପଶୁପକ୍ଷୀ ଇତ୍ୟାଦି ସମଗ୍ର ଜଗତ୍ ଉଦ୍ଭବ ହୋଇଚି ବୋଲି କୋୟାମାନଙ୍କର ସୃଷ୍ଟି ତତ୍ତ୍ୱ ମିଥ୍‌ରୁ ଜଣାଯାଏ ।

୪୨. ଦେବଗିରି - *ଦେ.ବି. :* ଏକ ପାହାଡ଼ର ନାମ ।

ଏହା ଅବିଭକ୍ତ କୋରାପୁଟ ଜିଲ୍ଲାର କଲ୍ୟାଣ ସିଂହପୁର ଅଞ୍ଚଳରେ ଥିବା ଏକ ପ୍ରସିଦ୍ଧ ତୀର୍ଥସ୍ଥାନ ଭାବେ ପରିଚିତ । ଏହି ପାହାଡ଼ରେ ଅତୀତରେ ଦେବତାମାନଙ୍କର ସଭା ବସୁଥିବାରୁ ଏହାକୁ 'ଦେବଗିରି' ନାମରେ ନାମିତ କରାଯାଇଛି ବୋଲି ଲୋକବିଶ୍ୱାସ । ଏହି ପାହାଡ଼ କାହିଁ କେଉଁ ପ୍ରାଚୀନତମ କାଳରୁ ପଞ୍ଚମୁଖୀ ମହାଦେବ ନୀଳକଣ୍ଠେଶ୍ୱରଙ୍କ ମହିମା ପାଇଁ ପ୍ରସିଦ୍ଧି ଲାଭ କରିଛି । ଜନଶ୍ରୁତିରୁ ଜଣାଯାଏ ଅତୀତରେ ଏ କଲ୍ୟାଣସିଂହପୁରର ପଶ୍ଚିମ ଦିଗରେ ଥିବା ଯାଆଁଳା ପାହାଡ଼ରେ ବସବାସ କରିବାକୁ ଆସିଥିବା ପ୍ରଭୁ ରାମଚନ୍ଦ୍ର ତାଙ୍କ ବନବାସ ସମୟରେ ଯେତେବେଳେ ଏହି ପାହାଡ଼ରେ ଅବସ୍ଥାନ କରୁଥିଲେ, ସେତେବେଳେ ସେ ନିଜର ଆରାଧନା ନିମନ୍ତେ ଦେବଦେବୀ ମହାଦେବ ଶିବଙ୍କର ଏକ ଲିଂଗ ଏଠାରେ ସ୍ଥାପନ କରିଥିଲେ । ଦୁଇଟି ପାହାଡ଼ ମଝିରେ ଏକ ଅଗମ୍ୟ ଗୁମ୍ଫାରେ ଥିବା ଏହି ଦେବତାଙ୍କ ଦର୍ଶନ ପାଇଁ ଏଠାକୁ ଦେବତାମାନେ ଆସୁଥିବାରୁ ଏହା ଦେବଗିରି ନାମରେ ଖ୍ୟାତ ହେବାର ପ୍ରବାଦ ରହିଛି ।

୪୩. ଦେଶିଆ - *ଦେ.ବି. :* ଅବିଭକ୍ତ କୋରାପୁଟ ଜିଲ୍ଲାର ବିଭିନ୍ନ ଆଦିବାସୀ ଗୋଷ୍ଠୀକୁ ସାମୂହିକ ଭାବେ ଦେଶିଆ ବୋଲି କୁହାଯାଏ । ପୁଣି କୋରାପୁଟ, ମାଲକାନଗିରି, ନବରଂଗପୁର ଜିଲ୍ଲାରେ ବାସ କରୁଥିବା ବିଭିନ୍ନ ଆଦିବାସୀ ଗୋଷ୍ଠୀ, ଯେଉଁମାନେ ସହରାଞ୍ଚଳବାସୀଙ୍କ ସହ ଦେଶିଆ ନାମକ ସଂଯୋଜକ ଭାଷା ଇଂ-

(Lingual Franca)ରେ କଥାବାର୍ତ୍ତା କରନ୍ତି, ସେମାନଙ୍କୁ ତଥା ସେମାନଙ୍କ ଭାଷାକୁ ବୁଝାଯାଏ ।

(୧) ଏକ ଜନଜାତୀୟ ଉପଭାଷା, ଯାହା ଅବିଭକ୍ତ କୋରାପୁଟ ଜିଲ୍ଲାର ବହୁ ଅଞ୍ଚଳରେ ଶୁଣିବାକୁ ମିଳେ । ଏହା ମୌଖିକ ଭାଷା ପର୍ଯ୍ୟାୟର । ଓଡ଼ିଶାର ଜନଜାତିଙ୍କ ମଧ୍ୟରେ ଓଡ଼ିଆ ଭାଷାର ଯେଉଁ ରୂପାନ୍ତର ଦେଖାଯାଏ, ତାହା ମଧ୍ୟରେ ଅବିଭକ୍ତ କୋରାପୁଟ ଜିଲ୍ଲାର ଦେଶିଆ, ଭତ୍ରା ଓ ଝରିଆ ଅନ୍ୟତମ । ଦେଶିଆ ଭାଷାର ବୈଶିଷ୍ଟ୍ୟ ହେଉଛି ଏହାର ସରଳ, ପ୍ରାକୃତିକ ଓ ପ୍ରାଚୀନ ରୂପ ଏବଂ ଏହାର ଗଠନରେ ମୁଣ୍ଡା ଓ ଦ୍ରାବିଡ଼ ଭାଷାର ପ୍ରଭାବ ।

କୋରାପୁଟ, ଓଡ଼ିଶା ଓ ଓଡ଼ିଆ ଭାଷାର ଗୋଟିଏ ସୀମାନ୍ତ । ଏଠାରେ ଓଡ଼ିଆ ଭାଷା ଓଡ଼ିଆ, ଦ୍ରାବିଡ଼, ମୁଣ୍ଡା ଭାଷାର ମହାସଂଗମରେ ମିଶି ଯାଇଛି । ଏହି ତ୍ରିବିଧ ଭାଷା ଓ ସଂସ୍କୃତି ସଂପ୍ରଦାୟ ମଧ୍ୟରେ ସଂଯୋଗର ସୂତ୍ର ସ୍ୱରୂପ କାର୍ଯ୍ୟ କରେ ଦେଶିଆ ଭାଷା । ଦେଶିଆ ସଂସ୍କୃତି, ଦେଶିଆ ଶବ୍ଦାବଳୀ ଏହାର ତାତ୍ପର୍ଯ୍ୟ ଆଞ୍ଚଳିକ, ଲୌକିକ, ପ୍ରାକୃତିକ ଓ ମୌଳିକ । ଏହି ଅଞ୍ଚଳରେ ସମସ୍ତ ଜନଜାତି ନିଜକୁ ଦେଶିଆ ରୂପେ ପରିଚିତ କରାନ୍ତି । ତେଣୁ ତାଙ୍କ ଭାଷାର ନାମକରଣ କରାଯାଇଛି - ଦେଶିଆ ।

ଏହି ଉପଭାଷାରେ ଏକ ସମୃଦ୍ଧ ଲୋକସାହିତ୍ୟ ଓ ସାଂସ୍କୃତିକ ପରମ୍ପରା ରହିଆସିଛି । ରାଶିରାଶି ଗୀତ, ମିଥ୍, କଥାନୀ, ପ୍ରବାଦ, ବାକ୍‌ନା ବା ପହେଳି, ଢେଗ୍, ମନ୍ତ୍ର, ଗୁଣିଗାରେଡ଼ି, ଚିକିତ୍ସାବିଦ୍ୟା ଇତ୍ୟାଦି ରହିଆସିଛି, ଏହାକୁ ଛାଡ଼ିରହିଛି ନୃତ୍ୟନାଟ, ବାଦ୍ୟ ଓ ଦେଶିଆ ନାଟର ପରମ୍ପରା ।

(୨) ସହରାଞ୍ଚଳରେ ବାସ କରୁଥିବା 'ଗଡ଼ିଆ' ବା ଅଣଆଦିବାସୀ ଲୋକଙ୍କ ଠାରୁ ଅଲଗା କରି ଚିହ୍ନିତ କରିବା ପାଇଁ ଗ୍ରାମାଞ୍ଚଳରେ ଆଦିବାସୀ ଗୋଷ୍ଠୀ ତଥା ଦେଶିଆ ସଂସ୍କୃତିରେ ପରିପୁଷ୍ଟ ରଣା, ପାଇକ, ଗଉଡ଼ ଇତ୍ୟାଦି ଜାତିର ଲୋକମାନଙ୍କୁ ମଧ୍ୟ ଦେଶିଆ ବୋଲି ଅଭିହିତ କରାଯାଏ ।

ଉଦାହରଣ : ମୁଇ ଦେଶିଆ ଲୋକ୍ । ଏତେକ୍ ଫନ୍ଦି ନାଇ ବୁଝେ ।

୪୪. ଦେଶିଆ ନାଟ - *ଦେ.ବି. :* ଦେଶିଆମାନଙ୍କ ନାଟ୍ୟାଭିନୟ ।

ଦେଶିଆ ଲୋକମାନଙ୍କ ଦ୍ୱାରା ଏବଂ ଦେଶିଆ ଭାଷାରେ ଅଭିନୀତ ଲୋକନାଟ୍ୟ । ଉଦାହରଣ : ପେଟା ପରଶୁ, ବୀରବାହୁ ବଧ, କୁମ୍ଭାସୁର ବଧ ଇତ୍ୟାଦି ଜୟପୁର ଜମିଦାର ରାଜା ରାମଚନ୍ଦ୍ର ଦେବ ସର୍ବ ପ୍ରଥମେ ଦେଶିଆ ନାଟ ରଚନାକରି ମୁକ୍ତ ମଞ୍ଚରେ ଅଭିନୀତ କରାଇଥିଲେ । ଦେଶିଆ ନାଟରେ ଦୁଆରୀ ମୁଖ୍ୟ ସୂତ୍ରଧର ଭାବେ ଅଭିନୟ କରିଥାଏ । ହାସ୍ୟରସ (ସଂଳାପ ଓ ଅଭିନୟ ମାଧ୍ୟମରେ) ପରିବେଷଣ କରି ଦର୍ଶକ ମାନଙ୍କୁ ହସାଇ ରସାଇ ଆକର୍ଷିତ କରିବା ଏହି ଚରିତ୍ରର ମୂଳ ଉଦ୍ଦେଶ୍ୟ ।

ଗଂଜାମ ଜିଲ୍ଲାର କୃଷ୍ଣଲୀଳା, ରାଧାପ୍ରେମଲୀଳା, ଭାରତ ଲୀଳା ଓ ପ୍ରହ୍ଲାଦ ନାଟକ ପ୍ରଭୃତି ଶାସ୍ତ୍ରୀୟ ନାଟ୍ୟରୀତି ଉପରେ ଆଧାରିତ ହୋଇଥିବାବେଳେ କୋରାପୁଟର ଦେଶିଆ ନାଟ ଉଭୟ ଶାସ୍ତ୍ରୀୟ ଓ ଲୋକନାଟ୍ୟ କଳାର ଏକ ମିଶ୍ର ନାଟ୍ୟରୀତି, ଯାହାକି ବେଶ୍ କୌତୂହଳପ୍ରଦ ଓ ଲୋକରୁଚି ସଂପନ୍ନ । ଐତିହାସିକ ଅନୁଧ୍ୟାନରୁ ଜଣାଯାଏ ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରେ ଜୟପୁର ରାଜ ପୃଷ୍ଠପୋଷକତାରେ ଦେଶିଆନାଟ ବିକାଶଲାଭ କରିଥିଲା । ଜୟପୁରର ମହାରାଜା ରାମଚନ୍ଦ୍ର ଦେବ (୪ର୍ଥ) ଜୟପୁର ଅଞ୍ଚଳର ଆଦିବାସୀ ଓ ଅଣଆଦିବାସୀମାନଙ୍କୁ ନେଇ ତାଙ୍କ ରଚିତ କୁମ୍ଭାସୁର ବଧ ଓ ଇନ୍ଦ୍ରଜିତବଧ ନାଟକ ଅଭିନୟ କରାଇଥିଲେ । ଜୟପୁର ନିକଟବର୍ତ୍ତୀ ଘଉରୀ ଗ୍ରାମରେ କୁମ୍ଭାସୁର ବଧ ନାଟଟି ଦୀର୍ଘଦିନ ଧରି ଅଭିନୀତ ହୋଇଥିଲା । ପରେ ଏହା ବିଭିନ୍ନ ଗ୍ରାମରେ ଅଭିନୀତ ହୋଇ ଜନପ୍ରିୟ ହୋଇପାରିଥିଲା । ପରବର୍ତ୍ତୀ ସମୟରେ ଜୟପୁର ରାଜା ବିକ୍ରମ ଦେବ ବର୍ମା ୧୯୩୦-୩୧ରେ 'ଜଗନ୍ମିତ୍ର' ନାମକ ଏକ ନାଟ୍ୟସଂଘ ଗଢ଼ି ସ୍ୱରଚିତ ବାଣାସୁର ବଧ, ଜଳନ୍ଧର ବଧ, ରାଧାମାଧବ ଓ କୁନ୍ଦମାଳା ପ୍ରଭୃତି ନାଟ ମଞ୍ଚସ୍ଥ କରାଇଥିଲେ । ଗଞ୍ଜାମ ଜିଲ୍ଲା ବିଭିନ୍ନ ଲୀଳା ନାଟର ଏନ୍ତୁଡ଼ିଶାଳ ହୋଇଥିବାରୁ ଏଠାକାର ଗୁରୁମାନେ ଆସି ଅବିଭକ୍ତ କୋରାପୁଟରେ ନାଟଶିକ୍ଷା ଦେଉଥିଲେ । ସଂପ୍ରତି ସ୍ଥାନୀୟ ନାଟଗୁରୁମାନଙ୍କ ଦ୍ୱାରା ଅଧିକାଂଶ ଗ୍ରାମରେ ଆଖଡ଼ା ଘରମାନ ପରିଚାଳିତ । କୋରାପୁଟର ନାଟ ଗୁରୁମାନଙ୍କ ମଧ୍ୟରେ ନବରଂଗପୁରର ନାଟପୁରୁଷମାନେ ବିଖ୍ୟାତ । ଆଜି ନାଟଗୁରୁ ଶିଷ୍ୟ ପରମ୍ପରା କ୍ରମେ ଶତାଧିକ ଗୁରୁ ସୃଷ୍ଟି ହୋଇପାରିଛନ୍ତି । ଏହି ନାଟଗୁରୁମାନେ ଅବିଭକ୍ତ କୋରାପୁଟର ବିଭିନ୍ନ ଗ୍ରାମରେ ଏକକାଳୀନ ଏକାଧିକ ନାଟଶିକ୍ଷା ପ୍ରଦାନ କରିଥାନ୍ତି । ଗୋଟିଏ ନାଟଶିକ୍ଷା କରିବା ପାଇଁ ଅନ୍ୟୂନ ଚାରିରୁ ଛ'ମାସ ସମୟ ଲାଗିଥାଏ । କୋରାପୁଟରେ ଧାନ ଅମଳ

ହୋଇଯିବା ପରେ ବିଭିନ୍ନ ଗ୍ରାମରେ ଆଖଡ଼ାଘରମାନ ବାଦ୍ୟ ମୂର୍ଚ୍ଛନାରେ ଚଳଚଞ୍ଚଳ ହୋଇଉଠେ । ଏହି ନାଟଗୁରୁମାନଙ୍କ ସ୍ଥାନୀୟ ଲୋକଙ୍କ ଶ୍ରଦ୍ଧା ଓ ସମ୍ମାନ ଯଥେଷ୍ଟ । ଦେଶିଆ ନାଟର ଆଦ୍ୟକାଳରେ ଏହି ନାଟକର ଭାଷା ତତ୍‌ସମ ଓଡ଼ିଆ ହୋଇଥିବାବେଳେ ସଂପ୍ରତି ଦେଶିଆ ଓ ତ୍ରୁଟିପୂର୍ଣ୍ଣ ଓଡ଼ିଆ ଭାଷାରେ ମୁଖ୍ୟତଃ ଦେଶିଆ ନାଟମାନ ଅଭିନୀତ ହେଉଛି । ସମସ୍ତ ପ୍ରମାଦ ସତ୍ତ୍ୱେ ଏଗୁଡ଼ିକ ବେଶ୍ ଲୋକିପ୍ରିୟ, ଲୋକଭିମୁଖୀ ଓ ବହୁଳଭାବରେ ଆଦୃତ ହୋଇଥାଏ ।

ଏହିସବୁ ନାଟରେ ନଡ଼ିଆ ଭାଂଗି ସଭା ପୂଜାପରେ ଗଣେଶ ବା ସରସ୍ୱତୀ ବାହାରନ୍ତି । ତାଙ୍କ ପାଇଁ ବନ୍ଦନା ଗାନ କରାଯାଏ । କେତେକ ନାଟରେ ମୁଖ୍ୟ ଦେବଦେବୀଙ୍କ ବନ୍ଦନା ପରେ ସ୍ଥାନୀୟ ଦେବଦେବୀ ବା ମାଉଲୀଙ୍କର ବନ୍ଦନା ଗାନ କରାଯାଏ । ଏହି ନାଟ ଅଭିନୀତ ହେଉଥିବା ରଂଗମଞ୍ଚର ଗୋଟିଏ ପାଖରେ ନାଟଗୁରୁ, ପାଳିଆ ଓ ବାଦକମାନେ ବସିଥାନ୍ତି । ଅନ୍ୟ ତିନିପଟେ ଆବାଳ ବୃଦ୍ଧ ବନିତା ଦର୍ଶକମଣ୍ଡଳୀ ବସିଥାନ୍ତି । ରାତିସାରା ଏହି ନାଟ ଚାଲେ । ଦୂର ଦୂରାନ୍ତ ଗ୍ରାମରୁ ୧୫/୨୦ କି.ମି. ବାଟ ଦୁର୍ଗମ ପଥ ଚାଲିଚାଲି ଦର୍ଶକମାନେ ଶୀତକାକରକୁ ଭ୍ରୂକ୍ଷେପ ନକରି ରାତିଯାକ ମୁକ୍ତ ଆକାଶତଳେ ଉତ୍କଣ୍ଠିତ ଭାବରେ ବସି ନାଟକ ଉପଭୋଗ କରନ୍ତି । ଏହାହିଁ ଏମାନଙ୍କ ପ୍ରଚଣ୍ଡ କଳାପ୍ରାଣର ପରିଚୟ ଦିଏ । ପୁଣି କଳାକାରମାନଙ୍କ ଅଭିନୟରେ ମୁଗ୍ଧ ହୋଇ ଦର୍ଶକମାନେ ନିଜ ସଂଚିତ ସାମାନ୍ୟ ଅର୍ଥକୁ ପୁରସ୍କାର ଆକାରରେ ନିଜେ ରଂଗମଞ୍ଚରେ ପ୍ରଦାନ କରିଥାନ୍ତି ।

ଏହି ନାଟର କଳାକାରମାନେ ସାଧାରଣତଃ ନିରକ୍ଷର ବା ଅତି ବେଶୀରେ ସାମାନ୍ୟ ଶିକ୍ଷିତ । ଏଥିପାଇଁ ଏମାନେ ନାଟକର ଗୀତ ଓ ସଂଳାପ ବୋଲିପାରନ୍ତି ନାହିଁ । ପ୍ରଥମେ ଗୁରୁ ଗୀତ ଓ ସଂଳାପ ବୋଲିଥାନ୍ତି । ପରେ କଳାକାରମାନେ ଓ ଅନ୍ୟ ପାଳିଆମାନେ ପାଳି ଧରି ବୋଲିଥାନ୍ତି । ପ୍ରାଚୀନ ଲୀଳା ନାଟ ଓ ଗ୍ରୀସ୍‌ର ଏପିକ୍ ନାଟକରେ ଯେପରି ମୂକ ଅଭିନୟ ଓ ପାଳି ଧରିବା ପରମ୍ପରା ପ୍ରଚଳିତ, ସେହିପରି କୋରାପୁଟର ଦେଶିଆ ନାଟରେ ମଧ୍ୟ ପ୍ରଚଳିତ । ସ୍ଥାନୀୟ ଗୁରୁ ଓ କଳାକାରମାନଙ୍କ ପ୍ରାଧାନ୍ୟ ସକାଶେ ଏଥିରେ ସ୍ଥାନୀୟ ସଂସ୍କୃତି, ଭାଷା ଓ ଆଦିମ ଲୋକରୀତିରେ ରଂଗଲାଗିବା ସ୍ୱାଭାବିକ । ଏହିପରି ଭାବେ ଦେଶିଆନାଟ ଲୌକିକ ନାଟ୍ୟସ୍ତରକୁ ଓହ୍ଲାଇ ଆସିଛି । ପୂର୍ବରୁ ଏଥିରେ ପାରମ୍ପରିକ ବାଦ୍ୟଯନ୍ତ୍ର ଯଥା : ଗିନି, ମର୍ଦ୍ଦଳ,

ମହୁରୀ, ଡିଡ଼ିବିଡ଼ି, କେନ୍ଦରା ଆଦି ବହୁଳଭାବେ ବ୍ୟବହୃତ ହେଉଥିଲା । ସଂପ୍ରତି ତା ସ୍ଥାନ୍‌ରେ ଦେଖା ଦେଇଛି ହାରମନିୟମ୍, କେସିଓ, କ୍ଲୋରିଓନେଟ୍ ଓ ଝୁମୁକା ଇତ୍ୟାଦି । ପାରମ୍ପରିକ ବାଦ୍ୟଯନ୍ତ୍ରର ବ୍ୟବହାର ମଧ୍ୟ ଚାଲିଛି । ଅତୀତର ଦିହୁଡ଼ି ମଶାଲ ଆଦି ଆଲୋକ ବ୍ୟବସ୍ଥା ସ୍ଥାନରେ ସଂପ୍ରତି ପେଟ୍ରୋମାକ୍ସ ଓ ବିଦ୍ୟୁତ୍ ଆଲୋକର ବ୍ୟବସ୍ଥା ହେଉଛି । ସଂଗୀତରେ ଆଦିବାସୀ ସଂଗୀତର ସରଳ ସାବଲୀଳ ଛନ୍ଦ ଓ ସ୍ୱରର ପ୍ରଭାବ ବିଶେଷ ଲକ୍ଷଣୀୟ ।

ଏହି ନାଟର ଅନ୍ୟ ଏକ ବିଭାବ ହେଉଛି ମୁଖାର ବ୍ୟବହାର । ବିଭିନ୍ନ ଦେବଦେବୀ ଓ ପୌରାଣିକ ଚରିତ୍ରମାନଙ୍କର ରଂଗବେରଂଗୀ ମୁଖା ଦେଶିଆନାଟର ଚରିତ୍ରମାନେ ପରିଧାନ କରିଥାନ୍ତି । ଏହାକୁ ଛାଡ଼ି ଭାଲୁ, ହନୁମାନ, ବାଘ, ମୟୂର ଓ ଅସୁର ଇତ୍ୟାଦିଙ୍କର ମୁଖା ମଧ୍ୟ ବ୍ୟବହୃତ ହୋଇଥାଏ । ଏହିସବୁ ମୁଖା ଜୟପୁରରେ ନିର୍ମିତ ହୁଏ ।

୪୫. ଦେଶିଆ ବାଇଦ୍ - *ଦେ.ବି. :* (ଦେଶୀୟ ବାଇଦ୍) ଅଣ ଶାସ୍ତ୍ରୀୟ ପାରମ୍ପରିକ ବାଦ୍ୟ :

ଅବିଭକ୍ତ କୋରାପୁଟ ଜିଲ୍ଲାର ଗ୍ରାମ ଗୁଡ଼ିକରେ ବାସ କରୁଥିବା ସ୍ଥାନୀୟ ଲୋକମାନେ (ଦେଶିଆ), ଯେଉଁ ମୌଳିକ ଜିନିଷ ଗୁଡ଼ିକ ବାଦ୍ୟ ରୂପେ ବ୍ୟବହାର କରନ୍ତି ସେଗୁଡ଼ିକୁ 'ଦେଶିଆ ବାଇଦ୍' କୁହାଯାଇଥାଏ । ଦେଶିଆମାନେ ନିତ୍ୟ ବ୍ୟବହାର୍ଯ୍ୟ ବାସନକୁସନ, ଝାଡୁ, କାଠ, ବାଉଁଶ, ଗଛର ଫଳ ଓ ପତ୍ର ପ୍ରଭୃତିକୁ ମଧ୍ୟ ବାଦ୍ୟ ରୂପେ ବ୍ୟବହାର କରନ୍ତି । ଏହି ପ୍ରକାର ବାଦ୍ୟ ମଧ୍ୟରେ କଂସା ଓ ପିତଳର ବାସନକୁସନ, କାଠ ଓ ବାଉଁଶର ବାଡ଼ି (ଦଣ୍ଡାହାଲିଆ / କାଠିମାରା ନାଚରେ ବ୍ୟବହୃତ), ସଲପ ଗଛର ବାହୁଙ୍ଗା, ତାଳପତ୍ରରେ ତିଆରି ପେଁକାଳୀ, ବିଭିନ୍ନ ଶୁଖିଲା ଫଳ, (ଟାଇଫଳ) ଦେଶିଆ କନ୍ଧଙ୍କ ଗଅଣ, ସଉରା ଆଦିବାସୀଙ୍କର ବାଉଁଶ ନଳାରେ ତିଆରି ରେଗ୍‌ରେଗା, ବଣ୍ଡାଙ୍କ ଗୁନୁଂକୁ,ହାଲ୍‌ବା ଓ ପେଣ୍ଠିଆଙ୍କ କାଠ ନିର୍ମିତ ତଡରା ବାଦ୍ୟ, ଗଣ୍ଡମାନଙ୍କ କାଠ ତିଆରି ଧୁଡ଼ରା ବାଦ୍ୟ, କୋୟାଙ୍କ ଗଲୁରୀ ବାଡ଼ି, ଅନ୍ୟତମ । ଯେ କୌଣି ପଦାର୍ଥରୁ ଧ୍ୱନି ସୃଷ୍ଟି ହେଲେ ସେ ସବୁକୁ ବାଦ୍ୟରୂପେ ଗ୍ରହଣ କରାଯାଇଥାଏ ।

୪୬. ଦେଶିଆ ବାଦ୍ୟଯନ୍ତ୍ର : ଦେଶିଆ / ଆଦିବାସୀ ବାଦ୍ୟଯନ୍ତ୍ର - *ଦେ.ବି. :*

ବାଦ୍ୟଯନ୍ତ୍ରକୁ ପାଞ୍ଚଭାଗରେ ବିଭକ୍ତ କରାଯାଏ ଯଥା ତତ୍ ବାଦ୍ୟଯନ୍ତ୍ର, ଶୁଷିର, ଆନଦ୍ଧ ଘନ ଓ ଦେଶୀୟ । କେତେକ ପ୍ରମୁଖ ତତ୍ ବାଦ୍ୟଯନ୍ତ୍ର ହେଲା ଡୁଙ୍ଗଡୁଙ୍ଗା, ରାମଗୁଟା, ସାରଙ୍ଗୀ, କେନ୍ଦରା, ଡୁମ୍ବରା, ଧୁଡ଼କି ଆଦି । ଶୁଣିର ବାଦ୍ୟରେ ମୁଖ୍ୟ ହେଉଛି ବଂଶୀ, ଆଡ଼ବଂଶୀ, ମହୁରୀ, ଶିଙ୍ଗା ଇତ୍ୟାଦି । ଆନଦ୍ଧ ବାଦ୍ୟ ହେଉଛି ଧୁମ୍‌ସା ବା ଟମକ, ଢୋଲ, ତିଡ଼ିବିଡ଼ି, ଢାପ୍ ଇତ୍ୟାଦି । ଘନବାଦ୍ୟ ଭିତରେ ମୁଖ୍ୟ ତାଳ, ଝାଞ୍ଜ, ଘଣ୍ଟି ଓ ଘୁଙ୍ଗୁର ଇତ୍ୟାଦି । ଦେଶୀୟ ନମୁନା ପୂର୍ବରୁ ଉଲ୍ଲେଖ କରାହୋଇଛି ।

୪୭. **ଦେଶିଆ ବୋଲି** - *ଦେ.ବି.* : ଦେଶିଆ ଭାଷାରେ କଥାବାର୍ତ୍ତା ।

ଦୃଷ୍ଟାନ୍ତ : "କୋନତି ଗାଲାସ୍ ନି ।(କେଉଁଠାକୁ ଯାଉଛ)

ଗୀତ ମାରାରି ନନିମନ୍ । (ଝିଅମାନେ ଗୀତ ଗାଅ)

ବେଣ୍ଟ କେ ଜୁଃ । (ଶିକାର କରିବାକୁ ଯିବା ଚାଲ)

ଆଦିବାସୀ ଓ ଆଦିବାସୀଙ୍କ ମଧ୍ୟରେ, ଆଦିବାସୀ ଅଣ ଆଦିବାସୀଙ୍କ ମଧ୍ୟରେ କୋରାପୁଟ ଜିଲ୍ଲା (ଅବିଭକ୍ତ)ରେ ଯେଉଁ ସଂଯୋଜକ କଥିତ ଭାଷାରେ କଥାବାର୍ତ୍ତା କରାଯାଏ ତାକୁ ଦେଶିଆ ବୋଲି (ଦେଶିଆ ଡାଇଲେକ୍ଟ) କୁହାଯାଏ ।

୪୮. **ଦେଢ଼ି** - *ଦେ.ବି.* : ବିହନ ରୂପେ ବା ଖାଦ୍ୟ ରୂପେ କରଜ ଆଣିବା । ସାହୁକାରୀ ଋଣ ପଦ୍ଧତିର ଗୋଟିଏ ରୂପ । ଦେଢ଼ି ଅର୍ଥ ଦେଶିଆ ମତେ ପୁଟିଏ ଧାନ ବୁଣିବା ପାଇଁ ଆଣିଲେ, ଅର୍ଥାତ୍ ବିହନ ରୂପେ ଆଣିଲେ, ଅମଳ ପରେ ଅର୍ଥାତ୍, ଚାରିମାସ ଭିତରେ ଦୁଇ ପୁଟି ଦେବାକୁ ହୁଏ । ପୁଟିଏ ମୂଳ, ପୁଟିଏ ସୁଧ । ବର୍ଷେ ପରେ କରଜ ଶୁଝିଲେ ଚାରିପୁଟି ଦେବାକୁ ହୁଏ । ଅର୍ଥାତ୍, ସୁଧର ବାର୍ଷିକ ହାର ହେଉଛି ୩୦୦% ବା ମୂଳର ୩ ଗୁଣ ।

ସେହିପରି ଖାଇବା ଉଦ୍ଦେଶ୍ୟରେ ପୁଟିଏ ଦାନ ଆଣିଲେ ସୁଧ ସହ ଦେଢ଼ ପୁଟି ଦେବାକୁ ହୁଏ । ଏହି ଦେଢ଼ି କାରବାର କରି କୋରାପୁଟ ଅଞ୍ଚଳରେ ସାହୁକାରମାନେ ଆଦିବାସୀ ରଇତମାନଙ୍କ ହଜାର ହଜାର ଏକର ଜମି ହସ୍ତାନ୍ତର କରି ନେଇଛନ୍ତି ।

୪୯. ଦୋଣି - *ଦେ.ବି.* : ବିବାହରେ ସାହାଯ୍ୟକାରୀ ବ୍ୟକ୍ତିବିଶେଷ । ଗଣ୍ଡ ଆଦିବାସୀ ସମାଜରେ ଯେଉଁ ବ୍ୟକ୍ତି ବିବାହ କାର୍ଯ୍ୟରେ ସବୁ ପ୍ରକାର ସାହାଯ୍ୟ କରେ ତାହାକୁ 'ଦୋଣି' କୁହାଯାଏ । ବେଦୀ ନିର୍ମାଣ, ଚିତା ଦେବା, ବରକନ୍ୟାକୁ ଗାଧୋଇଦେବା, ମୁକୁଟ ପିନ୍ଧାଇବା, ବିବାହ ଯୋଡ଼ା ପିନ୍ଧାଇବା ଆଦି ତଥା ଝିଅକୁ ବିଦାୟ ଦେବା ସମୟରେ ଯାହା ଦରକାର ସେ ସବୁ କାର୍ଯ୍ୟ କରୁଥିବା ବ୍ୟକ୍ତି ହେଉଛି ଦୋଣି । ଦୋଣିର କାର୍ଯ୍ୟ ହେଉଛି ହିନ୍ଦୁ ସଂପ୍ରଦାୟରେ ପୁରୋହିତ ଓ ବାରିକର ମୁଖ୍ୟ କର୍ମସବୁର ସମନ୍ୱୟ ।





୧.	**ଧଣ୍ଡାରୀ** – *ଦେ.ବି. :* ଏକ ପ୍ରକାର ଆଦିବାସୀ ଲୋକନୃତ୍ୟ : 'ଦଣ୍ଡାହାଲିଆ', ଡାଣ୍ଡାହାଲିଆ, କାଠିନାଚ । ଏହି ନାଟ ବିଭିନ୍ନ ନାମରେ ପ୍ରାୟ ସମସ୍ତ ଆଦିବାସୀ ଗୋଷ୍ଠୀରେ ପ୍ରଚଳିତ ।

ହାତରେ ଦଣ୍ଡ ବା ଦୁଇଟି କାଠିଧରି ବିଭିନ୍ନ ଆଦିବାସୀ ଗୋଷ୍ଠୀର ପୁରୁଷମାନେ ଫସଲ ଅମଳ ପରେ ପୌଷ ମାସରେ ଗାଁ ଗାଁ ବୁଲି ଗୀତ ଗାଇ, ନାଚକରି ଧାନଖଳା ଗୁଡ଼ିକୁ ଯାଇ ଧାନ ବା ପଇସା ଆଦାୟ କରି ମାସେ ପରେ ଗାଁକୁ ଫେରନ୍ତି । ଗାଁକୁ ଫେରି ଭୋଜିଭାତ କରିଖାଆନ୍ତି । କେହିକେହି ଏହାକୁ 'ଦାଣ୍ଡା ହୁଲିଆ ନାଟ' ବୋଲି ମଧ୍ୟ କହିଥାନ୍ତି । ନବରଂଗପୁର, ଜୟପୁର କୋରାପୁଟ ଅଞ୍ଚଳରେ ଆଦିବାସୀ ଓ ଅଣ ଆଦିବାସୀମାନେ ପୌଷ ମାସରେ ଏହି ନୃତ୍ୟ କରି ବିଭିନ୍ନ ଗ୍ରାମ ପରିକ୍ରମା କରିଥାନ୍ତି । ସ୍ଥାନ ବିଶେଷରେ ଏହି ନାଟକୁ ଡାଣ୍ଡରି, ଡଣ୍ଡାରି, ଧଣ୍ଡାରି, ଲାଠିନାଚ, କାଠିନାଚ ନାମରେ ମଧ୍ୟ ଚିହ୍ନିତ କରାଯାଏ । ଏହା ସମର ନୃତ୍ୟ ପର୍ଯ୍ୟାୟର ଏକ ଆଦିମ ରୂପ ।

ଏହି ନାଟରେ ୧୦/୧୫ ଜଣ ଯୁବକ ନାଲି, ହଳଦିଆ ଓ ସବୁଜ ରଂଗର ଲୁଗାକୁ କଚ୍ଛାମାରି ପିନ୍ଧିଥାନ୍ତି । ଦେହରେ ଜରିଲୁଗା କୁର୍ତ୍ତା ଓ କୋଟ୍ ମଧ୍ୟ ପିନ୍ଧିଥାନ୍ତି । ମଥାରେ ଜରିଲଗା ପଗଡ଼ି, ମୟୂର ପୁଚ୍ଛ ବା ପକ୍ଷୀପରର ଝୁମ୍ପା, ହାତରେ ଦୁଇଖଣ୍ଡ ବାଉଁଶ ବାଡ଼ି (ଯାହାର ଅଗ୍ରଭାଗ ଚାରିଫଡ଼ା ହୋଇଥିବ) ଧରିଥାନ୍ତି । ଏମାନେ ବାଡ଼ି (ଦଣ୍ଡ) ସହ ବାଡ଼ି ଆଘାତ କରି ଢୋଲ, ମହୁରୀ, ବଂଶୀ, ତିଡ଼ିବିଡ଼ି, ଝମକି (ଝାମକ), ଝୁମୁକା ଆଦି ବାଦ୍ୟଯନ୍ତ୍ରର ତାଳେତାଳେ ଗୋଲାକାର, ଦୁଇଧାଡ଼ି, ସମାନ୍ତରାଳ, ବିପରୀତ ଦିଗକୁ ମୁହଁକରି ଜଣକ କାନ୍ଧରେ ଜଣେ ଠିଆ ହୋଇ ନାଚ କରିଥାନ୍ତି । ନୃତ୍ୟ ସମୟରେ ହୁଇସିଲ୍ ମାରି, ବାଉଁଶ ବାଡ଼ିର ଶବ୍ଦ ସହ ତୁଣ୍ଡରେ 'ଓ.... ଓ ହୋ ଶବ୍ଦକରି କଳାକାର ଯୁଦ୍ଧ କରିବା ଭଳି ବୀରନୃତ୍ୟ ପରିବେଷଣ କରିଥାନ୍ତି । ଏମାନେ ଯେଉଁଠାରେ ରାତ୍ରିଯାପନ କରନ୍ତି, ସେହି ଗ୍ରାମ ସେମାନଙ୍କ 'ବାବୁ ଗାଉଁ' ବା ମିତ୍ରଗ୍ରାମ ରୂପେ ସ୍ୱୀକୃତ ହୋଇଥାଏ । ଏହି ସଂପର୍କ ଦୀର୍ଘସ୍ଥାୟୀ ହୋଇଥାଏ ।

୨. ଧରମପାନି - ଦେ.ବି. : ବିବାହ ସମୟରେ ବରକନ୍ୟା ମୁଣ୍ଡରେ ଢଳା ଯାଉଥିବା ନଈ ବା ଝରଣାର ପବିତ୍ର ପାଣି, ଯାହା ବର ଓ କନ୍ୟାର ମାଆମାନେ ବିବାହ ଦିନ ଭୋରରୁ ନୂଆ ମାଠିଆ, ଗାଗରି / ଲମ୍ବା ମୁହଁଥିବା ପିତଳ ଗରାରେ ଆଣି ବେଦୀରେ ରଖିଥାନ୍ତି । ପରେ ଏହି ପାଣି ବରକନ୍ୟାଙ୍କୁ ଗାଧୋଇ ଦେବାରେ ବ୍ୟବହାର ହୋଇଥାଏ ।

୩. ଧାକଡ଼ରାଣି - ଦେ.ବି. : ଏକ ଗ୍ରାମର ନାମ ବିଶେଷ । ଧାକଡ଼ ଭାଷାରେ ରାଣିର ଅର୍ଥ ଗାଁ ବା ବସତି । ଧାକଡ଼ ମାନଙ୍କର ଗାଁ ହୋଇଥିବାରୁ ସାଲମି ପଞ୍ଚାୟତର ଏହି ଗାଁର ନାମ ଧାକଡ଼ରାଣି । ଏମାନେ ମୁଖ୍ୟତଃ କିଶାନ ବା ଚାଷୀ ଜାତିର । ଆଦିବାସୀମାନେ ଏମାନଙ୍କୁ ବ୍ରିଟିଶ ଦଲାଲ ବୋଲି କହନ୍ତି । ପାଇକ ଜାତିରୁ ଏମାନଙ୍କର ଉଦ୍ଭବ ବୋଲି ଆଦିବାସୀମାନେ କହୁଥିବା ବେଳେ ଏମାନେ ନିଜକୁ ପାଇକମାନଙ୍କ ଠାରୁ ଉଚ୍ଚ ବୋଲି ଦାବି କରନ୍ତି । ଏମାନଙ୍କ ବିଷୟରେ ଗୋଟିଏ ପ୍ରବଚନ ଅଛି 'ଧାକଡ଼ ମନ୍ତ୍ରୀ, ହଲ୍‌ବା କ୍ଷେତ୍ରି', ଏମାନେ ମୁଖ୍ୟତଃ ଚାଷ ଓ ବେପାର କରିଚଳନ୍ତି । ରାଜାଙ୍କ ଅମଳରେ ଜୟପୁର ରାଜାଙ୍କ ସେବାକାରୀ ରୂପେ ଧାକଡ଼ମାନେ ପରିଚିତ । ଏଠାକାର ଦେବୀ ଦନ୍ତେଶ୍ୱରୀ । ତାଙ୍କର ରଥ ଦଶହରା ଦିନ ବାହାରେ । ଏହି ରଥର ନିର୍ମାଣ କରନ୍ତି ସଉରାମାନେ । କୋଟି କାମ କରନ୍ତି ଗଣ୍ଡମାନେ । ଆଉ ଧାକଡ଼ମାନେ ଏହି ରଥ ତିଆରିର ଦେଖାଶୁଣା ବା ସୁପରିଭିଜନ୍ କରନ୍ତି । ଧାକଡ଼ମାନେ ବହୁତ ବୁଦ୍ଧିମାନ୍ ଓ ଚତୁର ବୋଲି ଆଦିବାସୀ ମାନଙ୍କ ମଧ୍ୟରେ ପରିଚିତ ।

୪. ଧାଙ୍ଗଡ଼ାବସା - ଦେ.ବି. : ଯୁବକମାନଙ୍କ ଶୟନ / ବିଶ୍ରାମ ଘର : ପ୍ରତି ଗାଁରେ ଗୋଟିଏ ଗୋଟିଏ ଧାଙ୍ଗଡ଼ା / ଧାଙ୍ଗଡ଼ୀ ବସାଥାଏ । ଏଠାରେ ରାତ୍ରିରେ ଯୁବକଯୁବତୀମାନେ ଶୋଇଥାନ୍ତି । ଧାଙ୍ଗଡ଼ୀ ବସାରେ ଗାଁର ବୃଦ୍ଧାଟିଏ ଯୁବତୀମାନଙ୍କ ସହ ଶୋଇଥାଏ । ଧାଙ୍ଗଡ଼ା-ଧାଙ୍ଗଡ଼ୀଙ୍କ ମନ ଦିଆନିଆରେ ଧାଙ୍ଗଡ଼ା ବାସା / ଧାଙ୍ଗଡ଼ୀ ବାସାର ସ୍ୱତନ୍ତ୍ର ସ୍ଥାନ ରହିଛି । (ଦ୍ରଷ୍ଟବ୍ୟ : ଦିଣ୍ଡାଘର)

୫. ଧାଙ୍ଗଡ଼ା ନାଟ - ଦେ.ବି. : ଆଦିବାସୀ ଯୁବକମାନଙ୍କ ନାଟ ବା ନୃତ୍ୟ । ବିଶେଷକରି ପରଜାମାନଙ୍କ ସଂପ୍ରଦାୟରେ ପ୍ରଚଳିତ । ଅବିବାହିତ ଯୁବକ ଓ ଯୁବତୀମାନେ ଚୈତ୍ରପର୍ବ ଅବସରରେ ଏହି ନାଚ କରିଥାଆନ୍ତି ଓ ଲୋରି ଗୀତ

ଗାଇଥାଆନ୍ତି । ଏହି ନାଚର ମୁଖ୍ୟ ବାଦ୍ୟ ହେଲା ଡୁଡୁଙ୍ଗା । ପୁଅମାନେ ଡୁଂଡୁଙ୍ଗା ବଜାନ୍ତି ଏବଂ ଝିଅମାନେ ପୁଅ ଆଡ଼କୁ ମୁହଁକରି ପ୍ରଥମେ ବାମପାଦ ଦିଥର ଆଗକୁ ପକାଇ ତାପରେ ଡାହାଣ ପାଦ ଆଗକୁ ପକାଇ, ବାଦ୍ୟର ତାଳେତାଳେ, ନାଚ କରି ଗୀତ ଗାଇଥାଆନ୍ତି, ଆଗକୁ ପଛକୁ ହୋଇ ନାଚିବାର ଏହି ଦୃଶ୍ୟ ମନୋମୁଗ୍ଧକର ହୋଇଥାଏ । ଏହି ନୃତ୍ୟରେ ବୋଲାଯାଉଥିବା ଗୀତ :

'ଗୁଲୁରି ଜୁଆଗୁମା
ବା୍‌ଟୁ ଜୁଆରୁ,
କଷାଦିକା ଛିଡ଼ିଗଲି ମାଣ୍ଡିଆ ସୁଆଁରୁ ।'

ଅନୁବାଦ : ମୁଁ ଗାଁ ଦେବୀ ଦେବତାକୁ ଜୁହାର କରୁଛି । ମୁଁ ଏଇ ଗୀତ ଗାଉଛି । ମୁଁ କେବେହେଲେ ଏହି ଗୀତ ଓ ନାଚକୁ ଭୁଲି ପାରିବି ନାହିଁ ।

୬. ଧାନ୍ଦା ଦୁପା - *ଦେ.ବି. :* କ୍ରି.ବି : ଇତସ୍ତତଃ ହୋଇ ପଡ଼ିବା । ଯଥା : ଏ ସଂଗର ମଲି, ତୋମର ଲାଗି ଧାନ୍ଦାଦୁପା । (ସାଂଗ ମୋର, ତମ ପାଇଁ ହୁଏ ମୁହିଁ କେତେ ଇତସ୍ତତଃ)

୭. ଧୁଙ୍ଗିଆ - *ଦେ.ବି. :* ଧୂଆଁପତ୍ର, ଇଂ.- tobacco

(କ) ଧୂଙ୍ଗିଆ ଗୁଣ୍ଡା : ଧୂଆପତ୍ର ଗୁଣ୍ଡ ।

(ଖ) ଧୂଙ୍ଗିଆ : ଆଦିବାସୀ ଲୋକଗୀତରେ ପ୍ରେମ ଭାବର ପ୍ରତୀକ ଭାବେ ଗ୍ରହଣ କରାଯାଏ । ଯୁବତୀ ଯୁବକ ହାତରୁ ଧୂଆଁପତ୍ର ଗ୍ରହଣ କଲେ ଯୁବତୀର ଯୁବକ ପ୍ରତି ପ୍ରେମ ଅଛି ବୋଲି ଜଣାଯାଏ ।

ଉଦାହରଣ : "ଆମେ ଚୋକିରାଣି ତମର ଗାଏଁ
ମୁଦି ମାଂଗଲେ ମୁଦି ନା ଆନୁ
ଦୁଙ୍ଗିଆ ମାଙ୍ଗ୍‌ଲେ ଦୁଙ୍ଗିଆ ନା ଆନୁ
ଆସାକାଇ ଆମର ଗାଉଁ ।"

(ଆମେ ଝିଅମାନେ ତୁମ ଗାଁକୁ ଆସିଚୁ ବୋଲି ମୁଦି ମାଗୁଛ ଯେ, ଆମେତ ମୁଦି ଆଣି ନାହୁଁ, ଧୂଆଁପତ୍ର ମାଗୁଛ ଯେ ଧୂଆଁପତ୍ର ଆଣିନାହୁଁ, ତୁମେ (ହେ ଯୁବକମାନେ) ଆମ ଗାଁକୁ ଆସ । ସେଠି ଆମେ ତୁମକୁ ମୁଦି ଦେବୁ, ଧୂଙ୍ଗିଆ ମଧ ଦେବୁ । ଅର୍ଥାତ୍, ମନ ଓ ଦେହ ଦେବୁ ।

୮. ଧୂଳିଲନ୍ଦା - ଦେ.ବି. : ପୌଷ ପର୍ବ ସମୟରେ ଗାଁର ପ୍ରତ୍ୟେକ ଘରୁ ଗୀତ, ନାଚ, କରି ସଂଗ୍ରହ କରାଯାଇଥିବା ମାଣ୍ଡିଆ, ଧାନ, ଚାଉଳ, ଆଦି ଶସ୍ୟକୁ ଚଇତ ପର୍ବ ପରେ ଲଂଦା କରି ସମସ୍ତେ ଏକାଠି ମିଶି ପିଅନ୍ତି । ଏହାକୁ 'ଧୂଳିଲନ୍ଦା' କୁହାଯାଏ । ବିଶେଷକରି ପରଜା ସଂପ୍ରଦାୟରେ ଏହା ପ୍ରଚଳିତ ।





୧. **ନକ୍‌ଟା** - *ଦେ.ବି. :* ଏକ ପ୍ରକାରର ମୁଖାଧାରୀ ନୃତ୍ୟ । ଲାଉ ବା ତମ୍ବାରେ ପ୍ରସ୍ତୁତ ମନୁଷ୍ୟ ମୁଖା ଧାରଣ କରିଥିବା ନୃତ୍ୟକାରୀଙ୍କୁ ମଧ ନକ୍‌ଟା କହନ୍ତି । ଆଂନୂତୀର୍ ତୀର, କୁସୁମ ତୀର ଖେଦିଆଣରେ ନକଟାବୀର' ଗୀତଟି ବାଲାଇରାଣୀ ଖେଳ ସମୟରେ ଗାନ କରାଯାଇଥାଏ । ଏଇଠାରେ ବାଲାଇରାଣୀଙ୍କୁ ନକଟା ବୋଲି ଆରୋପ କରାଯାଇଛି । କୋରାପୁଟ୍ ଜିଲ୍ଲାର କୋଟପାଡ଼ ବ୍ଲକ୍‌ର ଷଡ଼ଙ୍ଗା ପଞ୍ଚାୟତରେ ଏହି ନକ୍‌ଟାନାଚ ଏବେ ମଧ ପ୍ରଚଳିତ । ଅନ୍ୟାନ୍ୟ ଅଞ୍ଚଳରେ ଏହା ବିଲୁପ୍ତ ପ୍ରାୟ ।

୨. **ନନ୍ଦପୁର** - *ଦେ.ବି. :* ନନ୍ଦବଂଶର ରାଜାମାନଙ୍କ ପୁର ବା ନନ୍ଦ ରାଜାଙ୍କ ରାଜଧାନୀ । ନନ୍ଦପୁର ବ୍ଲକ୍‌ର ସଦର ମହକୁମା । ଏଠାରେ ବହୁ ପୂର୍ବରୁ ଜୟପୁର ରାଜ୍ୟର ରାଜଧାନୀ ଥିଲା । ସପ୍ତଦଶ ଶତାବ୍ଦୀରେ ରାଜା ବିକ୍ରମ ଦେବଙ୍କ ଅମଳରେ (୧୭୮୪-୧୭୯୧) ନନ୍ଦପୁର ଠାରୁ ରାଜଧାନୀ ଜୟପୁରକୁ ସ୍ଥାନାନ୍ତରିତ ହୋଇଥିଲା । ଏହା ଏକ ପ୍ରାଚୀନ ରାଜ୍ୟ । ଏହି ଅଞ୍ଚଳକୁ ଓଡ଼ିଶା ଗୋଷ୍ଠୀର ଶାସକ ମାନଙ୍କ ପରେ ନନ୍ଦବଂଶର ରାଜାମାନେ ଶାସନ କରିଥିଲେ ଏବଂ ସେମାନେ ନନ୍ଦପୁରଠାରେ ଏହି ରାଜ୍ୟର ରାଜଧାନୀ ସ୍ଥାପନ କରି ନିଜ ବଂଶର ନାମ ଅନୁସାରେ ଏହାର ନାମ ନନ୍ଦପୁର ରଖିଥିଲେ । ଏଠାରେ ବାରଭାୟା ଓଡ଼ମାନଙ୍କ ଠାରୁ ରାଜ୍ୟ ଶାସନ ଆରମ୍ଭ ହୋଇ ବକାଟକ, ମଥୁରା ଆଦିବଂଶର ଶାସନ ପରେ ସୋମବଂଶ ଓ ସୂର୍ଯ୍ୟବଂଶୀ ଶାସକମାନଙ୍କ ଦ୍ୱାରା ମଧ ଶାସିତ ହୋଇଛି । ଗୁପ୍ତ ରାଜାମାନଙ୍କ ଶାସନର ସ୍ମାରକୀଭାବେ ଏଠି ରହିଛି ବିକ୍ରମାଦିତ୍ୟଙ୍କ ସିଂହାସନ ଅନୁରୂପ ବତ୍ରିଶ ସିଂହାସନ, ବାରଭାୟା ଓଡ଼ଶାସନର ସ୍ମୃତିକୁ ନେଇ ଗଢ଼ି ଉଠିଛି ବହୁ ପୁରାତନ ସର୍ବେଶ୍ୱର ମନ୍ଦିର; ଜୈନ, ବୌଦ୍ଧ ତଥା ଶାବର ତଂତ୍ରର ସ୍ମାରକୀଭାବେ ଏଠି ରହିଛି ଅସଂଖ୍ୟ ଭଗ୍ନଶିଳା ମୂର୍ତ୍ତି, ମହାପ୍ରତାପୀ ସୂର୍ଯ୍ୟବଂଶୀ ସମ୍ରାଟ ବିଜୟ ଚନ୍ଦ୍ରାକ୍ଷଙ୍କ ବିଜୟ ସ୍ମୃତିର ସ୍ମାରକୀ ଭାବେ ଏଠି ରହିଛି ବିରାଟକାୟ ଗଣେଶ ମୂର୍ତ୍ତି, ଯାହା କାଞ୍ଚି ଯୁଦ୍ଧବେଳେ ଉପହାର ଭାବେ ବିଜୟ ଚନ୍ଦ୍ରାକ୍ଷଙ୍କୁ ମିଳିଥିଲା ।

୩. ନବରଂଗପୁର - ଦେ.ବି. : ନବରଂଗପୁର ବା ନୂଆରଂଗପୁର ବା ନଅଟି ରଂଗ୍ର ପୁର । ଏହା ସଂପ୍ରତି ନବରଂଗପୁର ଜିଲ୍ଲାର ସଦର ମହକୁମା ଅଟେ । ଅତୀତରେ ଏହା ଅବିଭକ୍ତ କୋରାପୁଟ ଜିଲ୍ଲାର ଏକ ଉପଖଣ୍ଡର ସଦର ମହକୁମା ଥିଲା । କୁହାଯାଏ ଯେ, ଏହି ଅଞ୍ଚଳରେ ପ୍ରଥମେ ନାରଙ୍ଗ ପରଜା ନାମରେ ଜଣେ ପରଜା ଲୋକ ବସତି ସ୍ଥାପନ ଆରମ୍ଭ କରିଥିଲା ଓ ତା'ରି ନାମ ଅନୁସାରେ ଏହି ସ୍ଥାନର ନାମ ଥିଲା ନାରଙ୍ଗପଦର । ପରେ ଏହା ଉଚ୍ଚାରଣ କ୍ରମରେ ନାଓରଂଗପୁର ଓ ସମୟକ୍ରମେ ନବରଂଗପୁରରେ ପରିଣତ ହେଲା । ଆଉ କେହି କେହି କହନ୍ତି ଏକ ପରଜା ବସ୍ତି ନୂଆ ରୂପ ନେଇ ଗଢ଼ି ଉଠିଥିବାରୁ ନୂଆ ରଂଗପୁର ବା ନବରଂଗପୁର ନାମରେ ନାମିତ ହୋଇଛି । ଆଉ କେହି କେହି ମତ ଦିଅନ୍ତି ଯେ ଏଠାରେ ଲୋକମାନେ ଜୀବନର ନୂଆନୂଆ ରଂଗ ବା ନଅଗୋଟି ରଂଗକୁ ଦେଖିପାରନ୍ତି ବୋଲି ଏହା ନବରଂଗପୁର ନାମରେ ନାମିତ ହୋଇଛି ।

୪. ନାଇକ / ନାଇକା - ଦେ.ବି. : ଗାଁ ମୁଖିଆ । ଗ୍ରାମମୁଖ୍ୟ : ଇଂ.- Village head, village chief

ଗ୍ରାମର ମୁଖିଆଙ୍କୁ 'ନାଇକ' ବା 'ନାୟକ' କୁହାଯାଏ । ଯେକୌଣସି ଆଦିବାସୀ ଗୋଷ୍ଠୀର ଲୋକ ଗାଁର ନାୟକ ହୋଇପାରେ । ପୂର୍ବରୁ ବଂଶ ପରମ୍ପରା କ୍ରମେ ନାଇକର ପୁଅ ହିଁ ନାଇକ ହେଉଥିଲା । ସାଧାରଣତଃ ଗାଁର ସିସ୍ତୁ ଆଦାୟ ରାଜା ବା ମୁସ୍ତାଦାରଙ୍କୁ ସାହାଯ୍ୟ କରୁଥିବା ବ୍ୟକ୍ତିଙ୍କୁ ଗାଁ ନାୟକ ପଦରେ ଅଧିଷ୍ଠିତ କରାଯାଉଥିଲା । ଗାଁର ନାୟକ କରାଯାଉଥିଲା । ଗାଁକୁ ସାନବଡ଼ ଲୋକ ଆସିଲେ ଗାଁର ଘରୁଘରୁ ଭେଦା ଉଠାଇ ତାଙ୍କୁ ଭାତିଆ ଦେବାର ବ୍ୟବସ୍ଥା ସେ କରୁଥିଲା । ବର୍ତ୍ତମାନ ପଞ୍ଚାୟତ ରାଜ ଶାସନର ଓ୍ୱାର୍ଡ଼ମେମ୍ବର ପ୍ରଥା ପ୍ରଚଳିତ ହେବାରୁ ନାଇକର ଗୁରୁତ୍ୱ ହ୍ରାସ ପାଇଛି । ତଥାପି ଗାଁର ପୂଜା, ପାର୍ବଣ, ବିବାହ ଉତ୍ସବ, ସାମାଜିକ ବିଚାର ଆଚାର ଆଦିରେ ନାୟକର ଭୂମିକା ଅଗ୍ରଗଣ୍ୟ । ପ୍ରଶାସନିକ ଭାବେ ପଞ୍ଚାୟତ ପ୍ରତିନିଧିମାନେ ଗୁରୁତ୍ୱ ପାଉଥିବାବେଳେ ସାମାଜିକ, ସାଂସ୍କୃତିକ ଜୀବନରେ ଆଦିବାସୀ ଗ୍ରାମର ନାୟକମାନଙ୍କର ଗୁରୁତ୍ୱ ଅକ୍ଷୁଣ୍ଣ ରହିଛି । ଦୁରୁଆ ସଂପ୍ରଦାୟରେ ଗ୍ରାମ୍ୟମୁଖ୍ୟଙ୍କୁ ନାଇକା କୁହାଯାଏ । ଗ୍ରାମର ଭଲମନ୍ଦ, ହାନିଲାଭ, ନ୍ୟାୟ ମୀମାଂସା ଓ ଦୋଷୀଙ୍କୁ ଦଣ୍ଡଦେବା କ୍ଷମତା ଏହାଙ୍କର ରହିଥାଏ । ସେ ଗ୍ରାମସଭା ଡକାଇଥାନ୍ତି । ବିଭିନ୍ନ

ସଂପ୍ରଦାୟରେ ଏମାନଙ୍କୁ ବିଭିନ୍ନ ନାମରେ ନାମିତ କରାଯାଇଥାଏ, ଯେପରିକି କୋୟାମାନଙ୍କର ପେଦା, ଦୁରୁଆମାନଙ୍କ ନାଇକା, ସଉରାଙ୍କ ଗମାଙ୍ଗ ଇତ୍ୟାଦି ।

୫. ନାଗ୍ - *ଦେ.ବି. :* ଫଣା ବିଶିଷ୍ଟ ଗୋଟିଏ ଜାତିର ବିଷାକ୍ତ ସର୍ପ । ଇଂ- Cobra. ସାଧାରଣ ନାଗ । ଏମାନଙ୍କ ମଧ୍ୟରେ ଅଛନ୍ତି (କ) ବାଲି ନାଗ, (ଖ) ତେନ୍ତୁଳି ନାଗ (ଗ) ଦୁଧ ନାଗ (ଘ) ନାଗ (କଳାନାଗ୍) (ଙ) କରଡ଼ ନାଗ । ଏ ସମସ୍ତେ ଫଣାଯୁକ୍ତ । ଚଢ଼େଇ, ଚଢ଼େଇ ଅଣ୍ଡା, ମୂଷା ଓ ବେଙ୍ଗ ଇତ୍ୟାଦି ଏମାନଙ୍କ ଆହାର । ଅନେକ ଆଦିବାସୀ ଗୋତ୍ର ସନ୍ତକ ହେଉଛି ନାଗ ।

୬. ନାଗାବଳୀ - *ଦେ.ବି. :* ଏକ ନଦୀ ବିଶେଷର ନାମ । ଏହା ଗୁଣୁପୁର ଅଞ୍ଚଳରେ ପ୍ରବାହିତ । ଏହି ନଦୀଟି କଳାହାଣ୍ଡି ମାଳାଞ୍ଚଳରୁ ବାହାରି କେସିଙ୍ଗପୁର ଓ ରାୟଗଡ଼ା ଦେଇ ଓଡ଼ିଶାରେ ମୋଟ ୬୩ମାଇଲ ପ୍ରବାହିତ ହୋଇ ଆନ୍ଧ୍ରପ୍ରଦେଶ ପ୍ରବେଶ କରିଛି ଓ ଶ୍ରୀକାକୁଲମ୍ ଜିଲ୍ଲାଠାରେ ବଂଗୋପସାଗରରେ ମିଶିଛି । ଏହି ନଦୀ ରାୟଗଡ଼ାଠାରେ ଦୁଇଟି ଜଳପ୍ରପାତ ସୃଷ୍ଟି କରିଛି । ପ୍ରଥମଟି ହେଉଛି ହାତୀପଥର ଜଳପ୍ରପାତ । ହାତୀପିଠିରୁ ଜଳଧାରା ଖସୁଥିବା ପରି ଦେଖାଯାଉଥିବା ଏହି ପ୍ରପାତ ୨୦ଫୁଟ ନିମ୍ନକୁ ଡେଇଁ ପଡ଼ିଛି । ଦ୍ୱିତୀୟ ଜଳପ୍ରପାତ ହେଉଛି କୁମ୍ଭୀକୋଟାଗେଡ଼ା । ଏହା ୩୦ଫୁଟ ନିମ୍ନ ଶିଳାସ୍ତରକୁ ଲମ୍ଫ ପ୍ରଦାନ କରିଛି । ଏସଂପର୍କରେ ଏକ ମିଥ୍ କଥିତ ଅଛି- ଏକଦା ଭଗବାନ ଶେଷଦେବ ଓ ବଳରାମ ସୈନ୍ୟ ସାମନ୍ତ ସହ କଳିଙ୍ଗ ରାଜ୍ୟର ଏହି ପାର୍ବତ୍ୟ ଅଞ୍ଚଳ ଦେଇ ଯାଉଥିବା ବେଳେ ଖୁବ୍ ତୃଷାର୍ତ୍ତ ହୋଇପଡ଼ିଲେ । ସୁଉଚ୍ଚ ପର୍ବତମାଳା ପରିପୂର୍ଣ୍ଣ ଏହି ଅଞ୍ଚଳରେ ତୃଷା ମେଣ୍ଟାଇବା ପାଇଁ ପାନୀୟ ଜଳ ଖୋଜି ଖୋଜି ନିରାଶ ହେବାରୁ ସେ ନିଜ ଲଙ୍ଗଳ ମୁନରେ ପ୍ରହାର କରି ଏକ ସ୍ୱଚ୍ଛ ଜଳଧାର ଉତ୍ପନ୍ନ କରାଇଥିଲେ ଏବଂ ସେମାନେ ଏହି ଜଳାଧାରାରୁ ଜଳପାନ କରି ନିଜର ତୃଷା ମେଣ୍ଟାଇଥିଲେ । ପରବର୍ତ୍ତୀ ସମୟରେ ଏହି ଜଳଧାରା ଏକ ନଦୀର ରୂପ ନେଇଥିଲା । ବଳରାମଙ୍କ ଲଙ୍ଗଳ ମୁନରୁ ସୃଷ୍ଟି ହୋଇଥିବାରୁ ଏହା ଲଙ୍ଗଳୀ ନଦୀ ନାମରେ ନାମିତ ହୋଇଥିଲା । ସମୟକ୍ରମେ ଲଙ୍ଗଳୀରୁ ନାଗାବଳୀ ପାଲଟି ଯାଉଛି ଏ ନଈ । କୁହାଯାଏ ଶେଷନାଗ ଅନନ୍ତ ବା ବଳରାମଙ୍କ ବଳରୁ ସୃଷ୍ଟି ହୋଇଥିବାରୁ ଏହା ନାଗବଳ ବା ନାଗାବଳୀ ନାମରେ ଚିହ୍ନିତ ହୋଇଛି ।

୭. ନାଗିପେନୁ - *ଦେ.ବି. :* ଡଙ୍ଗରିଆ କନ୍ଧଙ୍କ ଅଗ୍ନିଦେବତା । କୌଣସି ଗାଁ ଯଦି ନାଗିପେନୁଙ୍କ କୋପରେ ପଡ଼ିଯାଇଥାଏ, ଆଠଦିନ ଯାଏ ସେହି ଗାଁକୁ ଯିବା ବିଧି ନିଷେଧ । ଅର୍ଥାତ୍, କୌଣସି ଗାଁରେ ଯଦି ନିଆଁ ଲାଗିଥାଏ ଅନ୍ୟ ଆଦିବାସୀମାନେ ନାଗିପେନୁଙ୍କ କୋପରେ ନ ପଡ଼ିବା ଯାଏଁ ସେ ଗାଁକୁ ଯାଆନ୍ତି ନାହିଁ ।

୮. ନାଙ୍ଗର / ନାଙ୍ଗରିଆ - *ଦେ.ବି. :* ଲଙ୍ଗଳ ।

ନାଙ୍ଗରିଆ : ବି. ଲଙ୍ଗଳ ଧରି ଚାଷ କରୁଥିବା ବ୍ୟକ୍ତି, ଚଷା, କୃଷକ ।

୯. ନାଟଗୁରୁ - *ଦେ.ବି. :* ନାଟ୍ୟ ଶିକ୍ଷକ । ଇଂ.- Director of a play. ଯେଉଁବ୍ୟକ୍ତି ଅବିଭକ୍ତ କୋରାପୁଟ ଜିଲ୍ଲାର ଗ୍ରାମାଞ୍ଚଳରେ ଦେଶିଆ ନାଟ ଶିଖାଇଥାନ୍ତି ତାଙ୍କୁ 'ନାଟଗୁରୁ' କୁହାଯାଏ । ସେ ନାଟର ନୃତ୍ୟ, ବାଦ୍ୟ, ଅଭିନୟ ଓ ସଂଳାପ ଆଦିର ଦିଗ୍‌ଦର୍ଶନ ଦେବା ସଂଗେସଂଗେ ନାଟକ ଗୁଡ଼ିକର ମଂଚାୟନ କରିଥାନ୍ତି । ଏହି ଅଞ୍ଚଳରେ ଏକ ସମୃଦ୍ଧ ଲୋକନାଟ୍ୟ ପରମ୍ପରା ରହିଛି । ସେଥିପାଇଁ ସମାଜରେ ନାଟଗୁରୁ ମାନଙ୍କର ବିଶେଷ ସମ୍ମାନ ରହିଥାଏ । ପ୍ରତି ନାଟ ଦଳରେ ୨୦ରୁ ୪୦ ପର୍ଯ୍ୟନ୍ତ ଅଭିନେତା ରହିଥାନ୍ତି । ପ୍ରତି ସଂଧ୍ୟାରେ ସମସ୍ତେ ଏକ ଆଖଡ଼ା ଘରେ ମିଳିତ ହୋଇ ନାଟଗୁରୁଙ୍କ ତତ୍ତ୍ୱାବଧାନରେ ନାଟ, ଗୀତ ଓ ବାଦ୍ୟ ଅଭ୍ୟାସ କରିଥାନ୍ତି । ଜଣେ ନାଟଗୁରୁ ଏକ ସମୟରେ ୫/୬ଟି ନାଟରେ ଦିଗ୍‌ଦର୍ଶନ ଦେଉଥାନ୍ତି । ପୂର୍ବେ ବାହାର ଅଞ୍ଚଳରୁ ଅର୍ଥାତ୍ ଅବିଭକ୍ତ ଗଞ୍ଜାମରୁ ନାଟଗୁରୁମାନେ ଏ ଅଞ୍ଚଳକୁ ଆସି ନାଟଶିକ୍ଷା ଦେଉଥିଲେ । କିନ୍ତୁ ଗତ ପ୍ରାୟ ୩୦ବର୍ଷ ଧରି ସ୍ଥାନୀୟ ବହୁ ଆଦିବାସୀ ନାଟଗୁରୁ ଗୁରୁ ଶିଷ୍ୟ ପରମ୍ପରା କ୍ରମେ ସୃଷ୍ଟି ହେଲେଣି । ତଥାପି ନବରଂଗପୁରର ନାଟଗୁରୁ ମାନଙ୍କର ନାମ ଡାକ ଅଛି । ଅବିଭକ୍ତ କୋରାପୁଟ ଜିଲ୍ଲାର କିଛି ଖ୍ୟାତନାମା ନାଟଗୁରୁ ହେଉଛନ୍ତି ଚୈତନ୍ୟ ବିଶୋୟୀ, ରାଜେନ୍ଦ୍ର ସମାନ୍ତରାୟ, ହରିହର ପ୍ରଧାନ, ଅନାଦି ଖରା, ଡିଣ୍ଡାଗୁରୁ ଇତ୍ୟାଦି ।

୧୦. ନାଁଧରାନି - *ଦେ.ବି. :* ନବଜାତ ଶିଶୁର ନାମକରଣ କରିବା ।

ଆଦିବାସୀ ସମାଜରେ କାହାର ଘରେ ପୁଅ କି ଝିଅ ହେଲେ ଝିଅ କ୍ଷେତ୍ରରେ ୨୧ ଦିନରେ, ପୁଅ କ୍ଷେତ୍ରରେ ମାସେ ମଧ୍ୟରେ ଦିସାରିର ଦେବା ଯୋଗଦିନ ଗୁରୁମାଇ ଓ ପୂଜାରୀ ଉପସ୍ଥିତ ରହି ମାସର ନାମ, ଦିନର ନାମ, ଫୁଲ ଫଳର ନାମ, ପୂର୍ବପୁରୁଷଙ୍କ

ନାମ ଡାକି ପିଲା ହାତରେ କଅଁଳ, ଶାଳ, କିମ୍ବା ଆମ୍ବପତ୍ର ଧରାଇ ଅରୁଆ ଚାଉଳ ପକାନ୍ତି । ଯେଉଁ ନାମରେ ଚାଉଳ ଠିଆ ହୋଇରହେ, ପିଲାଙ୍କୁ ସେହି ନାମ ଦିଆଯାଏ । ଆଉ ମଧ୍ୟ ସୋମବାରରେ ଜନ୍ମିତା ଝିଅ ସୋମାରି, ସମ୍ବାରି / ପୁଅ: ସମାରୁ / ସମ୍ବାରୁ । ଝିଅ : ବୁଧବାରି, ଶୁକ୍ରି, ମଙ୍ଗଳି, ରଇବାରୀ, ରଏଲା ଆଦି, ପୁଅ : ବଇଶାଖୁ, ଦୁଆରୁ, ଗୁରୁବାରୁ ଆଦି । ସେଦିନ ଘରେ ବନ୍ଧୁବାନ୍ଧବଙ୍କୁ ଡାକି ଭୋଜି ଖାଇବାକୁ ଦିଆଯାଏ । ରାତି ଯାକ ନାଟଗୀତର ଆସର ହୁଏ । ଢେମ୍‌ସା ନାଟର ତାଳେତାଳେ ସଲପ ମଦର ସୁଅ ଛୁଟେ । ଆଜିକାଲି ଢେମ୍‌ସା ନାଟ ସ୍ଥାନରେ ଚାଲୁଛି ଭିଡିଓ ଓ ସିଡ଼ି ହିନ୍ଦୀ ଓ ଓଡ଼ିଆ ଫିଲ୍ମ ।

୧୧. **ନାନ୍ଦୀ** - *ଦେ.ବି. :* ପରଜା ସଂପ୍ରଦାୟଙ୍କ ମୁଖ୍ୟ ଦେବୀ । ଏମାନେ ମାଘ ମାସରେ ନିଜ ଗୃହଦେବୀ ଓ ଗ୍ରାମର ମୁଖ୍ୟଦେବୀ ନାନ୍ଦୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ନାନ୍ଦୀପର୍ବ ପାଳନ କରିଥାନ୍ତି । ଭଲ ଚାଷବାସ, ଉତ୍ତମ ବୃଷ୍ଟି ଓ ଗୋସଂପଦର ସୁରକ୍ଷା ନିମନ୍ତେ ପେଣ୍ଡମ ଓ ପଶୁପକ୍ଷୀ ବଳି ପ୍ରଦାନ ପୂର୍ବକ ଏହି ପର୍ବ ପାଳନ କରାଯାଏ । ସାଧାରଣତଃ ମାଘମାସ ପୂର୍ଣ୍ଣିମାର ଏକ ସପ୍ତାହ ପୂର୍ବରୁ ପୂଜାବିଧି ଆରମ୍ଭ କରି ଏହି ନାନ୍ଦୀ ପର୍ବ ପାଳନର ପ୍ରସ୍ତୁତି ହୁଏ । ଏହି ପର୍ବ ପାଳନର ଉଦ୍ଦେଶ୍ୟ ହେଉଛି ଚାଷବାସ ଉତ୍ତମ ହେବ, ଦେଶରେ ମରୁଡ଼ି ପଡ଼ିବ ନାହିଁ । ମଣିଷ, ଗାଇଗୋରୁ ନିରାମୟରେ ରହିବେ ।

୧୨. **ନାରଙ୍ଗ ପଦର** - *ଦେ.ବି. :* ନାରଙ୍ଗ ପରଜାର ଗ୍ରାମ ବା ପଦର ।

ସଂପ୍ରତି ନବରଂଗପୁର ଜିଲ୍ଲାର ସଦର ମହକୁମା ନବରଂଗପୁରର ମୂଳନାମ । କୁହାଯାଏ ପ୍ରାୟ କେତେଶହ ବର୍ଷ ତଳେ ଡଙ୍ଗରଲା (ଅବିଭକ୍ତ କୋରାପୁଟ ଜିଲ୍ଲାର କାଶୀପୁର ଅଞ୍ଚଳ)ରୁ କେତେକ ପରଜା ଲୋକ ନାରଙ୍ଗ ପରଜାର ନେତୃତ୍ୱରେ ଆସି ଇନ୍ଦ୍ରାବତୀ ନଦୀକୂଳରେ ବଣ ସଫାକରି ଗୋଟିଏ ଗାଁ ବସାଇଲେ । ନାରଙ୍ଗ ପରଜାର ନାମ ଅନୁସାରେ ଗ୍ରାମର ନାମ ହେଲା ନାରଙ୍ଗ ପଦର । ପରବର୍ତ୍ତୀ କାଳରେ ନାରଙ୍ଗ ପରଜାର ମୃତ୍ୟୁପରେ ଏହା ନାରଙ୍ଗ ପଦରରୁ ନାରଙ୍ଗ ଗୁଡ଼ାରେ ନାମିତ ହୋଇଥିଲା । କୁହାଯାଏ ୧୮୩୦ ମସିହାରେ ଜୟପୁର ସମସ୍ଥାନମର ସୂର୍ଯ୍ୟବଂଶରେ ଜନ୍ମଗ୍ରହଣ କରିଥିବା ଜଗନ୍ନାଥ ଦେବଙ୍କ ପୁତ୍ର କୃଷ୍ଣଦେବଙ୍କପରେ ଚୈତନ୍ୟ ଦେବ (ନବରଂଗପୁର

ତାଲୁକ)ର ସାମନ୍ତ ରାଜା ଭାବେ ୧୮୭୫ ମସିହାଯାଏ ଶାସନ କରିଥିଲେ । ତାଙ୍କ ସମୟରେ ଜଗନ୍ନାଥପୁର (ଯାହା ନବରଂଗପୁର ତାଲୁକ)ର ପୂର୍ବ ରାଜଧାନୀ ଥିଲା, ତାକୁ ଇନ୍ଦ୍ରାବତୀ ନଦୀତଟକୁ ଉଠାଇ ଆଣି, ନାରଙ୍ଗଗୁଡ଼ା ଠାରେ ସ୍ଥାପନକଲେ ଏବଂ ପଣ୍ଡିତମାନଙ୍କ ସହିତ ବିଚାରବିମର୍ଶ କରି ରାଜଧାନୀର ନାମ ରଖିଲେ ନବରଂଗପୁର । କିନ୍ତୁ ସ୍ଥାନୀୟ ଆଦିବାସୀମାନେ ନବରଂଗପୁରକୁ ନାରଙ୍ଗପୁର ବା ନରଙ୍ଗପୁର ବୋଲି କହିଲେ ।

୧୩. ନାରାୟଣପାଟଣା - *ଦେ.ବି. :* ଏକ ଆଦିବାସୀ ଗ୍ରାମର ନାମ । ଏହା ନାରାୟଣଙ୍କ ପାଟଣା ବା ବାସସ୍ଥଳୀ ହୋଇଥିବାରୁ ନାରାୟଣପାଟଣା ନାମରେ ନାମିତ ହୋଇଛି । କୁହାଯାଏ ପଞ୍ଚଦଶ ଶତାବ୍ଦୀରେ ସେତେବେଳେ ରାଜା ବିଜୟ ଚନ୍ଦ୍ରାକ୍ଷଦେବ ନନ୍ଦପୁରର ମହାରାଜା ଥିଲେ । ସେହି ସମୟରେ କାଞ୍ଚି କୁବେରୀ ଯୁଦ୍ଧ ଅନୁଷ୍ଠିତ ହୋଇଥିଲା । ଏହି ଯୁଦ୍ଧରେ ପ୍ରଥମଥର ଗଜପତି ରାଜା ପୁରୁଷୋତ୍ତମ ଦେବ ପରାସ୍ତ ହୋଇ ଫେରି ଆସିଥିଲେ ଓ ଦ୍ୱିତୀୟ ଥର କାଞ୍ଚି ରାଜ୍ୟ ଆକ୍ରମଣ କରିବାକୁ ଗଲାବେଳେ ସେ ପ୍ରସ୍ତୁତ ହୋଇ ନିଜର ଅନେକ ସାମନ୍ତ ରାଜାଙ୍କୁ ଯୁଦ୍ଧରେ ଯୋଗଦେବା ପାଇଁ ନିମନ୍ତ୍ରଣ ଜଣାଇଥିଲେ ମଧ୍ୟ ନନ୍ଦପୁରର ସାମନ୍ତ ରାଜା ବିଜୟଚନ୍ଦ୍ର ଦେବ ବା ବିଜୟ ଚନ୍ଦ୍ରାକ୍ଷ ଦେବଙ୍କୁ ନିମନ୍ତ୍ରଣ ଦେବାକୁ ଭୁଲିଯାଇଥିଲେ । ଦିନେ ଏକ କନ୍ଧ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ପ୍ରଜାମାନଙ୍କ ଭଲ ମନ୍ଦ ବୁଝିବା ପାଇଁ ଆସି ମହାରାଜା ଦରବାର ବସାଇଥାନ୍ତି । ଠିକ୍ ସେହି ସମୟରେ ରାଜା ପୁରୁଷୋତ୍ତମ ଦେବଙ୍କ ଦୂତ ଭାବେ ଯୁଦ୍ଧରେ ଯୋଗଦେବା ପାଇଁ ନିମନ୍ତ୍ରଣ ଜଣାଇବାକୁ ଆସି ପହଞ୍ଚିଲେ ଦୁଇଜଣ ଦିବ୍ୟ ପୁରୁଷ । ରାଜା ଦୂତଙ୍କ ଠାରୁ ସମ୍ବାଦ ପାଇବା ପରେ ସୈନ୍ୟସାମନ୍ତଙ୍କ ସହ ଯୁଦ୍ଧ ଯାତ୍ରା ଆରମ୍ଭକରି ଠିକ୍ ସମୟରେ ପୁରୁଷୋତ୍ତମ ଦେବଙ୍କ ଦଳରେ ଯୋଗ ଦେଇଥିଲେ । ପୁରୁଷୋତ୍ତମ ଏତେ ଦୂରରୁ ଆସି ବିଜୟ ଚନ୍ଦ୍ରାକ୍ଷ ଦେବ ଯୁଦ୍ଧଯାତ୍ରାରେ ଯୋଗଦେବା ସମ୍ଭବ ନୁହେଁ ବୋଲି ନିମନ୍ତ୍ରଣ ପଠାଇ ନଥିବା କଥା କହି ଦୁଃଖ ପ୍ରକାଶ କଲାବେଳେ ବିଜୟ ଚନ୍ଦ୍ରାକ୍ଷ ଦେବ ଦୁଇଜଣ ଦିବ୍ୟ ପୁରୁଷଙ୍କ ଦ୍ୱାରା ପୁରୁଷୋତ୍ତମ ଦେବଙ୍କ ପ୍ରେରିତ ନିମନ୍ତ୍ରଣ ପାଇଛନ୍ତି ବୋଲି ଜଣାଇଲେ । ଏଥିରୁ ପୁରୁଷୋତ୍ତମ ଦେବ ଅନୁମାନ କରିନେଲେ ଏହି ଦିବ୍ୟ ପୁରୁଷ ଦୁଇଜଣ ସ୍ୱୟଂ ବଡ଼ ଠାକୁର ଜଗନ୍ନାଥ ଓ ବଳଭଦ୍ରଙ୍କ ବ୍ୟତୀତ ଅନ୍ୟ କେହି ନୁହଁନ୍ତି । ତେଣୁ ସେ ରାଜା ବିଜୟ ଚନ୍ଦ୍ରାକ୍ଷଙ୍କୁ ଏ ଯୁଦ୍ଧରେ ମୁଖ୍ୟ

ଭୂମିକା ଦେଲେ ତଥା ଜୟଯୁକ୍ତ ହେଲେ ମଧ୍ୟ । ବିଜୟଲାଭ ପରେ ରାଜା ପୁରୁଷୋତ୍ତମ ଦେବ ବିଜୟ ଚନ୍ଦ୍ରାକ୍ଷଙ୍କୁ ଲୁଣ୍ଠିତ ସଂପଦ ଦେବାକୁ ଚାହିଁବାରୁ ବିଜୟ ଚନ୍ଦ୍ରାକ୍ଷ କିଛି ନ ଆଣି ୨ଟି ଦେବ ପ୍ରତିମା ଆଣିଥିଲେ । ପ୍ରଥମଟି ଥିଲା ବଲ୍ଲଭ ନାରାୟଣ ମୂର୍ତ୍ତି ଓ ଦ୍ୱିତୀୟଟି ଥିଲା କନକଦୁର୍ଗାଙ୍କ ପ୍ରତିମା । ସେ ବଲ୍ଲଭ ନାରାୟଣଙ୍କୁ ସେଇ କନ୍ଧ ଆଦିବାସୀ ଗ୍ରାମରେ ନିଜ ରାଜକାର୍ଯ୍ୟ ନିମିତ୍ତ ଉଦ୍ଦିଷ୍ଟ କାର୍ଯ୍ୟାଳୟ ପରିସରସ୍ଥ ଗଡ଼ ମଧ୍ୟରେ ସ୍ଥାପନ କରିଥିଲେ । ଏହି ବଲ୍ଲଭ ନାରାୟଣଙ୍କ ନାମ ଅନୁସାରେ ସେହି ଦିନଠାରୁ ଭକ୍ତ କନ୍ଧ ଗ୍ରାମଟିର ନାମ ହୋଇଥିଲା ନାରାୟଣପାଟଣା । ଏବେ ସେହି ମୂର୍ତ୍ତିଟି ଜୟପୁରସ୍ଥ ଜଗନ୍ନାଥ ମନ୍ଦିର ପରିସର ମଧ୍ୟରେ ରହିଛି ।

୧୪. ନିଉତା - *ଦେ.ବି. :* ନିମନ୍ତ୍ରଣ କରିବା । ଇଂ- To invite ବିଭିନ୍ନ ପର୍ବପର୍ବାଣୀ ବା ଉତ୍ସବ ପୂର୍ବଦିନ କରାଯାଉଥିବା ବିଧି । ନିମନ୍ତ୍ରଣ ଆଗଦିନ ପ୍ରତି ଗୁଡ଼ି, ହୁଣ୍ଡି, ଠାକୁରାଣୀ, ମନ୍ଦିର, ଗ୍ରାମଦେବତୀ ଓ ଇଷ୍ଟଦେବତୀଙ୍କୁ "ଆମ୍ଭେ ଆସନ୍ତାକାଲି ଧାନ ନୂଆଖିଆ କିମ୍ବା ଆମ୍ବନୂଆଖିଆ ଖାଇବୁ, ତୁମ୍ଭେ ଗ୍ରାମରେ ଓ ଘରେ ବିରାଜମାନ କରି ଆମ୍ଭର ଅର୍ପିତ ଭୋଗ ଗ୍ରହଣ କର ଓ ପରବ ସୁରୁଖୁରେ ସରୁ" ବୋଲି ଢୋଲ ମହୁରୀ ବଜାଇ ଦିଶାରୀ ପୂଜାରୀମାନେ ଚାଉଳ ପକାଇ ମଦଥିପାଇ (ଛିଞ୍ଚି) ବଳିଦେଇ ଏହି ବିଧି କରିଥାଆନ୍ତି । ଓଡ଼ିଆରେ ମଧ୍ୟ ନିଉତାର ଅର୍ଥ ହେଉଛି ନିମନ୍ତ୍ରଣ କରିବା ।

୧୫. ନିତାହାଣ୍ଡି – *ଦେ.ବି. :* (ବିବାହ ପାଣି ହାଣ୍ଡି) । ବଣ୍ଡା, ଗାଦବାଙ୍କ ବରକନ୍ୟା ବିବାହ ଲଗ୍ନ ବା ହାତଗଣ୍ଠି ପଡ଼ିବା ଦିନ ପ୍ରତ୍ୟୁଷରୁ ଦିସାରି ଗାଁ ପାଖ ନଦୀ କିମ୍ବା ଝରଣାରୁ ଯେଉଁ ପାଣି ଆଣି ବିବାହ କୁଡ଼ିଆ ପାଖରେ ରଖିଥାଏ, ସେହି ପାଣିକୁ ଲଗ୍ନପରେ ବରକନ୍ୟା ଇଡ଼ି ବିବାହ କର୍ମରେ ସମାପ୍ତି ଘୋଷଣା କରିଥାଏ । ସମତୁଲ୍ୟ : ଭତରା ଓ ଗଣ୍ଡଙ୍କ ବିବାହର ଧରମପାଣି । ଦ୍ରଷ୍ଟବ୍ୟ:

୧୬. ନିତା **ହାଣ୍ଡି** ପାଣି - *ଦେ.ବି. :* ନିତା ହାଣ୍ଡିରେ ଥିବା ପାଣି । ବିବାହ କର୍ମ ଶେଷରେ ବରକନ୍ୟାଙ୍କ ଉପରେ ଉପରେ ପାଣି ଢାଳି ଦିଆଯାଏ । ଏହି ପାଣି ଓ ଅରୁଆ ଚାଉଳକୁ ପୂର୍ବରୁ ବିବାହ ସ୍ଥଳରେ ଦୁଇଟି ହାଣ୍ଡିରେ ରଖାଯାଇଥାଏ । ଏହି ପ୍ରଥା କେବଳ ଲୁଦିରିଂନାରେ (ପ୍ରସ୍ତାବିତ ବିବାହ)ରେ ପାଳନ କରାଯାଏ । ଅର୍ଥାତ୍ ଉଦୁଲିଆ ବିଭାରେ ଏହା ବ୍ୟବହାର ହୁଏ ନାହିଁ ।

୧୭. ନିମ୍ - *ଦେ.ବି. :* ନିମ୍ବ । ଏହା ତିକ୍ତ ଗଛ । ଔଷଧୀୟ ଗୁଣରେ ପରିପୂର୍ଣ୍ଣ । ବସନ୍ତ, ହାଡ଼ଫୁଟି, କାଛୁ, କୁଣ୍ଡିଆ ଓ ଚର୍ମରୋଗରେ ଏହା ଅତ୍ୟନ୍ତ ଉପକାରୀ । ଆଦିବାସୀ ଗର୍ଭବତୀ ନାରୀଙ୍କୁ ନିମପତ୍ର ସିଝା ପାଣି ପିଇବାକୁ ଦିଆଯାଏ । ନିମ ସେବନ କଲେ କୃମି, ଚର୍ମରୋଗ ଓ ପେଟରୋଗରୁ ରକ୍ଷା ମିଳିଥାଏ । ନିମପତ୍ର ଓ ଛାଲି ଦିଶାରି ଓ ଗୁଣିଆର ଝଡ଼ାଫୁଙ୍କାରେ ବ୍ୟବହାର ହୁଏ ।

୧୮. ନିମାନ୍ - *ଦେ.ବି. :* ଭଲ ସୁନ୍ଦର, ନିକ୍, ଇଂ.- Pretty, Beautiful ପ୍ରତିଶବ୍ଦ : ନିକ, ଡଉଲ୍ ।

ଯେକୌଣସି ଭଲ ପଦାର୍ଥ, ଭଲଖାଦ୍ୟ, ଭଲଦ୍ରବ୍ୟ, ସୁନ୍ଦର ଅନୁଭୂତି, ପ୍ରିୟମଣିଷ ଏ ସମସ୍ତଙ୍କ ପ୍ରତି ନିମାନ୍ ଶବ୍ଦ ବ୍ୟବହାର ହୁଏ ।

ଗୀତରେ ବ୍ୟବହାର : ସରଗି କମନ ନିନି ନିମାନ୍ କୁଟେ ଫୁଟାଇଲା ଲିଟି

ମର୍ ପାରା ନୁନାକେ ବାଚି ଗଲେ ସରି କାଇବୁ ଚୁଲିର ମାଟି ।

ଅର୍ଥାତ୍, ଶାଳବଣ ଭିତରର ହେ ସୁନ୍ଦରୀ ଝିଅ । ଗୋଟିଏ କଟା ଗଛର ଗଣ୍ଡିରେ ଲିଟି ଚଢେଇ ଭଳି ତୁ ବସିଛୁ । ତେବେ ମୋ ଭଳି ପୁରୁଷଙ୍କ ପାଖକୁ ତୁ ଆସିବାକୁ ମନ ନକରିବୁତ ଚୁଲିର ମାଟି ହିଁ ଖାଇବୁ ।

୧୯. ନିର୍ଗୁଣ୍ଡି - *ଦେ.ବି. :* ଏକ ଔଷଧି ବୃକ୍ଷର ନାମ । ବେଗୁନିଆ : ବେଗୁନିଆକୁ ଦେଶୀୟ ଭାଷାରେ ନିର୍ଗୁଣ୍ଡି କହନ୍ତି । ସ୍ୱର ଓ ଗଳା ବେମାରରେ ଏହାକୁ ବ୍ୟବହାର କରନ୍ତି । ଏକଶିରା, ଅଣ୍ଡକୋଷ ବୃଦ୍ଧିରେ ର୍ନିଗୁଣ୍ଡି ଓ ମହୁଲପତ୍ର ତେଲ ସହ ଗରମ କରି ବନ୍ଧାଯାଏ ।

୨୦. ନିର୍‌ମିୟୂର୍ ଇନ୍ଦିବବୁ - *ଦେ.ବି. :* ପବିତ୍ର ସ୍ନାନ । ବିଭାକର୍ମ ସମାପନ ପରେ ବର ଓ କନ୍ୟାଙ୍କୁ ନଦୀ, ଝରଣା, କୂପ ବା ପୋଖରୀକୁ ନେଇ ସ୍ନାନ କରାଇବାର ପ୍ରଥା । ଏହି ଅବସରରେ ନାଚଗୀତ ମଧ କରାଯାଇଥାଏ । ଏହା ସାଧାରଣତଃ ଅପରାହ୍ନ ସମୟରେ କରାଯାଏ । ଏହି ପ୍ରଥା ଅନ୍ୟାନ୍ୟ ଉଚ୍ଚ ଜାତିର ଲୋକମାନଙ୍କ ମଧରେ ମଧ ରହିଛି ।

୨୧. ନିର ମୁୟତାଙ୍ଗ୍ - *ଦେ.ବି. :* ଶବକୁ ଗାଧୋଇ ଦେବା ପ୍ରଥା । ଆର୍ଯ୍ୟ ସମାଜରେ ମଧ ଏ ପ୍ରଥା ପ୍ରଚଳିତ । ଯେ କୌଣସି ବ୍ୟକ୍ତିର ମୃତ୍ୟୁପରେ ତାହାକୁ

ମଶାନ୍‌କୁ ନେବା ପୂର୍ବରୁ ତାର ପିନ୍ଧା ଲୁଗା ବାହାର କରି ତାକୁ ନିର୍‌ମୁୟତାଙ୍ଗ୍ କରିବା ପରେ ନୂଆ ଲୁଗା ପିନ୍ଧାଯାଇ ଥାଏ । ଗାଦବା ସଂପ୍ରଦାୟରେ ଏହା ବିଶେଷଭାବେ ପ୍ରଚଳିତ ।

୨୨. ନିରୁତା - *ଦେ.ବି. :* ଶବକୁ ଗାଧୋଇ ଦେବାପରେ ନବବସ୍ତ୍ର ପରିଧାନ କରାଇବା ପ୍ରଥା । ଏହା ମଧ୍ୟ ଆର୍ଯ୍ୟ ସମାଜରେ ପ୍ରଚଳିତ । ତେବେ ଆଦିବାସୀ ସମାଜରୁ ଆର୍ଯ୍ୟ ସମାଜକୁ ଏହି ପ୍ରଥା ଯାଇଥିବାର ଅନେକ ସମ୍ଭାବନା ରହିଛି ।

୨୩. ନୀଲଗିରି - *ଦେ.ବି. :* ଏହା ଏକ ପ୍ରକାର ଔଷଧ ଗଛ । ଏହି ଗଛର ପତ୍ରକୁ ପାଣିରେ ସିଝାଇ ଏହାର ବାମ୍ଫକୁ ଶୁଙ୍ଘାଇ ଥଣ୍ଡା ସର୍ଦ୍ଦି କାଶରୁ ଲୋକେ ଆରୋଗ୍ୟ ଲାଭ କରିଥାନ୍ତି । ଗାଈଗୋରୁଙ୍କର ପେଟ ଫୁଲା ବା ଆଣ୍ଠୁଗଣ୍ଠି ଫୁଲା ରୋଗରେ ଏହାର ତେଲ ବ୍ୟବହାର କରାଯାଏ ।

୨୪. ନିଶାଣ - *ଦେ.ବି. :* ଏକ ଆନନ୍ଦ ବାଦ୍ୟ ବିଶେଷ । ବଡ଼ ନାଗରା । ଏହି ବାଦ୍ୟଟିକୁ ଘଣ୍ଟପର୍ବ, ମେରିଆ ପର୍ବ, ଦଶହରା ପର୍ବରେ ଡଙ୍ଗରିଆ କନ୍ଧମାନେ ବଜାଇଥାନ୍ତି । ପର୍ବପର୍ବାଣୀ ଆସିଲେ ବେଜୁ, ବେଜୁଣୀ ବା ଗୁରୁମାଇ ପୂଜାକଲାପରେ ଏହା ବଜାଇଥାନ୍ତି । ଏହାକୁ କେବଳ ଭଲଭାବେ ବଜାଇ ଜାଣିଥିବା ପୁରୁଷ ଲୋକ ହିଁ ବଜାନ୍ତି ।

ଏହି ବାଦ୍ୟଟିର ତଳ ଅଂଶ ଲୁହାରେ ତିଆରି ହୋଇଥାଏ । ଲୁହା ଖୋଳର ଉପରି ଭାଗରେ ଗାଈର ଚମଡ଼ା ଛୁଆଣି କରା ଯାଇଥାଏ । ଏହାକୁ ଚମଡ଼ା ଦଉଡ଼ିରେ ଛନ୍ଦ ଭଳି ବାନ୍ଧି ଦିଆଯାଇଥାଏ । ଏହାକୁ ଡଲାଙ୍ଗ (ଦୁଇଟି ଯୋଡ଼ା ଯାଇଥିବା ରବର, ଖଣ୍ଡ) ଦ୍ୱାରା ବଜାଇଥାନ୍ତି । ଏଥିରୁ ଗୁରୁଗମ୍ଭୀର ନାଦ ସୃଷ୍ଟି ହୋଇଥାଏ ।

୨୫. ନିଶାନୀ (ଣୀ) ମୁଣ୍ଡା - ଏହି ଠାକୁର / ଠାକୁରାଣୀ କୋରାପୁଟର ଆଦିବାସୀମାନଙ୍କର ଏକ ପ୍ରମୁଖ ଗ୍ରାମ ଦେବତା । ଆଦିବାସୀମାନେ ଏହି ଠାକୁରାଣୀ ପୀଠରୁ ମାଟିଆଣି ଗୃହ ନିର୍ମାଣ କରିଥାନ୍ତି । ନିଶାଣୀ ମୁଣ୍ଡା ପ୍ରାୟତଃ ପ୍ରତି ଗ୍ରାମରେ ଥାନ୍ତି । ବର୍ତ୍ତମାନ କୋରାପୁଟ ସହରରେ ପୂର୍ବରୁ ଥିବା ଠାକୁରାଣୀଙ୍କୁ 'ଶାବର ଶ୍ରୀକ୍ଷେତ୍ର' କୋରାପୁଟରେ ମଧ୍ୟ ସ୍ଥାନ ଦିଆଯାଇଛି । ଏ ହେଉଛନ୍ତି ଏକ ମହାନ୍ ଦେବତା, ସମସ୍ତଙ୍କର ପାଳନକର୍ତ୍ତା ତଥା ସୃଷ୍ଟିକର୍ତ୍ତା ବୋଲି ଏଠାରେ ଆଦିବାସୀମାନଙ୍କର ବିଶ୍ୱାସ ରହିଛି ।

୨୬. ନୁସୁରମି - ଦେ.ବି. : ଏକ ଅଳଙ୍କାର ବିଶେଷ । ରସ ତିଆରି ନାକଫୁଲ । ବଣ୍ଡା ରମଣୀମାନେ ପିନ୍ଧିଥାନ୍ତି ।

୨୭. ନୂଆଖାଇ ପରବ୍ - ଦେ.ବି. : ନବାନ୍ନ ଭକ୍ଷଣ ପରବ୍ । ଚଇତି ପରବ ପରେ ଏହା ହେଉଛି ଅବିଭକ୍ତ କୋରାପୁଟ ଜିଲ୍ଲାର ଦ୍ୱିତୀୟ ବଡ଼ ପର୍ବ । ସାଧାରଣତଃ ଭାଦ୍ରବ ମାସର ଅମାବାସ୍ୟା ପରେ ଏହି ପର୍ବ ପାଳନ କରାଯାଏ । ଡିସାରୀ ଯୋଗ କାଢ଼େ । କେଉଁଦିନ କେଉଁ ଗାଁର ଲୋକେ ଧାନ ନୂଆ ଖାଇବେ । ଡଙ୍ଗର ଧାନ ଚାଷ ନଥିଲେ, ଧାନ ପତ୍ରକୁ ଆଣି 'ଚରୁ' ରାନ୍ଧି ନିଜର ଇଷ୍ଟ ଦେବତା ତଥା ପିତୃପୁରୁଷଙ୍କୁ ସମର୍ପଣ କରି ସମସ୍ତ କୁଟୁମ୍ବ ଏକ ସମୟରେ ନବାନ୍ନ ଭକ୍ଷଣ କରିଥାନ୍ତି । ବିବାହିତ କନ୍ୟା ଓ ଅନ୍ୟାନ୍ୟ ବନ୍ଧୁମାନଙ୍କୁ ଏହି ଚରୁ ଭକ୍ଷଣର ସୁଯୋଗ ଦିଆଯାଇ ନଥାଏ । ସମସ୍ତେ ନୂଆ ଲୁଗା ପିନ୍ଧନ୍ତି । ପରସ୍ପର ପ୍ରତି 'ନୂଆଖିଆ ଭେଟଘାଟ' ଅଭିନନ୍ଦନ ଜଣାନ୍ତି । ଏଥିରେ ସମ୍ମିଳିତ ନୃତ୍ୟ ଓ ଢେମସା ନାଟ ସାରା ରାତ୍ରି ଚାଲେ ।

୨୮. ନେଲ୍ ବେଣ୍ଡିତ୍ - ଦେ.ବି. : ଏକ ଦେବୀଙ୍କର ନାମ । ଏହି ଦେବୀ ବା ଠାକୁରାଣୀ ଡଙ୍ଗର ବା ଜଙ୍ଗଲ ଭୂମିରେ ରହିଥାନ୍ତି । ଏଣୁ ଡଙ୍ଗର, ଜଂଗଲ ଜମିରେ ଚାଷ କର୍ମ ଆରମ୍ଭ କରିବା ପୂର୍ବରୁ ଏହି ଦେବୀଙ୍କ ନାମରେ ଗୋଟିଏ ଅଣ୍ଡା ବା ଦୁଇଟି କୁକୁଡ଼ା ବଳି ଦେଇ କୃଷିକର୍ମ ଆରମ୍ଭ କରାଯାଏ । ବାସ୍ତବରେ ନେଲ୍ ବେଣ୍ଡିତ୍ ହେଉଛନ୍ତି ଡଙ୍ଗର ଦେବୀ ।





୧.  **ପଇସାମୁଣ୍ଡି** - *ଦେ.ବି. :* ଏକ ପ୍ରକାର ଆଦିବାସୀ ବିବାହ ପ୍ରଥା ।

ଏହି ପ୍ରଥାରେ ପୁଅର ଇଚ୍ଛା ନଥିବା ସତ୍ତ୍ୱେ ଏବଂ ସ୍ଥଳ ବିଶେଷରେ ପୁରୁଷଟି ବିବାହିତ ହୋଇଥିବା ସତ୍ତ୍ୱେ ଝିଅ ନିଜ ଆଡୁ ମନ କରି ପୁଅ ଘରକୁ ଯାଇ ରହେ । ଅନେକଦିନ ଯାଏ ବହୁ କଷ୍ଟ ସହି, ସେହି ପରିବାର ଦ୍ୱାରା ସ୍ୱୀକୃତ ହେଲାଯାଏ ରହିଥାଏ । ଶାଶୁ, ନଣନ୍ଦ ତାକୁ ନାନା ଦୁଃଖ କଷ୍ଟ ଦେଲେ ମଧ ସବୁ ସହି ପଡ଼ି ରହେ ବିବାହ ହେଲାଯାଏ । ଏହାକୁ ଆଦିବାସୀ ସମାଜରେ ପଇସାମୁଣ୍ଡି ବିହା କୁହାଯାଏ । ଏହି ପ୍ରଥା ଦର୍ଶାଇ ଦିଏ ଯେ ବିବାହ କ୍ଷେତ୍ରରେ ଝିଅମାନଙ୍କ ଇଚ୍ଛା ହେଉଛି ପ୍ରାଥମିକ । ତେବେ ଧୀରେଧୀରେ ଏହା ବିଲୁପ୍ତ ହେବାକୁ ବସିଛି ।

୨.  **ପଚିଆ / ପାଚିଆ** - *ଦେ.ବି. :* ସ୍ତ୍ରୀର ପିନ୍ଧା ଶାଢ଼ି । ଇଂ. - Saree ଦେଶିଆ ସମତୁଲ ଶବ୍ଦ - ଫାଟେଇ ।

ପଚିଆପାଟା : ଲୁଗାପଟା । ଘରର ଯାବତୀୟ ଲୁଗାକୁ 'ପଚିଆ ପଟା' କୁହାଯାଏ । ପୂର୍ବରୁ ସ୍ତ୍ରୀ ଲୋକମାନଙ୍କ ପାଇଁ ଡମମାନେ ବୁଣୁଥିବା ୮/୯ ହାତର ରଂଗ ଧଡ଼ିଥିବା ଧଳାଶାଢ଼ିକୁ ପଚିଆ ବୋଲି କୁହାଯାଉଥିଲା । ଆଜିକାଲି ଯେକୌଣସି ଶାଢ଼ିକୁ ପଚିଆ ବୋଲି କୁହାଯାଉଛି । ପୂର୍ବରୁ ଏହି ଲୁଗାକୁ କାନ୍ଧ ପାଖରେ ଗଣ୍ଠିମାରି ପିନ୍ଧା ଯାଉଥିଲା । ବ୍ଲାଉଜ୍‌ର ବ୍ୟବହାର ନ ଥିଲା । ଧାଙ୍ଗଡ଼ାମାନେ ନିଜ ମନୋନୀତ ଧାଙ୍ଗିଡ଼ୀକୁ ବିସ୍କୁଟ୍, ପାନିଆ, ଦର୍ପଣ ତଥା ଅନ୍ୟାନ୍ୟ ଖାଇବା ଜିନିଷ ସବୁକୁ ଗୋଟିଏ ନୂଆ ପାଚିଆରେ ବାନ୍ଧି ଉପହାର ଦଉଥିଲେ । ଯଦି ଧାଙ୍ଗଡ଼ୀ ଏହା ଗ୍ରହଣ କରେ ଏବଂ ଆଉ ଫେରାଇ ନଦିଏ ତେବେ, ତାର ଇଚ୍ଛା ବୋଲି ଧରାଯାଏ । ଅନେକ ସମୟରେ ଏହା ଧାଙ୍ଗଡ଼ୀ ହାତରେ ନଦେଇ ତା ଦଳର ଝିଅମାନଙ୍କୁ ସେହି ଝିଅ ଉଦ୍ଦେଶ୍ୟରେ ଦିଆଯାଇଥାଏ ।

୩.  **ପଟ୍‌କାର** - *ଦେ.ବି. :* ଠକ, ଲୁଟେରା, ଚୋର, ରାଣ୍ଡବାଜି ଆଦି ସବୁପ୍ରକାର ଦୁଷ୍କୃତିରେ ଅଭ୍ୟସ୍ତ ଲୋକକୁ ପଟକାର ବୋଲି କୁହାଯାଏ । ଇଂ.- Cheat, tout.

ଏହାର ଅର୍ଥ ବହୁତ ବ୍ୟାପକ । ଅବଶ୍ୟ କିଛିକିଛି ଜାତିର ଲୋକଙ୍କୁ ଅଭ୍ୟାସଗତ ପଟ୍‌କାର ରୂପେ ଆଦିବାସୀମାନେ ଗ୍ରହଣ କରିଥାନ୍ତି । କିନ୍ତୁ ସେମାନଙ୍କୁ ମୁହଁ ଉପରେ ପଟ୍‌କାର କୁହାଯାଏ ନାହିଁ । କେବଳ ରାଗି ଗଲେ ବା ମଦ ପିଇ ମତୁଆଲ ହେଇଥିଲେ ଏଭଳି କହନ୍ତି । ଏହି ଜାତି ହେଉଛନ୍ତି ଡମ । ସେମାନଙ୍କୁ ନେଇ ଅନେକ ଲୋକୋକ୍ତି ରହିଛି । ଯେପରିକି "ଡମ୍ ଛଟାଇଲେ, ଡିମ୍ ଫୁଟାଇଲେ" (ଡମ୍‌ଭାଷା) । ଅର୍ଥାତ୍, ଡମ୍ ଠକିଲେ ସଇଲା । ଡିମ୍ ଫୁଟିଲେ ସଇଲା । ଡମ୍ ପଟ୍‌କାର । ଅର୍ଥାତ୍, ଡମ୍ ହେଉଛି ଠକ । ସେହିପରି ଦେଶିଆରେ କୁହଯାଏ । 'ଡମ୍ ପିଲା କାଉ ପିଲା, ତାର ବଇରି ନିସେ ମଲା । ପୁଣି "କାଉ କାନ୍ଦି ଜାନେ, ଡମ୍ କଇ ଜାନେ ।" ଅର୍ଥାତ୍, କାଉ କାନ୍ଦିବା ଜାଣିଥାଏ, ଡମ୍ ଠକିବା ଜାଣିଥାଏ । ତୁମେ ଜାଣୁଥିବ ପଟ୍‌କାର ମିଛ କହୁଛି । କିନ୍ତୁ ବାଧ ହୋଇ ତା' କଥାର ଉତ୍ତର ଦେଇ ସବୁଥିରେ ହଇହଇ କହୁଥିବ । ବର୍ତ୍ତମାନର ଟାଉଟର ବା ରାଜନୈତିକ ନେତାମାନଙ୍କ ପ୍ରତି ଏହି ପଟକାର ଶବ୍ଦ ବେଶୀ ପ୍ରଯୁଜ୍ୟ ।

୪. **ପଟାଙ୍ଗି** - *ଦେ.ବି. :* ଏକ ଗ୍ରାମ ବିଶେଷର ନାମ । କୋରାପୁଟ ଜିଲ୍ଲାରେ ଅବସ୍ଥିତ ଏହି ବ୍ଲକ୍ ସଦର ମହକୁମା କୋରାପୁଟ ଠାରୁ ବିଜୟ ନଗରମ୍ ରାସ୍ତାରେ ପ୍ରାୟ ୬୦କି.ମି. ଦୂରରେ ଅବସ୍ଥିତ । ଏହା ମା' ଗାଙ୍ଗେଶ୍ୱରୀ ମନ୍ଦିର ପାଇଁ ପ୍ରସିଦ୍ଧ । ପଟ୍ଟା ବା ପାଟ ପରି ଦିଶୁଥିବା ଏକ ବିସ୍ତୃତ ମାଳଭୂମି ଅଞ୍ଚଳ । ଦେଓମାଳି ପର୍ବତମାଳାର ପାଦ ଦେଶରେ ଏହା ସମୁଦ୍ର ପତନଠାରୁ ସର୍ବୋଚ୍ଚ ସ୍ଥାନରେ ରହିଛି । ପ୍ରାକୃତିକ ସୌନ୍ଦର୍ଯ୍ୟ ବିମଣ୍ଡିତ ଏହି ସ୍ଥାନ ଦେଓମାଳି ଏକ ପର୍ଯ୍ୟଟନସ୍ଥଳୀରେ ପରିଣତ ହୋଇଛି ।

୫. **ପଟିଡଙ୍ଗ୍** - *ଦେ.ବି. :* ଗୋଟିଏ ଗ୍ରାମର ନାମ ବିଶେଷ । ଏହା ମାଲକାନଗିରି ଜିଲ୍ଲାରେ ଅବସ୍ଥିତ । ପଟି ହେଉଛି ରୋହିମାଛ ଭଳି ଗୋଟିଏ ଜାତିର ମାଛ, ଯାହା ଦୁଇ ତିନି କେଜି ପର୍ଯ୍ୟନ୍ତ ଓଜନ ହୁଏ ଓ ଖୁବ୍ ସୁସ୍ୱାଦୁ ଲାଗେ । ପଟିଡଙ୍ଗ୍- ପଟି ମିଳୁଥିବା ଡଙ୍ଗ୍ ବା ଝରଣା । ଏହି ଝରଣାରେ ପ୍ରଚୁର ପରିମାଣରେ ପଟିମାଛ ମିଳୁଥିବାରୁ ସେହି ଅନୁସାରେ ଝରଣାର ନାମ ପଟିଡଙ୍ଗ୍ । ଏହା ଚିରସ୍ରୋତା । ବର୍ତ୍ତମାନ ସେହି ପଟି ମାଛ ପ୍ରାୟ ଲୋପ ପାଇବାକୁ ବସିଲାଣି । ଏହା କୂଳରେ ଥିବା ଗାଁର ନାମ ମଧ୍ୟ ପଟିଡଙ୍ଗ୍ । ବର୍ତ୍ତମାନ ଏହା ମାଲକାନଗିରି ବ୍ଲକ୍ ଉଡୁପା ପଞ୍ଚାୟତର ଅନ୍ତର୍ଗତ ।

୬. **ପଟିମାଛ** - *ଦେ.ବି. :* ଅଧୁନା ବିଲୁପ୍ତ ରୋହି ପ୍ରଜାତିର ଏକ ମାଛ, ଯାହା ଖୁବ୍ ବଡ଼ ହୁଏ ନାହିଁ । ଲୋକଗୀତରେ ପଟି ମାଛ ଶବ୍ଦଟି ଯୁବତୀର ଯୌନାଙ୍ଗର ପ୍ରତୀକ ଭାବେ ବ୍ୟବହୃତ ହୋଇଥାଏ ।

ଗୀତରେ ବ୍ୟବହାର :

ଉଦ୍ ଡଙ୍ଗରିଆ ପଟିମାଛ

ଲେଙ୍ଗ୍‌ଟି ହିଟେଇ ନାଚ ।

୭. **ପଡ୍‌ଘାନି / ପରଗାନି / ପଡ୍‌ଗାନି** - *ଦେ.କ୍ରି. :* ଶୋଭାଯାତ୍ରା / ସସମ୍ମାନେ ପାଛୋଟି ନେବା । ଦେଶିଆରେ ତଥା ସମସ୍ତ ଆଦିବାସୀ ସଂପ୍ରଦାୟରେ ଏହି ଶବ୍ଦ ପ୍ରଚଳିତ ।

ଝିଅ ବାହା ହୋଇ ବର ସହିତ ବରଘର ଗାଁରେ ପହଞ୍ଚିଲେ ବୋହୂର ଶଶୁର ଘର ବାଜା ବଜାଇ, ନାଚ ଗୀତ କରି ବରକନିଆଙ୍କୁ ଘରକୁ ପାଛୋଟି ନିଅନ୍ତି । ଏହାକୁ 'ପଡ୍‌ଘାନି' କୁହାଯାଏ । ଅନେକ ବର ଓ ବରଯାତ୍ରୀଙ୍କୁ ପାଛୋଟି ନେବାକୁ ପରଗାନି କହିଥାନ୍ତି । ଦେଶିଆ ବିବାହରେ ବର ଓ ବରଯାତ୍ରୀ କନ୍ୟାଘର ଗାଁରେ ପହଞ୍ଚିଲା ପରେ କନ୍ୟାପକ୍ଷର ଲୋକେ ସେମାନଙ୍କୁ ସମ୍ମାନ ଦେଖାଇ ପାଛୋଟି ନେଇ ବର ପାଇଁ ତିଆରି କରାଯାଇଥିବା ପତ୍ର କୁଡ଼ିଆ ବା ଭଣ୍ଡାର ଘରେ ବସାନ୍ତି । ଏହି କୁଡ଼ିଆ ଆଗରେ କନ୍ୟାର ବଡ଼ ଭାଇ ବରର ପାଦ ଧୁଏ ଏବଂ ହଳଦୀ ଓ ଅରୁଆ ଚାଉଳ ଟିକା ଦେଇଥାଏ ।

ପୂଜା ପାର୍ବଣରେ ମଧ୍ୟ ଅନ୍ୟ ଗାଁର ଦେବ-ଦେବୀଙ୍କ ପ୍ରତୀକ ଲାଠି, ପାଲିଙ୍କି, କୁର୍ଚି, ଶିରହା ଓ ପୂଜାରୀମାନଙ୍କୁ ନିମନ୍ତ୍ରଣ କରିଥିବା ଗାଁର ପୂଜାରୀ ଘରକୁ ବାଜା ବଜାଇ ଓ ପଡ୍‌ଘାନି କରି ନିଆଯାଇ ସତ୍କାର କରାଯାଏ । (ଦ୍ରଷ୍ଟବ୍ୟ : ମଣ୍ଡେଇ ପରବ)

୮. **ପଡ଼ିଆ** - *ଦେ.ବି. :* ମାଲକାନଗିରି ଜିଲ୍ଲାରେ ଏକ ବ୍ଲକ୍ ସଦର ମହକୁମା । କୋୟା ଲୋକଙ୍କ ଗାଁ । କୋୟା ସଂପ୍ରଦାୟର ପଡ଼ିଆମି ଗୋଷ୍ଠୀର ଲୋକେ ପ୍ରଥମେ ଏଠାରେ ବସତି ସ୍ଥାପନ କରିଥିବାରୁ ସେଇମାନଙ୍କ ନାମ ଅନୁସାରେ ଏହା 'ପଡ଼ିଆମି'

ଗାଁ ବା 'ପଡ଼ିଆ' ନାମରେ ନାମିତ ହୋଇଛି । ଏହା ଛତିଶଗଡ଼ ସୀମାକୁ ଲାଗି ଅବସ୍ଥିତ ।

୯. ପଣ୍ଡରି ମାଉଲି ମାଇ - *ଦେ.ବି. :* ଗୌରବର୍ଣ୍ଣା ମାଉଲି ମାତା - ଗୌରୀ ବା ପାର୍ବତୀ, ଦନ୍ତେଓ୍ୱାଡ଼ିନ୍‌ଙ୍କ ଅନ୍ୟ ଏକ ନାମ । (ଦ୍ରଷ୍ଟବ୍ୟ : ଦନ୍ତେଶ୍ୱରୀ ।)

୧୦. ପତର ସୌରାନାଟ - *ଦେ.ବି. :* ଏକ ପ୍ରକାର ନାଟ ବିଶେଷ । ଅବିଭକ୍ତ କୋରାପୁଟର ପତରସୌରା ନାମରେ ଏକ ଜନଜାତି ରହିଛନ୍ତି । ସେହି ପତର ସୌରା ଦମ୍ପତିମାନେ ଗାଁ ଗାଁ ବୁଲି ଘୁଡୁକି ବାଦ୍ୟ ବଜାଇ ଗୀତ ସହ ପତର ସୌରାନାଟ ପରିବେଷଣ କରି ଜୀବିକା ନିର୍ବାହ କରିଥାନ୍ତି । ଏହି ନାଟରେ ସେମାନେ କିଛି ଦେଶିଆ ଗୀତ ସହ ଓଡ଼ିଆ ଛାନ୍ଦ, ଚୌପଦୀ ଓ ଜଣାଣ ଗାନ କରିଥାନ୍ତି । ଏହି ଜନଜାତି ବୈପାରୀଗୁଡ଼ା ବ୍ଲକ୍ ଅନ୍ତର୍ଗତ ଦଶମନ୍ତପୁର ପଞ୍ଚାୟତର ପାବ୍‌ଲିଗୁଡ଼ା ଗ୍ରାମରେ ବାସ କରୁଛନ୍ତି ।

୧୧. ପନୟା - *ଦେ.ବି. :* ପାନିଆ ଇଂ.- Comb. ପ୍ରତୀକାର୍ଥେ ପ୍ରୟୋଗ - ବିବାହ ହେଉଥିବା ଝିଅ / ନବ ବିବାହିତା ବଧୂ ବା ବିବାହ ବେଦୀକୁ ଯାଉଥିବା ଝିଅକୁ 'ପନ୍‌ୟା' ବୋଲି ସଂବୋଧ କରାଯାଏ । ବ୍ୟବହାର : ଯଥା : "ପନୟା ପନୟା ବୋଲିସ୍ ବାବୁ । (ଖୋଲୁଥିବା ପାନିଆ (କନ୍ୟା)କୁ ପାଇଗଲ ବାବୁ (ବାବୁ : ବର)

୧୨. ପନ୍ଦି ଶୁଲକ୍ - (ଫନ୍ଦି ଶୁଲ୍‌କ) *ଦେ.ବି. :* ଇଂ- Riddles.

ଗଣ୍ଡମାନଙ୍କର ପହେଳିମୟ ଗୀତ । ଏହି ଗୀତ ବିଭିନ୍ନ ଅବସରରେ ଗାନ କରାଯାଇଥାଏ । ଏହି ଗୀତ ଗାଇବାରେ ଗାୟକ ନିଜ ସୁବିଧା ଅନୁସାରେ ଯତିପାତ ଘଟାଇଥାଏ । ଏହି ଗୀତ ଏକା ରାହାରେ ନରହି ଭାଂଗିଭାଂଗି ଗାଉଥିବାରୁ ଏହାକୁ ସରସରା ପାଟା (ଗୀତ) ବୋଲି ମଧ କୁହାଯାଏ । ଅର୍ଥାତ୍, ଗୀତଟି ସରିଗଲା ବୋଲି ମନେ ହେଉଥିଲେ ମଧ ବାସ୍ତବରେ ସରି ନଥାଏ ।

ଉଦାହରଣ : "ଅଇଲେ ଲନ୍ଦି ପଇଲେ ଯା / ସାତ୍ ବାଆନି ଫୁଲ୍ ।
ଡଙ୍ଗା ଚେଗୁନ୍ ଦକଲେକି / ଟିଆ ଜଗଦଲପୁର ।"

ଅର୍ଥାତ୍, ଯିବା ସମୟରେ ବାଟରେ ନଦୀ ପଡ଼ିଲା । ନଈ ସେପାରିକୁ ଯିବାପାଇଁ ସେମାନେ ବାହାରିଲେ । ନଈ ସେ ପାରିରେ ସାତ ପ୍ରକାର ଫୁଲ ଫୁଟିଥିଲା । ସେମାନେ

ଡଙ୍ଗାରେ ବଢ଼ି ଚାହିଁଲାରୁ ଜଗଦଲପୁର ଦେଖାଯାଉଥିଲା । (ଫନ୍ଦି ଶୁଲକ୍ / ପହେଲୀ ଶ୍ଳୋକ) ବାସ୍ତବରେ ବାହାରକୁ ଏହିଭଳି ସରଳ ଅର୍ଥର ପହେଳି ଜଣା ପଡୁଥିଲେ ମଧ୍ୟ ଏହାର ଗୂଢ଼ ଅର୍ଥ ରହିଥାଏ ।

୧୩. ପରଜା / ପ୍ରଜା / ରଇତ - *ଦେ.ବି. :* ଦ୍ରାବିଡ଼ ଭାଷାଗୋଷ୍ଠୀ ଅନ୍ତର୍ଭୁକ୍ତ ଆଦିବାସୀ । ପରଜାମାନେ ହେଉଛନ୍ତି ଅବିଭକ୍ତ କୋରାପୁଟର ମୁଖ୍ୟ ଆଦିବାସୀ ଜନଗୋଷ୍ଠୀ । ଜନସଂଖ୍ୟା ଦୃଷ୍ଟିରୁ କନ୍ଧମାନଙ୍କ ପଛକୁ ଏମାନଙ୍କର ସ୍ଥାନ । କୁହାଯାଏ ଭୂମିଆମାନେ ବଡ଼ଭାଇ ଭାବେ ଭୂମିର ଅଧିକାର ନେଇ ଭୂମିର ବାସିନ୍ଦା ମାନଙ୍କ ଚଳେଇବା ଦାୟିତ୍ୱ ନେବାରୁ ସେମାନେ ଶାସକ ବା ରାଜା ହେଲେ ଏବଂ ପରଜାମାନେ ସାନଭାଇ ଭାବେ ଭୂମିଚାଷ କରି କୃଷିଜାତ ଦ୍ରବ୍ୟରେ ନିଜେ ବଞ୍ଚି ଅନ୍ୟକୁ ବଞ୍ଚେଇବାରୁ ସେମାନେ ପ୍ରଜା ବା ରଇତଭାବେ ପରିଚିତ ହେଲେ । ଏହି ପରଜାମାନେ କାହିଁ କେଉଁ ପ୍ରାଚୀନ କାଳରୁ ଅବିଭକ୍ତ କୋରାପୁଟ ଜିଲ୍ଲାର ବିଭିନ୍ନ ଅଞ୍ଚଳରେ ସଂଖ୍ୟାଧିକ ଭାବେ ବସବାସ କରିଆସୁଛନ୍ତି । ଏମାନେ ବହୁ ଉପଗୋଷ୍ଠୀରେ ବିଭକ୍ତ । ଯଥା : ବଡ଼ ପରଜା, ସାନପରଜା, ପେଙ୍ଗୁ ପରଜା, ପାରେଙ୍ଗା ପରଜା, ଝୋଡ଼ିଆ ପରଜା, ଛେଲିଆ ପରଜା, ବିରେଙ୍ଗ ପରଜା ଇତ୍ୟାଦି । ଏହିସବୁ ନାମରେ ଚିହ୍ନିତ ହୋଇ ଏମାନେ ଭିନ୍ନଭିନ୍ନ ସ୍ଥାନରେ ବାସ କରୁଛନ୍ତି । ଏମାନେ ନିଜ ଗୋତ୍ରର ଜୀବଜନ୍ତୁମାନଙ୍କୁ ଯଥା କଇଁଛ, ଗୋଧି, ନାଗ, ବାଘ ଇତ୍ୟାଦି ଆଘାତ ନଦେଇ ସମ୍ମାନ ଦିଅନ୍ତି । ଏମାନଙ୍କ ସାଂସ୍କୃତିକ ଜୀବନର ମୁଖ୍ୟ ଅବଲମ୍ବନ ହେଉଛି ନୃତ୍ୟଗୀତ ଓ ବିଭିନ୍ନ ପର୍ବପର୍ବାଣୀ ପାଳନ । ଜନ୍ମ, ମୃତ୍ୟୁ, ବିବାହ, ଦଶାହ, ନାମକରଣ, ନିର୍ବନ୍ଧ ଆଦି ସାମାଜିକ ଉତ୍ସବ ଏମାନେ ପାଳନ କରନ୍ତି । ମୃତ୍ୟୁର ତିନିଦିନରେ ପିତା ଖାଆନ୍ତି ଓ ଦଶ ଦିନରେ ଦଶାହକର୍ମ ପାଳନ କରନ୍ତି । ଜନ୍ମ ହେଲେ ୨୧ ଦିନରେ ଶୁଦ୍ଧ ହୁଅନ୍ତି, ମୃତ ଆତ୍ମାକୁ ଡୁମ୍ବା କହନ୍ତି । ହୁଣ୍ଡି ବା ନିଶାଣି ମୁଣ୍ଡାକୁ ଗ୍ରାମ ଦେବତା ଭାବେ ମାନନ୍ତି । ଏମାନଙ୍କ ଧର୍ମୀୟ ଚିନ୍ତାଧାରା ଜଡ଼ ଓ ଚେତନବାଦ ଉପରେ ଆଧାରିତ । ଏମାନେ କୃଷି ଭିତ୍ତିକ, ଧର୍ମୀୟ ପର୍ବପର୍ବାଣୀ ପାଳନ କରନ୍ତି । ଜନ୍ମ ମାଟି ଓ ଜାତି ପ୍ରତି ଆନୁଗତ୍ୟ ରଖନ୍ତି ।

ଯଥା :" ମାଟି ଆମର ଆମାଗୋ ମାଟି ଆମର ମାଆ
ଆମେ ସବୁ ରଇତ ପିଲା ମାଟି ଆମର ମାଆ
ଜୁଆର ଜୁଆର ଗାନ୍ଧୀ ମାପୁରୁ ଜୀବନ ତମର ଆମେ ।

ଜେଠ୍ଠୁ ମାସ କରାକେ ମୁଣ୍ଡେ ଚେଗୁଲ୍ ।
କୁଲି ବୁଡି କରି କିଇଁ ବୁରେ ପେଟ ଜିବୁଲୁ ।"

ଏମାନେ ଢେମସା ନାଚନ୍ତି । ରିଂକୋଡ଼ି ଢେମସା ଏମାନଙ୍କ ପାରମ୍ପରିକ ଲୋକନୃତ୍ୟ । ଏମାନେ ଚଇତ ପରବଗୀତ, ଲୋରୀ ଗୀତ, ପାଜର୍ ଗୀତ, ସାଇଲୋଡ଼ି ଗୀତ, ନାନ୍ଦୀଗୀତ, କିନ୍ଦରୀ ଗୀତ ପ୍ରଭୃତି ଗାଇ ନୃତ୍ୟ କରିଥାନ୍ତି । ମାଣ୍ଡିଆ ପେଜ୍ ଏମାନଙ୍କ ମୁଖ୍ୟ ପାନୀୟ । ଏମାନଙ୍କ ବାଡ଼ିରେ ସଲପ ଗଛଗୁ ଥାଏ । ସଲପ ରସ ସଂଗ୍ରହ କରି ମଧ ଏମାନେ ପିଇଥାନ୍ତି ।

୧୪. ପରଦେଶିନ୍ ମାତା - *ଦେ.ବି. :* ଆଦିବାସୀମାନଙ୍କର ଜଣେ ନିତ୍ୟ ଉପାସିତା ଦେବୀ ।

ଗଣ୍ଡାମାନଙ୍କର ଏକ ଲୋକଦେବୀ । ଏହାଙ୍କୁ ଗଣ୍ଡ ଆଦିବାସୀମାନେ ଚୈତ୍ରମାସରେ ପୂଜା କରିଥାନ୍ତି । ମୁଖ୍ୟତଃ ରୋଗ ବୈରାଗରେ ପଡ଼ିଲେ ଏହିଦେବୀଙ୍କୁ ଦେଶିଆ ମନ୍ତ୍ର ଜରିଆରେ ଆବାହନ କରାଯାଇଥାଏ ।

୧୫. ପରବ - *ଦେ.ବି. :* ଦେବଦେବୀଙ୍କ ମେଲଣ / ସାମାଜିକ ଉତ୍ସବ : କୋୟା ପ୍ରତିଶବ୍ଦ : ପାଣ୍ଡୁ । ଅବିଭକ୍ତ କୋରାପୁଟ ଜିଲ୍ଲାରେ ପାଳିତ ପର୍ବପର୍ବାଣୀ । ଇଂ.- Festival ଉଦାହରଣ : ଦିଆଲି ପରବ, ପୁଷ୍ ପରବ, ଚଇତ୍ ପରବ, ନୂଆଖିଆ ପରବ, ଆମୁସ୍ ପରବ, ଟାକୁ ପରବ, ଗତର ପରବ, ଦଶରା ପରବ, ବଡ଼ ପରବ (ଚାରିବର୍ଷକୁ ଥରେ) ଇତ୍ୟାଦି । ପରବ ନାମରେ କୋରାପୁଟ ଜିଲ୍ଲା ସ୍ତରରେ ପ୍ରତିବର୍ଷ ସରକାରୀ ଉଦ୍ୟମରେ ନଭେମ୍ବର ମାସରେ ଏକ ଲୋକ ମହୋତ୍ସବ ଅନୁଷ୍ଠିତ ହୋଇ ଆସୁଛି । ରାୟଗଡ଼ାରେ ଏହାକୁ କୁହାଯାଉଛି 'ଚଇତି', ନବରଂଗପୁରରେ 'ମଣ୍ଡେଇ' ମାଲକାନଗିରିରେ 'ମାଲ୍ୟବନ୍ତ' ।

୧୬. ପଲସା ପେନ୍ / ପରସା ପେନ୍ - *ଦେ.ବି. :* ଗଣ୍ଡ ଆଦିବାସୀଙ୍କ ପଲାଶ ବୃକ୍ଷ ଦେବତା (ପରସା : ପଲାଶ, ପେନ୍ : ଦେବତା ।) ଗଣ୍ଡ କିମ୍ବଦନ୍ତୀ ଅନୁସାରେ ମହାଦେବଙ୍କ ପିତା କୁଲିତରା ଓ ପ୍ରକୃତିଦେବୀଙ୍କ ମିଳନ ଫଳରେ ରଜ ଓ ବୀର୍ଯ୍ୟ ମିଶି ରକ୍ତବର୍ଣ୍ଣ ଧାରଣ କରି ପଲାଶ ବୃକ୍ଷ ରୂପେ ଶିବ ସୃଷ୍ଟି ହେଲେ । ଏଣୁ ଗଣ୍ଡ ଆଦିବାସୀମାନେ ପଲାଶ ଗଛକୁ ପଲସା ପେନ୍ ବା ପରସା ପେନ୍ ବୋଲି କରନ୍ତି । (ଲିଙ୍ଗୋପାଟା : ଲିଙ୍ଗୋପେନଙ୍କ ପୁରାଣରୁ ସଂଗୃହୀତ ।)

୧୭. **ପାଇକପଡ଼ା** - *ଦେ.ବି. :* ରାୟଗଡ଼ା ଜିଲ୍ଲାର ନାଗାବଳୀ ନଦୀକୂଳରେ ଅବସ୍ଥିତ ଏକ ଐତିହାସିକ ସ୍ଥାନ । ଏହି ଗ୍ରାମଟିକୁ ଜୟପୁର ରାଜା ଜଣେ ବ୍ରାହ୍ମଣକୁ ଇନାମ୍ ରୂପେ ପ୍ରଦାନ କରିଥିଲେ ।

ଏହା ରାଜାଙ୍କ ପାଇକ୍ ବା ସୈନ୍ୟମାନଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । ଏହା ପାତାଳେଶ୍ୱର କ୍ଷେତ୍ରଭାବରେ ପରିଚିତ । ଅତୀତରେ ଏଠାରେ ପାତାଳରୁ ଫୁଟି ବାହାରିଥିବା ସ୍ୱୟଂ ଲିଂଗ ପାତାଳେଶ୍ୱର ମହାଦେବଙ୍କୁ କନ୍ଧ ଆଦିବାସୀମାନେ ପୂଜା କରୁଥିଲେ । କଥିତ ଅଛି ଦ୍ୱାପର ଯୁଗରେ ଭଗବାନ ଶେଷଦେବ ବା ବଳରାମ ଏହି ଅଞ୍ଚଳ ଦେଇ ଯାତ୍ରା କରୁଥିବା ସମୟରେ ପାଞ୍ଚଟି କ୍ଷେତ୍ରରେ ପାଞ୍ଚଟି ଲିଂଗ ସ୍ଥାପନ କରିଥିଲେ । ସେଗୁଡ଼ିକ ମଧ୍ୟରୁ ପାଇକପଡ଼ାସ୍ଥ ଗୁମ୍ଫାରେ ଥିବା ପାତାଳେଶ୍ୱର ମହାଦେବ ଅନ୍ୟତମ ।

୧୮. **ପାଆର୍** - *ଦେ.ବି. :* ଗୁମ୍ଫା ଇଂ. - cave, Cavern. ଦେଶିଆ ପ୍ରତିଶବ୍ଦ : ଅଡୁ ।

ପାହାଡ଼ ବା ପର୍ବତରେ ଥିବା ଗୁମ୍ଫା, ଯେଉଁଠାରେ ବର୍ଷାବେଳେ ଆଶ୍ରୟ ନିଆଯାଇପାରିବ । ବିଭିନ୍ନ ସ୍ଥାନରେ ରହିଛି ବାଘ ପାଆର୍, ଭାଲୁ ପାଆର୍ ଓ ସାଇ ପାଆର୍ । ସରୁ ମୁହଁଥିବା ଗୁମ୍ଫାକୁ ପାଲ୍‌କା ବୋଲି କହନ୍ତି । ପୁଣି ପାଲ୍‌କାର ଅନ୍ୟ ଅର୍ଥ ହେଉଛି : ଗଛ କୋରଡ଼ ଓ ବାଉଁଶର ପୋଲ । ଆଗରୁ ଆଦିବାସୀମାନେ ବଡ଼ବଡ଼ ପାଆର୍ ଭିତରେ ବସବାସ କରୁଥିଲେ । ମାଇଲ୍ ମାଇଲ୍ ଲମ୍ୱା ଓ ଦଶ ପନ୍ଦର ମୁହଁଯୁକ୍ତ ପାଆର୍ ମଧ୍ୟ ରହିଛି । ଗୁପ୍ତେଶ୍ୱର ମହାଦେବଙ୍କ ଆସ୍ଥାନ ଏହିଭଳି ଏକ ପାଆର୍‌ରେ ଅବସ୍ଥିତ ।

୧୯. **ପାକ୍‌ନାଗୁଡ଼ା** - *ଦେ.ବି. :* ପାକନା ବା ପଥର ଭରା ଗାଁ । ମାଲକାନ୍‌ଗିରି ଜିଲ୍ଲାର ବାଲିମେଲା ଠାରୁ ପ୍ରାୟ ୩୦କି.ମି. ଦୂରରେ ଅବସ୍ଥିତ ପାହାଡ଼ ପର୍ବତ ପରିବେଷ୍ଟିତ । ଏହି ଗ୍ରାମଟି ପଥରମୟ କହିଲେ ଅତ୍ୟୁକ୍ତି ହେବନି । ଏଠାରେ ଥିବା କ୍ଷୁଦ୍ର ପାହାଡ଼ରେ ରହିଛି ବୌଦ୍ଧ କୀର୍ତ୍ତି । ଏଠାରେ ଅତୀତର ଏକ ପ୍ରସିଦ୍ଧ ବୌଦ୍ଧ ପୀଠ ଥିବାର ପ୍ରମାଣ ରହିଛି । ଏବେ କଳାମୁଗୁନି ପଥରର ବହୁ ବୌଦ୍ଧ ଦେବଦେବୀ ମୂର୍ତ୍ତି ଏଠାରେ ପଡ଼ିରହିଛି । ଏଠାକାର ଆଦିବାସୀମାନେ ପଞ୍ଚୁ ପାଣ୍ଡବଙ୍କ ମୂର୍ତ୍ତି ପୂଜା କରୁଛନ୍ତି ।

୨୦. ପାଗଡ୍ - *ଦେ.ବି. :* ସନ୍ଧି ସ୍ଥାନ । ଦୁଇ ପାହାଡ଼ ମଧ୍ୟସ୍ଥଳରେ ଥିବା ସମତଳ ଭୂମି। ଯେଉଁଠି ଭଲ ଚାଷ ହୁଏ । ଦୁଇବସ୍ତୁର ମଧ୍ୟବର୍ତ୍ତୀ ଫାଙ୍କାସ୍ଥାନ । ଇଂ.-Mountain Valley ଯଥା : (୧) ପାଗଡ଼ ବାଟେ କାଇକାଇଟା ଜନ୍ତୁମନ୍ ଚିଙ୍ଗ୍‌ଲି ଗାଲାୟିନି । (୨) ସେ ପିଲାର୍ ଦାନ୍ତୁ ବଡ଼ ପାଗଡ୍ ପାଗଡ୍ ଆଚେ । (ଫାଙ୍କାଫାଙ୍କା ଅର୍ଥରେ) । (୩) ପାଗଡ୍ ବେଡ଼ାକେ ଗେନ୍‌ବା କାଯେ ସାଉକାରମନ୍ ବଡ଼ ଶାର୍‌ଦା ଅଇବାୟ । (ଅଭଲ୍ ନମ୍ର ଉର୍ବର ଜମି ଅର୍ଥରେ) ।

୨୧. ପାଙ୍ଗନ୍ - *ଦେ.ବି. :* ମନ୍ତ୍ର : ଯନ୍ତ୍ର, ତନ୍ତ୍ର ଇଂ.- Magical spell, Black magic

ଏହାଦ୍ୱାରା କୌଣସି ଜଣେ ବ୍ୟକ୍ତି ଓ ତା'ର ପ୍ରିୟ ପରିଜନ ତଥା ତାର ଗୋରୁଗାଇ ଓ ସଂପତ୍ତି ବାଡ଼ିକୁ ପ୍ରଭାବିତ କରି କ୍ଷତି ପହଞ୍ଚାଇବାର ଚେଷ୍ଟା କରାଯାଏ । ଆଦିବାସୀମାନଙ୍କ ଭିତରେ 'ପାଙ୍ଗନ୍' ଉପରେ ଅଗାଧ ବିଶ୍ୱାସ କରାଯାଏ । ଅବିଭକ୍ତ କୋରାପୁଟ ଜିଲ୍ଲାରେ ଅଣଆଦିବାସୀ, ଗଡ଼ିଆ ତଥା ଆଦିବାସୀମାନଙ୍କ ଭିତରେ ପାଙ୍ଗନ୍ ଉପରେ ଅଗାଧ ବିଶ୍ୱାସ ଆଜି ମଧ୍ୟ ଦେଖାଯାଏ । ସେମାନେ ବିଶ୍ୱାସ କରନ୍ତି ଯେ, ଏହି ପାଙ୍ଗନ୍ ଶକ୍ତି ଦ୍ୱାରା ମଣିଷକୁ ମାରିଦିଆଯାଇପାରେ, କାଇଲାରେ ପକାଯାଇପାରେ ଓ ତାର ଗୋରୁ ମଇଁଷି ଆଦି ପଶୁଙ୍କୁ ମାରିଦିଆଯାଇପାରେ ଓ ଘରଦ୍ୱାର ମଧ୍ୟ ନଷ୍ଟ କରିଦିଆଯାଇପାରେ ବା ନିଆଁ ଲଗାଇ ଦିଆଯାଇପାରେ ।

୨୧. ପାଙ୍ଗନିଆ - *ଦେ.ବି. :* ଗୁଣିଆ ଇଂ.- Black magician ପାଙ୍ଗନ୍ କ୍ରିୟାକାଣ୍ଡ କରୁଥିବା ବ୍ୟକ୍ତିଙ୍କୁ 'ପାଙ୍ଗ୍‌ନିଆ କୁହାଯାଏ । ଏମାନଙ୍କୁ ଲୋକମାନେ ଉପରେ ଉପରେ ମାନ୍ୟ କରୁଥିଲେ ମଧ୍ୟ ପ୍ରକୃତରେ ଭୟ ଓ ଘୃଣା କରନ୍ତି । କିଛିକିଛି ପାଙ୍ଗନିଆ ରୋଗ ବା ବିପଦଗ୍ରସ୍ତ କରି ଦେଇ ଭଲ କରି ଦିଅନ୍ତି ବୋଲି ଲୋକ ବିଶ୍ୱାସ । ସେଥିପାଇଁ ଅନେକ ସ୍ଥାନରେ ପାଙ୍ଗନିଆ ଅଭିଯୋଗରେ ଲୋକଙ୍କୁ ସାମାଜିକ ଶାସ୍ତି ଦିଆଯାଇଥାଏ । ଲୋକମାନଙ୍କୁ ରୋଗ ବୈରାଗ ହେବାମାତ୍ରେ ବା କୌଣସି ରୋଗରେ, କେହି ବ୍ୟକ୍ତି ବା ଗୋରୁ ଗାଈ ମରିଗଲା ମାତ୍ରେ ପ୍ରଥମେ ଲୋକେ ବିଶ୍ୱାସ କରନ୍ତି ଯେ କେହି 'ପାଙ୍ଗନ୍' କରିଦେଇଛି । ସେଥିପାଇଁ ପ୍ରଥମେ ଡାକ୍ତର ପାଖକୁ ନଯାଇ ଆଦିବାସୀ ଲୋକେ ଗୁଣୀ, ଦିସାରୀ ବା 'ଓ୍ୱାଡ଼େ' ପାଖକୁ ଯାଆନ୍ତି । ବହୁ ସମୟରେ ଗୁଣିଆ

ବୁଝୁବୁଝୁ ରୋଗୀର ଅବସ୍ଥା ସଂକଟାପନ୍ନ ହୋଇ ଯାଇଥାଏ ଓ ଶେଷ ବେଳକୁ ଡାକ୍ତର କିଛି କରିପାରି ନଥାଏ । ଏପରିକି ଶିକ୍ଷିତ ଆଦିବାସୀ ମଧ ପ୍ରଥମେ ଗୁଣିଆ ପାଖକୁ ଯାଇ କେହି ପାଙ୍ଗିଛି କି ନାହିଁ ବୁଝି ତାପରେ ଡାକ୍ତର ପାଖକୁ ଯାଆନ୍ତି । ଯଦି କେହି ପାଙ୍ଗିଛି ବୋଲି ଦିଶାରୀ କହେ ତେବେ ସେ ପାଙ୍ଗ୍‌ନିଆର ସନ୍ଧାନ କରନ୍ତି ଓ ପଞ୍ଚାୟତରେ ତା'ର ବିଚାର ଚାହାନ୍ତି । ପାଙ୍ଗାନିଆ ଯଦି ସାଧାରଣ ଲୋକ ହୋଇଯାଏ, ତେବେ ଏହାର ବିଚାର ଜଘନ୍ୟ ମାଡ଼ରେ ଶେଷ ହୁଏ । କିନ୍ତୁ ସେ ଯେଉଁଠି ସାମାଜିକ କ୍ଷମତା ଭୋଗ କରୁଥାଏ, ସେଠି ତାର ବିଚାର ହୋଇପାରେ ନାହିଁ । ସେଠି ପ୍ରଭାବିତ ବ୍ୟକ୍ତିକୁ ତାର ବିକଳ୍ପ ବ୍ୟବସ୍ଥା କରିବାକୁ ପଡ଼େ । ଟାଉଟରିଆ ପାଙ୍ଗନିଆମାନେ କେତେକ ଜାଗାରେ ରୋଗୀକୁ ଭଲ କରିଦିଅନ୍ତି । ଯେଉଁଠି ଗୁପ୍ତରେ ଥାଇ ପାଙ୍ଗ୍‌ନିଆ ପାଙ୍ଗ୍‌ନ କରୁଛି ବୋଲି ଦିସାରୀ କହେ, ସେଠାରେ ପାଙ୍ଗ୍‌ନ ଛଡ଼େଇବା ପାଇଁ କୌଣସି ବଡ଼ ଓ୍ୱାଡ଼େ ବା ବଡ଼ ଗୁଣିଆର ଆଶ୍ରୟ ନିଆଯାଏ । ଏହି ପାଙ୍ଗନ୍ ପାଞ୍ଚ ପ୍ରକାରର । ଯଥା : କୁଦାଲ୍ ସଂଗାନି, ଆକିଲାଗାନି, ଦିରେମରାଇବା ପାଙ୍ଗନ୍ ଉପାୟ ପାଙ୍ଗନ୍ ଏବଂ ଡାଇନ୍ ପାଙ୍ଗନ୍ ।

(କ) **କୁଦାଲ୍ :** ମନ୍ତ୍ର ଦ୍ୱାରା ପାଙ୍ଗ୍‌ନିଆ ଗୋଟିଏ ରଶି ଶତ୍ରୁର ବେକରେ ରଖିଦିଏ ।ସେ ରଶି ଅଦୃଶ୍ୟ ଥାଏ । ସଂଗେସଂଗେ ସେ ବ୍ୟକ୍ତିର ଛାତି ବେକ ଓ ମୁଣ୍ଡ ବ୍ୟଥା ହୋଇ ନିଃଶ୍ୱାସ ପ୍ରଶ୍ୱାସ ନେବା କଷ୍ଟ ହୁଏ । ଏକ ଘଣ୍ଟା ବା ଦୁଇଘଣ୍ଟା ଭିତରେ ସେ ବ୍ୟକ୍ତି ମରିଯାଏ । (ହୃଦ୍‌ରୋଗ ଜନିତ ମୃତ୍ୟୁ ? ବ୍ରେନ୍ ମେଲେରିଆ ?)

(ଖ) **ସଂଗାନି :** ମନ୍ତ୍ରଦ୍ୱାରା ଯେକୌଣସି ଜିନିଷକୁ ମନ୍ତ୍ରିତ କରି ଶତ୍ରୁ ପାଖକୁ ପଠେଇ ଦିଆଯାଏ । ତାହା ଅଦୃଶ୍ୟ ଭାବରେ ଆଣ୍ଠୁଗୁଣ୍ଠି, ଆଖି, ଦାନ୍ତ, ପାଟି, ନାଭି ବା ଯେ କୌଣସି ଅଂଗରେ ପ୍ରବେଶ କରେ । ସେହି ଅଂଗ ସେତେବେଳେ ଖୁବ୍ ଦୁକା ବା ବେଦନା ହୁଏ । କେବଳ ଜାଣିବା ଗୁଣିଆ ମନ୍ତ୍ର ବଳରେ ସେହି ବସ୍ତୁକୁ ଲୋକଟି ଦେହରୁ ବାହାର କରିନେଇପାରେ । ସମୟେ ସମୟେ ସେଥିପାଇଁ ସେ ରୋଗୀ ଦେହରେ ଔଷଧ ବାନ୍ଧିଦିଏ । ତାପରେ ତ' ଯାଇ 'ଦୁକା' ବନ୍ଦ ହୁଏ । ଅଦୃଶ୍ୟ ବସ୍ତୁଟିକୁ ସେ ବାହାର କରିଥାଏ । ସାଧାରଣତଃ ସେହି ମନ୍ତ୍ରିତ ବସ୍ତୁ ହେଉଛି - ଧାନ, ହାଡ଼ ଓ ବାଳ ଇତ୍ୟାଦି ।

(ଗ) ଆକିଲାଗାନି : ମନେକର ଜଣେ କିଛି ଭଲ ଜିନିଷ ଖାଉଥିବାବେଳେ ପାଙ୍ଗନିଆର ଆଖି ପଡ଼ିଗଲା । ତେବେ ଖାଉଥିବା ଲୋକର ପେଟ ଫୁଲି ଖୁବ୍ ବ୍ୟଥା ହୁଏ । ଅଜୀର୍ଣ୍ଣ ଝାଡ଼ା ହୁଏ । ଖାଦ୍ୟ ଜିନିଷ ଦେଖିଲେ ବାନ୍ତି ଆସେ । ଗୁଣିଆ ପାଖକୁ ଗଲେ ଗୁଣିଆ ଲୁଣ ଓ ପାଉଁଶ ମନ୍ତ୍ରକରି ଦେଲେ ସେହି ପେଟ ବ୍ୟଥା ଭଲ ହୁଏ ।

(ଘ) ଦିରେ ମରାଇବା ପାଙ୍ଗନ୍ ବା ଉପାୟୀ ପାଙ୍ଗନ୍ : ପାଙ୍ଗାନିଆ ପ୍ରଥମେ ଶତ୍ରୁର ବର୍ଜ୍ୟବସ୍ତୁ ଯଥା - ଝାଡ଼ା, ପରିସ୍ରା, ମୁଣ୍ଡର ବାଳ, ଜିଭର ମଇଳା ଓ ପାଦତଳର ମାଟିକୁ ସଂଗ୍ରହ କରି ଏକାଠି କରେ । ଗୋଟିଏ ନୂଆ ଉଇହୁଙ୍କା ଓ ଯାହାକୁ କେହି ଭାଂଗି ନଥିବେ । (ତାକୁ 'କୁଆରି' ବିନୁ ବା କୁଆଁରୀ ବିଡ଼ମ୍' ବୋଲି କୁହଯାଏ ।) ସେଥିରୁ ମାଟି ନେଇ ସେଇସବୁ ବର୍ଜ୍ୟବସ୍ତୁ ସହ ମିଶାଇ ଏକ ମଣିଷ କଣ୍ଢେଇ ତିଆରି କରେ । ତାପରେ ସେ ପାଙ୍ଗାନିଆ ଦିଉନି ଗଛର କାଠରୁ ଛୋଟ ଆକାର ଧନୁ ଓ ତୀର ତିଆରି କରେ । ସେହି ତୀର ମୁନରେ ଜଡ଼ାତେଲ ଭିଜା ଧଳାକନାକୁ ଗୁଡ଼ାଇ ମନ୍ତ୍ର ପଢ଼ି ନିଆଁ ଲଗେଇ ଦିଏ ଓ ଧନୁ ସହ ଯୋଖି ସେ କଣ୍ଢେଇକୁ ତୀର ବିନ୍ଧିଦିଏ । ପରେ ସେହି ତୀର ବିଦ୍ଧ କଣ୍ଢେଇକୁ ନେଇ ଗାତଖୋଳି ଜଂଗଲ ଭିତରେ କିମ୍ବା ମଶାଣି ଭିତରେ ପୋତିଦିଏ । ସେହି ଦିନଠୁଁ ଯେଉଁ ଶତ୍ରୁକୁ ଲକ୍ଷ୍ୟ କରାଯାଇଥାଏ, ତାର ଦେହ ଖରାପ ହେବା ଆରମ୍ଭ ହୁଏ । ସେ ଶୁଖି ଶୁଖି ଓ କାଇଲାରେ ପଡ଼ି ପଡ଼ି ବର୍ଷେରୁ ଦୁଇବର୍ଷ ଭିତରେ ମରିଯାଏ । ଏହାକୁ ସହଜରେ ଗୁଣି, ଦିସାରୀ ଭଲ କରିପାରନ୍ତି ନାହିଁ ବା ଧରି ପାରନ୍ତି ନାହିଁ ।

(ଙ) ଏହା ବ୍ୟତୀତ 'ଡାଇନ୍ ପାଙ୍ଗନ୍' ମଧ୍ୟ ରହିଛି । ଯାହାକି ସମତଳ ଅଞ୍ଚଳର ଡାହାଣୀ ବିଦ୍ୟା ସହ ସମାନ । ଏହି ପାଙ୍ଗିଣିଆମାନଙ୍କୁ ଧରିବା ପାଇଁ ମାଟିଲି ବ୍ଲକ୍ ଚେଡ଼େଙ୍ଗା ଗାଁରେ ଜଣେ ବଡ଼ ଗୁଣିଆ ରହିଥିଲେ । ସେ ହେଉଛନ୍ତି ଦୁଲାଲ୍ ଦେଇଙ୍କ ପୂଜାରୀ । ମାଲକାନଗିରି ବଡ଼ଯାତ୍ରା ବେଳକୁ ସବୁଠାରୁ ବଡ଼ଲାଠି ଏହି ଗାଁରୁ ବାଲରାଜୁ ପତୁରାଜୁ ଓ କାନମରାଜୁଙ୍କ ପାଖକୁ ଯାଏ । ଏହା ଯିବାପରେ ଯାଇ ବଡ଼ଯାତ୍ରା ଆରମ୍ଭ ହୁଏ । ଦୁଲାଲ ଦେଇ ହେଉଛନ୍ତି ପାଙ୍ଗନିଆମାନଙ୍କର ସବୁଠାରୁ ବଡ଼ ଦେବୀ । ସେଥିପାଇଁ ତାଙ୍କର ଶିରା, ଯେକି ସବୁଠାରୁ ବଡ଼ ଗୁଣିଆ, ଶକ୍ତିଶାଳୀ ଗାରୁଡ଼ି ବିଦ୍ୟାର ଅଧିକାରୀ ହୋଇଥାଏ । ଯେକୌଣସି ଗାଁରେ ପାଙ୍ଗନ୍ ପଶିଲେ ଅର୍ଥାତ୍, ଗୋରୁଗାଈ ବା ଲୋକମାନେ ମରିଯାଉଥିଲେ ତାଙ୍କୁ ଡକାଯାଏ । ସେତେବେଳେ ସମସ୍ତ ଗାଁ ଲୋକଙ୍କୁ

ଗାଁ ଛାଡ଼ିଯିବା ପାଇଁ ନିଷେଧ କରାଯାଏ । ଦୁଲାଲ ଦେଇଙ୍କୁ ପୂଜାକରି ସେହି ପୂଜାରୀ ବା ବଡ଼ଗୁଣିଆ ନିଜର ଲୁହାକଣ୍ଟାର କଠଉ ପିନ୍ଧି ଲୁହାକଣ୍ଟାର ପିଢ଼ାରେ ବସେ । ସେହି ପିଢ଼ା ଗୋଟିଏ ଖଟୁଲି ଆକାରରେ ହୋଇଥାଏ । ଦୁଇଜଣ ଲୋକ ତାଙ୍କୁ ବୋହି ଆଣନ୍ତି । ସାଂଗରେ ଗୋଟିଏ ମଜୁରିଆ ଯାଏ । ନିର୍ଦ୍ଦିଷ୍ଟ ଗାଁରେ ପହଞ୍ଚିବା ପରେ ସେ ପ୍ରଥମେ ସେହି ଗ୍ରାମଦେବୀଙ୍କୁ ପୂଜା କରେ । ତାପରେ ଘରେଘରେ ବୁଲିଯାଇ ପାଙ୍ଗନିଆକୁ ଖୋଜି ଧରିଦିଏ । ଏହାପରେ ସେ ପାଙ୍ଗନିଆର ବିଚାର କରେ । ଏହା ବ୍ୟତୀତ ନବରଂଗପୁର ପେଣ୍ଡ୍ରାହାଣ୍ଡି ଦେବୀଙ୍କ ଶିରା ମଧ ପାଙ୍ଗନ୍ ଛଡ଼ାଇବା ବିଦ୍ୟାରେ ଧୁରନ୍ଧର ବୋଲି ପ୍ରବାଦ ରହିଛି ।

ଗୋଟିଏ କେଶ୍ ଅଧ୍ୟୟନ : କୋରୁକୋଣ୍ଡା ବ୍ଲକ୍‌ର ତୁଡ଼ାମେଟା ପଞ୍ଚାୟତରେ କୋୟାଗୁଡ଼ା ହେଉଛି ଅଣୀ ପରିବାର ବିଶିଷ୍ଟ ଏକ ବଡ଼ ଗାଁ । ସେଠାକାର ନାୟକ ହେଉଛି ଦେବା ମାଡ଼କାମୀ । ବୟସ ପ୍ରାୟ ୫୦ । ତା'ର ସଂପତ୍ତି ବାଡ଼ି ଅନେକ । ପ୍ରାୟ ସତୁରୀ ଏକର ଜମି । ଶହେ ମୁଣ୍ଡ ଗୋରୁ ମଇଁଷି । ମେଣ୍ଢା ପ୍ରାୟ ଷାଠିଏ ମୁଣ୍ଡ, ବଡ଼ ଲମ୍ବା ଘର । ମାଲକାନଗିରି ଜିଲ୍ଲାର ଖାନ୍‌ଦାନୀ କୋୟା ପରିବାରମାନଙ୍କରେ ତାର ଜ୍ଞାତି କୁଟୁମ୍ବ ଅନେକ । ୨୦୦୦ ମସିହାର ଆଦ୍ୟଭାଗର ଘଟଣା । ପ୍ରଥମେ ଦେବାର ପୁଅ ଭୀମା, ବୟସ ୨୫/୨୬ ହେବ, ହଠାତ ମୃତ୍ୟୁବରଣ କଲା । ତାର ୮ ଦିନ ପରେ ଦେବାର ସାନଭାଇ, ଇର୍‌ମା, ବୟସ ୩୫, ହଠାତ୍ ମରିଗଲା । ତାର ସପ୍ତାହକ ପରେ ନିଜେ ଦେବା ମରିଗଲା । ଦେବା ମରିବାର ୧୫ଦିନ ପରେ ଦେବାର ସ୍ତ୍ରୀ, ବୟସ ୪୦, ମୃତ୍ୟୁବରଣ କଲା । ସମସ୍ତେ ପ୍ରଥମେ ଭାବିଥିଲେ ଯେ କିଛି ଅଜଣା ରୋଗରେ ଏସବୁ ମୃତ୍ୟୁ ଘଟୁଛି । କିନ୍ତୁ ପରେପରେ ୪ଜଣ ମରିଯିବାରୁ ଲୋକେ ପାଙ୍ଗନ୍ ସନ୍ଦେହ କଲେ । କୌଣସି ବଡ଼ ଗୁଣିଆ ପାଖକୁ ଯିବା ପୂର୍ବରୁ ହଠାତ୍ ଜଣେ ପାଙ୍ଗନିଆ ଆସି ପହଞ୍ଚିଗଲା ଓ ପ୍ରକାଶ କଲା ଯେ ସେ କୁଦାଲ୍ ପାଙ୍ଗନ୍ କରି ଏ ସମସ୍ତଙ୍କୁ ମାରି ଦେଇଛି । ଆଉ ମଧ ଅନ୍ୟମାନଙ୍କୁ ମରାଇବା ପାଇଁ ଉପାୟୀପାଙ୍ଗୁନ୍ କରିଛି । ଯଦି ପାଙ୍ଗୁନ୍ କରିଛୁ । ତୁ ନିଜେ କେମିତି ଏକଥା ପ୍ରକାଶ କରୁଛୁ ? ଲୋକେ ପ୍ରଶ୍ନ କଲେ । ସେ ଉତ୍ତର ଦେଲା ଯେ, ଯେଉଁ ବ୍ୟକ୍ତିମାନେ ଏହି ପାଙ୍ଗନ୍ ପାଇଁ କହିଥିଲେ, ସେମାନେ ତାର ପ୍ରାପ୍ୟ ୧୦ହଜାର ଟଙ୍କା ଓ ୪ଟା ବଳଦ ଦେଉ ନାହାନ୍ତି । ସେ ବ୍ୟକ୍ତିମାନଙ୍କର ନାମ ମଧ ପ୍ରକାଶ କଲା । ସେମାନେ ହେଉଛନ୍ତି

ଛଅଜଣ । କୋୟାଗୁଡ଼ାର ଦଶ ଜଣ ସେମାନେ ହେଲେ ବାଗା ପଡ଼ିଆମି, ଭୀମା ପଡ଼ିଆମୀ, ଉସ୍‌କା ପାଲିର ଦୁଇଜଣ ଭୀମା କରସ୍ତା ଓ ଆଡ଼ମା ସୋଡ଼ି । ଏହି ଦୁଇଟି ଗାଁ ଯଥାକ୍ରମେ କାମ୍‌ବେଡ଼ା ଓ ଚିମ୍‌ଟାପାଲୀ ଗ୍ରାମ ପଞ୍ଚାୟତର । ଏହିସବୁ ବ୍ୟକ୍ତିମାନଙ୍କୁ ସେହି ଗାଁମାନଙ୍କରୁ ଧରି ଅଣାଗଲା । ସେମାନେ ନିଜର ଦୋଷ ସ୍ୱୀକାର କଲେ ଏବଂ ପଞ୍ଚାୟତ ଯାହା ଜୋରିମାନା କଲା, ତାହା ଦେଇଦେବାକୁ ରାଜି ହେଲେ । ଏହି ପଞ୍ଚାୟତରେ ମାଲକାନଗିରି ଜିଲ୍ଲାର ବନ୍ଧୁ କୋୟା ଗାଁରୁ ଇରାଲ ଗନ୍ଧିଠାରୁ ମୋଟୁ ପର୍ଯ୍ୟନ୍ତ ପ୍ରାୟ ଏକ ହଜାର ବଡ଼ବଡ଼ିଆ ଓ ମୁଖିଆମାନେ ଆସିଥିଲେ । ମାଲକାନଗିରି ଜିଲ୍ଲାର ସବୁଠାରୁ ବଡ଼ ଓ୍ୱାଡ଼େ ତୁଙ୍ଗା ମାର୍କ ଗାଁର ଜଗା ଓ୍ୱାଡ଼େ ମଧ୍ୟ ଯୋଗ ଦେଇଥିଲା । ସେମାନେ ପାଙ୍ଗ୍‌ନିଆକୁ ଧରି ଉପାୟୀ ପାଙ୍ଗନ୍‌ର ସୂତ୍ର ଖୋଜିବାକୁ ଚେଷ୍ଟା କଲେ । ସେ ପାଙ୍ଗନିଆ ସଂପୂର୍ଣ୍ଣ ଉଲଗ୍ନ ହୋଇ ଏଣେତେଣେ ଘୁରି ବୁଲିଲା । କିନ୍ତୁ ସୂତ୍ର ଖୋଜି ଦେଖେଇଲା ନାହିଁ । ପୁରା ଦିନଟା ବିତିଗଲା । ଶେଷରେ ମାଡ଼ ହେବାରୁ ସେ ଗାଁମୁଣ୍ଡ ଶ୍ମଶାନକୁ ଯାଇ ମାଟି ଖୋଳି ସେଠାରେ ପୋଡ଼ା ହୋଇଥିବା ଏକ ତୀରବିଦ୍ଧ କଣ୍ଢେଇ ସମସ୍ତଙ୍କୁ ଦେଖେଇଲା । ଲୋକେ କହନ୍ତି ସେ କଣ୍ଢେଇ ଜୀବନ୍ୟାସ ପାଇଯାଇଥିଲା । ଧରୁ ଧରୁ ତା ଦେହରୁ ରକ୍ତ ବୋହିଲା । ତାକୁ ଗୋଟିଏ ନୂଆ ହାଣ୍ଡିରେ ରଖାଗଲା । ତାପରେ ପାଙ୍ଗନିଆର ବିଚାର ହେଲା । ବଡ଼ ଓ୍ୱାଡ଼େର ଗୋଟିଏ ମନ୍ତ ତ ଚାପଡ଼ାରେ ସେ ମଳତ୍ୟାଗ କରିଦେଲା । ସେ ମଳକୁ ତାକୁ ଖୁଆଇ ଦିଆଗଲା ଓ ମାଡ଼ମାରି ତାର ଗୋଟିଏ ଦାନ୍ତ ଭାଂଗି ଦିଆଗଲା । ପାଙ୍ଗନିଆର ଦାନ୍ତଭାଂଗି ତାକୁ ନିଜ ମଳ ଖୁଆଇ ଦେଲେ, ତାର କୌଣସି ପାଙ୍ଗନ୍ ଆଉ କାମ କରେ ନାହିଁ । ଶକ୍ତିହରା ସେଇ ପାଙ୍ଗନିଆ ଏବେ ମଧ୍ୟ ବଞ୍ଚିଚି । ତାର ନାମ ଶୁକାବଟେ । ଘର କାଲିମେଲା ଗ୍ରାମପଞ୍ଚାୟତର ପାର୍କ ମେଡ୍‌ଲୁ ଗ୍ରାମ ।

ଏହାପରେ ଯେଉଁ ଛଅଜଣ ବ୍ୟକ୍ତି ପଞ୍ଚାୟତରେ ନିଜର ଦୋଷ ମାନିଥିଲେ । ସେମାନଙ୍କୁ ଦଣ୍ଡ ଦିଆଗଲା । ଏଥିପାଇଁ ଦେବା ମାଡ଼କାମି ପରିବାରର ପ୍ରତି ମୃତ ବ୍ୟକ୍ତିପାଇଁ ଆଠ ଏକର ଜମି ଓ ଚାରିଟା କରି ବଳଦ ନିଆଗଲା । ତତ୍ ସଂଗେସଂଗେ ଉପସ୍ଥିତ ପ୍ରାୟ ହଜାରେ ବ୍ୟକ୍ତିଙ୍କର ୧୫ ଦିନରେ ଖାଇବା ପିଇବା ବାବଦକୁ ୫୦୦୦ କରି ଟଙ୍କା, ଦୁଇବସ୍ତା ଲେଖାଏଁ ଚାଉଳ ଓ ଦୁଇ ଦୁଇଟା ଛେଳି ଜରିମାନା ଆକାରରେ ଦେଲେ । ପଞ୍ଚାୟତର ଏହି ବିଚାର ପର୍ବ ପନ୍ଦର ଦିନରେ ସମାପ୍ତ ହେଲା । ଦେବାର ଜଣେ ଭାଇ ଓ ତିନିଜଣ ପୁଅ ଓ ଭାଇର ତିନିଜଣ ପୁଅ, ବର୍ତ୍ତମାନ ଏହି ସଂପତ୍ତି

ଭୋଗ ଦଖଲ କରୁଛନ୍ତି । (ସଂଗୃହୀତ : ସଦାଶିବ ହନ୍ତାଳ, ଡୁଟେଲ୍ ଗୁଡ଼ା) ଝିଅ ଦେଲା ବେଳେ ଝିଅ ଘର ଗାଁ ନାୟକ ପୁଅ ଘର ଲୋକଙ୍କୁ କହନ୍ତି, 'ମନ୍ ନ ପୁରିବେ ଦାରୀ ଏଇସି, ପେଟ୍ ନ ପୁରିଲେ ଚୋରୀ ଏଇସି, ପାଙ୍ଗନ୍ କଥା ମାତର୍ ଆମର୍ ଲୋଗେ ନାଇଁ ।'

ପଷି ନ ପାରିଲେ ସିନା ଆମର ଗରେ ଛାଡ଼ି ଦେ
ଯାର ଗରେ ଗଲେ ଗର୍ ଦେଖାଇ ଦେବୁ ।
ଯଦି ମରିଯିବ, ମସାନ୍ ଦେଖାଇ ଦେବୁ ।"

ପାଙ୍ଗନ୍ ପ୍ରତି ଲୋକମାନଙ୍କର ଥିବା ଘୃଣା ଏଇ ଲୋକୋକ୍ତିରୁ ସୁସ୍ପଷ୍ଟ । ଏହା ବିରୁଦ୍ଧରେ ଯେଉଁ ହେତୁବାଦୀ ଆନ୍ଦୋଳନ ହେବା କଥା ଅବିଭକ୍ତ କୋରାପୁଟରେ ଏଯାବତ୍ ହୋଇନାହିଁ ।

୨୨. **ପାଙ୍ଗନବୀରୁ** - *ଦେ.ବି.* : ପାଙ୍ଗନ୍ ସଂକ୍ରାନ୍ତୀୟ ପୂଜା ବିଶେଷ । ଯେତେବେଳେ ଦିସାରୀ ଦେଇଥିବା ଜଡ଼ିବୁଟି, ଚେର, ମୂଳିକା, ଔଷଧ ଖାଇ ମଧ କୌଣସି ବ୍ୟକ୍ତିର ରୋଗ ଭଲ ହୁଏ ନାହିଁ, ସେତେବେଳେ ତାକୁ କେହି ପାଙ୍ଗଣ କରିଛି (ଗୁଣି କରିବା / ପେଷଣ କରିବା ଆଦି) ବୋଲି ବିଶ୍ୱାସ କରି, ପାଙ୍ଗଣକୁ ନଷ୍ଟ କରିବା ପାଇଁ ଏକ ଉଇହୁଙ୍କା ନିକଟରେ ପାଙ୍ଗନ୍ ବୀରୁ କରାଯାଏ । ଫଳରେ ପାଙ୍ଗାନ୍ କଟିଯାଏ ବୋଲି ବିଶ୍ୱାସ ।

୨୩. **ପାଙ୍ଗନିଆନୀ** - *ଦେ.ବି.* : ଡାହାଣୀ : ମହିଳା ତନ୍ତ୍ର ସାଧିକା : ଇଂ- Witch.

ତନ୍ତ୍ରବିଦ୍ୟା ଶିକ୍ଷାକରି ରାତିରେ ଗୋଡ଼ ଦୁଇଟି ଉର୍ଦ୍ଧ୍ୱକୁ କରି ହାତ ଦୁଇଟିରେ ଚାଲୁଥିବା, ମଳ ଖାଉଥିବା ଓ ଚାଳ ଉପରୁ ସୂତା ଲମ୍ବାଇ ଶୋଇଥିବା ଲୋକ ଦେହର ରକ୍ତ ଶୋଷି ନେଉଥିବା ଏବଂ ତନ୍ତ୍ର ବିଦ୍ୟା ପ୍ରୟୋଗ କରି ଅପରର ଅନିଷ୍ଟ ସାଧନ କରିପାରୁଥିବା ସ୍ତ୍ରୀକୁ ପାଙ୍ଗନିଆଣି ବା ପାଙ୍ଗିଣିଆଣୀ (ଡାହାଣୀ) କହନ୍ତି । କିନ୍ତୁ ବାସ୍ତବରେ ଏଭଳି ବିଶ୍ୱାସ ପଛରେ ନାରୀମାନଙ୍କ ପ୍ରତି ସମାଜରେ ଥିବା ତାସଲ୍ୟ ଭାବ ମୁଖ୍ୟ ସ୍ଥାନ ଅଧିକାର କରିଛି । ବାସ୍ତବରେ ପାଙ୍ଗନକାରୀ ଓ ପଙ୍ଗିନିଆନୀ ଭିତରେ ବିଶେଷ ଫରକ ନଥାଏ ।

କୌଣସି ଅଚିହ୍ନା ରୋଗରେ ଶିଶୁମାନଙ୍କର ବା ଗୋରୁ ମଇଁଷିର ମୃତ୍ୟୁ ହେଲେ ଆଦିବାସୀ ପ୍ରଥମେ ସନ୍ଦେହ କରେ ପାଙ୍ଗନକାରୀ ବା ପାଙ୍ଗନିଆନୀକୁ । କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତି ପ୍ରତି ଅଭିଯୋଗ ବା ସନ୍ଦେହ ଥିଲେ, ସଂଗେସଂଗେ ପଞ୍ଚାୟତ ଡକାଯାଏ । ଅର୍ଥଦଣ୍ଡ ଓ ମାଡ଼ ଦିଆଯାଉଥିବା ବେଳେ ପାଙ୍ଗିନଆନୀ ମାନଙ୍କୁ ନିର୍ମମ ମୃତ୍ୟୁଦଣ୍ଡ ଦିଆଯାଏ, କିମ୍ବା ଗାଁରୁ ବହିଷ୍କାର ବା ବାଛନ୍ଦ କରାଯାଏ । ଏଥିପାଇଁ ସାକ୍ଷୀ ପ୍ରମାଣ ଦରକାର ପଡ଼େନାହିଁ ।

୨୪. **ପାଙ୍ଗି** - *ଦେ.ବି. :* ଗୃଧ୍ର ବା ଶାଗୁଣା - ଇଂ- Vulture. ଏହା ଏକପ୍ରକାର କନ୍ଧ ଆଦିବାସୀ ଗୋଷ୍ଠୀର ସଂଜ୍ଞା । ଏହି ସଂଜ୍ଞାର ଲୋକମାନେ ଶାଗୁଣା ବଂଶ ବା ଗୋତ୍ରୀ ଭାବେ ପରିଚିତ ହୋଇଥାନ୍ତି ।

୨୫. **ପାଜର୍** - *ଦେ.ବି. :* ପରବ ସମୟରେ ସଂଗୃହୀତ ଇନାମ୍ ।

ଚୈତ୍ର ପର୍ବ ସମୟରେ ଗାଁରେ କିଶୋରକିଶୋରୀ ଓ ଯୁବକଯୁବତୀମାନେ ବାଟରେ ବାଡ଼ି ପକାଇ ଜଗିଥାନ୍ତି । ଯିଏ ସେଇ ବାଟ ଦେଇଗଲା, ତା'ଠାରୁ ପାଉଣା ଟଙ୍କା ବା ଉପହାର ଆଦାୟ କରନ୍ତି । ରାସ୍ତାରେ ଯାଉଥିବା ଗାଡ଼ି, ମଟର, ମଟରସାଇକେଲ୍, ସାଇକେଲ୍ ଓ ବାଟୋଇ ମାନଙ୍କୁ ଫୁଲ ଓ ଅରୁଆଚାଉଳ ଦେଇ ଏମାନେ ନିଜର ଶ୍ରଦ୍ଧା ଜଣାନ୍ତି । ନାଟ ଓ ଗୀତ ମାଧ୍ୟମରେ ପରବର ସନ୍ଦେଶ ଦିଅନ୍ତି । ପ୍ରତିବଦଳରେ ସେମାନେ ଟଙ୍କା / ଦୁଇଟଙ୍କା କରି ପାଜର୍ ନିଅନ୍ତି । ଏହି ପରବ ସମୟରେ ଗାଁର କିଏ ଯଦି କଳିଗୋଳ ଲାଗିଲା, ମାଟି ଖୋଳିଲା, ଶଗଡ଼ ବୁଲାଇଲା, ଧାନ କୁଟିଲା କିମ୍ବା ମାଣ୍ଡିଆ ଘୁରାଇଲା ତା'ଠାରୁ ଜୋରିମାନା ଆକାରରେ ଟଙ୍କା ଓ କୁକୁଡ଼ା ଆଦାୟ କରାଯାଏ । ଏ ସମସ୍ତ ପାଜର ବା ଜୋରିମନା ଅର୍ଥ ପରବ ଶେଷରେ ପାଜର୍ ଭୋଜିରେ ଖର୍ଚ୍ଚ କରାଯାଏ ।

୨୬. **ପାଞ୍ଜିଆ କୁପୁଲି - ପାଞ୍ଜିଆ ମୁଣ୍ଡା** - *ଦେ.ବି. :* ମାତିଲି ବ୍ଲକ୍‌ର ସର୍ଗିଗୁଡ଼ା ଠରେ ଥିବା ଏକ ଛୋଟ ପାହାଡ଼ ଓ ଏକ ମୁଣ୍ଡାର ନାମ । ଏ ସଂପର୍କରେ କଥିତ ଅଛି ଯେ, ହାଲବି ଜାତିର ଜଣେ ବଡ଼ ଦିଶାରୀ ଥିଲେ । ସେ ସବୁବେଳେ ପାଞ୍ଜି ଦେଖୁଥିଲେ ଏବଂ ହାଲ୍‌ବି ଜାତିର ସମସ୍ତ ଗାଁ ପାଇଁ ତିଥି, ବାର, ନକ୍ଷତ୍ର ସ୍ଥିର କରୁଥିଲେ । ତେଣୁ ତାଙ୍କ ପାଖକୁ ବିଭିନ୍ନ ଆଡୁ ଲୋକମାନେ ନିୟମିତ ଆସୁଥିଲେ । ତାଙ୍କର ନାତି ମଧ୍ୟ

ଦିଶାରୀ କାମ କରୁଥିଲେ । ଏବେ ତାଙ୍କର ବଂଶରେ କେହି ଦିଶାରୀ ନାହାନ୍ତି । କିନ୍ତୁ ସେହି ପାଞ୍ଜିକାର ବୁଢ଼ାଙ୍କ ନାମ ଅନୁସାରେ ସର୍ଗିଗୁଡ଼ା ପାଖରେ ଥିବା ଗୋଟିଏ କୁପୁଲି ଓ ମୁଣ୍ଡାର ନାମକରଣ ହୋଇଛି ପାଞ୍ଜିଆ କୁପୁଲି ଓ ପାଞ୍ଜିଆ ମୁଣ୍ଡା । ଏହି ପାଞ୍ଜିଆର୍ ରହୁଥିଲେ ସର୍ଗୀଗୁଡ଼ାରେ । ତାଙ୍କର ମୂଳ ନାମ ସମସ୍ତେ ଭୁଲି ଯାଇଛନ୍ତି । ରହିଯାଇଛନ୍ତି ପାଞ୍ଜିଆରର ନାମ ।

୨୭. **ପାଞ୍ଜିଆର: ପାଞ୍ଜିଆ / ପାଞ୍ଜି କାରିଆ** - *ଦେ.ବି. :* ଜ୍ୟୋତିଷ / ଦିସାରୀ : ଯେଉଁ ବ୍ୟକ୍ତି ପଞ୍ଜି ଦେଖି ନାମ ଧରାନି (ନାମକରଣ), ବିବାହ, ଲଗ୍ନ ନିର୍ଣ୍ଣୟ, ବିହନ ସଂଗ୍ରହ କରିବା, ବୁଣିବା, ଧାନ କାଟିବା, ମଳିବା ଆଦିର ତିଥି ବା ଶୁଭ ମୁହୂର୍ତ୍ତ ସ୍ଥିର କରନ୍ତି । ତାଙ୍କୁ 'ପାଞ୍ଜିଆର' ବୋଲି କୁହାଯାଏ । ଲଗ୍ନଧରୁ ଥିବାରୁ ଲଗନ୍ କାରିଆ ବୋଲି ମଧ୍ୟ କୁହାଯାଏ ।

୨୮. **ପାଞ୍ଜିଆ ଭାଇ** - *ଦେ.ବି. :* ଗତର ପର୍ବର ଜଣେ ବିଶିଷ୍ଟ କର୍ତ୍ତା । ଗଦବା ମାନଙ୍କରେ ଗତର (ବିରାଟ ସାମୂହିକ ଶ୍ରାଦ୍ଧକ୍ରିୟା) ସମୟରେ ଅନ୍ୟ ଗ୍ରାମର ଜଣେ ଲୋକଙ୍କୁ ପାଞ୍ଜିଆ ଭାଇ ଅର୍ଥାତ୍ ଧରମ ଭାଇ ରୂପେ କରାଯାଇଥାଏ । ସେ ଢୋଲ, ଟମକ, ବଜାଇ ମଦ, ସଲପ ଓ ପେଣ୍ଡମ୍ ଧରି ଗତର ମେଲିବା ଲୋକର ଘରକୁ ଆସିଥାଏ । ରାତିସାରା ତା'ର ବନ୍ଧୁକୁଟୁମ୍ବଙ୍କ ସହ ନାଟକରେ । ଗତର ସରିବା ପରେ ଗତର ମେଳାଇବା ଘରର ମୃତ ବ୍ୟକ୍ତିଙ୍କ ନାମରେ କିଣାଯାଇ ଥିବା ପୋଢ଼ମାନଙ୍କୁ ମାଗଣାରେ ନିଜ ଘରକୁ ନିଏ ।

୨୯. **ପାଟ୍ ଖଣ୍ଡା : -** *ଦେ.ବି. :* ବଣ୍ଡା ମାନଙ୍କର ଦେବତା । ବଣ୍ଡାମାନଙ୍କ ମହାପ୍ରଭୁଙ୍କ ପ୍ରତୀକ ଖଣ୍ଡା । ଇଂ- The Sacred Sword. ମୁଦୁଲି ପଡ଼ା (ବଣ୍ଡାଘାଟି)ରେ ଏହି ପାଟଖଣ୍ଡା ପ୍ରଭୁ ପର୍ବତ ଉପରେ ଥିବା ବରଗଛ କୋରଡ଼ରେ ବାସ କରନ୍ତି । ବର୍ଷକୁ ଥରେ ଏହି ପାଟଖଣ୍ଡାଙ୍କୁ ତଳକୁ ଓହ୍ଲାଇ ପୂଜା କରାଯାଏ । ଏହି ପୂଜା ମାଘ ମାସରେ ଅନୁଷ୍ଠିତ ହୁଏ । ଠିକ୍ ମାଘ ପୂର୍ଣ୍ଣମୀଦିନ ମୁଦୁଲି ପଡ଼ାର ବଡ଼ନାୟକ ବା ଶିଶା ପାଟଖଣ୍ଡା ମହାପ୍ରଭୁଙ୍କୁ ବରଗଛ କୋରଡ଼ରୁ ଓହ୍ଲାଇ ସୀତାକୁଣ୍ଡର ପାଣିରେ ସ୍ନାନ କରାନ୍ତି । ତାପରେ ପୋଢ଼ବଳି ଓ ପୂଜା ଦିଆଯାଏ । ପରେପରେ ବିହନ ଅନୁକୂଳ ହୁଏ । ଭୋଜିଭାତ ଓ ନାଚଗୀତ ସଂଗେସଂଗେ ସପ୍ତାହ ବ୍ୟାପୀ ପାଟଖଣ୍ଡା ଯାତ୍ରା

ଅନୁଷ୍ଠିତ ହୁଏ । ଯାତ୍ରାପରେ ଏହି ପାଟଖଣ୍ଡା ମହାପ୍ରଭୁଙ୍କୁ ପୁଣି ନେଇ ତାଙ୍କ ଆସ୍ଥାନ / ଭରଗଛ କୋରାଡ଼ରେ ରଖି ଦିଆଯାଏ । ବଣ୍ଡାମାନଙ୍କର ଇଷ୍ଟଦେବୀ ବା ବୁଣ୍ଡିଦେବୀ ଏହି ପାଟଖଣ୍ଡାଟି ବଣ୍ଡାମାନଙ୍କୁ ଦେଇଥିଲେ ବୋଲି ବିଶ୍ୱାସ । ଭେରିୟର୍ ଏଲଓ୍ୱିନ୍‌ଙ୍କ ମତରେ ଏହି ଖଣ୍ଡାଟିକୁ ବୁଣ୍ଡିଦେବୀ ବ୍ୟବହାର କରୁଥିଲେ । ଅନ୍ୟଏକ ମିଥ୍ ଅନୁଯାୟୀ ଜୟପୁରର ଜଣେ ରାଜକୁମାର ଏଠାରେ ଆତ୍ମଗୋପନ କରିଥିବା ସମୟରେ ଏହି ଖଣ୍ଡାଟି ବ୍ୟବହାର କରୁଥିଲେ ଓ ଶ୍ରଦ୍ଧାର ଚିହ୍ନରୂପେ ବଣ୍ଡାମାନଙ୍କୁ ଦେଇଥିଲେ ।

୩୦. ପାଟା (୧) - *ଦେ.ବି. :* ସ୍ତ୍ରୀମାନେ ପିନ୍ଧିବା ହାତବୁଣା ଶାଢ଼ି । ଦୁରୁଆମାନଙ୍କ ଦ୍ୱାରା ତନ୍ତବୁଣା ଯାଉଥିବା, ବାନ୍ଧଥିବା, ଗାଢ଼ବାଦାମୀ କଫି ରଂଗର ଧଡ଼ି ଓ ମୁହଁଥିବା ମୋଟା ଧଳାରଂଗର ଶାଢ଼ି । ପର୍ବପର୍ବାଣୀ ସମୟରେ ଦୁରୁଆ ସ୍ତ୍ରୀ, ବିଶେଷତଃ ଯୁବତୀମାନେ ଏହା ପିନ୍ଧିବାକୁ ବିଶେଷ ପସନ୍ଦ କରିଥାନ୍ତି । (ସମ୍ବନ୍ଧ : କୋଟପାଡ଼ ଅଞ୍ଚଳର 'ମିରିଗାନ' ମାନଙ୍କ ବାନ୍ଧ ବସ୍ତ୍ର) ଇଂ.- Saree

ପାଟା (୨) - ଗୀତ । ବିଶେଷକରି କୋୟା, ଓ ଗଣ୍ଡ ସଂପ୍ରଦାୟରେ ଗୀତକୁ ପାଟା ବୋଲି କୁହାଯାଇଥାଏ । ଇଂ.- Songs

ଉଦାହରଣ : ସେଲାରେଲା ପାଟା (ବିବାହ କାଳୀନ ଗୀତ) । ଲେଙ୍ଗା ପାଟା (ଜୀବନ ଧର୍ମୀ ଗୀତ) । ରେଲୋପାଟା, ରେରେଲୋ ପାଟା (ବିବାହ ଗୀତ) । ମଣ୍ଡଲ ପାଟା, (ମୃତ୍ୟୁଗୀତ) ଦେଓ ପାଟା (ଦେବତା ସମ୍ବନ୍ଧୀୟ ଗୀତ)

ପାଟା (୩) - *ଦେ.ବି. :* ଦୁରୁଆମାନଙ୍କ କଥିତ ଭାଷା । ଇଂ.- Durua Dialeet ଦୁରୁଆମାନେ ବ୍ୟବହାର କରୁଥିବା ଭାଷାକୁ 'ଦୁରୁଆପାଟା' ବୋଲି କୁହାଯାଏ ।

୩୧. ପାଟି - *ଦେ.ବି. :* ପାଉଁଜ । ଇଂ- An ornament than adorns the foot.

ସାଧାରଣତଃ ଏହା ରୂପା, ସିଲଭର ବା ଟିଣରେ ତିଆରି ହୋଇଥାଏ । ଭାଷାରେ ବ୍ୟବହାର : ଡୋକ୍ରିମନ୍ ସବୁବେଳେ ପାଟି ପନ୍ଧିବାୟ ସିନା ଦାଙ୍ଗଡ଼ି ଟୋକି ଅଦିକ୍ ପିନ୍ଧବାୟ ।

୩୨. **ପାଟେଇ / ଫାଟେଇ** - *ଦେ.ବି.* : ସ୍ତ୍ରୀ ମାନଙ୍କର ପିନ୍ଧା ଲୁଗା । ଇଂ- Women's Clothings. ଆଦିବାସୀ ରମଣୀମାନେ ବିଭିନ୍ନ ରଂଗର ଲୁଗା ବଜାରରୁ କିଣି ପରିଧାନ କରିଥାନ୍ତି । ଏମାନେ ସାଧାରଣତଃ ଗାଢ଼ ଲାଲ, ସବୁଜ, ହଳଦିଆ ରଂଗର ଲୁଗା ପିନ୍ଧିବାକୁ ପସନ୍ଦ କରିଥାନ୍ତି । ଏସୁବୁକୁ କୁହାଯାଏ 'ପାଟେଇ' ବା 'ଫାଟେଇ' । (ଦ୍ରଷ୍ଟବ୍ୟ : ପାଚିଆ ।)

୩୩. **ପାଣ୍ଡୁମ୍ / ପାଣ୍ଡୁ** - *ଦେ.ବି.* : ପର୍ବପର୍ବାଣୀ । ଇଂ. - Festivals

କୋୟା ସମାଜର ମୁଖ୍ୟପର୍ବ ହେଲା ଓ୍ଵିଜା ପାଣ୍ଡୁମ୍ (ଚୈତ୍ର ପର୍ବ), ଲଡ଼ତା ପାଣ୍ଡୁମ୍ ବା କୁରୁମ୍ ପାଣ୍ଡୁ (ଧାନ ନୂଆଖିଆ ପର୍ବ), ମାର୍କା ପାଣ୍ଡୁମ୍ (ଆମ୍ବପର୍ବ) ବିମୁଡୁ ପାଣ୍ଡୁମ୍ (ମହୁଲ ପର୍ବ), ଚିକୁଡ଼ ପାଣ୍ଡୁମ୍ (ଶିମ୍ବ ପର୍ବ) ଇତ୍ୟାଦି । ପର୍ବ ପାଳନର ଉଦ୍ଦେଶ୍ୟ ହେଲା ଧରିତ୍ରୀ ମାତା ଓ ଗ୍ରାମଦେବୀଙ୍କ ପୂଜା କରି ବଳିଦେଇ ସନ୍ତୁଷ୍ଟ କଲେ ଗ୍ରାମବାସୀ ମାନଙ୍କୁ ପିଲାଝିଲା ପଶୁ ସଂପତ୍ତିକୁ ଡୁମା, ପ୍ରେତାତ୍ମା କିମ୍ବା ହିଂସ୍ରଜନ୍ତୁମାନେ ନଷ୍ଟ କରିବେ ନାହିଁ ।

(୧) ଓ୍ଵିଜା ପାଣ୍ଡୁମ୍ (ଓ୍ଵିଜା-ବୀଜା/ବିହନ) ପର୍ବ । ଚୈତ୍ର ମାସରେ ପାଳନ କରାଯାଏ । ସମ୍ବନ୍ଧ : ବୀଜ୍ ପୁଟନି ପର୍ବ । (ଗଣ୍ଡପର୍ବ) । ଏହି ପର୍ବ ଦୀର୍ଘ ଆଠଦିନ ଧରି ପାଳନ କରାଯାଏ । ପୁରୁଷମାନେ ଶିକାର (ବେଣ୍ଟ କରିବାକୁ ଯାଆନ୍ତି) । ପରେପରେ ଫୁଲବେଣ୍ଟ କରାଯାଇ ଏହାର ଉଦ୍‌ଯାପନ ହୁଏ ।

(୨) ଲଡ଼ତା ପାଣ୍ଡୁମ୍ (ଧାନ ନୂଆଖିଆ ପର୍ବ) : ଭାଦ୍ରବ ଆଶ୍ୱିନ ମାସରେ ପାଳନ କରାଯାଏ । ବର୍ଷର ଫସଲ ଗ୍ରାମଦେବୀଙ୍କୁ ଅର୍ପଣ କଲାପରେ ଘରେଘରେ ବ୍ୟବହାର କରାଯାଏ ।

୩. ମାର୍କା ପାଣ୍ଡୁମ୍ (ଆମ୍ବପର୍ବ): ଚୈତ୍ରପର୍ବ ଦିନ ବା ସେହି ମାସର ଅନ୍ୟ କୌଣସି ଶୁଭ ଦିନ ଦେଖି କୋୟାମାନେ ଆମ୍ବପର୍ବ ପାଳନ କରନ୍ତି । ଏହି ପର୍ବଦିନ ନିଜ ଘରର ଇଷ୍ଟଦେବୀ ତଥା ଡୁମା ବା ପିତୃପୁରୁଷ (ପ୍ରେତାତ୍ମା)ଙ୍କୁ ଆମ୍ବପୂଜା ଅର୍ପଣ କଲାପରେ ପରିବାରର ସମସ୍ତେ ପ୍ରଥମ ପରି ଆମ୍ବ ଖାଇଥାନ୍ତି ।

୪. ବିମୁଡୁ ପାଣ୍ଡୁମ୍ (ମହୁଲ ପର୍ବ) : ଏହି ପର୍ବ ସାଧାରଣତଃ ମାଘ ଓ ଫାଲ୍‌ଗୁନରେ ପାଳନ କରାଯାଇଥାଏ, ମହୁଲ ଫୁଲ ଝଡ଼ିବା ସମୟରେ ଏହା କରାଯାଏ । ଏହି

ପର୍ବଦିନ ଗାଁ ବାହାରେ ପୁଷ୍ପିତ ମହୁଲ ମୂଳରେ ଗାଁ ସାରା ଲୋକ ଅନେକ ପ୍ରକାର ବିହନୁ କୁଢ଼େଇ ଦିଅନ୍ତି । ପୂଜେର୍ (ଗ୍ରାମ ପୂଜାରୀ) ପୂଜାକରେ । କୋୟାମାନେ ଏହି କର୍ମାନୁଷ୍ଠାନକୁ 'ଗାଆଜେତ୍ ସାନାଦ୍' କହନ୍ତି । ଏ ପୂଜାର ଉଦ୍ଦେଶ୍ୟ ହେଲା ଧରିତ୍ରୀ ମା ସନ୍ତୁଷ୍ଟ ହୋଇ ବେଶି ମହୁଲ ଫୁଲ ଓ ଫଳ ଗଛରେ ଦିଅନ୍ତୁ ।

(୫) ଚିକୁଡ଼ ପାଣ୍ଡୁମ୍ (ଶିମ୍ବପର୍ବ) : ପ୍ରତିବର୍ଷ ମକର ସଂକ୍ରାନ୍ତି ଦିନ କୋୟାମାନେ ଶିମ୍ବପର୍ବ ପାଳନ କରନ୍ତି । ଡୁମା ଓ ଦେବତାଙ୍କୁ ଅର୍ପଣ କରି ନୂଆ ଶିମ୍ବ ଖାଇଥାନ୍ତି ।

୩୪. ପାଣ୍ଡରି ମେଘ - *ଦେ.ବି. :* ଧୂସର ମେଘ, ଧଳାମେଘ : ଏହି ମେଘ ବର୍ଷା ଦିଏ ନାହିଁ । ଇଂ. - White Cloud ଏ ସଂପର୍କରେ ପ୍ରବାଦ :

ପାଣ୍ଡରି ମେଘର ପାନି

ଗୁନକେ ନାଇ ଜାନି ।

୩୫. ପାଣ୍ଡୋଇଚୂଆଁ - *ଦେ.ବି. :* ଚୂଆ ଭିତରେ ଥିବା ପାଣ୍ଡୋଇ ଆକୃତିର ପଥର । ବୈପାରୀଗୁଡ଼ା ବ୍ଲକ୍ ମାଝୀଗୁଡ଼ା ଗ୍ରା:ପ:ର ମାଝିଗୁଡ଼ା ଓ ଭାଟିପଡ଼ା ବାଉଁଶଗୁଡ଼ା ପାଖରେ ଏକ ବିରାଟ ପାହାଡ଼ ଅଛି । ପାହାଡ଼ ଶୀର୍ଷ ଭାଗରେ ଏକ ଛୋଟ କୁଣ୍ଡ ଅଛି । ଉକ୍ତ କୁଣ୍ଡ ଭିତରେ ପାଣ୍ଡୋଇ ଆକୃତିର ଦୁଇଟି ପଥର ଅଛି । ଏହି ଅଞ୍ଚଳର ଲୋକମାନେ ଏହି ପଥର ପାଦୁକା ଦୁଇଟିକୁ ପୂଜା କରିଥାନ୍ତି । ଏହାକୁ କୁହାଯାଏ 'ପାଣ୍ଡୋଇ ଚୂଆଁ' ।

୩୬. ପାଦପାନି - *ଦେ.ବି. :* ଜାତି ପ୍ରାୟଶ୍ଚିତ୍ତ ଅନୁଷ୍ଠାନରେ ବ୍ୟବହୃତ ପାଣି । ଆଦିବାସୀ ସମାଜରେ ଅଜାତିଆକୁ ଜାତିରେ ମିଶାଇବା ବେଳେ ଭାତ ନାଇକ ଯେଉଁ ପାଣି କୁଟୁମ୍ବ ଲୋକଙ୍କୁ ପିଇବାକୁ ଦିଏ ତାକୁ 'ପାଦପାନି' କୁହାଯାଏ । (ଦ୍ରଷ୍ଟବ୍ୟ : ପାନିମିଶାନି ।)

୩୭. ପାନିଆ - *ଦେ.ବି. :* ମୁଣ୍ଡ କୁଣ୍ଡଶଇବା ପାଇଁ ବ୍ୟବହୃତ କାଠ, ପ୍ଲାଷ୍ଟିକ ବା ଶିଙ୍ଗ ନିର୍ମିତ ଚିରୁଣୀ । ଇଂ. - comb

ସମସ୍ତ ଆଦିବାସୀ ସଂପ୍ରଦାୟରେ ପାନିଆ ପ୍ରେମର ପ୍ରତୀକ । ଯୁବକ ଯୁବତୀକୁ ପାନିଆ କିଣି ଦେଇଥାଏ । ଯୁବତୀ ପ୍ରତି ତା'ର ଅନୁରାଗର ସୂଚନା ଦିଏ । ଏଥିରେ ମୁଖ୍ୟତଃ କାଠପାନିଆ ବ୍ୟବହୃତ ହୋଇଥାଏ । ଏବକୁ ଶିଙ୍ଗ ଓ ପ୍ଲାଷ୍ଟିକ୍‌ର ପ୍ରଚଳନ

ହେଲାଣି । ନରମ ଫାଶୀ କାଠରୁ ବା ସେହିଭଳି ଅନ୍ୟ ଗଛର କାଠରୁ ଆଦିବାସୀମାନେ ନିଜେ ପାନିଆ ପ୍ରସ୍ତୁତ କରିଥାନ୍ତି ।

ଲୋକ ଗୀତରେ ପାନିଆ ଶବ୍ଦର ପ୍ରଚଳନ :

ପାନିଆ ଜୁନିଆ ଆମର ସାଇକେ ଆସାକିନା

ଆସଲେ ଆସା ନଇଲେ ନାଇଁ, ଚାରିଅନ୍ ଡାବୁ ଦିଆସିନା ।

୩୮. **ପାନିଆ ଜୁନିଆ** - *ଦେ.ବି.* : ପୌଷ ପୂର୍ଣ୍ଣମୀର ମାଗଣ ତଥା ମାଗଣ ସମୟର ଗୀତ ।

ପୌଷ ପର୍ବ ସମୟରେ ରାତିରେ ଜହ୍ନ ଉଜ୍ଜ୍ୱଳରେ ଆଦିବାସୀ ସ୍ତ୍ରୀ ଲୋକମାନେ ଘରଘର ବୁଲି ଚାଉଳ ଓ ଧାନ ଚାଙ୍ଗୁଡ଼ିରେ ମାଗି ବୁଲନ୍ତି । ସେତେବେଳେ ସେମାନେ ଗୀତ ଗାଆନ୍ତି 'ପାନିଆ ଜୁନିଆ' ମୁଠେକ୍ ଚାଉଳ ଦିଆକିନା । ଦେଲେ ଦିଆ ନୋଇଲେ ନାହିଁ, ବେଶୀ ଭଗାଡ଼ା । ବେଶିର ଅର୍ଥ ବାଉଁଶ ବାଡ଼ର ତାଟି ଯାହା ଫାଟକ ଭାବେ ଲାଗିଥାଏ । ଏହି ଗୀତ ସବୁ ହାସ୍ୟାତ୍ମକ । ଏହି ପାନିଆ ଜୁନିଆ ମାଗଣ ସମୟରେ ମାଗଣକାରୀମାନେ ଗୋଟିଏ ଚକନିରେ ଲିଆ, କଦଳୀ ଓ ଫୁଲ ଅରୁଆଚାଉଳ ନେଇ ଘରେଘରେ ଦେଇଥାନ୍ତି ।

୩୯. **ପାନିମରା ଗୀତ** - *ଦେ.ବି.* : ବର୍ଷା ସଂପର୍କୀୟ ଶୃଙ୍ଗାର ରସାତ୍ମକ ଗୀତ । ଦେଶିଆ ଲୋକଗୀତରେ ପାନିମାରା ଗୀତର ସାଂଗୀତିକତା, ଛନ୍ଦମାଧୁରୀ ଓ ରସ ଆବେଦନ ସ୍ୱତନ୍ତ୍ର । ଏହା ପ୍ରେମ, ବିରହ, ରାଗରୁଷା ଓ ମାନ ଅଭିମାନ ସଂପର୍କୀୟ ଓ ଶୃଙ୍ଗାର ରସାତ୍ମକ ସଂଗୀତ । ଯଥା : ପାନି ମରିଗଲା ଝାଇଁ, ପାନି ମାରିଗଲା ଝାଇଁ । ପାନି ମାରିଗଲା ଝାଇଁ ନୁନି, ପାନି ମାରିଗଲା ଝାଇଁ, ରାତି ଖାଇ ନାଇଁ ରାତି ଶୁଇ ନାଇଁ ତର ଚେତନାରେ ମୁଇଁରେ ନୁନି, ପାନି ମାରିଗାଲା ଝାଇଁ ।

ପାନି ମାରାଗାଲା ଝାଇଁ, ପାନି ମାରିଗାଲା ଝାଇଁରେ ଦାଦା, ପାନି ମାରିଗଲା ଝାଇଁ, ବାଟର କୁଡ଼ିଆ ତଅରି ପାଇଁ ପିରି ଛୁଇଲାଇ ନାଇଁ । (ଲୋକପ୍ରିୟ ହାଲବୀ ଗୀତ ।)

୪୦. **ପାନି ମିଶାନି** - *ଦେ.ବି.* : ଜାତିରେ ମିଶାଇବା ଅନୁଷ୍ଠାନ । ଆଦିବାସୀ ସମାଜରେ ଇତର ଜାତିର ସ୍ତ୍ରୀ ବାହା ହେଲେ, ଅଜାତିଆ ଘରେ ଖାଇଲେ, ନୀଚଜାତି

ଲୋକ ହାତରୁ ମାଡ଼ ଖାଇଲେ, ଜେଲ ଗଲେ, ସଭା ସମାବେଶରେ ଖାଇଲେ ଜାତି ଯାଏ । ଏଣୁ ନିଜ ଜାତିରେ ମିଶିବାକୁ ହୁଏ । ଏହାକୁ 'ପାନି ମିଶାନି' କୁହାଯାଏ । ଏହି ବିଧି ଅନୁଯାୟୀ ଜାତି ନଷ୍ଟ ହୋଇଥିବା ଲୋକଙ୍କୁ ନଦୀ ବା ଝରଣା ଜଳରେ ଗାଧୁଆଯାଏ । ଗୋବର ପାଣି ପିଆଯାଏ । ସୁନା ରୂପାରେ ଜିଭ ଲଗାଯାଏ । ଶିବ ମନ୍ଦିରକୁ ଛଞ୍ଚା ଧରି ଯିବାକୁ ହୁଏ । ବନ୍ଧୁକୁଟୁମ୍ବଙ୍କୁ ଭୋଜି ଦେବାକୁ ପଡ଼େ । ଏହାକୁ 'ପାନି ମିଶାନି' କୁହାଯାଏ । ଏହି ସମସ୍ତ ବିଧି ଭାତ ନାଇକ କରିଥାଏ । କୌଣସି ଉଚ୍ଚ ସଂପ୍ରଦାୟର ଝିଅ ବୋହୂ ଯଦି ନୀଚ ଜାତରି ପୁଅକୁ ଯାଏ, ତେବେ ସେଠାରେ ଆଉ ପାନି ମିଶାନି ହୁଏ ନାହିଁ । ସଂପର୍କ ଶତ୍ରୁତା ପୂର୍ଣ୍ଣ ହୋଇଯାଏ ।

୪୧. ପାନି ରକାନି - *ଦେ.ବି. :* ଏକ ମିଛିମିଛିକା ବାହାଘର ଅନୁଷ୍ଠାନ । ଏହାର ଆକ୍ଷରିକ ଅର୍ଥ ହେଉଛି ପାଣି ଢାଳିବା । କିନ୍ତୁ ବାସ୍ତବରେ ବିଭିନ୍ନ ଆଦିବାସୀଗୋଷ୍ଠୀ ତଥା ରଣା, ମାଳି, କମାର, ଗୌଡ଼ ଆଦି ଅଣଆଦିବାସୀ ଗୋଷ୍ଠୀର କୌଣସି କୁମାରୀ କନ୍ୟା ପ୍ରଥମ ଋତୁମତୀ ହେବା ପୂର୍ବରୁ ଦିଶାରିକୁ ଡାକି ବିବାହ କ୍ରିୟା ଭଳି ଏକ ମିଛିମିଛିକା ଅନୁଷ୍ଠାନ କରାଯାଇଥାଏ । ଏଥିରେ ବାହାଘର ଭଳି ସବୁ କାର୍ଯ୍ୟକ୍ରମ ସଂପାଦିତ ହୋଇଥାଏ । କେବଳ ବର ନଥାଏ । ଏହାକୁ 'ପାନି ରକାନି' କୁହାଯାଏ । ସେମାନଙ୍କ ପ୍ରଥା ଅନୁଯାୟୀ ପାଣି ରକାନି ବିନା କୌଣସି ଝିଅ ପ୍ରଥମ ରଜସ୍ୱଳା ହେଲେ ତା'କୁ ଘରୁ ତଡ଼ି ଦିଆଯାଏ । କିନ୍ତୁ ଆଜିକାଲି ଏହି ପ୍ରଥା ଏତେ କଠୋର ଭାବେ ପାଳନ କରାଯାଉନାହିଁ ।

୪୨. ପାନି ରଂଗନି - *ଦେ.କ୍ରି. :* ବିବାହ ସମୟରେ ବରକନ୍ୟାକୁ ହଳଦୀ ପାଣିରେ ଗାଧୋଇବା । ଏହି କାର୍ଯ୍ୟ ବିବାହର ଦ୍ୱିତୀୟ ଦିନ କରାଯାଇଥାଏ । ଏହିଭଳି ସାତଥର ଗାଧୋଇ ଦିଆଯାଏ । ପେଣ୍ଠିଆ ତଥା ଅନ୍ୟ କେତେକ ଆଦିବାସୀ ସଂପ୍ରଦାୟରେ ଏହାକୁ 'କୁଇଲି ପାନି' ବୋଲି କୁହାଯାଏ ।

୪୩. ପାଣିରୁକାନି - *ଦେ.ବି. :* ଏକ ପ୍ରକାର ପାଣି ଓ କାଦୁଅ ବୋଳାବୋଳି ଖେଳ । ଚୈତ୍ର ପର୍ବ ଶେଷରେ ଧାଙ୍ଗଡ଼ା ଧାଙ୍ଗଡ଼ୀମାନେ ଘର ଘର ବୁଲି ପ୍ରତ୍ୟେକ ଘରେ ପାଣି ଢାଳନ୍ତି ଓ କାଦୁଅ ବୋଳାବୋଳି ହୋଇ ଖେଳିଥାନ୍ତି । ଏହି ଖେଳକୁ 'ପାଣି ରୁକାନି' କୁହାଯାଏ । ଏହା ପ୍ରାୟ ପ୍ରତି ଆଦିବାସୀ ସଂପ୍ରଦାୟରେ ଦେଖାଯାଏ ।

୪୪. ପାପ୍-ମାରିକ୍ ସିନୋଞ୍ଜି - *ଦେ.ବି.* : ଗର୍ଭପାତ । ଇଂ- Abortion. ଜଂଗଲି ଔଷଧ ପ୍ରୟୋଗ କରି ଗର୍ଭପାତ । ଯୁବତୀ ମହଳାର ଗର୍ଭପାତ କରାଇବା । ଏହା ଗ୍ରାମର ଦିଶାରୀ କରିଥାଏ ।

୪୫. ପାପଡ଼ାହାଣ୍ଡି - *ଦେ.ବି.* : ନବରଂଗପୁର ଜିଲ୍ଲାର ଏକ ବ୍ଲକ୍ ସଦର ମହକୁମା । ଏହି ସ୍ଥାନରେ ୧୯୪୨ ଅଗଷ୍ଟ ୨୪ରେ ଟୁରୀନଦୀ ଗୁଳିକାଣ୍ଡ ହୋଇଥିଲା । (ଦ୍ର. ଟୁରୀ)

୫ମ-୬ଷ୍ଠ ଶତାବ୍ଦୀରେ ନନ୍ଦ ବଂଶ ରାଜା ଭବଦତ୍ତ ବର୍ମନ୍ ଏହି ଗ୍ରାମଟିକୁ ଈଶ୍ୱର ମନ୍ଦିରର ପୂଜାଅର୍ଚ୍ଚନା କରିବା ପାଇଁ ଦୁଇଜଣ ବ୍ରାହ୍ମଣଙ୍କୁ ତାମ୍ର ସନନ୍ଦ ଦ୍ୱାରା ପ୍ରଦାନ କରିଥିଲେ । ସେଥିରେ ଏହି ସ୍ଥାନ ପାସ୍କଲ୍‌ଉଣ୍ଡି ବୋଲି ଖୋଦିତ ହୋଇ ପରବର୍ତ୍ତୀ କାଳରେ ଏହା ପାପଡ଼ାହାଣ୍ଡି ନାମରେ ପରିଚିତ ହେଲା ।

ପାଷ୍କଲଉଣ୍ଡି ବା ପାଦର ଉଣ୍ଡିଖୋଜି ପାଉ ନଥିବା ଦୁର୍ଗ । କୁହାଯାଏ ୧୦ମ ଶତାବ୍ଦୀ ବେଳକୁ ନାଗ ଗୋଷ୍ଠୀଙ୍କ ଦ୍ୱାରା ଏହି ଦୁର୍ଗଟି ଶାସିତ ହୋଇଥିଲା । ଏହି ପ୍ରାଚୀନ ଦୁର୍ଗରୁ ପାଦର ଉଣ୍ଡି କାଢ଼ି କୌଣସି ଲୋକ ଅନ୍ୟତ୍ର ଯାଉ ନଥିଲେ । ତେଣୁ ଏହାର ନାମ ପାପଲଉଣ୍ଡି ବା ପାପଡ଼ାହାଣ୍ଡି ରଖାଯାଇଥିଲା । ନାଗ ବଂଶରେ ଶାସକମାନେ ଗ୍ରାମ ଅର୍ଥରେ ହାଣ୍ଡି ଶବ୍ଦ ପ୍ରୟୋଗ କରୁଥିବାରୁ ସେ ସମୟରେ ସୋମନେ ଚନ୍ଦାହାଣ୍ଡି, ନନ୍ଦାହାଣ୍ଡି, ଶଶାହାଣ୍ଡି ଇତ୍ୟାଦି ଅନେକ ଗ୍ରାମ ବସାଇଥିଲେ । ଏଠାରେ ଏକ ବହୁ ପ୍ରାଚୀନ ଶିବ ମନ୍ଦିର ରହିଛି । ଯାହାର ଗଠନ ଶୈଳୀ ଅନ୍ୟତ୍ର ଦେଖିବା ବିରଳ । କୁହାଯାଏ ଏହା ପଞ୍ଚମ ଶତାବ୍ଦୀ ପୂର୍ବରୁ ନଳବଂଶୀ ରାଜାମାନଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଗଂଗବଂଶୀ ରାଜାମାନଙ୍କ ସମୟରେ ନିର୍ମାଣ ସ୍ଥାପତ୍ୟ ମଧ ଏହି ମନ୍ଦିରରେ ରହିଛି । ଏହା ଏକ ପ୍ରାଚୀନ ଧର୍ମପୀଠ ଥିଲା । ଏଠାରେ ଆର୍ଯ୍ୟ, ଆଦିବାସୀ, ଜୈନ, ବୌଦ୍ଧ, ଆଦି ବହୁ ଧର୍ମର ସଂଗମ ଘଟିଥିଲା । ତେଣୁ ଏହି ଭୈରବ ମନ୍ଦିରକୁ ନେଇ ବହୁ ଲୋକକଥା ରହିଛି । ସ୍ୱାଧୀନତା ସଂଗ୍ରାମରେ ଏ ଅଞ୍ଚଳର ମଧ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଏଠାରେ ବହୁ ଲୋକ ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇ ଶହୀଦ ହୋଇଛନ୍ତି ।

୪୬. ପାଲ୍‌ଦା / ପାଳଧୁଆ - *ଦେ.ବି. :* ଔଷଧି ବୃକ୍ଷ ବିଶେଷ । ଗୋରୁଗାଈଙ୍କର ଦେହରେ ହେଉଥିବା ଘା'ର ପୋକ ମାରିବା ପାଇଁ ପାଲ୍‌ଦା ଛାଲି ବ୍ୟବହୃତ ହୁଏ । ଏହି ଛାଲିକୁ ଭଲଭାବେ ବାଟି କ୍ଷତ ସ୍ଥାନରେ ପଟି ବାନ୍ଧି ଦେବାକୁ ପଡ଼େ । ଏହା ଆଦିବାସୀ ଚିକିତ୍ସକମାନଙ୍କ ଦ୍ୱାରା କରାଯାଏ ।

୪୭. ପାଲି - *ଦେ.ଅ. :* ପାଖେ ପାଖେ, ପିଣ୍ଡତଳ ବା ବାରଣ୍ଡା ତଳ । ଇଂ- By the side of; ଏହାର ଦେଶିଆ ପ୍ରତିଶବ୍ଦ ହେଉଛି 'ପଖା' ।

ଯଥା : (୧) ମାଣ୍ଡିଆ ଡଙ୍ଗର ପାଲି ପାଲି ଆଲସି ବୁନ୍‌ଲେ ନିକ୍ ଅଇସି ।

(୨) ଗର୍ ପାଲିବାଲି ବାଡ଼ାନ୍ ଦିଆସ୍ ।

୪୮. ପିଆଲ ଚାଉଲ - *ଦେ.ବି. :* ମାଗଣ ଚାଉଳ । ଚୈତ୍ର ପର୍ବର ପ୍ରଥମ ଦିନ ରାତିରେ ଗାଁର ପ୍ରତ୍ୟେକ ଘରୁ ଚାଉଳ ପନିପରିବା, କୋଳଥ, ବିରି, ଡାଲି ଆଦି ମଗାଯାଇ ଉକ୍ତ ଚାଉଳକୁ ନୂଆ ମାଟି ହାଣ୍ଡିରେ ରୋଷେଇ କରାହୁଏ । ଗାଁର ପିଲା ଓ କିଶୋରମାନେ ଉକ୍ତ ପିଆଲ ଚାଉଳର ଭାତ ରାନ୍ଧି ଖାଇ ଟିଙ୍ଗିରି ବେଣ୍ଟ କରିବାକୁ ଯାଆନ୍ତି । ଏହି ମାଗଣ ମୁଖ୍ୟତଃ ଗାଁର କିଶୋରମାନେ କରିଥାନ୍ତି ।

୪୯. ପିଣ୍ଡ ଥାପିବା - *ଦେ.କ୍ରି. :* ପ୍ରେତ କାମର ଅଂଶ ବିଶେଷ । ଲୋକ ମରିବାର ୧୦ଦିନ ରାତିରେ ଏକ କଦଳୀ ପତର ଉପରେ ଚିକ୍କଣ ଚାଉଳ ଚୂନା ସମତଳ ଭାବେ ରଖାଯାଇଥାଏ । ତା ଉପରେ ଏକ ନୂଆ ମାଟିହାଣ୍ଡି ଘୋଡ଼ା ଯାଇଥାଏ । ଦୀପଟିଏ ଜଳୁଥାଏ । ବନ୍ଧୁ କୁଟୁମ୍ବ ଲୋକେ ପ୍ରେତ ଡାକିବାକୁ ମଶାଣିକୁ ଯାଆନ୍ତି । ପ୍ରେତକୁ ବଡ଼ ପାଟିରେ 'ତୋର ବିଭାଘର ଭାତ ଖାଇବାକୁ ଆ' ବୋଲି କହି ଡାକି ଆଣନ୍ତି । ଚାଳରେ ଏକ ଠେଙ୍ଗା ମାରନ୍ତି । ପରେ ପଚାରନ୍ତି 'ଏ ଘରେ କିଏ ଜାଗେର' ଘର ଭିତରର ଲୋକ କହନ୍ତି' ମୁଇ ଜାଗେ । ଘର ଭିତର ଲୋକ ପଚାରନ୍ତି 'କ'ଣ ଆଣିଲ ?' ବାହାରରର ଲୋକ କହନ୍ତି "ହୀରାନୀଳା ମୋତି ମାଣିକ୍ୟ ଆଣିଲୁ । ଦୁଃଖ ଛାଡ଼ି ସୁଖ ଆଣିଲୁ ।" ଭିତରର ଲୋକେ କହନ୍ତି 'ତାହାହେଲେ ଗୋଡ଼ ହାତ ଧୁଆ ପେଜପାନି ଖାଅ ।' ଯଦି ପ୍ରେତ ଆସିବା ସମୟରେ ଦୀପ ଲିଭିଯିବ, ତେବେ ପ୍ରେତ ଆସିଛି ବୋଲି ଜଣାଯିବ । ତାପରେ ଉକ୍ତ ହାଣ୍ଡି ଟେକି ଚାଉଳ ପିଣ୍ଡକୁ ଦେଖାଯିବ । ଚାଉଳ ଚୂନାରେ ଯଦି ଚିହ୍ନ ଥିବ, ବା ଖୋଳଥିବ, ବା ଯଦି ଚୂନାରେ ବିଲେଇ

ପାଦଚିହ୍ନ ପଡ଼ିଥିବ, ତେବେ ଗୁଣିଗାରେଡ଼ି ପାଙ୍ଗଣରେ ଲୋକଟି ମରିଛି ବୋଲି ଧରାଯିବ । ହାତୀ ପାଦ ଚିହ୍ନ ପଡ଼ିଥିଲେ, ଆୟୁଷ ସରିବାରୁ ମରିଛି ବୋଲି ବିଶ୍ୱାସ କରାଯାଏ । ଧାନ କେଣ୍ଡା ଚିହ୍ନ ପଡ଼ିଥିଲେ କିମ୍ବା ଗଜାଡାଙ୍ଗ (ବାଡ଼ି ଚିହ୍ନ) ଚିହ୍ନ ପଡ଼ିଥିଲେ ସେହି ପ୍ରାକୃତିକ ମୃତ୍ୟୁ ବୋଲି ଧରାଯିବ । ଯଦି କୌଣସି ଚଢ଼େଇ ଚିହ୍ନ ପଡ଼ିଥାଏ, ତେବେ ଦେବତା ଖାଇଲା ବୋଲି ଧରାଯାଏ । ଏହି ସମସ୍ତ ଅନୁଷ୍ଠାନକୁ 'ପିଣ୍ଡ ଥାପିବା' ବୋଲି କୁହାଯାଏ ।

୫୦. ପିତା ଛୁଆନି - *ଦେ.କ୍ରି.* : ମୃତାହ କର୍ମ ବିଶେଷ । ଲୋକ ମରିବାର ୩ଦିନରେ ପିତା ଛୁଆଁଯାଏ । ଯେଉଁ ଘରର ଲୋକ ମରିଥାଏ, ସେହି ଘର ମୁହଁରେ ଏକ ତୀର ପୋତା ଯାଇଥାଏ । ତୀରରେ ଏକ ସୂତା ବାନ୍ଧି ଚାଳ ଉପରକୁ ଫିଙ୍ଗା ଯାଇଥାଏ । ବନ୍ଧୁବାନ୍ଧବ ବା ଅନ୍ୟ ଲୋକ ଘରକୁ ଆସିଲେ ହଳଦୀ ପାଣିରେ ଗୋଡ଼ ଧୋଇ ଦିଆଯାଏ । କୁଟୁମ୍ବ ଲୋକ ଆସିଲେ କଷାପାଣି (ଆମ୍ବ ଛେଲି ରସରେ ତିଆରି) ଗୋବରକ୍ଷାର ପଡ଼ିଥିବା ପାଣି ଛିଞ୍ଚାଯାଏ । କ୍ଷାରରେ ଦୁବ ବୁଡ଼ାଇ ମଡ଼ା ବୋହିଥିବା ଲୋକଙ୍କୁ ମୁଣ୍ଡରୁ ଗୋଡ଼ଯାଏ ବୁଲାଯାଏ । ବନ୍ଧୁମାନେ ତୁଳସୀପତ୍ର ଖାଆନ୍ତି । ନିମ କିମ୍ବା କଲରା ପତ୍ର ବଂଶର ଲୋକେ ଖାଆନ୍ତି । ଘରେ ରନ୍ଧା ହେବା ଚଗୁଭାତ ସିଆଳି ପତ୍ର ତଲାରିରେ ନେଇ ପ୍ରେତ ପାଇଁ ମଶାଣିରେ ବାଢ଼ି ଦିଆଯାଏ ।

୫୧. ପିତାତଙ୍ଗ୍ - *ଦେ.ବି.* : ଏକ ଝରଣା ତଥା ଗ୍ରାମର ନାମ । ମାଲକାନଗିରି ଜିଲ୍ଲାର ମାତିଲି ବ୍ଲକ୍‌ରେ କତା ପାଲି ପଞ୍ଚାୟତରେ ଏହି ଝରଣା ବା ତଙ୍ଗ୍ ବହିଯାଇଛି । ଏହାର ଦୁଇ କୂଳରେ ଥିବା ଜଂଗଲରେ ବହୁ ପରିମାଣରେ ପିତା କନ୍ଦା ମିଳେ । ଏବେ ମଧ୍ୟ ଏହା ଆଦିବାସୀର ଏକ ମୁଖ୍ୟ ଖାଦ୍ୟ । ସେହି ଅନୁସାରେ ଝରଣାର ନାମ 'ପିତାତଙ୍ଗ୍' ଓ ଏହା କୂଳରେ ଥିବା ଗାଁର ନାମ ମଧ୍ୟ ପିତାତଙ୍ଗ୍ । ଏହି ଝରଣାରେ ଏବେ ମଧ୍ୟ ଆଦିବାସୀମାନେ ପିତା କନ୍ଦାର ପ୍ରକିୟା କରଣ କାର୍ଯ୍ୟ କରନ୍ତି । ପିତାତଙ୍ଗ୍ ଗାଁଟିଏ କୋୟା ଅଧୁଷିତ ।

୫୨. ପିତାଶାଗ : ପୁନର୍ନବା - *ଦେ.ବି.* : ଏକ ଔଷଧୀୟ ଶାଗ ବିଶେଷ । ଏହାକୁ ଆଦିବାସୀ ଚକ୍ଷୁରୋଗ ପାଇଁ ବ୍ୟବହାର କରିଥାଆନ୍ତି ।

୫୩. ପିତା ପରବ୍ - *ଦେ.କ୍ରି.* : ପିତା ଖାଇବା । ମୃତାହ କର୍ମ ବିଶେଷ ।

ନିଜ ପରିବାର ମଧ୍ୟରେ କୌଣସି ବ୍ୟକ୍ତିର ମୃତ୍ୟୁ ଘଟିଲେ ତାହାର ତୃତୀୟ ଦିନ୍ବ୍ ଆଦିବାସୀମାନେ ଯେଉଁ ପ୍ରଥା ପାଳନ କରି ପିତାପତ୍ର (ନିମ୍ବ) ସହିତ ଭାତରାନ୍ଧି ଖାଇଥାନ୍ତି, ତାକୁ ପିତା ପରବ୍ କୁହାଯାଏ ।

୫୪. ପିତାବୋଦା - *ଦେ.ବି.* : ଔଷଧୀୟ ବୃକ୍ଷ ବିଶେଷ । ପିତା କୋରୁଅ - କୃମି ନାମକ ଔଷଧ ତିଆରି କରାଯାଏ । ଦିଶାରୀ ମାନେ ଗାଈ ଟିଙ୍କ ଓ ଉକୁଣି ତଥା ଚର୍ମରୋଗ ପାଇଁ ଏହି ଔଷଧ ବ୍ୟବହାର କରିଥାନ୍ତି । ଆଦିବାସୀ ରମଣୀମାନେ ଏହି ପିତାବୋଦାରେ ଘରଲିପିଲେ ତାହା କଳା ଚିକ୍କଣ ହୋଇଥାଏ

୫୫. ପିତୁର / ଫିତୁରି / ଫିତୁର - *ଦେ.ବି.* : ଯୁଦ୍, ଯୁଦ୍ଧ, ଗଜପତିର କନ୍ଧ ଭାଷାରେ ଝୁଜି । ଫୁଲବାଣୀର କନ୍ଧ ଭାଷାରେ ବୁମ୍ବୁ । କୋରାପୁଟର କନ୍ଧ କହିବେ ଯୁଜା । ପିତୁର୍ ଶବ୍ଦ ସହ ଦୁଜ୍ ଶବ୍ଦ ମଧ୍ୟ ଦେଶିଆ ଭାଷାରେ ପ୍ରଚଳିତ । ଏହା ମୂଳତଃ ଏକ କୋୟାଶବ୍ଦ । ବ୍ରିଟିଶ ବିରୁଦ୍ଧରେ ଆଲୁରିସୀତା ରାମେୟା । ରାଜୁଙ୍କ ବିଦ୍ରୋହ (୧୯୨୨-୨୪) ଓ ଟାମାଦୋରାଙ୍କ ବିଦ୍ରୋହ (୧୮୮୦) ପିତୁର ନାମରେ ଖ୍ୟାତ । ଏହା ସାନ୍ତାଳୀ ଭାଷାରେ 'ଉଲଗୁଲାନ' ଶବ୍ଦରେ ସମକକ୍ଷ ।

୫୬. ପିଲା ଗୁଦ୍‌ରା - *ଦେ.ବି.* : ପରଜାମାନଙ୍କର ଏକ ଦେବୀ । କେହିକେହି ଦେବୀଙ୍କୁ ପିଲା ଗୁଦ୍‌ରା ମଧ୍ୟ କହନ୍ତି । ନାନ୍ଦୀପର୍ବ ଅବସରରେ ଏହି ଦେବୀଙ୍କ ଚିତ୍ର କାନ୍ଥରେ ଆଙ୍କି ଟିକ୍ ଧାଙ୍ଗଡ଼ି (ଅବିବାହିତା ପରଜା ଟୋକି, (ଝିଅ) ମାଲିଜରନ୍ ଗୀତ ଗାଇ ପ୍ରତିପଦ ଶେଷରେ ଏହି ଦେବୀଙ୍କ ଉଦ୍ଦେଶ୍ୟରେ ନିର୍ମିତ ଚାଉଳ ଚୁନା ଚିତୋଉରେ ଟିପ ଦେଇଥାଏ । ଏହା ଏକ ସପ୍ତାହ ବ୍ୟାପି କରାଯାଇଥାଏ ।

୫୭. ପିସ୍‌ଲି ଯିବା - *ଦେ.କ୍ରି.* : ଖସିଯିବା । ଇଂ- To slip. ଭାଷାରେ ବ୍ୟବହାର: ମାଚ ଗୋଟେକ୍ ଢାଲ୍‌ତାନୁ ପିସ୍‌ଲି ଗାଲା ।

ଗୀତରେ ପ୍ରୟୋଗ : 'ନାଲେ ଦାରିଲି ବାଲିଆ
ଢାଲ ତାନୁ ପିସଲି ଗାଲା,
କୁଉ କୁଉ କାନ୍ଦେ କଲିଆ ।'

୫୮. ପୂଜ୍/ ପୂଜିବା - *ଦେ.କ୍ରି.* : ପୂଜିବା, ହତ୍ୟା କରିବା, ବଳି ପକାଇବା, ପୂଜା ଉଦ୍ଦେଶ୍ୟରେ ବଳିଦେବା । ଇଂ- To sacrifice.

ଦେବାଦେବୀଙ୍କୁ ଉତ୍ସର୍ଗ କରିବା କ୍ରିୟା । ରୁଧିର ଭୋଗ ଦେବା । ବିଭିନ୍ନ ପର୍ବ ପର୍ବାଣୀରେ ଦେଶିଆମାନେ ଦେବାଦେବୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ଦେଉଥିବା ଜୀବ ବଳି । ଭଲ ବର୍ଷା, ଭଲ ଚାଷବାସ ଇତ୍ୟାଦି କାମନା କରି ଯେଉଁ ବଳି (କୁକୁଡ଼ା, ମେଣ୍ଢା, ଛେଳି, ପାରା, ହଂସ ଆଦି) ଦେଇଥାନ୍ତି, ତାକୁ 'ପୁଜ୍‌ବା' ବା 'ପୂଜିବା' କୁହାଯାଏ । ଭାଷାରେ ବ୍ୟବହାର : ପୁଜାରି ମାଟି ମାତା କାଜେ ବକ୍‌ଡ଼ା ପୁଜିଲାଣି । ଅର୍ଥାତ୍, ପୂଜାରି ମାଟିମାଆଙ୍କୁ ବୋଦାବଳି ଦେଲାଣି ।

୫୯. **ପୂଜାରି** - *ଦେ.ବି. :* ପୁଜ୍‌ବା ବା ପୂଜାପୂଜି କରୁଥିବା ବ୍ୟକ୍ତି / ଦେବତା ଉଦ୍ଦେଶ୍ୟରେ ପଶୁପକ୍ଷୀ ବଳୀ ଦେବା ବ୍ୟକ୍ତି । ଇଂ- The Priest. ଓଡ଼ିଆରେ ପୁଜାରି ଅର୍ଥ ପୂଜକ ହୋଇଥିବା ବେଳେ ଦେଶିଆ ଅର୍ଥରେ ପୂଜାରି ହେଉଛି ଦେବାଦେବୀଙ୍କ ପାଖରେ ଜୀବବଳି ଓ ରୁଧିର ଭୋଗ ଦେଉଥିବା ବ୍ୟକ୍ତି । ଉଦାହରଣ : ଦାର୍ଣ୍ଣି ପୂଜାରୀ : ଭୂମିମାତାକୁ ପୂଜା କରୁଥିବା ବ୍ୟକ୍ତି ଓ ଆଦିବାସୀ ସମାଜର ଜଣେ ବହୁ ସମ୍ମାନିତ ବ୍ୟକ୍ତି । ସମସ୍ତ ପ୍ରକାର ପର୍ବପର୍ବାଣୀ, ପୂଜା ଯାତ୍ରାରେ ଏହି ପୂଜାରିକୁ ଲୋଡ଼ାଯାଇଥାଏ । ଏହି ପୂଜାରି ସଂଜ୍ଞା ବା ପଦବୀ ବଂଶାନୁକ୍ରମିକ ହୋଇଥାଏ । ଗାଁ ତରଫରୁ ପୁଜାରି ପରିବାର ପାଇଁ କିଛି ଜମି ଖଂଜା ଯାଇଥାଏ । କୌଣସି ପୂଜାରୀ ବଳି ପ୍ରଥାକୁ ବିରୋଧ କଲେ ଏହି ଜମି ତାଠୁ ଫେରସ୍ତ ନିଆଯାଏ ।

୬୦. **ପୁଜାରି ବରଣ୍ଡି** - *ଦେ.ବି. :* ପୁଜାରି ବଂଶର ଲୋକମାନେ ବାସ କରୁଥିବା ଗ୍ରାମ । ଏହା ନବରଂଗପୁରରେ ଅବସ୍ଥିତ । (ବରଣ୍ଡି : ଗ୍ରାମ) ସାନ ବରଣ୍ଡି : ବଡ଼ ବରଣ୍ଡି, ଦେଓ ବରଣ୍ଡି ଆଦି ବିଭିନ୍ନ ନାମରେ ଗ୍ରାମ ସବୁ, ନବରଂପୁର ଜିଲ୍ଲାରେ ଦେଖିବାକୁ ମିଳେ । ସେହିପରି ପୂଜାରିପୁଟ, ପୁଜାରିଗୁଡ଼ା ଇତ୍ୟାଦି ଗ୍ରାମ ରହିଛି ।

୬୧. **ପୁଜେର୍** - *ଦେ.ବି. :* ପୂଜାରୀ, ଗ୍ରାମ ଦେବତାଙ୍କୁ ପୂଜା କରୁଥିବା କୋୟା ବ୍ୟକ୍ତି । ଇଂ- Koya Priest.

ଗ୍ରାମଦେବୀ ପୂଜକ । ପ୍ରତ୍ୟେକ କୋୟା ଗ୍ରାମରେ ପୁଜେର୍‌ମାନେ ଥାନ୍ତି । ପୂଜେର କୋୟାମାନଙ୍କ ଗ୍ରାମଦେବୀଙ୍କୁ ହୁଣ୍ଡି ବସାଇଥାଏ । ତାହାକୁ ଗାଁ ହୁଣ୍ଡି କୁହାଯାଏ । ପ୍ରତ୍ୟେକ ପର୍ବ ପର୍ବାଣୀରେ ସେ ଗ୍ରାମଦେବୀ ହୁଣ୍ଡିକୁ ପୂଜା କରି କୁକୁଡ଼ା, ଛେଳି, ପାରା, ଘୁଷୁରି ଆଦି ବଳି ଦିଆଯାଇଥାଏ । ପ୍ରତ୍ୟେକ ପ୍ରକାର ବିହନ ପୂଜା କରେ ।

ଭଲ ଫସଲ ଭଲ ବର୍ଷା ପାଇଁ ପୁଜେର ମାଟି ମା ଓ ଆକାଶ ଓ ଇନ୍ଦ୍ର ଦେବତାଙ୍କୁ ପୂଜା କରିଥାଏ ।

୬୨. ପୁଞ୍ଜିଦେବା - *ଦେ.କ୍ରି. :* ଗୃହ ନିର୍ମାଣର ଶୁଭାଶୁଭ ନିର୍ଣ୍ଣୟ ଲାଗି କିଛି ଚାଉଳ ରଖିବା । ବାସଗୃହ ନିର୍ମାଣ କରିବା ଆଗରୁ ପ୍ରଥମେ ଘର ନିର୍ମାଣ କରିବା ସ୍ଥାନରେ କେତେ ମୁଠା ଚାଉଳ ରଖାଯାଏ । ଚାଉଳ ଗୁଡ଼ିକୁ ଉଇ ଖାଇବାର ଜଣାଗଲେ, ସ୍ଥାନଟି ଶୁଭପ୍ରଦ ବୋଲି ବିଶ୍ୱାସ କରାଯାଏ । ଉଇ ଲାଗି ରଖା ଯାଉଥିବା ଚାଉଳ ମୁଠିକୁ ପୁଞ୍ଜିଦେବା କହନ୍ତି ।

୬୩. ପୁଟ୍‌କି - *ଦେ.ବି. :* ଚୁଟିଆ ମୂଷା : ଛୋଟଛୋଟ ମୂଷା । ଘରେ ରହନ୍ତି । ପୁଣି ବେଢ଼ାରେ ଘର କରି ରହନ୍ତି । ଏମାନଙ୍କର ପ୍ରଚୁର ବଂଶବୃଦ୍ଧି ଘଟେ ଓ ବହୁ ଫସଲ ତଥା ଘରର ଆସବାବପତ୍ର ନଷ୍ଟ କରନ୍ତି ।

୬୪. ପୁଟି - *ଦେ.ବି. :* ଏହା ଯେକୌଣସି ଶସ୍ୟ ବା ପାଚି, ବିଶେଷ କରି ଧାନ ମାପିବାର ଏକ ଏକକ । ଓଡ଼ିଆ ପରିମାଣ ମାପରେ ପ୍ରାୟ ଏକ ପୌଟି ସଂଗେ ସମାନ ନ ହେଲେ ମଧ୍ୟ ପୌଟିଭଳି ମାପର ଏକ ଏକକ । କୋଡ଼ିଏ ମାଣରେ ଗୋଟିଏ ପୁଟି । ଏକମାଣ ଧାନ ପ୍ରାୟ ଦୁଇରୁ ଅଢ଼େଇ କି.ଗ୍ରା. ହୋଇଥାଏ । ଅର୍ଥାତ୍, ଗୋଟିଏ ପୁଟି ପ୍ରାୟ ୪୦ରୁ୫୦ କି.ଗ୍ରା. ଧାନ ବା ପାଚି । ଦେଶିଆ ହିସାବ ଅନୁସାରେ ବାରପଢ଼ିରେ ଏକମାଣ । ପୂର୍ବରୁ ଏହି ପଢ଼ି ବାଉଁଶ ପୋଲାରେ ତିଆରି ହେଉଥିଲା । ଏହା ଧୀରେଧୀରେ ଲୋପ ପାଇବାକୁ ବସିଲାଣି । ଓ ବିଭିନ୍ନ ଆକୃତିର ଟିଣ ଡବା ଏହାର ସ୍ଥାନ ନେଲାଣି । କିନ୍ତୁ ମାଣର ନିର୍ମାଣ କାଠ ଗଣ୍ଡି ଖୋଦେଇ କରି କରାଯାଇଥାଏ । ପ୍ରକୃତରେ କି.ଗ୍ରା. ଓଜନରେ ଏସବୁ ବଡ଼ମାଣ ପ୍ରସ୍ତୁତ ହୋଇ ନଥିବାରୁ ସାହୁକାରମାନେ ବଡ଼ ମାଣ ଓ ଛୋଟ ମାଣ, ଦୁଇଟି, ମାଣ ପ୍ରସ୍ତୁତ କରିଥାନ୍ତି । ବଡ଼ମାଣକୁ 'ପେଦାମ୍ମା' ଓ ସାନମାଣକୁ 'ଚିନ୍ନାମ୍ମା' କୁହାଯାଏ । କରଜ ଆଦାୟ ବେଳେ 'ପେଦାମ୍ମା' ବା ବଡ଼ମାଣ ବ୍ୟବହାର କରନ୍ତି । ସାହୁକାରମାନେ କରଜ ଦେବାବେଳେ 'ଚିନ୍ନାମା ମାଣ' ବା ଛୋଟମାଣ ବ୍ୟବହାର କରନ୍ତି । ଏହି ଉପାୟରେ ଆଦିବାସୀମାନଙ୍କୁ ଠକାଯାଏ । କିନ୍ତୁ ସାହୁକାରମାନେ ବଡ଼ମାଣ ଦେଖାଇ ଛୋଟମାଣରେ ମାପି ଦିଅନ୍ତି । 'ଦେଲି ପୁଟିଏ ନେଲୁ ପୁଟିଏ । ଏଇ ପରି ଦୁଇପୁଟି ଦେଲାକି ନାହିଁ ?' ଏହି କଥା କହି ଆଦିବାସୀ ରଇତକୁ ସାହୁକାର ନିୟମିତ ଭାବେ ଠକି ଆସିଛି ।

ସେହଭଳି କୁଲି ଲୋକଙ୍କୁ ମଜୁରୀ ଦେବାବେଳେ 'ବୁଡିମାଣ' ବ୍ୟବହାର କରନ୍ତି । ଏହି ବୁଡିମାଣରେ ସାତ ପଡ଼ିରୁ ଆଠପାଡ଼ି ଧାନ ଧରେ ।

୬୫. **ପୁଡ଼େନ୍ ଜତର** - *ଦେ.ବି. :* ପ୍ରେତକିଳା କର୍ମ, ପ୍ରେତାତ୍ମା ପ୍ରତିରୋଧ କର୍ମ । ଅଧିକାଂଶ ଆଦିବାସୀ ପରିବାରରେ ଶିଶୁଟିଏ ଜନ୍ମ ହେଲାପରେପରେ ଯଦି ଜନ୍ମଦାତ୍ରୀ ମାଆର ମୃତ୍ୟୁ ଘଟେ, ତେବେ ଏହି 'ପୁଡ଼େନ୍ ଜତର' ବା ପ୍ରେତାତ୍ମା ପ୍ରତିରୋଧ କର୍ମ କରାଯାଇଥାଏ । ଏହା ମୃତକର ଗୃହ ଆଗରେ ମୃତ୍ୟୁପରେ ଆସୁଥିବା ପ୍ରଥମ ରବିବାର ଦିନ ସକାଳ ବେଳା କରାଯାଏ । ଏଥିପାଇଁ ଦିଶାରୀ ବା ଜାନି ନଅଗୋଟି ଲୁହାର ଖୁଣ୍ଟି ତିଆରି କରନ୍ତି । ପ୍ରତ୍ୟେକ ଖୁଣ୍ଟିରେ ଥିବା ଗାତରେ ପ୍ରେତ ଦୃଷ୍ଟି ପଡ଼ିବାପାଇଁ କିଛି ଚେରମୂଳି ଔଷଧ ପୂରାଇ ଗାତଟିକୁ ପୂରଣ ହେଲାପରେ ବନ୍ଦ କରିଦିଆଯାଏ । ଏହି ଖୁଣ୍ଟିଗୁଡ଼ିକ ମଶାଣି ରାସ୍ତା ଓ ଗୃହରେ ଦିଶାରୀ ବା ଜାନିଙ୍କ ଦ୍ୱାରା ପୋତାଯାଏ । ଏହାଦ୍ୱାରା ମୃତ ମାଆର ଅତୃପ୍ତ ଆତ୍ମା ବା 'ଡୁମା' ଗୃହ ମଧ୍ୟରେ ପ୍ରବେଶ କରି ଶିଶୁର କୌଣସି ଅନିଷ୍ଟ ଘଟାଇ ପାରେନି । ଗାତରେ ପୁରା ଯାଉଥିବା ଚେରମୂଳୀକୁ 'ଦିଷ୍ଟି ଓଷ' କୁହାଯାଏ । ଏହି ପ୍ରଥା ଗାଦବା, କନ୍ଧ ଓ ଅନ୍ୟ ଆଦିବାସୀ ସଂପ୍ରଦାୟରେ ପ୍ରଚଳିତ ।

୬୬. **ପୁଣ୍ଡ୍‌ବା** - *ଦେ.କ୍ରି. :* ବିଶ୍ରାମ ନେବା : ଇଂ. - To rest, to take rest

ଯଥା : (୧) ଚନେକ୍ ପୁଣ୍ଡୁତା ହୋ । (ଟିକେ ବିଶ୍ରାମ ନେବା) କୌଣସି କଠିନ ଶ୍ରମ କରୁଥିବା ସମୟରେ ଝାଳ ମାରିବା ପାଇଁ କାମରୁ ବିରତି ନେଇ କିଛି ସମୟ ବସିବା । ପୁଣ୍ଡା : ବି (୧) ନିଃଶ୍ୱାସ ପ୍ରଶ୍ୱାସ (୨) ଶ୍ୱାସ ରୋଗ (୩) ଧଇଁହେବା, ଇଂ- Breath or Breathing, Asthma, Quick respiration.

ଭାଷାରେ ବ୍ୟବହାର : ଯଥା (୧) ସେ ଲୋକ୍‌କେ କକଲି ଦାର୍‌ଲା ଆଚେ, ଜବର ପୁଣ୍ଡା ପୁଣ୍ଡ୍‌ଲାନି । (ସେ ଲୋକକୁ ଶ୍ୱାସ ଧରିଛି, ବହୁତ ଧଇଁଛି ।)

(୨) ଚନେକ୍ ପୁଣ୍ଡୁ ଆର୍ ପାଲାମ୍ । (କ୍ଷଣେ ବିଶ୍ରାମ ନେବା ପରେ ଧାଇଁବା)

(୩) ଦିରେ ପୁଣ୍ଡ୍ । (ଧିରେ ନିଶ୍ୱାସ ପ୍ରଶ୍ୱାସ ନିଅ)

(୪) ଡାଟାମ୍ ପୁଣ୍ଡ । (ଜୋର୍‌ରେ ନିଶ୍ୱାସ ପ୍ରଶ୍ୱାସ ନିଅ)

(୪) ପୁଣ୍ଡା ଅଟକାଲା, ସାରିଗାଲା ବେ । (ନିଶ୍ୱାସ ଅଟକିଗଲା ଲୋକଟା ମରିଗଲା)

୬୭. ପୁନି - ଦେ.ବି. : ପୂର୍ଣ୍ଣମୀ, ପୂର୍ଣ୍ଣିମା : ଇଂ- Full moon.

(୧) ପୁନିଜନ୍ : ପୂର୍ଣ୍ଣମୀ ଜହ୍ନ :

(୨) ମାଗ୍‌ପୁନି : ମାଘ ମାସର ପୂର୍ଣ୍ଣିମା

(୩) ପୁଷ୍‌ପୁନି : ପୌଷ ମାସର ପୂର୍ଣ୍ଣମୀ । ଏହି ପୂର୍ଣ୍ଣିମାଠାରୁ ପୁଷ୍ ପରବ୍ ତିବିଦିନ ଧରି ଚାଲେ । ଏହି ଦିନ ଗୋରୁଗାଇଙ୍କୁ ଖେଚୁଡ଼ି ଦିଆଯାଏ । ଝିଅମାନେ ଘରଘର ବୁଲିବୁଲି 'ପାନିଆ ଲୁନିଆ' ମାଗନ୍ତି । ସେହି ସମୟରେ ଗାଉଥିବା ଗୀତ :
'ପାନିଆ ଲୁନିଆ ପାଡ଼େକ୍ ଚାଉଲ ଦିଆକିନା ।

ଲଡ଼ା ତ ଲଡ଼ା, ଅଲ୍‌ଦି ବାଟ୍‌ବା ଲଡ଼ା

ସାଇସାଇ ବୁଲ୍‌ସି ଆଚେ ଚାଲ୍‌ବାନ୍ଧା ଗୋଡ଼ା ହୋ ।

ଗଲ୍ ବାନ୍ଧା ଗୋଡ଼ା ହୋ ।

ଚାଉଲ ଚକନି ହୋ ଚାଉଲ୍ ଚକନି

ଆମର ଗାଁ ନାଇକ ଡକରାକେ ମେଷେ ଉକ୍‌ନି ହୋ ମେଷେ ଯେଟା ଉକ୍‌ନି ।'

ସେହିପରି ପୁଅମାନେ ଘରେଘରେ ବୁଲି ଚେର୍‌ଚେରା ମାଗନ୍ତି । ସେ ସମୟରେ ଗାଉଥିବା ଗୀତ :

'କୁଟା ଗରା ଗଅତା, ଚେର୍‌ଚେର୍ ଦାନ୍ ଦିଆତା,

ଚାଲ୍‌ନି ଉପରେ କୁମ୍‌ଡ଼ା, ମୋର୍ ମାଇଜି ଦୁମ୍‌ଡ଼ା ହୋ ।

ପୁଷ୍ ପୁନିଅର ରାତିଯାକ ଧାଙ୍ଗଡ଼ା ଧାଙ୍ଗିଡ଼ିମାନେ ଢେମ୍‌ସାନାଟ ନାଚନ୍ତି । ଯେଉଁ ଧାଙ୍ଗଡ଼ା ଧାଙ୍ଗଡ଼ି ଉଦ୍‌ଲିଆ ଯିବା ପାଇଁ ସ୍ଥିର କରିଥାଆନ୍ତି, ସେମାନେ ପୁଷ୍ ପରବ ସରିବା ପୂର୍ବରୁ ଉଦ୍‌ଲିଆ ଯାଆନ୍ତି ନାହିଁ । ସେହିପରି ମାଆବାପା ନିଜ ପୁଅ ପାଇଁ କେଉଁଠୁ ଝିଅ ଆଣିବାକୁ ସ୍ଥିର କରିଥିଲେ, ପୁଷ୍ ପରବ ପରେ ଆଣନ୍ତି । ଏହି ପୁଷ୍ ପରବ ସରିବା ପରେ ଅର୍ଥାତ୍, ପୁଷ୍ ପୁନିର ତୃତୀୟ ଦିନ ଗାଁର ସାମାଜିକ ଅନୁଷ୍ଠାନର କର୍ମକର୍ତ୍ତାମାନେ ଅର୍ଥାତ୍, ନାଇକ, ଚାଲାଣ ପୂଜାରୀ ଓ ବାରିକ ବଛାଯାଇଥାଆନ୍ତି । ସାଧାରଣତଃ ଏହା ସର୍ବସମ୍ମତି କ୍ରମେ ଓ ପାରମ୍ପରିକ ଭାବେ ହୋଇଥାଏ ।

ବୂଢ଼ାପୁନି - ପୂର୍ଣ୍ଣିମା ପରେ କୃଷ୍ଣ ପ୍ରତିପଦକୁ 'ବୂଢ଼ାପୁନି' କୁହାଯାଏ । ତାପରେ କୃଷ୍ଣପକ୍ଷକୁ 'ଗଡ଼ିମରାଜନ୍' ବୋଲି କୁହାଯାଏ ।

ଗୀତରେ ପୁନି ଜହ୍ନର ବ୍ୟବହାର :

"ଏ ମୋର ପୁନି ଜନ୍ କେଁତା ଆଜିର ମନୁଷ ମନ୍
ପରଦେଶ ଗାଲା କାୟ କରି, ଆଇବାର ନାଇଁ ଏତୁ କରି
ଡାବୁ ନାଇଁକି କାସୁ ନାଇଁ, କଡ଼ରେକ ପିଲାକେ ଦରି
କଇ ଦେକ୍‌ନି ପୁନି ଜନ୍ ଚଲବି କେନ୍ତା କରି ।

(ନବରଂଗପୁର ଦେଶିଆ ଗୀତ)

୬୮. ପୁନିଏ - *ଦେ.ବି. :* ଏକ ସାମାନ୍ୟ ଅଳଙ୍କାର ବିଶେଷ । କେରଙ୍ଗ ସୂତାରେ ତିଆରି ଅଣ୍ଟାସୂତା । ବଣ୍ଡା ରମଣୀମାନେ ଏହି ସୂତାକୁ ଅଣ୍ଟାରେ ପିନ୍ଧିଥାନ୍ତି ।

୬୯. ପୁୟୁ - *ଦେ.ବି. :* ଫୁଲ । ଇଂ- Flower, ସମସ୍ତ ଆଦିବାସୀ ରମଣୀ ବିଶେଷକରି ଧାଙ୍ଗଡ଼ୀମାନେ ଫୁଲ ପ୍ରତି ଅଧିକ ଆକୃଷ୍ଟ । ବଣର ବିଭିନ୍ନ ଫୁଲ ଖୋସାରେ ପିନ୍ଧିବା ସେମାନଙ୍କର ଅଭ୍ୟାସ । ବିଭିନ୍ନ ଋତୁରେ ଜାତି ଜାତିକା ଫୁଲ ସେମାନଙ୍କ ଶୋଭାମଣ୍ଡନ କରିଥାଏ । କେତୋଟି ପ୍ରିୟ ପୁୟୁ ହେଉଚି, କରୁଜେଇ ପୁୟୁ, ବଦ୍‌ଲି ପୁୟୁ, ଯୁଇ, ଜାଇ ଇତ୍ୟାଦି ।

୭୦. ପୁରକେ ପୁର - *ଦେ.ବି. :* ତଳ ଉପର, ଇଂ- Below and above.

ଦେଶିଆ ବାକ୍ୟରେ ବ୍ୟବହାର :

ଯଥା : ସାତ ପରଡ଼ିଆ ଗଚ୍ ପୁରକେ ପୁର ରଇସି । ଅର୍ଥାତ୍ ସାତ ପରଡ଼ିଆ ଗଛ ତଳ ଉପରେ ବେଢ଼ି ରହିଛି । ପିଆଜ ଓ କଦଳୀ ଗଛ ପରି । ଗୀତରେ ବ୍ୟବହାର :

ପର୍ବତ ପର୍ବତ ସେ ସାତପୁର
ସିଂହାସନ ମାଟି ଏ ନନ୍ଦପୁର
ବାଲାରେ ଗୁପତ ଶର
ରାମଗିରି ତାନେ ଗୁପତ ଶର,
ତଇଁରେ ପାକନା ପୁରକେ ପୁର,

ବିତରେ ବିଙ୍ଗ୍ ଅନ୍ଧାର
ଦଶ ଆଙ୍ଗୁଟିରେ ବିନତି କରିଲେ
ମହାଦେବ ଦେବ ବର ।

(ଚଇତି ପରବ ଗୀତ) ।

୭୧. ପୁରାନି ପୋଡ଼ - ଦେ.ବି. : ଗୋତର ପରବ ପାଇଁ ଉଦ୍ଦିଷ୍ଟ ପୋଡ଼ । ଯେଉଁ ଗଦବା ଘର ଲୋକେ ତାଙ୍କ ମୃତ ପିତାମାତା, ଭାଇ ଇତ୍ୟାଦିଙ୍କ ଶ୍ରାଦ୍ଧ ଉପଲକ୍ଷେ ଗୋତର ମେଲନ୍ତି, ତାଙ୍କର ଦୁଆର ଗତର ମୁଣ୍ଡାରେ ବଳିଦେବା ପାଇଁ ଯେଉଁ ପୋଡ଼ ଅଣାଯାଇ ବନ୍ଧା ହୋଇଥାଏ ତାକୁ 'ପୁରାନି ପୋଡ଼' କୁହାଯାଏ ।

୭୨. ପୁଲାମାରୁ - ଦେ.ବି. : ଔଷଧି ଲଟା ବିଶେଷ । ମଲାଙ୍ଗ ଓ ନିର୍ମୂଳୀ ଜାତୀୟ ଲଟା । ଆଦିବାସୀ ଲୋକମାନେ ହାତ ଗୋଡ଼ ଭାଂଗି ଗଲେ ଏହି ଲଟାକୁ ବାଟି ଗରମ କରି ଭାଂଗି ଯାଇଥିବା ସ୍ଥାନରେ ଲେପ ଦେଇ ଏହା ଉପରେ କନା ବାନ୍ଧି ଦିଅନ୍ତି । ଦୁଇ ତିଦି ଦିନ ପରେ ଏହି ପଟି ଖୋଲାଯାଇ ଲେପ ବାହାର କରାଯାଇଥାଏ ଓ ନୂଆ ଲେପ ଦିଆଯାଇଥାଏ । ଏହା ଦ୍ୱାରା ଭଂଗା ସ୍ଥାନରେ ହାଡ଼ ଯୋଡ଼ିଯାଏ ଏବଂ ବ୍ୟଥା ବା ପରାସ ଦୂର ହୋଇଥାଏ ।

୭୩. ପୁଷ୍ ପରବ - ଦେ.ବି. : ପୌଷ ମାସରେ ଆଦିବାସୀ ଲୋକମାନେ ପାଳନ କରୁଥିବା ପର୍ବ :

ଏହି ପର୍ବ ପରଜା, ଗାଦବା, ଭତରା, କନ୍ଧ ସମେତ ସବୁ ସଂପ୍ରଦାୟର ଆଦିବାସୀମାନେ ପାଳନ କରୁଥିବା ଏକ ବଡ଼ପର୍ବ । ବିଶେଷକରି ପରଜା ଗୋଷ୍ଠୀର ଆଦିବାସୀମାନେ ଏଇ ପର୍ବକୁ ଅଧିକ ଆଦରର ସହିତ ପାଳନ କରିଥାନ୍ତି । ଏହି ସମୟରେ ଡଙ୍ଗର ଧାନ, ମାଣ୍ଡିଆ, ସୁଆଁ ଇତ୍ୟାଦି ପାଚି ହୋଇ ସାରିଥାଏ । ସେମାନଙ୍କ ହାତରେ ସେମିତି କିଛି କାମନ ଥାଏ । ତେଣୁ ସେମାନେ ଏଇ ଅବସର ସମୟକୁ ମନଭରି ଉପଭୋଗ କରିବାକୁ ପାଳନ୍ କରିଥାନ୍ତି ବର୍ଷର ସବୁଠାରୁ ବଡ଼ ପର୍ବଭାବେ ବିବେଚିତ ହେଉଥିବା ଏଇ ପୁଷ୍ ପର୍ବକୁ । ଏଇ ପର୍ବ ପାଳନ ପୂର୍ବରୁ ଦିସାରୀ ଗ୍ରାମଲୋକମାନଙ୍କୁ ପର୍ବ ପାଳନର ତିଥି, ବାର ଓ ନକ୍ଷତ୍ର ବିଷୟ ଜଣାଇଦିଏ । ପ୍ରତିଟି ଆଦିବାସୀ ଘରଦ୍ୱାର ରଂଗମାଟିରେ ଚିକଣ ଭାବେ ଲିପାପୋଛା ହୋଇ ଝୋଟିଚିତାରେ ଚମକେ ।

କାନ୍ଥ ଓ କବାଟରେ ଗୋତ୍ର ଓ ଦେବତାର ମାନ୍ୟତା ପ୍ରାପ୍ତ ବହୁବିଧ ପଶୁପକ୍ଷୀଙ୍କ ଚିତ୍ର ଅଙ୍କାଯାଏ । ଜଂଗଲରୁ କାଠ ବୁହାହୋଇ ଆସେ । ହାଟରୁ କିଣାହୁଏ ନୂଆନୂଆ ଖଦିପଟା । ଝିଅମାନଙ୍କ ପାଇଁ କିଣାହୁଏ ଅଳଙ୍କାର । ଘରେଘରେ ପ୍ରସ୍ତୁତ ହୁଏ ମହୁଲି, ଚାଉଳି, ଲନ୍ଦା, ପେଣ୍ଡମ ପ୍ରଭୃତି ପାନୀୟ । ସବୁରି କଣ୍ଠରେ ଭରିଯାଏ ଗୀତର ଲହର । ପୁଷ୍ୟା, ମଘା, କିମ୍ବା ସ୍ୱାତୀ ନକ୍ଷତ୍ରରେ ଆରମ୍ଭ ହୁଏ ପୁଷ୍ ପରବ୍ ପାଳନର ବିଧି । ଏଇ ନକ୍ଷତ୍ର ଶୁଦ୍ଧିକୁ ନେଇ ଭିନ୍ନଭିନ୍ନ ଗ୍ରାମରେ ଭିନ୍ନଭିନ୍ନ ଦିନରେ ପାଳନ କରାଯାଇଥାଏ ଏଇ ପର୍ବ । ଏଇ ପର୍ବ ପାଳନର ତିଥି ସ୍ଥିର କରି ଜଣାଇବା ପାଇଁ ଯେଉଁ ଗ୍ରାମକୁ ଯେଉଁଦିନ ଦିସାରି ଯାଏ ସେଦିନ ସେଇ ଗ୍ରାମରେ ଗୋଟିଏ ଅବିବାହିତା ଆଦିବାସୀ କନ୍ୟା ଉପବାସ ରହି ଦିସାରି ପାଇଁ ରୋଷେଇ କରେ । ଦିଶାରି ତିଥିବାର ସ୍ଥିରକରି ଗ୍ରାମବାସୀଙ୍କୁ ଜଣାଇ ଦେଲାପରେ ନିଜେ ଭୋଜନ କରନ୍ତି ଓ ପରେ ସେହି କନ୍ୟାଟି ଭୋଜନ କରିଥାଏ । ସେହି ନକ୍ଷତ୍ରର ସ୍ଥିତିକୁ ଦେଖି କୌଣସି ଏକ ମଂଗଳ ବାରରେ ହିଁ ଏଇ ପୁଷ୍ ଆରମ୍ଭ ହୁଏ । ରାତି ନ ପାହୁଣୁ ଗାଁ ଯାକର ଲୋକ ଗାଧୁଆ ପାଧୁଆ ହୋଇ ନୂଆ ଲୁଗାପଟା ପିନ୍ଧି ସଜବାଜ ହୁଅନ୍ତି । ସ୍ତ୍ରୀ ଲୋକମାନେ ଘରର 'ଗିଲୁକୁଡୁ' ବା ଈଶାଣ ଦେବତାଙ୍କ ପୂଜାସ୍ଥାନକୁ ଲିପାପୋଛା କରି ଚିତା ଲେଖନ୍ତି ବା କେହିକେହି ମୁରୁଜରେ ଝୋଟିଦେଇ ସୁନ୍ଦରଭାବେ ସଜାନ୍ତି । ଏଇଠି ରୁଖା ଉପରେ ଦୀପଟିଏ ଲଗାହୋଇ ରଖାଯାଏ । ସକାଳୁ ସକାଳୁ ଗାଁ ଲୋକମାନେ ପୂଜାପାଇଁ ନଡ଼ିଆ, ଫୁଲ, ଧୂପ, ଦୀପ ସହିତ ବଳି ଭୋଗପାଇଁ ପାରା, କୁକୁଡ଼ା, ଛେଳି, ମେଣ୍ଢା ଇତ୍ୟାଦି ଧରି ଘରୁ ବାହାରନ୍ତି । ଢୋଲ, ମହୁରୀ, ଟମକ, ଡାମି, ଚାଙ୍ଗୁ, ଆଦି ବାଦ୍ୟ ବାଜେ । ଧାଙ୍ଗଡ଼ା ଧାଙ୍ଗିଡ଼ୀମାନେ ନାଚିନାଚି ଚାଲନ୍ତି । ଏମାନଙ୍କର ଶୋଭାଯାତ୍ରା ଚାଲେ ଗାଁର ଗୁଡ଼ିଘର ବା ହୁଣ୍ଡିଘର ଆଡ଼କୁ । ଆଗରେ ଚାଲନ୍ତି ଦିଶାରୀ ଓ ଜାନୀ । ତା ପଛକୁ ବେଜୁଣୀ ଓ ଗୁରୁମାଈ ମାନେ ନାଚିନାଚି ଚାଲନ୍ତି । ମଝିରେ ଚାଲନ୍ତି ବାଇଦ ବଜାଉଥିବା ଲୋକମାନେ । ତା ପଛକୁ ନାଚଗୀତରେ ମସଗୁଲ ଗାଁର ଆବାଳବୃଦ୍ଧବନିତା । ସମସ୍ତେ ଯାଇ ପହଞ୍ଚନ୍ତି ଗାଁ ମୁଣ୍ଡ ଦେବତା ଘର ଆଗରେ । ଏଇଠି ଚାଲେ ନାଚଗୀତ । ଦିଶାରୀ ସୂର୍ଯ୍ୟକୁ ଅନାଇ ପର୍ବ ଆରମ୍ଭ ସମୟରେ ସୂଚନା ଦିଏ । ଜାନୀ ପୂଜା ଆରମ୍ଭ କରେ । ବିଳିଦିଏ । ପ୍ରତ୍ୟେକଘରୁ ଆସିଥିବା ପୂଜା ସାମଗ୍ରୀ ଓ ବଳିଦ୍ରବ୍ୟକୁ ଗ୍ରାମଦେବୀ, ଝାକର ଦେବତା, ଡଙ୍ଗର ଦେବତା, ବନଦେବୀ, ପିତୃପୁରୁଷ ବା ଡୁମ୍ବା ଦେବତାଙ୍କ ଉଦ୍ଦେଶ୍ୟରେ

ବଳିଦେବାପରେ ତାହା ଏକତ୍ର ରାନ୍ଧନ୍ତି । ଜାନି ଆସି ପ୍ରତି ଘରର ଈଶାଣ ଦେବତାଙ୍କ ପାଖରେ ପୂଜା କରେ । ଏହାପରେ ଖିଆପିଆ ଚାଲେ । ମଦପିଇ ମାତାଲ ହୋଇ ଏମାନେ ସାରାଦିନ ନାଚଗୀତରେ ମାତି ଯାଆନ୍ତି । ଦ୍ୱିତୀୟଦିନ ସେଇ ଏକା ରାତିରେ ଡୁମ୍ବା ଦେବତାମାନଙ୍କୁ ବା ପିତୃପୁରୁଷ ମାନଙ୍କୁ ବଳିଦେଇ ପୂଜା କରାଯାଏ । ରନ୍ଧା ଖାଦ୍ୟ ଅର୍ପଣ କରାଯାଏ ଏବଂ ପିତୃପୁରୁଷଙ୍କ ପାଇଁ ମଦ ସଲପ ଅର୍ପଣ କରାଯାଏ । ରାତିକୁ ଗାଁ ହୁଣ୍ଡିଘର ବା ଝାକର ଦେବତା ପାଖରେ ବିଭିନ୍ନ ଜାଗାରୁ ଚୋରୀକରି ଅଣାଯାଇଥିବା ଜାନୀ ମନ୍ତ ପଢ଼ି କୁକୁଡ଼ା ମାରି ରକ୍ତ ଢାଳେ ଓ ହଳଦୀ ମିଶା ଅରୁଆ ଚାଉଳ, ଫୁଲ ପକାଏ । ତାପରେ ସେଥିରେ ନିଆଁ ଲଗାଏ । ଏହି ନିଆଁରେ ଚୋରୀ ହୋଇ ଆସିଥିବା ପରିବା ପୋଡ଼ି ଖିଆଯାଏ । ଗୁରୁମାଇମାନେ ନାଚନ୍ତି । ଧାଙ୍ଗଡ଼ା ଧାଙ୍ଗଡ଼ୀମାନେ ନାଚନ୍ତି । ବାଇଦ ବାଜେ । ମଦପିଆ ଚାଲିଥାଏ । ନାଚଗୀତରେ ରାତି ପାହିଯାଏ । ତୃତୀୟଦିନ ଗାଈ ବଳଦଙ୍କୁ ଗାଧୋଇ ଦେଇ ପୂଜା କରାଯାଇଥାଏ ଓ ଖେଚୁଡ଼ି ତଥା ଅନ୍ୟାନ୍ୟ ଭଲଭଲ ଖାଦ୍ୟ ଖାଇବାକୁ ଦିଆଯାଏ । ଏହାପରେ ଗାଁ ଗାଁରୁ ନାଚଦଳ ଆସନ୍ତି । ଗାଁ ଗଣ୍ଡାରେ ବୁଲି ନାଚଗୀତସାରି ଛେରଛୋରା ମାଗନ୍ତି ଓ ପାନିଆ ଜୁନିଆ ଗାଆନ୍ତି । ସାଧାରଣତଃ ତିନିଦିନରେ ଏହି ପର୍ବ ଶେଷ ହୁଏ । ତେବେ ସ୍ଥଳ ବିଶେଷରେ ଏହା ଲମ୍ବି ଯାଇଥାଏ । ୮ ଦିନ ଧରି ଏହା ପାଳନ କରନ୍ତି । ସେମାନେ ଏହି ପର୍ବରେ ନୂଆ ଶିମ୍ବବିରୁ ପୂଜା କରି ଏହି ପର୍ବ ଅବସରରେ ଖାଇଥାନ୍ତି । ଶେଷଦିନ ବାଜାବଜାଇ ନୃତ୍ୟ କରିବାସହ ଝାଟିରେ ପିଟାପିଟି ହୋଇଥାନ୍ତି । ସେମାନଙ୍କର ବିଶ୍ୱାସ ଏପରି କରିବା ଦ୍ୱାର ସହିବା ଶକ୍ତି ବଢ଼ିବ ଓ ପରସ୍ପର ମଧ୍ୟରେ ହିଂସା ଈର୍ଷା କି ରାଗ ମନୋଭାବ ରହିବ ନାହିଁ । ପରଜା ସ୍ତ୍ରୀ ଲୋକମାନେ ଏହି ପର୍ବରେ ତେଲ ହଳଦୀ ଲଗାଇ ଦେଇ ନିଜ ସ୍ୱାମୀମାନଙ୍କୁ ଗାଧୋଇ ଦେଇଥାନ୍ତି । ଏହି ଅବସରରେ ପ୍ରତି ଗାଁରୁ ଦାଣ୍ଡାହୁଲିଆ ଦଳ ବା ନାଚଦଳ ବାହାରି ଗାଁ ଗାଁ ବୁଲି ନାଚ ଦେଖାନ୍ତି ଓ ଚାଉଳ ପଇସା ସଂଗ୍ରହ କରନ୍ତି ।

୭୪. **ପୁଷ୍ ପାଲି** - *ଦେ.ବି. :* ମାଲକାନଗିରି ଜିଲ୍ଲାର ଏକ ଗ୍ରାମ ବିଶେଷ । ପୁଷ୍ ପରବ ଆଦିବାସୀମାନଙ୍କର ଏକ ପ୍ରିୟ ପରବ । ଶସ୍ୟର ପ୍ରାଚୁର୍ଯ୍ୟରେ ଆନନ୍ଦ ବିଭୋର ଆଦିବାସୀ ସବୁ ପରବ ଠାରୁ ଏହାକୁ ଶ୍ରେଷ୍ଠ ମଣିଥାଏ । ସେଥିପାଇଁ ଅନ୍ୟାନ୍ୟ ପରବ ଅନୁସାରେ କୌଣସି ଗାଁ ନାମିତ ହୋଇ ନଥିବା ବେଳେ କେଳବ ପୁଷ୍ ପରବ

ନାମାନୁସାରେ ବହୁ ଆଦିବାସୀ ପଲ୍ଲୀ ମାଲକାନଗିରି ତଥା ବସ୍ତର ଜିଲ୍ଲାରେ ନାମିତ ହୋଇଛି । କେବଳ ମାଲକାନଗିରି ଜିଲ୍ଲାରେ ଏହି ନାମରେ ଦୁଇଟି ମୁଖ୍ୟ ଗାଁ ରହିଛି । ଗୋଟିଏ ତାର୍ଲାକେଟା ପଞ୍ଚାୟତରେ ଓ ଅନ୍ୟଟି କୁଡୁମୁଲଗୁମ୍ମା ପଞ୍ଚାୟତରେ ।

୭୫. **ପୁଷଚୋର** - *ଦେ.ବି. :* ପୁଷ୍ ପରବ ସମୟ ଆନୁସଂଗିକ ଚୋରୀ ପ୍ରଥା । ୩ୟଦିନ ସଞ୍ଜ ସମୟରେ ବେରଣ ମୁଣ୍ଡାରେ ଧାଙ୍ଗଡ଼ା, ଧାଙ୍ଗଡ଼ି ଡକରା ଡକରି ପିଲାମାନେ ଓ ଅନ୍ୟମାନେ ସବୁ ଜମା ହୁଅନ୍ତି । ପୁଷ୍ ପର୍ବ ସମୟରେ 'ପୁଷ୍ ଚୋର' କାମ କରିବା ପରଜାମାନଙ୍କର ଏକ ପ୍ରାଚୀନ ପ୍ରଥା । ସେଦିନ ରାତିରେ ଧାଙ୍ଗଡ଼ା ଧାଙ୍ଗଡ଼ିମାନେ ଲୋକମାନଙ୍କର ବାଡ଼ି ବଗିଚାରୁ ଆଳୁ, ବୋଇତାଳୁ, କୋବି, ବାଇଗଣ, ଶିମ୍ବ ଇତ୍ୟାଦି ଚୋରାଇ ଆଣନ୍ତି ଏବଂ ଏଗୁଡ଼ିକୁ ନେଇ ବେରଣ ମୁଣ୍ଡା ନିକଟରେ ଜଳୁଥିବା ନିଆଁରେ ପୋଡ଼ି ଖାଆନ୍ତି । (ତୁଳନୀୟ ତେଲୁଗୁମାନଙ୍କ ଭୋଗି ପାଣ୍ଡୁମ୍ ।)

୭୬. **ପୁଷାର୍କେଶାମ୍** - *ଦେ.ବି. :* ପୌଷ ପର୍ବ ଗୀତ । ପୌଷ ପର୍ବ ଅବସରରେ ବଣ୍ଡା ଆଦିବାସୀ ସଂପ୍ରଦାୟ ଶିମ୍ବ ଓ ମୂଷା ମାଂସକୁ ରାନ୍ଧି ନୂଆ ଫସଲର ପିଠା କରି ଦେବାଦେବୀଙ୍କୁ ପୂଜା କରିଥାନ୍ତି । ପରେ ପୂଜାରୀ ଓ ଗାଁ ଲୋକେ ଶିମ୍ବ ଓ ନୂଆ ଶିମ୍ବ ଖାଆନ୍ତି । ଏହି ପର୍ବରେ ବଣ୍ଡା ପୁରୁଷ ଓ ସ୍ତ୍ରୀ ପୁଷାର୍କେଶାମ୍ ଗୀତ ଗାଇଥାନ୍ତି :-

ସ୍ତ୍ରୀ : ପୁ :- ପୁଷାର୍କେନ୍ ପୁଷାର ମାଘ ଆର୍କେନ୍ ମାଘ ବାଇ
ଚୈତ୍ର ଆର୍କେନ ସଏଲାଗ ମଏନା ବେ ।
(ପଉଷରେ ପଉଷ ମାଘରେ ମାଘ ଆମେ ଚଇତରେ ଆନନ୍ଦ)

୭୭. **ପୁସ୍ତେ** - *ଦେ.ବି. :* ଏକ ଅଳଙ୍କାର ବିଶେଷ । ପଇସା ଓ ରସରେ ତିଆରି ମାଳି । ଏହା କଳା ସୂତାରେ ଗୁନ୍ଥା ହୋଇଥିବା ପଇସା ମାଳି । ପ୍ରାୟ ଛତିଶଗଡ଼ ଉପାନ୍ତକୁ ଲାଗିଥିବା ଅଞ୍ଚଳ ଆଦିବାସୀ ତଥା ଅନ୍ୟ ସମସ୍ତ ଆଦିବାସୀ ଗୋଷ୍ଠୀର ସ୍ତ୍ରୀମାନେ ଏଭଳି ଅଳଙ୍କାର ପିନ୍ଧନ୍ତି ।

୭୮. **ପୂଜା** - *ଦେ.ବି. :* ଏକ ସ୍ୱତନ୍ତ୍ର ପ୍ରକାର ବୀରୁ ବା ପୂଜା । ବସନ୍ତ ଓ ମିଳିମିଳା ଆଦିରୁ ମୁକ୍ତି ପାଇଁ ଠାକୁରାଣୀଙ୍କ ଉଦ୍ଦେଶ୍ୟରେ ଯେଉଁ ପୂଜା କରାଯାଏ । ଯେପରିକି ଘଟଯାତ୍ରା, କଳସୀ ଯାତ୍ରା ଇତ୍ୟାଦି ।

ଏଭଳି ପୂଜା ପାଉଥିବା କେତେକ ଲୋକଦେବୀ : ଡଙ୍ଗର୍ ଦେଇ ମାତା, ଶାଁଡଲା ଦେଇ ମାତା, ପେଣ୍ଡ୍ରାଣୀ, ମା ମଙ୍ଗଳା, ପର୍‌ଦେଶିନ୍ ମାତା ଆଦି ।

୭୯. ପେଜ୍କୁଣୀ - *ଦେ.ବି. :* ବେଜୁଣୀ, ପେଜୁଣୀ ମୁଣ୍ଡରେ ଜଟ ପଡ଼େ ଏବଂ କାଳିସୀ ଲାଗେ । ଏମାନେ ଦେବୀଙ୍କୁ ମାଙ୍ଗଣା ଓ ପୂଜା କରନ୍ତି । ଲୋକ ବିଶ୍ୱାସ ଯେ ଏମାନେ ସ୍ୱପ୍ନରେ ସମସ୍ତ ଦେବଦେବୀଙ୍କ ସହ କଥାବାର୍ତ୍ତା କରନ୍ତି । ଦେବାଦେବୀଙ୍କ ଇଂଗିତରେ ଲୋକମାନଙ୍କୁ ଆଦେଶ ଦେଇଥାନ୍ତି । ଏମାନଙ୍କର କାର୍ଯ୍ୟ ଗୁରୁମାଇଙ୍କ କାର୍ଯ୍ୟ ସହ ଅନେକଟା ସମାନ । ଫରକ ହେଉଛି ଗୁରୁମାଇ ମାନେ ଅଧିକ ମନ୍ତ୍ରସାଧନ କରିଥାନ୍ତି ।

୮୦. ପେଣ୍ଡମ୍ - *ଦେ.ବି. :* ସରାବ ଜାତିର ପାନୀୟ । ଇଂ- Indigenous wine.

ମାଣ୍ଡିଆ, ଚାଉଳ, ଖେଡ୍‌ଜନା, ଜନ୍ଧ୍ରି, ସୁଆଁ, କାକଡ଼ା ଆଖି ଇତ୍ୟାଦି ଶସ୍ୟକୁ ଭାତ ଭଳି ଗରମ ପାଣିରେ ସିଝେଇ ଦିଆଯାଏ । ମାଣ୍ଡିଆ କ୍ଷେତ୍ରରେ ତାହାକୁ ଦୁଇ ଫଡ଼ା କରି ସିଝେଇ ଦିଆଯାଏ । ତାପରେ ପେଜଗାଳି ସେହି ଭାତକୁ ଗୋଟିଏ ଟାକ୍‌ଲାରେ ସିଝାଯାଏ । ଭାତଥଣ୍ଡା ହେଲାପରେ ଏଥି ସହ ଚିତ୍ରମୁଲ ଓ ଚାଉଳ ଚୁନାର ମିଶ୍ରଣରୁ ତିଆରି ଏକ ପ୍ରକାର ଔଷଧ 'ପେଣ୍ଡମ ଓଷ' ମିଶାଇ ଦିଆଯାଏ । ଡମ ବା ଗୁର୍ଖାମାନେ ଏଇ ଔଷଧ ତିଆରି କରି ବିକନ୍ତି । ଭାତ ସହ ଔଷଧ ଭଲଭାବେ ମିଳାଇ ଦେବାପରେ ଗୋଟିଏ ବଡ଼ ହାଣ୍ଡିରେ ତାହାକୁ ପୁରାଇ ତିନିରୁ ଚାରିଦିନ ପର୍ଯ୍ୟନ୍ତ ପଚାନ୍ତି । ତାପରେ ଗୋଟିଏ ବା ଦୁଇ ଗରିଆ ପାଣି ସେଥିରେ ମିଶାଇ ଘଣ୍ଟେ କିମ୍ବା ଦୁଇଘଣ୍ଟା ବତୁରେଇ ଦିଆଯାଏ । ଏହାପରେ ଗୋଟିଏ ପତଳା କନା କିମ୍ବା ବଡ଼ ପ୍ଲାଷ୍ଟିକ୍ ଛଣା ନେଇ ଏହି ପୋଚ ପାଣିକୁ ଛାଣି ଦିଆଯାଏ । ଏହି ଛଣା ପାଣିକୁ 'ପେଣ୍ଡମ୍' କୁହାଯାଏ । ଅନ୍‌କା ବା ଡୁମ୍‌ନି ସାହାଯ୍ୟରେ ସର୍ଗି, କେନ୍ଦୁ ବା ଶିଆଳି ପତ୍ରର ଠୋଲାରେ ଏହାକୁ ପରଶି ଦିଆଯାଏ । ଆଦିବାସୀମାନଙ୍କ ବିଚାରରେ କାକ୍‌ଡ଼ା ଆଖିରେ ପ୍ରସ୍ତୁତ ପେଣ୍ଡମ୍ ସବୁଠାରୁ ସୁସ୍ୱାଦୁ ।

୮୧. ପେଣ୍ଡରା - *ଦେ.ବି. :* ଆଦିବାସୀ ବୃକ୍ଷ ବିଶେଷ ।

ଏକ ପ୍ରକାର ଶକ୍ତ ମଞ୍ଜ ବିଶିଷ୍ଟ ବୃକ୍ଷ, ଯାହା ନବରଂଗପୁର ଅଞ୍ଚଳରେ ବହୁ ପରିମାଣରେ ଦେଖାଯାଏ । ବନ୍ୟବୃକ୍ଷ । ଫଳ ଦେଖିବାକୁ ଅଧଇଞ୍ଚ ବିଶିଷ୍ଟ ଗୋଲାକାର ଚେପେଟା ଆକାରର ।

(କ) ପେଣ୍ଡରା ଅଣ୍ଡ:ଗଣ୍ଡି : ବି : ପେଣ୍ଡରାଗଛ ଘେରା ଗାଁ, (ପୋଣ୍ଡରାହାଣ୍ଡି) ।

(ଖ) ପେଣ୍ଡରା ଅଣ୍ଡିଏନ/ଗେଣ୍ଡରାଗଡ଼ିଏନ୍: ଗଣ୍ଡି:ବି:ପେଣ୍ଡରାଅଣ୍ଡ ଗାଁର ସ୍ତ୍ରୀ ଲୋକ ।

(ଗ) ପେଣ୍ଡରା ଗଡ଼ିଏନ୍ ମାଇ : ଗଣ୍ଡ ଆଦିବାସୀ ଗୋଷ୍ଠୀର ମରା ଦେବତା / ମୃତ୍ୟୁ ପରାନ୍ତ ଦେବୀରେ ପରିଣତ ହୋଇଥିବା ଲୋକଦେବୀ । (ପେଣ୍ଡରାଣି) (ଘ) ପେଣ୍ଡରାନୀ / ପେଣ୍ଡରାଣୀ – ଦେ.ବି. ଉମରକୋଟର ଅଧିଷ୍ଠାତ୍ରୀ ଦେବୀ ।

ପେଣ୍ଡରାନୀ ମିଥ୍ । କିମ୍ବଦନ୍ତୀ : ମାନବୀରୁ ଦେବୀରେ ପରିଣତ ହୋଇ ପୂଜିତା ହେବା ଲୋକଦେବୀ ପେଣ୍ଡରାଅଣ୍ଡି ଏନ (ସଂପ୍ରତି ପେଣ୍ଡ୍ରାଣୀ ନାମରେ ପ୍ରସିଦ୍ଧ)ଙ୍କ ସୃଷ୍ଟି ସମ୍ବନ୍ଧରେ ଗଣ୍ଡ ଆଦିବାସୀ ସଂପ୍ରଦାୟ ମୁହଁରେ ନିମ୍ନ କିମ୍ବଦନ୍ତୀଟି ଶୁଣିବାକୁ ମିଳେ । ଓଡ଼ିଶାର ନବରଂଗପୁର ଜିଲ୍ଲାର ଉମରକୋଟ ଠାରୁ ପଶ୍ଚିମ ଦିଗରେ ୩୦ମାଇଲ (୪୮କି.ମି.) ଗଲେ ପଡ଼େ କୁନ୍ଦାଇ ଗ୍ରାମ । ଏଠାରୁ ୫ମାଇଲ ପରେ ଉତ୍ତର ପଶ୍ଚିମ ଆଡ଼କୁ ଆରମ୍ଭ ହୁଏ ଛତିଶଗଡ଼ର ବା ବସ୍ତରର ସୀମା । ଏଠାରେ ଘଞ୍ଚବଣ ଭିତରେ ରହିଛି କୋଡ଼ିଏ ପଚିଶଟି ଘର ଗଣ୍ଡ ବସତି । ଗାଁର ନାମ ପେଣ୍ଡରାଅଣ୍ଡ ବା ପେଣ୍ଡରା ହାଣ୍ଡି । ଗାଁର ଚାରିଆଡ଼େ ବହୁ ସଂଖ୍ୟାରେ ପେଣ୍ଡରାଗଛ ଥିବାରୁ ଏ ଗାଁର ନାମ ପେଣ୍ଡରା ଅଣ୍ଡ । ଗାଁ ପାଖରେ ପ୍ରବାହିତ ହେଉଛି କୁକୁରଲି ନଦୀ । ଏହି ଗାଁରେ ବୁରସୁଗଣ୍ଡର ଘର । ଏହାର ସାତପୁଅ ଗୋଟିଏ ଝିଅ ।

ଗାଁ ମଝିରେ ଗଣ୍ଡ ଯୁବକ ଯୁବତୀ ପାଇଁ ତିଆରି ହୋଇଥିବା ଘୋଟୁଲ (ଧାଙ୍ଗଡ଼ି ବସା)କୁ ଦିନେ ଅତିଥି ହୋଇଆସିଥିଲା ଅନ୍ୟ ଗାଁର ଯୁବକ ମଙ୍ଗତୁଗଣ୍ଡ । ବୁରସୁ ଗଣ୍ଡର ଝିଅ ଗୁରେଇ ତାକୁ ଦେଖିଲା ପ୍ରଥମଥର ପାଇଁ । ମଙ୍ଗତୁ ନାଁରେ ସିଏ ଗୀତ ଯୋଡ଼ିଦେଲା । ଆଉ ବାଇଦର ତାଳେତାଳେ ମଙ୍ଗତୁ ଓ ଗୁରେଇ ନାଚିଥିଲେ ସାରାରାତି ।

ଗୁରେଇ ବାପା ଜାଣିଲା ଝିଅ ମନର କଥା । ସେ ମଙ୍ଗତୁକୁ ଘରଜୋଇଁଆ ରଖିଲା କାମଦାମ ଦେଖିବ । ଯଦି ତା'ର ମନ ପାଏ ବର୍ଷେ, ଦୁଇବର୍ଷ ପରେ

କୁଳରିବାଜ ଅନୁସାରେ ବାହା କରାଇ ଦେବ ନିଜ ଝିଅ ସହିତ । ମଙ୍ଗତୁ ଗୁରେଇର ଭାଇମାନଙ୍କ ସହିତ ବଣକୁ ଯାଏ । କାଠଆଣେ, ଜଂଗଲ ମଝିରେ ଲମ୍ବି ଯାଇଥିବା ଦିପୁଟିଆ ବେଢ଼ା (ଦିପୁଟି ବା ଉଲିଶମାଗ) ରେ କାମ କରେ । ଫସଲ ଅମଳରେ ସାହାଯ୍ୟ କରେ । ଏମିତି ବରଷଟିଏ ବିତିଗଲା । ତା ଆରବର୍ଷ ଭୀଷଣ ବର୍ଷାରେ ଧୋଇ ହୋଇଗଲା ଜମିର ଫସଲ । ବଣପାଣିର ଖର ସୁଅରେ ଜମିତାଡ଼ି ହୋଇଗଲା । ମଙ୍ଗତୁ ଓ ତାର ବଡ଼ ଦୁଇ ଶଳା (ହାଇଣ୍ଟୁ) କଠିନ ପରିଶ୍ରମ କରି ଜମି ମରାମତି କଲେ । ହେଲେ ସହିଲା ନାହିଁ ପ୍ରକୃତି । ପରବର୍ଷ ପୁଣି ସେହି ପ୍ରଳୟଙ୍କରୀ ବର୍ଷା, ଜମି ତ ଗଲା ତା ସହିତ ଫସଲ ବି ଗଲା । ମଙ୍ଗତୁର ଦୁଇ ଶଳା ଆଦିବାସୀର ପାରମ୍ପରିକ ବିଶ୍ୱାସକୁ ନେଇ ଶିର୍‌ହା (ଯାହାକୁ କାଳିସୀ ଲାଗେ) ବସାଇଲେ । ଶିର୍‌ହା ନିଦାନ ଦେଲା ମାଟିମାଆ କୋପ କରିଛି, ମଣିଷ ରକତ ଦେଲେ ଶାନ୍ତି ହେବ । ଏହା ଶୁଣି ମଙ୍ଗତୁର ଦୁଇଶଳା, ବଣ ଭିତରେ ଦିନ ଦିପହରରେ, ଦିପୁଟିଆ ବେଢ଼ାରେ ମଙ୍ଗତୁକୁ ହାଣି ପୋତି ମାଟି ଘୋଡ଼ାଇଦେଲେ । ଖାଲି ଉପରକୁ ଦିଶୁଥିଲା ତାର ବାଁ ହାତ କାଣି ଆଙ୍ଗୁଠି ।

ଦିନ ଯାଇ ସଞ୍ଜହେଲା । ରାତି ସରିଲା । ମଂଗତୁ ଫେରିଲା ନାହିଁ । ଗୁରେଇ ତା ଆରଦିନ ସକାଳୁ ଧାଇଁଲା ଦିପୁଟିଆ ବେଢ଼ାକୁ । ତା ସହିତ ଯାଇଥିବା କୁକୁର ଦେଖାଇଦେଲା ମଂଗତୁର ମୃତଦେହ ପୋତା ହୋଇଥିବା ଜାଗା । ହୃଦୟ ଫାଟିଗଲା ଗୁରେଇର । କୁମାରୀ ଗୁରେଇ ମନଦୁଃଖରେ ଜମିହୁଡ଼ାରେ ଛିଡ଼ା ହୋଇଥିବା ପେଣ୍ଡରା ଗଛର ଡାଳରେ ଝୁଲି ପଡ଼ିଲା ବେକରେ ଶାଢ଼ି ଗୁଡ଼େଇ । ତାର କରୁଣ ପରିଣତି ଦେଖି କୁକୁର ଦୁଃଖରେ ତରଳି ଯାଇ ପାଲଟିଗଲା ନଈ । ସେହି ନଈର ନାମ ହେଲା କୁକୁରିଲି ନଈ । ସେ ବର୍ଷ ଚଇତ ମାସ ବୀଜ୍‌ପୁଟିନ୍ ଯାତ୍ରା (ଜମିରେ ବିହନ ବୁଣିବା ଉପଲକ୍ଷେ ପାଳିତ ଯାତ୍ରା) ଦିନ ଗୁରେଇର ଆତ୍ମା ପୁଜାରୀ ଦେହରେ ଉଭା ହୋଇ ତା'ର ସମସ୍ତ ଦୁଃଖ କାହାଣୀ ବର୍ଣ୍ଣନା କରି ତାକୁ ପୂଜା କରିବାକୁ ନିର୍ଦ୍ଦେଶ ଦେଲା । ଗାଁର ସମସ୍ତେ ତାକୁ 'ମରାଦେବତା' ଭାବେ ମାନ୍ୟତା ଦେଇ ନାମ ରଖିଲେ ପେଣ୍ଡରାଅଣିଏନ୍ (ପେଣ୍ଡରା ଅଣ୍ଡ ଗାଁର ଝିଅ ବୋଲି) । ସେ ଝୁଲିପଡ଼ି ମରିଯାଇଥିବା ପେଣ୍ଡରା ଗଛ ମୂଳେ ତା ସ୍ମୃତିରେ ତିଆରି କରିଦେଲେ ଗୁଡ଼ିଟିଏ । ସେ ହେଲେ ଗାଁର ସୁରକ୍ଷାର ଲୋକଦେବୀ । ତା'ପରେ ପ୍ରତ୍ୟେକ ଗଣ୍ଡ ଗାଁରେ ପେଣ୍ଡରାଣିଙ୍କ ଗୁଡ଼ି

ପ୍ରତିଷ୍ଠା ହେଲା । ଗାଁ ଲୋକେ ଦୁଃଖରୁ, ରୋଗରୁ, ଦୈବୀ ଦୁର୍ବିପାକରୁ, ପ୍ରାକୃତିକ ବିପର୍ଯ୍ୟୟରୁ, ବଣଜନ୍ତୁଙ୍କ ଉତ୍ପାତରୁ ରକ୍ଷା ପାଇବା ପାଇଁ ମା' ପେଣ୍ଡରାଣୀଙ୍କୁ ପୂଜା ମନାସିଲେ । କାଳକ୍ରମେ କେବଳ ଗଣ୍ଡ ଗ୍ରାମ ଗୁଡ଼ିକରେ ନୁହେଁ, ଅନ୍ୟ ଆଦିବାସୀ ଗ୍ରାମ ଗୁଡ଼ିକରେ ମଧ୍ୟ ପେଣ୍ଡରାଣୀ ଗ୍ରାମଦେବତୀର ପ୍ରସିଦ୍ଧି ପାଇଲେ । ନବରଂଗପୁର ସାମନ୍ତରାଜା ଚୈତନ୍ୟଦେବଙ୍କ ନିର୍ଦ୍ଦେଶକ୍ରମେ ଉମରକୋଟରେ ଗଢ଼ା ହେଲା ପେଣ୍ଡ୍ରାଣୀ ମନ୍ଦିର । ଜୟପୁର ରାଜା ରାମଚନ୍ଦ୍ର ଦେବ ତୃତୀୟ (୧୮୬୦-୮୯)ଙ୍କ ସମୟରୁ ପେଣ୍ଡ୍ରାଣୀଙ୍କ ପ୍ରତୀକ ଲାଠି ଦଶହରା ସମୟରେ ଉମରକୋଟରୁ ନିଆଗଲା ଜୟପୁର ରାଜାଙ୍କ ପୀଠଦେବୀ ଇଷ୍ଟଦେବୀ ଭଗବତୀଙ୍କ ଆସ୍ଥାନକୁ । ଏବେ ପ୍ରତି ଚୈତ୍ରମାସରେ ପେଣ୍ଡ୍ରାଣୀଙ୍କ ଯାତ୍ରା ଉମରକୋଟରେ ମହା ସମାରୋହରେ ପାଳିତ ହେଉଛି । ଏମିତି ଏହି ଲୋକଦେବୀ ଆଦିବାସୀ ଅଣ-ଆଦିବାସୀଙ୍କ ଦ୍ୱାରା ଭକ୍ତିରେ ପୂଜାପାଇ ପ୍ରସ୍ଥିତି ପାଇଲେ । ଏଭଳି ପ୍ରଭାବଶାଳୀ ଢଙ୍ଗରେ ମୃତ୍ୟୁବରଣ କରିଲାପରେ ଦେବୀ ବା ଦେବତାର ମାନ୍ୟତା ପାଇଥିବା ଅନ୍ୟ ଦୁଇଟି ଦୃଷ୍ଟାନ୍ତ ହେଉଛି, କାଳିଜାଈ, କେଦାରଗୌରୀ ।

୮୨. **ପେଣ୍ଡୁଲ୍** - *ଦେ.ବି. :* ବିବାହ, କୋୟାମାନଙ୍କ ବିବାହ ପ୍ରଥା ମଧ୍ୟରେ ସ୍ଥିରୀକୃତ ବିବାହକୁ କୁହାଯାଏ 'ପେଣ୍ଡୁଲ୍' । ପୁଷ୍ ପରବପରେ କୋୟାମାନେ ବିବାହ ପ୍ରସ୍ତୁତି କାର୍ଯ୍ୟରେ ବ୍ୟସ୍ତ ରହନ୍ତି । ବର ଓ କନ୍ୟା ଦେଖାଦେଖି ଚାଲେ । ପସନ୍ଦ ଯୋଗ୍ୟ କନ୍ୟା ଘରକୁ ଗଲାବେଳେ ପୁଅର ବାପା, ମା ଓ କୁଟୁମ୍ବ ଲୋକେ ମଦହାଣ୍ଡି ଧରି ଯାଆନ୍ତି । ଉଭୟ ପରିବାର ରାଜି ହେଲାପରେ ପ୍ରଥା ଅନୁସାରେ ବିବାହ କାର୍ଯ୍ୟ ଅନୁଷ୍ଠିତ ହୋଇଥାଏ । ପେଣ୍ଡୁଲ୍ ବା ବିବାହର ପ୍ରକାରଭେଦ (୧) ଆର୍ମିର୍ ନାତ୍ (ପୁଅଝିଅ ପରସ୍ପରକୁ ଭଲପାଇ କରୁଥିବା ବିବାହ) (୨) ପୋଇସ୍‌ଲାଗିଅତାଦେ (ଝିକାବିବାହ) (୩) ନେଡ଼େମ୍ କେରସପିପେଣ୍ଡୁଲ୍ ମାରନାତ୍ (ବାଲ୍ୟ ବିବାହ ପ୍ରଥା) (୪) ଏଙ୍ଗେ ମୁତେନ୍ ଅତାଦେ (ବଡ଼ ଭାଇର ମୃତ୍ୟୁପରେ ବିଧବା ଭାଉଜ ସହ ଦିଅରର ବିବାହ ପ୍ରଥା) (୫) ଆବାଦ୍ ମୁଡ଼େମ୍ ପେଣ୍ଡୁଲ୍ (ଦ୍ୱିତୀୟ ବିବାହ) (୬) ରାଣ୍ଡମୁଡ଼େମ୍‌କାର୍‌ସା (ବିଧବା ବିବାହ) (୭) କାଇଦେମୁତେମ୍ ଅତାଦେ (ପର ସ୍ତ୍ରୀ ଗ୍ରହଣ ପ୍ରଥା)

୮୩. **ପେଦା** - *ଦେ.ବି. :* କୋୟା ଗାଁ ମୁଖିଆ । ଗ୍ରାମ ମୁଖିଆ । ଇଂ- Village head. ସମାର୍ଥକ ଶବ୍ଦ-ନାୟକ, ସାଓଁତା ।

ମାଲକାନଗିରି ଜିଲ୍ଲା କୋୟା ଗ୍ରାମ ଗୁଡ଼ିକରେ ପେଦା ହେଉଛନ୍ତି ଗ୍ରାମ ମୁଖିଆ । ସେ ଗ୍ରାମ ବସାଏ । ଗ୍ରାମରେ ନୂଆ ପରିବାରକୁ ଜାଗା ଓ ଜମି ଦିଏ । ଗ୍ରାମର ଭଲମନ୍ଦ ସବୁ ବୁଝେ । ସରକାର (ପୂର୍ବକାଳରେ ରାଜା)ଙ୍କ ଅନୁଶାସନକୁ ମାନି ଚଳିବାକୁ ଗ୍ରାମବାସୀଙ୍କୁ ବାଧ କରାଏ । ଗ୍ରାମର ନ୍ୟାୟ ଅନ୍ୟାୟ ବୁଝେ ଓ ବିଚାରକରି ନିଷ୍ପତ୍ତି କରେ । ବିବାହ ପର୍ବ ପର୍ବାଣୀ, ସମୟ ନିର୍ଦ୍ଧାରଣ କରେ । ତାଙ୍କ ବିନା ଅନୁମତିରେ ଗ୍ରାମର କୌଣସ ଶୁଭ କାମ, ବା କାର୍ଯ୍ୟକ୍ରମ ହୋଇପାରେ ନାହିଁ । ଯେକୌଣସି ପରିବାରର ଯେକୌଣସି କର୍ମରେ ପେଦା ପାଖକୁ ମଦ, ମାଂସ, ଚାଉଳ ଓ ପରିବାପତ୍ର ସଂଙ୍ଗ ନିଶ୍ଚିତ ଭାବେ ଆସିଥାଏ ।

୮୪. ପେନୁ - *ଦେ.ବି. :* ଦେବତା ଇଂ- Daity.

କୟା ଓ କନ୍ଧମାନଙ୍କ ଦେବତା ପେନୁ । ବିଭିନ୍ନ ପେନୁ ପୂଜା ପାଆନ୍ତି, ଯଥା : ଜାକରୀ ପେନୁ / ଧରଣୀ ପେନୁ / ହାରୁପେନୁ / ଲାଇପେନୁ / ତୁମ୍ବା ପେନୁ ଇତ୍ୟାଦି ।

କୁଭି କନ୍ଧମାନଙ୍କର ମୁଖ୍ୟ ପେନୁ ହେଲେ :

ଉଦାହରଣ : ଜାକରୀ ପେନୁ (ମାଟିମାତା) ଦର୍ମୁପେନୁ (ସୂର୍ଯ୍ୟ/ଧର୍ମ / ଅକାଶ ଦେବତା) ଟାଣା ପେନୁ ବା ଦାରେନି ଦାର୍ଣ୍ଣି ପେନୁ (ମାଟିଦେବତା) ସୋରୁ ପେନୁ (ପର୍ବତ ଦେବତା), ହୋରୁ ପେନୁ (ବନ ଦେବତା) ଇତ୍ୟାଦି । ଏହିଭଳି କନ୍ଧ ଧର୍ମ ଧାରଣାରେ ୮୪ପ୍ରକାର ପେନୁ ଅଛନ୍ତି ।

କୋୟାମାନଙ୍କର ଦେବଦେବୀଙ୍କୁ ମଧ୍ୟ 'ପେନ୍' କୁହାଯାଏ । କନ୍ଧମାନଙ୍କର ପେନୁ ଗଣ୍ଡମାନଙ୍କର ପେନ୍ ସମାର୍ଥବୋଧକ ଶବ୍ଦ । କୋୟାମାନଙ୍କର କେତେକ ବଂଶ ବା ଗୋତ୍ରରେ ଇଷ୍ଟଦେବଙ୍କ ନାମ ନିମ୍ନରେ ଦିଆଗଲା :

| କୋୟାଙ୍କ ବିଭିନ୍ନ ଗୋତ୍ରର ନାମ | ଇଷ୍ଟ ଦେବା-ଦେବୀଙ୍କ ନାମ | ଇଷ୍ଟ ସ୍ଥାନ |
|---|---|---|
| ପଡ଼ିଆମୀ | ପେରମବୋଇ ପେନ୍ | ଗୁଇଁପାଡ୍ |
| କଓ୍ବାସୀ | ମା ପେନ୍ (ଦେବୀ) | |
| | କସ ମଣ୍ଡଳ ପେନ୍ (ଦେବତା) | କଟପାଡ୍ |

| | | |
|---|---|---|
| ସୋଡ଼ି | ଡୁଲ୍ ଡକରୀ (ଦେବୀ) | |
| | ରାୟକାଲ୍ ବଣ୍ଡାଲ୍ (ଦେବତା) | କଟପାଡ଼୍ |
| ମାଡ଼ି / ମାଡ଼ୀ | ମାଙ୍ଗେ ବିମାଲ (ଦେବୀ) | |
| | ଆନ୍ଦାଲ୍ କୋନାଲ (ଦେବତା) | କଟପାଡ଼୍ |
| ମାଡ଼କାମୀ | ଆକାଲ ଆନ୍ଦାଲ୍ ଦେବତା | ଓ୍ୱଡ଼ିଗାଲ |
| | ମୁଦ୍ୟେମୁୟଲ (ଦେବତା) | ଓ୍ୱଡ଼ିଗାଲ |
| | ୟେୟେଙ୍ଗ ଇରମରାଜା (ଦେବତା) | ଓ୍ୱଡ଼ିଗାଲ |

କୋୟାମାନଙ୍କର ପ୍ରତ୍ୟେକ ଗୋତ୍ର ପାଇଁ ସ୍ୱତନ୍ତ୍ର ଏକ ବା ଏକାଧିକ ଇଷ୍ଟ ଦେବଦେବୀ ରହିଥାନ୍ତି । କୋୟାମାନଙ୍କ 'ଭଣ୍ଡାର ଘରେ' ଏହି ଦେବଦେବୀଙ୍କ ଆସ୍ଥାନ ଥାଏ । ପ୍ରତି ପର୍ବପର୍ବାଣୀ ଓ ମଂଗଳ କାର୍ଯ୍ୟରେ ସର୍ବପ୍ରଥମେ ସେମାନେ ଇଷ୍ଟଦେବତାଙ୍କୁ ପୂଜା କରିଥାନ୍ତି । ବିପରୀତାର୍ଥ : ମୁଡ଼କ – ଅପଦେବତା ବା ଅନିଷ୍ଟକାରୀ ଦେବତା । ଏତଦ୍ ବ୍ୟତୀତ ଅନ୍ୟ କୋୟା ପେନ୍‌ମାନେ ହେଲେ (କ) ଉସେମୁଜିଆ (ବର୍ଷା ଓ ବନ୍ୟାର ଦେବତା ।) (ଖ) ମାତା (ବାଡ଼ି ଓ ବସନ୍ତ ରୋଗର ଦେବୀ) (ଗ) ଦନ୍ତାଓ୍ୱାଡ଼ିନ୍, ମାଡ଼ଦାଲ୍ ରଂଗେ, ବଙ୍ଗାଲ୍ ପାଟ୍‌ନା, କୁଆକୁଣ୍ଡିନ୍, କନ୍ଦାଙ୍ଗାଡ଼ବୋ, ମାନସ୍‌କୁଣ୍ଡି, ସିନ୍ଦ ଗୋଡ଼ିନ୍ ଇତ୍ୟାଦି । ଏହି 'ଗ' ପର୍ଯ୍ୟାୟର ଦେବୀମାନଙ୍କୁ ଓ୍ୱାଡ଼େ ବା ଗୁଣିଆ ନିଜର ଗାରେଡ଼ି ମନ୍ତ୍ର ବଳରେ ଆବାହନ କରି ପୂଜା କରିଥାଏ ।

୮୫. **ପେଲା ଏମ୍‌ଲା** – *ଦେ.କ୍ରି.ବି. :* କଷ୍ଟେମଷ୍ଟେ ଇଂ- With difficulty.

ଦେଶିଆ ପ୍ରବାଦରେ ଏହାର ବ୍ୟବହାର :

'ନଥିଲା ବେଳେ ନାତି ଘଇତା
ପେଲା ଏମ୍‌ଲା କରି ଦିନ୍ ଯାଉତା ।'

୮୬. **ପୋଅଡ଼ି** – *ଦେ.ବି. :* ଅପରିଷ୍କାର, ଇଂ- Unclean, nasty.

ଘର ଅଗଣାକୁ ଛେପ ଖଙ୍କାର ପକାଇ, ମୁତାମୁତି କରି ଦୁର୍ଗନ୍ଧ ଯୁକ୍ତ କରିବାକୁ 'ପୋଅଡ଼ି' ଶବ୍ଦ ଦ୍ୱାରା ବ୍ୟକ୍ତ କରାଯାଇଥାଏ । 'ସେ ଘରଲୋକ୍ ବଡ଼ ପୋଅଡ଼ରେ । ତାଙ୍କ ରାନ୍ଧା ଖାଇବାକେ ମିଶାଗିନ୍ ଆଇସି ।'

୮୭. **ପୋଟି** – *ଦେ.ବି. :* ମୃତ୍ୟୁପରେ ପାଳନ କରାଯାଉଥିବା ଏକ ରୀତି ।

ଯଦି ଗର୍ଭବତୀ ମହିଳା ମୃତ୍ୟୁବରଣ କରେ ଏହି ପ୍ରଥା ପ୍ରାଳନ କରାଯାଏ । କିନ୍ତୁ ଅନ୍ୟାନ୍ୟ ରୀତି ଅପରିବର୍ତ୍ତିତ ରହେ । ଏହି ପ୍ରଥା ପାଇଁ, ଶବବାହକମାନେ ଶ୍ମଶାନରୁ ଫେରିବା ସମୟରେ ସିରେଲ୍ (ମୂଷା)ଟିଏ ଧରନ୍ତି ଏବଂ ନଦୀ ବା ଝରଣା ନିକଟରେ ସେହି ମୃତ ବ୍ୟକ୍ତିର ଡୁମ୍ବା ନାମରେ ବଳି ଦିଅନ୍ତି ଏବଂ ଗାଧୋଇ ପାଧୋଇ ଘରକୁ ଫେରନ୍ତି ।

ଏହି ପ୍ରଥାକୁ ଅଲାର ଗାଦବାମାନେ 'ପୋଟି' କହନ୍ତି । କେତେକ ସ୍ଥାନରେ ଏହାକୁ ଢାଟି ପର୍ବ କହନ୍ତି । ଏଥିରେ ସ୍ତ୍ରୀ ଲୋକମାନେ ମଧ୍ୟ ଭାଗ ନେଇଥାନ୍ତି ।

୮୮. ପୋଟି ସାମର - *ଦେ.ବି. :* ଧଳା ଦିଶୁଥିବା ସମ୍ବର । ଏହା ଆଜିକାଲି ଦୁର୍ଲ୍ଲଭ

୮୯. ପ୍ୟାସ୍ / ସାପ - *ଦେ.ବି. :* ସାପ-ସର୍ପ, ଇଂ- Snake, Serlent.

ଓଡ଼ିଆରେ ସାପ । ଏହାର ବିଭିନ୍ନ ପ୍ରକାର ଭେଦ ରହିଛି । ତେବେ ଆଦିବାସୀ ଅଞ୍ଚଳରେ ଯେଉଁ ସବୁ ସାପ ଦେଖାଯାଆନ୍ତି ସେଗୁଡ଼ିକ ନାମ ନିମ୍ନ ପ୍ରକାରର : ଦୁଇ୍‌ବୋଡ଼ା, ବାମନି, ବାଉବୋଡ଼ା, ଇଡ଼ିପୋଡ଼ା, ନାଗ, ସାଠିସାପ୍, ଦୁନୁପନ୍ତି, ମଣ୍ଡଲ୍ ସାପ, କଲାଟ୍, ଡାଣ୍ଡିଆ, ଆଡ଼ଗୁଣ୍ଡିଚା ଇତ୍ୟାଦି ଏଗାରରୁ ଅଧିକ ପ୍ରକାରର ସାପ ଦେଖାଯାଆନ୍ତି । (ନିର୍ଦ୍ଦିଷ୍ଟ ନାମାନୁସାରେ ଏମାନଙ୍କ ବିଷୟରେ ସୂଚନା ଦିଆଯାଇଛି ।)





୧. **ଫନ୍ଦିଗୀତ** – *ଦେ.ବି. :* ଗୋଟିଏ ନିର୍ଦ୍ଦିଷ୍ଟ ଉପଲକ୍ଷ୍ୟରେ ଗାନ କରାଯାଉଥିବା ଗୀତ । ପ୍ରଶ୍ନୋତ୍ତରଧର୍ମୀ ଗୀତ ।

ଭାଦ୍ର ମାସ ନବାନ୍ନ ପର୍ବ (ନୂଆଖାଇ ପରବ)ରେ ଫନ୍ଦିଗୀତ ଗାନ କରାଯାଏ । ଏହି ଗୀତରେ ପ୍ରଶ୍ନଟିଏ ବା ପହେଲିଟିଏ ପଚରା ଯାଇଥାଏ । ଯାହାର ଉତ୍ତର ଅନ୍ୟମାନେ ଦେଇଥାନ୍ତି । ଯଥା :

"ଉଦଲା ଜନ୍ ପୁନି ବାରୁଆୟ
ଘର୍ ମନନେ ବୋଲଲା ଗୋଟ୍ ପିଟୁଆୟ
ଆଲେ ଦେଇ ରଜାଘରେ କାତା କଉ ଆସ୍
ସଗର ବରଷ ଅସନ ଆସବାୟ ବଲ୍‌ତେ
କାୟ ଖାଇକରି ସଂଗାୟ ରହୁ ଆସ
ହେ ଶାଲେ ଶାଲେ ଶାଲେ
ଗଛକେ ଡୁଲାୟ ଦେଲୁ ଡଙ୍ଗର ତଲେ ।"

ଅନୁବାଦ : ଜହ୍ନ ଉଇଁଲାଣି ଏବେ ପୁଣି ଯେ ଆସିବ ପୂର୍ଣ୍ଣିମା । ଏ ଘରର କଥା ମାନ ଫିଟେ ନାଇଁ କେବେ । ହେ ମୋ କୁଳର ଲୋକେ କହଥରେ ରାଜାଘର କଥା/ ସବୁ ବର୍ଷ ଏହିପରି ଯଦି ତୁମେ ଆସିବାକୁ କୁହ / ତା ହେଲେ ନ ଖାଇ ନ ପିଇ ଆମ ପାଇଁ ସବୁ ସାଇତି ରଖିଥାଅ । ଏମିତି ଗୀତ ଗାଇ ଗଛକୁ ଶୁଖାଇ ଦେଲୁ ପାହାଡ଼ ଛାତିରେ ।

୨. **ଫାଲେଭୀମ୍** – *ଦେ.ବି. :* କୋୟା ଦେବତା :

(କ) କୋୟା ଆଦିବାସୀ ଗୋଷ୍ଠୀ (ମାଲକାନଗିରି ଜିଲ୍ଲା)ର ପାଳନକର୍ତ୍ତା ଭାବେ ଗୃହୀତ ଦେବତା ।

(ଖ) ଗାଦେଭୀମ୍ : କୋ : ବି : କୋୟାମାନଙ୍କର ଶସ୍ୟ ଉତ୍ପାଦନର ଦେବତା :

(ଗ) ଇରୁ ସିରମା : କୋୟା : ବି : କୋୟା ଧର୍ମବିଶ୍ୱାସରେ ସଂହାରର ଦେବତା (ସଂହାର କର୍ତ୍ତା) ଭାବେ ପୂଜିତା ।

(ଘ) ଦେଉଣ୍ଡୁ : କୋ.ବି. ସୃଷ୍ଟି ପ୍ରକିୟା ସହିତ ଜଡ଼ିତ ଏକ ସର୍ବଶକ୍ତିମାନ କୋୟା ଦେବତା (ଭଗବାନ) ତାଙ୍କ ସ୍ତ୍ରୀ (ଦଉଣ୍ଡୁମୁତେ)

(ଙ) ଗୁଡ଼ିମାତା : କୋୟାମାନଙ୍କ ଗ୍ରାମଦେବୀ । ଗ୍ରାମଦେବୀଙ୍କର କୌଣସି ସ୍ୱତନ୍ତ୍ର ମୂର୍ତ୍ତି ନଥାଏ । ଗ୍ରାମ ମଧ୍ୟରେ କର୍ସି ନାମକ ଏକ ବୃକ୍ଷର କାଠ ଉପରେ ଆବୃତ ହୋଇଥିବା ଏକ ଉଇହୁଙ୍କା ଏହାଙ୍କ ପ୍ରତିମୂର୍ତ୍ତି ରୂପେ ପୂଜାପାଏ ।

୩. **ଫୁଇ୍ ସୁଗ୍‌ସାମ୍** - *ଦେ.ବି. :* ଫୁଲଝାଡୁ ସଂଗ୍ରହ ଗୀତ ।

ବଣ୍ଡା ରମଣୀମାନେ ପୌଷପର୍ବ ପରେ ଫୁଲଝାଡୁ ସଂଗ୍ରହ କରିବା ପାଇଁ ଗାଁରୁ ମିଶି ଦୂର ପାହାଡ଼କୁ ଯାଆନ୍ତି । ଫୁଲଝାଡୁ, ଶିଆଳି ପତ୍ର, ଦଉଡ଼ି, ଶାଳପତ୍ର, କାଠ ସଂଗ୍ରହ କରିବାପାଇଁ ଯାଇ ଏସବୁକୁ ଆଧାରକରି 'ଫୁଇସୁଗ୍‌ସାମ୍' ଗାଇଥାନ୍ତି ।

ଯଥା : ସୁନାର ସିଂ ଯ୍ୟାମାଂ ଫୁନାର ସିଂ ଯ୍ୟାନାଂ ଡାୟି

ସୁନାଗାର ଯ୍ୟାନାଂ ମଏନା ନେ...... (ବଣ୍ଡାଗୀତ) ।

(ଯିବା ଝାଡୁ ଆଣିବା ଚାଲ ଝାଡୁ ଭାଂଗିବା ଏହା ଆମେ, ବଜ୍ରମୂଳିଆଣିବା)

୪. **ଫୁଲମାଲିଆ** - *ଦେ.ବି. :* ଚଇତ ପରବ ଗୀତ ଗାଉଥିବା ଲୋକ । ଗୀତ କୁଡ଼ିଆ । ସ୍ୱତନ୍ତ୍ରଭାବେ ନିଯୁକ୍ତ ଗୀତ କୁଡ଼ିଆ ।

ଆଗେ ଆଦିବାସୀ ମୂଳକ ଏଇ କୋରାପୁଟ ଅଞ୍ଚଳରେ ଥିବା ଧନୀ ମହାଜନ ଓ ଜମି ମାଲିକମାନେ ଏଇ ଆଦିବାସୀ ଲୋକଙ୍କୁ କୁଲି ମଜୁରିଆ ଭାବେ ନିଜନିଜ ଚାଷ ଜମିରେ କାମ କରାଇଥିଲେ । ସେମାନେ ଏଇ ଆଦିବାସୀ ଶ୍ରମିକମାନଙ୍କ ମନ ଖୁସି କରାଇବା ପାଇଁ ଜଣେ ଜଣେ ଚଇତି ପରବ ଗୀତ ଗାଇ ପାରୁଥିବା (ଫୁଲମାଲିଆ) ମାନଙ୍କୁ [illegible] ଗୀତ ଗାଇବା ପାଇଁ ଦରମା ଦେଇ ନିଯୁକ୍ତ ଦେଉଥିଲେ । ବର୍ଷାଦିନେ

ବା ଶୀତ ଦିନରେ କୁଲି ମଜୁରିଆ ଶ୍ରେଣୀର ଆଦିବାସୀ ଯୁବକ ଯୁବତୀମାନେ ଜମିରେ କାମ କରୁଥିବାବେଳେ ଏଇ 'ଫୁଲମାଲିଆ' ମାନେ ଜମିର ହିଡ଼ ଉପରେ ଠିଆ ହୋଇ ସ୍ୱରଲୟ ସହିତ ଚଇତି ପରବ ଗୀତ ଗାଇଥାନ୍ତି । ଏପରି ସରସ ସୁନ୍ଦର ଲଳିତ ଛନ୍ଦ ଭରା ରସରସିଆ ଗୀତ ଶୁଣି ଶୁଣି କାମ କରୁଥିବା ଯୁବକ ଯୁବତୀ ତଥା ମଜୁରିଆମାନେ ଉତ୍ସାହର ସହ ଅଧିକ ବ୍ୟଗ୍ର ଭାବରେ କାମ କରିଥାନ୍ତି । ସେମାନଙ୍କ ମନ ଏହି ଗୀତ ଶୁଣିଶୁଣି ଭିନ୍ନ ରାଜ୍ୟରେ ବିଚରଣ କରୁଥିବାରୁ ସେମାନେ ସମୟ ସଚେତନ ନ ହୋଇ ଅଧିକ ସମୟ ବିନା ଦ୍ୱିଧାରେ କାମ କରିଥାନ୍ତି । ଏହାଦ୍ୱାରା ମହାଜନମାନେ ଅଳ୍ପ ଶ୍ରମିକ ନିଯୁକ୍ତି କରି ଅଧିକ କାମ ହାସଲ କରିବା ସହଜ ହୋଇଥାଏ ।

୫. **ଫୁଲ ମନ୍ଦରା** – *ଦେ.ବି. :* ନିମନ୍ତ୍ରଣ ବା ନିଉତା ପାଇଁ ପଠାଯାଉଥିବା ଫୁଲ ଓ ଅରୁଆ ଚାଉଳ । ମଣ୍ଡେଇ ପରବ ପାଇଁ ପରବ ହେବାକୁ ଥିବା ସ୍ଥାନର ପୂଜାରୀ ତିଥି ନିଶ୍ଚିତ ହେଲାପରେ ଅନ୍ୟ ଗାଁର ଦେବଦେବୀଙ୍କୁ ପରଘାନି (ଶୋଭାଯାତ୍ରା)ରେ ଆଣିବାପାଇଁ ପୂଜାରୀଙ୍କ ପାଖରୁ ଯେଉଁ ଫୁଲ ଓ ଓଦା ଅରୁଆ ଚାଉଳ ପଠାଇଥାନ୍ତି ତାହାକୁ 'ଫୁଲ ମୁନ୍ଦରା' କୁହାଯାଏ । ଉମରକୋଟ ପୋଡ଼ାଗଡ଼ ମଣ୍ଡେଇ ହେବା ପୂର୍ବରୁ ଏହା କରାଯାଇଥାଏ ।

୬. **ଫୁଲଯାତରା** – *ଦେ.ବି. :* କୃଷି ଭିତ୍ତିକ ଏକ ସ୍ୱତନ୍ତ୍ର ପର୍ବ । ଲକ୍ଷ୍ମୀପୁର ଠାରୁ ୧୩କି.ମି ଦୂରରେ ଅବସ୍ଥିତ ବିରିଗୁଡ଼ା ଗ୍ରାମରେ ଦୀପାବଳୀ ଅମାବାସ୍ୟା ପରର ତୃତୀୟା ପରେ ପ୍ରଥମ ଶନିବାର ଦିନ ଏହି ପର୍ବ ଅନୁଷ୍ଠିତ ହୁଏ । ଏଥିରେ ରାୟଗଡ଼ାର ମାଝୀଗୌରୀଙ୍କର ପ୍ରତୀକ ମୂର୍ତ୍ତିକୁ ପୂଜା କରାଯାଏ । ରାତିରେ ଧାଙ୍ଗଡ଼ା ଧାଙ୍ଗଡ଼ି ନୃତ୍ୟ ସମୟରେ ଧାଙ୍ଗଡ଼ାମାନେ ପସନ୍ଦର ଝିଅକୁ ଟେକି ନେଇ ବାହା ହୁଅନ୍ତି ।

ଦୀପାବଳୀ ଅମାବାସ୍ୟାର ତିନିଦିନ ପରେ ଯେଉଁ ଶନିବାର ପଡ଼େ ସେଦିନ କନ୍ଧମାନେ ଫୁଲଯାତରା ପାଳନ କରିଥାନ୍ତି । ଭଲ ଶସ୍ୟ ଉତ୍ପାଦନ, ଗ୍ରାମର ନିରାମୟତା, ସୁସ୍ୱାସ୍ଥ୍ୟ, କନ୍ଧ ଜାତିର ମଙ୍ଗଳ କାମନା କରି ପୂର୍ବ ପୁରୁଷଙ୍କ ପରମ୍ପରା ବଜାୟ ରଖିବା ପାଇଁ ଏହି ଯାତ୍ରା ପାଳନ କରାଯାଏ । ଏହିଦିନ ସାତ ଭଉଣୀ ଠାକୁରାଣୀଙ୍କୁ ପୂଜା କରାଯାଏ ।

୭. ଫୁଲ୍ ରସ୍‌ରା - *ଦେ.ବି.* : ଫୁଲହାର । ଇଂ- Garland. ଆଦିବାସୀ ରମଣୀମାନେ ବିଭିନ୍ନ ଫୁଲ ଯଥା : କୁନ୍ଦଫୁଲ, ଚମ୍ପାଫୁଲ, ମଣ୍ଡାଫୁଲ, ସେବତୀଫୁଲ, ମଲ୍ଲୀଫୁଲ, ଜୁଇଫୁଲ, ଇତ୍ୟାଦି ମୁଣ୍ଡରେ ପିନ୍ଧିବାକୁ ଭଲ ପାଇଥାନ୍ତି । ଏମାନେ ବିଭିନ୍ନ ଫୁଲକୁ ସୁନ୍ଦରଭାବେ ମାଳା କରି ଖୋସାରେ ଖୋସିଥାନ୍ତି । ଧାଙ୍ଗିଡ଼ୀ ଗୀତରେ କହନ୍ତି, "କେବେ ଯିବୁସ ବାବୁ ଫୁଲର ସରା, ମା ନଇଲା ପିଲା ପାରା ।"

୮. ଫୁଲି - *ଦେ.ବି.* : ଏକ ଅଳଙ୍କାର ବିଶେଷ । ଏହା ଏକ ପ୍ରକାର ସୁନାର ତିଆରି କୁଟିକମ ହୋଇଥିବା କାନ ଫୁଲ । ସ୍ୱଚ୍ଛଳ ପରିବାରର ଆଦିବାସୀ ରମଣୀମାନେ ଏହା କାନରେ ଘେନିଥାନ୍ତି ।





୧. **ବଅଁଲି** - *ଦେ.କ୍ରି. :* ଭାସି ଭାସି ଯିବା, ପାହାଡ଼ି ନଈର ସୁଅରେ ଭାସି ଭାସି ଯିବା । ଇଂ- To floot. ଯଥା : (୧) ପାନି ଟାନେ ପେପୁଲ୍ ବଅଁଲି ଗାଲାନି । (ପେପୁଲ୍ ଅର୍ଥ ଫେଣ) ଗୀତରେ ବ୍ୟବହାର : 'ପାନିମାରି ଗଲା ଗାଡ଼ଗୋଲା ଏଲା,

ଦାରୁ ବଅଁଲାଇ ନେଲା

ତମର ଆମର ଲେକା ରଇଲା

ଇତି ଆନିବେଟ କଲା ।'

୨. **ବଇପାରିଗୁଡ଼ା / ବୋଇପାରିଗୁଡ଼ା** - *ଦେ.ବି. :* କୋରାପୁଟ ଜିଲ୍ଲାର ଗ୍ରାମ ବିଶେଷ । ବଳଦ ବେପାରୀଙ୍କ ଗାଁ, ବେପାରୀ ପେଣ୍ଠ : ଏହା କୋରାପୁଟ ଜିଲ୍ଲାର ଜୟପୁର ସବ୍‌ଡିଭିଜନ ଅନ୍ତର୍ଗତ ବଇପାରିଗୁଡ଼ା ପଞ୍ଚାୟତ ସମିତିର ସଦର ମହକୁମା ଭାବେ ସଂପ୍ରତି ବେଶ୍ ପରିଚିତ । ମୂଳତଃ ଏହା ଭୂମିଆ ଆଦିବାସୀ ଅଧ୍ୟୁଷିତ ଏକ ଆରଣ୍ୟକ ଅଞ୍ଚଳ । ଏ ଅଞ୍ଚଳର ପୀଠ ଦେବୀ ଭାବେ ବୀରଖମ୍ବଙ୍କର ପ୍ରସିଦ୍ଧି ରହିଛି । ଏହି ଅଞ୍ଚଳର ଏପରି ନାମକରଣ ସହ ଜୟପୁର ରାଜ୍ୟର ପ୍ରଥମ ସୂର୍ଯ୍ୟବଂଶୀ ମହାରାଜା ବିନାୟକ ଦେବଙ୍କ ସିଂହାସନ ଆରୋହଣ କାହାଣୀର ସଂପର୍କ ରହିଛି । ଗଂଗବଂଶର ଶେଷ ସମ୍ରାଟ ତଥା ପ୍ରଥମ ସୂର୍ଯ୍ୟବଂଶୀ ରାଜା ବିନାୟକ ଦେବଙ୍କ ଶଶୁର ପ୍ରତାପ ଗଂଗରାଜୁ ବୋଇପାରି ସର୍ଦାରଙ୍କୁ ବା ବଳଦ ବେପାରୀମାନଙ୍କ ମୁଖିଆ ଲବନିଆ ବୋଇପାରିକୁ ଏକ ଅଞ୍ଚଳଟି ବ୍ୟବସାୟ କେନ୍ଦ୍ରଭାବେ ବ୍ୟବହାର କରିବା ପାଇଁ ଅନୁମତି ପ୍ରଦାନ କରିଥିଲେ । ରାଜା ବିନାୟକ ଦେବ କାଶ୍ମୀର ରାଜବଂଶରୁ ଆସିଥିବା ଜଣେ ଅପରିଚିତ ଯୁବକ ହୋଇବି ରାଜା ପ୍ରତାପ ଗଂଗରାଜୁଙ୍କ କନ୍ୟା ଲୀଳାବତୀଙ୍କୁ ବିବାହ କରିବା ଓ ନନ୍ଦପୁର ସିଂହାସନ ଆରୋହଣ କରିବାକୁ ତତ୍‌କାଳୀନ ନନ୍ଦପୁର, ରାଜ୍ୟର ବିଭିନ୍ନ ତାଲୁକର ତାଲୁକାଦାରମାନେ ତଥା ପ୍ରଜାମାନେ ପସନ୍ଦ କରି ନଥିଲେ । ତେଣୁ ସେମାନେ ମେଳି ହୋଇ ବିନାୟକ ଦେବକୁ ସିଂହାସନରୁ ହଟାଇ ଦେବାପାଇଁ ବିଦ୍ରୋହ

କରିଥିଲେ । ରାଜ ପରିବାରକୁ ବାଛନ୍ଦ ଓ ବନ୍ଦୀ କରିବା ଅବସରରେ ରାଜା ବିନାୟକ ଦେବ ଓ ରାଣୀ ଲୀଳାବତୀ ଦେବୀଙ୍କ ପୁତ୍ର ଏହି ପଥରେ ପଳାୟନ କରି ବୀରଖମ୍ଭ ପୀଠ ନିକଟସ୍ଥ ରାଣୀତୋଟାର ବିଚଲକୋଟା ଦୁର୍ଗରେ ଆତ୍ମଗୋପନ କରି ବିଦ୍ରୋହ ଦମନ ପାଇଁ ନିଜକୁ ପ୍ରସ୍ତୁତ କରିଥିଲେ । ଏଇ ବିଦ୍ରୋହ ଦମନ ପାଇଁ ଲବଣିଆ ବୋଇପାରି ବିନାୟକ ଦେବଙ୍କୁ ଅର୍ଥ ସହଯୋଗ ସହ ଲୋକଶକ୍ତି ଏବଂ ଲୀଳାବତୀଙ୍କ ମାମୁ ପୁଅ ମତ୍ସ୍ୟଦେଶର ସମ୍ରାଟ ସିଂଗାରାଜୁ ମଧ ନିସର୍ତ୍ତ ସହଯୋଗ କରିବାରୁ ବିନାୟକ ଦେବ ଏଇ ବିଦ୍ରୋହ ଦମନ କରିବାକୁ ସମର୍ଥ ହୋଇଥିଲେ ଓ ନନ୍ଦପୁର ସିଂହାସନ ଆରୋହଣ କରି ସୁଶାସନ ପ୍ରତିଷ୍ଠା କରିଥିଲେ । ସେ ଲବଣିଆ ବୋଇପାରି ଉପରେ ଖୁସି ହୋଇ ତାଙ୍କୁ ଏଇ ବୋଇପାରିଗଡ଼ ଅଞ୍ଚଳଟି ପ୍ରଦାନ କରିଥିବାରୁ ସେଇ ବଳଦ ବେପାରୀଙ୍କ ନାମ ଅନୁସାରେ ଏହାର ନାମ ବଇପାରିଗୁଡ଼ାରେ ପରିଣତ ହୋଇଛି । ଏହା ଜୟପୁରଠାରୁ ୨୧କି.ମି. ଦୂରରେ ଅବସ୍ଥିତ । ଅତୀତରେ ବେପାରୀମାନେ ଘୋଡ଼ା ଓ ବଳଦ ପିଠିରେ ବିଭିନ୍ନ ମାଲ ଧରି ବ୍ୟବସାୟ କରିବାକୁ ଜୟପୁରରୁ ମାଲକାନଗିରି ଆଡ଼େ ଯାଉଥିଲେ । ସେମାନେ ରାତିରେ ବୈପାରିଗୁଡ଼ାଠାରେ ରାତ୍ରିଯାପନ କରୁଥିଲେ । ଏଠାରେ ପ୍ରଥମେ ବେପାରୀମାନଙ୍କ ବସତି ଗଢ଼ି ଉଠିଥିବାରୁ ଏହାର ନାମ 'ବୈପାରୀଗୁଡ଼ା' ହୋଇଛି ।

୩. ବଇବାନ୍ଧିବା - *ଦେ.କ୍ରି. :* ବିବାହ ବେଦୀରେ ମାଟିହାଣ୍ଡି ସଜ୍ଜିତ କରି ରଖିବା । ଭୂମିଆ, ପେଣ୍ଡିଆ ଓ ଅମାନାତ୍ୟ ପ୍ରଭୃତି ସଂପ୍ରଦାୟର ବିବାହ ବେଦୀ ଚାରିଖୁଣ୍ଟରେ ଚାଉଳଚୂନା ଓ ହଳଦୀରେ ଚିତ୍ରିତ ମାଟିହାଣ୍ଡିମାନ ତଳ ଉପର କରି ସୁନ୍ଦର ଭାବେ ସଜା ଯାଇଥାଏ । ଏହାକୁ 'ବଇବାନ୍ଧିବା' କୁହାଯାଏ ।

୪. ବକଡ଼ା - *ଦେ.ବି. :* (୧) ବଣ ବିଲେଇ । ଇଂ- Wild Cat. 'ୱା ୱା' ଚିତ୍କାର କରେ । ଘର ବିଲେଇ ଠାରୁ ଟିକିଏ ବଡ଼ । ସେମାନେ ଘର ବିଲେଇ ସହ ମିଶନ୍ତି ନାହିଁ । ବୁଦୁବୁଦିକିଆ ଜଂଗଲରେ ରହନ୍ତି । ଘରର କୁକୁଡ଼ା ଗୁଡ଼ିକୁ ସୁବିଧା ପାଇଲେ ବାଡ଼ରୁ ଝିକି ନିଅନ୍ତି । ପ୍ରଥମେ ତା'ର ମୁଣ୍ଡ ଛିଡ଼େଇ ଖାଇ ଦିଅନ୍ତି । କିଛି ଆଦିବାସୀ ସଂପ୍ରଦାୟର ଲୋକେ ବକ୍ଡ଼ା ମାଂସ ଖାଇଥାନ୍ତି । (୨) ଅଣ୍ଡିରା ଛେଳିକୁ ମଧ 'ବକ୍ଡ଼ା' କୁହାଯାଏ । ଇଂ- He goat

୫. ବଘେଇ / ବଘେଇପାଗ - ଦେ.ବି. : ଜଂଗଲରେ ଘନଘୋର ବର୍ଷା ସମୟକୁ ବଘେଇପାଗ କୁହାଯାଏ । ଯେକୌଣସି ଜଂଗଲୀ ଗାଁ ବା ଅଞ୍ଚଳରେ ମାସମାସ ଧରି ବାଘ ମାତିଲେ ତାକୁ କୁହାଯାଏ 'ବଘେଇ' । ଜଂଗଲ ଅନ୍ୟାନ୍ୟ ଅଞ୍ଚଳରେ ଦେଖାଯାଉଥିବା ସଂକ୍ରାମକ ରୋଗ ବା କ୍ରମାଗତ ବନ୍ୟାମରୁଡ଼ି ଇତ୍ୟାଦି ପ୍ରାକୃତିକ ଦୈବୀଦୁର୍ବିପାକ ସହ ଏହା ତୁଳନୀୟ । ଏଭଳି ବଘେଇ ଦେଖାଦେଲେ ବେଜୁଣୀ ଓ ଦିଶାରୀର ପରାମର୍ଶରେ ଆଦିବାସୀମାନେ ନିଜର ବାସସ୍ଥଳୀ ଛାଡ଼ି ଗାଁ ବସେଇବା ପାଇଁ ନୂଆ ଭୂମିର ସଂଧାନରେ ଯାଆନ୍ତି । ଅବିଭକ୍ତ କୋରାପୁଟ ଜିଲ୍ଲାରେ ଏଭଳି ବଘେଇରେ ଉଜୁଡ଼ି ଯାଇଥିବା ଗାଁ ମାନଙ୍କର ସଂଖ୍ୟା ଅନେକ । ମେଘୁଆପାଗରେ ଥଣ୍ଡା ସୁଲୁସୁଲିଆ ପବନ ହେଲେ କୋରାପୁଟିଆ କହେ 'ବଘେଇପାଗ' । ବାନ୍ଧି ବାଡ଼େଇଲେ ମଧ୍ୟ କେହି ପଦାକୁ ବାହାରନ୍ତି ନାହିଁ । ବଘେଇପାଗ ହେଲେ ବାଘକୁ ବେଶି ଭୋକକରେ ବୋଲି ଲୋକ ବିଶ୍ୱାସ । ସେ ଲାଙ୍ଗଟେକି ନାଚେ । ଦିନ ଦିପହରରେ ବି ଗହଳି ଭିତରୁ ମଣିଷକୁ ଉଠେଇନେଇ ଚାଲିଯାଏ । ଏହିପରି ପ୍ରତି ୨/୩ଦିନରେ ଗୋଟିଏ ମଣିଷ ମରେ । ଲୋକେ କହନ୍ତି 'ବଘେଇ' ପଡ଼ିଲା ।

୬. ବଞ୍ଜଡ଼ି - ଦେ.ବି. : ସୁଠାମ, ସବଳା, ଗେଡ଼ି ଏବଂ ଶ୍ୟାମଳ ରଂଗର ସ୍ୱାସ୍ଥ୍ୟବତୀ ଝିଅ । ବିଶେଷକରି ପରଜା ସଂପ୍ରଦାୟର ଏପରି ଝିଅକୁ କୁହାଯାଏ 'ବଂଜଡ଼ି' । ଇଂ- Bronette. ଏହାର ବିପରୀତରେ ପୁଅମାନଙ୍କୁ କୁହାଯାଏ 'ବଂଜଡ଼ା' ।

୭. ବଂଜରୁନୀ - ଦେ.ବି. : ଅରଣ୍ୟ ବା ବଣଦେବୀ : ଭତରା ଆଦିବାସୀମାନଙ୍କ ବିଶ୍ୱାସରେ ଏହି ବନଦେବୀ ବଞ୍ଜାରୁନୀ ରୂପେ ପରିଚିତ ହୋଇ ପୂଜା ପାଇଥାନ୍ତି ।

୮. ବଡ଼ଯାତରା - ଦେ.ବି. : ମାଲକାନଗିରି ଜିଲ୍ଲାର ଏକ ସ୍ୱତନ୍ତ୍ର ଯାତ୍ରା ବିଶେଷ । ମାଘ ପୂର୍ଣ୍ଣିମାଠାରୁ ଫଗୁଣ ପୂର୍ଣ୍ଣିମା ପର୍ଯ୍ୟନ୍ତ ଏକମାସ ବ୍ୟାପି ପାଳିତ ହୁଏ । ଏହା ଏକ ଗଣପର୍ବ । ପ୍ରତି ଦୁଇ/ତିନି ବର୍ଷରେ ଥରେ ଏହା ପାଳିତ ହୁଏ । ମାଲକାନଗିରି ଜିଲ୍ଲାର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଯାତ୍ରା । ଏହି ପର୍ବରେ କାନ୍ନାମରାଜୁ (କୃଷ୍ଣ) ବାଲରାଜୁ (ଅର୍ଜୁନ) ପୋତୁରାଜୁ (ଭୀମ) ମୁତ୍ୟାଲୁଆମ୍ମା (ସୁଭଦ୍ରା)ଙ୍କ ପୂଜା କରାଯାଏ । ଉପାନ୍ତ ଓଡ଼ିଶା ଆନ୍ଧ୍ର ଓ ଛତିଶଗଡ଼ ରାଜ୍ୟବାସୀଙ୍କ ମଧ୍ୟରେ ଭ୍ରାତୃତ୍ୱ ଓ ସୌହାର୍ଦ୍ଦ୍ୟ ସ୍ଥାପନରେ

ଏହି ଯାତ୍ରାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ମିଥ୍‌ଟି ହେଲା – ଏକଦା ମାଲକାନଗିରି ଜରାସନ୍ଧ ନାମ୍ନକ ଅସୁର ରାଜାଙ୍କ ଶାସନାଧୀନ ଥିଲା । ରାଜା ସ୍ୱୟଂ ଇଷ୍ଟଦେବୀଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ଏକ ବିରାଟ ଯଜ୍ଞର ଆୟୋଜନ କରିଥିଲେ । ଏହି ଯଜ୍ଞରେ ଏକ ଲକ୍ଷ ବଳି ପ୍ରଦାନ କରିବାର ସେ ସଂକଳ୍ପ ନେଇଥିଲେ । ଏହା ଶୁଣି ନର, ରାକ୍ଷସ ଓ ଦେବତାଗଣ ଭୀତତ୍ରସ୍ତ ହୋଇ ପ୍ରମାଦ ଗଣିଲେ । ନିଜ ଜୀବନକୁ ରକ୍ଷା କରିବା ନିମନ୍ତେ ଶ୍ରୀକୃଷ୍ଣଙ୍କୁ ସମବେତ ପ୍ରାର୍ଥନା କଲେ । ସମସ୍ତଙ୍କ ଆକୁଳ ପ୍ରାର୍ଥନା ଶୁଣି ଶ୍ରୀକୃଷ୍ଣ ଜରାସନ୍ଧଙ୍କ ଯଜ୍ଞ ଧ୍ୱଂସ କରି ତାର ଗର୍ବକୁ ଖର୍ବ କରିବାପାଇଁ ପାଣ୍ଡବ ଭ୍ରାତା ଭୀମଙ୍କ ସହ ସେହି ଯଜ୍ଞରେ ଯୋଗ ଦେଲେ । ଭୀମଙ୍କ ଦ୍ୱାରା ଜରାସନ୍ଧ ନିହତ ହେଲେ । କିନ୍ତୁ ଦେବୀ ଏକଲକ୍ଷ ବଳି ନ ପାଇ କ୍ରୋଧାନ୍ୱିତ ହେଲେ । ଦେବୀଙ୍କୁ ପ୍ରାର୍ଥନା କରି ଶ୍ରୀକୃଷ୍ଣ କହିଲେ, "ମା', ତୁମେ ଶାନ୍ତ ହୁଅ । ଏକ ବିରାଟ ଯାତ୍ରା ସାମରୋହରେ ତୁମକୁ ଏକଲକ୍ଷ ବଳି ପ୍ରଦାନ କରାଯିବ । ଅର୍ଜୁନ, ଭୀମ ଓ ମୁଁ ତୁମକୁ ପାଛୋଟି ଆଣିବୁ, ଏକ ବିରାଟ ଯାତ୍ରା ପଥ ମଧ୍ୟରେ ଏକ ଲକ୍ଷ ବଳି ପ୍ରଦାନ କରାଯିବ । ସମସ୍ତ ଗ୍ରାମର ଦେବଦେବୀ ଓ ପ୍ରଜା ତୁମକୁ ଅଭ୍ୟର୍ଥନା ଜଣାଇବେ ।" ଦେବୀ ଶାନ୍ତ ହେଲେ ଓ ସେହି ଦିନଠାରୁ ଏକ ବିରାଟ ଯାତ୍ରାର ଆୟୋଜନ କରାଗଲା । ଯାହାକି ଆଜି ମାଲକାନଗିରିର 'ବଡ଼ଯାତ୍ରା' ନାମରେ ବିଖ୍ୟାତ । ଏହି ମିଥ୍‌ରେ ଶ୍ରୀକୃଷ୍ଣ କାନମ୍‌ରାଜୁ, ଭୀମ ପୋଡୁରାଜୁ ଓ ଅର୍ଜୁନ ବାଲରାଜୁ ଭାବେ କୋୟାମନଙ୍କ ଦ୍ୱାରା ପୂଜିତ । ଦେବୀ ଯାଜ୍ଞସେନୀ ମୁତ୍ୟାଲୁଆମ୍ମା ରୂପେ ମାନ୍ୟମ୍‌କେଣ୍ଡା ପାହାଡ଼ରେ ପୂଜା ପାଉଛନ୍ତି । ତିନିଦେବତାଙ୍କ ପ୍ରତୀକ ରୂପେ ତିନୋଟି ବାଉଁଶ ଗଛାକୁ ମୟୂରପୁଚ୍ଛ ଦ୍ୱାରା ସଜ୍ଜିତ କରି ଏକ ସୁସଜ୍ଜିତ ବିମାନରେ କାଲିମେଲା ନିକଟସ୍ଥ ମାନ୍ୟମ୍ କେଣ୍ଡା ପାହାଡ଼ରୁ ଦେବୀ ମୁତ୍ୟାଲୁଆମ୍ମାଙ୍କୁ ମାଲକାନଗିରିର ମାଉଲୀମାଙ୍କ ମନ୍ଦିରକୁ ପାଛୋଟି ଅଣାଯାଏ । ଦୀର୍ଘପଥ ମଧ୍ୟରେ ପ୍ରତ୍ୟେକ ଗ୍ରାମରେ ହଜାର ହଜାର ଛେଳି, ମେଣ୍ଢା, ପାରା, କୁକୁଡ଼ା ଆଦି ବଳି ପ୍ରଦାନ ପୂର୍ବକ ଅଭ୍ୟର୍ଥନା ଜଣାଇବାର ପରମ୍ପରା ପ୍ରଚଳିତ । ଏହି ଅଭ୍ୟର୍ଥନାର ମୁଖ୍ୟ ପୁରୋଧା ଭାବେ ବସ୍ତରର ରାଜା ଯୋଗ ଦେଇଥାନ୍ତି । ପ୍ରତ୍ୟେକ ଗ୍ରାମର ଗ୍ରାମଦେବତୀଙ୍କ ପ୍ରତୀକ ଲାଠିମାନ ମାଲକାନଗିରିର ମାଉଲୀମା ମନ୍ଦିରରେ ପହଞ୍ଚନ୍ତି । ପାଞ୍ଚଦିନ ବ୍ୟାପୀ ଏହି ଯାତ୍ରାଟି ପାଳିତ ହୋଇଥାଏ ।

ଏ ସଂପର୍କରେ ଆଉ ଏକ ଐତିହାସିକ ପ୍ରବାଦ ମଧ୍ୟ ରହିଛି । ୧୯୧୮ରୁ ୧୯୨୪ ମସିହାରେ ପୂର୍ବ ଗୋଦାବରୀ ବିଶାଖପାଟନମ୍ ଓ ମାଲକାନଗିରି ଅଞ୍ଚଳରେ ବ୍ରିଟିଶରାଜ ବିରୁଦ୍ଧରେ ଏକ ବିରାଟ ଫିତୁରୀ ବା ଆଦିବାସୀ ବିଦ୍ରୋହ ଦେଖାଦେଇଥିଲା । ତା'ର ନେତୃତ୍ୱ ନେଇଥିଲେ ଆଲୁରି ସୀତାରାମରାଜୁ । ମାଲକାନଗିରି ଜିଲ୍ଲାର ପାପଲୁର ଅଞ୍ଚଳ, ଆନ୍ଧ୍ରର ଚିନ୍ତାପାଲି ଓ କୋରାପୁଟର କୋଣ୍ଡା କାମେରୁ ଅଞ୍ଚଳ ଥିଲା ଏହି ବିଦ୍ରୋହର କେନ୍ଦ୍ରସ୍ଥଳୀ । ବହୁ ବ୍ରିଟିଶ ସେନାନୀ ସୀତାରାମାରାଜୁଙ୍କ ଗରିଲା ଯୁଦ୍ଧ ଆଗରେ ତିଷ୍ଠି ନ ପାରି ପୃଷ୍ଠଭଂଗ ଦେଇଥିଲେ ଓ ଅନେକ ମୃତାହତ ହୋଇଥିଲେ । ତାଙ୍କୁ ଜୀବିତ ବା ମୃତ ଧରି ଦେବାପାଇଁ ବ୍ରିଟିଶ ସରକାର ପ୍ରଚୁର ଇନାମ ଘୋଷଣା କରିଥିଲେ । ଶେଷରେ ୧୯୨୪ ମସିହାରେ ବାଲରାଜୁ, ପୋତରାଜୁ ଓ କାନ୍ୟାମ୍‌ରାଜୁ ନାମକ ତିନିଭାଇ ଆଲୁରୀଙ୍କୁ ଜିଲ୍ଲାପାଳଙ୍କ ସହ ରାଜିନାମା ହେବା ଆଳରେ ଡାକିନେଇ ପୋଲିସରେ ଧରାଇ ଦେଇଥିଲେ । ଏବଂ ହତ୍ୟା କରାଇ ଥିଲେ । ପରବର୍ତ୍ତୀ ସମୟରେ ଅନୁଗାମୀମାନେ ଏହି ତିନିଜଣଙ୍କୁ ହତ୍ୟା କରିଥିଲେ । ଫଳରେ ବ୍ରିଟିଶ ଘୋଷିତ ଇନାମ ସେମାନେ ପାଇ ପାରିନଥିଲେ । ହେଲେ ସେମାନଙ୍କୁ ଇନାମ ଦେବାପାଇଁ ବ୍ରିଟିଶ ସରକାର ଏକ ନୂଆପନ୍ଥା ଓ ପ୍ରଥା ପ୍ରଚଳନ କଲେ । ପୂର୍ବରୁ ପ୍ରତି ୧୨ବର୍ଷରେ ଥରେ ବଡ଼ଯାତ୍ରା ଅନୁଷ୍ଠିତ ହେଉଥିଲା । ଦୈବୀ କ୍ରମେ ଏହି ବିଶ୍ୱାସଘାତକ ଭାଇମାନଙ୍କ ନାମ ଦେବତାମାନଙ୍କ ନାମ ସହ ମିଶି ଯାଉଥିବାରୁ ସେମାନଙ୍କ ଉଦ୍ଦେଶ୍ୟରେ ୧୨ବର୍ଷ ସ୍ଥାନରେ ପ୍ରତି ୨ବା ୩ବର୍ଷକୁ ଥରେ କରାଯିବାର ପ୍ରଥା ପ୍ରଚଳନ କରାଗଲା, ବ୍ରିଟିଶ ସରକାରଙ୍କ ଦ୍ୱାରା ପୁନର୍ପ୍ରଚଳିତ ଏହି ବଡ଼ଯାତ୍ରା ତାର ନୂଆ କଳେବର ନେଇ ଏବେ ମଧ୍ୟ ପ୍ରତି ଦୁଇ ବା ତିନି ବର୍ଷରେ ଥରେ ପାଳିତ ହେଉଛି ।

୯. **ବଡ଼ବେଣ୍ଟ - ଦେ.ବି. :** ଚଇତମାସର ସାମୂହିକ ଶିକାର ପର୍ବ । ପ୍ରତିବର୍ଷ ଥରେ ଚଇତମାସରେ ଆଦିବାସୀମାନେ ଜଂଗଲକୁ ଯାଇ ଶିକାର କରନ୍ତି । ଏଥିରେ ଗ୍ରାମରେ ରହୁଥିବା ସବୁଜାତିର ଲୋକ ଅଂଶଗ୍ରହଣ କରନ୍ତି ।

ଏହି ବେଣ୍ଟ / ଶିକାର ପର୍ବ କରିବା ପୂର୍ବରୁ କିଛି ନିର୍ଦ୍ଦିଷ୍ଟ ପୂଜାର୍ଚ୍ଚନା ଗ୍ରାମର ଦେବଦେବୀମାନଙ୍କୁ କରାଯାଇଥାଏ । ଏହି ପର୍ବପାଳନ କରିବାର ଲକ୍ଷ୍ୟ ହେଉଛି :

* ଏହା ଦ୍ୱାରା ଗ୍ରାମର ଏକତା ରକ୍ଷା ହୋଇଥାଏ ।

* ଶିକାରୀମାନଙ୍କର ସୁରକ୍ଷାକୁ ନିଶ୍ଚିତ କରାଯାଇଥାଏ, ଶିକାରୀର ଭବିଷ୍ୟତ ଉଜ୍ଜ୍ୱଳମୟ ହୋଇଥାଏ, ଜଂଗଲରୁ ମନ୍ଦ ଡୁମ୍ବା ବା ଅପଦେବତାମାନେ ଗ୍ରାମକୁ ପଶି ପାରି ନଥାନ୍ତି ।

* ଆଗନ୍ତୁକ ବର୍ଷ ଫଳଦାୟୀ ହୋଇଥାଏ । ବଡ଼ବେଣ୍ଟରେ ବାହାରିଥିବା ଶିକାରୀମାନେ ବଣରୁ ଜୀବଜନ୍ତୁ ଯାହା ମାରି ଆଣିଥାନ୍ତି, ଗ୍ରାମର ସମସ୍ତେ ଭାଗବାଣ୍ଟି କରି ଖାଇଥାନ୍ତି । ଏହି ଅବସରରେ ଗାଁରେ ନାଚଗୀତ ଝୁମ୍ ଛୁଟିଥାଏ ।

ଚଇତ ପରବର ତୃତୀୟ ଦିବସର ହେଉଛି 'ବେଣ୍ଟ' (ଶିକାର)କୁ ଯିବାପାଇଁ ପ୍ରସ୍ତୁତି ପର୍ବ । ଏହିଦିନ ବନ୍ଧୁକ, ଧନୁ, ଶୂଳ, ବର୍ଚ୍ଛା, ଟାଙ୍ଗି, ଟାଙ୍ଗିଆ ଯାହାଘରେ ଯାହାଥାଏ, ସେସବୁକୁ ଧୁଆପୋଛା କରି ବନଦେବୀ (ବଦର୍ଦୁଗା)ଙ୍କୁ ପୂଜା କରାଯାଏ । ପରେ ଢୁଣ୍ଡିଘରୁ ଶିଙ୍ଗା ଓ ଲୁହା ବାଜଣା ବଜାଇ ଗାଁର ସମସ୍ତେ ନାୟକ, ପାତ୍ର ଓ ଅନ୍ୟ ସମସ୍ତଙ୍କ ଘରକୁ ଘର ଯାଆନ୍ତି । ପ୍ରତିଘରେ ଏଇ ଅସ୍ତ୍ର ସହିତ ଶିକାରକୁ ଯାଉଥିବା ବ୍ୟକ୍ତିଙ୍କୁ ହଳଦୀ ପାଣିରେ ଗୋଡ଼ ଧୋଇ ଦିଅନ୍ତି ଓ ଚାଉଳ ଟଙ୍କା କପାଳରେ ପିନ୍ଧାଇ ଦିଅନ୍ତି । ପ୍ରତିଘରର ଜଣେ ଲୋକ ଅସ୍ତ୍ରଶସ୍ତ୍ର ସହିତ ତାଙ୍କ ସହ ମିଶନ୍ତି । ଏହି ଅବସରରେ ଗାଁର ଜାଣିବା ଲୋକମାନେ ବିଭିନ୍ନ ସାଧନ, ବାନାବାଟିଖେଳ ଆଦି ଦେଖାନ୍ତି । ରାତିରେ ପ୍ରାୟ ୨୫/୩୦ ହାତ ଦୂରରେ ରଖାଯାଇଥିବା କୁକୁଡ଼ା ଅଣ୍ଡାକୁ ଲାଖ ବନ୍ଧାଯାଏ । ବାଟି ପଥରକୁ ଦୁଇଟି ଆଙ୍ଗୁଠିରେ ଟେକାଯାଏ । ରାତିରେ ନାଟଗୀତର ଆସର ଜମେ । ମଦ, ସଲପ ଓ ପେଣ୍ଡମ୍ ଖାଇ ଲୋକେ ଆନନ୍ଦରେ ମସଗୁଲ୍ ହୋଇଥାଆନ୍ତି । ଯାହାର ଲାଖ ପ୍ରଥମେ ଅଣ୍ଡାରେ ବାଜେ ସେ ବେଣ୍ଟକାରିଆମାନଙ୍କର ନେତୃତ୍ୱ ନେଇଥାଏ । ବେଣ୍ଟ କାରିଆମାନେ ସାଂଗରେ ଶୁଖିଲା ଖାଦ୍ୟପଦାର୍ଥ ୪ଦିନରୁ ୭ଦିନପାଇଁ ନେଇ ଦୂର ଜଂଗଲକୁ ଯାଇଥାନ୍ତି ।

୧୦. ବଡ଼ମାହାଲା – *ଦେ.ବି. :* ବିବାହ ତିଥି ନିର୍ଣ୍ଣୟ : ବଡ଼ ମାହାଲା ଗଲାବେଳେ ବର ଘର ପରିବାର ପକ୍ଷରୁ, କୁଟୁମ୍ବ ଓ ବନ୍ଧୁବର୍ଗମାନେ ଝିଅପାଇଁ ଶାଢ଼ି, ମାଳି, ଚଅଁରି, ତେଲ, ପାନିଆ, ଦର୍ପଣ, ଅଳତା ଆଦି ପ୍ରସାଧନ ସାମଗ୍ରୀ ଏବଂ ଭୋଜିଭାତ ପାଇଁ ଡାଲି, ଚାଉଳ, ପରିବାପତ୍ର, ମେଣ୍ଢା, ଛେଳି, କୁକୁଡ଼ା, ଖଲି, ଦନା, ଖଲିସିଂଆ କାଠି, ଲିଆ, ଗୁଡ଼ ଆଦି ସାମଗ୍ରୀ ଧରି ଝିଅଘରେ ପହଞ୍ଚନ୍ତି ।

ଉଭୟ ପକ୍ଷ (ପୁଅ ଓ ଝିଅ)ର ପରିବାର କୁଟୁମ୍ବ, ସମାଜର ମୁଖିଆ, ଭଦ୍ରବ୍ୟକ୍ତି, ଦିନକାରିଆ, ଲଗନ୍‌କାରିଆ, ମାଲକାରିଆ, ଭଣ୍ଡାର ମୁଲିଆ, ମାଟି ପୂଜାରୀଙ୍କ ଉପସ୍ଥିତିରେ ବୈଠକ ବସେ । ବୈଠକରେ ବିବାହର ଦିନ, ତିଥି, ତାରିଖ, ଲଗ୍ନ, ସମୟ ଦିନ କାରିଆ ସ୍ଥିର କରି ଜଣାଇଥାଏ ।

ସମାଜର ପ୍ରଚଳିତ ପ୍ରଥାନୁସାରେ 'କନିଆ ଝୋଲାର' କଥାବାର୍ତ୍ତା ଛିଡ଼େ । ଏହା ଛିଡ଼ିଲା ପରେ ଗୁଆସପନି ବା ସୁପାରି ସମର୍ପଣ ହୁଏ ।

୧୧. **ବଣ୍ଡକି ଡକ୍ରି** - *ଦେ.ବି. :* ଗ୍ରାମ୍ୟ ଧାଈ । ଗାଁରେ ପ୍ରସବ କରାଉଥିବା ବୁଢ଼ୀ । ପୁଅଜନ୍ମ ହେଲେ ତା'ର ଏଗାର ଦିନପରେ ତା'କୁ ପ୍ରସୂତି ଘର ଲୋକେ ଏକ ତୀର ଦିଅନ୍ତି ଏବଂ ଝିଅ ଜନ୍ମ ହୋଇଥିଲେ ଏକ କାତ୍ରା (କାତି) ଦିଅନ୍ତି । ଏହା ସହିତ ନଡ଼ିଆ, କୁକୁଡ଼ା, ଛଞ୍ଚ ପାତି, ଶାଢ଼ି ଓ ଟଙ୍କା ମଧ ତାର ପାଉଣା ବାବଦକୁ ଦିଆଯାଇଥାଏ । ବଣ୍ଡକି ଡକ୍ରି ପ୍ରତି ଆଦିବାସୀଙ୍କର ପ୍ରସୂତି ସହାୟିକା ଓ ଚିକିତ୍ସିକା ।

୧୨. **ବଣ୍ଡା** - *ଦେ.ବି. :* ଏକ ଆଦିମ ଆଦିବାସୀ ସଂପ୍ରଦାୟ । ମାଲକାନଗିରି ଜିଲ୍ଲା ମୁଦୁଲିପଡ଼ା ଅଞ୍ଚଳରେ ବାସ କରୁଥିବା ଆଦିମ ଜନଜାତି ଗୋଷ୍ଠୀ । ଏମାନେ ବାରଜଂଗଲ ଦେଶର ଅଧିବାସୀ ବୋଲି କୁହାଯାଏ । ଏମାନଙ୍କ ସ୍ୱତନ୍ତ୍ର ଜୀବନଶୈଳୀ ଓ ଭାଷା (ରେମୋ) ରହିଛି । ଖଇରପୁଟ ବ୍ଲକ୍‌ର ଅଣ୍ଡାହାଲ ଓ ରାସବେଡ଼ା ପଞ୍ଚାୟତର ୩୨ଟି ଘାଟି ଗାଁରେ ପ୍ରାୟ ୬୦୦୦ ବଣ୍ଡା ବାସ କରନ୍ତି । ବଣ୍ଡା ପାହାଡ଼ର ୧୫୦ବର୍ଗକି.ମି. ଅଞ୍ଚଳରେ ବାସ କରୁଥିବା ଏବଂ କେବଳ ପୋଡୁଚାଷ ଉପରେ ନିର୍ଭର କରୁଥିବା ଏହି ବଣ୍ଡାମାନଙ୍କର ଗାଁ ସବୁ ସମୁଦ୍ରପତ୍ତନ ସ୍ତରକୁ ପାଞ୍ଚହଜାର ଫୁଟରେ ଅବସ୍ଥିତ । ଏମାନେ ଆପଣାର ପାରଂପରିକ ପ୍ରଥା ପରଂପରାକୁ ଅତି କଠୋରଭାବେ ପାଳନ କରନ୍ତି । ଯେଉଁମାନେ ଏଥିରେ ଖିଲାପ କରନ୍ତି, ସେମାନଙ୍କୁ ତଳବଣ୍ଡା ଗାଁ ମାନଙ୍କୁ ନିର୍ବାସିତ କରାଯାଏ । ଏଭଳିଭାବେ ପୁରୁଣା ବତିଶିଟି ଗାଁରୁ ଚାରୋଟି ଗାଁ ଉଜୁଡ଼ି ଯାଇଛି । ଏମାନେ ଯେତିକି ସରଳ ସେତିକି ଦୁର୍ଦ୍ଦାନ୍ତ । ତଥା କଥିତ ସଭ୍ୟତା ଓ ଆଇନକାନୁନ୍ ପ୍ରତି ଏମାନେ ଏକାନ୍ତ ବିମୁଖ । ସେଥିପାଇଁ ତେରଟି ଆଦିମ ଜନଜାତି ଭିତରୁ ଏମାନଙ୍କୁ ଅନ୍ୟତମ ବୋଲି ଗଣନା କରାଯାଏ ।

୧୩. ବଣ୍ଡାକୁଣ୍ଡ / କୁକୁର କୁଣ୍ଡ - ଦେ.ବି. : ଦୁଇଟି ଝରଣାର ନାମ । ମାଥିଲିର ପଶ୍ଚିମ ପଟେ ରହିଛି ଏକ ବିରାଟ ପର୍ବତ । ଯାହା ଲମ୍ବିଯାଇଛି ଛତିଶଗଡ଼ ଭିତରକୁ । ଅନେକ ସ୍ଥଳରେ ତାହା ଓଡ଼ିଶା ଓ ଛତିଶଗଡ଼ର ସୀମା ହୋଇଥିଲେ ମଧ୍ୟ ଦୁଇ ପ୍ରଦେଶ ମଧ୍ୟକୁ ତା'ର ବିସ୍ତାର । ଏକଦା ଏହା ଘନ ଜଂଗଲପୂର୍ଣ୍ଣ ଥିଲା ଓ ଅଧୁନା ଲୁପ୍ତ ପ୍ରାୟ ବହୁ ପ୍ରକାରର ଜୀବଜନ୍ତୁ ଯଥା - ବଣ ମଇଁଷୀ, ଗୟଳ, ବଳିଆ, ଖଗ ଓ ମହାବଳ ବାଘ ଇତ୍ୟାଦିଙ୍କ ଦ୍ୱାରା ପରିପୂର୍ଣ୍ଣ ଥିଲା । ଏହା ହେଉଛି ତୁଲ୍‌ସା ଡଙ୍ଗର । ଏହି ତୁଲ୍‌ସା ଡଙ୍ଗର ଉପରେ ରହିଛି ବଣ୍ଡାକୁଣ୍ଡ ଓ ତା ତଳକୁ ରହିଛି କୁକୁର୍ କୁଣ୍ଡ । କୁକୁର୍ କୁଣ୍ଡ୍‌କୁ ଲାଗି ଯେଉଁ ଗଣ୍ଡିଆ ଗାଁଟି ରହିଛି, ଏହି କୁଣ୍ଡ ଅନୁସାରେ ତାର ନାମ ମଧ୍ୟ କୁକୁର କୁଣ୍ଡ୍ । ଗୋଟିଏ ସମୟରେ ଏହି ପର୍ବତରେ ବହୁପରିମାଣରେ ବଣ ତୁଳସୀ ବୁଦା ରହିଥିଲା ବୋଲି ଏହାକୁ ତୁଲସା ପର୍ବତ ବା ତୁଲ୍‌ସା ଡଙ୍ଗର ବୋଲି କୁହାଯାଏ ।

ଏହି ବଣ୍ଡାକୁଣ୍ଡ ଓ କୁକୁର କୁଣ୍ଡ୍ ସଂପର୍କରେ ଗୋଟିଏ ଲୋକକଥା ପ୍ରଚଳିତ । ଏହି ପର୍ବତ ଉପରେ ଥିବା କୌଣସି ଗାଁରେ ରହୁଥିଲେ ଭାଇ ଭଉଣୀ । ଭାଇ ସବୁଦିନେ ଇଡ଼ି ବାନ୍ଧିବାବେଳେ ପିନ୍ଧାଓଡ଼ା ବା ପିନ୍ଧା ଲୁଗା ଅର୍ଥାତ୍ ଲେଙ୍ଗୁଟି ମଇଳା ହୋଇଯିବା ଭୟରେ ବାଣ୍ଡା ବା ଡୁମ୍‌ଡ଼ା (ଲଙ୍ଗଳା) ହୋଇ ରହେ । ଭଉଣୀକୁ ସେ କହିଥାଏ ଆଡ଼ବେଳିଆ ପେଜ ଆସିଲାବେଳେ କୁକୁର ବେକରେ ଘଣ୍ଟି ବାନ୍ଧି ନେଇ ଆସିବ । ଘଣ୍ଟି ଶବ୍ଦ ଶୁଣିଲେ ଭାଇଟି ନିଜର ଲେଙ୍ଗୁଟି ପିନ୍ଧି ନିଏ । ଦିନେ ଭଉଣୀ ଭାବିଲା ଭାଇ କ'ଣ କରୁଛି । କାହିଁକି ଘଣ୍ଟି ବାନ୍ଧି କୁକୁରଟିକୁ ଆଣିବାକୁ କହୁଛି । ଆଜି ନିଶ୍ଚୟ ପରୀକ୍ଷା କରି ଦେଖିବି । ତେଣୁ ସେ ଦିନେ କୁକୁର ବେକରେ ଘଣ୍ଟି ନ ବାନ୍ଧି ଆସିଲା ଏବଂ ଉଲଗ୍ନ ଭାଇକୁ ଦେଖିଦେଲା । ଭଉଣୀକୁ ଦେଖି ଲାଜରେ ସେ ବାଣ୍ଡାଭାଇ ପାଖରେ ଥିବା କୁଣ୍ଡକୁ ଅର୍ଥାତ୍ ନଦୀକୁ ଡେଇଁ ପଡ଼ିଲା । ଭାଇକୁ ଡେଇଁବା ଦେଖି ତା ପଛେପଛେ କୁକୁର ମିଶା ସେହି କୁଣ୍ଡକୁ ଡେଇଁ ପଡ଼ିଲା । ବଣ୍ଡା ଭାଇଟି ସେହି କୁଣ୍ଡରୁ ଆଉ ଉଠିଲା ନାହିଁ । ସେହିଦିନୁ ସେ କୁଣ୍ଡର ନାମ ହେଲା 'ବଣ୍ଡାକୁଣ୍ଡ' । ତା ପଛେପଛେ ଡେଇଁ ପଡ଼ିଥିବା କୁକୁର ଭାସି ଭାସି ଆସି ପର୍ବତ ତଳେ ଥିବା କୁଣ୍ଡରେ ଆସି ଉଠିଲା । ତେଣୁ ପର୍ବତ ତଳ କୁଣ୍ଡର ନାମ ହେଲା 'କୁକୁର କୁଣ୍ଡ୍' । ସେହି ଅନୁସାରେ ପାଖ ଗାଁର ନାମ ମଧ୍ୟ 'କୁକୁର୍ କୁଣ୍ଡ୍ ।'

୧୪. **ବଣ୍ଡାବିଭା** - *ଦେ.ବି. :* ବଣ୍ଡା ସମାଜର ବିଭିନ୍ନ ପ୍ରକାର ବିବାହ ପ୍ରଥା ଦେଖାଯାଏ । ସେଗୁଡ଼ିକ ହେଲା (୧) ସେଲାଗ (ଧାଙ୍ଗଡ଼ି ମନେଇ ବିଭା) (୨) ଲୁଲୁଉଇବା (ମାଙ୍ଗ୍‌ନିବିଭା) (୩) ଗୁବଏ ଗୁନଗନ୍ (ଝିକା ବିଭା) (୪) ଉଦ୍‌ଲା (ଉଦ୍‌ଲିଆ ବା ପ୍ରେମବିଭା) (୫) ଅବାଦଲାଇ (କନ୍ୟା ବଦଳ ବିଭା) (୬) ଆମ୍ବିଙ୍ଗ୍ ଦୁଆଁ (ଭାଉଜ ବିଭା) (୭) ଆକିମି ଦୁଆଁ (ସାନଭାଇ ବୋହୂକୁ ବିଭା) (୮) ମ୍ବାଙ୍ଗ ଉମ୍ପର (ଶାଳି ବିଭା) (୯) ଉଡ଼ାକ୍ (କନ୍ୟା ନିଜ ଇଚ୍ଛାରେ କୌଣସି ପୁରୁଷକୁ ଜବରଦସ୍ତ ବିଭା ହେବା), (୧୦) ଲଙ୍ଗ୍‌ସିଡ଼କରୁଅଁ (ସଗରତା) (୧୧) ଘରଜ୍ୱାଇଁ ବିଭା । ଘରଜ୍ୱାଇଁ ଓ ବଦଳ ବିଭାକୁ ଛାଡ଼ି ଅନ୍ୟ ସବୁଥିରେ ବରପକ୍ଷରୁ କନ୍ୟାପକ୍ଷକୁ ଝୋଲା ଦେବାକୁ ପଡ଼େ । ଏଥିରେ ଗାଈଗୋରୁ, ଟଙ୍କା, ମଦ, ସଲପ, ପେଣ୍ଡମ୍ ଇତ୍ୟାଦି ଗିନିଙ୍ଗ୍‌ବିବେ ଦିଆଯାଏ ।

୧୫. **ବୋତଲା** - *ଦେ.ବି. :* ମଞ୍ଜୁଆତି, ଔଷଧୀ ବୃକ୍ଷ ବିଶେଷ । ଗୋଡ଼ରେ ବାଲିଆଖିଆ ହେଲେ ମଂଜୁଆତିପତ୍ରକୁ ବାଟି ଲଗାଯାଇଥାଏ । ମଂଜୁଆତି ଚେରକୁ ଚାଉଳଧୁଆ ପାଣି କିମ୍ବା ଦହି ସହ ବାଟି ପିଇଲେ କାମଳ ରୋଗ ଭଲହୁଏ ବୋଲି ଆଦିବାସୀମାନଙ୍କର ଅଭିଜ୍ଞତା ରହିଛି । ଏହିଗଛର ପତ୍ରକୁ ଅନ୍ୟମାନେ ମଧ ଗୋଡ଼, ହାତ ପାପୁଲି, ନଖରେ ଲଗାଇ ସୌନ୍ଦର୍ଯ୍ୟ ବଢ଼ାଇଥାନ୍ତି ।

୧୬. **ବତ୍ରିଶ ସିଂହାସନ** - *ଦେ.ବି. :* ନନ୍ଦପୁର ରାଜ୍ୟରେ ଅତୀତରେ ୩୨ଟି ମାଟି ପିତୁଳାକୁ ନେଇ ନିର୍ମିତ ସିଂହାସନ । କୁହାଯାଏ ଯେ, ଏହା ୪ର୍ଥ ଶତାବ୍ଦୀରେ ରାଜା ଚନ୍ଦ୍ରସେନଙ୍କ ଶାସନ ସମୟରେ ରାଜା - ବିକ୍ୟମାଦିତ୍ୟଙ୍କ ବତ୍ରିଶ ସିଂହାସନକୁ ଅନୁକରଣ କରି ତାଙ୍କ କନ୍ୟା ପ୍ରଭାବତୀ ଗୁଣ୍ଡା, ଯିଏ ମହାରାଜ ଚନ୍ଦ୍ରସେନଙ୍କୁ ବିବାହ କରିଥିଲେ, ତାଙ୍କର ନିର୍ଦ୍ଦେଶରେ ତିଆରି ହୋଇଥିଲା । ଆଉ କିଏକିଏ କହନ୍ତି ନନ୍ଦପୁର ରାଜ୍ୟର ପ୍ରଥମ ସୂର୍ଯ୍ୟବଂଶୀ ରାଜା ବିନାୟକ ଦେବ (୧୪୪୩ରୁ ୧୪୭୬)କାଶ୍ମୀର ରାଜ୍ୟର ସୂର୍ଯ୍ୟବଂଶୀ ରାଜାଙ୍କର ୩୨ ତମ ବଂଶଧର ହୋଇଥିବାରୁ ସେ ନନ୍ଦପୁର ରାଜ୍ୟର ରାଜା ହେଲାପରେ ନିଜର ୩୨ତମ ବଂଶର ସ୍ମରଣ ପାଇଁ ଏହି ୩୨ ପିତୁଳା ଥିବା ଏବଂ ବତ୍ରିଶଟି ପାହାଚ ବିଶିଷ୍ଟ ରାଜସିଂହାସନ ନିର୍ମାଣ କରାଇଥିଲେ । ବର୍ତ୍ତମାନ ତାହା ଏକ ଅନୁର୍ବର ମାଟିର ପୀଠରେ ପରିଣତ ହୋଇଛି । ଅନ୍ୟପକ୍ଷରେ କୋରାପୁଟର ଏକ ବିଶିଷ୍ଟ ପର୍ଯ୍ୟଟନସ୍ଥଳୀ ରୂପେ ଏହା ବିଖ୍ୟାତ ।

୧୭. ବଦଲି ଫୁଲ - *ଦେ.ବି. :* ଏକ ପ୍ରକାର ବଣୁଆ ଫୁଲ : ପଲାଶ; କିଂଶୁକ ।

ଏହି ନାଲି ରଂଗର ଫୁଲକୁ ଆଦିବାସୀ ସ୍ତ୍ରୀଲୋକମାନେ ଅତି ଆଦରରେ ଜୁଡ଼ାରେ ପିନ୍ଧିଥାନ୍ତି । ଏହା ଏକ ସୁନ୍ଦର ଏବଂ ମନୋମୁଗ୍ଧକାରୀ ଫୁଲ ହୋଇଥିବାରୁ ଆଦିବାସୀ ଯୁବକଟିଏ ଏଇ ବଦଲି ଫୁଲର ସୌନ୍ଦର୍ଯ୍ୟ ସହିତ ନିଜକୁ ତୁଳନା କରି ତା'ର ପ୍ରେମିକାକୁ କହିଥାଏ :-

'ଜୁଡ଼ାକୁ ସୁନ୍ଦର ବଦଲି ଫୁଲ,<br>ଗଲାକେ ସୁନ୍ଦର ଗୋପ,<br>ତୁମକୁ ସୁନ୍ଦର ମୁଁଇ ଅଟଇ<br>ମୋତେ ନକରସି କୋପ ।'

ଯାହାର ଅର୍ଥ : ଜୁଡ଼ାକୁ ଯେପରି ବଦଲି ଫୁଲ ସୁନ୍ଦର ଦିଶେ, ଗଳାକୁ ଯେପରି ଗୋପ ବା ହାର ସୁନ୍ଦର ଦିଶେ, ସେମିତି ତୁମକୁ ମୁଁ ସୁନ୍ଦର ମାନିବି, ବା ତମର ମୋର ମିଳନ ସୁନ୍ଦର ଦେଖାଯିବ । ମୋ ଉପରେ ରାଗନାହିଁ କି, ମୋତେ ନିରାଶ କରନାହିଁ । ଏତଦ୍‌ବ୍ୟତୀତ ଏହି ବଦଲି ଗଛର ଫଳରୁ ଯେଉଁ ମଞ୍ଜିହୁଏ, ସେହି ମଞ୍ଜିର ଅବସ୍ଥିତିରୁ ଆଦିବାସୀମାନେ ସେ ବର୍ଷର ବର୍ଷା ବିଷୟରେ ବାସ୍ତବରେ ସୂଚନା ପାଇଥାନ୍ତି । ଏହି ବଦଲି ଗଛର ଫଳରେ ଗୋଟିଏ ମାତ୍ର ମଞ୍ଜିଥାଏ । ଯଦି ଏହି ଫଳର ମଞ୍ଜି ଫଳର ମୂଳ ଆଡ଼କୁ ଥାଏ ତେବେ ବିଳମ୍ବରେ ବର୍ଷା ହେବାର ସୂଚନା ମିଳିଥାଏ । ଯଦି ଫଳର ଅଗ୍ରଭାଗରେ ମଞ୍ଜିଟି ଥାଏ ତେବେ ଅତି ଶୀଘ୍ର ବର୍ଷା ହୋଇଥାଏ ବୋଲି ଆଦିବାସୀ ଲୋକମାନେ କହିଥାନ୍ତି ।

କୌଣସି ଦମ୍ପତିଙ୍କର ସନ୍ତାନ ସନ୍ତତି ହେଉ ନଥିଲେ ବା ଗର୍ଭନଷ୍ଟ ହୋଇଯାଉଥିଲେ ସ୍ତ୍ରୀ ଗର୍ଭଧାରଣ କରିବାର ଦୁଇ ମାସରେ ଦୁଇଟି ପତ୍ର, ତିନିମାସରେ ତିନୋଟି ପତ୍ର, ଏହିପରି ନଅମାସ ଯାଏଁ ଯେତେମୋସକୁ ସେତୋଟି ପତ୍ର ଖାଇଲେ ଗର୍ଭର ଛୁଆ ନଷ୍ଟ ହୁଏ ନାହିଁ । ଆଉ ମଧ୍ୟ ଏହି ବଦ୍‌ଲି ପତରରେ ଭାତ ଖାଆନ୍ତି । ବଦ୍‌ଲି ଫୁଲ ଅତି ସୁନ୍ଦର ହେତୁ ଏହା ଶିବରାତ୍ରୀ ଦିନ ଶିବଙ୍କୁ ଲାଗିହୁଏ । ଏହାକୁ ଦେବତା ମନେ କରି ଆଦିବାସୀମାନେ ପୂଜା କରନ୍ତି । ଏହି ଗଛର ଗଣ୍ଡିରେ ଲିଙ୍ଗ ତିଆରି କରି ମଧ୍ୟ ପୂଜା କରିଥାନ୍ତି । ଗଣ୍ଡ ସଂପ୍ରଦାୟରେ ଏକ ପ୍ରବାଦ ଅଛି ଯେ,

ଯେତେବେଳେ ମହାଦେବଙ୍କ ମହାଦେବଙ୍କ ପିତା କୁଲିତରା ଅନକୁଆରିଂ ବା ପୃଥିବୀମାତାଙ୍କ ସହିତ ଅନେକ ବର୍ଷ ଧରି ସଂଗମ କଲେ, ସେମାନଙ୍କ ରକ୍ତ ଓ ବୀର୍ଯ୍ୟ ତଳେ ପଡ଼ିବା ଫଳରେ ଏହି ବଦଲି ଗଛର ଉତ୍ପତ୍ତି ହୋଇଥିଲା । ତେଣୁ ଏହି ଗଛକୁ ଗଣ୍ଡମାନେ ପଲ୍‌ସା ପେନ୍ ବା ପରସା ପେନ୍ (ଦେବତା) ଭାବେ ମାନନ୍ତି ।

୧୮. **ବନୁପା / ଗୁନୁକୁ ବୋର୍ / ବାନା ପାଚେରୀ-** *ଦେ.ବି. :* ବଣ୍ଡାମାନଙ୍କ ବାଟଦେବତା ବା ଡାଲ୍‌ଖାଇ । ବଣ୍ଡା ଗ୍ରାମ ମାନଙ୍କରେ ଗୁନୁକବୋରଙ୍କୁ ବନୁପା ନାମରେ ନାମିତ କରିଛନ୍ତି । ଯେକୌଣସି ବ୍ୟକ୍ତି ଏହି ପଥରକାନ୍ଥ ବା ବାନା ପାଚେରୀ ଦେଇ ଯିବାବେଳେ ଖଣ୍ଡିଏ ଡାଳ ଏହି ବନୁପାଙ୍କୁ ପ୍ରଦାନ କରି ଆଶୀର୍ବାଦ ଭିକ୍ଷା କରିଥାନ୍ତି, ଯେମିତି କି ବାଟରେ ସେମାନଙ୍କର କୌଣସି ଅସୁବିଧା ନହୁଏ । ଅନ୍ୟ ଆଦିବାସୀ ସଂପ୍ରଦାୟ ଡାଲ୍‌ଖାଇଙ୍କ ସହ ଏହି ଦେବତା ତୁଳନୀୟ ।

୧୯. **ବନ୍ଦାପନା ପରବ / ବାନ୍ଦାପାନା ପରବ -** *ଦେ.ବି. :* ଆଦିବାସୀମାନଙ୍କ କୃଷିଭିତ୍ତିକ ଅନ୍ୟତମ ମୁଖ୍ୟପର୍ବ । ବନ୍ଦାପନା ବା ଶ୍ରାବଣ ମାସ ଉଆଁସ ଦିନ ଏହି ପରବ ପଡ଼େ । ଘରର ମୁରବୀମାନେ କେନ୍ଦୁଲାଠିଟିଏ ସଂଗ୍ରହ କରି ବେଦୀରେ ପୋତି ପୂଜା କରନ୍ତି । ସେହି ଲାଠି ଉପରେ ବାଉଁଶ ବୁଣା ଛାତୋଡ଼ି କରାଯାଏ । ସେହି ଛାତୋଡ଼ିରେ ଗୁନ୍ଥା ହୋଇଥାଏ ଦେଓ ବାଡ଼ନି ପତ୍ର, ଭାଲିଆ ପତ୍ର ଓ ବାତରି ପତ୍ର । ସେହି ଲାଠି ମୂଳକୁ ଆକତ ଚାଉଳ, ଧୂପ, ହଳଦୀ ଗୋଳା ଚାଉଳ ଆଦି ସରଞ୍ଜାମ ନେଇ ଏଇ ଲାଠି ପାଖରେ ଥିବା ଧାନ ଗଛ ମୂଳକୁ ପୂଜା କରାଯାଏ । ଧୂପ ଧୂଆଁ ଓ ହଳଦୀପାଣି ଦେଇ ଦେବତା ରୂପେ ଧାନଗଛକୁ ପୂଜା କରାଯାଏ । ଜଣଙ୍କର ୧୦ଟା ବେଢ଼ାଥିଲେ, ପ୍ରତି ବେଢ଼ାରେ ଏପରି ଗୋଟିଏ ଲେଖାଏଁ ଲାଠିପୋତି ପୂଜା କରାଯାଏ । ସେହିଦିନ ପ୍ଳୀହା ଥିବା ପିଲାଙ୍କର ପେଟ ଲଛାଯାଏ । ବିଲେଇ ଖୋଳ ଲୁହାକୁ ନେଇ ଅଭିଜ୍ଞ ଲୋକମାନେ ଏହି କାମ କରନ୍ତି । ବୀଗୁ ବା ପୂଜା କାମ ସରିବା ପରେ ପୋତା ହୋଇଥିବା ଲାଠି ପାଖେ ନଡ଼ିଆ ଭଂଗାଯାଏ । ଏହି ବନ୍ଦାପନା ପରବ ଦ୍ୱିପହର ବେଳକୁ ଶେଷ ହୁଏ । ତା'ପରେ ଯାଇ ରନ୍ଧାବଢ଼ା କରାଯାଏ । ଏହା ମୁଖ୍ୟତଃ ଧାନଗଛର ପୂଜା । ଅଧିକ ଫସଲ ପାଇଁ ଏବଂ ମରୁଡ଼ି ନପଡ଼ିବା ପାଇଁ ଏହି ପରବ ପାଳନ କରାଯାଏ । ଏହିଦିନ ଗୃହ ଦେବତାଙ୍କୁ ପୂଜା ଅର୍ଚ୍ଚନା କରାଯାଇଥାଏ, ସରୁଭାତ ରନ୍ଧାଯାଇ 'ତରଗା' କନ୍ଦାକୁ ନୂଆଧାନର ଚାଉଳରେ ମିଶାଇ ଦିଆଯାଏ ଓ ଗୃହ

ଦେବତାଙ୍କୁ ଅର୍ପଣ କଲାପରେ ଗୃହର ସମସ୍ତେ ଏକତ୍ର ବସି ଶିଆଳିପତ୍ରରେ ଏଡି ନୂଆ ଖାଇଥାନ୍ତି । ଏହି ଦିନରୁ ପ୍ରାୟ ସବୁ ଆଦିବାସୀଙ୍କର ନବବର୍ଷ ଆରମ୍ଭ ହୁଏ । ଏ ପର୍ବ ପାଳନ ଅବସରରେ ନବବସ୍ତ୍ର ପରିଧାନ କରାଯାଇଥାଏ ।

୨୦. ବପୁ - *ଦେ.ବି.* : ଶକ୍ତି, Strenght, Power, Health, ସ୍ୱାସ୍ଥ୍ୟ

ବିଂ- ଶକ୍ତିଶାଳୀ Strong, Powerful (୨) ସ୍ୱାସ୍ଥ୍ୟବାନ୍ Healthy:
ବିପରୀତାର୍ଥବୋଧକ ଶବ୍ଦ : ସାତାଲୁ ଅର୍ଥାତ୍ ଦୁର୍ବଳ ।
ବ୍ୟବହାର : (୧) ବପୁ ରଇବା ଲୋକ୍ ଜବର ବୋଜ୍ ବୋଇବେ ।

(୨) ବପୁ ବଲଦ୍ ପାଟା ବନ୍ଦଲେ ଜିଖସି ଏକା ଶଗଡ଼ ବାନ୍ଦଲେ ମିସା ଜିକ୍ସିଏକା ।

(୩) ଏ ଲୋକଟାର ବଡ଼ ବପୁ । ଦୁଇଲୋକର ପାଇଟି, ଗୋଟେକ୍ ଲୋକ୍ କର୍‌ସି ।

(୪) ଏଇଟାକେ ମିଶା ବୋଇ ନ ପାରୁସକି ସାତାଲୁ ? ଏଡ଼େ ଡଉଲ ଗାଗଡ଼ ଦରି ଆଚୁସ୍ । ବାଗ୍ କାଇଲେ ଦି ମାସ୍ କାଇସି ।

ଗୀତରେ ବ୍ୟବହାର :

"ଦନ୍ ରଇବା ଲୋକ୍ ଦନ୍ ଗରବ୍
ବପୁ ରଇବା ଲୋକର ଟାନ୍,
ଦନ ବପୁ ସବୁ ସାରିଗଲେ ସରି
ପଚେ ଏବାଇ ଇନମାନ୍ ।"

ଅର୍ଥାତ୍ : ଧନ ଥିବା ଲୋକର ଧନଗର୍ବ, ଶକ୍ତିଥିବା ଲୋକର ଦମ୍ଭ; ଧନ ଓ ଶକ୍ତି ସବୁ ସରିଗଲେ ହୀନିମାନ ହେବାକୁ ପଡ଼େ ।

୨୧. ବମଲି କନରା / ବମଲି କଦରା - *ଦେ.ବି.* : ଏନ୍ତୁଡ଼ି ଗାଡ଼ ।

ପରଜା, ଗଦବା ଆଦି ଆଦିବାସୀ ପରିବାରରେ ଯେଉଁ ଗୃହରେ ଶିଶୁ ଜନ୍ମ ହୋଇଥାଏ, ସେହି ଗୃହରେ ଗାଧୋଇ ଦେବା ନିମନ୍ତେ ଏକ ଗାତ ଖୋଳା ହୋଇଥାଏ । ଏମାନଙ୍କ ପରିବାରରେ ସନ୍ତାନଟିଏ ଜନ୍ମ ହେଲେ ନଅଦିନ ପର୍ଯ୍ୟନ୍ତ ମାଆ ମାଟି ଉପରେ ଶୋଇଥାଏ । ଏକୋଇଶି ଦିନ ଯାଏ ସେ ପିଲାକୁ ସେଇ ଘର ଭିତରେ ଧୂଆ

ପୋଛା କରେ । ପିଲା ଦେହର ସମସ୍ତ ମଇଲା ଓ ଗାଧୁଆ ପାଣିକୁ ସେମାନେ ବାହାରେ କେଉଁଠି ନ ଫିଙ୍ଗି ଦେଇ ଘର ଭିତରେ ଏଇ ଗାତ ମଧ୍ୟରେ ଢାଳିଥାନ୍ତି । ୨୧ ଦିନପରେ ମାଆ ଗାଧୋଇ ପାଧୋଇ ବୁଡ଼ ଦେଲା ପରେ ଗ୍ରାମର ଦିଶାରୀ ବା ପୂଜାରୀ ଗୋଟିଏ ଛେଳି କିମ୍ବା କୁକୁଡ଼ା ବଳି ଦେଇ ପୂଜା କଲାପରେ ଘରର ସମସ୍ତ ଧୂଆପୋଛା ମଇଲା ଓ ପାଣିଥିବା ଏଇ ଗାତଟିକୁ ପୋତି ଦିଆଯାଏ । ଏହାପରେ ଚାଉଳ ଗଣନା କରି ଦିଶାରୀ କୌଣସି ପୂର୍ବପୁରୁଷଙ୍କ ନାମରେ ପିଲାର ନାମକରଣ କରିଥାଏ । ସେହି ଗାତ ଉପରେ ୩ଟି କେନ୍ଦୁଡାଙ୍ଗ ରଖାଯାଇଥାଏ । ୯ ଦିନ ପରେ ଶିଶୁର ନାଭି ଝଡ଼ିଲେ ସେଠି ପୋତାଯାଏ । ୨୧ ଦିନରେ ଏହା ପୋତାଗଲା ପରେ ଦିଶାରୀ ପୂଜା ପାଠକରି କୁକୁଡ଼ା ବଳି ଦେଇଥାନ୍ତି । ଏହିପ୍ରଥା ସବୁ ଆଦିବାସୀ ସଂପ୍ରଦାୟରେ ପ୍ରଚଳିତ । ଏନ୍ତୁଡ଼ିଶାଳରେ କରାଯାଇଥିବା ଏହି ଗାତ ବା ଗାଡ଼କୁ 'ବମଲି କନରା' ବା 'ବମଲି କଦରା' କୁହାଯାଏ ।

୨୨. **ବରଡେଲି** - *ଦେ.ବି.* : ରଣା ଓ ଭୂମିୟା ସଂପ୍ରଦାୟରେ ବିବାହ ସମୟରେ ବେଦୀରେ ପୋତା ହେଉଥିବା ଶୁଭ ଖୁଣ୍ଟି । ବରଡେଲି ପାଖରେ ବାଉଁଶ ଡାଳ ଝଡ଼ିଗଛର ଡାଳ, ମହୁଲଡାଳ ଇତ୍ୟାଦି ବନ୍ଧାଯାଏ । ହାଣ୍ଡିକୁ ଗେରୁ, ହଳଦୀ ଓ ପିଠଉ ଆଦି ଦ୍ୱାରା ଚିତ୍ର କରି ଚାରିକୋଣର ଖୁଣ୍ଟ ଦେହରେ ହାଣ୍ଡି ଉପରେ ହାଣ୍ଡି ବନ୍ଧାଯାଏ । ଏହାହିଁ 'ବରଡେଲି' ।

୨୩. **ବରସା** - *ଦେ.କ୍ରି.* : ଭରସା କରିବା ବା ନିର୍ଭରଶୀଳ ହେବା । To depend upon (verb)

ବି. (Noun) - ବିଶ୍ୱାସ, Faith.

ଆଦିବାସୀ ଗୀତରେ ଏହାର ବ୍ୟବହାର :

"ଆସ ଆସ ମୋର ସେତ ପାକଲା
ତମେ ଛାଡ଼ି ଗଲେ ଆମେ ଏକଲା,
କାର ବରସାରେ ଟିବୁ
ତମରି ବରସା ନଚିଡ଼ିଲେ
ବିଦେଶକେ ବାରିଯିବୁ ।"

୨୪. ବରତ୍ - *ଦେ.ବି.* : ଲମ୍ବା ଦଉଡ଼ି । ଜୁଆଳିରେ ଯୋଚା ଯାଉଥିବା ବଳଦଙ୍କୁ ବନ୍ଧାଯାଇଥିବା ଦଉଡ଼ିକୁ 'ବରତ୍' କୁହାଯାଏ । ଇଂ.- Rope attached to the yoke.

୨୫. ବଲାଣି / ବଉଲାଣି / ବଉଁଲାଣି - *ଦେ.ବି.* : ରିଷ୍ଟ ଖଣ୍ଡନ ପର୍ବ, ଅପଦେବତା ବିସର୍ଜନ ବା ଘଉଡ଼ାଣ । ଗ୍ରାମର ରିଷ୍ଟଖଣ୍ଡନ ନିମିତ୍ତ ଆଦିବାସୀମାନେ କରୁଥିବା ଏକ ପର୍ବ ବା ଯାତ୍ରା । ଇଂ.- Warding off of the evil. ଏହି ଯାତ୍ରାକୁ ବଉଲାଣି ବା ବଅଁଲାନି ବୋଲି କୁହାଯାଏ । କେତେକ ଆଦିବାସୀ ଅଞ୍ଚଳରେ ବର୍ଷର ଯେକୌଣସି ସମୟରେ କୌଣସି ପର୍ବ ହେବାର ଠିକ୍ ଆଗରୁ ଏହି ବଉଲାଣି ଯାତ୍ରା ହୋଇଥାଏ । କିନ୍ତୁ ସାଧାରଣତଃ ଏହା ଆଷାଢ଼ ବା ଶ୍ରାବଣ ମାସରେ ପୁର ବା ବଢ଼ି ଆସିବା ବେଳେ ହୁଏ । ଓଡ଼ିଆରେ ବଉଲାଣିର ଅର୍ଥ ହେଉଛି ଭସାଣି । ପ୍ରଥମେ ଗ୍ରାମର ହୁଣ୍ଡି ବା ଗୁଡ଼ିରେ ପୂଜା କରାଯାଏ । ମନ୍ତୁରାପାଣି ଗ୍ରାମର ପିଲାମାନଙ୍କୁ ସିଞ୍ଚାଯାଏ । ବିଶ୍ୱାସ ଅଛି ଯେ ଏହି ମନ୍ତୁରା ପାଣି ସିଞ୍ଚିରେ ସଂକ୍ରାମକ ରୋଗ ହେବ ନାହିଁ । ପରେ ପୂଜାରୀ, ଦିଶାରୀ ଓ ଗ୍ରାମବାସୀ ବାଦ୍ୟ ବାଜଣା ସହ ଗାଁର ଗୋରୁଗୋଠକୁ ଯାଆନ୍ତି । ସେଠାରେ ଗୋରୁ ଗାଈ ଉପରେ ମନ୍ତୁରାପାଣି ସିଞ୍ଚନ୍ତି । ଏହାଦ୍ୱାରା ଗାଈଗୋରୁଙ୍କର ରୋଗ ଦୂର ହୁଏ ଏବଂ ହିଂସ୍ରଜନ୍ତୁ କବଳରୁ ଗୋରୁଗାଈ ରକ୍ଷା ପାଆନ୍ତି । ପରେ ଗ୍ରାମର ଆଖପାଖରେ ଯେତେ ଦେବଦେବୀ ଥାଆନ୍ତି, ସେମାନଙ୍କୁ ସେମାନଙ୍କ ନିର୍ଦ୍ଦିଷ୍ଟ ଭୋଗ ଯଥା ଛେଳି, ମେଣ୍ଢା, କୁକୁଡ଼ା, ପାରା, ଲିଆ, ମୁଆଁ, ଅଣ୍ଡା ଆଦି ଭୋଗ ଲାଗଯାଏ । ଧୂପ, ଦୀପ ଓ ସିନ୍ଦୂର ବ୍ୟବହାର କରାଯାଏ । ବାଉଁଶ ପାତିଆରେ ଛତର ତିଆରି କରାଯାଇଥାଏ ଏବଂ ବୁଢ଼ିଆଣି ସୂତା ବୁଣିଲା ଭଳି ସୁତାରେ ଉକ୍ତ ଛତର ବା ଛତ୍ରକୁ ବୁଣାଯାଇ ତାହା ସହିତ କଳା ଓ ନାଲି ରଂଗର ଦୁଇଟି ପତାକା ବନ୍ଧାଯାଏ । ଏଗୁଡ଼ିକ ନେଇ ଗ୍ରାମର ଉତ୍ତର ଦିଗ ମୁଣ୍ଡରେ ପହଞ୍ଚାଇ ପୋତି ଦିଆଯାଏ । ଏହା ଅନେକ ଜାଗାରେ ୩ଗାଁର ସନ୍ଧି ସ୍ଥଳରେ କରାଯାଇଥାଏ । ଆଗରୁ ଶିମୁଳୀ ଗଛର କାଠରେ ଏକ ରଥ ତିଆରି ହୋଇ ରହିଥାଏ । ଗ୍ରାମର ଗାଣ୍ଡା (ସାଧାରଣତଃ ହରିଜନ ସଂପ୍ରଦାୟର ବ୍ୟକ୍ତି) ଗ୍ରାମର ସବୁ ଘରୁ ଛିଣ୍ଡା ଟୋକେଇ, କୁଲା, ଛାଞ୍ଚୁଣୀ ଆଦି ମାଗି ଦଉଡ଼ିରେ ମାଳ କରି ଗ୍ରାମ ଦାଣ୍ଡରେ ଘୋଷାରି ଘୋଷାରି ନିଏ । ଗାଁ ମୁଣ୍ଡରେ ଏସବୁକୁ ବିସର୍ଜନ ଦିଆଯାଏ । ଛେଳି, ମେଣ୍ଢା, କୁକୁଡ଼ା ବଳି

ଦିଆଯାଏ । ଗ୍ରାମର ପୁରୁଷ ଲୋକମାନେ ଗାଁ ମୁଣ୍ଡରେ ଯାଇ ଜନ୍ତାଳ ଭଳି ଭୋଜି କରି ଖାଆନ୍ତି । ବଉଲାଣି ଯାତ୍ରାର ମାଂସ ଘରକୁ ଆଣିବା ମନା ।

୨୬. **ବଂଶଧାରା** - *ଦେ.ବି. :* ରାୟଗଡ଼ା ଜିଲ୍ଲାରେ ପ୍ରବାହିତ ଏକ ମୁଖ୍ୟ ନଦୀର ନାମ । ବାଉଁଶ ବଣରୁ ପ୍ରବାହିତ ଧାରା । କଥିତ ଅଛି ଯେ ଏକଦା ବଂଶଧାରା ନଦୀ କୂଳରେ ଅଳ୍ପକିଛି ଆଦବାସୀ ବସତିକୁ ଛାଡ଼ିଦେଲେ ବୈଦିକ ବ୍ରାହ୍ମଣ ଓ ଆର୍ଯ୍ୟ ଜନଗୋଷ୍ଠୀର ଅଭାବ ଅନୁଭବ କରି ଶ୍ରୀକୃଷ୍ଣଙ୍କ ଆଦେଶରେ ଏ ଅଞ୍ଚଳରେ ଅନ୍ୟତମ ଶାସକ ମଧ୍ୟମ ପାଣ୍ଡବ ଭୀମସେନ ଅନ୍ୟ ଅଞ୍ଚଳରୁ ଆର୍ଯ୍ୟଗୋଷ୍ଠୀର ବହୁ ବେଦଜ୍ଞ ବ୍ରାହ୍ମଣମାନଙ୍କୁ ଆଣି ଏହି ନଦୀକୂଳରେ କିଛି ଶାସନ ବସାଇଥିଲେ । କାଳକ୍ରମେ ସେମାନଙ୍କ ଦ୍ୱାରା କୃଷି ସଭ୍ୟତାର ବିକାଶ ଘଟିଥିବାରୁ ତଥା ଆର୍ଯ୍ୟ ଓ ଅନାର୍ଯ୍ୟଗୋଷ୍ଠୀର ସମନ୍ୱୟ ସ୍ଥାପନ କ୍ରମରେ ଉଭୟ ଗୋଷ୍ଠୀର ବଂଶ ବିସ୍ତାର ତଥା ବିକାଶ ଘଟିଥିଲା । ସମୟକ୍ରମେ ଏହି ନଦୀ ଉପତ୍ୟକା ସମୃଦ୍ଧଶାଳୀ ହୋଇଥିବାରୁ ପାଣ୍ଡବମାନେ ଏହି ନଦୀକୁ 'ବଂଶଧାରା ନଦୀ' ନାମରେ ନାମିତ କରିଥିଲେ । ପୁନଶ୍ଚ କୁହାଯାଏ ସଂପ୍ରତି କଳାହାଣ୍ଡି ଜିଲ୍ଲା ଭାବେ ପରିଚିତ ପ୍ରାଚୀନ କୋଚିନ ରାଜ୍ୟର ଅଂଶ ବିଶେଷ ଲାଞ୍ଜିଗଡ଼ ପାହାଡ଼, ଯେଉଁଠାରୁ ଉକ୍ତ ନଦୀର ଉତ୍ପତ୍ତି ହୋଇଛି, ତାହା ଏକ କୁମ୍ଭ ସଦୃଶ୍ୟ ବାଉଁଶ ବଣ ଦ୍ୱାରା ବେଷ୍ଟିତ ହୋଇଥିବାରୁ ଏହାର ନାମ ବାଂଶଧାରା ବା ସମୟକ୍ରମେ ପରିବର୍ତ୍ତିତ ହୋଇ ବଂଶଧାରାରେ ପରିଣତ ହୋଇଛି । ଏହି ନଦୀଟି କଳାହାଣ୍ଡି ଜିଲ୍ଲାର ଲାଞ୍ଜିଗଡ଼ ପାହାଡ଼ର ଏକ ବାଉଁଶ ବଣରୁ ବାହାରି ଅବିଭକ୍ତ କୋରାପୁଟ ଜିଲ୍ଲାରେ ତା'ର ସମଗ୍ର ଦୈର୍ଘ୍ୟର ସର୍ବାଧିକ ଅଂଶକୁ ପ୍ରବାହିତ କରାଇ ବିଷମ କଟକ, ଗୁଣପୁର, ଗୁଡ଼ାରୀ ପଦ୍ମପୁର ଦେଇ ଗଞ୍ଜାମ ଜିଲ୍ଲାର କାଶୀନଗର ଅତିକ୍ରମକରି ଆନ୍ଧ୍ରପ୍ରଦେଶରେ ପ୍ରବେଶ କରିବା ପରେପରେ ଶ୍ରୀକାକୁଲମ୍ ଅଞ୍ଚଳ ଦେଇ ପ୍ରବାହିତ ହୋଇ ପରିଶେଷରେ ଏହା ବଂଗୋପସାଗରରେ ମିଶିଛି ।

୨୭. **ବାଉବୋଡ଼ା** - *ଦେ.ବି. :* ଏହା ଏକପ୍ରକାରର ଅଜଗର । ଇଂ.- A species of python ଏହା ଦୁଦ୍ ବୋଡ଼ାଭଳି ଥାଏ । ମଣିଷ ପ୍ରତି ଏହା ଆକ୍ରମଣ କରେ । ରଙ୍ଗହାଲ୍‌କା କଳା । ପ୍ରବାଦ ଅଛି : ଏହା ଫୁତ୍କାରରେ ମଣିଷକୁ ଓ ବଡ଼ବଡ଼ ଜନ୍ତୁକୁ ଓଟାରି ଆଣେ । ଗର୍ଜନ କରେ ଓ ରାସ୍ତାରେ ଧାଏଁ । ଏମାନେ ବଡ଼ବଡ଼ ପାହାଡ଼ ମାନଙ୍କରେ ଦେଖାଯାଆନ୍ତି । ପ୍ରାୟ ୨୦ବର୍ଷ ଧରି ଏହା ଆଉ ଦେଖିବାକୁ ମିଳୁ

ନାହାନ୍ତି । ମହାବଳ ବାଘ ସହ ଲଢ଼େଇ କରି ତାକୁ ମଧ୍ୟ ବାଉବୋଡ଼ା ମାରି ଦେଇଥିବାର ଦୃଷ୍ଟାନ୍ତ ରହିଛି । ୧୯୯୦ରେ ଚିତ୍ରକୋଣ୍ଡା ବଜାର ତଳ ନଦୀ କୂଳରେ ଗୋଟିଏ ବାଉବୋଡ଼ା ଦୀର୍ଘ ସମୟ ଧରି ଏକ ମହାବଳ ବାଘ ସହ ଲଢ଼େଇ କରିଥିଲା ଏବଂ ଏଥିରେ ଉଭୟେ ମୃତ୍ୟୁବରଣ କରିଥିଲେ ।

୨୮. ବାଉଁଶ / ବେଦୁର - *ଦେ.ବି. :* ବାଉଁଶ : ଇଂ : Bamboo

ଆଦିବାସୀର ଅର୍ଥନୈତିକ ଜୀବନରେ ବାଉଁଶ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦଖଲ କରିଥାଏ । ପିଲାମାନେ ବଡ଼ ହେବା ସଂଗେସଂଗେ ଯେତେବେଳେ ଅଲଗା ଘର ବସାନ୍ତି ସେତେବେଳେ ଯେପରି ବାଉଁଶ ଲୋଡ଼ାପଡ଼େ ସେହିପରି ଜଂଗଲ ସରି ଆସୁଥିବାବେଳେ କିଛିହେଲେ ଜୀବିକା ପାଉ ନଥିବା ଲୋକ ପାଇଁ ବାଉଁଶ ହିଁ ଏକମାତ୍ର ଆଶ୍ରୟ ହୋଇଥାଏ । ଆଦିବାସୀର ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ପ୍ରତ୍ୟେକ ପର୍ଯ୍ୟାୟରେ ବାଉଁଶ ତିଆରି ବିଭିନ୍ନ ଉପକରଣ ନିହାତି ଲୋଡ଼ାପଡ଼େ । କୋୟା ଓ ଦୁରୁଆ ଅଞ୍ଚଳରେ ଏହାକୁ 'ବେଦୁର' ବୋଲି କୁହାଯାଏ । ସେହି ଅନୁସାରେ ଗାଁ ଗୁଡ଼ିକ ମଧ୍ୟ ନାମିତ ହୋଇଛନ୍ତି । ଯଥା ବେଦୁରପାଲି, ବାଦୁରଗୁଡ଼ା, ବେଦୁର କୋଣ୍ଡା, ବେଦୁର ପାଡ଼ା, ବାଉଁଶ ବାହାଲ, ବାଉଁଶିଆ ଗୁଡ଼ା ଇତ୍ୟାଦି । ବାଉଁଶ ବା 'ବେଦୁର'ରୁ ତିଆରି ବିଭିନ୍ନ ଉପକରଣ :

(କ) ଘତିଡ଼ି : ବାଉଁଶରୁ ତିଆରି ଛତା ଯାହା ଟୋପି ଆକାରର ହୋଇଥାଏ । ଏହାକୁ ପିନ୍ଧି ଚାଷକାମ କରାଯାଏ । ଇଂ. Bamboo Cap.

(ଖ) କଲ୍‌କି : ବାଉଁଶ ତିଆରି ବଡ଼ ଡାଲା । ଏଥିରେ ଧାନ ସଞ୍ଚୟ କରି ରଖାଯାଏ । ଏହାର ଭିତର ପଟକୁ ଗୋବର ଦ୍ୱାରା ଲିପି ସବୁ ଫାଙ୍କକୁ ବନ୍ଦ କରାଯାଏ । ଧାନ ରଖିସାରିବା ପରେ ଉପର ପଟକୁ ପାଳ ବା ପିରି ଦେଇ ଗୋବର ଲିପାଯାଏ । ଏଥିରେ ଦଶବର୍ଷ ପର୍ଯ୍ୟନ୍ତ ଧାନ ରହିପାରେ । ବାଉଁଶର ପତଳା ପାତିଆରେ ଏହା ତିଆରି ହୋଇଥାଏ ।

(ଗ) ଡୁଡି : ବାଉଁଶ ତିଆରି କରେଇ ବା ଅମାର । ଏହା ଫାଳ ବାଉଁଶରେ ତିଆରି ହୋଇଥାଏ । ସେଥିପାଇଁ ମାଟି ଓ ଗୋବର ଦେଇ ଏହାର ଫାଙ୍କ ବନ୍ଦ କରାଯାଏ । କାରଣ କଲ୍‌କି ତୁଳନାରେ ଏଥିରେ ଅଧିକ ଫାଙ୍କ ରହିଥାଏ । ଧାନ

ରଖିସାରି ପୂର୍ବମତେ ପାଳ ଓ ଗୋବର ଲିପି ଏହାକୁ ବନ୍ଦ କରାଯାଏ । ଧାନ ରଖା କୋଠରୀର ଆକାର ଅନୁଯାୟୀ ଏହାକୁ ସାନବଡ଼ କରାଯାଇପାରେ ।

(ଘ) କର୍‌ଲି : ବାଉଁଶ ପାତିଆର ତିଆରି ହୋଇଥିବା ଏହି ଡାଲାରେ ପ୍ରାୟ ୧୦ମାଣ ବା ୨୦ରୁ ୨୫କେ.ଜି. ଧାନ ରହେ । ଏହି କର୍‌ଲି ପୁଣି ତିନି ପ୍ରକାରର । ବଡ଼ କର୍‌ଲି, କର୍‌ଲି ଓ ମୁଣ୍ଡି କର୍‌ଲି । ମୁଣ୍ଡି କର୍‌ଲିରେ ମାତ୍ର ୨ରୁ ୩ମାଣ ଧାନ ରହେ । ଏହି ମୁଣ୍ଡି କର୍‌ଲି ସାହାଯ୍ୟରେ ମାଛ ଧରିବା ପାଇଁ ଛୋଟ ଖାଲର ପାଣି ବୁହାଯାଏ ।

(ଙ) ଚଙ୍ଗୁଡ଼ା : ନିତ୍ୟ ବ୍ୟବହାର୍ଯ୍ୟ ପାଛିଆ ବା ଛୋଟ ଡାଲା । ଏଥିରେ ପନିପରିବା ଓ ଡାଲି ଚାଉଳ ରଖାଯାଏ । ଇଂ.- Basket

(ଚ) ଚୁର୍କି : ଏହା ଏକ ଛୋଟ ଚଙ୍ଗଡ଼ା : ଚୁଡ଼ା ଓ ମୁଢ଼ି ଖାଇବା ଓ ଗାଉଳ ଧୋଇବା ପାଇଁ ବ୍ୟବହାର କରାଯାଏ ।

(ଛ) ଗଟନା : ମୋଟା ଫାଳ ବାଉଁଶରେ ତିଆରି ଝୁଡ଼ି । ଗୋବର ଗୋଟେଇବା ଓ ଫିଙ୍ଗିବା ପାଇଁ ତଥା ମାଟି ଉଠେଇବା ପାଇଁ ଏହା ବ୍ୟବହାର ହୋଇଥାଏ । ପନିପରିବା ତୋଳିବା ଓ ବିକିବା ପାଇଁ ମଧ୍ୟ ଏହା ବ୍ୟବହାର ହୋଇଥାଏ ।

(ଜ) ଜିଗାଡ଼ି : ବାଉଁଶ ତିଆରି ଭାର ବା କାଉଡ଼ି । ଏହାକୁ ଜିଗାତି କାଉଡ଼ି ମଧ୍ୟ କୁହାଯାଏ । ଏହା ସାଧାରଣତଃ ଦାରୁ ବା କାଠ ଆଣିବା ପାଇଁ ବ୍ୟବହାର କରାଯାଏ ।

(ଝ) କାଉଡ଼ି : ବାଉଁଶ ତିଆରି ଭାର । ସବୁ ପ୍ରକାର ବୋଝ ବୋହିବା ପାଇଁ କାମରେ ଲାଗେ । ଇଂ.- Weighbow

(ଞ) ଛପା : ପତଳା ବାଉଁଶ ପାତରୁ ପ୍ରସ୍ତୁତ ମଶିଣା । ପ୍ରତିଶବ୍ଦ - ତାଟି । ଇଂ.- Bamboo mat ପ୍ରତି ଆଦିବାସୀ ଘରେ ବସା ଉଠା ଓ ଶୋଇବା ପାଇଁ ଏହା ରହିଥାଏ । ଏହାର ଆକାର ୨ଫୁଟ x ୫ଫୁଟର ନେଇ ୫ଫୁଟ x ୪ଫୁଟ୍ ପର୍ଯ୍ୟନ୍ତ ହୋଇଥାଏ ।

(ଟ) ଚାଲ୍‌ନି : ଚାଲୁଣି : ମାଣ୍ଡିଆ, ଧାନ, ମୁଗ, ବିରି, କୋଳଥ ଇତ୍ୟାଦି ଶସ୍ୟରୁ ଗୋଡ଼ିବାଲି ବାହାର କରିବା ପାଇଁ ବ୍ୟବହାର କରାଯାଏ ।

(ଠ) କୁଲା : ଯେକୌଣସି ଶସ୍ୟ ପାଛୁଡ଼ା କାମରେ ଲାଗେ । ଏହା ଛୋଟ ବଡ଼ ଦୁଇ ଆକାରରେ ମିଳେ ।

(ଡ) ବିଞ୍ଚନା ବା ବିଚ୍ନା : ପଙ୍ଖା, ଚାରିକୋଣିଆ ବା ଗୋଲ ବୁଣା ବାଉଁଶ ପାତିଆ ପଙ୍ଖା । ଇଂ.- Handfan ଏହାକୁ ବିଭିନ୍ନ ରଂଗରେ ମଧ ରଂଗା ଯାଇଥାଏ ।

(ଢ) ଜୁଲ୍‌ନି : ଝୁଲଣା ବା ଦୋଳି : ଛୋଟ ପିଲାଙ୍କୁ ଶୁଆଇବା ଓ ଝୁଲାଇବା ପାଇଁ ବ୍ୟବହୃତ ହୁଏ । ଇଂ.- Cradle

(ଣ) ଟାକ୍‌ଲା : ଚାରିଫୁଟରେ ଚାରିଫୁଟ ଚାରିକୋଣିଆ ସାମାନ୍ୟ ଫାନ୍ଦଯୁକ୍ତ ଡାଲା । ଧାନ ବା ପେଣ୍ଡମ୍ ଭାତ ଶୁଖାଇବା ଲାଗି ମୁଖ୍ୟତଃ ଏହା ବ୍ୟବହୃତ ହୋଇଥାଏ ।

(ତ) ଜାପିପେଢ଼ି : ସରୁ ବାଉଁଶ ପାତିଆରୁ ଘଞ୍ଚବୁଣା ହୋଇଥିବା ବାକ୍ସ । ଏଥିରେ ଲୁଗାପଟା / ପଇସାପତ୍ର ତଥା ଅନ୍ୟାନ୍ୟ ମୂଲ୍ୟବାନ୍ ଜିନିଷ ରଖାଯାଏ । ଅଧିକାଂଶ ପାରମ୍ପରିକ ଆଦିବାସୀ ପରିବାରରେ ଏହା ବ୍ୟବହାର ହୁଏ ।

(ଥ) ଡୁଟି : ମାଛ ଧରି ରଖିବା ପାଇଁ ଖାଳେଇ ।

(ଦ) ଦାନ୍ଦର : ମାଛ ଧରିବା ଯନ୍ତ୍ର ବିଶେଷ । ଏହା ଖଇଞ୍ଚି ଭଳି ହୋଇଥାଏ । ସରୁସରୁ ବାଉଁଶ କାଠିକୁ ରଶି ଦ୍ୱାରା ବୁଣାଯାଏ । ଗୋଲ୍, ଲମ୍ବା, ମୁହଁପଟ ଖୋଲା, ପଛପଟ ସରୁ ହୋଇ ବନ୍ଦଥାଏ । ତା ମଝିରେ ଥାଏ ଶିଙ୍ଗା । ଏହି ଶିଙ୍ଗା ଏକ ଛେଶଟ କବାଟ । ମାଛମାନେ ଭିତରକୁ ଗଲେ ଆଉ ବାହାରି ପାରନ୍ତି ନାହିଁ । ପାଣି ସୁଅରେ ଏହାକୁ ବସାଇ ମାଛ ଧରାଯାଏ । ଇଂ.- A type of fishing instrument

(ଧ) ବିସର୍ : ବାଉଁଶ କାଠିରେ ରଶିଦ୍ୱାରା ବୁଣାଯାଇଥିବା ବଡ଼ ତାଟି ବା ପଟା । ଏହାର ଓସାର ୫ଫୁଟରୁ ୭ଫୁଟ ଲମ୍ବା ଓ ୧୦ରୁ ୧୫ଫୁଟ୍ । ଝୋଲା, ନଦୀ ବା ଗାଡ଼ରୁ ମାଛ ଧରିବାପାଇଁ ଏହା ବ୍ୟବହୃତ ହୁଏ । ନଦୀରେ ଯେଉଁ ବିସର ବ୍ୟବହାର ହୁଏ, ତାହା ୮ରୁ ୧୦ଫୁଟ୍ ଓସାର ଓ ୩୦ରୁ ୪୦ଫୁଟ୍ ଲମ୍ବା ହୋଇଥାଏ ।

(ନ) ଶିରା : ଗଣ୍ଠିଯୁକ୍ତ ପାକଳ ଗୋଟିକିଆ ବାଉଁଶ ଯାହାର ଲମ୍ବ, ପ୍ରାୟ ୧୫ରୁ ୭୦ଫୁଟ୍ ହୋଇଥାଏ । ସେଥିରେ ପ୍ରତି ଗଣ୍ଠିରେ ପ୍ରାୟ ତିନିଇଞ୍ଚ କରି କେନା

ରଖାଯାଇଥାଏ । ସଲପ୍ ଗଛକୁ ଚଢ଼ିବା ପାଇଁ ଏହା ବ୍ୟବହାର କରାଯାଏ । ଏହି ଶିରା ସାହାଯ୍ୟରେ ସଲପ୍ ପାରିବା ଲୋକକୁ 'ଜିଗିଡ଼ିଆ' କୁହାଯାଏ ।

(ପ) ଡାଣ୍ଡିଆ : କୋକେଇ : ପ୍ରାୟ ୧୦ଫୁଟ୍ ଲମ୍ବର ଦୁଇଟି ବାଉଁଶକୁ ନେଇ ସମାନ୍ତର ଭାବେ ରଖି ସିଡ଼ି ଭଳି ୩ ବା ୪ଟି ବାଉଁଶ ଦଣ୍ଡା ମଝିରେ ବାନ୍ଧି ଦିଆଯାଏ । ଶବ ବୋହିବା ପାଇଁ ଏହା ବ୍ୟବହାର କରାଯାଏ । ଥରେ ବ୍ୟବହାର ହେବାପରେ ମଶାଣିରେ ଏହା ଫୋପାଡ଼ି ଦିଆଯାଏ ।

(ଫ) କାଣ୍ଡଶର : ପାକଳପାଣି ବାଉଁଶରୁ ତିଆରି ତୀର । ଏଥିପାଇଁ ପୋଲା ବାଉଁଶ ଦରକାର ହୁଏ । ତୀରର ଅଗରେ ଲୁହା ବ୍ୟବହାର କରାଯାଏ ।

(ବ) ବିଟା : ଡୁଇଲା । ବାଉଁଶରୁ ନିର୍ମିତ ତୀରର ଅଗ୍ରଭାଗ । ସାଧାରଣତଃ ଚଢ଼େଇ ମାରିବା ଲାଗି ବା ଗୃହପାଳିତ ଜୀବଙ୍କୁ ଘଉଡ଼ାଇବା ପାଇଁ ଏହା ବ୍ୟବହୃତ ହୁଏ । ତୀର ଅଗରେ ବାଉଁଶର ବିଟ ବ୍ୟବହାର କରାଯାଏ ।

(ଭ) ଦୁନୁ : ଧନୁ : ଏହା ତିଆରି ହୁଏ ଡଙ୍ଗର ବାଉଁଶରୁ ଯାହା ନିଦାଥାଏ । ଅଭିଜ୍ଞ ଶିକାରୀମାନେ ନିଜେ ଏଭଳି ବାଉଁଶ ଚୟନ କରି ସେଥିରୁ ଧନୁ ପ୍ରସ୍ତୁତ କରନ୍ତି ।

(ମ) ପନ୍ତି : ଧନୁର ଗୁଣ । ଏହା ଡଙ୍ଗର ବାଉଁଶ ଓ ଶିଆଡ଼ି ରଶିରୁ ତିଆରି ହୋଇଥାଏ ।

(ଯ) ଗୁଲ୍‌ଚା ଦୁନୁ : ବାଉଁଶ ଓ ଶିଆଳି ରଶି ନିର୍ମିତ ସାନ ଆକାରର ଧନୁ, ଯେଉଁଥିରେ ଗୁଲଚା ବା ମାଟି ଗୁଲି ମରାଯାଇଥାଏ । ଏଥିରେ ପକ୍ଷୀ ଓ ମୂଷା ଇତ୍ୟାଦି ଶିକାର କରାଯାଏ ।

(ର) ମିରିଗୁଲି : ବାଉଁଶ ତିଆରି ପାଣି ବାହିବା ଯନ୍ତ । ଏହା ବଡ଼ ଚାଙ୍ଗଡ଼ା ଆକାରରେ ହୋଇଥାଏ ଓ ଦୁଇପଟେ ଚାରୋଟି ରଶି ଲାଗିଥାଏ । ଦୁଇଜଣ ଲୋକ ଦୁଇପଟେ ଧରି ଏହାଦ୍ୱାରା ପାଣି ବାହାନ୍ତି ।

(ଲ) ଗିରା : ଡଙ୍ଗା ଆକାରରେ ନିର୍ମିତ ବାଉଁଶ କାଠି ଓ ରଶିର ଏକପ୍ରକାରର ବିସର । ମିରିଗୁଲିରୁ ପାଣି ବାହି ଏହି ଗିରାରେ ପକାଇଲେ ମାଛମାନେ ସେଥିରେ ରହିଥାଆନ୍ତି । ସାଧାରଣତଃ ବେଢ଼ାରୁ ମାଛ ଧରିବା ବେଳେ ଏହା ବ୍ୟବହାର କରାଯାଏ ।

ବ) ଆଟୁଡାଙ୍ : ଶିଡ଼ି । ବାଉଁଶ ଛତୁ । ଇଂ.- Ladder, Bamboo Mushroom.

ବାଉଁଶ ବୁଦାରେ କଟା ହୋଇଥିବା ବାଉଁଶ କୁଟରୁ ବର୍ଷାଦିନେ ବାହାରୁଥିବା ସ୍ୱାଦିଷ୍ଟ ଛତୁ । ଏହା କାହାଳି ଆକାରର ହୋଇ ଗୋଛାଗୋଛା ଫୁଟିଥାଏ । ରଂଗ ଧଳା । ପାକଳ ହେଲେ ହଳଦିଆ ପଡ଼ିଯାଏ । କିନ୍ତୁ ପାକଳ ହେବା ପୂର୍ବରୁ ବାଉଁଶ ଚାଟି ଖୁବ୍ ସୁସ୍ୱାଦୁ । ପାକଳ ଚାଟିକୁ ମଧ ଶୁଖାଇ ଗୁଣ୍ଡକରି ରଖାଯାଏ ଓ ଶିଝାଇ ଶାଗ ଆକାରରେ ଖିଆଯାଏ । ସିଡ଼ିକୁ ମଧ 'ଆଟୁଡାଙ୍' କୁହାଯାଏ ।

୨୯. ବାକ୍‌ନା / ବାକ୍‌ନା - *ଦେ.ବି.* : ବାଉଁଶ : ଧନ୍ଦା, ଢଗ, ପହେଳି ବା ନାଁଦିଆ : ଇଂ.- Riddle ଏହା ବିଶ୍ୱର ସମସ୍ତ ଜନଜାତି ବା ଜାତିର ଭାଷାରେ ରହିଛି । ଏହାର ଓଡ଼ିଆ ଅର୍ଥ ହେଉଛି ନାଁଦିଆ, ପହେଳୀ, ପହେଳିକା, ଧନ୍ଦା, ବଖେନ୍ (ସମ୍ବଲପୁରୀ ଭାଷା) ଇତ୍ୟାଦି । କେତେକ ଅଞ୍ଚଳରେ ଏହାକୁ ଢଗ, ଢଗଗୀତ, କୂଟପ୍ରଶ୍ନ ଆଦି ବୋଲି କହିଥାନ୍ତି । ଆଦିବାସୀମାନେ ଅବିଭକ୍ତ କୋରାପୁଟ, କଳାହାଣ୍ଡିରେ ଏହାକୁ ବାକ୍‌ନା / ବାଖ୍‌ନା / ବଖେନ୍ ବୋଲି କହିଥାନ୍ତି ।

ଏହା ଲୋକ ସାହିତ୍ୟର ଏକ ଉଲ୍ଲେଖଯୋଗ୍ୟ ବିଷୟ । ବାକ୍‌ନା ମାଧମରେ ଜନସାଧାରଣ ଆପଣା ଅଭିଜ୍ଞତାକୁ ଅତି ସୁନ୍ଦର ଓ ଚମତ୍‌କୃତ ରୂପ ଦେଇଥାନ୍ତି । ବାଖନା ଆଦିବାସୀ ଜନଗଣର ଅର୍ଜିତ ଅଭିଜ୍ଞତାକୁ ପ୍ରଶ୍ନ ଆକାରରେ ଲିପିବଦ୍ଧ କରେ । ଏହା ହେଉଛି ଆଦିବାସୀ ଜନସମାଜରେ ଅତି ସାଧାରଣ ଲୋକଙ୍କପାଇଁ ଅନ୍ୟର ବୁଦ୍ଧିକୁ ପରୀକ୍ଷା କରିବାର ଉପାୟ । ଜନଜାତିଙ୍କର ସଂସ୍କୃତି, ଜୀବନ ଓ ଜଗତକୁ ବାକନା ମାଧମରେ ସେହି ଲୋକମାନଙ୍କ ଦ୍ୱାରା ପ୍ରକାଶ କରାଯାଇଥାଏ । ଉଦାହରଣ :-

(୧) ସିଂଜି ଅଚ୍ ମଂଜିନାଇଁ,
ଜିକି ରୋପିଲେ ଜିଏଁ ନାଇଁ । (ଛତୁ)

(୨) ତାର୍ ଉପରେ ତାର୍
ତାର୍ ଉପରେ ବସ୍‌ଲା ଅଚ୍ ତହସିଲଦାର । (ବୁଢ଼ିଆଣୀ)

(୩) ଆଏ ମିଲ୍‌କି ଯାଏ ମିଲ୍‌କି
ମିଲ୍‌କିର ଖଜ୍‌ନାଇ (ଡଙ୍ଗା) । (ଯାଉଥିବ ଆସୁଥିବ, କିଛି ଚିହ୍ନ ନଥିବ ।)

ବିଭିନ୍ନ ଫୁଲ, ଫଳ, ବୃକ୍ଷଲତା, ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ, ଅଂଗପ୍ରତ୍ୟଙ୍ଗ ଆଦି ଉପରେ ପ୍ରଶ୍ନ ପଚାରି ଆଦିବାସୀ ସମାଜରେ ଉତ୍ତର ମଗାଯାଏ । ଏହା କୌତୂହଳପ୍ରଦ ଓ ବୁଦ୍ଧିର ପରିମାପକ । ଉଦାହରଣ :-

(୩) କୋଟ୍ ଉଦ୍ଭୂଷା ନାକା,
ପୁକା ଦୁକା, ବଡ଼େ ଦୋକା । (ଉତ୍ତର - ଜନା ବା ମକା)

(୪) ଦାନ୍ଦା ତା ଦାନ୍ଦା
ବୁନ୍ଦ୍ ନାଇଲାକାନ୍ଦା (ଉତ୍ତର : ଛତୁ)

୩୦. ବାଘ୍‌ଡୁମ୍ବା : ବାଘର ଭୂତ : ଇଂ.- Ghost Of a Tiger.

ଯେଉଁମାନେ ବଣ ପାହାଡ଼ରେ ବାଘର ଆକ୍ରମଣରେ ମରିଥାନ୍ତି, ସେମାନଙ୍କ ଆତ୍ମା ବାଘଡୁମ୍ବା ହୋଇ ରହେ ବୋଲି ଆଦିବାସୀର ବିଶ୍ୱାସ । ଏହି ଡୁମ୍ବା ଧରିଲେ ରୋଗୀଟି ସହଜରେ ଭଲ ହୁଏ ନାହିଁ । କେତେକ ବାଗଡୁମ୍ବା ଗ୍ରସ୍ତରୋଗୀ ଝାଡ଼ାବାନ୍ତିରେ ମୃତ୍ୟୁବରଣ କରିଥାନ୍ତି । ଏହାର ପ୍ରତିକାର ପାଇଁ ଆଦିବାସୀ ଲୋକେ ଗୁଣିଆ, ଦିଶାରୀ ବା ଗୁରୁମାଇ ପ୍ରଭୃତିଙ୍କୁ ଡାକି ଝଡ଼ାଫୁଙ୍କା, ମନ୍ତ୍ରପାଠ ଇତ୍ୟାଦି କରିବା ସହ ଡୁମ୍ବାପୂଜା ମଧ୍ୟ କରିଥାନ୍ତି । ଏମାନେ ରୋଗୀକୁ କେତେକ ଗଛର ଚେରମୂଳ ଦେହରେ ବାନ୍ଧିବା ପାଇଁ ଦେଇଥାନ୍ତି ଓ ଆଉରି କେତେକ ଗଛର ବକଳକୁ ଛେଚି ତା'ର ରସ ପିଇବାକୁ ଦେଇଥାନ୍ତି । ଏକ ପ୍ରକାର ଗଛର ଡାଳ ବା ଝାଟିରେ ରୋଗୀର ଦେହକୁ ଝାଡ଼ିଥାନ୍ତି ।

ପରଜା ଉପନ୍ୟାସରେ ଗୋପୀ ମହାନ୍ତି ବାଘଡୁମ୍ବାର ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି, "ଦି ପହରେ ବାଘଡୁମ୍ବା ବୁଲେ । ଯେତେ ଲୋକଙ୍କୁ ବାଘ ଖାଇଥାଏ, ତାଙ୍କରି ପ୍ରେତ ସେ । ପିଲାପରି ଚେହେରା, ମାଇ ଅଣ୍ଡିରା ଜଣାପଡ଼େ ନାହିଁ । ମୁଣ୍ଡନାଲି, ଆଖିନାଲି, ଦେହଯାକ ବଡ଼ବଡ଼ ରୁମ । ଲୋକେ କହନ୍ତି କେତେପ୍ରକାର ଶବ୍ଦକରେ ସେ । କୁହେଇଲା ପରି, ଗର୍ଜିଲା ପରି, କାଠ ଭାଂଗିଲା ପରି, ବାଘଡୁମ୍ବା ଡରାଇ ଡରାଇ ଖେଦେ । (ପରଜା : ପୃ-୨୦୮)

୩୧. ବାଗଯାତ୍ରା - *ଦେ.ବି. :* ବାଘ ଦେବତାର ପୂଜା । ଇଂ. Worship of the Tiger deity.

ଗୋରୁଗାଈ ଓ ମଣିଷଙ୍କୁ ବାଘ ଭାଲୁଙ୍କ କବଳରୁ ରକ୍ଷା କରିବା ପାଇଁ ବାଘକୁ ଦେବତା ରୂପେ ପୂଜା କରାଯାଏ । ଏହାକୁ 'ବାଗ୍‌ଯାତ୍ରା' କୁହାଯାଏ । ଚିତାଲାଗି ଅମାବାସ୍ୟା ପୂର୍ବରୁ ଏହି ପୂଜା କରଯାଏ । ମାଈ କଳା କୁକୁଡ଼ା, ଛେଳି, ଅଣ୍ଡା, ନଡ଼ିଆ, ଗୁଡ଼ ଓ କ୍ଷୀର ଭୋଗ ଲଗାଇ ବଣରେ ପୂଜା କରାଯାଏ ।

୩୨. ବାଗ୍‌ମଡ଼ା - *ଦେ.ବି. :* ବାଘ ଦ୍ୱାରା ନିହତ ହୋଇଥିବା ମଣିଷର ଶବ । ଇଂ. A man's dead body killed by a tiger. ଏହା କୋରାପୁଟ ଜିଲ୍ଲାର ଏକ ସାର୍ବଜନୀନ ଗାଳି । କୌଣସି ଲୋକ ବାଘ ହାବୁଡ଼ରେ ପଡ଼ି ମୃତ୍ୟୁବରଣ କଲେ ତାର ଶବକୁ ଜଂଗଲରେ ହିଁ ପୋତି ଦିଆଯାଏ । କାଳେ ଡୁମା ହେଇ ଲୋକଙ୍କୁ ହଇରାଣ କରିବ ବୋଲି ଶବ ପୋତିବା ଜାଗାରେ ଲୁହାକଣ୍ଟା ପିଟାଯାଏ । ଗାଳି ଅର୍ଥରେ "ବାଘ ତୋତେ ମାରୁ" ବୋଲି କୁହାଯାଏ ।

୩୩. ବାଜାର୍ - *ଦେ.ବି. :* ଦେବାଦେବୀଙ୍କର ସମ୍ମେଳନ । ଆଖପାଖ ୪/୫ଖଣ୍ଡ ଗାଁର ଲୋକ ମିଶି ମୁଖ୍ୟ ଦେବଦେବୀ ଆସ୍ଥାନରେ ଏହି ବାଜାର ଅନୁଷ୍ଠିତ ହୁଏ । ଏଥି ଲାଠି, ଶିକୁଳି ଆଦି ପ୍ରତୀକ ବିଭିନ୍ନ ଗ୍ରାମଦେବତା ଓ ଦେବୀଙ୍କ ପ୍ରତିନିଧି ରୂପେ ଆସିଥାଆନ୍ତି । ଯେଉଁ ଲୋକ ମାନସିକ କରି ଭୋଗ ଦେଇନଥାଏ, ତା' ଘରକୁ ଲାଠି ମହାପ୍ରଭୁ ବିଜେ କରନ୍ତି । ଉକ୍ତ ପୀଠରେ ବଜାର ଭଳି ବିଭିନ୍ନ ଦୋକାନ ବସେ ଓ ରାତିରେ ନାଚ ହୁଏ । ଏହା ପ୍ରାୟତଃ ଖରାଦିନେ ହୁଏ । ଭତରା ଅଧ୍ୟୁଷିତ ଅଞ୍ଚଳରେ ସାଧାରଣତଃ ଏହା ହୋଇଥାଏ ।

୩୪. ବାଟ୍‌କଡ଼ା - *ଦେ.ବି. :* ନୃତ୍ୟ ପରିଚାଳକ ବା ଦିଗପରିଦର୍ଶକ । ଇଂ.- Conductor, Director କୋରାପୁଟର ସର୍ବଜନପ୍ରିୟ ଢେମସା ନୃତ୍ୟରେ ସବା ଆଗରେ ଜଣେ କଳାକାର ମୟୂରପୁଚ୍ଛ କିମ୍ବା ଗାମୁଛାଟିଏ ଧରି ନୃତ୍ୟ ପରିଚାଳନା କରିଥାଏ । ଢୋଲ, ମହୁରୀ, ତିଡ଼ିବିଡ଼ି ଓ ଟମକର ତାଳେତାଳେ ସେ ପ୍ରଥମେ ପାଦ ପକେଇ ବାଟକାଢ଼ି ନୃତ୍ୟ ପରିଚାଳନା କରିଥାଏ । ତା'ର ପଦପାତରୀତି ଅନୁଯାୟୀ ଅନ୍ୟମାନେ ନୃତ୍ୟ କରିଥାନ୍ତି । ନୃତ୍ୟର ଏହି ସବା ଆଗ କଳାକାରକୁ 'ବାଟ୍‌କଡ଼ା' କୁହାଯାଏ ।

୩୫. **ବାଟବୀରୁ** - *ଦେ.ବି. :* ରାସ୍ତାରେ ଅନୁଷ୍ଠିତ ହେଉଥିବା ଏକପ୍ରକାରର ପୂଜା । କୌଣସି ଦମ୍ପତ୍ତି ବିବାହ ପରେ ଅନେକ ବର୍ଷଧରି ନିଜ ସନ୍ତାନ ନ ରହିଲେ ସନ୍ତାନ ସନ୍ତତି ପ୍ରାପ୍ତି ପାଇଁ ଦିସାରୀ ଦ୍ୱାରା 'ବାଟବୀରୁ' କରାଇଥାଏ । ମୁଖ୍ୟତଃ ଅପଦେବତାର ଅପଦୃଷ୍ଟିକୁ ଏଡ଼େଇବା ପାଇଁ ଓ ଦେବଦେବୀଙ୍କୁ ସନ୍ତୁଷ୍ଟ କରିବାପାଇଁ ଏହି ବାଟବୀରୁ କରାଯାଏ ।

୩୬. **ବାଟବିଭା** - *ଦେ.ବି. :* (୧) ବାଟ ବା ଗ୍ରାମ ଛକରେ ହେଉଥିବା ଏକ ବିବାହ ପ୍ରଥା । ବାସ୍ତବରେ ଏହା ଏକ ପୂଜା । ଆଦିବାସୀମାନଙ୍କ ବିଶ୍ୱାସ ଯେ ଭୂତ ପ୍ରେତାଦିଙ୍କର କୁପ୍ରଭାବରୁ ମୁକ୍ତି ପାଇବା ପାଇଁ ଏହି ପୂଜା ନିହାତି ଆବଶ୍ୟକ । ଏହା ବ୍ୟତୀତ ବନ୍ଧ୍ୟାତ୍ୱ ଦୂରୀକରଣ ଓ ମାନସିକ ପୂରଣ ହେବା ଓ ହୋଇଥିବା କାରଣରୁ ମଧ ଏହି ପୂଜା ଆଦିବାସୀମାନଙ୍କ ଦ୍ୱାରା କରାଯାଇଥାଏ । ବାଟ ବିବାହର ଅର୍ଥ ହେଉଛି, ଗ୍ରାମ ବାହାରେ ଥିବା ଛକ ରାସ୍ତାରେ ଗୋଟିଏ କୁପ୍ରେତ ସହ ଆଉ ଏକ ପ୍ରେତିନୀର ବିବାହ ପୂଜାବେଳେ ଏ ଦୁହିଁଙ୍କ ବିବାହ କରାଯାଏ, ଯିଏ କି ଗ୍ରାମର ଲୋକ, ଗାଈ, ଗୋରୁ ଚାଷବାସ ଆଦିରେ ଅସୁବିଧା ସୃଷ୍ଟି କରୁଥାନ୍ତି । ଗ୍ରାମର ଲୋକଙ୍କର ବିଶ୍ୱାସ ଯେ ଏହା କରିବା ଦ୍ୱାରା କୁପ୍ରେତ ବା ଭୂତ ଗ୍ରାମ ଛାଡ଼ି ପଳାଇ ଯାଇଥାଏ । ଏହି ବାଟ ବିବାହ ପୂଜା ଗୁରୁମାଈ ଦ୍ୱାରା କରାଯାଇଥାଏ । କେତେକ ସ୍ଥଳରେ ଦିଶାରିମାନେ ମଧ ଏହା କରିଥାନ୍ତି ।

(୨) କୌଣସି ପରଜା, ଗାଦବା ବା କନ୍ଧ ପରିବାରରେ ଯଦି ସନ୍ତାନ ପ୍ରସବ ପରେ ମା କିମ୍ୱା ଶିଶୁ ଦୁର୍ବଳ ହୋଇଯାଉଥିବା ଲକ୍ଷ୍ୟ କରାଯାଏ, ତେବେ ପରିବାରର ଲୋକେ ସେଇ ମାଆ ଓ ଶିଶୁର ସୁସ୍ଥତା କାମନା କରି ବାଟ ବିଭା ପୂଜା ମାନସିକ କରନ୍ତି । ଦିଶାରୀର ପରାମର୍ଶ କ୍ରମେ ପୂଜା ଉପକରଣ ମାନ କିଣାଯାଏ । ଘର ଆଗରେ ଦୁଇଟି ଛାମୁଣ୍ଡିଆ ମରାଯାଏ । ଗୋଟିଏ ଛୋଟ ଛାମୁଣ୍ଡିଆ ଓ ଆଉ ଗୋଟେ ବଡ଼ ଛାମୁଣ୍ଡିଆ । ଏହି ଛାମୁଣ୍ଡିଆ ଚାରିପଟେ କଦଳୀ ଗଛ ପୋତାଯାଏ । ଗୋଟିଏ ମାଟି ହାଣ୍ଡିରେ କିଛି ଧାନ ରଖି ସେଥିରେ ପିଲାକୁ ବସେଇ ଦିଆଯାଏ । କିଛି ଡିମିରି ଫଳ ଗୋଟିଏ ମାଟିହାଣ୍ଡିରେ ରଖାଯାଇଥାଏ । ସେଇ ଡିମିରି ଫଳ ନେଇ ଦିଶାରୀ ମାଆ ଓ ଶିଶୁକୁ ଖେଳିବାକୁ କହେ । ପୂଜା ଶେଷରେ ଦିଶାରୀ ଖଣ୍ଡା ଧାରରେ ଚାଲେ ଓ କଣ୍ଟା ଦୋଳିରେ ଝୁଲେ । ଏହା ଏକ ବ୍ୟୟବହୁଳ ପୂଜା ହୋଇଥିବାରୁ ଖୁବ୍ କମ୍ ଲୋକ ଏ

ପ୍ରକାର ପୂଜା କରାଇଥାନ୍ତି । ଏ ପୂଜାରେ ଉଭୟ ଛାମୁଣ୍ଡିଆରେ ମାଆ ଓ ଶିଶୁ ପାଇଁ ସୂର୍ଯ୍ୟ ଦେବତାଙ୍କ ଉଦ୍ଦେଶ୍ୟରେ ଅଲଗା ଅଲଗା ପୂଜାପାଠ କରାଯାଇଥାଏ । ଏଇ ପୂଜାରେ ମାଆ ଓ ଶିଶୁ ଉଭୟଙ୍କ ସ୍ୱାସ୍ଥ୍ୟରେ ଉନ୍ନତି ଘଟିଥାଏ ବୋଲି ଆଦିବାସୀ ଲୋକେ ସ୍ୱୀକାର କରନ୍ତି ।

(୩) ଆଦିବାସୀ ବା ଅଣଆଦିବାସୀ ଝିଅଟିଏ ଗୁରୁମାଇ ହେବାଲାଗି ଦେବୀ ପ୍ରସନ୍ନ ହୋଇଥିବା ଧାଙ୍ଗଡ଼ାକୁ ପ୍ରଥମେ ଚାରିଛକି ରାସ୍ତାରେ ବିବାହ ହୋଇଥାଏ, କିମ୍ବା ଯେଉଁ ଝିଅ ବା ପୁଅର ଗଣ୍ଡ ଦୋଷ ଥାଏ ସେହ ଗଣ୍ଡ ଭାଂଗିବା ନିମନ୍ତେ ଚାରିଛକ ରାସ୍ତାରେ ସେମାନଙ୍କ ବିବାହ କରାଯାଇଥାଏ । ବାଟବିଭାରେ ଅନେକ ପଶୁପକ୍ଷୀଙ୍କୁ ବଳି ଦିଆଯାଇ କୁପିତ ଦେବଦେବୀଙ୍କୁ ସନ୍ତୁଷ୍ଟ କରାଯାଇଥାଏ । ବାଟବିଭାରେ କଣ୍ଢା ଦୋଳି ଓ ଡମ୍ବ ବାଦ୍ୟର ପ୍ରଚଳନ ରହିଛି ।

(୪) କୋରାପୁଟ ଜିଲ୍ଲାର କେତେକ ଆଦିବାସୀ ତଥା ଅଣ ଆଦିବାସୀ ଗୋଷ୍ଠୀ ତରଫରୁ ଆଉ ଏକ ବାଟବିବାହ ଭଳି କାର୍ଯ୍ୟାନୁଷ୍ଠାନ ହୋଇଥାଏ । କୌଣସି ପୁଅ ବା ଝିଅର ଗଣ୍ଡ ଦୋଷ ଥିଲେ କିମ୍ବା କୌଣସି ପରିବାରରେ ପୁଅଝିଅ ମରିଯାଉଥିଲେ, ସେ ପରିବାରରେ ବଞ୍ଚିଥିବା ଏକମାତ୍ର ସନ୍ତାନକୁ ବାଟବିଭା କରାଯାଇଥାଏ । ଗାଁ ମୁଣ୍ଡ ତିନିଛକି ରାସ୍ତାରେ ବେଦୀ ଛାମୁଣ୍ଡିଆ କରି ଦିଶାରୀ ଦ୍ୱାରା ଦେଶିଆ ରୀତିରେ ବିଭାଘର କରାଯାଏ । କୌଣସି ଝିଅ ବାଟବିଭା ହୋଇଥିଲେ ଆଉ ତା'ର 'ପାଣି ରକାନି' ହୁଏ ନାହିଁ । ପୁଅର 'ବାଟବିଭା' ହୋଇଥିଲେ ତାର ବିବାହ କୃତ୍ୟ ହୁଏନାହିଁ । ସେ ସିଧା କନ୍ୟାକୁ ଘରକୁ ଘେନି ଆସେ । ବାଟବିଭା ହୋଇଥିବା ପୁଅ ଝିଅର ମୁଣ୍ଡରେ ହଳଦିଆ ଚାଉଳ ଆଉ ପରବର୍ତ୍ତୀ ଜୀବନରେ ପଡ଼େ ନାହିଁ । ହଳଦୀ ଚାଉଳ ପଡ଼ିଲେ ଉକ୍ତ ପୁଅ କିମ୍ବା ଝିଅ ମୃତ୍ୟୁବରଣ କରିଥାନ୍ତି ବୋଲି ବିଶ୍ୱାସ ରହିଛି । (ଦ୍ର : ପାଣିର କାନି)

୩୭. ବାଟିଗୁଡ଼ା - *ଦେ.ବି. :* ଏକ କୋୟା ଅଧ୍ୟୁଷିତ ଗ୍ରାମର ନାମ । ଏହା ମାଲକାନ୍‌ଗିରି ବ୍ଲକ୍‌ରେ ଅବସ୍ଥିତ । ୧୯୬୦ ବେଳକୁ କାଣ୍ଡିକି ଗୁଡ଼ା ଗାଁରୁ ଉଠିଆସି ଭରାକର୍ତ୍ତାମି ଏହି ଗାଁ ବସାଇଥିଲେ । ଗଞ୍ଜ ସର୍ଗୀ ଜଂଗଲ ଭିତରେ ବସିଥିବା ଏହି ଗାଁର କିଛି ନାଁ ନଥିଲା । ପୁରୁଣା କାଣ୍ଡିକି ଗୁଡ଼ା ଠାରୁ ପ୍ରାୟ ୩ କି.ମି. ଦୂରରେ ଥିଲେ ମଧ ଏହା ସେହି କାଣ୍ଡିକି ଗୁଡ଼ା ନାଁରେ ପରିଚିତ ଥିଲା । କିନ୍ତୁ ସେଥିରେ ବେଶ୍ କିଛି

ଅସୁବିଧା ଦେଖାଦେବାରୁ ଆଉ ଗୋଟିଏ ନାଁର ଆବଶ୍ୟକତା ପଡ଼ିଲା । ଜଂଗଲ ବିଭାଗର ଅତ୍ୟାଚାରରେ ଅତିଷ୍ଠ ହୋଇ ଏହି ଗାଁ ଲୋକେ ପ୍ରଥମେ ଏଠାରେ ଆଦିବାସୀ ସଂଘ ଗଠନ କରିଥିଲେ ଓ ଚାରିଆଡ଼େ ସଂଘର ବାର୍ତ୍ତା ପ୍ରଚାର କରିଥିଲେ । ଯେତେବେଳେ ସରକାରୀ ସର୍ଭେ ହେଲା ଓ ଏହି ଗାଁକୁ ଏକ ରେଭିନ୍ୟୁ ଗାଁର ମର୍ଯ୍ୟାଦା ମିଳିଲା, ସେତେବେଳେ ସଂଘ ସଭ୍ୟଥିବା ଗ୍ରାମବାସୀମାନେ ବସି ଗଣତାନ୍ତ୍ରିକ ପଦ୍ଧତିରେ ଏହି ଗାଁର ନାଁ ଦେଲେ ଭାଟିଗୁଡ଼ା ବା ବାଟିଗୁଡ଼ା । କାରଣ ପୂର୍ବରୁ ଏଠାରେ ଥିଲା ସରକାରୀ ଅଙ୍ଗାରଭାଟି । ଫରେଷ୍ଟ କର୍ପୋରେସନ୍ ତରଫରୁ ଏହାକୁ ପ୍ରତିବର୍ଷ ନିଲାମ ଦିଆଯାଉଥିଲା । ପରେ ଅବଶ୍ୟ ଏହି ପ୍ରଥା ବନ୍ଦ ହୋଇଯାଇଥିଲା । ଏହା ମୁଖ୍ୟତଃ ଏକ କୋୟା ଓ ଗଣ୍ଡିଆ ଗାଁ ।

୩୮. ବାଡ଼ତୀ - *ଦେ.ବି.* : ଝୁଣାଦେବା ମାଟିପାତ୍ର । ଇଂ.- An earthen pot used in worship ଡଙ୍ଗରିଆ କନ୍ଧମାନେ ଦେବଦେବୀଙ୍କୁ ଝୁଣା ଦେବାବେଳେ ବେଣ୍ଟ ଥିବା ଯେଉଁ ମାଟିପାତ୍ର ବ୍ୟବହାର କରିଥାନ୍ତି ତାକୁ 'ବାଡ଼ତୀ' କୁହାଯାଏ । ଏଥିରେ ଜଳନ୍ତା ଅଙ୍ଗାର ରଖି ଝୁଣାଧୂଆଁ କରାଯାଏ ।

୩୯. ବାଡ଼ନ୍ ଚୁଡ଼ାନ - *ଦେ.କ୍ରି.* : ଓଳେଇବା, ଭଲଭାବେ ପରିଷ୍କାର କରିବା । ଇଂ.- To sweep clean

ଯଥା : ଦାଣବାଟେ ବଡ଼ ପଟ୍‌ପଟା କାଚରା ଅଇଆଚେ, ଦେକ୍‌ବାକେ ବଡ଼କିଚ୍ କିଚା । ବାଡ଼ାନ୍ ଚୁଡ଼ାନ୍ କରା ।

୪୦. ବାଡ଼ନି - *ଦେ.ବି.* : ଛାଞ୍ଚୁଣି, ଝାଡୁ । ଇଂ.- Broom. ଯେଉଁଥିରେ ଘର ଓଳାଯାଏ । ଏହି ବାଡ଼ନି ସାଧାରଣତଃ ଛଅ ପ୍ରକାରର ଦେଖାଯାଏ । (୧) ଫୁଲ୍ ବାଡ଼ନି : ଏହା ସରୁ ବାଉଁଶ ଜାତୀୟ ଚାତରେଙ୍ଗା ଗଛର ଫୁଲରୁ ପ୍ରସ୍ତୁତ କରାଯାଏ । ବଜାରରେ ଅଧିକ ଦରରେ ବିକ୍ରି ହେଉଥିବାରୁ ଏହା ପ୍ରାୟ ବାହାରକୁ ରପ୍ତାନି ହୋଇଯାଏ । ଆଦିବାସୀ ଘରେ ଏହା ଭିତର କୋଠରୀକୁ ଝାଡୁକରିବା ପାଇଁ ବ୍ୟବହୃତ ହୁଏ । ଏହି ଫୁଲ ବାଡ଼ନି ଡିସେମ୍ବର, ଜାନୁଆରୀ ଓ ଫେବୃଆରୀ ମାସରେ ସଂଗ୍ରହ କରାଯାଇଥାଏ । ପୂଜାସ୍ଥଳୀକୁ ସଫା କରିବା ପାଇଁ ମଧ୍ୟ ଏହା ବ୍ୟବହାର ହେଉଥିବାରୁ ଏହାକୁ ଦେଓବାଡ଼ନି ମଧ୍ୟ କୁହାଯାଇଥାଏ ।

(୨) କଡ଼ବା ବାଡ଼ନି : ସରୁସରୁ ବାଉଁଶ କାଠିରୁ ନିର୍ମିତ ବାଡ଼ନି । ଏହା ବିଶେଷକରି ମାଟିଘରେ ଗୋବର ଲିପେଇବା ବା ମଡ଼େଇବା ପାଇଁ ବ୍ୟବହାର ହୋଇଥାଏ ।

(୩) ବାଟି ବାଡ଼ନି : ଏହା ବାଡ଼ନି ଗଛ ବା 'ଟାଇଲ' ଜାତୀୟ ଗଛରୁ ସଂଗୃହୀତ ହୋଇଥାଏ । ଏହା ଦ୍ୱାରା ଦାଣ୍ଡ ଓ ଘରବାରି ଝାଡୁ କରାଯାଏ ।

(୪) ନଡ଼ିଆ ବାଡ଼ନି : ନଡ଼ିଆ କୁଞ୍ଚିରୁ ପ୍ରସ୍ତୁତ ଝାଡୁ । ଏହା ମଧ ଦାଣ୍ଡ, କଟାର ବା ଖଳା ଓ ଘର ପାରି ଝାଡୁ କରିବାରେ ବ୍ୟବହୃତ ହୋଇଥାଏ ।

(୫) କୁଶ୍ ବାଡ଼ନି : ଡଙ୍ଗରର ଏକପ୍ରକାର ଶକ୍ତ ଘାସ ବା ସବାଇ ଘାସର ନଡ଼ାରୁ ଏହା ପ୍ରସ୍ତୁତ ହୋଇଥାଏ । ଏହା ସବୁକ୍ଷେତ୍ରରେ ବ୍ୟବହାରରେ ଆସିଥାଏ ।

(୬) କରଣାଲି ବା ଗଉଡ଼ କଡ଼ିକା : ସରୁ ଗୋଲ କାଠି ଭଳି ଏକପ୍ରକାର ତୃଣରୁ ଏହା ପ୍ରସ୍ତୁତ ହୋଇଥାଏ । ଏହାକୁ ମଧ ଆଦିବାସୀ ଅଞ୍ଚଳରେ ବହୁଳ ଭାବେ ବ୍ୟବହାର କରାଯାଇଥାଏ ।

୪୧. ବାଡ଼ିକାଲ୍ (କନ୍ୟାସୁନା) / କୋଲାଡାବୁ - *ଦେ.ବି.* : ଇଂ- Bridal dowry. କୋୟାମାନେ କନ୍ୟାମଗି ପ୍ରସ୍ତାବ ଦେଲାପରେ ବାଡ଼ିକାଲ ସ୍ଥିର କରାଯାଇଥାଏ । ତାପରେ ମାମା କାଲ୍ ଓ ପୋୟେ କାଲ୍ ଦୁଇ ପର୍ଯ୍ୟାୟ କଥାବାର୍ତ୍ତା ହୋଇଥାଏ । ବିବାହ ପ୍ରସ୍ତାବ ଦେବାକୁ କୋୟା କହେ ମାଟାକାଲ୍ । ପ୍ରଥମେ ମାଟାକାଲ୍ (କନ୍ୟା ପାଇଁ ପ୍ରସ୍ତାବ ଦେବା) ଦ୍ୱିତୀୟରେ 'ବାଡ଼ିକାଲ୍' ବରପିତା କନ୍ୟାପିତାକୁ କେତେ ମୁଣ୍ଡ ଗୋରୁ, କେତେ ହାଣ୍ଡି ଲଂଦା, ଚାଉଳ, ଘୁଷୁରୀ, ଦେବ, ସେ ବିଷୟର ଆଲୋଚନା । ତାପରେ ମାମାକାଲ୍ ଓ ପୋୟେକାଲ୍ ଶାଶୁ ଓ ଶଶୁରଙ୍କୁ କି ଉପହାର ଦିଆଯିବ ଓ ସେହି କଥାବାର୍ତ୍ତାର ପର୍ଯ୍ୟାୟ ।

ଏହା କୋୟାମାନଙ୍କର ପ୍ରସ୍ତାବିତ ବିବାହର ବିଭିନ୍ନ ପର୍ଯ୍ୟାୟ ଅଟେ । ତା ଛଡ଼ା କୋୟା ସମାଜରେ ଆର୍ ମିରାନା (ଉଦୁଲିଆ ବିବାହ) 'କାଇଦା ମୁଲେ' ଝିଅକୁ ଟାଣିନେବା, 'ଲୋନ୍‌ର ସାନା' ଅର୍ଥାତ୍ ଇଚ୍ଛା କରି କୌଣସି ଝିଅ ପୁଅ ଘରକୁ ଆସି ରହିବା, ବା ପଇସାମୁଣ୍ଡି ବିବାହ ଏବଂ ରାଣ୍ଡିଝୋଲା ବିବାହ ମଧ ହୋଇଥାଏ । ଏହିସବୁ ବିବାହ ପ୍ରଥା ସମସ୍ତ ଆଦିବାସୀ ବା ଦେଶିଆ ସମାଜରେ ମଧ ପ୍ରଚଳିତ ।

୪୨. **ବାଣ୍ଡାକାଣ୍ଡା** - *ଦେ.ବି.* : ବାଣ୍ଡା- ଲାଞ୍ଜ ନଥିବା କାତ୍ରା କାତି, (କୁଟୁରୀ) ଯେଉଁ କଟୁରୀରେ ବେଣ୍ଟ ଲାଗି ନଥାଏ । ଏହିପରି ଏକ କଟୁରୀ ବଣ୍ଡାକାତ୍ରା ଦେବୀ ନାମରେ ଜଲାପୁଟ୍ ନିକଟସ୍ଥ 'ଜବାଗଡ଼' ଗ୍ରାମରେ ପୂଜା ପାଉଛନ୍ତି ।

୪୩. **ବାଣ୍ଟାକରା** - *ଦେ.କ୍ରି.* : ବାଣ୍ଟିବା, ଭାଗ କରିବା । ଇଂ.- To distribute ସମଭାଗିତା ବା 'ବାଣ୍ଟାକାରା' ଆଦିବାସୀ ସଂସ୍କୃତିର ଏକ ଅପରିହାର୍ଯ୍ୟ ଅଂଶ । ପୂର୍ବକାଳେ ସମସ୍ତ ଶିକାର ବା ସଂଗ୍ରହ ଉପଲବ୍ଧ ଦ୍ରବ୍ୟକୁ ଗୋଷ୍ଠୀ ମଧ୍ୟରେ ସମାନ ଭାବେ ବଣ୍ଟା ଯାଉଥିଲା । ଏବେ ତାହା ନାହିଁ ସତ, ତଥାପି ତା'ର ଚିହ୍ନ ବିଭିନ୍ନ ପର୍ବ ଓ ନୃତ୍ୟଗୀତରେ ଦେଖିବାକୁ ମିଳିଥାଏ । ଗୀତରେ ଏହାର ବ୍ୟବହାର :-

"ଇକରାବତୀ ନଈ ଟାମକ କରା
ମାଗୁର ମାଛକେ ବେସର କରା
ଚିପିଲିରେ ବାଣ୍ଟା କରା
କେତେ ଶିକାଇବୁ ତା'ର ପୁରୁଷକେ
ଗରର୍ ଗୋସାଇଁ ପରା ।"

୪୪. **ବାଦ୍‌ପାନି** - *ଦେ.ବି.* : ବିବାହର ତୃତୀୟ ଦିନ ଭୂମିଆ ସଂପ୍ରଦାୟରେ ଧାଙ୍ଗଡ଼ାମାନେ ବରକନ୍ୟାକୁ ନେଇ ଗୋଟିଏ ପୋଖରୀରେ 'କଳସ ଲୁଣ' ଖେଳନ୍ତି । ଏହି ଅନୁଷ୍ଠାନକୁ 'ବାଦ୍‌ପାନି' କୁହାଯାଏ । ଏହା ବାସ୍ତବରେ ବିବାହ ସଂପର୍କିତ ଏକ ଅନୁଷ୍ଠାନ ।

୪୫. **ବାନା** - ଦେଶିଆ : ବି: ଚିତା, ଝୋଟି ଇଂ.- A type of tribal art.

(କ) ବାନା : ଦେ.ବି. : ବିଭିନ୍ନ ପ୍ରକାର ଖୋଦେଇ ସଂକେତ । କାଠଗଣ୍ଡିରେ ଆଖି, ନାକ, ପାଟି, ହାତ, ଗୋଡ଼ ଆଦି ଖୋଦେଇ କରିବା । ଉଦାହରଣ : ସ୍ତମ୍ଭାକୃତି ବିମା ଦେବତା ।

(ଖ) ବାନା : ଓଡ଼ିଆ (ସ୍ଥାନୀୟ) ବି. ପତାକା । ଦେଶିଆ ଭାଷାରେ ମଧ୍ୟ ଏହି ଅର୍ଥରେ 'ବାନା' ଶବ୍ଦର ପ୍ରୟୋଗ ରହିଛି ।

(ଗ) ବାନା ଗୋଦନା : ଦେଶିଆ, ଚିତା କୁଟାଇବା କାର୍ଯ୍ୟ ।

(ଘ) ବାନା ଗୋଦନେ : ଦେ.ବି. : ଚିତାକୁଟା କାର୍ଯ୍ୟ କରୁଥିବା ସ୍ତ୍ରୀ ଲୋକ । ଇଂ - To tooing woman.

(ଙ) ବାନା ଗୋଦନା ଗୀତ : ଦେ.ବି. ଗଦନି ଗୀତ / ଗୁଦନି ଗୀତ (ଚିତା କୁଟାଇବା ଗୀତ) ।

ବିବାହ ବୟସ ହେଲେ ଆଦିବାସୀ ଝିଅମାନଙ୍କ ଦେହରେ ଚିତା କୁଟାଇବା ପ୍ରଥା ରହିଛି । ଝିଅ ଜାଣୁଛି ଯେ ଏଥର ସେ ବାପ ମା ଘରୁ ପର ହୋଇଯିବ । ଏହି ଦୁଃଖରେ ସେ ଗୀତ ଗାଇଥାଏ :

"ତର୍ ଗରେ ରେଲି ଆୟା, ତରଗରେରେଲି
ବେଟା ଏଲେ ତର୍‌ଗର୍‌ତେ ନାଙ୍ଗର୍ ଦର୍‌ତି ରେତି,
ଆଜି ତର୍ ଗର୍‌ତେ ନିକର ଯାଇସି ଆୟା
ତର୍ ଗର୍ ସୁନା ଏଲା
ଉଡ୍‌ଲା କରମ୍ ଏଲା ମର୍‌ବନ୍ଧ ଚଡ଼ାଓ୍ୱ ଆୟା
ମର ବନ୍ଦି ଚଡ଼ାଓ୍ୱ ।" (ଭତ୍ରୀ ଗୀତ)

ଅନୁବାଦ : ତୋ ଘରେ ଥିଲି ମା ତୋ ଘରେ ଥିଲି,
ପୁଅ ହୋଇଥିଲେ ମା ଲଂଗଳରେ ଚାଷ କରିଥାନ୍ତି,
ଆଜି ତୋ ଘରୁ ବାହାରି ଯିବି ମା
ତୋ ଘର ଖାଲି ହୋଇଯିବ
ତୋ ଘର ଖାଲି ହେଲା ମା, ମୋ କପାଳ ଫାଟିଲା ।
ମୋତେ ବନ୍ଦୀତ୍ୱରୁ ମୁକୁଳାଇ ନେ ମା' ମୁକୁଳାଇ ନେ' ।

(ଚ) କେତେକ ବାନାର ମୋଟିଫ୍ ଓ ଚିତ୍ର : ବିନ୍ଦୁ ବିସର୍ଗ ରେଖା, ବୃତ୍ତ, ଅର୍ଦ୍ଧବୃତ୍ତ, ପଶୁପକ୍ଷୀ, ସୂର୍ଯ୍ୟଚନ୍ଦ୍ର, ଦେବଦେବୀ, ନାମ, ଫୁଲଫଳ ଇତ୍ୟାଦି ।

ଯଥା : (୧) ଚାରିକୋଣିଆ ବସିବା ପିଢ଼ା (୨) ରାମ ଲକ୍ଷ୍ମଣ ସୀତା ହନୁମାନ (୩) ଖଜୁରୀ ଗଛ (୪) ବାବୁଲ ଗଛ (୫) ଫୁଲ (୬) ଫଳ (୭) ପାର୍ବତୀଙ୍କ ବସିବା ପିଢ଼ା (୮) ଅର୍ଦ୍ଧଚନ୍ଦ୍ର (୯) ଥୋଡ଼ିର କୃଷ୍ଣବିନ୍ଦୁ (୧୦) କଙ୍କଡ଼ା ବିଛା ।

୪୬. ବାନାକରିବା - *ଦେ.କ୍ରି. :* ଚିତ୍ର ଆଙ୍କି ବରଣ କରିବା । ଇଂ.- To instiate a type of art. ନିୟୁତା ସରିବା ପରେପରେ କୌଣସି ପର୍ବ ଆଗଦିନ ଘର ଅଗଣାକୁ ରଂଗ ମାଟିରେ ଗୋଳ କରି ଲିପାଯାଏ । ତା'ପରେ ପଞ୍ଚବର୍ଣ୍ଣ ମୁରୁଜରେ ଚିତା କଟାଯାଏ । ଚାଉଳ ପୁଞ୍ଜେ ଥୋଇ ତା ଉପରେ ଏକ ଅଣ୍ଡା ରଖାଯାଏ । ଚାଉଳ ରଖି ଜଡ଼ାତେଲର ଦୀପ ଜଳାଯାଏ । ଝୁଣା ଦିଆଯାଏ । ପରେ ଅଣ୍ଡା ଭାଂଗି ଚିତା ପାଖରେ ଚୁଲି ତିଆରି କରାଯାଏ । ଚାଉଳରେ ଚରୁ ଭାତ ଓ ଅଣ୍ଡାକୁ ରନ୍ଧାଯାଏ । କେବଳ ଭାୟାର ଲୋକେ ଖାଆନ୍ତି । ଏହି ବିଧି ନ କଲେ ଜ୍ୱର ଆଦି ହୁଏ ବୋଲି ବୋରିଗୁମ୍ମା ଓ କୋଟପାଡ଼ ଅଞ୍ଚଳର ଆଦିବାସୀଙ୍କ ବିଶ୍ୱାସ ।

୪୭. ବାନାଗୁଦା / ବାନାଗୁଦାନି : - *ଦେ.ବି. :* ଚିତା । ଦେହରେ ଚିତା କୁଟାଇବା । ଇଂ.- To tatoo Noun : Tatooing

ସ୍ତ୍ରୀ ବା ପୁରୁଷ ନିଜକୁ ଅଳଂକୃତ କରିବାପାଇଁ ଦେହରେ ବିଭିନ୍ନ ଡାଳ, ଫୁଲ, ପତ୍ର, ଚନ୍ଦ୍ର, ସୂର୍ଯ୍ୟ, ଜୀବଜନ୍ତୁଙ୍କର ତଥା ନିଜର ନାମ ଚିତା କୁଟାଇବାକୁ 'ବାନାଗୁଦା' କୁହାଯାଏ ।

ଯଥା : ମକେ ବାନା ଗୁଦବା ଏଚେ । (ମୋତେ ଚିତା କୁଟାଇ ଦେଉଛନ୍ତି)

(୧) ବାନା : ଦେ : ଭତ୍ରୀ : କାଠ ଗଣ୍ଡିରେ ଆଖି, କାନ, ମୁହଁ, ଆଦି ଚିହ୍ନ ଖୋଦେଇ କରିବା ।

(୨) ବାନା : ଦେ : ଛୋଟଛୋଟ ରଂଗ କାଗଜରେ କଟା ଯାଇଥିବା ପତାକା ।

୪୮. **ବାନା ପାଟେରୀ** - *ଦେ.ବି. :* ପଥର ପାଚିରୀ ବିଶେଷ । ବଣ୍ଡା ପାହାଡ଼ର ପ୍ରବେଶ ପଥରେ ପଥରରେ ନିର୍ମିତ ଏକ କାନ୍ଥ ଅଛି । ଏହି ପଥର କାନ୍ଥ ନିକଟରେ ଏକ ପ୍ରସ୍ତର ମୂର୍ତ୍ତି ଦେଖିବାକୁ ମିଳେ । ସେ ଦେବତା ହେଉଛନ୍ତି 'ଗୁନୁକ୍' । ବଣ୍ଡା ମାନଙ୍କର ବିଶ୍ୱାସ ଯେ ବାହ୍ୟ ଶତ୍ରୁମାନଙ୍କ ଆକ୍ରମଣରୁ ବଣ୍ଡା ଦେଶକୁ ରକ୍ଷା କରିବାପାଇଁ ଗୁନୁକ୍ ଦେବତା ସେଠାରେ ବିରାଜମାନ କରିଥାନ୍ତି । ଯେକୌଣସି ବଣ୍ଡା ମଣିଷ ସେ ବାଟ ଦେଇ ଗଲାବେଳେ ଖଣ୍ଡିଏ ଡାଳଭାଂଗି ସେଠାରେ ଅର୍ପଣ କରିଥାନ୍ତି ଏବଂ ଗୁନୁକ୍ ବୋରଙ୍କୁ ଆଶୀର୍ବାଦ ମାଗିଥାନ୍ତି । ଏହି ପଥର କାନ୍ଥକୁ ବାନା ପାଟେରୀ କୁହାଯାଏ । (ସମତୁଲ୍ୟ : ଡାଲଖାଇ ଠାକୁରାଣୀ ।)

୪୮. ବାନାବାଡ଼ି - *ଦେ.ବି. :* ଚିତ୍ରିତ ବାଡ଼ି । ଇଂ.- A painted Stick ଯାଚକ । ଗୌଡ଼ମାନେ ଧରି ବୁଲୁଥିବା ଚିତ୍ରିତ କେନ୍ଦୁବାଡ଼ିକୁ 'ବାନାବାଡ଼ି' କୁହାଯାଏ । ଯାଚକ ଗୌଡ଼ ମଗଧାଗୌଡ଼ଙ୍କ ଘରୁ ଦାନ ମାଗିବାବେଳେ ମଗଧା ଗୌଡ଼ ଦାନ ଦେବାଲାଗି ଅମଙ୍ଗ ହେଲେ, ଯାଚକ ଗୌଡ଼ ତାଙ୍କ ଦ୍ୱାରରେ ବାନାବାଡ଼ି ପକାଇ ଦିଅନ୍ତି । ମଗଧା ଗୌଡ଼ମାନେ ବାନାବାଡ଼ିକୁ ଲଂଘନ କରିଗଲେ ପାପ ହେବ ବୋଲି ବିଶ୍ୱାସ କରନ୍ତି ଓ ବାନାବାଡ଼ିକୁ ଉଠାଇ ନେବାଲାଗି ଯାଚକ ଗୌଡ଼ ମାଗୁଥିବା ଦାନ ଦେବଲାଗି ଶେଷରେ ରାଜି ହୋଇଥାନ୍ତି । ଯାଚକ ଗୌଡ଼ ଧରି ବୁଲୁଥିବା ଚ୍ରିତିତ ବାଡ଼ି ହିଁ ବାନାବାଡ଼ି ରୂପେ ଖ୍ୟାତ । କଳାହାଣ୍ଡି ଗଉଡ଼ମାନଙ୍କ 'ବାନାବାଡ଼ି' ନୃତ୍ୟ ପ୍ରଚଳିତ ।

୫୦. ବାନା ମାରତାସିଲି - ଦୁରୁଆ. ବି. ଧାଈ ଇଂ.- Nurse

ଗାଉଁଲି ଧାଈ । ଦୁରୁଆ ସମାଜରେ ପାରମ୍ପରିକ ଭାବେ ଗର୍ଭବତୀ ସ୍ତ୍ରୀ ମାନଙ୍କର ପ୍ରସବ କାର୍ଯ୍ୟ କରୁଥିବା ସ୍ତ୍ରୀ ଲୋକ । (ଦ୍ର. ବଣ୍ଡକା ଡୋକ୍ରୀ ।)

୫୧. ବାନିଆ - *ଦେ.ବିଂ. :* ଖରାପ, ଇଂ.- Very Bad, Naughty. ଏହା ଯେକୌଣସି ଜିନିଷ ବା ଲୋକ ପ୍ରତି ପ୍ରୟୋଗ କରାଯାଏ । ଟାଉଟର, ଫଟକୋରମାନଙ୍କୁ ମଧ ବାନିଆ, ବଡ଼ବାନିଆ କୁହାଯାଏ । ଖରାପ ଶୁଣୁଥିବା ଲୋକ ହେଲେ ବାନିଆ । ସେହିପରି ଜିନିଷପତ୍ର ଏଣେତେଣେ ଅସଜଡ଼ା ହୋଇ ପଡ଼ିରହିଥିଲେ, ତାହାକୁ ମଧ 'ବାନିଆ' ବୋଲି କୁହାଯାଏ ।

୫୨. ବାବୁଗାଉଁ - *ଦେ.ବି. :* ବନ୍ଧୁ ଓ ଅତିଥି ଗାଁ । ଇଂ.- Relative's village କୋରାପୁଟରେ ପୌଷ ମାସରେ ଦଣ୍ଡାହୁଲିଆ ନୃତ୍ୟକରି ଆଦିବାସୀ ଓ ଅଣଆଦିବାସୀ ଯୁବକମାନେ ବିଭିନ୍ନ ଗ୍ରାମ ପରିକ୍ରମା କରିଥାନ୍ତି । ଯେଉଁ ଗ୍ରାମରେ ରାତିହୁଏ ସେଇ ଗ୍ରାମରେ ଏମାନେ ରାତ୍ରିଯାପନ କରିଥାନ୍ତି । ରାତ୍ରିଯାପନ କରିବା ଗ୍ରାମର ଲୋକମାନେ ଏହି ନୃତ୍ୟଦଳର ଯୁବକମାନଙ୍କୁ ଅତି ଶ୍ରଦ୍ଧାରେ ଆତିଥ୍ୟ ପ୍ରଦାନ କରିଥାନ୍ତି । ଦୁଇ ଗ୍ରାମ ମଧରେ ମିତ୍ରତା ସୁଦୃଢ଼ ହୋଇଥାଏ । ପରସ୍ପର ପରସ୍ପରକୁ ବିଭିନ୍ନ ଉତ୍ସବରେ ନିମନ୍ତ୍ରଣ କରିଥାନ୍ତି । ଉଭୟ ଗ୍ରାମର ଲୋକଙ୍କୁ 'ବାବୁ ଲୋକ' ଓ ଗାଁକୁ ବାବୁଗାଉଁ ବୋଲି କହିଥାନ୍ତି ।

୫୩. **ବାବୁଲୋକ୍ -** *ଦେ.ବି. :* ମୈତ୍ର, ବନ୍ଧୁ, ରକ୍ତ ସମ୍ବନ୍ଧ ନଥିବା ମିତ ସଂଗାତ । ଏ ପ୍ରକାର ସଂବନ୍ଧ, ମୈତ୍ରୀର ସମ୍ବନ୍ଧ । ବିପରୀତ ଲିଂଗର ବ୍ୟକ୍ତି ସହ ଏଭଳି ସଂପର୍କ ପ୍ରତିଷ୍ଠା କରାଯାଏ । ଧାଙ୍ଗଡ଼ା ଧାଙ୍ଗଡ଼ି ସହିତ 'ବାବୁଲୋକ' ଏବଂ ଧାଙ୍ଗଡ଼ି ଧାଙ୍ଗଡ଼ା ସହ 'ବାବୁ' ବାନ୍ଧିଥାଏ । ବାବୁ ଗାଁର ସମସ୍ତ ଲୋକ ସମ୍ମାନାସ୍ପଦ ।

୫୪. **ବାମନି -** *ଦେ.ବି. :* ଏକ ପ୍ରକାରର ସରୁସାପ । ଦେହରେ ଟିକିମିକି ବାନା । ସେ ସାପ ବାହାରିଲେ ବର୍ଷା ହେବାର କୁହାଯାଏ । ବିଷ ନଥାଏ । ରଂଗ କଳା, ଛାତି ହଳଦି ଓ ପେଟ ଧଳା । ଏହାକୁ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରେ ମାଟି ବିରୁଡ଼ିଆ ସାପ କୁହାଯାଏ ।

୫୫. **ବାରକନ୍ଦା –** *ଦେ.ବି. :* ଜଳା ବା ଝୋଲା । ପୂର୍ବକାଳରେ ଝିଅ ବିଭାବେଳେ ଯେଉଁ ଝୋଲା ଦିଆଯାଉଥିଲା ତାହାକୁ 'ବାରକନ୍ଦା' କୁହାଯାଉଥିଲା । ଆଉ ବି ଅନେକ ସ୍ଥାନରେ ଏହା ଝୋଲାଠାରୁ ଅଲଗା ଉପଢୌକନ । ଏହା ସଂଖ୍ୟାରେ ବାର ନୁହେଁ କି ଗଛର ମୂଳ ନୁହେଁ । ଝିଅ ପକ୍ଷକୁ ସନ୍ତୁଷ୍ଟ କରିବାପାଇଁ ବରପକ୍ଷ ତରଫରୁ ଯେଉଁ ଜିନିଷପତ୍ର ଦିଆଯାଏ, ତାହାକୁ ବାରକନ୍ଦା କହନ୍ତି । ଝୋଲା ଉଦ୍ଦେଶ୍ୟରେ ଦିଆଯାଉଥିବା ଡାବୁକୁ ଛାଡ଼ି ଏହି 'ବାରକନ୍ଦା' ଦିଆଯାଇଥାଏ । ମାଲକାନଗିରି ଅଞ୍ଚଳରେ ଏହି ବାରକନ୍ଦା ଝୋଲା ସହ ଯୋଡ଼ି ହୋଇଥାଏ । ବାରକନ୍ଦାର ସ୍ୱତନ୍ତ୍ର ନାମ ଲକ୍ଷ୍ମୀପୁର, ନାରାୟଣପାଟଣା ଅଞ୍ଚଳରେ ବିଶେଷକରି ପ୍ରଚଳିତ । ଏହି 'ବାରକନ୍ଦା' ହେଉଛି (ପୁରୁଣା ପ୍ରଥା ଅନୁସାରେ) ମଦ ୮/୯ କାଚ, ଗାରିଏ ସଲପ୍, ହାଣ୍ଡିଏ ପେଣ୍ଡମ୍, କାଞ୍ଚ ଗାଜୁଲ, କାଞ୍ଚମାଲି, ମାଆ ଶାଢ଼ି, ମାମୁର ମାମୁଲି (କାଚେକ୍ ମଦ, ପାଞ୍ଚ ଟଙ୍କା) ମାମୁ ପୁଡୁଗା (ଗଞ୍ଜା କୁକୁଡ଼ା) ଶୁଶୁରା କାଣ୍ଡା (ଦେଢ଼ଶୁରର ମାନ୍ୟ), ଏଗାର ମାଣ ଚାଉଳ, ଗୋଟେକ୍ ଛେଳି ନୁନ୍ ମିରିଚ୍ ପିଆଜ, ହଲ୍ଦି ଇତ୍ୟାଦି । ସକାଳେ ଗାଁ ଲୋକଙ୍କୁ ଡକାଇ ବସିକରି ଏସବୁ ଦେଇ କହନ୍ତି, "ବାରକନ୍ଦା, ତୁମ ଘରେ ଦେଲୁ । ଗାଁ ପିଲାମାନଙ୍କୁ ଡକେଇ ରାନ୍ଧେଇ କର ।" ନାୟକ, ଦିଶାରୀ, ଭଣ୍ଡାରୀ କାରିଆ ଓ ଚାଲାଣକୁ ସବୁ ଦାୟିତ୍ୱ ଦେଇ ଦିଆଯାଏ ।

ଏହି କନ୍ୟା ବା ଝିଅର ଟୋଲା ମୂଲ୍ୟ ପୂର୍ବରୁ ମାତ୍ର ୫ଟଙ୍କା ଥିବାବେଳେ ଏବେ ୫୦,୦୦୦ରେ ପହଞ୍ଚିଛି । ସ୍ଥଳ ବିଶେଷରେ ଏହା ବେଶି ବା କମ୍ ହୋଇଥାଏ ।

ଏପିରିକି କେତେକ ପରିବାରରେ ଝୋଲା ପ୍ରଥା ବନ୍ଦ ହେଲାଣି । ବିଶେଷକରି ଧନୀ ପରିବାରରେ ସେ କ୍ଷେତ୍ରରେ କିଛିକିଛି ଯୌତୁକ ପ୍ରଥା ମଧ୍ୟ ଦେଖା ଦେଲାଣି । ତେବେ ବୃହତ୍ତର ଆଦିବାସୀ ସମାଜରେ ଏବେ ମଧ୍ୟ 'ବାରକନ୍ଦା' ତଥା 'ଝୋଲା' ଦେଇ ନଥିବା ଲୋକେ ନିନ୍ଦିତ ହୋଇଥାନ୍ତି ।

୫୬. ବାରଦାଉନି - *ଦେ.ବି. :* ଆଦିବାସୀ ମାନଙ୍କ ଦ୍ୱାରା ଉପାସିତା ଦେବୀ ବିଶେଷ । ବୈପାରୀଗୁଡ଼ା ବ୍ଲକ୍‌ର ଗିର୍ଲିଗୁଡ଼ା ଗାଁର ଭୂମେୟା ମାନଙ୍କ ହୁଣ୍ଡିର ଦେବୀ । ଏଇ ଦେବୀଙ୍କ ସଂପର୍କରେ ବୋରିଗୁମ୍ମା ଅଞ୍ଚଳର ଚଇତ ପରବ ଗୀତରେ ଗୀତକୁଡ଼ିଆ ମାନେ ଗାଆନ୍ତି :

ବରିଗୁମିଆନୀ ଭଣ୍ଡାର ଗରନୀ
ଦୁଆର ବାରଦାଉନି
ଦିଅନି କଡ଼୍‌କେ ଛିଡ଼୍‌ଲା ପାନି, ସାଆହୁଆ ଗୋଷାମଣି ।

୫୭. ବାରମାଲା - *ଦେ.ବି. :* ପରଜା ସମାଜରେ ସ୍ଥିରୀକୃତ ବିବାହରେ ବରପକ୍ଷରୁ ନିଆଯାଇଥିବା ବାରହାଣ୍ଡି ଲନ୍ଦା ବା ମଦକୁ 'ବାରମାଲା' କୁହାଯାଏ । ଏହା ବର ତରଫରୁ ଝିଅପକ୍ଷର ଗାଁକୁ ବାରକନ୍ଦାରୁ ଅଂଶବିଶେଷ ରୂପେ ଦିଆଯାଇଥାଏ ।

୫୮. ବାରାଜାଂଡି ଖେଲ୍ - *ଦେ.ବି. :* ଗୋଟିଏ ପ୍ରକାର ଖେଳ ବିଶେଷ । ଯାହା ଆଦିବାସୀ ସମାଜରେ ପ୍ରଚଳିତ । ଇଂ.- A type of Outdoor game. ସମାନ ସଂଖ୍ୟକ ଖେଳାଳୀ ଉଭୟ ପକ୍ଷରେ ଥାନ୍ତି । ଖେଳଟି ଦୁଇଧାଡ଼ି ବର୍ଗକ୍ଷେତ୍ରରେ ଅନୁଷ୍ଠିତ ହୋଇଥାଏ । ପ୍ରଥମ ଧାଡ଼ିରେ ଖେଳାଳୀ ଜଣକ ଆଡ଼ପାର୍ଶ୍ୱ ଓ ଦୁଇଧାଡ଼ିର ମଧ୍ୟରେଖାରେ ଖେଳିଥାଏ । ବିପକ୍ଷ ଦଳକୁ ଆଡ଼ରେଖା ଓ ମଧ୍ୟରେଖାକୁ ଅତିକ୍ରମ କରିବାକୁ ଅନ୍ୟପକ୍ଷର ଖେଳାଳିମାନେ ଦିଅନ୍ତି ନାହିଁ । ଅତିକ୍ରମ କରିବାକୁ ଚେଷ୍ଟା କରୁକରୁ ଯଦି ରେଖାଗୁଡ଼ିକୁ ବିପକ୍ଷ ଖେଳାଳୀ ଛୁଇଁ ଦିଅନ୍ତି, ତେବେ ସେହି ଖେଳାଳୀ ମରିଯାନ୍ତି ବା ଆଉଟ୍ ହୁଅନ୍ତି । ଜଣେ ଖେଳାଳୀ ରେଖା ଗୁଡ଼ିକରେ ଥିବା କୌଣସି ଖେଳାଳୀର ଛୁଆଁ ନ ପାଇଲେ ବାହାରକୁ ଚାଲି ଆସନ୍ତି । ସେମିତି ଲୁଣ ଧରି ପ୍ରତି ବର୍ଗକ୍ଷେତ୍ରରେ କାହାରି ଛୁଆଁ ନପାଇ, ଲୁଣ ଲଗାଇ ବାହାରକୁ ବାହାରି ଆସି ପାରିଲେ ସେ ଓ ତାଙ୍କ ଦଳ ବିଜୟୀ ଘୋଷିତ ହୁଅନ୍ତ । ଦୁଇ ବର୍ଗକ୍ଷେତ୍ର ଧାଡ଼ିର ମଧ୍ୟରେ ଖେଳୁଥିବା ଖେଳାଳୀଙ୍କୁ

'ଶାରଣା' କୁହାଯାଏ । ବାରାଜାଂଡ଼ି ଖେଳଟି ଦିନବେଳେ ପୁରୁଷ ପିଲାମାନେ ଖେଳିଥାନ୍ତି । ଏହା ଅଣ ଆଦିବାସୀ ଓଡ଼ିଶା ଅଞ୍ଚଳର ବାଗୁଡ଼ି ଖେଳର ଅନୁରୂପ ।

୫୯. **ବାରିକ** - *ଦେ.ବି. :* ଗ୍ରାମମୁଖ୍ୟଙ୍କ ସହାୟକ । ଇଂ- A traditional tribal post in every village. ଆଦିବାସୀ ଗ୍ରାମ ଶାସନର ବ୍ୟବସ୍ଥାରେ ମୁଖ୍ୟ ନାୟକଙ୍କୁ ସହାୟତା କରିବାପାଇଁ ଚାଲାନ ଓ ବାରିକ ରହିଥାନ୍ତି । ନାୟକଙ୍କ ଦ୍ୱାରା ଆହୂତ ବୈଠକକୁ ଚାଲାନ ଘରଘର ବୁଲି ଡାକିଥାନ୍ତି ଓ ବାରିକ ସେମାନଙ୍କ ଆସନର ବ୍ୟବସ୍ଥା କରିଥାନ୍ତି ଏବଂ ବୋଲହାକ କରିଥାନ୍ତି । ରାଜା ବା ନାୟକଙ୍କ ତରଫରୁ ଏହି ବାରିକ ମାନଙ୍କ ପାଇଁ ନିଷ୍କର ଜମିର ବ୍ୟବସ୍ଥା କରାଯାଇଥାଏ । କେତେକ ଜାଗାରେ ଦଳିତମାନେ ଏହି କାର୍ଯ୍ୟ ତୁଲାନ୍ତି । ସେ ସ୍ଥାନରେ ସେମାନଙ୍କୁ 'ଗାଣ୍ଡା' କୁହାଯାଏ । ବିଭିନ୍ନ ଗାଁରେ ପରବ, ମୃତାହ, ସଭାସମିତି ଇତ୍ୟାଦି ଖବର ସରବରାହ କାର୍ଯ୍ୟ ମଧ୍ୟ ବାରିକମାନେ କରିଥାନ୍ତି ।

୬୦. **ବାରୁନଦୀ ବା ଜୀରାମ୍ ନଦୀ** - *ଦେ.ବି. :* ଗୋଟିଏ ନଦୀର ନାମ ବିଶେଷ । ତଙ୍ଗପାଲି ଦେଇ ବହି ଆସିଥିବା ଏହି ଛୋଟ ଗିରିନଦୀ ଛତିଶଗଡ଼ ଭିତରେ 'ଚେକା ବକା' ସାଂଗରେ ଗୋଟିଏ ଜାଗାରେ ସାବେରୀ ନଦୀ ସହ ମିଶିଛି । ହଲ୍‌ବି ଭାଷାରେ ବାରୁ ଅର୍ଥ ବାଲି । ଏନଦୀ ବର୍ଷଯାକ ପ୍ରାୟ ବାଲୁକାମୟ ଥାଏ । ବର୍ଷାଦିନେ ପ୍ରବଳ ବେଗରେ ବହିଚାଲେ । ଏହାର ଉପର ମୁଣ୍ଡରେ ନାମ ହେଉଛି ଜିରାମ୍ । ଜିରାମ୍ ଏକ ପ୍ରକାରର ଖଟାଶାଗ । ଏହି ନଦୀରେ ପ୍ରଚୁର ଜୀରାମ୍ ଖଟାଶାଗ ହେଉଥିବାରୁ ସେଠାରେ ଏହାକୁ 'ଜିରାମ୍' ନଦୀ କହନ୍ତି ।

୬୧. **ବାରୁପୂଜା** - *ଦେ.ବି. :* ଆଶ୍ୱିନ ମାସରେ ଗଣ୍ଡ ଅବିବାହିତ ଝିଅମାନଙ୍କ ଦ୍ୱାରା ଅନୁଷ୍ଠିତ ପୂଜା । ଆଶ୍ୱିନ ମାସରେ ଗଣ୍ଡ ସଂପ୍ରଦାୟରେ ଅବିବାହିତ ଝିଅମାନେ ନଅଦିନ ଧରି ବାରୁପୂଜା କରିଥାନ୍ତି । ପ୍ରଥମେ ଏମାନେ ଗାଁର ଗୋଟିଏ ଜାଗାରେ ଜମାହୁଅନ୍ତି । ସରଗିପତ୍ର ଦନା (ଶାଳପତ୍ର ତିଆରି ଠୋଲା)ରେ ମାଟି ପୁରାଇ ସେଥିରେ ବିଭିନ୍ନ ଶସ୍ୟ ବିହନ ପୋତି ଗଜା କରନ୍ତି । ନଅଦିନ ଧରି ସକାଳୁ ଗାଧୋଇ ସାରି ଝିଅମାନେ ଉକ୍ତ ଶାଳଦନାକୁ ପୂଜା କରନ୍ତି । ଏହି ପୂଜା ଆଶ୍ୱିନ ଶୁକ୍ଳ ଦ୍ୱିତୀୟାଠାରୁ ଦଶମୀଯାଏ ଅନୁଷ୍ଠିତ ହୁଏ । ପୂଜାର ଶେଷଦିନ ଦଶହରା ପଡ଼େ । ସେଦିନ ସମସ୍ତେ

ସକାଳୁ ଶାଳଦନାକୁ ନଇ କିମ୍ବା ପୋଖରୀ ନିକଟକୁ ନେଇ ଯାଆନ୍ତି । ସେଠି ପୂଜା ଅର୍ଚ୍ଚନା କରି ଉକ୍ତ ଗଜା ହୋଇଥିବା ଧାନ, ମକା, ମୁଗ, ବିରି, ମାଣ୍ଡିଆ ଗଜା ଓ ଚାରାକୁ ମୁଣ୍ଡରେ ଖୋସି, ପାରମ୍ପରିକ ବେଶ ପୋଷାକ ପିନ୍ଧି ଦୂର ସ୍ଥାନକୁ ଦଶହରା ପର୍ବ ଦେଖିବାକୁ ଯାଆନ୍ତି । ଓଡ଼ିଶାରେ ଅଣଆଦିବାସୀ କୁମାରୀମାନେ ପାଳୁଥିବା ଜହ୍ନି ଓଷାସହ ଏହା ତୁଳନୀୟ ।

୬୨. ବାଲାଏମାତାନି - ଦେ.ବି. : ଏକ ଖେଳ ବିଶେଷ । ଆଦିବାସୀ କିଶୋରୀମାନଙ୍କର ଏକ ଖେଳର ନାମ । ଅବିଭକ୍ତ କୋରାପୁଟ ଜିଲ୍ଲାର ଆଦିବାସୀ ଭତରା, ପରଜା, ଭୂମେୟା ଅମାନାତ୍ୟ, ପେଣ୍ଟିଆ ପ୍ରଭୃତି ସଂପ୍ରଦାୟଙ୍କ କିଶୋରୀମାନଙ୍କର ଏକ ଲୁପ୍ତ ପ୍ରାୟ ଖେଳ । ଏହି ଖେଳରେ ଆଦିବାସୀ କିଶୋରୀଙ୍କ ମାନସ୍ତାତ୍ତ୍ୱିକ ଓ ଧାର୍ମିକ ବିଶ୍ୱାସ ନିହିତ । ଜଣେ ଝିଅକୁ ମଧ୍ୟଭାଗରେ ବସାଇ ତା'ର ଚାରିପଟେ ଆଠ/ଦଶ ଜଣ ଝିଅ ବିଭିନ୍ନ ଫୁଲ ନାମ ଧରି ଏପରି ତନ୍ମୟ ହୋଇ ସ୍ୱର ଲମ୍ବାଇ ଗୀତ ଗାନ କରିଥାନ୍ତି ଯେ, ମଧ୍ୟ ଭାଗରେ ବସିଥିବା ଝିଅଟି କାଳିସୀ ଲାଗିବା ଭଳି ମୁଣ୍ଡ ହଲାଇ ମତୁଆଲା ହୋଇଯାଏ । ଉକ୍ତ ଗୀତଟିର କିଛି ପଂକ୍ତି -

"ସେମିଫୁଲ ହୋ ବଡ଼େରାଗ
ସେଇ ରାଗ ହୋ ବାଲାଏକେ ଲାଗ !
ଲାଗ ଲାଗରେ ବାଲାଏ ଲାଗନା,
ଲାଗ ଲାଗରେ ବାଲାଏ ଲାଗ ।" ଇତ୍ୟାଦି

ରାମାଇ ଓ ଶାମାଇ ଦୁଇ ଲୋକ ଦେବୀ ବାଲାଏ ରାଣୀ (ବାଲାଏ ଲାଗିଥିବା ଝିଅ)ର ଦେହରେ ପ୍ରବେଶ କରିଥାନ୍ତି ବୋଲି ଆଦିବାସୀ କିଶୋରୀମାନଙ୍କ ଦୃଢ଼ ବିଶ୍ୱାସ । ଏହି ସମୟରେ ହଜିଯାଇଥିବା ଦ୍ରବ୍ୟ ସଂପର୍କରେ ଝିଅଟିକୁ ପଚାରିଲେ ସେ ସଠିକ୍ ଉତ୍ତର ଦେଇଥାଏ । କିଛି ସମୟ ଝିଅଟିକୁ ବାଲାଏ ଲାଗିବା ପରେ ଝିଅଟିର ପୂର୍ବାବସ୍ଥା ଫେରି ଆସିବା ପାଇଁ ଝିଅମାନେ ଭତରାନି ଗୀତ ଗାଇଥାନ୍ତି । ଯଥା:- "ଉତ୍ତର ଉତ୍ତର ବାଲାଏ ରାନୀ ଉତ୍ତର ଉତ୍ତର, ମୋ ବାଲାଏ ରାନୀ ପାନି ଆନିବାକେ ଯାଇସି, ମୋ ବାଲାଏ ରାନୀ ରାନ୍ଧିବାକେ ଯାଇସି ଉତ୍ତର ଉତ୍ତର" ..... ଇତ୍ୟାଦି । 'ବାଇଲି' ଅର୍ଥ ଝିଅ । ଆଦିବାସୀ ସମାଜରେ କୁମାରୀ ଝିଅମାନଙ୍କୁ ଦେବୀର ସମ୍ମାନ ମିଳୁଥିଲା । ସେଇଥିରୁ ଏହି ବାଲାଏ ମାତାନି ଖେଳର ପ୍ରଚଳନ ହୋଇଥିବା ଅନୁମାନ

କରାଯାଏ । ଏହା ଏଭଳି ଏକ ଖେଳ ଯେଉଁଥିରେ ଦେବୀ ପରଂପରା ଓ କିଶୋରୀମାନଙ୍କର ସାଧାରଣ କ୍ରୀଡ଼ାର ସମନ୍ୱୟ ଘଟିଛି ।

୬୩. **ବାଳୀ ପାହାଡ଼ / ବାରି ପର୍ବତ -** *ଦେ.ବି. :* ମାଲକାନଗିରି ଜିଲ୍ଲାର ଏକ ପାହାଡ଼ର ନାମ ବିଶେଷ । ଏହା ଅଣ୍ଡରାହାଲ ଗ୍ରାମ ପଞ୍ଚାୟତରେ ରହିଛି । ଏହି ପାହାଡ଼ର ଉପର ଅଂଶ ସମତଳ । ପାହାଡ଼ର ଦୁଇ ପାଖରେ ବୃକ୍ଷଲତା ଥିବାବେଳେ ଉପରିଭାଗ ସଂପୂର୍ଣ୍ଣ ବୃକ୍ଷଶୂନ୍ୟ । ବଣ୍ଡା ଲୋକେ ବିଶ୍ୱାସ କରନ୍ତି ଯେ ଏଇ ପାହାଡ଼ ଉପରେ ବାଳୀସୁଗ୍ରୀବ ଯୁଦ୍ଧ କରି ଏହାକୁ ବୃକ୍ଷଶୂନ୍ୟ ଓ ସମତଳ କରି ଦେଇଥିଲେ ।

୬୪. **ବାଲିଫୁଲ -** *ଦେ.ବି. :* ସଂଗାତ, ମୈତ୍ର । (ଦ୍ରଷ୍ଟବ୍ୟ : ବାଲିଯାତ୍ରା) ଏକ ସଂପର୍କ । ଇଂ.- A relation that is made beyond family circle.

ବାଲିଯାତ୍ରା ଅବସରରେ ବାଲିଦେବତା ବିସର୍ଜନ ଦିନ ବାଲି କୁଡ଼ିଆରେ ଯେଉଁ ଶସ୍ୟ ବୀଜ ଗୁଡ଼ିକର ଚାରା ଉତୁରା ଯାଇଥାଏ, ସେହି ଚାରା ଗୁରୁମାଇ ଝିଅ ପୁଅମାନଙ୍କୁ ବିତରଣ କରିଥାନ୍ତି । ଏହିସବୁ ଚାରାକୁ ବାଲିଫୁଲ କୁହାଯାଏ । ପୁଅଝିଅମାନେ ଏହି ବାଲିଫୁଲକୁ ନିଜ ପସନ୍ଦର ପୁଅ ଝିଅର କାନରେ ଖୋସି ସଂଗାତ ବସିଥାନ୍ତି । ଏହି ସଂଗାତମାନେ ପରବର୍ତ୍ତୀ ସମୟରେ ପରସ୍ପରକୁ ବାଲିଫୁଲ ବୋଲି ସମ୍ବୋଧନ କରିଥାନ୍ତି । ଚଇତପରବ ଲୋକଗୀତରେ 'ବାଲିଫୁଲ' ଶବ୍ଦର ପ୍ରଚୁର ବ୍ୟବହାର ଦେଖାଯାଏ । ଏହି ବାଲିଫୁଲ ତଥା ବାଲିଫୁଲ ସଂପର୍କକୁ ସମସ୍ତେ ଅତି ପବିତ୍ର ବୋଲି ମନେ କରିଥାନ୍ତି । ଗୀତରେ ଏହାର ବ୍ୟବହାର ପୁଷ୍କଳ ।

ଉଦାହରଣ : "ବାଲିଫୁଲ ମୋର ସେବତୀ ସୋରା

ତଳକୁ ମୁକୁତା ଉପରେ ଝରା

ବାଇଗନି ମଞ୍ଜିଆ ନେତ

ନକାଇ ନପିଇ ଏତେ ଗମାତ,

ଚାଖିଲେ ହେତା କେମତ !

ଚୁମିଯା ଚୁମିଯା ଚନ୍ଦନ ବନେ

ବାସକେ ଭମର ଛନେ ।"

ଅନେକ ସମୟରେ ଏହି ବାଲିଫୁଲ ବା ଅଙ୍କୁରିତ ବୀଜ ଓ ଚାରାକୁ ମହାପ୍ରସାଦ ଛଡ଼ାଛଡ଼ିଭଳି ଗୁରୁମାଈର ଚାଂଗୁଡ଼ିରୁ ଆଦିବାସୀ ଧାଙ୍ଗଡ଼ା ଧାଙ୍ଗଡ଼ୀ ଓ ଅନ୍ୟମାନେ ଝାମ୍ପି ନିଅନ୍ତି । ପ୍ରଥମେ ପଟୁଆରରେ ଗୁରୁମାଈ ଏହି ବାଲିବୀଜ ଚାଂଗୁଡ଼ିକୁ ନେଇ ବାଲିଭଟ୍ଟାରେ ଥିବା ଭୀମାଦେବତାଙ୍କ ପାଖକୁ ଯାଇଥାଏ । ସେଠାରେ ପହଞ୍ଚିବା ପରେ ହିଁ ଏହି ଛଡ଼ାଛଡ଼ି ଉତ୍ସବ ଅନୁଷ୍ଠିତ ହୋଇଥାଏ । ଗୁରୁମାଈ ମଧ୍ୟ ଅନେକଙ୍କୁ ଏହା ବାଣ୍ଟିଥାଏ । ଏହାକୁ ଦିଆନିଆ ହୋଇ ଲୋକେ ବାଲିଫୁଲ ବସନ୍ତି । ଏହି ଉତ୍ସବପରେ ରାତିସାରା ବାଲିଯାତରାର ନାଟଗୀତ ଅନୁଷ୍ଠିତ ହୋଇଥାଏ ।

୬୫. ବାଲିମେଳା - *ଦେ.ବି.* : ମାଲକାନଗିରି ଜିଲ୍ଲାର ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ବିଶେଷ । ପୌରାଣିକ୍ ମିଥ୍ ଅନୁସାରେ ଏହା ହେଉଛି ବାଳୀ ମରିଥିବା ସ୍ଥାନ । ଅତୀତରେ ଏହି ଅଞ୍ଚଳରେ ବାଳୀ ଓ ସୁଗ୍ରୀବ ନାମରେ ଦୁଇଟି ବାନର ଗୋଷ୍ଠୀର ମୁଖ୍ୟ ବସବାସ କରୁଥିଲେ । ବାଳୀ ସୁଗ୍ରୀବ ଠାରୁ ପ୍ରବଳ ପରାକ୍ରମ ଥିଲେ । ଏ ଅଞ୍ଚଳ ସେହି ସମୟରେ ଶାଳ ବନରେ ପରିପୂର୍ଣ୍ଣ ଥିଲା । ସାତଟି ଶାଳ ଗଛର ମିଳିତ ସମାହାର ପରି ବପୁବନ୍ତ ଥିଲା ବାନର ରାଜା ବାଳୀ । ସେ ବଳ ପୂର୍ବକ ସୁଗ୍ରୀବର ସ୍ତ୍ରୀ ତାରାଙ୍କୁ ହରଣ କରିନେଇ ଉପଭୋଗ କରୁଥିଲା, ଓ ସୁଗ୍ରୀବକୁ ତଥା ତା ଗୋଷ୍ଠୀର ବାନରମାନଙ୍କୁ ଦଣ୍ଡ ଦେଇ ଭୟଭୀତ କରି ରଖିଥିଲା । ବନବାସ ସମୟରେ ଶ୍ରୀରାମଚନ୍ଦ୍ରଙ୍କ ସହିତ ସୁଗ୍ରୀବର ଭେଟ ହେବାରୁ ସେ ରାମଙ୍କ ଆଗରେ ନିଜର ଦୁଃଖ ଜଣାଇ ଥିଲେ ଓ ରାମଚନ୍ଦ୍ର ମଧ୍ୟ ସୀତାଙ୍କୁ ତାଙ୍କୁ ଖୋଜୁଥିଲେ । ଉଭୟେ ସମ ଦୁଃଖରେ ଦୁଃଖି ହୋଇ ମିତ୍ର ବସିଲେ । ବାଳୀକୁ ମାରି ତା ଠାରୁ ନିଜ ସ୍ତ୍ରୀକୁ ଉଦ୍ଧାର କଲାପରେ ସୁଗ୍ରୀବ ସୀତାଙ୍କୁ ଖୋଜିବାରେ ରାମଚନ୍ଦ୍ରଙ୍କୁ ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଲେ । ରାମ ବାଳୀକୁ ମାରି ସୁଗ୍ରୀବଙ୍କ ସ୍ତ୍ରୀକୁ ତା କବଳରୁ ଉଦ୍ଧାର କରିବା ସଂଗେସଂଗେ ସୁଗ୍ରୀବକୁ ରାଜା କରାଇବାର ପ୍ରତିଶ୍ରୁତି ଦେଲେ । ସୁଗ୍ରୀବର ବିଶ୍ୱାସ ହେଲାନାହିଁ । ସେ ରାମଙ୍କ ବଳ ପରୀକ୍ଷା ପାଇଁ ଗୋଟିଏ ଶରରେ ସାତଟି ଶାଳଗଛକୁ କାଟିଦେବାକୁ କହିଲେ । ରାମଚନ୍ଦ୍ର ସେପରି କଲେ । ପରେ ଯୁଦ୍ଧରେ ବାଳୀକୁ ମାରି ସୁଗ୍ରୀବକୁ ରାଜା କଲେ । ରାମଚନ୍ଦ୍ର ଏ ଅଞ୍ଚଳରେ ସପ୍ତଶାଳ ଛେଦନ କରିଥିବାରୁ, ଏ ଅଞ୍ଚଳରେ ଏବେବି ଶାଳଗଛ ନଥିବାର ପ୍ରବାଦ ରହିଛି । ବାଳୀ

ମରିବା ପରେ ବାଳିମଲା ବୋଲି ଲୋକ ମୁଖରେ ରଟନା ହୋଇ କ୍ରମେ ତାହା ବାଲିମେଳା ନାମରେ ନାମିତ ହେଲା ।

୬୬. ବାଲିଯାତରା - *ଦେ.ବି. :* ଏକ କୃଷିଭିତ୍ତିକ ପ୍ରତୀକ ପର୍ବ ।

ବାଲିଯାତ୍ରା ଅବିଭକ୍ତ କୋରାପୁଟ ଜିଲ୍ଲାର ଏକ କୃଷି ଭିତ୍ତିକ ସାର୍ବଜନୀନ ପର୍ବ । କୃଷି ଓ କୃଷକର ବିକାଶ ପାଇଁ ଏହି ପର୍ବରେ ଭୀମା ରାଜାକୁ ଉପାସନା କରାଯାଇଥାଏ । ବିଭିନ୍ନ ଗ୍ରାମର ପରମ୍ପରା ଅନୁସାରେ ଏକ, ତିନି, ପାଞ୍ଚ, ସାତ, ନଅ ବା ବାରବର୍ଷ ବ୍ୟବଧାନରେ ବାଲିଯାତ୍ରା ଅନୁଷ୍ଠିତ ହୁଏ । ଗ୍ରାମବାସୀଙ୍କ ନିର୍ମିତ ବାଲିଘରେ (କାଠ ବାଉଁଶ ନିର୍ମିତ କୁଡ଼ିଆଘର) ବାଲି ଗୁରୁମାଈ ଓ ପୂଜାରୀ ବାଲି ହାଣ୍ଡି ସ୍ଥାପନ କରିବା ଦିନଠାରୁ ବାଲିଯାତ୍ରାର ଶୁଭାରମ୍ଭ ହୋଇଥାଏ । ବିଭିନ୍ନ ଗ୍ରାମ ଅନୁସାରେ ନ'ଦିନବ୍ୟାପୀ ବା ତିନିମାସିଆ ବାଲିଯାତ୍ରା ଅନୁଷ୍ଠିତ ହେଉଥିବା ପରିଲକ୍ଷିତ ହୁଏ । ପ୍ରସ୍ତୁତ ବାଲି ଘରେ ଭୀମାଙ୍କର ଜନ୍ମ ଠାରୁ ଗୀତ ମାଧ୍ୟମରେ କ୍ରମାନ୍ୱୟରେ ବାଲିଯାତ୍ରା କରିବା ପର୍ଯ୍ୟନ୍ତ ବିବରଣୀ ବୋଲାଯାଇଥାଏ । ଦିଶାରୀ ଓ ଗୁରୁମାଈଙ୍କ ନିର୍ଦ୍ଦେଶରେ ବାଲି ରମ୍ପାଯାଏ । ରମ୍ପାଯାଇଥିବା ବାଲି ଚାଂଗୁଡ଼ି ଗୁଡ଼ିକରେ ରଖି ସବୁ ରଇତଙ୍କ ଘରୁ ସଂଗୃହୀତ ଧାନ, ବିରି, ମୁଗ, ମକା ପ୍ରଭୃତି ବିହନ ବୁଣାଯାଏ । ବିହନ ବୁଣିବାର ନ'ଦିନ ମଧ୍ୟରେ ବାଲିଯାତ୍ରା ଉଦ୍‌ଯାପିତ ହୋଇଥାଏ । ବାଲିଯାତ୍ରା ଉଦ୍‌ଯାପନ ହେବାଦିନ ଭୀମାମାନଙ୍କର ନୂତନ କଳେବର ମଧ୍ୟ ସ୍ଥାପନ କରାଯାଇଥାଏ । ବାଲି ଗୃହଟି ଅବିଭକ୍ତ କୋରାପୁଟର ଏକ ସର୍ବଜନୀନ ଗୋଷ୍ଠୀ ଗୃହ । ଗୀତ, ନାଚ ବାଲି ଘୁରୁରା ବାଦନ ଓ ଧର୍ମର ବିକାଶ ବାଲି ଘରେ ସଂଗଠିତ ହୋଇଥାଏ । ବାଲିଯାତ୍ରାଟି କୋରାପୁଟ ଆଦିବାସୀର ନିଜସ୍ୱ ଧର୍ମୀୟ ପରମ୍ପରାର ପ୍ରତୀକ । ପରବର୍ତ୍ତୀ ସମୟରେ ଏହା ଦ୍ରାବିଡ଼ମାନଙ୍କ ମଧ୍ୟରେ ସଂପ୍ରସାରିତ ହୋଇଥିବା ଜଣାଯାଏ । ବିଭିନ୍ନ ସ୍ଥାନରେ ଏହି ବାଲିଯାତରା ବୈଶାଖ ମାସଠାରୁ ଭାଦ୍ରବମାସ ମଧ୍ୟରେ ଭିନ୍ନଭିନ୍ନ ସମୟରେ ହୋଇଥାଏ । ଭାଦ୍ରବ ମାସର ବାଲିଯାତରାକୁ 'ଭୋଦ ବାଲି' କୁହାଯାଏ । ବୀଜରେ ଅଙ୍କୁରଦ୍‌ଗମ୍ ଅନୁସାରେ ସେ ବର୍ଷ ଫସଲର ଭବିଷ୍ୟତକୁ ମଧ୍ୟ କଳନା କରାଯାଇଥାଏ ।

୬୭. ବାଲି ସାଗର - *ଦେ.ବି. :* ଏକ ବଡ଼ ପୁଷ୍କରିଣୀ ବିଶେଷ ।

ଏହା ମାଲକାନଗିରି ସହର ନିକଟରେ ଥିବା ଏକ ବିରାଟ ଜଳାଶୟ । କୁହାଯାଏ ଅତୀତରେ ରାମାୟଣ ଯୁଗରେ ଏହି ଅଞ୍ଚଳରେ ରାଜୁତି କରୁଥିବା ବାନରବଂଶୀ ରାଜା ବାଳୀ ଏହି ଜଳାଶୟଟି ଖୋଳାଇ ଏଥିରେ ସ୍ନାନ କରୁଥିବାରୁ ଏହାର ନାମ ତାଙ୍କ ନାମ ଅନୁସାରେ ବାଳିସାଗର ବା କାଳକ୍ରମେ ଅପଭ୍ରଂଶ ହୋଇ ବାଲି ସାଗରରେ ପରିଣତ ହୋଇଛି ।

୬୮. ବାଲ୍ମିକୀ ଆଶ୍ରମ - *ଦେ.ବି. :* ପୌରାଣିକ କିମ୍ବଦନ୍ତୀ ଜଡ଼ିତ ଆଶ୍ରମ ବିଶେଷ । କଥିତ ଅଛି ଯେ ତ୍ରେତୟା ଯୁଗରେ ରାମାୟଣର ରଚୟିତା ବାଲ୍ମିକୀ ଋଷି ତମସା ନଦୀ କୂଳରେ କ୍ରୌଞ୍ଚପକ୍ଷୀ ଯୁଗଳଙ୍କ ମଧ୍ୟରୁ ଗୋଟିଏକୁ ଶବରଟିଏ ଶର ମାରି ଆହତ କରିବାରୁ ଋଷିଙ୍କ ହୃଦୟ ବିଗଳିତ ହୋଇ ତାଙ୍କ କଣ୍ଠରୁ ବାହାରିଥିବା ଶୋକ ଜନିତ ଅଭିଶାପ ଶ୍ଳୋକ ରୂପ ନେଇଥିଲା । ସେ ରଚନା କରିଥିଲେ ଆଦିକାବ୍ୟ ରାମାୟଣ ।

ଏହି ବାଲ୍ମିକୀ ଆଶ୍ରମ କୋରାପୁଟ ଜିଲ୍ଲାର ରାଜସ୍ୱ ମଣ୍ଡଳରେ ଥିବା କପାଟ ର୍ପବତ ପାଦଦେଶରେ ଅବସ୍ଥିତ । ଆନ୍ଧ୍ର ଓଡ଼ିଶାର ସୀମାରୂପେ ବୋହି ଯାଉଥିବା ମାଛକୁଣ୍ଡ ନଦୀକୂଳରେ ରହିଛି ଏଇ ପର୍ବତ । ଏହି ପର୍ବତରେ ଥିବା ଗୁମ୍ଫାକୁ କୁହାଯାଏ ରାଜଗୁମ୍ଫା । ଯାହା ୧୫୦ମିଟର ଦୀର୍ଘ ଏବଂ ଏକକାଳୀନ ୨୦୦୦ ଲୋକଙ୍କୁ ଧାରଣ କରିପାରେ । ସେମିଳିଗୁଡ଼ା ଆରକୁରୋଡ଼ରେ ଅବସ୍ଥିତ ପାଡୁଆଠାରୁ ଏହା ୨୦କି.ମି. ଦୂର । ମନୋରମ ପ୍ରାକୃତିକ ଦୃଶ୍ୟରେ ଏଇ ବାଲ୍ମିକୀ ଆଶ୍ରମ ଦର୍ଶକମାନଙ୍କର ମନ ମୋହିଥାଏ ।

୬୯. ବାସ୍କି : ବାସଙ୍ଗ - *ଦେ.ବି. :* ଔଷଧି ବୃକ୍ଷ ବିଶେଷ । ଏହାର ପତ୍ରକୁ ଥଣ୍ଡା, ସର୍ଦ୍ଦି, ଶ୍ୱାସପାଇଁ ବ୍ୟବହାର କରାଯାଏ, ରୋଗ ପ୍ରତିରୋଧ ଶକ୍ତି ବୃଦ୍ଧିପାଇଁ ନବଜାତ ଶିଶୁକୁ ଗାଧୋଇବା ବେଳେ ଯେଉଁ ଉଷୁମ ପାଣି କରାଯାଏ, ତହିଁରେ ବାସକି ପତ୍ର ପକାଯାଏ ।

୭୦. ବାଂଶୀ / ବଂଶୀ - *ଦେ.ବି. :* ବଂଶୀ । ଇଂ.- Flute

ବଂଶୀ ଏକ ସୁଷିର ବାଦ୍ୟ । ବାଉଁଶ ନଳୀରେ ତିଆରି ସୁଲଳିତ ସ୍ୱର ସୃଷ୍ଟି କରୁଥିବା ବାଦ୍ୟଯନ୍ତ୍ର । ତିନି ପ୍ରକାରର ବଂଶୀ ଯଥା ଲମ୍ୱ ବଂଶୀ, ଆଡ଼ବଂଶୀ ଓ

ମଧ୍ୟବଂଶୀ । କୋରାପୁଟରେ ଆଦିବାସୀମାନଙ୍କ ମଧ୍ୟରେ ପ୍ରଚଳିତ । କନ୍ଧମାନଙ୍କ ଲମ୍ୱବଂଶୀ 'ସଗୁଡ଼ି' ଏବଂ ସଉରାମାନଙ୍କ ବଂଶୀ 'ତରୁତୁପେ' ଦୁରୁଆମାନଙ୍କ ଆଡ଼ବଂଶୀ 'ବେରଟ୍ ନାମରେ ପରିଚିତ । ମଧ୍ୟବଂଶୀର ବ୍ୟବହାର ଲୋପପାଇ ଆସିଲାଣି । ଏହାର ମଝି ଭାଗରେ ଫୁଙ୍କିବା ଛିଦ୍ର ଥାଏ ।

୭୧. ବିଜ୍‌ପୁଟନି - ଦେ.ବି. : ବିହନ ଯାତ୍‌ରା : ଜମିରେ ଧାନ ବୁଣିବା କ୍ରିୟା । ଗଣ୍ଡ ଆଦିବାସୀ ଗୋଷ୍ଠୀ ଓ ଅନ୍ୟ ଆଦିବାସୀ ଜନଜାତି ବୈଶାଖ ମାସରେ ବିଜ୍ ପୁଟ୍‌ନି ବା ବିହନ ଯାତ୍ରା ପର୍ବ ପାଳନ କରିଥାନ୍ତି । ଗାଁର ପ୍ରତି ଘରୁ ବିହନ ସଂଗ୍ରହ କରାଯାଇଥାଏ । ଗଣ୍ଡମାନେ ବିହନ ଯାତ୍ରାକୁ ବିଡୁଦୁଲ୍ ଯାତ୍ରା ବୋଲି ମଧ୍ୟ କହିଥାନ୍ତି । ସ୍ତ୍ରୀ ଲୋକମାନେ ଏହିଯାତ୍ରା ପାଳିବା ନିଷେଧ । ମାସିକ ଋତୁ ସ୍ନାନ କରିଥିବା ସ୍ତ୍ରୀର ପତି ମଧ୍ୟ ବିହନ ଯାତ୍ରା ସ୍ଥଳକୁ ଯିବା ବାରଣ କରାଯାଇଥାଏ । ଏହି ଯାତ୍ରା ଦିନ ପୂଜାରୀ ପ୍ରତିଘରୁ ବିହନ ସଂଗ୍ରହ କରି ସେଗୁଡ଼ିକୁ ମିଶାଇ ବର୍ଷାର ଦେବତା (ବିମା ଦେବତା) ଶସ୍ୟର ଦେବୀ (ଗାଦି ମାଇ / ମହାଲକ୍ଷ୍ମୀ / ଅନ୍ନପୂର୍ଣ୍ଣା)ଙ୍କୁ ପ୍ରାର୍ଥନା କରେ - 'ହଡ଼ା ମହାପ୍ରୁ ! ପୀର ଆଚା ୱାଇ, ଓଁକିନି ଆକା ୱାଇଁ (ହେ - ମହାପ୍ରଭୁ ଦେଖ, ବର୍ଷା ଭଲ ହେଉ, ଧାନ ଭଲ ହେଉ) ଏହି ବିହନପୁଡ଼ା କରି ସମସ୍ତ ରୟତ ମାନଙ୍କୁ ଦେଲା ପରେ ସେମାନେ ଏହି ପବିତ୍ର ବିହନକୁ ଘରେଥିବା ବିହନରେ ମିଶାଇ ବୈଶାଖ ଅକ୍ଷୟ ତୃତୀୟା ଦିନ ଜମିକୁ ଯାଇ ପୂଜା ଅର୍ଚ୍ଚନା କରି ବିହନ ବୁଣନ୍ତି । ଏହାକୁ 'ବିଜ୍‌ପୁଟନି' କୁହାଯାଏ ।

୭୨. ବିଜକୁଟୁଣୀ - ଦେ.ବି. : ବିହନ ବା ମଞ୍ଜି ବୁଣିବା କାମ । ଏହି କ୍ରିୟା କାର୍ତ୍ତିକ ମାସରେ ହୁଏ । ଗାଁ ମୁଣ୍ଡରେ କୌଣସି ଗଛମୂଳେ ଗୋଲଗୋଲ ପଥର ପାଞ୍ଚ, ସାତ, ନଅ ଏଭଳି କୁଟୁଣି ଗାତରେ ପୋତା ଯାଇଥାଏ । ପାହାନ୍ତି ପହରରୁ ଗୃହକର୍ତ୍ତା ବିହନ ଧାନ ଧରି ସଫାଲୁଗା ପିନ୍ଧି ଉକ୍ତସ୍ଥାନକୁ ଯାଏ । ଆଗରୁ ଦିଶାରୀ ପୂଜାରୀ ସବୁ ଯାଇ ଉକ୍ତ ପଥର ଗୁଡ଼ିକୁ ହଳଦୀ ପାଣିରେ ଗାଧୋଇ ତାଙ୍କୁ ପୂଜାପାଠି କରନ୍ତି । ସେମାନଙ୍କ ବିଶ୍ୱାସ ଯେ, ଏହି ପଥର ଗୁଡ଼ିକ ବଢ଼େ ଓ କମେ । ବଢ଼ିଲେ ଫସଲ ବହୁତ ହୁଏ ଏବଂ କମିଲେ ଫସଲ ନଷ୍ଟ ହୁଏ । ସେଠି ବିହନ ପୂଜା କରି ଗୃହକର୍ତ୍ତାମାନେ ସକାଳୁ ଖାଲି ହାତରେ ଘରକୁ ଫେରନ୍ତି । ପତ୍ର ପୁଡ଼ିଆରେ ପୂଜା ହୋଇଥିବା ବିହନ ଗାଈ ଗଉଡ଼ିଆ ସନ୍ଧ୍ୟାବେଳେ ଘରଘର ବୁଲି ବାଣ୍ଟେ । ସେଥିଲାଗି ତାକୁ କିଛି ପଇସା ଦେବାକୁ ପଡ଼େ ।

୭୩. ବିଜା - ଦେ.ବି. : ଏକ ଜଂଗଲଜାତ ବୃକ୍ଷ ବିଶେଷ । ପିଆଶାଳ ବୃକ୍ଷ । କନ୍ଧ ଆଦିବାସୀ ସଂପ୍ରଦାୟ ଏହାକୁ ଦେବତାତୂଲ୍ୟ ପୂଜା କରିଥାନ୍ତି । ଅନ୍ୟାନ୍ୟ ସଂପ୍ରଦାୟର ଆଦିବାସୀମାନେ ମଧ୍ୟ ଏହାକୁ ପୂଜା କରନ୍ତି । ଅଣଆଦିବାସୀ ସଂପ୍ରଦାୟରେ ଏହାର କାଠକୁ ଅତି ମୂଲ୍ୟବାନ ମନେ କରାଯାଏ । କାରଣ ଏଥିରେ ନିର୍ମିତ ଗୃହ ଉପକରଣ ଖୁବ୍ ଦୃଢ଼ ଓ ସୁନ୍ଦର ହୋଇଥାଏ ।

୭୪. ବିଜାପାଣ୍ଡୁ - ଦେ.ବି. : ଏକ କୋୟା ପର୍ବ ବିଶେଷ । (ଦ୍ରଷ୍ଟବ୍ୟ. ଚଇତି ପର୍ବ ।)

୭୫. ବିଡ଼ରି - ଦେ.ବି. : ଏକ ପର୍ବ ବିଶେଷ । ଲୋକପର୍ବ ।

ଏହି ଯାତ୍ରାରେ ଗଣ୍ଡମାନେ ସେମାନଙ୍କ ସୃଷ୍ଟିକର୍ତ୍ତା ଠାକୁର ଦେଓକୁ ସନ୍ତୁଷ୍ଟ କରିବା ପାଇଁ ଛେଳି ବଳି ଦେଇଥାନ୍ତି । ଭୋଜିର ଆୟୋଜନ କରାଯାଇ ଗାଁ ଲୋକଙ୍କୁ ଆପ୍ୟାୟିତ କରାଯାଇଥାଏ । ବିଡ଼ରିଯାତ୍ରାର ସମସ୍ତ କର୍ମାନୁଷ୍ଠାନ ପୂଜାରୀ (ବାଇଗା - ଛତିଶଗଡ଼) କରିଥାନ୍ତି । ଏହି ଯାତ୍ରା ମୁଣ୍ଡାମାନଙ୍କର ଚାରାରୋପଣ ପର୍ବ ସହିତ ସାମଞ୍ଜସ୍ୟ ରଖିଥାଏ । ଏହାକୁ ଅନ୍ୟାନ୍ୟ ଆଦିବାସୀ ସଂପ୍ରଦାୟରେ 'ପାଲା ରୋପା' ଯାତ୍ରା କୁହାଯାଇଥାଏ ।

୭୬. ବିତେକ୍ - ଦେ.ବି. : ଟାଖଣ୍ଡେ, ଅଛଟିକେ । ବିପରୀତାର୍ଥ ବୁତେକ୍ ବା ଅଧିକ । ସେ ଟୋକୀ ଦେକ୍‌ବାକେ ବିତେକ୍ ଡେଙ୍ଗ୍‌ସିନା ବଡ଼େ ଇଣ୍ଡାଇନ୍‌ସି । ଝିଅଟି ଦେଖିବାକୁ ଛୋଟ ସିନା, ବଡ଼ ଚଞ୍ଚଳ ଚାଲିଛି ।

ଗୀତରେ ବ୍ୟବହାର :

"ଇଡ଼ି ଡେଙ୍ଗଁ ଗଲାବେଙ୍ଗ

ଆତେକ୍ ମାଇଜୀ, ବିତେକ୍ ଡେଙ୍ଗ ।

କଷାକେ ଟେକ୍‌ନା ଡାଙ୍ଗ୍ ।"

(ସାନ ସ୍ତ୍ରୀର ଲମ୍ବା ଖୋଷା ଯେ ଡାଙ୍ଗ ଲଗେଇ ଟେକିବା ପାଇଁ ପଡୁଛି) ।

୭୭. ବିଦ୍‌ନା - ଦେ.ବି. : ନିହଣ ।

ବିଦ୍‌ନା ଓ ମୁଟ୍‌ଲା ନେଇ ଆଦିବାସୀ କାଠକାମ କରେ । ପୁଣି 'ମୁଟ୍‌ରା'/ ମୁଟଲା ସଂଗେ ବା ସାହାଯ୍ୟରେ ପଥର ବା ପାକ୍‌ନା ଭାଙ୍ଗେ । ପୁଣି ବଡ଼ କାଠ ଗଣ୍ଡିକୁ

ମଧ କାଠ ମୁଟ୍‌ଲା କୁହାଯାଏ । ଏହା ସାଧାରଣତଃ ଶୀତଦିନେ ଜଇ ଲଗାଇ ରାତିଯାକ ଘରେ ରଖିବାକୁ ଦରକାର ହୁଏ । ଭାଷାରେ ଏହାର ବ୍ୟବହାର : "ବିଦ୍‌ନା ମୁଟ୍‌ଲୋ ସଙ୍ଗେ ନଙ୍ଗଲ୍ ଢୁଆଲି ବେଦ୍‌ବାକେ ଅଇସି ।"

୭୮. ବିବର ବରନ୍ - *ଦେ.ବି. :* ଗାଢ଼ ଅନ୍ଧକାର ଇଂ.- Deep Dark । ସୁଡ଼ଙ୍ଗ ଭିତରେ ଅନ୍ଧାର ପରି ନିରନ୍ଧ୍ର ଅନ୍ଧାର, ଅନ୍ଧକାର । ରାତ୍ରିର ରଂଗ ଅର୍ଥରେ ବ୍ୟବହୃତ । କଥାରେ ଅଛି "ବିବର ବର୍‌ନ ଚଉଦ୍‌ଯୋଜନ ।" ଚଉଦ ଯୋଜନ ଯାଏ ବ୍ୟାପ୍ତ ଅନ୍ଧାର ।

୭୯. ବିଭା / ବିବା - *ଦେ.ବି. :* ବିବାହ : ଇଂ.- Marriage ସାଧାରଣତଃ ଆଦିବାସୀ ସଂପ୍ରଦାୟରେ ୭ପ୍ରକାରର ବିବାହ ପ୍ରଚ୍‌ଳିତ । ଯଥା (୧) ଉଦ୍‌ଲିଆ (୨) ମାଗନି (୩) ପଇସାମୁଣ୍ଡି (୪) ଘରଜ୍ୱାଇଁ (୫) ରାଣ୍ଡିବିବା (୬) ସଗର୍‌ତା (୭) ଝିକା ବିବା । ଏସବୁ ଭିତରୁ ଉଦ୍‌ଲିଆ ସବୁଠାରୁ ଜନପ୍ରିୟ । ଅନ୍ୟାନ୍ୟ ପୃଷ୍ଠାରେ ଏହିସବୁ ବିବାହ ପ୍ରଥାକୁ ସ୍ୱତନ୍ତ୍ର ଭାବେ ଉଲ୍ଲେଖ କରାଯାଇଛି ।

୮୦. ବିମା : ଭୀମା - *ଦେ.ବି. :* ବର୍ଷା ଦେବତା । ଇଂ- Rain god. ଜଣେ ପ୍ରସିଦ୍ଧ ଓ ପ୍ରତିପତ୍ତିଶାଳୀ ଦେବତା । ଆଦିବାସୀ ଜନଜାତି ମୁଖ୍ୟତଃ କୃଷିଜୀବୀ ହୋଇଥିବାରୁ ବହୁଗୋଷ୍ଠୀର ଲୋକ ଠିକ୍ ସମୟରେ ବର୍ଷା ନ ହେଲେ, କିମ୍ବା ଅକାଳ ପଡ଼ିଲେ ବର୍ଷା ହେବାପାଇଁ ବର୍ଷା ଦେବତା ଭାବେ ବିମା ବା ଭୀମା ପୂଜାର ଆୟୋଜନ କରିଥାନ୍ତି । ସେମାନେ ଛୋଟ ଜଂଗଲ ବା ଗଛପତ୍ର ଗହଳିଥିବା ସ୍ଥାନରେ ବା ଗାଁ ମୁଣ୍ଡ ପୂଜା ପୀଠ ଝାକର ଦେବତା ନିକଟରେ ଏ ପ୍ରକାର ପୂଜାର ଆୟୋଜନ କରିଥାନ୍ତି । ଦିଶାରୀ, ପୂଜାରୀ, ଓ୍ୱାଡ଼େ ଶିରା, ଗୁରୁମାଇ ପ୍ରଭୃତି ଏହି ପୂଜା ପାଇଁ ଗାଇ, କୁକୁଡ଼ା, ଛେଳି, ମେଣ୍ଢା, ପାରା ପ୍ରଭୃତି ପଶୁପକ୍ଷୀମାନଙ୍କୁ ବଳି ଦେଇ ଓ ନଡ଼ିଆ ବାଡ଼େଇ ପୂଜା କରିଥାନ୍ତି । ଗ୍ରାମ ଲୋକମାନଙ୍କ ଠାରୁ ଚାନ୍ଦା ଆଦାୟ କରି ଚାଉଳ ପରିବା କିଣାଯାଇ ସେଠାରୁ ଚରୁ ରନ୍ଧାଯାଏ ଓ ଭୋଗ କରାଯାଏ । ଏଇ ଚରୁ ଅନ୍ନକୁ ଗ୍ରାମର ଲୋକମାନେ ବାଣ୍ଟିକୁଣ୍ଟି ଖାଆନ୍ତି । ଏପରି କରିବା ଦ୍ୱାରା ବର୍ଷା ନିଶ୍ଚିତ ଭାବେ ହୋଇଥାଏ ବୋଲି ସେମାନେ ବିଶ୍ୱାସ କରନ୍ତି । କୋରାପୁଟ ବାଲିଯାତ୍ରାରେ ବିମା ଓ ବିମାନୀଙ୍କ ପୂଜା ଓ ବିବାହ ମଧ କରାଯାଇଥାଏ । ମୁଖ୍ୟତଃ କୋୟାମାନଙ୍କର ମୁଖ୍ୟ ଦେବତା ବିମା ।

୮୧. ବିମାନ - *ଦେ.ବି. :* ଦେବତା ମାନଙ୍କ ପାଇଁ କିମ୍ବା ଦେବଦେବୀଙ୍କ ପ୍ରତୀକକୁ ବସାଇବା ପାଇଁ କାଠ ତିଆରି ବିମାନ । ମନ୍ଦିରର କ୍ଷୁଦ୍ରାକୃତି ଦାରୁ ନିର୍ମିତ ସଂକେତ । ଏହା ଆଦିବାସୀମାନଙ୍କ ଠାରୁ ଅଣ ଆଦିବାସୀମାନେ ଗ୍ରହଣ କରିଥିବା ଅନୁମେୟ । କଳସୀ ଯାତ୍ରା, ଘଟଯାତ୍ରା ସମୟରେ ଗ୍ରାମଦେବତା ମାନେ ବିମାନରେ ବସି ଗ୍ରାମ ପରିକ୍ରମଣ କରିଥାନ୍ତି । ବିଭିନ୍ନ ଛୋଟ ବଡ଼ ପର୍ବ ପର୍ବାଣୀରେ ମଧ୍ୟ ବିମାନ ବ୍ୟବହାର ହୁଏ, ଯେପରିକି 'ବଉଳାଣି' ।

୮୨. ବୀରାଳି : ବୀରସଖି - *ଦେ.ବି. :* ଜଣେ ବିଶିଷ୍ଟ ଦେବୀ ।

ବୀରତ୍ୱର ପ୍ରତୀକ ଦେବୀ - ବିରାଳି ପର୍ବତରେ ରହୁଥିବା ପୀଠଦେବୀ । ସେ ସ୍ଥାନୀୟ ଆଦିବାସୀଙ୍କ ଦ୍ୱାରା ବୀରାଳି ଦେବୀଭାବେ ପରିଚିତ ହୋଇ ପୂଜାପାଆନ୍ତି । ବୈପାରୀଗୁଡ଼ା ବ୍ଲକ୍‌ର ଦଶବନ୍ତପୁରରେ ଥିବା ବିରାଳି ଘାଟି ବା ବିଲାନି ପର୍ବତ ଉପରେ ଅଧିଷ୍ଠିତା ଆଦିବାସୀମାନଙ୍କ ଏହି ଆରାଧ ଦେବୀ ଏତେ ପ୍ରସିଦ୍ଧ ଯେ ଆଦିବାସୀମାନେ ପର୍ବ ସମୟରେ ଗୀତ ଗାଇବାକୁ ଗଲାବେଳେ ଏଇ ବନଦେବୀଙ୍କୁ ପ୍ରଥମେ ବନ୍ଦନା କରିବାକୁ ଯାଇ କହନ୍ତି,

"ଦଶମନ୍ତ ପୁରେ ବୀରାଳିମାଇ,
ତା ସାନ ଭଉଣୀ ଡଙ୍ଗର ଦେଇ,
ବଡ଼ ଭାଇ ବୀର ଖମ୍ବା,
ତାଙ୍କ ନାମ ଧରି ଗୀତ ଗାଇବି,
ତାଳବାଜେ ଖମ୍‌ଖମା ।"

କିମ୍ବଦନ୍ତୀ :

କୁହାଯାଏ ବିରାଳିପାଟି ପର୍ବତ ଉପରେ ପୂର୍ବେ ବିରାନି ବୋଲି ଏକ ଗ୍ରାମ ଥିଲା । ସେଠାରେ କନ୍ଧ ଜାତିର ଲୋକେ ଘରଦ୍ୱାର କରି ରହୁଥିଲେ । ଏହାର ଚାରିପାଖରେ ଥିବା ଗ୍ରାମମାନଙ୍କରେ ଗଦବା, ଦୋରା ସଂପ୍ରଦାୟର ଲୋକମାନେ ରହୁଥିଲେ । ଏଇ ଲୋକମାନେ ଚଇତ ପର୍ବ ସମୟରେ ବେଣ୍ଟକୁ ଯାଉଥିଲେ । ଗାଁର ପିଲାମାନେ ମିଛି ମିଛିକା ଦେବୀ ପୂଜାର ଖେଳ ଖେଳୁଥିଲେ । ସୋମନେ ଗୋଟିଏ ପିଲାକୁ ଦେବୀ ଭାବରେ ବସାଇ, ତା ପାଖରେ ଆଉ ଗୋଟିଏ ପିଲାକୁ ବଳି ପଶୁ ଭାବରେ ପୂଜା ଚାଉଳ ଖୁଆଇ ତାବପିରି ବା ଧାରଯୁକ୍ତ କୁଶ ଦ୍ୱାରା ହାଣି ବଳିଦେବାର

ଖେଳ ଖେଳୁଖେଳୁ ସେହି ଡାବପିରି ସତକୁ ସତ ଖଣ୍ଡା ପରି କାମ ଦେଇଥିଲା ଓ ପିଲାଟିର ମୁଣ୍ଡ ଡାବପିରି ଚୋଟରେ ଗଣ୍ଡିରୁ ଅଲଗା ହୋଇଯାଇଥିଲା । ପିଲାମାନେ ଏ ଦୃଶ୍ୟ ଦେଖି ଭୟରେ ଆସି ସବୁ କଥା ତାଙ୍କ ବାପା ମାଆମାନଙ୍କୁ କହିଲେ । ଗାଁ ଲୋକେ ଯାଇ ଦେଖିଲେ ସତକୁ ସତ ଡାବପିରିର ପତ୍ର ଦୁଇଧାର ଥିବା ଖଣ୍ଡାଟିଏ ପାଲଟି ଯାଇଛି ଓ ପିଲାଟି ମରିଯାଇଛି । ଏହାପରେ ଗ୍ରାମ ନାୟକଙ୍କୁ ସ୍ୱପ୍ନାଦେଶ ହେଲା ଯେ, ସେ ହେଉଛନ୍ତି ବିରାଳୀ ଦେବୀ । ସେ ବିରାଳୀ ଗ୍ରାମରେ ଥିବା ପର୍ବତରେ ଆବିର୍ଭୂତା ହୋଇଛନ୍ତି । ତାପରଦିନ ସକାଳୁ ସ୍ଥାନୀୟ ଲୋକମାନେ ଏକ ପଥର ଉପରେ ଏକ ଡାବପିରିର ଦୁଇଧାର ଥିବା ଖଣ୍ଡା ରହିଥିବା ଦେଖିଲେ ଓ ସେଇଦିନ ଠାରୁ ଦୁଇଧାର ଥିବା ଖଣ୍ଡାକୁ ସ୍ଥାନୀୟ ଆଦିବାସୀମାନେ ବୀରାଳିଦେବୀ ଭାବେ ପୂଜା କରିଆସୁଛନ୍ତି । ଏଠାରେ ଦଶହରା ଯାତ୍ରା ବଡ଼ ଆଡ଼ମ୍ବର ସହକାରେ ପାଳିତ ହୋଇଥାଏ ଓ ସେହି ସମୟରେ ଆଦିବାସୀ ଲୋକେ ଛେଳି, କୁକୁଡ଼ା, ମେଣ୍ଢା ଇତ୍ୟାଦି ବହୁ ସଂଖ୍ୟାରେ ବଳି ଦେଇ ଦେବୀଙ୍କୁ ପୂଜା କରିଥାନ୍ତି ।

୮୩. ବିରୁ - *ଦେ.ବି. :* ପୂଜା ଅନୁଷ୍ଠାନ । ଇଂ- Worship.

ପୂଜା କରିବାକୁ ଦେଶିଆମାନେ ବିରୁ କରିବା ବୋଲି କହନ୍ତି । ପ୍ରତ୍ୟେକ ଶୁଭ ଓ ଅଶୁଭ କାର୍ଯ୍ୟରେ ବିରୁର ଆବଶ୍ୟକତା ପଡ଼ିଥାଏ । ଦିସାରୀ, ଓ୍ୱାଡ଼େ, ଗୁରୁମାଇ ଓ ପୂଜାରୀ ଇତ୍ୟାଦି ଏଇ ବୀରୁ କରିଥାନ୍ତି । ପୂଜାରୀ କେବଳ ଗାଁର ହୁଣ୍ଡି ବା ଗାଁ ଦେବୀଙ୍କୁ ପୂଜା କରିଥାଏ । ଅନ୍ୟ ଜଣେ ପୂଜାରୀ ବଡ଼ ଦେବୀଙ୍କ ପୂଜା କରିଥାଏ । ଏହି ବଡ଼ ଦେବତା ହେଉଛନ୍ତି 'ମାଉଲି' । ପ୍ରତି ଗାଁରେ ଗୋଟିଏ ହୁଣ୍ଡି ରହିଥାଏ ଓ ଜଣେ ମାଉଲି ରହିଥାନ୍ତି କୋୟା, ଦୁରୁଆ, ହାଲବୀ ଗାଁର ଗୁରୁମାଇଙ୍କୁ 'ଓ୍ୱାଡ଼େ' କୁହାଯାଏ । କନ୍ଧ ଓ ପରଜା ଗାଁରେ ଗୁରୁମାଇ ଓ ଶିରା ବଡ଼ ଦେବତାଙ୍କ କାମ କରେ । ଦିସାରୀ ପ୍ରତ୍ୟେକ କ୍ଷେତ୍ରରେ ପୂଜା କରିଥାଏ । ପିଲାଜନ୍ମ, ନାଁଦିଆ, ଆଣ୍ଡିଦରାନି, ପାଣିରକାନି (ଝିଅମାନେ ଶାଢ଼ି ପିନ୍ଧିବା ବେଳେ ହେଉଥିବା କର୍ମ), ଝିଅବଢ଼ାନି, ମୃତାହ, କଟାର ବିରୁ, ବେଡ଼ା ବିରୁ, ସଲପ୍ ବିରୁ, ନୂଆ ଘରବସା, ନୂଆ ଗାଁ ବସା ବା ହୁଣ୍ଡି ମାରିବା ବୀରୁ, ଚଇତି ପରବ, ପୁଷ୍ ପରବ, ଅସା, ବାଲି, ନଦୀ ଇତ୍ୟାଦିର ବୀରୁ କରାଯାଇଥାଏ । ଏହି କାମ ଦିସାରୀ ଓ ଗୁରୁମାଇମାନେ କରିଥାନ୍ତି । ଶିରା, ଓ୍ୱାଡ଼େ ଓ ପୂଜାରୀମାନେ ସ୍ଥଳ ବିଶେଷରେ ଯୋଗ ଦେଇଥାନ୍ତି । ନୂଆ ଶିରା ମଡ଼ାଇବା

ଲୋକ ପାଇଁ ଯେଉଁ ବୀରୁ ହୁଏ ତାକୁ 'କୁଲାଦାରାନି' ବା 'ବାକ୍‌ଲି' କୁହାଯାଏ । ଏହି ସମୟରେ ପୁରୁଣା ଓ୍ୱାଡ଼େ ବା ଶିରାମାନେ ସମସ୍ତ ଶିଷ୍ୟଙ୍କୁ ଡକାଇ ବୀରୁ କରନ୍ତି । ଏହି ବୀରୁରେ କୁକୁଡ଼ା, ଅଣ୍ଡା, ଛେଳି, ଢିପି ବା ବଳି ଦେଇ, ନଡ଼ିଆ ଭାଂଗି ମନ୍ତ୍ର ପଢ଼ାଯାଏ ଏବଂ ନୂଆ ପିଲାମାନଙ୍କୁ ଶିରା ବାଦ୍ୟ ତାଳରେ ନାଚିବା ପାଇଁ କୁହାଯାଏ । ଏହିପରି ବାଦ୍ୟ ଚାଲୁଚାଲୁ ଯେତେ ଲୋକଙ୍କ ଦେହରେ 'ଦେଓ' ବା ଦେବତା ଆସନ୍ତି, ସେମାନଙ୍କୁ ନୂଆଭାବେ ଶିରା ବା ଓ୍ୱାଡ଼େ ଘୋଷଣା କରାଯାଏ । ଏହି ବାକ୍‌ଲି ପର୍ବ ଦୁଇଦିନ ଧରି ଚାଲେ ।

ବୀରୁରେ ବ୍ୟବହାର ହେଉଥିବା ଦ୍ରବ୍ୟ । (୧) ଅଂଗାର ଗୁଣ୍ଡ (୨) ରଂଗମାଟି ଗୁଣ୍ଡ (୩) ଧଳାମାଟି ଗୁଣ୍ଡ (୪) ଧୂପନି ବା ଝୁଣା (୫) ଆକତ ବା ଅରୁଆ ଚାଉଳ (୬) ଫୁଲ । ଏହାକୁ ଛାଡ଼ି ଶିରା ବାଦ୍ୟ ସମାରୋହରେ ଦୁଇଟି ଟାମକ, ଗୋଟିଏ ଢୋଲ ଗୋଟିଏ ତିଡ଼ିବିଡ଼ି ଓ ଗୋଟିଏ ମହୁରୀ ରହିଥାଏ । ମାନସିକ ବା 'ବଦ୍‌ନା' କରିବାକୁ ଚାହୁଁଥିବା ଲୋକ ବୀରୁ ସମୟରେ ଦିଶାରୀ କହିବା ମୁତାବକ କୁକୁଡ଼ା, ଅଣ୍ଡା ଓ ଛେଳି ଇତ୍ୟାଦି ବଳି ବା ପୁଜିବା ପାଇଁ ସେଠାକୁ ଆଣିଥାନ୍ତି । କେହିକେହି ଦିଶାରୀ ଆଜିକାଲି କେବଳ ନଡ଼ିଆ ଭୋଗ ଲଗାଇବା ଆରମ୍ଭ କଲେଣି । ଏହା ବିରୁଦ୍ଧରେ ପରମ୍ପରାବାଦୀମାନଙ୍କ ପ୍ରତିରୋଧ ମଧ୍ୟ ବିଭିନ୍ନ ସ୍ଥାନରେ ଦେଖିବାକୁ ମିଳୁଛି ।

୮୪. ବିଲା – *ଦେ.ବି.* : ବିଲାଚୁଟି : ବାହାଡ଼ା : ଏକ ବୃକ୍ଷ ଓ ସେ ବୃକ୍ଷର ଫଳ ବିଶେଷ । ବିଲାଚୁଟିର ଅର୍ଥ ବାହାଡ଼ ଗଛ ସରି ସଂଗାତ ବସିବା ।

ବିଲା ଏକ ଔଷଧୀୟ ବୃକ୍ଷ । ଏହାର ଫଳକୁ ବିଭିନ୍ନ ଶୁଭ କାର୍ଯ୍ୟରେ ବ୍ୟବହାର କରାଯାଏ । ଏହି ଫଳକୁ ଅଁଳା, ହରିଡ଼ା, ସହିତ ଗୁଣ୍ଡ କରି ତ୍ରିଫଳା ପ୍ରସ୍ତୁତ କରାଯାଏ, ଯାହାକି, ବିଭିନ୍ନ ରୋଗର ଉପଶମ କରିଥାଏ । ଏହା କଟୁ, ତିକ୍ତ ଓ ଅମ୍ଳରସ ଯୁକ୍ତ ଅଟେ । ପିଲା ଶୁଖି ଯାଉଥିଲେ, ସେ ପିଲାକୁ ୧ ବର୍ଷ ମଧ୍ୟରେ 'ବିଲାଚୁଟି' କରାଯାଏ । ଉକ୍ତ ଛୁଆର ଟାପରା ଲୋକ ଯଥା ଆଈ, ଜେଜେମା, ଜେଜେବାପା, ଅଜା, ଭିଣୋଇ ଆଦି ସଂପର୍କୀୟମାନେ ସେହି ଛୋଟ ଛୁଆକୁ ବିଲା ଗଛ ମୂଳକୁ ନିଅନ୍ତି । ବିଲା (ବାହାଡ଼ା) ଗଛରେ ତିନିଘେରି ସୂତା ଗୁଡ଼ାଯାଏ । ଚାଉଳ କିମ୍ବା ମାଣ୍ଡିଆ ଚୂନାରେ ୪ଟି ପିଠା ପିଲାକୁ ଖୁଆଯାଏ । ଏହିପରି ବିଲାଗଛ ସହିତ ପିଲାର ସଂଗାତ ବନ୍ଧାଯାଏ ।

୮୫. **ବିଷମ କଟକ** - *ଦେ.ବି.* : ଏକ ସ୍ଥାନ ବିଶେଷର ନାମ । ଯେଉଁ କଟକ ବା ଗଡ଼ ମଧ୍ୟରେ ପ୍ରବେଶ କରିବା ସହଜ ନୁହେଁ । ସେପରି ଏକ ଗଡ଼ ଥିଲା ଅବିଭକ୍ତ କୋରାପୁଟ ଜିଲ୍ଲାର ରାୟଗଡ଼ା ଅଞ୍ଚଳସ୍ଥ ପ୍ରାଚୀନ ଶକ୍ତିପୀଠ ବିଷମ କଟକ । ଏହା ଏକ ପ୍ରସିଦ୍ଧ ଯୋଗିନୀ ପୀଠ ଭାବେ ମାର୍କାମ୍ମା ଓ କାର୍କାମ୍ମା ଦେବୀଙ୍କ ଯୋଗୁଁ ପ୍ରସିଦ୍ଧି ଲାଭ କରିଛି କାହିଁ କେଉଁ ପ୍ରାଚୀନ କାଳରୁ । ଜନଶ୍ରୁତି କହେ ଏଇ ଯୋଗିନୀ ଦ୍ୱୟ ଦୁଇ ଭଉଣୀ ଭାବେ ପରିଚିତ । ମାର୍କାମ୍ମା ବଡ଼ ଭଉଣୀ ହୋଇଥିବାରୁ ସେ ଗଡ଼ ମଧ୍ୟରେ ଅଧିଷ୍ଠିତା ହୋଇଥିବା ବେଳେ ଏହାର ଅନତି ଦୂରରେ ସାନ ଭଉଣୀ କାର୍କାମ୍ମାଙ୍କ ଆସ୍ଥାନ ରହିଛି । ଏ ଅଞ୍ଚଳରେ ଥିବା ଏଇ ଦୁଇଟି ଯୋଗିନୀ ପୀଠ ଭଳି ଅନ୍ୟ କୌଣସି ପୀଠ ଅନ୍ୟତ୍ର ଦେଖିବାକୁ ମିଳେନାହିଁ । ତେଣୁ ଏହାର ପ୍ରାଚୀନତା ମଧ୍ୟ କଳନା କରିହୁଏ ନାହିଁ । ତଥାପି ଏ ଅଞ୍ଚଳରେ ଅଷ୍ଟମ ଓ ନବମ ଶତାବ୍ଦୀ ପୂର୍ବର ବହୁ ଦେବଦେବୀ ଓ ତାନ୍ତ୍ରିକ ମୂର୍ତ୍ତି ତଥା ଯନ୍ତ୍ରମାନ ଦେଖିବାକୁ ମିଳେ । ତ୍ରୟୋଦଶ ଓ ଚତୁର୍ଦ୍ଦଶ ଶତାବ୍ଦୀରେ ଶୀଳ ବଂଶ ରାଜାମାନଙ୍କ ପୃଷ୍ଠପୋଷକତାରେ ଗଢ଼ି ଉଠିଥିବା ବହୁ ଜୈନ କଳା ଓ କୀର୍ତ୍ତିର ଧ୍ୱଂସାବଶେଷ ମଧ୍ୟ ଏଠାରେ ଦେଖିବାକୁ ମିଳେ ।

୮୬. **ବିହନ** - *ଦେ.ବି.* : (୧) ଜମିରେ ବୁଣିବା ପାଇଁ ରଖିଥିବା ଶସ୍ୟାଦିକୁ ବିହନ କୁହାଯାଏ । (୨) ବେଣ୍ଟ ପର୍ବ ସମାପନ ପରେ ଘରଘର ବୁଲି ଚାଉଳ, ମାଣ୍ଡିଆ, ଆଦି ମଗାଯାଏ ଏବଂ ସଭିଏଁ ଏକତ୍ର ରୋଷେଇ କରି ଏସବୁ ଖାଇଥାନ୍ତି । ଏହିସବୁ ସଂଗୃହୀତ ଶସ୍ୟକୁ ବିହନ କୁହାଯାଏ । ଇଂ.- Seed.

୮୭. **ବିହନ ପରବ** - *ଦେ.ବି.* : ବିହନ ପୂଜା । ଫାଲଗୁନ୍ ମାସରେ ଗାଦବାମାନେ ବିହନ ପରବ ପାଳନ କରିଥାନ୍ତି । ଯେଉଁ ସ୍ଥାନରେ ବିହନ ବୁଣାଯାଏ, ସେଠାରେ ଗୋଟିଏ କୁକୁଡ଼ା ଚିଆଁ (ଛୁଆ)କୁ ବଳି ଦେଇ ଧରତନୀ ମାତାକୁ ପୂଜା କରାଯାଏ । ତା'ପରେ ବିହନ ବୁଣାଯାଏ । ପଦା ଜମିରେ ସରୁଭାତ ରନ୍ଧାଯାଏ ଓ ତାକୁ ଖାଇ ଗାଦବାମାନେ ଘରକୁ ଫେରନ୍ତି ।

ପୂଜା ନିମନ୍ତେ, ମୁଢ଼ି, ଅରୁଆ ଚାଉଳ, ଧୂପ ଆଦି ସାମଗ୍ରୀ ଆବଶ୍ୟକ ହୋଇଥାଏ । "ହେ ମାପ୍ରୁ, ହେ ବସୁମାତା, ଚାଷବାସ ପାଚୁ । ବେଣ୍ଟ ଉଠୁ" ବୋଲି ଦିଶାରି କହେ । ଏହା ହେଉଛି ବିହନ ପାରବର ମନ୍ତ୍ର । କୋୟା ସଂପ୍ରଦାୟରେ ଏହାକୁ

ବିଜା ପାଣ୍ଡୁ କୁହାଯାଉଥିବା ବେଳେ ଅନ୍ୟାନ୍ୟ ସଂପ୍ରଦାୟରେ ଚଇତି ପରବ ସହ ବିହନ ପୂଜା କରାଯାଏ ।

୮୮. **ବୀରଖମ୍ବ** - *ଦେ.ବି. :* ( ୧ ) ଜଣେ ଦେବୀ ବିଶେଷ । ( ୨ ) ଗ୍ରାମଦେବୀଙ୍କ ଗୁଡ଼ି ଆଗରେ ଥିବା ସ୍ତମ୍ଭ ଦେବତା ।

ବୈପାରୀଗୁଡ଼ା ବ୍ଲକ୍ ଅନ୍ତର୍ଗତ କେନ୍ଦୁପଡ଼ା ଗ୍ରାମର ଅଧିଷ୍ଠାତ୍ରୀ ଦେବୀ । ବୈପାରୀଗୁଡ଼ା ଠାରୁ ୫କି.ମି. ଦୂରରେ ଜଂଗଲ ମଧ୍ୟରେ ଅବସ୍ଥିତ ଏହି ଦେବୀଙ୍କୁ ସପ୍ତାହରେ ମଂଗଳବାର ଓ ଶୁକ୍ରବାର ଦିନ ପୂଜାର୍ଚ୍ଚନା କରାଯାଇଥାଏ । ଏହି ଦୁଇଦିନ ଦୂରଦୂରାନ୍ତରୁ ହଜାର ହଜାର ଭକ୍ତଙ୍କ ସମାବେଶ ଘଟିଥାଏ । ଦେବୀଙ୍କୁ ମାନସିକ କରି ବହୁ ଅଭୀଷ୍ଟ ସାଧନା ହୋଇଥାଏ ବୋଲି ଲୋକବିଶ୍ୱାସ ରହିଛି । ଏଣୁ ଅସଂଖ୍ୟ ଛେଳି, ମେଣ୍ଢା ଓ କୁକୁଡ଼ା ବଳି ପ୍ରଦାନ କରାଯାଏ । ଏହି ଦେବୀଙ୍କ ପ୍ରତ୍ୟକ୍ଷ ସଂପର୍କରେ ଏକ କିମ୍ବଦନ୍ତୀ ପ୍ରଚଳିତ । ତାହାହେଲା : ଏକଦା ଜୟପୁର ମହାରାଜ ରାଣୀଙ୍କ ସହ ହାତୀ ଉପରେ ବସି ବନ ବିହାରରେ କେନ୍ଦୁପଡ଼ା ଦେଇଯାଉଥାନ୍ତି । ଏହି ସମୟରେ ସ୍ଥାନୀୟ ଆଦିବାସୀମାନେ ବୀରଖମ୍ବଙ୍କୁ ପୂଜା କରୁଥିବା ଦେଖିବାକୁ ପାଇଲେ । ସେ (ମହାରାଜା) ତାଚ୍ଛଲ୍ୟରେ ମନ୍ତବ୍ୟ ଦେଲେ "ଏଇ ଆଦିବାସୀମାନେ କାଠ, ପଥର ସବୁ କିଛିକୁ ଦେବତା ବୋଲି ପୂଜା କରନ୍ତି ।" ଦେବୀ ସେଥିପାଇଁ କ୍ରୋଧାନ୍ୱିତା ହେଲେ । ତତ୍‌କ୍ଷଣାତ୍ କେଉଁଆଡୁ ବିରୁଡ଼ି ପଲଆସି ମହାରାଣୀଙ୍କୁ ଦଂଶନ କରିବାକୁ ଲାଗିଲେ । ରାଣୀଙ୍କ ଦେହସାରା ଫୁଲିଗଲା, ସେ କ୍ଷତାକ୍ତ ହୋଇ ପ୍ରାଣ ବିକଳରେ କାନ୍ଦୁଥାନ୍ତି । ରାଜା ନିରୁପାୟ । ଏହି ସମୟରେ ଜଣେ ରାଜକର୍ମଚାରୀଙ୍କ କଥାନୁଯାୟୀ ସେ ବୀରଖମ୍ବଙ୍କୁ କ୍ଷମା ପ୍ରାର୍ଥନା କରି ତାଙ୍କ ପୂଜାର ବ୍ୟବସ୍ଥା ପାଇଁ ମାନସିକ କଲେ । ଏହାପରେ ମହାରାଣୀ ସୁସ୍ଥ ହୋଇଗଲେ । ସେହିଦିନଠାରୁ ଦେବୀ ବୀରଖମ୍ବଙ୍କ ମହିମା ବଢ଼ିବାକୁ ଲାଗିଲା । କେତେକ ଏହାକୁ ପୁରୁଷ ଦେବତା ବୋଲି ମତବ୍ୟକ୍ତ କରିଥାନ୍ତି ।

(୨) ଗ୍ରାମଗୁଡ଼ି ଆଗରେ ପୋତା ହୋଇଥିବା ୧୫/୨୦ ହାତ ଉଚ୍ଚର ସଳଖ ଶାଳଖମ୍ବ । ଦାରୁ ଦେବତାର ପ୍ରତୀକ ସ୍ତମ୍ଭ ଦେବତା, ଯାହାର ଅଗ୍ରଭାଗରେ ଲୁହାପାଟିଆ ନିର୍ମିତ ଶୁଆ ମୂର୍ତ୍ତି ସ୍ଥାପନ କରାଯାଇଥାଏ । ଏହି ବୀରଖମ୍ବ ମୂଳରେ ଭକ୍ତମାନେ ମାନସିକ କରିଥିବା କୁକୁଡ଼ା, ପାରା, ହଂସ, ଛେଳି, ମେଣ୍ଢା, ପୂଜାରୀ ପୂଜି

(ବଳି ଦେଇ)ଥାଏ । ଏହି ବୀରଖମ୍ବ ଅବିଭକ୍ତ କୋରାପୁଟ ଜିଲ୍ଲାର ପ୍ରତ୍ୟେକ ଆଦିବାସୀ ଗ୍ରାମଗୁଡ଼ିକରେ ପ୍ରତିଷ୍ଠା କରାଯାଇଥାଏ । ପ୍ରତ୍ୟେକ ଗୁଡ଼ି ଆଗରେ ବୀରଖମ୍ବ ଓ କଣ୍ଟା ଝୁଲଣ (ପଟାରେ କଣ୍ଟାପିଟା ଯାଇଥିବା ଦୋଳି) ରହିବା ବିଧି ।

୮୯. **ବୀରଖମ୍ବ ଦେବତା** - *ଦେ.ବି. :* ବୈପାରୀଗୁଡ଼ା (କୋରାପୁଟ ଜିଲ୍ଲା)ର ପ୍ରସିଦ୍ଧ ସ୍ତମ୍ଭ ଦେବତା । ପ୍ରତି ମଂଗଳବାର ଓ ଗୁରୁବାର ଦିନ ଏହି ଦେବତାଙ୍କର ପୂଜା ହୋଇଥାଏ । ଦଶହରା ସମୟରେ ହଜାର ହଜାର ଭକ୍ତ ମାନସିକ ପୂରଣ ପାଇଁ ଏଠାରେ ଏକତ୍ର ହୋଇଥାନ୍ତି ।

୯୦. **ବୁକୁ ଦୁଡ଼ୁମା** - *ଦେ.ବି. :* ଏକ ପ୍ରକାର ମୂଷା, ଉଡ଼ନ୍ତା ଗୁଣ୍ଡୁଚି । ଇଂ.- Flying squirrel ଏହା ମୂଷା ଭଳି ଦେଖାଯାଏ । କିନ୍ତୁ ମୂଷା ନୁହେଁ । ବାଦୁଡ଼ି ଭଳି ପରଥାଏ । କିନ୍ତୁ ଗୋଡ଼ ସନ୍ଧିରେ ଏକ ଚମଡ଼ା ଯୁକ୍ତ ପର ବାହାରିଥାଏ । ଏମାନେ ଗଛ ଡାଳରେ ରହନ୍ତି । ପିଲା ରଖିବା ପାଇଁ କଂଗାରୁ ଥଳି ଭଳି ମାଈ ଗୁଣ୍ଡୁଚି ପେଟରେ ଗୋଟିଏ ଥଳୀ ଥାଏ । ନବ ଜନ୍ମିତ ୨ଟା ସନ୍ତାନ ଏହି ଥଳୀରେ ଆରାମରେ ରହିପାରନ୍ତି । ଗଛ ଉପରୁ ଅନ୍ୟ ଗଛକୁ ପର ମେଲାଇ ଏମାନେ ପହଁରି ଯାଆନ୍ତି । ବାଦୁଡ଼ି ଭଳି ଉଡ଼ି ପାରନ୍ତି ନାହିଁ । ଜଂଗଲ ପରିବେଶରୁ ଅଲଗା ହେଲାମାତ୍ରେ ଏମାନେ ମରିଯାଆନ୍ତି । ଏମାନଙ୍କ ଲାଞ୍ଜର ଲମ୍ବ ପ୍ରାୟ ଦେଢ଼ ଫୁଟ । ଟିଲୁ ଭୂଷା ଲାଞ୍ଜଠାରୁ ଟିକିଏ ମୋଟା । ଏମାନେ କାର୍ତ୍ତିକ ମାର୍ଗଶିର ଠାରୁ ଫଗୁଣ ଚୈତ୍ର ପର୍ଯ୍ୟନ୍ତ ଜଂଗଲ ମଧ୍ୟରେ ଦେଖାଦିଅନ୍ତି ଓ ବୁକ୍ ଦୁଡୁମ୍ ବୁକ୍ ଦୁଡୁମ୍ ବୋଲି କାନ୍ଦନ୍ତି । ଏହାହିଁ ସେମାନଙ୍କ ସଂଗମ ଋତୁ । ଏମାନେ ଅଭକ୍ଷ୍ୟ । କିନ୍ତୁ ଖୁସିରେ ଏମାନଙ୍କୁ ଲୋକେ ଧରିଥାନ୍ତି । ହେଲେ ପୋଷା ନ ମାନି ଏମାନେ ମରିଯାଆନ୍ତି । ପ୍ରାଣୀ ବିଜ୍ଞାନ ଭାଷାରେ ଏମାନଙ୍କୁ Flying squirrel ବା ଉଡ଼ନ୍ତା ଗୁଣ୍ଡୁଚି ମୂଷା ବୋଲି କୁହାଯାଏ ।

୯୧. **ବିଝାନ** - *ଦେ.କ୍ରି. :* ଦେବଦେବୀଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ କରାଯାଉଥିବା ମନ୍ତ୍ର ବା ସୋତ୍ର । ସମସ୍ତ ପ୍ରକାରର ରୋଗ ବୈରାଗ, ଅମଙ୍ଗଳ, ଅଘଟଣ ସବୁ ଦେବଦେବୀଙ୍କର ରୋଷରୁ ସଂଘଟିତ ହୋଇଥାଏ ବୋଲି ଲୋକ ବିଶ୍ୱାସ । ଏଭଳି କୁପିତ ବା ଅବୁଝା ଦେବଦେବୀଙ୍କୁ ଗୁରୁମାଈ ମାନେ ଗୀତ ଗାଇ ଗାଇ ବୁଝାଇଥାନ୍ତି । ଅବୁଝା ଦେବାଦେବୀଙ୍କୁ ଗୁରୁମାଈମାନଙ୍କ ବୁଝାଇବା ଗୀତକୁ

'ବୁଝାନ' କୁହାଯାଏ । ବାସ୍ତବରେ ଏହା ହେଉଚି ଗୁରୁମାଈ ମାନେ ଗାଉଥିବା ସ୍ତୁତି ବା ସ୍ତୋତ୍ର ।

୯୨. ବୁଟ୍‌ବୁଟା - *ଦେ.ବି.* : ଅପରିଷ୍କାର, ଅପରିଚ୍ଛନ୍ନ, କାଦୁଅ ବଲବଲ, ଇଂ.- Unclean Muddy. ପ୍ରତିଶବ୍ଦ ମୁର୍କି : ଅପରିଷ୍କାର । କାଦୁଅ ମାଦୁଅ ଲାଗି କାମରୁ ଫେରିଥିବା ଲୋକଙ୍କ ପ୍ରତି ଏହା ପ୍ରଯୁଜ୍ୟ ହୁଏ । କଥାବାର୍ତ୍ତାରେ ବ୍ୟବହାର -

ଯଥା : (୧) ଦିନ୍‌ଜାକ୍ ମାଟି ମାଗିମାଗି ବୁଟ୍‌ବୁଟା ଅଇଲି ଆଚି (୨) ଏତେ ବୁଟ୍‌ବୁଟା ହେଲୁସ୍‌ନି ପାନି ଗାଦା ।

ଗୀତରେ ବ୍ୟବହାର : ଉଡ଼ିଲରେ ଅଂସ, ଗାଲା ତାର ଦେଶ

ଡେନା ତଳେ ମୁଣ୍ଡ ରକି, କାଇ, କୁଆ କଇଲୁସ୍ ମରମେ ଜାକି, ମର ଇନସ୍ତା ପନକେ ଦେକି ।

କି କରି ମରିବି ଏକଟା ଜନେ, କାଦ୍ ବୁଟ୍‌ବୁଟ୍ ଟାନେ ।

ଏହା ବ୍ୟତୀତ ତେଲ ହଳଦୀ, ବା ରକ୍ତରେ ଦେହ ଭିଜିଥିଲେ ତାହାକୁ ଚିକନ୍ ବୁଟ୍‌ବୁଟ୍, ବନି ବୁଟ୍‌ବୁଟା ବା ହଲ୍‌ଦୀ ବୁଟ୍‌ବୁଟା ବୋଲି କୁହାଯାଇଥାଏ ।

୯୩. ବୁଟାବାନ୍ଧନି - *ଦେ.ବି.* : ଭତରା ପ୍ରାକ୍ ବିବାହ ଉତ୍ସବର ଏକ ପର୍ଯ୍ୟାୟ । ଭତରା ମାନଙ୍କ ପୂର୍ବ ନିର୍ବନ୍ଧ କଥାବାର୍ତ୍ତାର ଦ୍ୱିତୀୟ ପର୍ଯ୍ୟାୟକୁ କୁହାଯାଏ । ମାହାଲା ବିଭା ହେଉଚି ମଧ୍ୟସ୍ଥ ଜରିଆରେ ଅନୁଷ୍ଠିତ ବିଭା । ଏହି ମାହାଲା ବିଭାର ପ୍ରଥମ ପର୍ଯ୍ୟାୟ ହେଉଛି ଝିଅ ଦେଖା । ଦ୍ୱିତୀୟରେ ବୁଟା ବାନ୍ଧନି । ଏହି ପର୍ଯ୍ୟାୟରେ ପୁଅଘର ଲୋକେ, ବନ୍ଧୁବର୍ଗ ଚୁଡ଼ା, ଗୁଡ଼, ପିଠା, ଖଜା ଆଦି ଧରି ଝିଅଘରେ ପହଞ୍ଚନ୍ତି । ଝିଅର ବାପା, ମା, ବନ୍ଧୁବର୍ଗ, ଆତ୍ମୀୟ ସ୍ୱଜନ ଆସି ଗୁଣ୍ଡ ହୁଅନ୍ତି । ଦିନକାରିଆ, ଲଗନ କାରିଆ (ଜ୍ୟୋତିଷ କାର୍ଯ୍ୟ କରୁଥିବା ଆଦିବାସୀ ଦିସାରି) ମଧ ଆସେ । ଉଭୟ (ପୁଅଝିଅ) ପକ୍ଷର ଲୋକେ ବସି ବାହାଘର ସଂପର୍କରେ ଆଲୋଚନା କରନ୍ତି । ଦିନକାରିଆ ପୁଅଝିଅର ନାମକୁ ନେଇ ଜାତକ ମିଳାଏ । ଗୋତ୍ର କଥା ପଚାରି ବୁଝେ । ଜାତକ ଯଦି ମିଶେ ଏବଂ ପୁଅଝିଅ ସଗୋତ୍ର ହୋଇ ନଥାନ୍ତି, ତେବେ ଦିନକାରିଆ ବାହାଘର କରିବା ପାଇଁ କହିଥାଏ । ବଡ଼ମାହାଲା ପାଇଁ ଦିନ ଧାର୍ଯ୍ୟ ହୁଏ । ଉଭୟପକ୍ଷ ଭୋଜିଭାତ ଖାଇ ଫେରନ୍ତି ।

୯୪. ବୁଡ୍‌ଘର - ଦେ.ବି. : ଦଶାହ କ୍ରିୟା । କୌଣସି ବ୍ୟକ୍ତି ମରିଗଲେ ଦଶମ ଦିନରେ ଅନ୍ତିମ ଶୁଦ୍ଧକ୍ରିୟା ବା 'ବୁଡ୍' କରାଯାଏ । ପଇସା ପତ୍ର ନଥିଲେ ଅଭାବୀ ଲୋକ ବର୍ଷକ ପରେ ମଧ୍ୟ ଏହି 'ବୁଡ୍‌ଘର' କରିଥାଏ । ହିନ୍ଦୁମାନଙ୍କର ଦଶାହ କ୍ରିୟାଠାରୁ ଏହି ବୁଡ୍‌ଘରର କ୍ରିୟା ଅନେକାଂଶରେ ଭିନ୍ନ । ଦେଶିଆ ଲୋକମାନଙ୍କ ବୁଡ୍‌ଘର ଦିନ କୁଳକୁଟୁମ୍ବ ଏକ ସଂଗେ ନଦୀ, ଝରଣା ବା ପୋଖରୀକୁ ଯାଇ ବୁଡ୍ ପକାନ୍ତି । ବୁଡ୍ ପୂର୍ବରୁ ମୃତ ବ୍ୟକ୍ତିର ଭାଇ, ପୁଅ ଓ ଭଣଜା ମାନେ ଲଣ୍ଡା ହୁଅନ୍ତି ଏବଂ ଗାଧୋଇ ସାରିବା ପରେ ନୂଆ ଲୁଗା ପିନ୍ଧନ୍ତି ଓ ଖଇ ବାଣ୍ଟନ୍ତି । ଭାଇ ମରିଥିଲେ ତାର ସାନଭାଇ ବା ବିଧବା ଭାଉଜର ଦିଅର ତାର ଭାଉଜକୁ ଗୋଟିଏ ଲୁଗା, କାଚ ଓ ମାଳୀ ଦେଇଥାଏ । ତାହାକୁ କୁହାଯାଏ 'ଖଣ୍ଡଲୁଗା' । କିନ୍ତୁ ସେହି ବିଧବାର ବୟସ ଅଧିକ ହୋଇଥିଲେ ସେ ଏହା ଗ୍ରହଣ କରି ନପାରେ ।

ଏହାପରେ ଘରକୁ ଆସି ସମସ୍ତେ ଏକା ସାଂଗରେ ଭୋଜି, ଭାତ, ମଦ, ମାଂସ ଓ ନାଚ ଗୀତରେ ମସ୍‌ଗୁଲ ହୋଇ ଯାଆନ୍ତି । ଏହି ବୁଡ୍‌ଘରେ ଦେଶିଆ ନାଟ କିମ୍ବା ଭିଡ଼ିଓ ଇତ୍ୟାଦି ହେବାର ପରମ୍ପରା ମଧ୍ୟ ରହିଛି । ହିନ୍ଦୁମାନେ ଦିଶାହ ଦିନ ପର୍ଯ୍ୟନ୍ତ ଆମିଷ ଖାଇବା ନିଷେଧ ଥିବାବେଳେ ଦେଶିଆମାନେ ପିତାଭାତ୍ ଦିନଠାରୁ ଆମିଷ ଖାଇବା ଆରମ୍ଭ କରନ୍ତି । (ଦ୍ରଷ୍ଟବ୍ୟ : 'ପିଣ୍ଡ ଥାପିବା' ଏବଂ 'ପିତା ଛୁଆନି' ।)

୯୫. ବୁଡ଼ିଆ / ପୁଷ୍‌କୁଡ଼ିଆ - ଦେ.ବି. : ପୁଷ୍ ମାସରେ ଘରଘର ମାଗି ବୁଲିବା ପିଲାମାନଙ୍କୁ ମାଳି ସଂପ୍ରଦାୟରେ 'ବୁଡ଼ିଆ' ବା 'ପୁଷ୍ ବୁଡ଼ିଆ' କହନ୍ତି । (ଦ୍ର. ଛେର୍‌ଛେରା)

୯୬. ବୁଢ଼ାଦେଓ (ବୁଢ଼ାହାଦେଓ) ଗଣ୍ଡି - ଦେ.ବି. : ଦେବତା ବିଶେଷ । ଅକ୍ଷୟ, ଅମର, ଆଦି ଦେବତା । ସୃଷ୍ଟି କାରଣର ହେତୁ । ଗଣ୍ଡ ଆଦିବାସୀ ମାନଙ୍କର ସର୍ବଶ୍ରେଷ୍ଠ ଦେବତା । ଆମ୍‌ଖାପାନି ଯାତ୍ରା (ନୂଆ ଆମ୍ବଖାଇବା ଯାତ୍ରା)ରେ ଏହି ବୁଢ଼ା ଦେଓଙ୍କୁ ଶୁକ୍ଲ ଭୋଗ ଦେଇ (ନଡ଼ିଆ, କଳଦୀ, ଖଇ)ପୂଜା କରିଥାନ୍ତି ।

ଗଣ୍ଡମାନଙ୍କର ଶ୍ରେଷ୍ଠ ଦେବତା । ଗଣ୍ଡମାନେ ବୁଢ଼ାଦେଓଙ୍କ ଦାରୁ ପ୍ରତୀକକୁ ମାନବ ସମାଜର କଲ୍ୟାଣ ପାଇଁ ପୂଜା କରିଥାନ୍ତି । ଏହି ଦେବତା ପାଗପିନ୍ଧି ଖଣ୍ଡାଧରି,

ଘୋଡ଼ାରେ ବସି ପୃଥିବୀ ଭ୍ରମଣ କରିଥାନ୍ତି ବୋଲି ଲୋକ ବିଶ୍ୱାସ ରହିଛି । ବୁଢ଼ାଦେଓ ଆଦି ଦେବତା ଓ ସୃଷ୍ଟି କାରଣର ହେତୁ ।

୯୭. ବୁଢ଼ାବଇର - *ଦେ.ବି. :* ମହାଦେବ (ଭୈରବ ଦେବତା : ଦ୍ରାବିଡ଼ ଦେବତା ଭାବେ ସ୍ୱୀକୃତ) କୋରାପୁଟ ଜିଲ୍ଲାରେ ବି. ସିଙ୍ଗପୁର, କାମତା କୁମୁଲି, ନନ୍ଦପୁର ଆଦି ଅଞ୍ଚଳରେ ଭୈରବଙ୍କ ବହୁ ପ୍ରସ୍ତର ମୂର୍ତ୍ତି ଦେଖିବାକୁ ମିଳେ । ଆଦିବାସୀଙ୍କ ଲୋକଗୀତରେ ମଧ୍ୟ ଏହି ଦେବତାଙ୍କ ପ୍ରଶସ୍ତି ଶୁଣିବାକୁ ମିଳେ ।

ଉଦାହରଣ : (୧) "ମାତାକୁ ମାଉଲି, ଭଇରକୁ ଭୀମା, କରିଲି ବିଜପୁଟନି
ହରାଇ ନେବେକି ଜଣାଇ ନେବେ ଜାଗଇ ମୂଳ ଖୁଟନି
ଗଛ ସଲଣ୍ଡିଆ ପତର ଡୁଆ ସବୁଦେବି ସାହାହୁଆ ।" (ଚଇତପରବଗୀତ)

(୨) ପର୍ବତ ପର୍ବତ ସାତ ପର୍ବତ ସିଂହାସନ ମାଟି ଏ ନନ୍ଦପୁର,
ଅଛନ୍ତି ବୁଢ଼ା ଭଇର । ତାଙ୍କ ନାମଧରି ଗୀତ ମୁଁ ଗାଇବି
ଆମ କଣ୍ଠେ ବିଜେକର ।
ଦେବତା ଆସନେ ଫୁଲର ଲାଠି, ଜୋହାର ଜାଗାର ମାଟି ।"

୯୮. ବୁଦୁବ୍ - *ଦେ.ବି. :* ଏକପ୍ରକାରର ଶବ ସଂସ୍କାର ପ୍ରଥା । ଆଦିବାସୀ ପରିବାରରେ ଯଦି କୌଣସି ବ୍ୟକ୍ତି ହଇଜା, ବସନ୍ତ ଆଦି ରୋଗରେ ମୃତ୍ୟୁବରଣ କରେ ବା କେହି ଗଛରୁ ପଡ଼ି ମୃତ୍ୟୁବରଣ କରେ, ତେବେ ସେମାନେ ଏ ପ୍ରକାର ମୃତବ୍ୟକ୍ତିର ଶବକୁ ଦାହ ନ କରି ଗାତ ଖୋଳି ପୋତି ଦିଅନ୍ତି । ଶବକୁ ପୋତିବା ସମୟରେ ଶବର ମୁଣ୍ଡକୁ ଦକ୍ଷିଣ ଦିଗକୁ ଓ ପାଦ ଉତ୍ତର ଦିଗକୁ ରଖି ପୋତି ଦେଇଥାନ୍ତି । ଏମାନଙ୍କ ପାଇଁ ଦଶାହ କ୍ରିୟା କରାଯାଏ ନାହିଁ କି କାହାକୁ ଶୁଦ୍ଧ ହେବାକୁ ପଡ଼େ ନାହିଁ । ଏମାନଙ୍କ ମୃତ୍ୟୁରେ ପରିବାରରେ ଲୋକେ ଦୁଃଖ ପ୍ରକାଶ କରି କନ୍ଦାକଟା କରିବା ମଧ୍ୟ ନିଷିଦ୍ଧ ଥାଏ । ଏହି ପ୍ରଥାକୁ 'ବୁଦୁଦ୍' କୁହାଯାଏ ।

ମାତ୍ର କୌଣସି ହିଂସ୍ର ପଶୁର ଆକ୍ରମଣରେ ଯଦି କୌଣସି ବ୍ୟକ୍ତି ମୃତ୍ୟୁବରଣ କରେ, ତେବେ ତାକୁ ସେହି ସ୍ଥାନରେ ପୋତି ଦିଆଯାଇଥାଏ ଓ ତା' ପାଇଁ ଶୁଦ୍ଧିକ୍ରିୟା ଯଥାବିଧି ପାଳନ କରାଯାଇଥାଏ । ଶୁଦ୍ଧିକ୍ରିୟା ଓ ଭୋଜିଭାତ କରି ଏ ପ୍ରକାର ଡୁମ୍ବା ବା ଆତ୍ମାକୁ ସନ୍ତୁଷ୍ଟ ନ କଲେ ସେଇ ଡୁମ୍ବାଟି ଲୋକମାନଙ୍କର ବିଶେଷ କ୍ଷତି ଘଟାଏ ବୋଲି ଆଦିବାସୀ ଲୋକେ ବିଶ୍ୱାସ କରନ୍ତି ।

୯୯. ବୁରୁଙ୍ଗା - *ଦେ.ବି. :* ଇଂ- Atop. ଏକ ଖେଳନା ବିଶେଷ । ବେଲରେ ତିଆରି ନଟୁ । ଆଦିବାସୀ ଶିଶୁମାନେ ପାଚିଲା ବେଲକୁ ଛିଦ୍ରକରି ଏକ କାଠି ଲଗାଇଥାନ୍ତି । ଏଥିରେ ଦଉଡ଼ି ଗୁଡ଼ାଇ ନଟୁ ଚଳାଇବା ଭଳି ଘୁରାଉଥାନ୍ତି । ଏହା ଘୁରିବା ସମୟରେ ରିଂ ରିଂ ଧ୍ୱନୀ ଅତ୍ୟନ୍ତ କୌତୂହଳପ୍ରଦ ହୋଇଥାଏ ।

୧୦୦. ବୁରୁଡ଼ି - *ଦେ.ବି. :* (୧) ଏକ ନିର୍ଦ୍ଦିଷ୍ଟ ମାଛର ଅଂଗ ବିଶେଷ । ଏହା ମାଗୁର ମାଛର ଫୁଲ ବା ଗାଲିସିକୁ ବୁଝାଏ । (୨) ଏହା ମଧ୍ୟ କୋରାପୁଟ ଜିଲ୍ଲାର ଏକ ଆଦିବାସୀ ଗୋଷ୍ଠୀର ସଂଜ୍ଞା ଅଟେ । ଏହି ସଂଜ୍ଞାଧାରୀ ଲୋକମାନେ ପ୍ରାୟତଃ ମତ୍ସ୍ୟ ବଂଶୀ ଭାବେ ପରିଚିତ ହୋଇଥାନ୍ତି । ଏମାନେ ମାଛ ଖାଇ ନଥାନ୍ତି । ସମାର୍ଥ ବୋଧକ ସଂଜ୍ଞା ହେଉଛି ମାଛ, ଗୁଣ୍ଡା, କଚିମ ଇତ୍ୟାଦି ।

୧୦୧. ବୁରୁସଙ୍ଗ୍ - *ଦେ.ବି. :* ବଣ୍ଡାଙ୍କ ଗ୍ରାମଦେବୀ / ଇଷ୍ଟଦେବୀ ହୁଣ୍ଡି : ବଣ୍ଡାମାନେ କୌଣସି ଗ୍ରାମ ସ୍ଥାପନ କଲାବେଳେ ଦିସାରୀ ବୁରୁସଙ୍ଗ ବା ହୁଣ୍ଡି ସ୍ଥାପନ କରିଥାଏ । ପ୍ରତ୍ୟେକ ବଣ୍ଡା ଗ୍ରାମର କୌଣସି ଏକ ବୃକ୍ଷ ତଳେ ଚାରୋଟି ପଥର ଥୋଇ ତାହାରି ମଧ୍ୟରେ ଗ୍ରାମଦେବୀଙ୍କୁ ରଖି ପୂଜା ଆରାଧନା କରନ୍ତି । କେତେକ ବଣ୍ଡା ଗ୍ରାମରେ ସିନ୍ଧିବୋରର ଏକ ପାର୍ଶ୍ୱରେ ପଥରର ଘେର ମଧ୍ୟ ଦେଇ ବୁରୁସଙ୍ଗ ବା ହୁଣ୍ଡିମାତାଙ୍କୁ ସ୍ଥାପନ କରାଯାଇଥାଏ ।

୧୦୨. ବେଙ୍ଗ୍‌ଟିନାଟ୍ - *ଦେ.ବି. :* ବର୍ଷା ଆବାହନ ପାଇଁ ଅନୁଷ୍ଠିତ ଏକ ଗୀତ ନୃତ୍ୟ ପ୍ରଥା । ଜ୍ୟେଷ୍ଠ ମାସ ଶେଷ ସପ୍ତାହ କିମ୍ବା ଆଷାଢ଼ ପ୍ରଥମ ସପ୍ତାହରେ ବର୍ଷା ଆଦୌ ନ ହେଲେ ଏହି ନାଟ କରାଯାଏ । ଏକ ଝରଣା ବା ଜଳସ୍ରୋତରୁ ଦିଶାରୀ ଗାଁ ଲୋକଙ୍କ ସହ ଯାଇ ପୂଜା କଲାପରେ ଏକ ବେଙ୍ଗ ସଂଗ୍ରହ କରାଯାଏ । ଉକ୍ତ ବେଙ୍ଗଟିକୁ ହଳଦୀ ପାଣିଥିବା ଏକ ମାଟିହାଣ୍ଡିରେ ପୁରାଇ ଶିକାରେ ଓହଳାଇ ଦୁଇଟି ପିଲା ବୁହନ୍ତି । ଆମ୍ବ ଡାଳ ଖଣ୍ଡେଖଣ୍ଡେ ସେମାନେ ଧରିଥାନ୍ତି । ପିଲାମାନେ ଯେଉଁ ଘରକୁ ଯାଆନ୍ତି, ସେହି ଘରର ଲୋକେ ହଳଦୀ ପାଣି ତାଙ୍କ ଉପରେ ଢାଳିଥାନ୍ତି । ସେମାନେ ଗୀତ ଗାଉଥାଆନ୍ତି : "ନାଚ ନାଚରେ ବେଙ୍ଗଟି ରାନୀ, ରାତି ଭିତରେ ମାର୍‌ରେ ପାନି ।" ଶେଷରେ ଗାଁ ସାରା ବୁଲି ସାରିବାପରେ ଯେଉଁ ଜଳାଶୟରୁ ବେଙ୍ଗ ଧରିଥାଆନ୍ତି, ତାକୁ ନେଇ ସେଇଠି ଛାଡ଼ି ଦିଅନ୍ତି । ଲୋକ ବିଶ୍ୱାସ ଯେ ଏହାପରେପରେ, ନିଶ୍ଚିତ ବର୍ଷା ହୋଇଥାଏ ।

୧୦୩. ବେଜରନା - *ଦେ.ବି. :* ମଶାଣିକୁ ଯିବା ରାସ୍ତାର ଥିବା ଏକ ଖୋଲା ଜାଗା। ଯେଉଁଠି ମୃତବ୍ୟକ୍ତିର ବ୍ୟବହୃତ କିଛି ଜିନିଷ ଛଡ଼ାଯାଏ । ଜଣେ ପୁରୁଷଲୋକ ମଲାପରେ ତା'ର ମୁଣ୍ଡତଳେ ଦେବା ପୀଢ଼ା, ଚପଲ, ହାତରେ ଧରୁଥିବା ଡାଙ୍ଗ, ଗ୍ଲାସ, ଆଖିର ଚଷମା, କୁଲା, ମରିବାପରେ ରନ୍ଧା ହୋଇଥିବା ମୁଠେ ଚାଉଳ ସେଠାରେ ଛାଡ଼ି ଦିଆଯାଏ । ସେହି ଲୋକର ସ୍ତ୍ରୀ ହାତର କାଚ ସେହିଠାରେ ପିଟିପିଟି ଭାଂଗି ଦିଆଯାଏ । ଅନ୍ୟାନ୍ୟ ଗହଣା ଯଥା : ଗଳାର ମାଳି ଓ ଖଡ଼ୁ ଇତ୍ୟାଦି ସେଠାରେ ଫିଙ୍ଗାଯାଏ । ଯଦି ସ୍ତ୍ରୀ ଲୋକଟିଏ ମରିଯାଏ, ତେବେ ସେଠାରେ ଚଟୁ, ଅନ୍‌କା, ଡୁମୁଣି, ହାଣ୍ଡି, କୁଲା, ମୂଷଳ ଇତ୍ୟାଦି ସ୍ତ୍ରୀ ସଂପତ୍ତି ସେଠାରେ ଛାଡ଼ି ଦିଆଯାଏ । ପରେ ଦଶଦିନ ଡୁମା ଡାକିବାବେଳେ ଏହି ବେଢ଼୍‌ରନା ଠାରୁ ଡୁମା ଡାକିଡାକି ଘରକୁ ଅଣାଯାଏ । ଘରେ ଗୋଟିଏ ଥାଳିରେ ଚାଉଳଚୁନା ରଖି କଦଳୀପତ୍ର ଢାଙ୍କିଦିଆଯାଏ । ଡୁମା ଡାକି ଆସିବା ପରେ ସେଇ କଦଳୀପତ୍ର ଉଠାଇ ଜଗିଥିବା ଲୋକମାନେ ଦେଖନ୍ତି, ସେ ଚୁନାରେ କି ଖୋଜ୍ ପଡ଼ିଛି । ଯଦି ହାତୀ ଖୋଜ୍ କିମ୍ବା ଧାନ ଶିଣାର ଦାଗ ପଡ଼ିଥାଏ, ତେବେ ତାର ଆୟୁଷ ପୂରିବାରୁ ମରିଛି ବୋଲି ଧରାଯାଏ । କିନ୍ତୁ କୁକୁର, ବିଲେଇ କି ଚଢ଼େଇ ଖୋଜ୍ ପଡ଼ିଥାଏ, ତେବେ ପାଙ୍ଗନ୍ ଦ୍ୱାରା ସେ ଲୋକ ମରିଛି ବୋଲି ଧରାଯାଏ । ଏହି ବେଜରନା ଦେଇ ଲୋକେ ଯିବା ଆସିବା କରିବାପାଇଁ ଡରନ୍ତି ନାହିଁ। କିନ୍ତୁ ମଶାଣି ଦେଇ ଯିବା ଆସିବା କରିବାକୁ ଲୋକେ ଡରନ୍ତି ।

୧୦୪. ବେଜୁଣି - *ଦେ.ବି. :* ଗୁରୁମାଇ : ପୂଜାରିଣୀ : କନ୍ଧ, ପରଜା, ଗଦବା ଗୋଷ୍ଠୀର ପୂଜାରୀ ବା ଜାନିର ଭୂମିକା ପରି ବେଜୁଣି ମାନଙ୍କର ଭୂମିକା ମଧ୍ୟ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଏମାନେ ଆଦିବାସୀ ଜନଗୋଷ୍ଠୀର ଭବିଷ୍ୟତ ବକ୍ତା । ଏମାନେ ପୂଜା ପାର୍ବଣ ସମୟରେ ଗୀତ ଗାଇ ନୃତ୍ୟ କରନ୍ତି । ଏହି ସମୟରେ ଏମାନଙ୍କ ଦେହରେ ପୂର୍ବପୁରୁଷଙ୍କ ଡୁମ୍ବା ବା ଦେବୀ ଦେବତା ପ୍ରବେଶ କରି ଗ୍ରାମର ଭଲମନ୍ଦ କଥା କହିଥାନ୍ତି । ଏମାନେ ରୋଗର କାରଣ ଓ ଦୁର୍ବିପାକ ଇତ୍ୟାଦିର କାରଣ ମଧ୍ୟ ବତାଇଥାନ୍ତି । ଏମାନେ ନାଦିଆ ଅନ୍ନପ୍ରାସନ୍ନ ଇତ୍ୟାଦି କାର୍ଯ୍ୟ କରିଥାନ୍ତି । ତେଣୁ କନ୍ଧମାନେ ବିଶେଷକରି ଏଇ ଗୁରୁମାଇ ବା ବେଜୁଣୀମାନଙ୍କୁ ବେଶୀ ଗୁରୁତ୍ୱ ଦେଇ ମାନିଥାନ୍ତି । ଜଣେ ବେଜୁଣୀର ମୃତ୍ୟୁ ହେଲେ ସେମାନେ କହନ୍ତି :

"ସବା ଗିଡୁ ଡିଗିତେ, ବାଟୁ ବେଜୁଣୀ ଡୁଗିତେ ରସେ ।" ଯାହାର ଅର୍ଥ : "ବେଡ଼ାର ହିଡ଼ ଭାଂଗିଗଲା, ବଡ଼ ଗୁରୁମାଇ ଲୁଚିଗଲା ।"

ଅର୍ଥାତ୍ : ବେଡ଼ା ବା ଜମିର ହିଡ଼ ଭାଂଗିଗଲେ ଯେମିତି ପାଣି ନରହି ଜମି ନଷ୍ଟ ହୋଇଯାଏ, ସେମିତି ଗାଁର ବେଜୁଣୀଙ୍କ ମୃତ୍ୟୁ ଘଟିଲେ ଗାଁ ଉଜୁଡ଼ିଯାଏ ବା ନଷ୍ଟ ହୋଇଯାଏ ବୋଲି ଏମାନେ ବିଶ୍ୱାସ କରନ୍ତି । ଗୁରୁମାଇର ବୟସ ହୋଇଗଲେ ଗାଁର ଝିଅମାନଙ୍କ ଭିତରୁ ସେ ଏକ ନୂଆ ଗୁରୁମାଇ ନିର୍ବାଚନ କରିଥାଏ । ଗୁରୁମାଇର ମୃତ୍ୟୁପରେ ସେ ହିଁ ଦାୟିତ୍ୱ ତୁଲାଏ । ଲୋକେ ବିଶ୍ୱାସ କରନ୍ତି ଯେ, ଏମାନେ ଗୁଣି ଗାରେଡ଼ି ବିଦ୍ୟାରେ ପ୍ରବୀଣା । ସେଥିପାଇଁ ଏମାନେ ସମ୍ମାନ ସଂଗେସଂଗେ ଭୟର କାରଣ ମଧ୍ୟ ହୋଇଥାନ୍ତି ।

୧୦୫. ବେଡ଼ା - *ଦେ.ବି. :* ଚାଷଜମି ବା ବିଲ : ଆଦିବାସୀ ସମାଜରେ ଚାଷର ଗୁରୁତ୍ୱ ଖୁବ୍ ବେଶୀ । ଏମାନେ ପାହାଡ଼ ତଳି ଅଞ୍ଚଳରେ ଜଂଗଲ ପୋଡ଼ି ପୋଡୁଚାଷ ପାଇଁ ବେଡ଼ା ବା ଜମି ପ୍ରସ୍ତୁତ କରନ୍ତି । ଏହି ବେଡ଼ାକୁ ନେଇ ତାଙ୍କ ଲୋକଗୀତ ଓ ଲୋକକଥାର ଅନ୍ତ ନାହିଁ । ଏହି ବେଡ଼ାରେ କାମ କଲାବେଳେ ଧାଙ୍ଗଡ଼ା ଧାଙ୍ଗଡ଼ୀମାନେ ପରସ୍ପରକୁ ଲକ୍ଷ୍ୟକରି କରି ମନରୁ ପଦଯୋଡ଼ି ଗୀତ ଗାଇଥାନ୍ତି ।

ଯଥା : "ବେଡ଼ାରେ ପଶିଲି ଦାନ ନିଞ୍ଜାଇଲି
ପାତି ପାଛେ ଥେବି ଗଲି,
ଚୁନ୍‌ଟି ହଟାଇ ଧୂଙ୍ଗିଆ ଖାଇ ଛନେ ପୁରେ ନିହାରିଲି ।
ନିହାରି ହୋଇଲି ଛନ, ଦାନ ବେଡ଼ା ଥାନେ ଉତୁରି ଗାଲାକି
ପୁନିଆ ରାତିର ଜନ,
ପୁନିଆରାତିର କିବେଲି ଡାକିବି, ଅଜନା ଅଚିନା, ସାଙ୍ଗିଦିଅ ତମର ନାମ ।

୧୦୬. ବେଡ଼ାମୂଷା / ମଦୂରା ମୂଷା - *ଦେ.ବି. :* ଏକ ପ୍ରକାରର ମୂଷା । ଏମାନେ ଗାଡ଼ଗା ମୂଷାଠାରୁ ଆକାରରେ ଟିକିଏ ବଡ଼ । ରଂଗ କଳା । ବେଡ଼ାମାନଙ୍କରେ ବାସ କରନ୍ତି । ବାଡ଼ି ସନ୍ଧିରେ ଗାତକରି ରହନ୍ତି । ଏହି ଗାତ ଖୁବ୍ ଲମ୍ବା ସୁଡ଼ଙ୍ଗ ଭଳି ହୋଇଥାଏ । ଭିତର ଅଂଶଟା ଚଉଡ଼ା ଗାଡ଼ । ଫସଲ ସଞ୍ଚି ରଖିବା ପାଇଁ ସେ ଏପରି କରିଥାଏ । ଗୋଟିଏ ଗୋଟିଏ ଗାଡ଼ ଭିତରେ ୫ରୁ ୬କେ.ଜି. ପର୍ଯ୍ୟନ୍ତ ଫସଲ

ଗାଡ଼ମୂଷା ସଞ୍ଚି ରଖିଥାଏ । ଏହି ଗାଡ଼ରେ ତିନି ଚାରିଟା ଛୋଟ ମୁହଁ ଥାଏ । ସବୁ ମୁହଁକୁ ଚୁଣ୍ଟିବା ପରେ ଯାଇ ଏହି ମୂଷା ଧରାଯାଇପାରେ । ଏହା ଆଦିବାସୀମାନଙ୍କର ପ୍ରିୟ ଖାଦ୍ୟ । ଏପରିକି ଫସଲ ସମୟରେ ଗାଡ଼ ମୂଷାମାନଙ୍କୁ ଧରି ଆଦିବାସୀମାନେ ଗୋଟିଏ ହାଣ୍ଡିରେ ରଖି ପୋଷା ମନାଇଥାନ୍ତି । ଏମାନେ ପ୍ରାପ୍ତ ବୟସ୍କ ହେଲେ ପ୍ରାୟ ୨୫୦ ଗ୍ରା.ରୁ ୫୦୦ଗ୍ରା. ହୋଇଥାନ୍ତି । ବଡ଼ ହେଲାପରେ ଏମାନଙ୍କୁ ଖିଆଯାଏ ।

୧୦୭. ବେଠି - *ଦେ.ବି. :* ବିନା ମଜୁରିରେ କରା ଯାଉଥିବା ଖଟେଣି ବା ସେବା । ରାଜା ରାଜୁଡ଼ା ତଥା ବ୍ରିଟିଶ ଶାସନ ସମୟରେ ରାଜକର୍ମଚାରୀ, ପାତ୍ର, ମନ୍ତ୍ରୀ, ନାୟକ, ଗିବିନି, ଗାର୍ଡ୍ରୁ ଆଦି ଘରେ କିମ୍ବା ସେମାନଙ୍କ କ୍ଷେତରେ ବିନା ପାରିଶ୍ରମିକରେ କରିବା କାମକୁ ବେଠି ଏବଂ ଉକ୍ତ କାମ କରିବା ଲୋକକୁ ବେଠିଆ ବୋଲି କୁହାଯାଉଥିଲା । ବର୍ତ୍ତମାନ ମଧ୍ୟ ବିନା ପାରିଶ୍ରମିକରେ କାହା ଘରେ କିଛି ଶାରୀରିକ ଶ୍ରମଯୁକ୍ତ କାମ କଲେ ତା'କୁ 'ବେଠିଆ ଖଟିବା' ବା ବେଠି କାମ ବୋଲି କୁହାଯାଉଅଛି ।

୧୦୮. ବେଣ୍ଟ - *ଦେ.ବି. :* (ଶିକାରକୁ ଯିବା) ଶିକାର : ଦେ.କ୍ରି. ଶିକାର ଯିବା, ଶିକାର କରିବା । ଇଂ.- Hunt, go for hunting.

ଯେତେବେଳେ ଆଦିବାସୀ ଲୋକମାନେ କୃଷିକର୍ମ କରି ଶିଖିନଥିଲେ, ସେମାନେ ଜଂଗଲର ଜୀବଜନ୍ତୁ ଶିକାର କରି ନିଜର ଖାଦ୍ୟାଭାବ ମେଣ୍ଟାଉଥିଲେ । ସଂପ୍ରତି ଜଂଗଲ ଓ ଜଂଗଲ ଜନ୍ତୁଙ୍କ ଅଭାବ ସେମାନଙ୍କୁ ବଞ୍ଚିବାର ଭିନ୍ନଭିନ୍ନ ଦିଗଗୁଡ଼ିକ ସହିତ ପରିଚିତ କରାଇଥିଲେ ମଧ୍ୟ ସେମାନେ ଚୈତ୍ର ପର୍ବ ବା ଚଇତିପରବ ଅବସରରେ ଅତୀତ ସ୍ମୃତିକୁ ଜାଗ୍ରତ ରଖିବା ପାଇଁ ଶିକାର କରିବାକୁ ଦଳଦଳ ହୋଇ ବାହାରିଥାନ୍ତି । ଏହି ଯାତ୍ରାକୁ 'ବେଣ୍ଟଯାତ୍ରା' କୁହାଯାଏ । ଚଇତି ପରବ ପରେ ବୈଶାଖ ମାସରେ ଏହି ବେଣ୍ଟ୍ ପରବ ଅନୁଷ୍ଠିତ ହୋଇଥାଏ । କୋୟାମାନେ ଏହାକୁ ବିଜାପାଣ୍ଡୁ କହିଥାନ୍ତି । (ଦ୍ର. 'ଚଇତି ପରବ' ।)

୧୦୯. ବେଣ୍ଟ୍ ଲୁଚାନି - *ଦେ.ବି. :* ଏକ ଖେଳ ବିଶେଷ । ଏହି ଖେଳରେ ଗୋଲାକାର ହୋଇ ପୁଅଝିଅ ମାନେ ବସିଥାନ୍ତି । ଜଣେ ପିଲା ଗାମୁଛାକୁ ବେଣ୍ଟ କରି ବସିଥିବା ପିଲାଙ୍କ ପଛପଟେ ବୁଲୁବୁଲୁ ଆଉ ଜଣେ ପିଲାର ପଛପଟେ ଲୁକ୍କାୟିତ ଭାବେ ବେଣ୍ଟଟିକୁ ରଖିଥାଏ । ବୁଲୁଥିବା ପିଲାଟି ଶୀଘ୍ରଶୀଘ୍ର ବୁଲୁଥାଏ । ଗୋଟିଏ

ରାଉଣ୍ଡ୍ ଶେଷ ହେବାପରେ ପଛରେ ବେଣ୍ଟ ରଖାଯାଇଥିବା ପିଲାଟିକୁ ସେହି ବେଣ୍ଟରେ ସେ ବାଡ଼େଇଥାଏ । ବେଣ୍ଟ ପଛରେ ରଖାଯାଇଥିବା ପିଲାଟି ତା ପଛରେ ବେଣ୍ଟଥିବା ଜାଣିପାରିଲେ ବେଣ୍ଟ ରଖି ବୁଲୁଥିବା ପିଲାଟିକୁ ବେଣ୍ଟରେ ପିଟିଥାଏ । ଏହି ଖେଳଟି ଓଡ଼ିଶାର ଅନ୍ୟ ଅଞ୍ଚଳର ରୁମାଲଚୋରି ଖେଳପରି ଅନୁଷ୍ଠିତ ହୁଏ ।

୧୧୦. **ବେନିଆ ଜୁପା** - *ଦେ.ବି. :* ଲମ୍ବା ବେଣୀ । ଇଂ.- Long Tail.

ବ୍ୟବହାର : କାୟ ନିମାନ୍ ତମର୍ ବେନିଆ ଜୁପା ! (ତୁମର ଲମ୍ବାବେଣୀ କେତେ ସୁନ୍ଦର)

୧୧୧. **ବେରଲାସେନୁ** - *ଦେ.ବି. :* ବେଳ ବା ସମୟ କରୁଥିବା ସୂର୍ଯ୍ୟ ଦେବତା । କନ୍ଧମାନେ ଏହି ଦେବତାଙ୍କୁ ବିଭିନ୍ନ ପର୍ବପର୍ବାଣୀ ସମୟରେ ପ୍ରଥମେ ବଳି ଦେଇ ପୂଜା କରିଥାନ୍ତି । ଅନ୍ୟାନ୍ୟ ସଂପ୍ରଦାୟର ଧର୍ମଦେବତା ହେଉଛନ୍ତି 'ବେର୍ଲା ପେନୁ' ।

୧୧୨. **ବେରନ୍** - *ଦେ.ବି. :* ସଭା । ଗ୍ରାମର ବାଲିଯାତ୍ରା, ଘଣ୍ଟଯାତ୍ରା, ବଉଲାନି ନୂଆଖିଆ ପ୍ରଭୃତି ପର୍ବପର୍ବାଣୀ ସମ୍ବନ୍ଧୀୟ ବିଚାରବିମର୍ଷ ପାଇଁ ଗଞ୍ଜା / ଚଲାନ୍ ଆହ୍ୱାନ କରିଥିବା ପଲ୍ଲୀ ସଭାକୁ ବେରନ୍ କୁହାଯାଏ ।

(ଦ୍ର. : ବେହରଣ / ଭେରାମଣ ।)

୧୧୩. **ବେରପଟ୍‌ଟା** - *ଦେ.ବି. :* ଦେଶିଆ ସମାଜରେ ଗର୍ଭବତୀ ମହିଳାକୁ 'ବେରପଟ୍‌ଟା' କୁହାଯାଏ । ଦେଶିଆ ସମାଜରେ ଏମାନଙ୍କୁ ସ୍ୱତନ୍ତ୍ର ସମ୍ମାନ ଦେଇ ଯତ୍ନ ନିଆଯାଇଥାଏ ।

୧୧୪. **ବେଲ୍‌ଗୁଡ଼ / ବେଲାଗୁଡ଼** - *ଦେ.ବି. :* ଘଣାରେ ପେଡ଼ା ଯାଇଥିବା ଗୋଲାକୃତି ଗୁଡ଼ ଟେଳା । ଆଦିବାସୀ ଅଞ୍ଚଳରେ ଆଖୁପେଡ଼ି ସେଥିରୁ ଉତ୍କୃଷ୍ଟ ମାନର ଗୁଡ଼ ଆମଦାନୀ କରାଯାଇଥାଏ । ଏହି ଗୁଡ଼ ଟେଳା ମାନ ଗୋଲ ହୋଇଥାଏ । ଏହା ସହ ଚାଉଳ ଚୁନା ମିଶା ଯାଇଥାଏ ।

ଏ ସଂପର୍କରେ ଗୀତରେ ରହିଛି :

"ବେଲାଗୁଡ଼ ପରି ତମର ବାଡ଼ର କେନ୍ଦୁ
ଆସା ଆଜ୍‌କାଇ ଆମେ ଗୋଲାପି ବାନ୍ଧୁ ।"

୧୧୫. ବେଲାରି - *ଦେ.ବି. :* ନବରଂଗପୁର ଜିଲ୍ଲା ଝରିଗାଁ ବ୍ଲକ୍‌ର ଚନ୍ଦନଧାରା ଜଳପ୍ରପାତରୁ ବାହାରିଥିବା ନଦୀର ନାମ । ଏହି ଜଳପ୍ରପାତଟି ଏକ ପର୍ଯ୍ୟଟନ ସ୍ଥଳରେ ପରିଣତ ହୋଇଛି । ଏହି ନଦୀଟି କିଛି ଦୂର ପ୍ରବାହିତ ହେବାପରେ ଭାସ୍କେଲ୍‌ନଦୀ ସହ ମିଳିତ ହୋଇଛି ।

୧୧୬. ବେହରଣ - *ଦେ.ବି. :* ସଦର-ସିନ୍ଧିବର୍ : ସର୍ବସାଧାରଣ ବସିବା ସ୍ଥାନ : ଗ୍ରାମ୍ୟ ଅଦାଲତ : ସଭାସ୍ଥଳୀ । ସବୁ ଶ୍ରେଣୀର ଆଦିବାସୀ ଜନଗୋଷ୍ଠୀମାନଙ୍କ ମଧ୍ୟରେ ଏହି ଗ୍ରାମ୍ୟ ଅଦାଲତ ପ୍ରଥାଟି ରହିଛି । ପ୍ରତ୍ୟେକ ଗ୍ରାମରେ ଏପରି ଏକ ସ୍ଥାନ ଥାଏ, ଯେଉଁଠାରେ ଗୋଟିଏ ବଡ଼ ଚଟକା ପଥରର ଚଟାଣ ଥାଏ । ଏହାକୁ ପରଜା, ଗଦବା, ଭୂମିଆ, ଆଦିବାସୀମାନେ 'ବେହରଣ' କହୁଥିବାବେଳେ କନ୍ଧମାନେ ସଦର ଓ ବଣ୍ଡା, ଡିଡାୟୀ, କୋୟା ପ୍ରଭୃତି 'ସିନ୍ଧିବର୍' ବୋଲି କହିଥାନ୍ତି । ଏହା ବାସ୍ତବରେ ଆଦିବାସୀମାନଙ୍କ ସାମାଜିକ, ବୈବାହିକ, ଜାତିଗତ, ବୈଚାରିକ ଓ ଧାର୍ମିକ ବିଷୟ ଉପରେ ବିଚାର ବିମର୍ଷ ବା ନିଷ୍ପତ୍ତି ନେବା ଓ ଦଣ୍ଡବିଧାନ ନିମନ୍ତେ ବସୁଥିବା ଗ୍ରାମ୍ୟସଭା ବା ଗ୍ରାମ ଅଦାଲତ । ଏହି ଗ୍ରାମ ଅଦାଲତ ଯେଉଁ ନିଷ୍ପତ୍ତି ନିଏ ତାକୁ ଗ୍ରାମର ସମସ୍ତେ ବିନା ପ୍ରତିବାଦରେ ମାନି ନେଇଥାନ୍ତି । ଏହି ଗ୍ରାମ ସଭାରେ କେବେ କେମିତି କେଉଁ ତିଥିରେ ପର୍ବ ପାଳନ କରାଯିବ ସେ ସଂପର୍କରେ ସ୍ଥିର ହେବା ସହ ନାଚଗୀତ ବିବାହ ଉତ୍ସବ, ଜାନିଯାତ୍ରା ଇତ୍ୟାଦି ବିଷୟରେ ଦିନବାର ମଧ୍ୟ ନିର୍ଦ୍ଧାରିତ ହୋଇଥାଏ । ଏଥିରେ ଗ୍ରାମ ନାୟକ ମୁଖ୍ୟ ଭୂମିକା ନେଇଥାଏ । ବେଣ୍ଟ ପରବରେ ଜନ୍ତୁ ଶିକାର ପରେ ତାହାକୁ ଏହି ସ୍ଥାନରେ ରଖାଯାଇ ନାଚଗୀତ, କରାଯାଇଥାଏ । ବେରଣ୍ଡମୁଣ୍ଡା ବା ସିନ୍ଧିବୋର୍‌ର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ହୁଣ୍ଡିଦେବୀ । କୋୟାମାନଙ୍କ ବେରଣ୍ଡମୁଣ୍ଡା ବା ସଦର୍‌ରେ ପିତୃପୁରୁଷଙ୍କ ସ୍ମାରକୀ ରୂପେ ଲମ୍ବା ଗୋଜିପଥର ଓ ସ୍ତ୍ରୀମାନଙ୍କ ସ୍ମରଣରେ ଚଟକା ଗୋଲାକାର ପଥର ରଖାଯାଇଥାଏ । ଅନ୍ୟ କେତେକ ସଂପ୍ରଦାୟରେ ମଧ୍ୟ ଏହା ପ୍ରଚଳିତ । ଆଦିବାସୀ ଚଇତ ପରବରେ ଗାଏ :

'ତୋର ଆୟା ବୁଆକେ ସର୍‌ତେ ଡାକ୍
ସଦରେ କାଟିବ ନାକ୍ ।'

୧୧୭. ବୋଚକନ୍ଦା - *ଦେ.ବି. :* ବଚଗଛର ମୂଳ ବା କନ୍ଦା । ଏହାକୁ କଣ୍ଠ ପରିଷ୍କାର ରଖିବା ପାଇଁ ଚୋବା ଯାଇଥାଏ । ଆଦିବାସୀ ଲୋକମାନେ ମୂର୍ଚ୍ଛା ରୋଗୀପାଇଁ

ଏହି ବଚକୁ ବାଟି ପିଆଇ ଦେଇଥାନ୍ତି । ଏହା ଫଳରେ ଯଥାଶୀଘ୍ର ମୂର୍ଚ୍ଛାରୋଗୀ ଆରୋଗ୍ୟଲାଭ କରିଥାଏ ।

୧୧୭. **ବୋଜ୍‌ବେଟ୍** - *ଦେ.ବି. :* ବରପକ୍ଷ କନିଆ ପକ୍ଷକୁ ଦେଉଥିବା ଭେଟି ବା ଉପହାର । ବଣପକ୍ଷ କନ୍ୟାପକ୍ଷଙ୍କୁ ବାହାଘର ସମୟରେ ବିଭିନ୍ନ ସାମଗ୍ରୀ ପ୍ରଦାନ କରିଥାନ୍ତି । ଏଇ ସାମଗ୍ରୀ ମଧ୍ୟରେ ଚାଉଳ, ଛେଳି, ଘୁଷୁରି, କୁକୁଡ଼ା, ମଦ, ପନିପରିବା, ଲିଆ, ଲୁଗାପଟା ରହିଥାଏ । ଏହାକୁ 'ବୋଜ' ବା 'ବୋଜ୍‌ବେଟ୍' କହିଥାନ୍ତି । ବରପକ୍ଷଙ୍କ ଉକ୍ତ ସାମଗ୍ରୀରେ କନ୍ୟାପକ୍ଷ ଭୋଜି କରି ଖାଇଥାନ୍ତି ।

୧୧୮. **ବୋରିଗୁମ୍ମା** - *ଦେ.ବି. :* କୋରାପୁଟ ଜିଲ୍ଲାର ଏକ ବ୍ଲକ୍‌ର ନାମ । ବରି / ବୋରି (ଖାଲଖମା / ଉଚ୍ଚନୀଚ ଜମିଥିବା) ଗୁମ୍ମା (ସାନଗାଁ) ଖାଲଖମା ପୂର୍ଣ୍ଣ ଗାଁ । ବୋଧହୁଏ ଏହି ଗ୍ରାମ ବସାଇଲା ବେଳେ ଏହି ଗ୍ରାମର ଚତୁର୍ଦ୍ଦିଗରେ ବହୁ ଖାଲ ଢିପ ଭରା ଭୂମି ଥିଲା । ସଂପ୍ରତି ଏହା ବ୍ଲକ୍ ସଦର ମହକୁମା ହେଇଛି ବୋରିଗୁମ୍ମା ଏକ ପେଣ୍ଠ ଜାଗା, ଏହାର ପୂର୍ବକୁ ଜୟପୁର, ପଶ୍ଚିମକୁ ଉମରକୋଟ, ଦକ୍ଷିଣକୁ କୋଟପାଡ଼ ଓ ଉତ୍ତରକୁ କାମତା କୁମୁଲିକୁ ରାସ୍ତା ଯାଇଛି ।





୧.  ଭଇରାଗଛ - *ଦେ.ବି. :* ଏହା ଏକପ୍ରକାର ବୁଦା ଜାତୀୟ ଗଛ । ଇଂ.- A type of medicinal

ଏହାର ଔଷଧୀୟ ଗୁଣ ପାଇଁ ଏହା ଉଭୟ ଆଦିବାସୀ ଓ ଗଡ଼ିଆ ମାନଙ୍କର ପ୍ରିୟ ।

ଏହି ଗଛର ଚେର ଚାରିଆଡ଼କୁ ମାଡ଼ି ଯାଉଥିବାରୁ ଏହାକୁ ଆଦିବାସୀ ଲୋକମାନେ 'ଭଇରା ମାଲ' ବୋଲି କହିଥାନ୍ତି । ଏହି ଗଛର ଚେରକୁ ଛେଚି ସେଥିରୁ ମିଳୁଥିବା ରସକୁ ପାଣିରେ ମିଶାଇ ବାଇଗଣ, ବିନସ୍, ବନ୍ଧାକୋବି ଆଦି ପନିପରିବା ଗଛରେ ସିଂଚନ କଲେ ଏସବୁ ଗଛଗୁଡ଼ିକ କାଣ୍ଡ ବିନ୍ଧାପୋକ ଦାଉରୁ ରକ୍ଷାପାଇଥାନ୍ତି । ଏହି ଗଛର ଚେରକୁ ଛେଚି ରସ ବାହାର କରି ପାଣିରେ ମିଶାଇ ଗାଈ ମହିଁଷ ପ୍ରଭୃତିଙ୍କୁ ଧୋଇଦେଲେ ସେମାନଙ୍କ ଦେହରୁ ଟିଙ୍କ, ଉଙ୍କୁଣିଆ ପୋକ ଇତ୍ୟାଦି ଛାଡ଼ି ଯାଇଥାଏ ।

୨.  ଭଜିର୍ - ଭତ୍ରୀ : ହାଲବି : ବିଶେଷଣ : ଉଷାକାଳ ସୂର୍ଯ୍ୟୋଦୟ ସମୟ (ଉଜ୍ଜ୍ୱଳ ହେବା) ଉଦାହରଣ : ଭଜିର ହେଇସିଆଚେ । (ଉଜ୍ଜ୍ୱଳ ହୋଇ ଆସୁଛି) ।

୩.  ଭଣ୍ଡାର ସାଲିଆ - *ଦେ.ବି. :* ଭଣ୍ଡାର ଘର ଦାୟିତ୍ୱରେ ଥିବା ବ୍ୟକ୍ତି । ବିବାହ ଭୋଜିଦିନ ବ୍ୟବହାର ହେବାକୁ ଥିବା ଡାଲି, ଚାଉଳ, ପରିବାପତ୍ର, ଖଲି ଦନା, ମଦ ଠାରୁ ଆରମ୍ଭ କରି ଟଙ୍କା ପଇସା ଯାଏ ଯାବତୀୟ ଜିନିଷର ଦାୟିତ୍ୱରେ ଭଣ୍ଡାର ସୁଲିଆ ରହିଥାଏ । ତାର ଅଗୋଚରରେ କିମ୍ବା ବିନା ଅନୁମତିରେ କୌଣସି ଜିନିଷ ବ୍ୟବହାର ହୁଏ ନାହିଁ । ସେ ନିଷ୍ଠାର ସହିତ ସମସ୍ତ କାର୍ଯ୍ୟ ତୁଲାଇଥାଏ ।

୪.  ଭତ୍ରା - *ଦେ.ବି. :* ସ୍ୱତନ୍ତ୍ର ଭାଷା ବ୍ୟବହାର କରୁଥିବା ଏକ ଆଦିବାସୀ ଗୋଷ୍ଠୀ । ଏହି ଆଦିବାସୀ ଗୋଷ୍ଠୀ ଓଡ଼ିଶାର କୋରାପୁଟ ଜିଲ୍ଲାର କୋଟପାଡ଼, କୁନ୍ଦ୍ରା, ବୋରିଗୁମ୍ମା, କୁମୁଲି, କାମତା ତଥା ନବରଂଗପୁର ଜିଲ୍ଲାରେ ତଥା ଛତିଶଗଡ଼ରେ

ବହୁ ସଂଖ୍ୟାରେ ବାସ କରନ୍ତି । ଏହି ଭତରାମାନେ ଜୟପୁର ରାଜାଙ୍କ ଅନୁମତି କ୍ରମେ ପଇତା ଧାରଣ କରିଥାଆନ୍ତି । କୁହାଯାଏ ଯେ ଏମାନଙ୍କ ପୂର୍ବପୁରୁଷ ବସ୍ତର ଅଞ୍ଚଳରୁ ଓଡ଼ିଶାକୁ ଆସିଥିଲେ । ଏମାନେ ଗୋତ୍ର ସନ୍ତକ ଅନୁସାରେ ନିଜକୁ ବଡ଼ ଭତରା, ସାନଭତରା, ପିତା ଭତରା ନାମରେ ଚିହ୍ନିତ କରିଥାନ୍ତି । ଏମାନେ ପାର୍ବତ୍ୟ ଆଦିବାସୀ ଗୋଷ୍ଠୀଙ୍କ ତୁଳନାରେ ଅଧିକ ପରିମାଣରେ ମାର୍ଜିତ । ଏମାନଙ୍କ ମଧ୍ୟରେ ସଗୋତ୍ର ବିବାହ ନିଷିଦ୍ଧ । ଭତରୀ ନାମରେ ଏକ ଉପଭାଷାର ବ୍ୟବହାର ଏମାନେ କରିଥାନ୍ତି । ମାଲକାନଗିରିର କୋୟାମାନଙ୍କ ଭଳି ରାଜନୈତିକ ଭାବେ ମଧ୍ୟ ଏମାନେ ଆଗୁଆ । ଶହୀଦ ବଗାପୂଜାରି, ରବି ସିଂ ମାଝୀ ଓ ସନୁମାଝୀ ଆଦି ସ୍ୱାଧୀନତା ସଂଗ୍ରାମୀମାନେ ଏହି ଭତ୍ରାଗୋଷ୍ଠୀର ।

୫. ଭତ୍‌ରୀ - *ଦେ.ବି. :* ଭତ୍‌ରା ଗୋଷ୍ଠୀର ଆଦିବାସୀମାନେ ବ୍ୟବହାର କରୁଥିବା ଉପଭାଷା । ଏହାର ନିଜସ୍ୱ ଲିପି ନାହିଁ । ଏହା ଓଡ଼ିଆ, ହାଲ୍‌ବୀ ଓ ଛତିଶଗଡ଼ି ଶବ୍ଦ ସମ୍ଭାରକୁ ନେଇ ଗଠିତ ଏକ 'ଲିଙ୍ଗୁଆ ଫ୍ରାଙ୍କା' ବା ଉପଭାଷା, ଯାହା ଓଡ଼ିଆ ଓ ହାଲ୍‌ବୀ ମଧ୍ୟରେ ସଂପର୍କ ସ୍ଥାପନ କରିଥାଏ । କୋରାପୁଟର ଓଡ଼ିଆ ଅଧିବାସୀଙ୍କ ଦେଶିଆ ଉପଭାଷା ଠାରୁ ଭତ୍‌ରୀ (ଭାତରୀ) ଉପଭାଷାର ପ୍ରଭେଦ ଅତି ସାମାନ୍ୟ ।

କୋରାପୁଟ ଭତରୀ ଉପଭାଷାରେ ମଧ୍ୟ ସ୍ଥାନୀୟ ବୋଲି ଦେଖିବାକୁ ମିଳେ । ଇନ୍ଦ୍ରାବତୀ ନଦୀର ଦକ୍ଷିଣ ପାରି କୋଟପାଡ଼ ଅଞ୍ଚଳରେ ଭତରୀ ଉପଭାଷାରେ କେତେକ ସ୍ୱାତନ୍ତ୍ର୍ୟ ଦେଖାଯାଏ । କୋଟପାଡ଼ ଅଞ୍ଚଳର ଭତରୀକୁ 'କୋଟବିସ୍ ଭତରୀ' ଓ ନବରଂଗପୁର ଜିଲ୍ଲାର ଭତରୀକୁ 'ନିଲ୍‌ପୁଟିଆ ଭତ୍‌ରୀ' କୁହାଯାଏ ।

(କ) କେତେକ ଭତରୀ ଶବ୍ଦ (ନିଲପୁଟିଆ ତାଲୁକ ନବରଂଗପୁର) ଚିନଲା ପାନି - ଚୁଆଁପାଣି, ଗୁଲିଗାଓ - ସମସ୍ତ ଗ୍ରାମ, ଗଡ଼ିଆ - ସହରାଞ୍ଚଳରେ ବାସ କରୁଥିବା ଲୋକ, ବାଙ୍ଗା - ବାଇଗଣ, ଅଗଲତେଗଲା - ବଳକା ହୋଇଗଲା, ଆଗତୁ-ପୂର୍ବରୁ, ଆଗମୀ - ପ୍ରସୂତୀ, ଡଣ୍ଡା (ଡାଣ୍ଡା) - ଆଖୁ, ତେବ୍ (ଥେବ୍) - ରହ, ଅଦାଲବା - ଭାତରାନ୍ଧିବା, ବିଲଗଲା-ମିଳେଇଗଲା, ସଙ୍ଗେଇବା - ରଖିବା, ବିଡ଼ିବା-ମିଶିବା, ବିନ୍-ବିଲ, ଏସୁ-ଏବର୍ଷ, ପରୁ-ଆସନ୍ତା ବର୍ଷ ।

(ଖ) କୋଟବିସ୍ ତାଲୁକ (କୋଟପାଡ଼ ଅଞ୍ଚଳରେ) କେତେକ ଭତରୀ ଶବ୍ଦ : ବୁଇଲା-ବଳଦ, ବାଏଲ (ବାୟଲେ)- ପତ୍ନୀ, ସ୍ତ୍ରୀ; ନାଙ୍ଗର-ଲଙ୍ଗଳ, ଯତ୍‌ବା-ଚସିବା, ପୋଡ୍-ଭଇଁସା, ଦି-ଦେଇ, ନି-ନେଇ ଇତ୍ୟାଦି ।

୬. **ଭାଇଭଉନି ଡଙ୍ଗର୍** - *ଦେ.ବି. :* ଏକ ପର୍ବତ ବିଶେଷର ନାମ । ବୈପାରୀଗୁଡ଼ା ବ୍ଲକ୍‌ର ଖେମାପଡ଼ା ମୌଜାରେ ଏହି ପର୍ବତ ଦୁଇଟି ଅବସ୍ଥିତ । ଉକ୍ତ ପାହାଡ଼ ଦୁଇଟି ଗୋବିନ୍ଦପଲ୍ଲୀ ନିକଟସ୍ଥ ବନାବାଙ୍କଠାରୁ ୩/୪ କି.ମି. ଏବଂ ଖେମାବେଢ଼ା ଗ୍ରାମଠାରୁ ବି ୩କି.ମି. ଦୂରରେ ଅବସ୍ଥିତ । ଭୂମିଆ ସଂପ୍ରଦାୟର ଲୋକେ ଏଠି ଭାଇଭଉଣୀ ଦେବତାଙ୍କୁ ପୂଜା କରନ୍ତି । ଏଠି ଭୀମାଖୋଜ (ଚାଞ୍ଚଡ଼ା ପଥରରେ ଥିବା ଏକ ବଡ଼ ପଦଚିହ୍ନ)କୁ ମଧ ପୂଜା କରାଯାଏ । ଏଠାରେ ଏକ ବଡ଼ପଥରରେ ସଭାରେ ବସିବା ଭଳି ପଥର ମାନ ଅଛି । ଦୁଇଟି ବଡ଼ ପଥର ଭାଇ ଓ ଭଉଣୀ, ପିଠି କରି ଠିଆ ହେବା ଭଳି ରହିଛନ୍ତି । ଶିକାରକୁ ଯିବା ଲୋକ, କାଠ, ଶଗଡ଼ ଓ ବାଉଁଶ ଶଗଡ଼ ନେବା ଲୋକ ଏହି ଭାଇଭଉଣୀଙ୍କୁ ପୂଜା କରିଥାଆନ୍ତି । କିମ୍ବଦନ୍ତୀ ଅଛି ଯେ : ଏହି ପାହାଡ଼ ନିକଟ ଏକ ଗ୍ରାମରେ ଦୁଇ ଭାଇଭଉଣୀ ଗୋଟିଏ ଘରେ ରହୁଥିଲେ । ଦିନେ ସେମାନେ ମୁଣ୍ଡା ବାନ୍ଧିବାକୁ କଲେ । ଭଉଣୀ ପାଣି ଆଣି କାଦ ଚକୁଟିଲେ ଭାଇ ମୁଣ୍ଡା ବାନ୍ଧୁଥାଏ । କିଛି ସମୟ ପରେ ଭଉଣୀ ଘରକୁ ରୋଷେଇ କରିବାକୁ ଗଲା । କିଛି ସମୟ ମୁଣ୍ଡା ବାନ୍ଧିବା ପରେ ଭାଇକୁ ଭୋକ ଲାଗିଲା । ଦେଖିଲା ଭଉଣୀ ଆସିଲା ନାହିଁ । ସେ ଭଉଣୀକୁ ଖୋଜିବାକୁ ବାହାରିଲା । ଏକ ଝରଣା ଦେଇ ଗଲାବେଳେ ଦେଖିଲା ଭଉଣୀ ଗାଧୋଉଛି । କେଡ଼େ କଥା ହେଲା । ଭାଇ ଇଆଡ଼େ କୁଆଡ଼େ ? ମୋର ଗାଧୋଇବାଟା ଦେଖିଲା ବୋଲି ଭଉଣୀ ଲାଜରେ ପଥର ହୋଇଗଲା ଏବଂ ଭାଇ ବି ଭଉଣୀର ଗାଧୁଆ ଦେହ ଦେଖିଲା ବୋଲି ପଥର ହୋଇଗଲା । ଭାଇଭଉଣୀ ଡଙ୍ଗାର ନାମରେ ଏହି ପର୍ବତ ଦୁଇଟି ଓ ପଥର ଦୁଇଟି ଖ୍ୟାତ । ସ୍ୱାଧୀନତା ସଂଗ୍ରାମ ବେଳେ ୧୯୪୨ ସାଲରେ ପୁରୀ ଜିଲ୍ଲାର ଜଣେ ସ୍ୱାଧୀନତା ସଂଗ୍ରାମୀ ଘନଶ୍ୟାମ ରାଉତରାୟ ଏଠି ଆସି ଆତ୍ମଗୋପନ କରିଥିଲେ ।

୭. **ଭାଜି** - *ଦେ.ବି. :* ବିଭିନ୍ନ ପ୍ରକାର ଶାଗ । ଦେଶିଆ ଭାଷାରେ ଶାଗର ଅର୍ଥ ବ୍ୟଞ୍ଜନ । ଆଦିବାସୀମାନେ ଯେଉଁ ଶାଗଗୁଡ଼ିକ ଖାଦ୍ୟଭାବେ ବ୍ୟବହାର କରନ୍ତି,

ସେଗୁଡ଼ିକ ହେଲା- ମୁନିଗା ଭାଜି, କୁମୁଡ଼ାଭାଜି, ପାଲଙ୍ଗଭାଜି, କଚିଭାଜି, କଇଲାରି ଭାଜି, କଲମ ଭାଜି, ମାଲିଭାଜି (କୋଶଳା ଶାଗ) ବେନୁଆଭାଜି, ଖଡ଼ାଭାଜି, ଚକଟା ଭାଜି, କେନା ଭାଜି, ଚାନ୍ଧ ଭାଜି ଇତ୍ୟାଦି । ଏହିସବୁ ଭାଜିକୁ ଲୁଣ, ମରିଚ ସହ ଚାଉଳ ଚୁନା ଦେଇ ରାନ୍ଧିଥାନ୍ତି । ଏହା ଆଦିବାସୀ ମାନଙ୍କର ଅତ୍ୟନ୍ତ ପ୍ରିୟ ଖାଦ୍ୟ ।

୮. **ଭାତନାୟକ** - *ଦେ.ବି. :* ଜାତି ବା କୁଳର ମୁଖ୍ୟ ନାୟକ । ମୁଂଡା ବା ଅଞ୍ଚଳଭିତ୍ତିରେ ଜଣେ ଭାତନାୟକ ଥାଆନ୍ତି । ଆଦିବାସୀ ସମାଜରେ ଜାତିଚ୍ୟୁତ ବ୍ୟକ୍ତିକୁ ପୁନଶ୍ଚ ଜାତିରେ ମିଶାଇବାର କର୍ମାନୁଷ୍ଠାନ କରିଥାଏ, ସେହି ସମ୍ମାନିତ ବ୍ୟକ୍ତି ହେଉଛନ୍ତି ଭାତନାୟକ ।

କୁଳର ଯେକୌଣସି କାର୍ଯ୍ୟ ନିଜ ଇଲାକା ଭିତରେ ଅନୁଷ୍ଠିତ ହେଲେ କାହାକୁ ଡକାଯାଉ ବା ଡକା ନଯାଉ, ଉକ୍ତ ଅନୁଷ୍ଠାନରେ ଭାତ ନାୟକ ନିଶ୍ଚେ ଉପସ୍ଥିତ ହୋଇଥାନ୍ତି । ସେ ହାତରେ ବାଡ଼ି ଧରିଥାନ୍ତି ଏବଂ ମୁଣ୍ଡରେ ପଗଡ଼ି ବାନ୍ଧିଥାନ୍ତି । ଯେକୌଣସି ଶୁଭ ଓ ଦଶାହ କର୍ମର ବିଧି ବ୍ୟବସ୍ଥା କୁଳର ନୀତି ମୁତାବକ ହେଉଛି କି ନାହିଁ ସେହିଁ ପର୍ଯ୍ୟବେକ୍ଷଣ କରନ୍ତି । ଯଦି କୌଣସି ଭୁଲ୍ ଭଟକାଥାଏ ତାକୁ କିପରି ସୁଧରା ଯିବ, ସେହିବାଟ ସେ ବତାଇଥାନ୍ତି । ତାଙ୍କ ନିର୍ଦ୍ଦେଶ ଓ କଥା କୁଳର ଲୋକେ ମାନିବାକୁ ବାଧ । ଯେକୌଣସି ଅପରାଧ ପାଇଁ ଜାତିରୁ କେହି ବାହାରି ଯାଇଥିଲେ ଭାତନାୟକ ତାକୁ ପ୍ରାୟଶ୍ଚିତ୍ତ କରନ୍ତି ଓ ଜାତିରେ ମିଶାଇ ନିଅନ୍ତି । ଏଥିପାଇଁ ସମସ୍ତ ବିଧିବ୍ୟବସ୍ଥା ପରମ୍ପରା ମୁତାବକ କରାଯାଇଥାଏ ।

୯. **ଭାଲିଆ** - *ଦେ.ବି. :* ଲଙ୍କାଆମ୍ବ : କାଜୁଫଳ । ଇଂ.- Cashew Nut.

ଏହି ଭାଲିଆ ଆଦିବାସୀ ଅଧ୍ୟୁଷିତ ପାର୍ବତ୍ୟ ଅଞ୍ଚଳରେ ଚାଷ କରାଯାଉଥିବା ଏକ ପ୍ରକାର ଲାଭ ଜନକ ଫଳଗଛ । ଏହାର ପାଚିଲା ଫଳ ଯେମିତି ରସାଳ ସେମିତି ସୁମିଷ୍ଟ ଓ ସୁସ୍ୱାଦୁ । ତେଣୁ ଆଦିବାସୀମାନେ ପାଚିଲା ଭାଲିଆ ଫଳ ସହ ରସବତୀ ସୁନ୍ଦରୀ ତରୁଣୀ ମାନଙ୍କୁ ତୁଳନା କରିଥାନ୍ତି । ଏତଦ୍ ବ୍ୟତୀତ ଏହି ଭାଲିଆ ଫଳର ମଞ୍ଜିକୁ ତୋଳି ଶୁଖାଇ ସେହି ମଂଜିକୁ ଏମାନେ ବଜାରରେ ବିକି ଅର୍ଥ ପ୍ରାପ୍ତ ହୋଇଥାନ୍ତି । ଭାଲିଆର ଔଷଧୀୟ ଗୁଣଥିବାରୁ ଏମାନେ ମୁଣ୍ଡ ବିନ୍ଧୁଥିଲେ ଭାଲିଆ ମଂଜିର ରସ ସହିତ ଘିଅକୁଆଁରୀ ରସ ଏକତ୍ର ମିଶାଇ କପାଳରେ ଲଗାଇଥାନ୍ତି । ଏପରି କରିବା

ଦ୍ୱାରା ମୁଣ୍ଡପିନ୍ଧା ବନ୍ଦ ହୋଇଯାଇଥାଏ । ଭାଲିଆହଳ ପ୍ରସ୍ତୁତ ତେଲ ଗାଈଗୋରୁଙ୍କ ପୋକ ଘା’ ପାଇଁ ବିଶେଷ ଫଳପ୍ରଦ ।

୧୦. ଭାଲୁଯାତ୍ରା - *ଦେ.ବି. :* ଏକ ଆଞ୍ଚଳିକ ଯାତ୍ରା ବିଶେଷ । ମାଲକାନଗିରି ଜିଲ୍ଲା ମାଥିଲି ବ୍ଲକ୍ ମେଣ୍ଡକୁଲି ଗ୍ରାମ ନିକଟରେ ଏକ ପର୍ବତ ରହିଛି । ଏଠି ଭାଲୁଯାତ୍ରା ଅନୁଷ୍ଠିତ ହୁଏ । ଏହି ଯାତ୍ରାରେ ମାଉଲି ଠାକୁରାଣୀଙ୍କୁ ପୂଜା କରାଯାଏ । ପୂଜା କରିବା ଦିନ ପାହାଡ଼ ଗୁମ୍ଫାରୁ ଅସଂଖ୍ୟ ଭାଲୁ ବାହାରନ୍ତି ଓ ଛେଳି ମେଣ୍ଢାଙ୍କ ରକ୍ତ ଖାଆନ୍ତି ବୋଲି ପ୍ରବାଦ ରହିଛି । ଚଇତ ମାସରେ ଏହି ଯାତ୍ରା ହୁଏ ।

୧୧. ଭାସ୍କେଲ ନଦୀ - *ଦେ.ବି. :* ନବରଂଗପୁର ଜିଲ୍ଲାର ୧୭୦ କି.ମି. ଦୈର୍ଘ୍ୟ ବିଶିଷ୍ଟ ଏକ ନଦୀ । ଏହି ନଦୀ ଉମରକୋଟ ମାଳରୁ ବାହାରି ଇନ୍ଦ୍ରାବତୀର ଏକ ସହାୟିକା ଉପନଦୀ ଭାବେ ଛତିଶଗଡ଼ର ଜଗଦଲପୁର ନିକଟରେ ଇନ୍ଦ୍ରାବତୀ ନଦୀ ସହିତ ମିଶିଛି । ଏହି ନଦୀର ସୃଷ୍ଟି ରହସ୍ୟକୁ ନେଇ ନବରଂଗପୁର ଜିଲ୍ଲା ଗଣ୍ଡ ଆଦିବାସୀ ଗୋଷ୍ଠୀରେ ଏକ କାହାଣୀ ଶୁଣିବାକୁ ମିଳେ । କୁହାଯାଏ ଏକଦା ଜଣେ ଗଣ୍ଡ ଯୁବକ ଶିକାରକରି ଯାଇଥିବା ଅବସରରେ ନିର୍ଜନ ବଣମୂଳକରେ ଏକ ହରିଣୀକୁ ଶିକାର କରିବାପାଇଁ ବାଉଁଶର ତୀର ବା କାଣ୍ଡ ନିକ୍ଷେପ କରିଥିଲା । ତାହା ହରିଣୀକୁ ଖୋଜି ଏକ ଶିଳାଖଣ୍ଡ ଭିତରକୁ ପଶି ଯାଇଥିଲା । ଗଣ୍ଡ ଯୁବକଟି ଶିକାର ଖୋଜିବାକୁ ଯାଇ ବଣ ଭିତରେ ଶିଳାଖଣ୍ଡରେ ଲାଗିଥିବା ନିଜର ଶର ଦେଖି ତାହାକୁ ଉପାଡ଼ି ଆଣନ୍ତେ ଶିଳାର ଗର୍ତ୍ତ ଦେଇ ଏକ ଜଳସ୍ରୋତ ବାହାରି ଆସି ଏକ ନଦୀରେ ପରିଣତ ହେଲା । ଏହି ନଦୀ ଗଣ୍ଡ ଗୋଷ୍ଠୀର ନାମକୁ ଭାସ୍କେଲ (ଉଜ୍ଜ୍ୱଳ) କରିଥିବାରୁ ଏହାର ନାମ ‘ଭାସ୍କେଲ’ ନଦୀ ହେଲା ।

ଷଷ୍ଠ / ସପ୍ତମ ଦଶକରେ ଭାସ୍କେଲ୍‌ଠାରେ ଏକ ନଦୀବନ୍ଧ ଯୋଜନା କରାଯାଇ ଉମରକୋଟ ଅଞ୍ଚଳର ୨୭୦୦ ଏକର ଜମିରେ ଜଳସେଚନ ବ୍ୟବସ୍ଥା କରାଯାଇଥିଲା । ପରେ ପୁଣି ଏହାକୁ ସଂପ୍ରସାରିତ କରି ଆଉ ୧୦୦୦ ଏକର ଜଳସେଚନ ବ୍ୟବସ୍ଥା ଅଷ୍ଟମ ଦଶକରେ ହୋଇଥିଲା ।

୧୨. ଭୀମାଦୋରା / ଭୀମାଦେବ / ପାଲେ ଭୀମ୍ / ଗାଜେଭୀମା / ଭୀମୁଡୁପାଣ୍ଡୁ - *ଦେ.ବି. :* କୋୟାମାନଙ୍କ (ମାଲକାନଗିରି) ବର୍ଷାର ଦେବତା ।

କୋୟାମାନେ ଭୀମସେନଙ୍କ ଔରସରୁ ସୃଷ୍ଟି ବୋଲି ଲୋକ ବିଶ୍ୱାସ । ପାଣ୍ଡବମାନଙ୍କ ବନବାସ କାଳରେ ଭୀମସେନ ଏକ କୋୟା ରମଣୀକୁ ବିବାହ କରିଥିଲେ ବୋଲି ଲେକେ କହନ୍ତି । ମହାଭାରତ ବର୍ଣ୍ଣିତ ଭୀମସେନଙ୍କ ହିଡ଼ିମ୍ବୀ ବିବାହ ପ୍ରସଂଗ ସହ ଏହାକୁ ଯୋଡ଼ାଯାଇପାରେ । ସେହି ଦୁଇଜଣଙ୍କ ଔରସରୁ କୋୟା ଜାତିର ସୃଷ୍ଟି ବୋଲି ବିଶ୍ୱାସ କରାଯାଏ ।

ଭୀମାଦେବ : ପାଣ୍ଡବ ଭ୍ରାତା ଭୀମସେନ । ଆଦିବାସୀ ଅଞ୍ଚଳରେ ଭୀମସେନଙ୍କୁ ଭୀମାଦୋରା ବା ଭୀମାଦେବ ଭାବେ ଉପାସନା କରିଥାନ୍ତି । କୋରାପୁଟରେ କୃଷିଭିତ୍ତିକ ଯାତ୍ରା ବାଲିଯାତ୍ରାରେ ଭୀମସେନଙ୍କ କାଷ୍ଠ ପ୍ରତିମା ତିଆରି କରି ପୂଜା କରାଯାଇଥାଏ । କେତେକ ଗ୍ରାମରେ ଭୀମସେନ ଓ ତାଙ୍କ ପତ୍ନୀଙ୍କ ସହ (ଭୀମା ଭୀମାଣୀଙ୍କ) ବିବାହ ଉତ୍ସବ ଅନୁଷ୍ଠିତ ହୋଇଥାଏ । ଠିକ୍ ସମୟରେ ବୃଷ୍ଟିପାତ ଓ ପ୍ରଚୁର ଫସଲ ପାଇଁ ଭୀମାଦେବଙ୍କୁ ପୂଜା କରିବା ପରମ୍ପରା ଅବିଭକ୍ତ କୋରାପୁଟ ଜିଲ୍ଲାରେ ପ୍ରଚଳିତ । ପାଲେଭୀମ କୋୟାମାନଙ୍କର ସୃଷ୍ଟି ଓ ପାଳନର କର୍ତ୍ତା ଭାବେ ପୂଜିତ । ଗାଜେଭୀମ ହେଉଛନ୍ତି ଶସ୍ୟ ଉତ୍ପାଦନର ଦେବତା ।

**ଭୀମଡୁପାଣ୍ଡୁମ୍ :** ଭୀମଙ୍କ ପାଇଁ ପାଳିତ ପାଣ୍ଡୁପର୍ବ ବା ପୁଷପର୍ବ । ଏହି ପର୍ବରେ ସମସ୍ତ ଆଦିବାସୀମାନେ ସେମାନଙ୍କ ଇଷ୍ଟ ଦେବଦେବୀଙ୍କ ପାଖରେ ଉତ୍ପନ୍ନ ଶସ୍ୟକୁ ଅର୍ଘ୍ୟ ରୂପେ ଅର୍ପଣ କରିଥାନ୍ତି । କୋୟାମାନେ ଭୀମ ଦେବତାଙ୍କୁ ସେମାନଙ୍କ ଇଷ୍ଟଦେବତା ଭାବେ ମାନନ୍ତି । ସେମାନଙ୍କର ବିଶ୍ୱାସ ପୌଷ ମାସରେ ଭୀମ ଦେବତା ସେମାନଙ୍କ ଦୁଃଖ ସୁଖ ବୁଝିବା ପାଇଁ ଆସନ୍ତି । ତେଣୁ ସେମାନେ ଏହି ସମୟରେ ଉତ୍ପନ୍ନ ଶସ୍ୟଗୁଡ଼ିକୁ ଏକ ମହୁଲ ବୃକ୍ଷ ମୂଳେ ଗଦାକରି ସେହି ଭୀମ ଦେବତାଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିଥାନ୍ତି । ଗାଜେ ଭୀମୁଲୁ ସୃଷ୍ଟି ଓ ସଂହାର ସହିତ ସଂପୃକ୍ତ । କୋୟା ଗ୍ରାମମାନଙ୍କରେ ସେ 'ଇରୁ-ସିର୍‌ମା' ନାମରେ ଗ୍ରାମଦେବତା ରୂପେ ପୂଜା ପାଆନ୍ତି ।

୧୩. **ଭୀମାଯାତ୍ରା** - *ଦେ.ବି. :* ଏକ କୃଷି ଭିତିକ ଯାତ୍ରା ବିଶେଷ । ଏହା ବାଲିଯାତ୍ରା ସହ ସଂଶ୍ଳିଷ୍ଟ । ଏହା ବାଲିଯାତ୍ରାର ଅଂଶବିଶେଷ । ପ୍ରତି ତିନିବର୍ଷରେ ଥରେ ଅବିଭକ୍ତ କୋରାପୁଟ ଜିଲ୍ଲାର ବିଭିନ୍ନ ଅଞ୍ଚଳରେ ଏହି ଯାତ୍ରା ଅନୁଷ୍ଠିତ ହୋଇଥାଏ ।

ପ୍ରଥମେ ଗୋଟିଏ ନୂଆ ହାଣ୍ଡି (ବଡ଼ ମାଟି ହାଣ୍ଡ) ବସାଯାଏ । ଏହାକୁ 'ହାଣ୍ଡିବସା' କୁହାଯାଏ । ଏହି ଉତ୍ସବରେ ଗ୍ରାମର ସମସ୍ତ ଲୋକଙ୍କଠାରୁ ଚାନ୍ଦା ସଂଗ୍ରହ କରାଯାଇ ସବୁଦିନେ ନାଚ କରିବାକୁ ଗ୍ରାମର ଲୋକେ ଯାଉଥାଆନ୍ତି । ପରେ ଜଣେ ଗୁରୁମାଇ ଖୋଜନ୍ତି । ସେ ଆସି ଭୀମା ପୁରାଣ ବିଷୟରେ କହେ । ସେ ଭୀମା କେଉଁ ଘରେ ଜନ୍ମ ନେବ ସେ କଥା ମଧ୍ୟ କୁହେ । ପରେ ନିର୍ଦ୍ଧାରିତ ଦିବସରେ ଏକ ମାଦଳାକୃତି କାଠର ପ୍ରତିକୃତି ଜନ୍ମନିଏ । ତାହାର କେତେଦିନ ପରେ ଭୀମାର ବୟସ ହେଲା ବୋଲି କନ୍ୟା ଖୋଜାଯାଏ । କନ୍ୟା ବି କେଉଁ ଗ୍ରାମରେ ଅଛି 'ଗୁରୁମାଇ' କହେ । ଗ୍ରାମବାସୀମାନେ ଯାଇ ନିର୍ଦ୍ଧାରିତ ଗ୍ରାମର ନିର୍ଦ୍ଧାରିତ ଘରୁ ମାଦଳାକୃତି ନାରୀର କାଷ୍ଠ ପ୍ରତିମା ଆଣି ଗୋଟିଏ ପାଖରେ ପୋତି ପୂଜା ଆରାଧନା କରିଥାଆନ୍ତି । ଏହି ସମୟରେ ବାଲି ଚାଙ୍ଗୁଡ଼ିରେ ବିଭିନ୍ନ ଶସ୍ୟ ପକାଇ ଗଜା ପ୍ରସ୍ତୁତ କରାଯାଇଥାଏ । ଏହା ପୂର୍ବରୁ ଶୁଭବେଳା ଦେଖି ନଦୀରୁ ବାଲି ଅଣା ଯାଇଥାଏ । ସେହ ବାଲିକୁ ଚାଂଗୁଡ଼ିରେ ରଖି ବୀଜ ରୋପାଯାଏ । ବାଲିଯାତ୍ରା ଓ ଭୀମାଯାତ୍ରା ଏକ ସମୟରେ ଅନୁଷ୍ଠିତ ହୁଏ । ସଂଧ୍ୟାବେଳେ ବାଲି ପଡ଼ିଆରେ ଭୀମାଭୀମାଣିଙ୍କ ବିବାହ ଅନୁଷ୍ଠିତ । ଏଥିପାଇଁ ବାଲି ଚାଙ୍ଗୁଡ଼ିକୁ ଏକ ଶୋଭାଯାତ୍ରାରେ ନିଆଯାଏ ।

୧୪. ଭୀମାପୂଜା / ବୀମାପୂଜା - *ଦେ.ବି. :* ବର୍ଷା ଦେବତାର ପୂଜା : ବର୍ଷା ନହେଲେ ଗାଦବାମାନେ ବିମା ପୂଜା କରିଥାନ୍ତି । କୋୟାମାନେ ମଧ୍ୟ ବିମା ପୂଜା କରନ୍ତି । ବିମା ବର୍ଷାର ଦେବତା । ତାଙ୍କୁ ସନ୍ତୁଷ୍ଟ କଲେ ବର୍ଷା ହେବବୋଲି ଏମାନଙ୍କର ଲୋକ ବିଶ୍ୱାସ । ଏହି ବିମା ପୂଜାରେ ଗୋଟିଏ କୁକୁଡ଼ା ଓ ଗୋଟିଏ ଗାଇକୁ ବଳି ଦେଇ ଭୋଜି କରାଯାଏ । ଚରୁ ଅନ୍ନ ରନ୍ଧାଯାଏ । ଏହି ଚରୁଅନ୍ନ ବିମା ଦେବତାଙ୍କୁ ଅର୍ପଣ କରାଯାଏ । ଗାଁର ଅଧରାସ୍ତାରେ ଜାକର୍ ଦେବତାଙ୍କ (ନିଶାନଘର) ପୂଜା ହୁଏ । ଏହି ସ୍ଥାନଟି ଏକ ଛୋଟ ଜଂଗଲ, ଗଛପତ୍ର ଗହଳି ଭିତରେ ଥାଏ । ଏଠି ଜାକରଙ୍କ ଅବସ୍ଥାନ । ଏହି ଛୋଟ ଜଂଗଲର ବୃକ୍ଷ କାଟିବା ନିଷେଧ ହୋଇଥାଏ ।

୧୫. ଭୀମୁଡୁ କାଟା - *ଦେ.ବି. :* ଭୀମରାଜ ପକ୍ଷୀର ପର । ଏହି ପକ୍ଷୀର ପର ତଥା ବଣ କୁକୁଡ଼ାର ଘନକୃଷ୍ଣ, ନୀଳ ବର୍ଣ୍ଣର ପରକୁ କୋୟା ନର୍ତ୍ତକମାନେ ମୁଣ୍ଡରେ ପିନ୍ଧିଥାନ୍ତି । ମୁରିଆ ଗଣ୍ଡଙ୍କ ମାଦ୍ରିନାଚର ବେଶଭୂଷା ସହିତ ଏହି ବେଶଭୂଷା ତୁଳନୀୟ ।

୧୬.  ଭୁତେକ୍ / ବୁତେକ୍ - *ଦେ.ବିଂ. :* ବହୁତ ବା ଅଧିକ । ଇଂ.- Pleanty, A Lot of

ଲୋକକ୍ତିରେ -
'ଅଲପ ଦେଲେ ଭୁତେକ୍ ହେସି
ବଲପଡ଼ିବାର ପାଇଁ,
କରମ୍ କପାଲ୍ ବୋଇଲେ ସରି
ଯେତେକ୍ କରଲେ ନାଇଁ ।'

୧୭.  **ଭୁରୁଷଙ୍ଗ / ବୁରୁସଙ୍ଗ୍** - *ଦେ.ବି. :* ବଣ୍ଡାମାନଙ୍କର ଦେବତା । ଏହାଙ୍କ ଉଦ୍ଦେଶ୍ୟରେ ବୈଶାଖ, ଜ୍ୟେଷ୍ଠ ଓ ଆଷାଢ଼ ମାସରେ ତିନିଥର ପୂଜା ଅନୁଷ୍ଠାନ ହୁଏ । ଏହି ପୂଜାକୁ 'ଖୁନ୍‌ସର ଗିଗେ' ଓ 'ମକା ଗିଗେ' କୁହାଯାଏ । ଏଥିରେ ଧଳା ବା କଳା କୁକୁଡ଼ା ଓ ଘୁଷୁରୀ ବଳି ଦିଆଯାଏ । ବିରୁ ନ ସରିବା ଯାଏଁ ଡଙ୍ଗରରେ ସୁଆଁ, ମାଣ୍ଡିଆ, କାଙ୍ଗୁ, ଅଳସୀ ଆଦି କୌଣସି ଶସ୍ୟ ବୁଣାଯାଇପାରେ ନାହିଁ । ପୁଣି, ଜ୍ୟେଷ୍ଠ ଆଷାଢ଼ର ଦ୍ୱିତୀୟ ଓ ତୃତୀୟ ପୂଜା ନସରିଲେ ଦ୍ୱିତୀୟ ବାର ବୀଜ ବପନ କରାଯାଏ ନାହିଁ । ବିରୁଦିନ କେହି ବେଡ଼ାରେ ଲଙ୍ଗଳ କରନ୍ତି ନାହିଁ ।

୧୮.  **ଭେଜିରି / ଭେଜରା** - *ଦେ.ବି. :* ଏକ ପ୍ରକାର ପରିବା : କ୍ଷୁଦ୍ର ଆକୃତି ବିଶିଷ୍ଟ ଟମାଟୋ ବା ବିଲାତି ବାଇଗଣ । ଆଦିବାସୀ ସମାଜରେ ଏଇ ପରିବାଟିର ଆଦର ଖୁବ୍ ବେଶୀ । ସେମାନେ ସବୁପ୍ରକାର ତରକାରୀରେ ଭେଜରୀ ବା ଭେଜରାକୁ ପକାଇ ଶାଗ ପ୍ରସ୍ତୁତ କରିଥାନ୍ତି । ଛୋଟଛୋଟ ଦେଶି ବାଟି ବା ଗୁଲି ଆକାରର ଟମାଟୋ ।

୧୮.  **ଭେରାମଣ : କନ୍ଧ. ବି.** *:* ନିଷ୍ପତ୍ତି ମଣ୍ଡପ : କନ୍ଧ ଗ୍ରାମ ମାନଙ୍କର ଗାଁର ମଝିରେ ବଡ଼ ୩ଟି ପଥର ପଡ଼ିଥାଏ । ତା' ପାଖରେ ଛୋଟ ଛୋଟ ଚଟା ପଥରଗୁଡ଼ିଏ ପଡ଼ିଥାଏ । ଗାଁର ମୁଖିଆ ସାଉଁତା ତଥା ଅନ୍ୟମାନେ ସେଠାରେ ଗ୍ରାମର ସମସ୍ତ ନିଷ୍ପତ୍ତି ନେଇଥାନ୍ତି । (ଦ୍ର. ବେହରଣ ମୁଣ୍ଡା)

୧୯.  **ଭୈରବ ସିଂହପୁର** - *ଦେ.ବି. :* ଗୋଟିଏ ଗ୍ରାମ ବିଶେଷ । ଏହା ଭୈରବ ଦେବତାଙ୍କ ସିଂହପୁର ବା ଶ୍ରେଷ୍ଠପୁର ରୂପେ ପରିଚିତ । ଅତୀତର ଜୈନ ଦେବତା

ଋଷଭନାଥ ଏହି ଭୈରବ ଦେବତା ଭାବେ ପ୍ରସିଦ୍ଧି ଲାଭକରି ଏବେ ପୂଜା ପାଉଛନ୍ତି । ଏହା କୋରାପୁଟ ଜିଲ୍ଲାର ବୋରିଗୁମ୍ମା ବ୍ଲକ୍‌ଠାରୁ ପ୍ରାୟ ୧୬କି.ମି. ଦୂରରେ ଅବସ୍ଥିତ ।

୨୦. **ଭୈରବ ଦେବତା** - *ଦେ.ବି.* : କୋରାପୁଟର ଜଣେ ପ୍ରସିଦ୍ଧ ଦେବତା । ଅବିଭକ୍ତ କୋରାପୁଟ ଜିଲ୍ଲାର ନନ୍ଦପୁର, କାମତା, କୁମୁଲି, ଭୈରବ ସିଂପୁର ବୋରିଗୁମ୍ମା ଓ ଉମରକୋଟ ନିକଟସ୍ଥ ପୋଡ଼ାଗଡ଼ଠାରେ ଏହି ଭୈରବ ଦେବତା ପୂଜା ପାଆନ୍ତି । ନନ୍ଦ ଓ ଛିନ୍ଦକ୍ ନାଗବଂଶୀ ରାଜାମାନଙ୍କ ସମୟରେ ଏହି ଅଞ୍ଚଳରେ ଜୈନ, ଶୈବ ଓ ବୌଦ୍ଧଧର୍ମାବଲମ୍ବୀମାନେ ରହୁଥିଲେ । ପରବର୍ତ୍ତୀକାଳରେ ଏହା ମହାଯାନ ତନ୍ତ୍ର ସାଧନାର ପୀଠ ପାଲଟିଗଲା । ଏଥିରେ ତନ୍ତ୍ରେଶ୍ୱର ଥିଲେ ଭୈରବ ଦେବତା ।

### ଭୈରବ ଦେବତାଙ୍କ ସୃଷ୍ଟି ସଂପର୍କୀୟ ମିଥ୍

ଭୈରବ ଦେବତା କୁଲିତରାଙ୍କ ପୁତ୍ର । ସେ ପିତାଙ୍କ ଆଦେଶରେ ଅଘୋରୀ ତପ ସାଧନ କରି ଭୈରବ ବାବା ନାମରେ ଖ୍ୟାତି ହେଲେ । ପରେ ମାତା ମାଉଳି (ବାଳଗୌରୀ, ଦନ୍ତେଶ୍ୱରୀଙ୍କୁ) ବିବାହ କରି ଦନ୍ତେଓ୍ୱାଡ଼ାର ଗହନ ବନରେ ଭ୍ରମଣ କଲେ । ଡଙ୍କିନି ଓ ଶଙ୍ଖିନୀ ନଦୀ ତୀରରେ ବହୁ ବିଶାଳ ଗଛ, ବୃକ୍ଷ ଦ୍ରୁମ, ଦାରୁ, ଲତା, ଗୁଳ୍ମ ଓ ଫୁଲ ଫଳ ପରିପୂର୍ଣ୍ଣ ଜଂଗଲ ଥିଲା ଭୈରବଙ୍କ ସାଧନାପୀଠ । ତାଙ୍କ ଶହଶହ ଶିଷ୍ୟ ତାଙ୍କଠାରୁ ଯନ୍ତ୍ର, ତନ୍ତ୍ର, ମନ୍ତ୍ର, ଔଷଧ ବିଦ୍ୟା ଶିକ୍ଷା କରି ଭୈରବ ମନ୍ତ୍ରରେ ଦୀକ୍ଷିତ ହେଲେ । ଏଣୁ ଏହି ସ୍ଥାନ ଦିବ୍ୟ ପବିତ୍ର ଈଶ୍ୱରୀୟ ଥିଲା । ଦନ୍ତେଶ୍ୱରୀ ଥିଲେ ଭୈରବଙ୍କ ପତ୍ନୀ । କୋଇତୁରା ସମାଜ (ଆଦିବାସୀ ଗଣ୍ଡ / କୋୟା)କୁ ସତ୍‌ଶିକ୍ଷା ଦେବା, ସଂସ୍କାରିତ କରିବାର ମୁଖ୍ୟ ଦାୟିତ୍ୱ ଭୈରବ ନେଇଥିଲେ । ଭୈରବ ମନୁଷ୍ୟର ଶାରୀରିକ ସଂରଚନାର ଜ୍ଞାତା ଥିଲେ । ନିରନ୍ତର ତପ ସାଧନା କରି ସେ ମୃତ୍ୟୁକୁ ଜୟ କରିଥିଲେ । ଏଣୁ କୋଇତୁର ସମାଜ ତାଙ୍କୁ ଭୈରବ ବାବା ବୋଲି ନାମିତ କଲେ । ମିଥ୍‌ରୁ ଜଣାଯାଏ ଯେ କାଳ ଓ ମୃତ୍ୟୁକୁ ଜୟ କରିଥିବାରୁ ସେ ହେଲେ କାଳଭୈରବ ଓ ମାଉଳି ମାତା (ଦନ୍ତେଶ୍ୱରୀ) ହେଲେ ବାଣୀ ସିଦ୍ଧିର ଦେବୀ । (ଦ୍ର. ଦନ୍ତେଶ୍ୱରୀ ମିଥ୍) ଭୈରବଙ୍କ ଉପରେ ଚଇତି ପରବରେ ଗୀତ କୁଡ଼ିଆ ଗାଏ : 'ପର୍ବତ ପର୍ବତ ସାତ ପରବତ ସିଂହାସନ ମାଟି ଏ ନନ୍ଦପୁର । ଅଛନ୍ତି ବୁଢ଼ା ଭଇର । ତାଙ୍କ ନାମଧରି ଗୀତ ମୁଁ ଗାଇବି ଆମ କଣ୍ଠେ ବିଜେକର ।'

୨୧. ଭୋଇଗାଦବା / ବୋହିଗାଦବା - *ଦେ.ବି. :* ଯେଉଁ ଗାଦବାମାନଙ୍କୁ ରାଜାଙ୍କ ପକ୍ଷରୁ ଗଦନି ସିନ୍ / ଚିହ୍ନ ଦିଆଯାଇଥାଏ, ସେମାନଙ୍କୁ 'ଭୋଇ ଗାଦବା' କୁହାଯାଏ । ଏମାନେ ରାଜାଙ୍କୁ ପାଲିଙ୍କିରେ ବୋହି ଗ୍ରାମଗ୍ରାମ ବୁଲାଉଥିଲେ । ଏହି ଅବସରରେ ଏହି ପାଲିଙ୍କି ବୋହୁଥିବା ବ୍ୟକ୍ତି ତଥା ରାଜା କେରଙ୍ଗ ଶାଢ଼ି / ଧୋତି ପରିଧାନ କରୁଥିଲେ ।

ବୋହିବା କାମରୁ ଭୋଇବା ଏହି ଭୋଇ ଗାଦବା ନାମଟି ଆସିଛି । ବର୍ତ୍ତମାନ କେତେକ ଅଞ୍ଚଳରେ ଏମାନେ 'ଭୋଇ ଗାଦବା' ବଂଶ ବୋଲି ମଧ ପରିଚୟ ଦେଉଛନ୍ତି ।

୨୨. ଭୋଜିକ୍‌ମାଜିକ୍ - *ଦେ.ବି. :* କନ୍ୟାମୂଲ ସହ ଭୋଜି ପାଇଁ ପ୍ରଦତ୍ତ ଚାଉଳ, ମୁଗ, ପନିପରିବା, ଛେଳି, କୁକୁଡ଼ା ଓ ମଦସଲପ ଇତ୍ୟାଦି । ଜଲାର ଦୁଇଟି ଅଂଶ । ଗୋଟିଏ ଜଲା ଡାବୁ । ଅନ୍ୟଟି ଭୋଜିକ୍ ମାଜିକ୍ ।

□□□



୧. ମଥଣା ବାଡ଼ି - *ଦେ.ବି. :* ନିଆଁ ବାହାର କରିପାରୁଥିବା ଦୁଇଟି ଘର୍ଷଣ କାଠି । ଏଭଳି ଦୁଇଟି କାଠିକୁ ଘର୍ଷଣ କରି ନିଆଁ ବାହାର କରାଯାଇଥାଏ । ଘର୍ଷଣ ଦ୍ୱାରା ନିଆଁ ବାହାର କରାଯାଇଥିବା ଏହି କାଠି ଦୁଇଟିକୁ 'ମଥଣାବାଡ଼ି' କୁହାଯାଏ । ଓଡ଼ିଆ ତଥା ସଂସ୍କୃତର 'ଅରଣି' ସହ ଏହା ତୁଳନୀୟ । ଚକ୍‌ମକି ପଥର, ଦୁଇ ପଥରର ସଂଘର୍ଷରୁ ଅଗ୍ନିଜାତ କରାଯାଉଥିବାବେଳେ ମଥଣା ବାଡ଼ି ଦୁଇଟି କାଠି ମାତ୍ର । ବୈଦିକ ସମୟରୁ ଏଭଳି କାଠି ଓ ପଥରର ପ୍ରଚଳନ ରହିଆସିଛି । ଏକ ନିର୍ଦ୍ଦିଷ୍ଟ ଗଛର ଡାଳରୁ ଏହା ପ୍ରସ୍ତୁତ ହୁଏ । ଏବେ ମଧ୍ୟ ଆଦିବାସୀ ଅଞ୍ଚଳରେ ଏଭଳି ମଥଣା ବାଡ଼ି ଦେଖିବାକୁ ମିଳେ ।

୨. ମଥନି - *ଦେ.ବି. :* ମୋହନୀ / ଔଷଧ ଦେଇ ବଶ କରିବା ମନ୍ତ୍ର । ଇଂ- Enchanting.

ବ୍ୟବହାର : ଯଥା : କାୟ ଏ ମଧନରେ ମନି ଲଗାଇ ନେତି । ଅର୍ଥାତ୍ ମୋହନୀ ମନ୍ତ୍ର କରିଲେ ସାଂଗ, ତୋତେ ସାଥିରେ ନେଇଥାନ୍ତି । ଆଦିବାସୀମାନେ ଏଭଳି ମଥନି ମନ୍ତ୍ର ବା ଗୁଣି ବିଦ୍ୟା ଉପରେ ଯଥେଷ୍ଟ ବିଶ୍ୱାସ ରଖନ୍ତି ।

୩. ମଇଲାଇନି - *ଦେ.ବି. :* ଯେତେବେଳେ ଜଣେ ମହିଳାର ମାସିକ ଋତୁ ଗଡ଼ିଯାଏ, ସେହି ଅବଧିକୁ 'ମଇଲାଇନି' କୁହାଯାଏ । ଏଥିରୁ ଜଣେ ଗର୍ଭବତୀ ହୋଇଥିବା ସୂଚନା ମିଳେ । ଓଡ଼ିଆରେ 'ମାସ ଗଡ଼ିବା' ସହ ଏହା ତୁଳନୀୟ । 'ମଇଲାଇନି' ହେଉଛି ଗର୍ଭ ଅବଧି ।

୪. ମଉଡ଼ : ଗଣ୍ଡି / ଦେଶିଆ - *ବି. :* ବିବାହ ସମୟରେ ପୁଅ ଝିଅ ପିନ୍ଧୁଥିବା ମୁକୁଟ : ବିବାହକାଳୀନ ମୁକୁଟର ବିବରଣୀ : (୧) ଦେଓମଉଡ଼୍ (୨) ତେଲ୍ ମଉଡ଼ (୩) ଲଗିନ୍ ମଉଡ଼ (୪) ଗଉନ୍ ମଉଡ଼ ଦେଓ ମୁକୁଟ : ଏହି ମୁକୁଟ କଅଁଳ ଅଗ ଖଜୁରୀ ପତ୍ରରେ ତିଆରି ହୋଇଥାଏ । ବିବାହର ପ୍ରଥମ ନିମନ୍ତ୍ରଣ ବୁଢ଼ା ଦେବତା

(ଦ୍ର.: ବୁଢ଼ାଦେଓ)କୁ ଦିଆଯିବା ସମୟରେ ଦେବତାଙ୍କ ପ୍ରତୀକ ଦାରୁମୂର୍ତ୍ତି (ପାଗ ପିନ୍ଧି, ଘୋଡ଼ା ଉପରେ ବସିଥିବା) ମୁଣ୍ଡରେ ସସମ୍ମାନେ ପୂଜାରୀ ପିନ୍ଧାଇଥାଏ ଏବଂ ବିବାହ କାର୍ଯ୍ୟ କୁଶଳରେ ସଂପନ୍ନ ହେବା ପାଇଁ ପ୍ରାର୍ଥନା କରିଥାଏ । ୨. ତେଲ୍ ମଉଡ଼୍ : ଏହା ହେଉଛି ଆମ୍ରପତ୍ର ତିଆରି ମଉଡ଼ । ବରବଧୂଙ୍କ ବିବାହରେ ତେଲ ଲଗାଇବା ପର୍ଯ୍ୟାୟରେ ସେ ଦୁହିଁଙ୍କୁ ଆମ୍ରପତ୍ର ନିର୍ମିତ ମୁକୁଟ ପିନ୍ଧାଇ ଦିଆଯାଏ । ତାପରେ ଉଭୟଙ୍କ ମୁଣ୍ଡରେ ଗାଁର ଧାଙ୍ଗଡ଼ୀମାନେ 'ତେଲ୍ ଚେଗାନିପାଟା' ଗୀତ ଗାଇ ଦେବତା ଗୁଡ଼ିରୁ ଆଣିଥିବା ତେଲ ଲଗାଇ ଦିଅନ୍ତି । ୩. ଲଗିନ୍ ମଉଡ଼ : ଖଜୁରୀପତ୍ର ମୁକୁଟ - ବିବାହ ବେଦିରେ ଖଜୁରୀଗଛର କଅଁଳପତ୍ରରେ ତିଆରି ମୁକୁଟକୁ ବରବଧୂଙ୍କୁ ପିନ୍ଧାଇ ଦିଆଯାଏ । ବିବାହ ଲଗ୍ନରେ ପିନ୍ଧାଯାଉଥିବାରୁ ଏହାକୁ 'ଲଗିନ୍ ମଉଡ଼' କୁହାଯାଏ । ବେଦିରେ ପୋତାଯାଇଥିବା ମହୁଲ ଡାଳର ଚାରିପଟେ ବରକନ୍ୟା ବୁଲିବା ପୂର୍ବରୁ ଏହି ବିଧି ପାଳନ କରାଯାଏ । ଏହି ସମୟରେ ଲଗିନ୍ ଗୀତ ମରାଯାଏ । ୪. ଗଉନ୍ ମଉଡ଼ : ଏହା ମଧ ଖଜୁରୀ ପତ୍ର ନିର୍ମିତ ମୁକୁଟ । ମଧୁଶଯ୍ୟା ବା ଚଉଠିରାତି ବିରୁ ସମୟରେ ଏହି ଗଉନ୍ ମଉଡ଼ ବର କନ୍ୟାକୁ ପିନ୍ଧାଇ ଦିଆଯାଏ ।

୫. ମଉଲ / ମହୁଲା - *ଦେ.ବି. :* ମହୁଲ ଗଛର ଫୁଲ : ଇଂ.- Mohua flower.

ଆଦିବାସୀର ଅର୍ଥନୀତିରେ ମହୁଲ ହେଉଛି ସବୁଠାରୁ ଦାମୀ ଗଛ । ଆଦିବାସୀ ବାଧରେ ନ ପଡ଼ିଲେ ଏ ଗଛ କାଟେ ନାହିଁ । ଏ ଗଛ ମାତ୍ର ୪/୫ ବର୍ଷର ହୋଇଗଲେ ଏଥିରେ ଫୁଲ ଫୁଟିବା ଆରମ୍ଭ ହୁଏ । ଏହାର ଫୁଲକୁ ଆଜିକାଲି ମୁଖ୍ୟତଃ ମଦ ତିଆରିରେ ବ୍ୟବହାର କରାଯାଉଛି । ପୂର୍ବରୁ ଏହା ଆଦିବାସୀର ଅନ୍ୟତମ ମୁଖ୍ୟ ଖାଦ୍ୟଥିଲା । ଏହାର ପାଖୁଡ଼ା ମୋଟା ଓ ରସାଳ - କାହାଳି ସଦୃଶ । ଏହାକୁ ଭାଜି କୁଲାରେ 'ପୁଣି' ବା ପାଛୋଡ଼ି ଦେଇ କେଶର ବାହାର୍ କରିଦିଆଯାଏ । ତା'ପରେ ମୂଷଳରେ ଗୁଣ୍ଡ କରିଦିଆଯାଏ । ଏହି ଗୁଣ୍ଡକୁ 'ଲକ୍‌ଟି' ବା 'ଲକ୍‌ଟା' କୁହାଯାଏ । ଛତୁଆ ଭଳି ପୁଡ଼ିଆ ବାନ୍ଧି ଏହାକୁ ପୂର୍ବରୁ ଆଦିବାସୀମାନେ ବେଢ଼ା ବା ଜଂଗଲକୁ ଦାରୁ ପାଇଁ ବା ବେଣ୍ଟପାଇଁ ଗଲାବେଳେ ନେଇ ଯାଉଥିଲେ । କୌଣସି ଶସ୍ୟ ଗୁଣ୍ଡ ସହ ମିଶାଇ କିମ୍ବା ଖାଲି ସେପରି ଏହାକୁ ଖିଆଯାଇପାରେ । ଏଥିରୁ ପ୍ରସ୍ତୁତ ମଦକୁ 'ମହୁଲି ମଦ' ବୋଲି କୁହାଯାଏ । ଏହାର ଫଳକୁ ଟୋଲ ବା

ଟୋଲା କୁହାଯାଏ । ଏହାର ଚୋପା ଛଡ଼ାଇ ପେଶା ଯାଇ ତେଲ ପ୍ରସ୍ତୁତ କରାଯାଏ । (ଦ୍ର. ଟୋଲା ।)

୬. **ମଦ୍ଭୁରା / ମୁଦ୍ଭୁରା** – *ଦେ.ବି. :* ଏହା ଏକ ବିରଳ ତତ ବାଦ୍ୟ । ଏହି ବାଦ୍ୟଟି ମୟୂରର ଅଣ୍ଟ ଆକୃତିର । ଲାଉ ତୁମ୍ବାରେ ତନ୍ତୁ ଦଉଡ଼ି ଲଗାଇ ଏହାର ଏକ ରନ୍ଧ୍ର ମଧ୍ୟରେ ବାଉଁଶ ଦଣ୍ଡ ସଂଯୋଗ କରାଯାଏ । ଅଗ୍ରଭାଗଟି ମୟୂର ଅଣ୍ଟ ସଦୃଶ ରହିଥାଏ । ଏହାକୁ ବାଦନ କରି କୁନ୍ଦ୍ରା ବ୍ଲକ୍‌ର ଡେଙ୍ଗାଗୁଡ଼ା ଗ୍ରାମର କେତେକ ଭତରା ସଂପ୍ରଦାୟର ଆଦିବାସୀ ଗୀତଗାନ କରି ଜୀବିକା ନିର୍ବାହ କରିଥାନ୍ତି । ଏଣୁ ଏମାନଙ୍କୁ 'ମଦ୍ଭୁରାମାଝୀ' କୁହାଯାଏ ।

୭. **ମଝିଆଘରିଆଣି** – *ଦେ.ବି. :* ରାୟଗଡ଼ାର ଅଧିଷ୍ଠିତ ପ୍ରସିଦ୍ଧ ଦେବୀ । ମଝିଘରେ ରହୁଥିବା ଠାକୁରାଣୀ ବା ଦେବୀ ନାରାୟଣୀ : କୁହାଯାଏ ଯେ, ନନ୍ଦପୁର ରାଜ୍ୟର ଅନ୍ୟତମ ରାଜା ବିଶ୍ୱନାଥ ଦେବଙ୍କ ସମୟରେ ରାଜବଂଶରେ କୌଣସି ପୁତ୍ର ସନ୍ତାନ ନ ହେବାରୁ ସେ ଜ୍ୟୋତିଷଙ୍କ ସହ ପରାମର୍ଶ କରି ଜାଣିବାକୁ ପାଇଲେ ଯେ ଯଦି ତାଙ୍କ ରାଜ୍ୟର ରାଜଧାନୀ ତିନିଥର ପରିବର୍ତ୍ତନ କରାଯାଏ, ତେବେ ସେହି ରାଜବଂଶରେ ପୁତ୍ର ସନ୍ତାନ ଜନ୍ମ ନେବେ । ତେଣୁ ସେ ତାଙ୍କର ରାଜଧାନୀ ନନ୍ଦପୁରରୁ ଜୟପୁର ଓ ଜୟପୁରରୁ ରାୟଗଡ଼ାକୁ ପରିବର୍ତ୍ତନ କରିଥିଲେ ଓ ଏହି ସମୟରେ ତାଙ୍କର ଇଷ୍ଟଦେବୀ ନାରାୟଣୀ ପରିବର୍ତ୍ତିତ ରାଜଧାନୀ ରାୟଗଡ଼ାକୁ ଆସି ଗଡ଼ର ମଝିରେ ସ୍ଥାପିତ ହୋଇ ମଝି ଘରିଆଣୀ ଦେବୀ ରୂପେ ପୂଜିତ ହେଲେ ।

୮. **ମଡ଼ିମାଶନ** – *ଦେ.ବି. :* ମଶାଣିର ମଡ଼, ମୃତ ବ୍ୟକ୍ତିର ଶବ ବା ଡୁମ୍ବା । ଚଇତି ପରବ ଗୀତରେ ମଡ଼ି ମଶାନକୁ ଏକ ଦେବୀ ଭାବରେ କଳ୍ପନା କରାଯାଇଛି । ଯଥା :

"ଉଠ ଉଠ ମୋର ମଡ଼ି ମଶାନ କି ପୂଜା ମାଗିବୁ ମୋତେ
ବିଲେଇ, ମେଣ୍ଢ଼ି, ଚିକିଟା ଅପା ସେ ପୂଜା ଦେବୁତୁ ମୋତେ ।"

୯. **ମଣ୍ଡଲ୍ ସାପ୍** – *ଦେ.ବି. :* ସର୍ପବିଶେଷ । ଏହାର ଦେହସାରା ଚକାଚକା ଚିହ୍ନ ଥାଏ । କଳା ଉପରେ ଧଳା ଚିତା ଚିହ୍ନ । କିନ୍ତୁ ଅଗ୍ନି ମଣ୍ଡଲ୍ ଦେହରେ କଳା ରଂଗର ଚକା ଚିହ୍ନ ଥାଏ । ଏହା ଖୁବ୍ ବିଷାକ୍ତ । ମାଟି ମଣ୍ଡଲ୍ ଦେହରେ ମାଟିଆ ଚକା

ଚିହ୍ନଥାଏ । ଏହା ଏକ ପ୍ରକାର ବୋଡ଼ା । ଅଗ୍ନି ମଣ୍ଡଳର ବିଷ ଘଣ୍ଟାକ ମଧ୍ୟରେ କାମ ଦେଖାଏ । କିନ୍ତୁ ମାଟି ମଣ୍ଡଳ ଧୀରେଧୀରେ ଦେହ ପଚାଇ ଦିଏ । ବର୍ଷକ ପରେ ମଧ୍ୟ ଲୋକ ମରିଯାଏ ।

୧୦. **ମଣ୍ଡି : ଗଣ୍ଡି / ଛତିଶଗଡ଼ି / ହାଲ୍‌ବି / -** ଭତ୍ରୀ : *ବି. :* ବଜାର, ବଡ଼ହାଟ, ଇଂ. - Market ମେଳା ଇଂ.- Fair

ମଣ୍ଡେଇ : ଗ / ଦେ.ବି. କୋରାପୁଟ, ନବରଂଗପୁର ଜିଲ୍ଲା ତଥା ଛତିଶଗଡ଼ରେ ବର୍ଷକୁ ଥରେ ବିଭିନ୍ନ ଆଦିବାସୀ ଗୋଷ୍ଠୀଙ୍କ ସାମାଜିକ ମେଳଣ ଓ ଦେବ-ଦେବୀଙ୍କ ଗ୍ରାମ ପରିକ୍ରମଣ ପ୍ରକ୍ରିୟାକୁ ମଣ୍ଡି ବା ମଣ୍ଡେଇ କୁହାଯାଏ । ଏହା ମାଘ, ଫାଲଗୁନ ମାସରେ (ସ୍ଥାନ ବିଶେଷରେ) ପାଳନ କରାଯାଇଥାଏ । ଛତିଶଗଡ଼ର ନାରାୟଣପୁର, କୋଣ୍ଡାଗାଁ, ତଥା ନବରଂଗପୁର ଜିଲ୍ଲାର କଷାଗୁମୁଡ଼ା ଡାବୁଗାଁ, ଉମରଗାଁ, ଦେଓବରଣ୍ଡି, ମୁଣ୍ଡିଗୁଡ଼ା, ପୋଡ଼ାଗଡ଼ ଓ ଧୋଡ୍ରା ମଣ୍ଡେଇ ପ୍ରସିଦ୍ଧ । ଏହି ମଣ୍ଡେଇରେ ଆଦିବାସୀ ସଂସ୍କୃତିର ମହନୀୟତାକୁ ଅନୁଭବ କରିହୁଏ ।

୧୧. **ମଣ୍ଡେଇ ଯାତରା -** *ଦେ.ବି. :* ନବରଂଗପୁର ଜିଲ୍ଲାର ପ୍ରସିଦ୍ଧ ଯାତ୍ରା । ମାଘ-ଫାଲଗୁନ୍ ମାସରେ ପାଳନ କରାଯାଉଥିବା ତିନିଦିନ ବ୍ୟାପୀ ଏକ ପ୍ରସିଦ୍ଧ ଯାତ୍ରା । କୋରାପୁଟ, ବସ୍ତର ଅଞ୍ଚଳର ଦେବଦେବୀ ମାନଙ୍କର ଏକ କୌଟୁମ୍ବିକତା ରହିଛି । ଏମାନଙ୍କର ମଧ୍ୟ ଆଦିବାସୀ ମଣିଷ ପରିବଂଶ ଓ ଗୋତ୍ର ଅଛି । ଦେବଦେବୀଙ୍କ ମଧ୍ୟରେ ବିବାହ ପ୍ରଥା ଅଛି । କେଉଁ ବଂଶର ଦେବତା କେଉଁ ଦେବତା ସହିତ ବାହା ହେବେ ବା ନହେବେ, କିଏ କେତେ ଭାଇ ଓ କେତେ ଭଉଣୀ, କିଏ ମାମୁ, କିଏ ଦେଢ଼ଶୁର, କିଏ ଭାଇବୋହୂ ଆଦି ଅନେକ ପାରିବାରିକ ସାମାଜିକ ସଂପର୍କ ଲୋକ ଦେବଦେବୀ ମାନଙ୍କରେ ରହିଛି ।

ଏହି ଦେବଦେବୀଙ୍କ ସମାଗମ ଓ ବନ୍ଧୁତ୍ୱପୂର୍ଣ୍ଣ ସାମାଜିକ ମେଳଣ ବର୍ଷେ କିମ୍ବା ଦୁଇବର୍ଷରେ ଥରେ ହୁଏ । ଏହି ମେଳଣ ସମୟରେ ହାଟ, ବଜାର ଓ ମେଳା ବସେ । ଏହାକୁ ମଣ୍ଡେଇ କୁହାଯାଏ । ମଣ୍ଡେଇ ଶବ୍ଦ ମୂଳ ମଣ୍ଡି ଶବ୍ଦରୁ ଉତ୍ପତ୍ତି ବା ସୃଷ୍ଟି ହୋଇଥିବାର ଜଣାଯାଏ ।

ଲକ୍ଷ୍ୟ କରିବାର କଥା ଯେ ମଣ୍ଡେଇ ଯାତ୍ରା ପାଳନ କରାଯାଉଥିବା ସ୍ଥାନ ଗୁଡ଼ିକ ଛତିଶଗଡ଼ ସୀମା ସମୀପବର୍ତ୍ତୀ ଏକଦା ବସ୍ତର ଓ କୋରାପୁଟକୁ ନେଇ ଗଢ଼ି ଉଠିଥିବା ଚିତ୍ରକୋଟ ସାମ୍ରାଜ୍ୟର ଅଂଶବିଶେଷ ।

ପ୍ରତିବର୍ଷ ନବରଂଗପୁର ଜିଲ୍ଲା କୋଡ଼ିଙ୍ଗା ବ୍ଲକ୍ ଅନ୍ତର୍ଗତ କଷା ଗୁମୁଡ଼ା ଠାରେ ପ୍ରଥମେ ମଣ୍ଡେଇ ଅନୁଷ୍ଠିତ ହୁଏ । ତାପରେ କୋରାପୁଟ ଜିଲ୍ଲାର ବୋରିଗୁମ୍ମା, ନବରଂଗପୁର ଜିଲ୍ଲା ଡାବୁଗାଁ, ରାଜୋଡ଼ା, କୁସୁମୀ, ବକଡ଼ା ବେଡ଼ା, ଧଡ଼ରା, ରାଇଘର (ମୁଣ୍ଡିବେଡ଼ା)କୁ ନେଇ, ହାଟ ଭରଣ୍ଡି, ପୋଡ଼ାଗଡ଼, ପ୍ରଭୃତି ସ୍ଥାନରେ ମଣ୍ଡେଇ ଯାତରାମାନ ଆୟୋଜିତ ହୁଏ । ବୀମା ଦେବତା, ଭୈରବ ଦେବତା, ମାଓଲି (ଦନ୍ତେଶ୍ୱରୀ) ମାଇ, ଇଙ୍ଗାଲାଜିନ୍, ପରଦେଶିନ୍ ଠାକୁରାଣୀ ମାତା ଆଦିଙ୍କ ପ୍ରତୀକ (ଲାଠି, ଛତ୍ର, ବିମାନ, କୁର୍ଚ୍ଚି, ଅଙ୍ଗା, ଗାପା) ସେଠାରେ ଏକତ୍ରିତ ହୁଅନ୍ତି । ଯେଉଁଠାରେ ଭୈରବ ମନ୍ଦିର ଅଛି ସେହିଠାରେ ପ୍ରାୟ ମଣ୍ଡେଇ ପାଳିତ ହୁଏ । ଦେବଦେବୀଙ୍କର ପବିତ୍ର ପାଦଧୂଳି ଗାଁ ଦାଣ୍ଡରେ ପଡୁ, ସେମାନଙ୍କ ଆଶୀର୍ବାଦରୁ ବର୍ଷ ଯାକର କୃଷିଜାତ ଦ୍ରବ୍ୟର କିଣାବିକା ହାଟ ବଜାର ଭଲ ଭାବରେ ପରିଚାଳିତ ହେଉ ବୋଲି କାମନା କରି ମଣ୍ଡେଇ ଯାତରା ପାଳନ କରାଯାଇଥାଏ । ମଣ୍ଡେଇ ଯାତରା ପୂର୍ବରୁ ଗାଁର ନାୟକ, ଗାଉଁତିଆ ଗାଣ୍ଡା, ଚଲାନ୍ ଓ ନିକଟସ୍ଥ ଗ୍ରାମ ମୁଖିଆମାନେ ବସି ମଣ୍ଡେଇ ଯାତ୍ରା (ପରବ)ର ଦିନ, ବାର, ତିଥି ସ୍ଥିର କରନ୍ତି । ଗାଣ୍ଡାଦ୍ୱାରା ଏହା ଆନୁଷ୍ଠାନିକ ଭାବେ ଘୋଷଣା କରାଯିବା ପରେ ବିଧି ଅନୁଯାୟୀ ଆଖପାଖ ସମସ୍ତ ଗ୍ରାମ ଦେବଦେବୀଙ୍କ ସେହି ଗ୍ରାମ ଗୁଡ଼ିକର ପୂଜାରୀମାନଙ୍କ ମାଧ୍ୟମରେ ନୂଆ ଚାଙ୍ଗୁଡ଼ିରେ ଶୁକ୍ଲ ଫୁଲ ପଠାଇ ନିମନ୍ତ୍ରଣ କରାଯାଏ । ପାରମ୍ପରିକ ବିଧି ଅନୁସାରେ ସମସ୍ତ ନିମନ୍ତ୍ରିତ ଦେବାଦେବୀଙ୍କ ପ୍ରତୀକାତ୍ମକ ଲାଠି-ଦିସାରୀ, ଶିରହା, ପୂଜାରୀ ମାନଙ୍କ ଦ୍ୱାରା ବାଜା ବାଜଣା କରି ମହା ସମାରୋହରେ ସ୍ଥିର କରାଯାଇଥିବା ଯାତରା ସ୍ଥଳୀର ଗ୍ରାମରେ ଥିବା ପୂଜାରୀ ଘରକୁ ଆସିଥାନ୍ତି । ପୂଜାରୀ ଘରେ କିଛି ସମୟ ଅବସ୍ଥାନ କରିବା ପରେ ସେମାନେ ଗାଁର ଭୈରବ ଗୁଡ଼ିକୁ ଯାଆନ୍ତି । ସେଠାରେ ପୂଜା ଅର୍ଚ୍ଚନା ସରିବା ପରେ ସେମାନେ ଏ ମନ୍ଦିରରୁ ଶୋଭା ଯାତ୍ରାରେ ବାହାରି ମଣ୍ଡେଇ ଭଟା (ପଡ଼ିଆ)କୁ ଆସି ଏକତ୍ରିତ ହୁଅନ୍ତି । ରାତିରେ ଦୋକାନ ବଜାର ବସେ । ନାଚ ଗୀତ ହୁଏ । ବହୁ ଲୋକ ଜମା ହୁଅନ୍ତି । ମଣ୍ଡେଇ ଯାତରା (ପରବ)ର ପରଦିନକୁ ବାସି ମଣ୍ଡେଇ

କୁହାଯାଏ । ସେଦିନ ଦେବତାମାନେ ସ୍ୱ ସ୍ୱ ଗ୍ରାମକୁ ପ୍ରତ୍ୟାବର୍ତ୍ତନ କରନ୍ତି ଓ ଯାତ୍ରାର ଅବସାନ ଘଟେ ।

୧୨. **ମଣ୍ଡେଇ ଲୋକ ମହୋତ୍ସବ** - *ଦେ.ବି. :* ନବରଂଗପୁର ଜିଲ୍ଲାର ଲୋକ ମହୋତ୍ସବ । ସରକାରୀ ଭାବେ ମଣ୍ଡେଇକୁ ପ୍ରତୀକ କରି ୨୦୦୨ ଅକ୍ଟୋବର ୨ ତାରିଖ ଠାରୁ ୫ ତାରିଖ ଯାଏ ଏକ ପର୍ବ ପାଳନ କରାଯାଇ ଆସୁଅଛି । ଏଥିରେ ସରକାରୀ ପ୍ରଶାସନ ସ୍ଥାନୀୟ ଅଧିବାସୀଙ୍କ ସହଯୋଗ ଲୋଡ଼ିଥାଏ । ଏହି ଜିଲ୍ଲାର ଆଦିବାସୀ ସଂସ୍କୃତିକୁ, ତାର ଗରିମା ଓ ମହନୀୟତାକୁ ସର୍ବ ଭାରତୀୟ ସ୍ତରରେ ପରିଚିତ କରାଇବା ଏହି ମଣ୍ଡେଇ ଲୋକ ମହୋତ୍ସବର ମୂଳ ଲକ୍ଷ୍ୟ । ଏହି ତିନିଦିନ ବ୍ୟାପି ହେଉଥିବା ଲୋକ ମହୋତ୍ସବରେ ସ୍ଥାନୀୟ ଆଦିବାସୀଙ୍କ ପ୍ରଦର୍ଶିତ କଳା, ନାଚ, ଗୀତ, ବାଦ୍ୟ, ହସ୍ତଶିଳ୍ପ ଆଦିର ଆୟୋଜନ ହୋଇଯାଇଥାଏ । ଆଦିବାସୀମାନଙ୍କ ମଣ୍ଡେଇ ପର୍ବକୁ ବିକଶିତ କରିବା ନାଁରେ ଜିଲ୍ଲା ସଦରମହକୁମାରେ ଯେଉଁସବୁ କାର୍ଯ୍ୟକ୍ରମ ହୁଏ, ସେଥିରେ ତୃଣମୂଳସ୍ତରରୁ ଲୋକଙ୍କ ଅଂଶଗ୍ରହଣ ଠିକ୍ ଭାବେ ହୋଇପାରେ ନାହିଁ । ବିଭିନ୍ନ କାର୍ଯ୍ୟକ୍ରମରେ ବାହାରୁ ଅଧିକ କଳାକାର ଆସନ୍ତି । ସ୍ଥାନୀୟ ଲୋକେ ଉପଯୁକ୍ତ ଅଂଶଗ୍ରହଣ ଅଭାବରୁ ଧିରେଧିରେ ବିତସ୍ପୃହ ହେଉଛନ୍ତି ।

୧୩. **ମଣ୍ଡେଇ** - *ଦେ.ବି. :* ମାଘ ଓ ଫାଲଗୁନ୍ ମାସରେ ମଣ୍ଡେଇ ପରବ ଅନୁଷ୍ଠିତ ହୁଏ । ପ୍ରତି ଗ୍ରାମର ଦେବୀପୀଠ ମାନଙ୍କରୁ ଲାଠି, କୁର୍ଚ୍ଚି, ଶିକୁଳି ଆଦି ପ୍ରତୀକାତ୍ମକ ଦେବତା ଶିରା ଓ ଦିଶାରି ମାନଙ୍କ ସହ ଏକ ଜାଗାରେ ଏକତ୍ରିତ ହୁଅନ୍ତି । ଗୀତ ନାଟ ପଟୁଆର ହୁଏ । ମେଳା ବସେ । ଅବିଭକ୍ତ କୋରାପୁଟ ଜିଲ୍ଲାର କଷାଗୁମୁଡ଼ା, ଧୋତ୍ରା ଏବଂ ବୋରିଗୁମ୍ମା ମଣ୍ଡେଇ ପ୍ରସିଦ୍ଧ ।

୧୪. **ମର୍ଦ୍ଦଳ** - *ଦେ.ବି. :* ଏକ ପ୍ରମୁଖ ଆନଦ୍ଧ ବାଦ୍ୟ । ପରଜା, କନ୍ଧ, ଭତରା, ଭୂମିଆ ଓ ଅନ୍ୟାନ୍ୟ ଆଦିବାସୀ ସମାଜରେ ନୃତ୍ୟ ସଂଗୀତରେ ଏହି ବାଦ୍ୟଟି ବ୍ୟବହୃତ ହୋଇଥାଏ । କୁମ୍ଭାର ଦ୍ୱାରା ନିର୍ମିତ ମାଟିପାତ୍ରର ଦୁଇ ମୁହଁକୁ ଗୋ ଚର୍ମର ଛାଉଣି କରି ଦୁଇପାପୁଲି ଓ ଆଙ୍ଗୁଳି ଦ୍ୱାରା ଆଘାତ କରି ବାଦନ କରାଯାଏ । ଏହାର ସ୍ୱାତନ୍ତ୍ର୍ୟ ହେଉଛି ଢୋଲକ ଭଳି ଏହାର ଖୋଳଟି କାଠରେ ତିଆରି ନ ହୋଇ ମାଟିରେ ତିଆରି ହୋଇ ପୋଡ଼ା ଯାଇଥାଏ । ସୁତରାଂ ଏହାର ସ୍ୱର ଅଲଗା ହୋଇଥାଏ । ଏହି ଶ୍ରେଣୀର ଅନ୍ୟ ଆନଦ୍ଧବାଦ୍ୟ ହେଉଛି, ଘୁମୁରା, ନାଗରା, ଢୋଲ, ଟମକ, ଦାଦୁର, ବାଳି

ଘୁମୁରା, ବଡ଼ ନାଗରା ଓ ଶିଙ୍ଘ ବାଦ୍ୟ ଇତ୍ୟାଦି । ଅନ୍ୟ ଅଞ୍ଚଳରେ ପ୍ରଚଳିତ ମୃଦଙ୍ଗ ଭଳି ମର୍ଦ୍ଦକ ହେଉଛି ଏକ ସିଲିଣ୍ଡର ଆକୃତି ବାଦ୍ୟ । କିନ୍ତୁ ମୃଦଙ୍ଗ ପ୍ରଚଳନର ବହୁ ପୂର୍ବରୁ ଏହି ଦେଶିଆ ବାଦ୍ୟର ବ୍ୟବହାର ହୋଇ ଆସୁଛି । ମୃଦଙ୍ଗ ଏହାର ବିବର୍ତ୍ତିତ ରୂପ ।

୧୫. ମରା ଦେବତା - *ଦେ.ବି. :* ମନୁଷ୍ୟ ମୃତ୍ୟୁପରେ ଦେବତା ଭାବରେ ପୂଜିତା ବା ପ୍ରକୀର୍ତ୍ତିତା ହୋଇଥିବା ଦେବୀ । ବିଶେଷ ପରିସ୍ଥିତି ବା ଘଟଣାରେ ଏମାନଙ୍କ ମୃତ୍ୟୁ ଘଟିଥାଏ ।

ଦେବ : ଦେବୀ : ଆଦିବାସୀ ସମାଜରେ କୌଣସି ପୁରୁଷ ବା ସ୍ତ୍ରୀ, ବିଶେଷ ଭାବେ ସ୍ତ୍ରୀ ଲୋକ କିଛି ଭଲ କାମ କରି କିମ୍ୱା ଦେବୀ ପ୍ରକୋପ / ସାମାଜିକ କୁସଂସ୍କାର ବା ଅନ୍ଧ ବିଶ୍ୱାସ ଯୋଗୁଁ ମୃତ୍ୟୁବରଣ କରି ମନୁଷ୍ୟରୁ ଦେବୀରେ ପରିଣତ ହେବାର ଦେଖାଯାଇଥାଏ । ଏହା ଏହିପରି ଏକ ଧାର୍ମିକ ବିଶ୍ୱାସ, ଯାହା ଅନୁସାରେ ଜଡ଼ ଏବଂ ଭୌତିକ ପଦାର୍ଥ ମଧ୍ୟରେ ଅଲୌକିକ ଶକ୍ତିର ପ୍ରତିଷ୍ଠା ଅଥବା ଜୀବାତ୍ମାର ବାସ ହୋଇଥାଏ । ଯେବେ ସେମାନଙ୍କୁ ଏହି ଭାବନାରେ ପୂଜା କରାଯାଏ ତେବେ ଏହି ବସ୍ତୁକୁ 'ଫେଟିଶ୍' ଓ ଏହି ବିଶ୍ୱାସକୁ 'ଫେଟିଶ୍‌ବାଦ' କୁହାଯାଏ ।

ମରା ଦେବତାଙ୍କ ଉଦାହରଣ : ଗଣ୍ଡ ଆଦିବାସୀମାନଙ୍କ :

(୧) ପେଣ୍ଡରା ଅଣ୍ଡିଏନ୍ ବା ପେଣ୍ଡରା ଗଡ଼ିଏନ୍ ମାତା (ପେଣ୍ଡ୍ରାଣୀ) : ପ୍ରସିଦ୍ଧ ଲୋକ ଦେବୀ, ଉମରକୋଟ, ନବରଂଗପୁର) (ଦ୍ର. ପେଣ୍ଡ୍ରାଣୀ)

(୨) ଗ୍ରାବରାଇ ମାତା (ଗର୍ଭରାଇ : ଭତରାମାନଙ୍କ ଲୋକଦେବୀ, ମୈଦଲପୁର, ନବରଂଗପୁର) (ଦ୍ର. ଗ୍ରାବରାଇ ।)

୧୬. ମରିପେନୁ - *ଦେ.ବି. :* ନଦୀ ଦେବତା ବା ଜଳ ଦେବତା । କନ୍ଧ ସମାଜରେ ନଦୀ, ନାଳ ବା ପାଣି ଘାଟକୁ ଦେବତାଙ୍କ ଆଶ୍ରୟସ୍ଥଳୀ ଭାବେ ବିଶ୍ୱାସକୁ ନେଇ ପୂଜା କରାଯାଏ । କୁମାରୀମାନେ ରଜସ୍ୱଳା ହେବାପରେ ପ୍ରଥମ ସ୍ନାନବେଳେ ମଧ୍ୟ ଏହାଙ୍କ ପୂଜା କରାଯାଏ ।

୧୭. **ମଶାନ୍ - ମଶାଣି** - *ଦେ.ବି. :* ଶବପୋଡ଼ା ସ୍ଥାନ : ଇଂ- The burning ground. ଶବର ପୋଡ଼ା ବା ପୋଡ଼ା ଭୂଇଁର ମାଟି : ଆଦିବାସୀ ମଣିଷମାନେ ବିଶ୍ୱାସ କରନ୍ତି ଯେ, ସେମାନଙ୍କ ପରିବାରରେ ଯେଉଁମାନେ ମୃତ୍ୟୁବରଣ କରନ୍ତି, ସେମାନେ ଶରୀରରେ ସେମାନଙ୍କ ସହ ନ ରହିଲେ ମଧ୍ୟ ସେମାନଙ୍କ ଆତ୍ମା ସେମାନଙ୍କ ସହିତ ସବୁଦିନେ ରହିଥାଏ । ସେମାନଙ୍କୁ ମନେପକାଇ ପୂଜା ନୈବେଦ୍ୟ ଦେଇ ସେମାନଙ୍କର ସହ ସଂପର୍କ ରଖିଲେ ସେମାନେ ପରିବାର ମଂଗଳ ସାଧନ କରିବା ସହ ଉତ୍ତରପୁରୁଷଭାବେ ପୁଣିଥରେ ସେଇ ପରିବାରରେ ଜନ୍ମ ନେଇଥାନ୍ତି । ଏଇଥିପାଇଁ ସବୁ ଗୋଷ୍ଠୀର ଆଦିବାସୀ ଲୋକେ ଘରର ଗୋଟିଏ କୋଣରେ ପୂର୍ବ ପୁରୁଷଙ୍କ 'ମଶାନ' ପୋତିଥାନ୍ତି । ସେମାନେ ଏହି ସ୍ଥାନରେ ମୃତ ବ୍ୟକ୍ତିର 'ମଶାନ'ରୁ ସଂଗୃହୀତ ମୁଠାଏ ମାଟି ଆଣି ପୋତିଥାନ୍ତି । ସେମାନଙ୍କର ବିଶ୍ୱାସ ଏପରି କରିବା ଦ୍ୱାରା ପୂର୍ବ ପୁରୁଷଙ୍କ ଆତ୍ମା ସବୁଦିନେ ତାଙ୍କ ସହିତ ରହିପାରିବେ ।

୧୮. **ମଶାନ୍ ଡୁମ୍ବା** - *ଦେ.ବି. :* ମଶାଣିର ଡୁମ୍ବା ବା ଭୂତ । ଏହି ଭୂତ ମଶାଣିରେ ଥାଏ । କୌଣସି ବ୍ୟକ୍ତି ଦେହରେ ପ୍ରବେଶ କଲେ ଦିଶାରୀ ଝଡ଼ାଫୁଙ୍କା କରି ନିମ୍ନମନ୍ତ୍ର ବୋଲି ଭୂତ ଛଡ଼ାଇଥାଏ ।

ଆଲବାନ୍ ଇଲବାନ୍ ସାରି (ଚାରି) ସଙ୍ଗରା ଦେବୀ ଦେବତା,
ଅସ୍ (ଷ) ପତର ଦେଲେ ସୁସି (ଘୁଞ୍ଚି) ଯା -
ଦେହକେ ଛାଡ଼ି ।

୧୯. **ମସନ୍** - *ଦେ.ବି. :* ମଶାଣି / ଶ୍ମଶାନ : ଇଂ.- Burning yard, Grave yard : ଏହା ଗାଁଠାରୁ ଏବଂ ବେଜରନା ଠାରୁ ଦୂରରେ ଥାଏ । ଲୋକ ମଲାପରେ ତାର ଶବକୁ ଚାରିଜଣ ଲୋକ ବାଉଁଶ ଡାଣ୍ଡିଆରେ ବହି ନିଅନ୍ତି । ମସନ୍‌ରେ ଓହ୍ଲାଇ ଦେଇ ସେହି ଲୋକର ଥାଳୀ, କଂସା ଏବଂ ଧନୀ ଲୋକ ହୋଇଥିଲେ ପିତଳ ବା ସିଲଭର ହାଣ୍ଡି ଓ କିଛି ମୁଦ୍ରା ସେଠାରେ ପୋତି ଦିଅନ୍ତି । ଶବ ଓହ୍ଲାଇ ତା'ର ଅଣ୍ଟା ଦଉଡ଼ି କାଟି ଦିଅନ୍ତି । ଚିତା ସଜାଇ ତା ଉପରେ ଖଣ୍ଡେ ନୂଆ ଲୁଗା ବିଛେଇ ଶବ ଥୁଆଯାଏ ଓ ତା ଉପରେ ଆଉ ଏକ ନୂଆ ଲୁଗା ଘୋଡ଼େଇ ଦିଆଯାଏ । ତା'ପରେ ତାର ପୁଅ ପିରିରେ ନିଆଁ ଦେଇ ଦୁଇପଟେ ୩ଥର ବୁଲିବ ଓ ଦୁଇପଟୁ ନିଆଁ ଲଗାଇବ । ଗାଁ ଯାକ ଲୋକେ ଓ ଅନ୍ୟ ଗାଁର ଭାଇବନ୍ଧୁ କୁଟୁମ୍ବ ଚିତା ଦଳାଇବାରେ

ସାହାଯ୍ୟ କରିବେ । ନିଆଁ ଧରିଯିବା ପରେ ଗାଁର ଜଣେ ମୁଖ୍ୟ ଲୋକ ତାର ନାଁ ଧରି ଡାକନ୍ତି । "ଏ ଅମୁକ ଲୋକ, ତୋର ଘରେ ଜଇ ଲାଗ୍‌ଲା ଆଚେ । ନିଭାଇବ ଆଓ ।" ଏହିପରି ତିନିଥର ଡାକି ସାରିବା ପରେ ଜଇ ଜଳି ଉଠିଲେ, ସମସ୍ତେ ଫେରି ଆସି ନଦୀରେ ଗାଧୋଇ ଥାଆନ୍ତି । ପୁଣି ୩ ଦିନ ପରେ ପିତା ଛିଇବା ଦିନ ଅସ୍ଥି ବାହାର କରି ପିତା ମାଛ, ହଳଦି ଭାତ ରାନ୍ଧି ବେଜରନାରେ ଛାଡ଼ିଦେବେ । ତା'ପରେ ସେଇ ଅସ୍ଥି ସ୍ଥାପନ କରି ସ୍ୱଚ୍ଛଳତା ଥିବା ଲୋକ ସମାଧି କରିଥାଆନ୍ତି କିମ୍ବା ତାହାକୁ ନେଇ ପୁରୀ, ଚନ୍ଦ୍ରାଭାଗା କିମ୍ବା ଗଂଗାରେ ପକାଇଥାଆନ୍ତି । ଆଗରୁ ପୁରୀ ପଣ୍ଡାମାନେ ଗାଁ ଗାଁ ବୁଲି ଲୋକଙ୍କ ଅସ୍ଥି ନେଇ ଗଂଗାରେ ପକାଇବାକୁ ପ୍ରବର୍ତ୍ତାଉଥିଲେ ଓ ବହୁ ପଇସା ଆଦାୟ କରୁଥିଲେ । ଏବେ ଏହା କମିଛି । ପିତା ଛିଇବା ପରେ ଲୋକମାନେ ତେଲ ଲଗାଇ ଗାଧୁଅ ପାଧୁଆ କରି ସମସ୍ତ ମାଲଭାଇମାନେ ଓ ଭାଇବନ୍ଧୁ କୁଟୁମ୍ବ ଭାତ, ମାଂସ ଓ ମାଛ ଭୋଜିକରି ଖାଇଥାନ୍ତି । ଏହି ମସନ ପ୍ରତି ଲୋକମାନଙ୍କର ଭୟ ରହିଥାଏ । ରାତିବେଳେ ଏକୁଟିଆ ସେଇ ବାଟ ଦେଇ ଯିବାକୁ ଡରନ୍ତି । ଏହ ମସନ୍ ସଂପର୍କରେ ୨ଟି ବହୁ ପ୍ରଚଳିତ ଗୀତ : (୧) "ଗଚକୁ ମାରିଲି ଚଉଦ ଚେକା ଗଚର ପଚର ଏକା ଆମେ ମରିଗଲେ ମସନ ଦେକା ଜଲେ ବୁଡ଼ି ଆତ ଟେକା ।" (୨) "ନାନା ଜାତି ଫୁଲେ ବସେ ଭ୍ରମର, ତିରି ପୁରୁଷର ମାୟା ସଂସାର, ଯମର ଜୀବନ ଯମ ଗେନିଗଲେ ମସାନେ ଉଇସି ହାଡ଼ ।"

୨୦. ମଲଲିଗୁଡ଼ା - *ଦେ.ବି.* : ମାଲକାନଗିରି ଜିଲ୍ଲାର ଏକ ଗ୍ରାମର ନାମ । କତାପାଲି ପଞ୍ଚାତର ଏହି ଗାଁଟି ଗଇଲ ଟାରି ଓ ବାଟିଗୁଡ଼ା ମଝିରେ ପଡ଼େ । ଗାଁଟି ଠିକ୍ ଗୋଟିଏ କୁପୁଲି ତଳକୁ । ଏହି କୁପୁଲିର ନାମ ହେଉଛି ମଲଲି କୁପୁଲି । କୋୟା ଭାଷାରେ ମଇଲି ଶବ୍ଦର ଅର୍ଥ ହେଉଛି ଠେକୁଆ । ଏହି କୁପୁଲି ଥିଲା ଠେକୁଆମାନଙ୍କ ପାଇଁ ପ୍ରସିଦ୍ଧ । ମଲଲି ଶିକାର ପାଇଁ ଏବେବି ଶିକାରୀମାନେ ଏଠାକୁ ଆସନ୍ତି । ଏହି କୁପୁଲିର ନାମ ଅନୁସାରେ କୋୟା ବସତିର ନାଁ ହୋଇଛି 'ମଲଲିଗୁଡ଼ା' ।

୨୧. ମଲୁଆ ମୂଷା - *ଦେ.ବି.* : ମୂଷା ପ୍ରଜାତିର ଜୀବ ବିଶେଷ । ଦେହର ରଂଗ କଳା । ଲାଞ୍ଜ ଲମ୍ବା ନେଉଳ ଭଳି ମୁହଁ । କିନ୍ତୁ ସାଧାରଣ ନେଉଳଠାରୁ ଆକାରରେ ବଡ଼ । ତାର ଖାଦ୍ୟ ଫଳ ଓ କନ୍ଦା । ଗଛ ମଧ୍ୟରେ କୋରଡ଼ରେ ମୁଖ୍ୟତଃ ରହୁଥାଏ । ଦୁରୁଆ, ହଲବୀ ଓ କୋୟାମାନେ ଏହାକୁ ଶୀକାର କରି ଏହାର ମାଂସ ମଧ୍ୟ ଖାଆନ୍ତି ।

ଏହ ଅଢ଼େଇରୁ ତିନି କେ.ଜି. ହୋଇଥାଏ । ଓଡ଼ିଆରେ ଏହା ମାଲୁଆ ବା ମାହୁଲିଆ ମୂଷା ବୋଲି କହିଥାନ୍ତି ।

୨୨. **ମହଲାନି** *ଦେ.ବି. :* ଖୁଡ଼ିଲୁଗା – ବିବାହ କାଳରେ ମାନ୍ୟାର୍ଥେ ଖୁଡ଼ିକୁ ଯେଉଁ ଲୁଗା ଦିଆଯାଏ । କନ୍ୟାର ଖୁଡ଼ିକୁ ବର ପକ୍ଷରୁ ଏହି ମହଲାନି ଦିଆଯାଇଥାଏ ।

୨୩. **ମହୁପଦର ବା ବାଡ଼ିଆ ପାଲ** – *ଦେ.ବି. :* ମାଲକାନଗିରି ଜିଲ୍ଲାର ଏକ ଗ୍ରାମ ବିଶେଷ । ଏହି ଅଞ୍ଚଳରେ ମୁଖ୍ୟ ଏକ ଗାଁ ହେଉଛି ମହୁପଦର । କିନ୍ତୁ ଦୁରୁଆମାନେ କହନ୍ତି ବାଡ଼ିଆ ପଲ୍ । ରେଭିନ୍ୟୁ ରେକର୍ଡ଼ରେ ବୋଧହୁଏ ମହୁଲ ଗଛର ପ୍ରାଚୁର୍ଯ୍ୟ ଦୃଷ୍ଟିରୁ ଏ ଗାଁର ନାମ ମହୁପଦର କରି ଦିଆଯାଇଛି । ଦୁରୁଆ ଭାଷାରେ ବାଡ଼ିଆର ଅର୍ଥ କୁରୁଆ ବା ପେଚା । ଏହି ଜଂଗଲରେ ବହୁ ସଂଖ୍ୟାରେ ବିଭିନ୍ନ ଜାତିର ପେଚା ରହୁଥିଲେ ଓ ରାତିହେଲେ ପତର ପତର କାନ୍ଦୁଥିଲେ । ଏହି ଗାଁରେ ରହୁଥିବା ଦୁରୁଆମାନେ ହେଉଛନ୍ତି ଏଠାକାର ମୁଲ୍‌କା ବା ମୂଳ ଅଧିବାସୀ । ଏବେ ମଧ୍ୟ ଗାଁର ରହୁଥିବା ଦୁରୁଆମାନେ ଗାଁକୁ ବାଡ଼ିଆ ପାଲ୍ କହୁଥିଲାବେଳେ ଏଠାକାର କୋୟା, କାଲାର, କୁମ୍ଭାର ଓ ଗଉଡ଼ମାନେ ନିଜ ଗାଁକୁ ମହୁପଦର ବୋଲି କହନ୍ତି । ସାଲ୍‌ମି ଭଳି ଏଠାକାର ମାଉଲି ମଧ କାଣୀବୁଢ଼ୀ, ଏଠାକାର ଦେବତା ହେଉଛନ୍ତି ଚୁର୍‌ବୁଜା । ଚଇତ ପରବ ବେଳେ ଏଠି ମଣ୍ଡେଇ ପୂଜା ହୁଏ ।

୨୪. **ମହୁରିଆ** – *ଦେ.ବି. :* ମହୁରି ବାଦକ । କୋରାପୁଟରେ ପୁରୁଷାନୁକ୍ରମେ ଡମ ସଂପ୍ରଦାୟର ଲୋକ ମହୁରି ବାଦନ କରି ଆସୁଛନ୍ତି । ଏମାନଙ୍କୁ ମହୁରିଆ କୁହାଯାଏ । ଏମାନଙ୍କ ସଂଜ୍ଞା ମଧ ମହୁରିଆ ଯଥା ଗାଡ଼ଗୁଣ୍ଡାଳର ମନ ମହୁରିଆ, ମଦନ ମହୁରିଆ ଇତ୍ୟାଦି । ଆଦିବାସୀମାନେ ସାଧାରଣତଃ ମହୁରି ବଜାଇବା ଦେଖାଯାଏ ନାହିଁ । ଏହା ଏକ ଜାତି ଭିତ୍ତିକ ଲୋକବାଦ୍ୟ ପରମ୍ପରା । ଆଉ ମଧ ଏହା ମୁଖ୍ୟ ଦେବବାଦ୍ୟ ।

୨୫. **ମହୁରୀ** – *ଦେ.ବି. :* ଏକ ମୁଖ୍ୟ ସୁଷିର ବାଦ୍ୟ । ଏହି ୫/୬ଟି ଛିଦ୍ର ବିଶିଷ୍ଟ ବାଦ୍ୟକୁ ଫୁଙ୍କି ବଜାଯାଏ । କୋରାପୁଟ ଅଞ୍ଚଳରେ ଦୁଇ ପ୍ରକାରର ମହୁରୀ ଯଥା କାଠ ଓ ପିତଳ ମହୁରୀ ପ୍ରଚଳିତ । ସଂପ୍ରତି କାଠ ମହୁରୀ ଲୁପ୍ତ ପ୍ରାୟ । କୋରାପୁଟର ଅଧିକାଂଶ ଆଦିବାସୀଙ୍କ ନୃତ୍ୟଗୀତ ଓ ବିଭିନ୍ନ ଅବସରରେ ଅନ୍ୟାନ୍ୟ ବାଦ୍ୟ ସହ

ମହୁରୀ ବାଦନ କରାଯାଇଥାଏ । ମହୁରୀର ତିନୋଟି ଅଂଶ ଥାଏ । ଯଥା : ପିକ, କାଠନଳୀ ଓ କାହାଳୀ । ଏହି କାଠନଳୀରେ ହିଁ ୫ରୁ ୬ଟି ଛିଦ୍ର ଥାଏ । ଏସବୁକୁ ଯୋଡ଼ି ମହୁରିଆ ମହୁରୀ ବଜାଏ । ଶୁଭ ଅଶୁଭ ସବୁ କାର୍ଯ୍ୟରେ ଆଦିବାସୀ ସଂପ୍ରଦାୟରେ ଏହି ମହୁରୀ ବାଦ୍ୟ ବଜାଯାଇଥାଏ । ଢେମ୍‌ସା ନାଚରେ ଏହା ମୁଖ୍ୟତଃ ସ୍ୱର ସଂଯୋଜକ ଓ ବାଦ୍ୟ ନିୟନ୍ତ୍ରକର ଭୂମିକା ତୁଲାଇଥାଏ ତେଣୁ ମହୁରିଆ ହିଁ ମୁଖ୍ୟ ନୃତ୍ୟ ପରିଚାଳକ ବନିଥାଏ ।

୨୬. ମହୁଲି - *ଦେ.ବି. :* ଏହା ଆଦିବାସୀ ଅଞ୍ଚଳରେ ମିଳୁଥିବା ଏକ ପ୍ରକାର ନିଶାଯୁକ୍ତ ପାନୀୟ । ଆଦିବାସୀ ଲୋକମାନେ ଶୀତଋତୁରେ ମହୁଲ ଗଛରୁ ମହୁଲ ଫୁଲ ସଂଗ୍ରହ କରି ଏହାକୁ ବର୍ଷକପାଇଁ ସାଇତି ରଖନ୍ତି । ଏଇ ଫୁଲରୁ ମହୁଲି ତିଆରି କରିବାକୁ ଯାଇ ସେମାନେ ଏହାକୁ ପ୍ରଥମେ କିଛି ଦିନଯାଏ ଏକ ମାଟିହାଣ୍ଡିରେ ପାଣିଦେଇ ଉକ୍ତ ଫୁଲକୁ ବତୁରାଇ ରଖନ୍ତି । ଏହା ପଚିଗଲେ ଏହାକୁ ନିଆଁରେ ବସାଇ ସିଝାଯାଏ । ଫୁଲଗୁଡ଼ିକ ଭଲଭାବେ ଚିପୁଡ଼ି ବାହାର କରିଦିଆଯାଏ । ପରେ ଏହି ରସକୁ ପିଇଲେ ଏହା ଶରୀର ପାଇଁ ବେଶ୍ ନିଶାଯୁକ୍ତ ଦ୍ରବ୍ୟର କାମ ଦେଇଥାଏ ।

ମହୁଲୀ ପ୍ରସ୍ତୁତ ପ୍ରଣାଳୀ : ମହୁଲକୁ ପ୍ରଥମେ ପାଣିରେ ଭିଜାଇ ପୋଚ ପ୍ରସ୍ତୁତ କରାଯାଏ । ଏଥିପାଇଁ ଖରାଦିନେ ତିନିଦିନ ଓ ଶୀତଦିନେ ପାଞ୍ଚଦିନ ଲୋଡ଼ା । ଏହି ପୋଚକୁ କୁହାଯାଏ 'ପାଶ୍' । ଏହି ପାଶ୍‌କୁ ତିନୋଟି ପର୍ଯ୍ୟାୟରେ ରନ୍ଧାଯାଇପାରେ ।

ପ୍ରଥମ ପଦ୍ଧତି : ପ୍ରଥମେ ଗୋଟିଏ ବଡ଼ ହାଣ୍ଡିରେ ପାଶ୍ ରଖାଯାଇ ତା ଉପରେ କଣାଥିବା ଗୋଟିଏ ଛୋଟ ହାଣ୍ଡି ଉଗୁଡ଼ା ଯାଏ । ଛୋଟହାଣ୍ଡିର କଣାରୁ ନଳା ଆସି ପାଣି ଉପରେ ଥିବା ହାଣ୍ଡିରେ ଲାଗିଥାଏ । ଏହାକୁ କୁହାଯାଏ 'କଫରା' । ସବୁ ଫାଙ୍କା ଜାଗାକୁ ମାଟି ବା ଗୋବରଯୁକ୍ତ ପାଉଁଶ ଲେପି ବନ୍ଦ କରାଯାଏ । ତଳେ ଜାଳଦେଲେ ପାଶ୍‌ର ବାଷ୍ପ ନଳା ଜରିଆରେ ଆସି ତଳ ଗରିଆରେ ପଡ଼େ । ଏହା ପ୍ରଥମ ପ୍ରକାରର ମହୁଲିମଦ । ପାଣି ଜାଗାଥିଲେ ଅର୍ଥାତ୍ ପାଖରେ ନଦୀ, ଝୋଲା ବା ପୋଖରୀ ଥିଲେ ଏହି ପଦ୍ଧତି ସହଜ ହୁଏ ।

ଦ୍ୱିତୀୟ ପଦ୍ଧତି : ପେଣ୍ଡମ୍ ପ୍ରସ୍ତୁତ ପ୍ରଣାଳୀରେ ମହୁଲ ପାଶ୍‌କୁ ଫୁଟାଇ ଓ ତାର ବାଷ୍ପକୁ ଶୀତଳାଇ ରୋଷେଇ ଘରେ ବା ବାହାରେ ପ୍ରସ୍ତୁତ କରାଯାଇପାରେ । (ଦ୍ର. ପେଣ୍ଡମ୍)

ତୃତୀୟ ପଦ୍ଧତି : ସାଧାରଣତଃ କୋୟା, ଦୁରୁଆ ଓ ହଲ୍‌ବିମାନେ ଏହି ପଦ୍ଧତିରେ ମହୁଲି ପ୍ରସ୍ତୁତ କରିଥାନ୍ତି । ପ୍ରଥମେ ବଡ଼ ହାଣ୍ଡିରେ ମହୁଲ ପାଶ୍ ରଖାଯାଏ । ସେହି ହାଣ୍ଡିର ଫନ୍ଦ ଆଡ଼କୁ ଏକ କଣାଥାଏ । ସେଥିରେ କାଠର ଏକ ଚଟ୍‌କା ଚଟୁ ଖଞ୍ଜା ହୋଇଥାଏ । ତାର ହ୍ୟାଣ୍ଡେଲ୍ ଏକ ନଳାର କାର୍ଯ୍ୟ କରୁଥାଏ । ଏହି ହ୍ୟାଣ୍ଡଲ୍ ସେହି କଣା ବାଟେ ବାହାରକୁ ବାହାରିଥାଏ । ଏହା ହାଣ୍ଡି ଭିତରେ ଉପର ଆଡ଼କୁ ରହିଥାଏ ଓ ଦଉଡ଼ି ଦ୍ୱାରା ହାଣ୍ଡିର ଫନ୍ଦ ଦେହରେ ବନ୍ଧା ହୋଇଥାଏ । ଏହି କାଠ ଚଟୁ ଫନ୍ଦଥିବା ଏକ ଥାଳି ଭଳିଆ । ଏହା ମହୁଲପାଶ୍‌କୁ କିମ୍ବା ହାଣ୍ଡିକୁ ଛୁଏଁ ନାହିଁ । ଏହି ହ୍ୟାଣ୍ଡଲ୍ ନଳୀ ମୁହଁରେ ଅନ୍ୟ ଏକ ଖାଲି ମାଟିହାଣ୍ଡି ରଖାଯାଏ । ପାଶ୍ ହାଣ୍ଡିଉପରେ ତା ଠାରୁ ଛୋଟ ଗୋଟିଏ ପାଣି ହାଣ୍ଡି ଥୋଇଦେଇ ତଳୁ ଜାଳ ଦିଆଯାଏ । ପାଶ୍ ଫୁଟିବା ଆରମ୍ଭ କଲେ ଏହାର ବାଷ୍ପ ପାଣି ଭର୍ତ୍ତି ହାଣ୍ଡିରେ ବାଜି ଥଣ୍ଡା ହୋଇ ଚଟୁନଳାରେ ଥୋପାଥୋପା ପଡ଼େ ଓ ହ୍ୟାଣ୍ଡଲ କଣା ଦେଇ ମଦ ଆକାରରେ ତଳେ ଥୁଆ ହୋଇଥିବା ହାଣ୍ଡିରେ ସଂଗୃହୀତ ହୁଏ । ଉପରେ ଥିବା ପାଣି ଗରମ ହୋଇଗଲେ ତାହାକୁ ବଦଳାଇ ପୁଣି ଥଣ୍ଡାପାଣି ଦିଆଯାଏ । ଏହି ମଦକୁ 'ପୁଲି ମଦ' ବା ସବୁଠାରୁ ଶୁଦ୍ଧ ବୋଲି ଧରାଯାଏ । ଏହା ପ୍ରସ୍ତୁତ ପରେପରେ ପିଆଯାଇ ପାରେ । ଯେଉଁ ହାଣ୍ଡିରେ ମଦ ସଂଗ୍ରହ ହୁଏ, ତାହାକୁ 'ମଦ୍‌କଣ୍ଡି' କୁହାଯାଏ ।

୨୭. **ମହୋବା ଦେବତା** - *ଦେ.ବି. :* ଇଙ୍ଗଲାଜିନ୍ (ହିଙ୍ଗଲାଜିନ୍ ମାତା) ଭତ୍ରା ଆଦିବାସୀ ଗୋଷ୍ଠୀ ଦ୍ୱାରା ପୂଜିତ ଦେବତା । ଏହାଙ୍କ ମୂଳସ୍ଥାନ ଛତିଶଗଡ଼ରେ କଲିଗଡ଼, ମଲିଗଡ଼ ଇତ୍ୟାଦି । (ଦ୍ର. ଇଙ୍ଗ୍‌ଲାଜିନ୍)

୨୮. **ମାଆଲାପାଟା** - *ଦେ.ବି. :* ଭୂମିଆ କୁଳର ବିଭାଘର ବେଳେ ବରଘର ତରଫରୁ ଝିଅର ମାମୁ ପାଇଁ ନିଆଯାଉଥିବା ଖଦି ।

୨୯. **ମାଓଲି / ମାଉଲି** - *ଦେ.ବି. :* ଦେବୀ ଦନ୍ତେଶ୍ୱରୀଙ୍କ ସ୍ଥାନୀୟ ଆଦିବାସୀ ନାମ । ସମ୍ବନ୍ଧ : (ଦନ୍ତେଶ୍ୱରୀ ଓ ଭୈରବ ଦେବତାଙ୍କ ମିଥ୍ ।) ବହୁ ଆଦିବାସୀ ଗ୍ରାମ (ନବରଂଗପୁର କୋରାପୁଟ ଜିଲ୍ଲା, ମାଲକାନଗିରି ଜିଲ୍ଲା ତଥା ଛତିଶଗଡ଼)ର ଗ୍ରାମଦେବୀ ଭାବେ ସେ ପୂଜିତା । ଦଶହରା ସମୟରେ ଏହି ଲୋକଦେବୀଙ୍କର ମହାସମାରୋହରେ ପୂଜା ଅର୍ଚ୍ଚନା କରାଯାଏ । (ଦ୍ର. ଦନ୍ତେଶ୍ୱରୀ)

୩୦. ମାଙ୍ଗ୍‌ନି - ଦେ.କ୍ରି. :

ନବରଂଗପୁର ଜିଲ୍ଲା ଭତରାମାନଙ୍କର ତଥା ଅନ୍ୟ ଆଦିବାସୀ ସଂପ୍ରଦାୟର ଏକପ୍ରକାର ବିବାହ ପ୍ରଥା । ମାଙ୍ଗନି : ପୁଅଘର ଝିଅଘରକୁ ଯାଇ ଝିଅର ହାତ ମାଗିବା କ୍ରିୟା । ମାଙ୍ଗନି ବିବାହରେ ଗାଁରେ ଦିସାରିଙ୍କ ମତ ଅନୁସାରେ ବର ଓ କନ୍ୟାର ନାମ, ନକ୍ଷତ୍ର, ବର୍ଷ, ଧର୍ମ, ବର୍ଣ୍ଣର ଗଣନା (ମେଳକ) କରାଯାଏ । ଏହି ମାଙ୍ଗନିର ସାତ ପ୍ରକାରର ପ୍ରଚଳନ ଅଛି । (୧) ଘର ଦେଖନି (୨) ସାନ ମାଙ୍ଗନି (୩) ବଡ଼ ମାଙ୍ଗନି (୪) କନିଆ ଛିଡ଼ନ୍ (୫) ଗୁଆ ସପ୍‌ନି (୬) ଲଗିନ୍ ଦିନ (୭) ମୁନ୍ଦଚିନା ବାସ୍ତବରେ ମାଙ୍ଗ୍‌ନି ବିବାହର ଏହା ହେଉଛି ସାତୋଟି ପର୍ଯ୍ୟାୟ ।

(୧) ଘର ଦେଖନି : କନ୍ୟାଘରକୁ ବର ଘର ଲୋକେ ଚାଉଳ ଚୁନା ଓ ଗୁଡ଼ରେ ତିଆରି ପିଠା ସହ ୪/୫ କି.ଗ୍ରା. ଚୁଡ଼ା ଧରି ଯାଆନ୍ତି । ଏହିଦିନ କନ୍ୟାପିତାଙ୍କୁ କନ୍ୟାର ନାମ, ପ୍ରଥମ ରଜସ୍ୱଳା ହେବାର ଦିନ, ବର୍ଷ, ବଂଶ, ଗୋତ୍ର, ଆଦି ପଚାରି ଦିସାରି ବା ପାଞ୍ଜିଆର ବା ପାଞ୍ଜି କାରିଆ, ଯୋଗପାଗ ନିର୍ଣ୍ଣୟ କରିବା ଲୋକ ବରକନ୍ୟା ନାମ ସୁଝାଗୁଣା କରନ୍ତି ।

(୨) ସାନ୍ ମାଙ୍ଗନି : ଯଦି ଏସବୁ ମେଳକ ହେଲା ବା ସୁଝିଲା, ସାନ୍ ମାଙ୍ଗନ୍ ଯାଆନ୍ତି । ଏହି ଦିନ ପିଠା, ଚୁଡ଼ା ୩ ମାଣ (ପ୍ରାୟ ୮ରୁ ୯ କି.ଗ୍ରା.), ଚାଉଳ ଓ ଡାଲି ନିଅନ୍ତି ।

(୩) ବଡ଼ ମାଙ୍ଗନି : ଏଥିପାଇଁ ୫ମାଣ (୧୫ କି.ଗ୍ରା. ଚାଉଳ) ଡାଲି, ପିଠାପଣା ଓ କିଛି ଚୁଡ଼ା ବରଘର କନ୍ୟାଘରକୁ ନେଇଯାଆନ୍ତି ଓ ଭେଟି ଦିଅନ୍ତି ।

(୪) କନିଆ ଛିଡ଼ନ : ଏହି ଦିନ ବରଘର ଆଡୁ କନ୍ୟାଘରକୁ ଟଙ୍କା ଓ ଧାନ ଆକାରରେ ଜୋଲା (କନ୍ୟାସୁନା) ଦେବାପାଇଁ ଠିକ୍ କରାଯାଏ ଏବଂ ସେ ନେଇ କଥାବାର୍ତ୍ତା ଛିଡ଼େ ।

(୫) ଗୁଆ ସପ୍‌ନି : ଏଥିପାଇଁ ୯ମାଣ ଚାଉଳ, ଡାଲି, ପିଠା, ଉଖୁଡ଼ା (ଖଇ) ବରଘର କନ୍ୟାଘରକୁ ନେଇ ଯାଆନ୍ତି । ଏହିଦିନଠାରୁ ବର ଓ କନ୍ୟାଘରର ଜବାବ ପକ୍କା ହୁଏ ।

(୬) ଲଗିନ୍ : ଗୁଆ ସପନି ପରେ ବରଘର ଦିସାରିକୁ ପଚାରି ବିବାହ ଲଗ୍ନର ତିଥି ଓ ସମୟ ସ୍ଥିର କରନ୍ତି ।

(୭) ମୁଦି ଚିନା (ଚିହ୍ନା) : ସ୍ଥିରୀକୃତ ହୋଇଥିବା ଲଗିନ୍ (ବିବାହ ମୁହୂର୍ତ୍ତ) ଦିନ ବରଘର ୯ ମାଣ ଚାଉଳ, ମେଣ୍ଢା, ଡାଲି, ପନିପରିବା ଇତ୍ୟାଦି ଧରି କନ୍ୟା ଘରକୁ ଯାଆନ୍ତି । ଏହାକୁ 'ମୁଦି ଚିନା' ବୋଲ୍ କହନ୍ତି । ଏହାପରେ ପ୍ରଥା ଅନୁସାରେ ବିବାହ କାର୍ଯ୍ୟ ସଂପନ୍ନ ହୁଏ ।

୩୧. **ମାତେମ୍ ତାରସ୍** - *ଦେ.ବି. :* ଏକ ପ୍ରକାର ଜଂଗଲୀ ପକ୍ଷୀ । ଏହାର ଓଡ଼ିଆ ନାମ ବଜ୍ରକାପ୍ଟା । ଦେହଯାକ ଟାଣୁଆ କାତି । ପଥର ଗୁମ୍ଫାରେ ରହେ । ଖାଦ୍ୟ ଓ ଔଷଧ ପାଇଁ ଏହାକୁ ବହୁପରିମାଣରେ ଶୀକାର କରାଯାଏ । ଲୋକେ ବିଶ୍ୱାସ କରନ୍ତି ଯେ ଏହର କାତି ମଳକଣ୍ଟକ ରୋଗରେ ବ୍ୟବହାର କରାଯାଏ ।

୩୨. **ମାଛକୁଣ୍ଡ** - *ଦେ.ବି. :* ଆନ୍ଧ୍ର ଓଡ଼ିଶା ସୀମାରେ ବହି ଯାଉଥିବା ଏକ ନଦୀ ।

ପୁରାଣରେ ଏହା ମତ୍ସ୍ୟକୁଣ୍ଡ ନାମରେ ବର୍ଣ୍ଣିତ ହୋଇଛି । ଏହି ନଦୀଟି ପାହାଡ଼ ଉପରୁ ଯେଉଁଠି ନିମ୍ନ ଭୂମିକୁ ଲମ୍ଫ ପ୍ରଦାନ କରିଛି, ସେଇଠି ଏହା କୁଣ୍ଡ ସଦୃଶ ହୋଇଛି । ଅତୀତରେ ଏହି କୁଣ୍ଡରେ ଥିବା ମତ୍ସ୍ୟ କନ୍ୟାଠାରୁ ମତ୍ସ୍ୟ ବଂଶର ଆଦିସ୍ରଷ୍ଟା ସତ୍ୟ ମାର୍ତ୍ତଣ୍ଡ ଜନ୍ମ ନେଇଥିବାର ପ୍ରବାଦ ରହିଛି । ମତ୍ସ୍ୟବଂଶୀ ରାଜାମାନଙ୍କ ପାଇଁ ଏହା ଏକ ପବିତ୍ର ନଦୀ ଏବଂ ଏହାର ଉତ୍ପତ୍ତି ସ୍ଥଳ ଥିଲା ସେମାନଙ୍କ ପାଇଁ ପବିତ୍ର ତୀର୍ଥସ୍ଥଳୀ । ଅତୀତରେ ଏଠି ବୌଦ୍ଧ, ଜୈନ ଧର୍ମ ସମେତ ଅନେକ ଧର୍ମ ଦର୍ଶନର ପ୍ରସାର ଘଟିଥିଲା । ଏହି ପବିତ୍ର ନଦୀ ତୀରରେ ରହିଛି ଅନେକ ଶିବ ମୂର୍ତ୍ତି । ଏହି ନଦୀଟି ମାଡ଼ଗାଇ ପର୍ବତମାଳାରୁ ବାହରି କୋରାପୁଟ ଜିଲ୍ଲା ଦେଇ କିଛି ବାଟ ପ୍ରବାହିତ ହେଲାପରେ ଆନ୍ଧ୍ର ଓଡ଼ିଶାର ସୀମାରୂପେ ପ୍ରବାହିତ ହୋଇଛି ଏବଂ ଜୟପୁର ଠାରୁ ଦକ୍ଷିଣକୁ ୪୯ ମାଇଲ ଦୂରରେ ବାଦିଗଡ଼ ନିକଟରେ ୫୪୦ ଫୁଟ୍ ଉଚ୍ଚ ପାହାଡ଼ ଉପରୁ ନିମ୍ନ ଭୂମିକୁ ଲମ୍ଫ ପ୍ରଦାନ କରି ସୃଷ୍ଟି କରିଛି ଏକ ସୁଦୃଶ୍ୟ ଜଳ ପ୍ରପାତ । ଏହା ଡୁଡୁମା ଜଳପ୍ରପାତ ନାମରେ ଖ୍ୟାତି ଅର୍ଜନ କରିଛି । ଏହି ଜଳକୁ ଏକ ଜଳଭଣ୍ଡାରରେ ଆବଦ୍ଧ କରାଯାଇ ଏଥିରୁ ଜଳବିଦ୍ୟୁତ ଉତ୍ପାଦନ କରାଯାଉଛି । ଏହି ପ୍ରପାତର ନିମ୍ନଭୂମିରେ ନିର୍ମିତ ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରଠାରେ ମାଛକୁଣ୍ଡ ସହର ଗଢ଼ି ଉଠିଛି ।

୩୩. **ମାଝୀ** - *ଦେ.ବି.* : ଆଦିବାସୀ ସଂଜ୍ଞା ବିଶେଷ । କୋରାପୁଟ ଅଞ୍ଚଳରେ ମାଝୀ ସଂଜ୍ଞାଧାରୀ ବ୍ୟକ୍ତି ଯୋଗାଡ଼କାରିଆ ଭାବେ ପରିଚିତ । ଗ୍ରାମର ପର୍ବ ପର୍ବାଣୀରେ ଲାଠି, ପାଲିଙ୍କି ସହ ଉପସ୍ଥିତ ପୂଜାରୀଙ୍କୁ ସତ୍କାର କରିବା, ବିବାହ, ମୃତ୍ୟୁ କର୍ମ ପାଇଁ ଆବଶ୍ୟକ ସାମଗ୍ରୀ ଯୋଗଡ଼ କରିବା ଦାୟିତ୍ୱ ମାଝୀ ଉପରେ ନ୍ୟସ୍ତ ଥାଏ । ସେ ଗ୍ରାମବାସୀ ଠାରୁ ସେମାନଙ୍କ ସାମର୍ଥ୍ୟ ଅନୁଯାୟୀ ଚାଉଳ, ପରିବା, କୁକୁଡ଼ା, ମଦ, ଧୂପ, କାଠ, ଘିଅ ଆଦି ସଂଗ୍ରହ କରି ବିଭିନ୍ନ ପରବ, ମଣ୍ଡେଇ ଓ ବୀରୁ ସମୟରେ ପୂଜାରୀ ଶିରା, ଗାଉତିଆ, ଚାଲାଣ ଇତ୍ୟାଦିଙ୍କୁ ଉପଯୁକ୍ତ ସତ୍କାର କରିଥାଏ ।

୩୪. **ମାଟିଚିକନ / ମାଟିତେଲ** - *ଦେ.ବି.* : କିରୋସିନି ତେଲ : ଏହି ତେଲ ମାଟିତଳୁ ଖଣିରୁ ବାହାରିଥାଏ ବୋଲି ଆଦିବାସୀ ଲୋକମାନେ ଏହାକୁ 'ମାଟିତେଲ' ବା 'ମାଟି ଚିକନ' ବୋଲି କହିଥାନ୍ତି । ଏହା ମୁଖ୍ୟତଃ ସରକାରୀ ନିୟନ୍ତ୍ରଣରେ ରହୁଥିବାରୁ, ଆଦିବାସୀମାନେ ବିଭିନ୍ନ ହାଟ ବଜାରରୁ ଏହା କ୍ରୟ କରୁଥିଲେ । ଏବେ ଏହା ପଞ୍ଚାୟତରେ ସାଧାରଣ ବଣ୍ଟନ ବ୍ୟବସ୍ଥା ଜରିଆରେ ଉପଲବ୍ଧ । କିନ୍ତୁ ଏବେ ମଧ ଏହା ଆବଶ୍ୟକ ମୁତାବକ ମିଳେ ନାହିଁ । ତେଣୁ ଆଦିବାସୀ ଗାଁର ରାତି ଅନ୍ଧକାରମୟ ହୋଇଥାଏ, ଆଦିବାସୀର ମାଟି ତେଲରେ ଗାଡ଼ି ମାଲିକ ମାନେ ଗାଡ଼ିଚାଲେ ।

୩୫. **ମାଟି ଧରିଆଣି** - *ଦେ.ବି.* : ପେଙ୍ଗୁ ପରଜାଙ୍କ ଧରିତ୍ରୀ ବା ଦର୍ତ୍ତନୀଙ୍କ ଅନ୍ୟ ନାମ । ଗୀତରେ ଏହାର ବ୍ୟବହାର "'ଠାକୁରାଣୀ' । ନାନାରମ୍ଭ ଗାସାଏ ରାଣୀ ଆମା ଜାଗା ଧରିଆଣି ଆମା ତି ମାଟି ଧଣିଆଣି ନାନା ।"

୩୬. **ମାଟିପରବ** - *ଦେ.ବି.* : ଏକ ପର୍ବ ବିଶେଷ । ବର୍ଷସାରା ଖାଦ୍ୟ ଯୋଗାଇ ଦେବା କାମନା କରି ବୈଶାଖ ମାସରେ ଏହି ମାଟି ପର୍ବ ପାଳନ କରାଯାଏ । ଉକ୍ତ ପର୍ବରେ ଗାଁ ଗାଁରୁ ବିଭିନ୍ନ ସାମଗ୍ରୀ ମାଗି ଆଣିବା ଏକ ପରମ୍ପରା । ଏହା ମାଗି ସାରିବା ପରେ ଗାଁରେ ମିଳିତ ଭାବରେ ଭୂମିପୂଜା କରାଯାଏ ଓ ଆଗାମୀ ଦିନ ଗୁଡ଼ିକରେ ଉତ୍ତମ ଫସଲ ହେବାପାଇଁ କାମନା କରାଯାଏ । ଏହି ପର୍ବରେ ବିହନକୁ ଶିଆଳି ପତ୍ରରେ ତୁସି (ପୁଡ଼ା) କରାଯାଇ ବୀରୁ କରାଯାଏ ଓ ପୂଜା ଅନ୍ତେ ଉକ୍ତ ବିହନରୁ କିଛିକିଛି ଗାଁର ସମସ୍ତ କୃଷକ ବାଣ୍ଟି ନିଅନ୍ତି ଓ ନିଜ ବିହନରେ ମିଶାଇ ବୁଣନ୍ତି । ଏହା କୋୟାମାନଙ୍କ ବିଜାପାଣ୍ଡୁର ଅନୁରୂପ ।

୩୭. ମାଟିପୂଜା - *ଦେ.ବି. :* ଧରଣୀଦେବୀ ବା ଧର୍ତନୀ ଦେବୀ ବା ପୃଥ୍ୱୀ ମାତାଙ୍କ ପୂଜା । ଇଂ.- Worship of mother earth.

ଅବିଭକ୍ତ କୋରାପୁଟ ଜିଲ୍ଲାର ସମସ୍ତ ଆଦିବାସୀ ଗୋଷ୍ଠୀ ଭଲ ଫସଲ ପାଇଁ ଜୀବଜନ୍ତୁକୁ ବଳିଦେଇ ସେମାନଙ୍କ ରକ୍ତରେ ପୃଥିବୀମାତାକୁ ସନ୍ତୁଷ୍ଟ କରିବାର ଆଦିମ ପ୍ରଥା ହେଉଛି ମାଟିପୂଜା । ଓଡ଼ିଶାର ଦଣ୍ଡଯାତ୍ରା ତଥା ମାଟିଯାତ୍ରା ସହ ଏହାର ସମ୍ବନ୍ଧ ଲକ୍ଷଣୀୟ । ଦେଶିଆ ଭାଷାରେ ପୂଜାଶବ୍ଦର ଅର୍ଥ ପୂଜିବା, ହାଣିବା ବା ବଳିଦେବା । ସୁତରାଂ, ମାଟିପୂଜାର ପ୍ରକୃତ ଅର୍ଥ ଦର୍ନୀ ଦେବୀ ପାଇଁ ବଳିଦେବା ଏବଂ ସେଥିଲାଗି ଆବଶ୍ୟକ ବୀରୁ କରିବା । ଗାଁର ପୂଜାରୀମାନେ ସାଧାରଣତଃ ମାଘଠାରୁ ବୈଶାଖମାସ ମଧ୍ୟରେ ଦିଶାରୀ ଦେଇଥିବା କୌଣସି ଏକ ଲଗ୍ନ ବା ତିଥିରେ ଏହି ବୀରୁ ବା ପୂଜା କରିଥାନ୍ତି । ପ୍ରତି ଗାଁରେ ଗାଁର ଘରୁଘରୁ ବିହନ ସଂଗ୍ରହ କରାଯାଏ । ବିହନ ମାଗି ଆଣିବା ପରେ ସେସବୁକୁ ଶିଆଳି ପତ୍ରରେ ଡୁସି (ପୁଡ଼ା) କରାଯାଇ ବୀରୁ କରାଯାଏ । ପ୍ରତ୍ୟେକ ଘରର ମୁଖ୍ୟମାନେ ଏଥିରେ ଭାଗ ନିଅନ୍ତି ଓ ଏଥିରୁ କିଛିକିଛି ବିହନ ନେଇ ଘରର ବିହନ ସହ ମିଶାଇ ବୁଣନ୍ତି ।

୩୮. ମାଟିପୂଜାରୀ / ଦାର୍ଣ୍ଣି ପୂଜାରୀ - *ଦେ.ବି. :* ଧରଣୀ ଦେବି ବା ମାଟିଦେବୀଙ୍କ ପୂଜକ : ମାଟି ପୂଜାରୀର ଗୁରୁଦାୟିତ୍ୱ ରହିଛି । ପୂର୍ବୋକ୍ତମତେ ମାଟିପୂଜା କରିବା ସହ ମାଟି ପୂଜାରୀ ମହଲ ଡାଳ ଆଣି ଦେବୀ ମଣ୍ଡପରେ ପୋତେ । ପ୍ରଥାନୁସାରେ ପ୍ରଥମେ ମାଟି ପୂଜାରୀ ଠାରୁ ତେଲ ଆଣି ବରକନ୍ୟାକୁ ଲଗାଯାଏ । ଯାହାକୁ 'ତେଲ ଟଗାନି' କୁହାଯାଏ । ମାଟି ପୂଜାରୀର ସାମାଜିକ ଗୁରୁତ୍ୱ ନିମ୍ନଗୀତରୁ ମଧ୍ୟ ଜଣାପଡ଼େ । ଯଥା :

"ଏଠାରେ ଏ ତେଲ କାର ଏ ତେଲ
ପୂଜାରୀ ବାବୁଘର ତେଲ ଦୁଲା ଦୁଲି ମୁଣ୍ଡେ ବାଇ ।"

୩୯. ମାଟୁ - *ଦେ.ବି. :* ଗଛ ଉପରେ କରାଯାଉଥିବା ମଂଚା । ବାଘ ଆକ୍ରମଣରେ ମୃତ ଶବକୁ ତଳେ ରଖି ଗଛ ଉପରେ ଏକ ମଞ୍ଚା ପ୍ରସ୍ତୁତ କରି ଶିକାରୀ ସେଠାରେ ଲୁଚି ରହିଥାଏ । ବାଘ ଶବ ଖାଇବାକୁ ଆସିଲେ ତାହାକୁ ଶିକାର କରିଥାଏ । ଶିକାରୀଟି ଲୁଚି ରହିଥିବା ମଞ୍ଚାକୁ ହିଁ 'ମାଟୁ' କୁହାଯାଏ । ବେଣ୍ଟ ବା ଶିକାର ସହ ଏହି ଶବ୍ଦଟି ସଂପୃକ୍ତ ।

୪୦. ମାଡ଼ିଆ ଗଣ୍ଡ - *ଦେ.ବି. :* ଗଣ୍ଡ ଆଦିବାସୀ ଗୋଷ୍ଠୀର ଏକ ପ୍ରଜାତି । ଏମାନେ ନବରଂଗପୁର ଜିଲ୍ଲା ଓ ଛତିଶଗଡ଼ ସୀମାନ୍ତରେ ବନରେ ବାସ କରୁଥିବା ଏକ ଆଦିମ ଜନଜାତି । (ବଣ୍ଡା, ଡିଡାୟୀ, ଡଙ୍ଗରିଆ କନ୍ଧ ଓ ଲାଞ୍ଜିଆ ସଉରାଙ୍କ ପରି) ଏମାନଙ୍କର ଏକ ନିଜସ୍ୱ ବୋଲି ଓ ସଂସ୍କୃତି ରହିଛି । ଏମାନେ ସାଧାରଣତଃ ବାଦ୍ୟଯନ୍ତ୍ର (ଢୋଲ) ନିର୍ମାଣ କରିଥାନ୍ତି ଏବଂ ଏହା ବିବାହ ଉତ୍ସବରେ ବଜାଇଥାନ୍ତି । ଏମାନେ ମଣ୍ଡେଇଯାତ୍ରା ପାଳନ କରିଥାନ୍ତି । (ମାଘମାସରେ) ରାଜଗଣ୍ଡ ଓ ଧୁରୁଆଗଣ୍ଡମାନଙ୍କ ସହିତ ଏମାନଙ୍କ ବୈବାହିକ ସଂପର୍କ ହୁଏନାହିଁ । ମାଡ଼ିଆଗଣ୍ଡକୁ 'ମୁରିଆ ଗଣ୍ଡ' ମଧ୍ୟ କୁହାଯାଏ । ଏମାନଙ୍କ ଧାଙ୍ଗଡ଼ିବସାକୁ 'ଗୋଟୁଲ୍' ଏବଂ ଧାଙ୍ଗଡ଼ି (ଯୁବତୀ) ମାନଙ୍କୁ 'ମୋଟିୟାରିନ୍' କୁହାଯାଏ ।

୪୧. ମାଡ଼ିଆନି କୁଡ଼ିଆ - *ଦେ.ବି. :* ଦୁରୁଆମାନଙ୍କ ଧାଙ୍ଗଡ଼ା ଧାଙ୍ଗିଡ଼ି ବସା : ଯୁବାଗୃହ : ଅନ୍ୟ ଆଦିବାସୀ ଯୁବକଯୁବତୀମାନଙ୍କ ପାଇଁ ଯେପରି ଧାଙ୍ଗଡ଼ା ଧାଙ୍ଗଡ଼ି ବସାଥାଏ, ବଣ୍ଡାମାନଙ୍କ ସେଲାନିଡାଙ୍ଗେ, ଗଣ୍ଡମାନଙ୍କ ଗୋଟୁଲ ବାସା, କନ୍ଧମାନଙ୍କ ଦାଂଣ୍ଡାବାସା, ଡିଆଁଶିକା ବାସାପରି, ଦୁରୁଆମାନଙ୍କ ସାମାଜିକ ମିଳନସ୍ଥଳୀକୁ 'ମାଡ଼ିଆନି କୁଡ଼ିଆ' କୁହାଯାଏ । ଏହା ବାସ୍ତବରେ ଏକ ଯୁବ ପ୍ରମୋଦ କେନ୍ଦ୍ର । ଇଂ- Yoouth dormitory.

୪୨. ମାଣ୍ଡ୍ - *ଦେ.ବି. :* ବିବାହ ବେଦୀ / ମଣ୍ଡପ / ମନଡ଼୍ (ଗଣ୍ଡି)

ମାଣ୍ଡ କିନ୍ଦରା, ବିବାହ ଲଗ୍ନ ପରେ ବର-ବଧୂ ଆଗପଛ ହୋଇ ବେଦୀ ମଝିରେ ପୋତା ଯାଇଥିବା ମହୁଲ ଡାଳ ଚାରିପଟେ ସାତଥର ବୁଲିବାର ପ୍ରକ୍ରିୟାକୁ 'ମାଣ୍ଡକିଞ୍ଜୁର' ବା ମାଣ୍ଡ କିନ୍ଦରା (କିନ୍ଦରା - ଘୁରିବା) କୁହାଯାଏ । ଏହା ପ୍ରାୟ ସମସ୍ତ ଆଦିବାସୀ ସଂପ୍ରଦାୟରେ ଦେଖାଯାଏ ।

୪୩. ମାଣ୍ଡ୍ କିନ୍ଦରା ଗୀତ - *ଦେ.ବି. :* ବେଦୀରେ ପୋତା ଯାଇଥିବା ମହୁଲଡାଳ ଚାରିପଟେ ବର ବଧୂ ବୁଲିବା ବେଳର ଗୀତ (ମାଣ୍ଡ ବେଦୀ / କିନ୍ଦରା : ପରିକ୍ରମା କରିବା

ବା "ବେଦୀ ପରିକ୍ରମା କରିବା ବେଳର ଗୀତ) :-
ଆଟିର ଟିରଟାର ବାଟିର ଭଅଁରା,
ଧୋତ୍ରା ନେଇ କେନେ ଗାଲା

ଆତେ ଦରିକରି ଫୁଲର ବିଚନା
ଭଅଁର ବୁଲକେ ଗାଲା ।"

୪୪. ମାଣ୍ଡ୍ କୁଲେନ୍ - *ଦେ.ବି. :* ଚୈତ୍ର ମାସରେ ପାଳିତ ଦୁରୁଆମାନଙ୍କର ଏକ ସାମୂହିକ ପର୍ବ । ଏହା ପୁଅ ଝିଅଙ୍କ ମଧ୍ୟରେ ଦେଖା ସାକ୍ଷାତ୍, ମିଳନ ଓ ବିବାହ ପ୍ରସ୍ତୁତିର ପର୍ବ । ଏହି ପ୍ରକିୟାକୁ 'ମାଣ୍ଡ୍ କୁଲେନ୍' କୁହାଯାଏ । ଏମାନଙ୍କ ମଧ୍ୟରେ ସ୍ୱଗୋତ୍ରୀୟ ବିବାହ ହୁଏ ନାହିଁ । ସେମିତି ଦରକାର ପଡ଼ିଲେ ସଗୋତ୍ରୀୟ ପୁଅଟିକୁ ଅନ୍ୟ ଏକ ଗୋତ୍ରର କେହି ଲୋକ ପୋଷ୍ୟପୁତ୍ର ଭାବେ ଗ୍ରହଣ କରି ବିବାହ କାର୍ଯ୍ୟ ସଂପନ୍ନ କରାଇଥାନ୍ତି । ପୁଅ ଓ ଝିଅ ନିଜରାଜିରେ ନିଜ ଜୀବନସାଥୀ ବାଛିଥାଆନ୍ତି । ଚୈତ୍ର ମାସରେ ଅନୁଷ୍ଠିତ ମାଣ୍ଡ୍ କୁଲେନ୍ ବାର୍ଷିକ ଉତ୍ସବରେ ପୁଅ ଝିଅ ପରସ୍ପରକୁ ଇଲେସିଲ୍ (ଧାଙ୍ଗଡ଼ିବସା) ଓ ଇଲେନ୍‌କୁଲା (ଧାଙ୍ଗଡ଼ା ବସା)ଠାରେ ମିଶିଥାନ୍ତି । ପରବର୍ଷ ସାମାଜିକ ସ୍ୱୀକୃତି କ୍ରମେ ବିବାହ କରିଥାଆନ୍ତି ।

୪୫. ମାଣ୍ଡଲ୍‌ପାଟା - *ଦେ.ବି. :* ଗଣ୍ଡ ଆଦିବାସୀଙ୍କ ମୃତ୍ୟୁ ସମ୍ବନ୍ଧୀୟ ଗୀତ (ମରଣ ଗୀତ) : ଆଦିମ ଜନଜାତିର ବିଶ୍ୱାସ - ଯେହେତୁ ସେ ପୃଥିବୀରେ ଜାତ ମାଟିର ସନ୍ତାନ, ସେ ମଲାପରେ ଏହି ପୃଥିବୀରେ ହିଁ ତାହାର ଦେହ ମିଶିବ । ଏଣୁ ମୃତ ଦେହର ଅଗ୍ନି ସଂସ୍କାର କରାଯାଏ ନାହିଁ । ଦକ୍ଷିଣ ଆଡ଼କୁ ଗୋଡ଼ ଉତ୍ତର ଅଡ଼କୁ ମୁଣ୍ଡ ରଖି ଶବ ପୋତାଯାଏ । ଗରିବ ଲୋକମାନେ ୨ଦିନ, ଧନୀମାନେ ୫ଦିନ ଅଶୌଚ କାଳପାଳନ କରିଥାନ୍ତି ।

ମନୁଷ୍ୟର ମୃତ୍ୟୁପରେ ତା'ର ସଂପର୍କିତ ସମସ୍ତ ବ୍ୟକ୍ତି ଓ ଗ୍ରାମବାସୀ ଶବର ଚତୁର୍ଦ୍ଦିଗରେ ବସି ସର୍ବପ୍ରଥମେ ପୂର୍ବରୁ ମୃତ ସମସ୍ତ ପିତୃ ପୁରୁଷଙ୍କୁ ସ୍ମରଣ କରନ୍ତି । ତତ୍‌ପରେ ମୃତ ବ୍ୟକ୍ତି ପାଇଁ ଗୀତ ଗାଇବା ପାଇଁ ଇଷ୍ଟଦେବୀ ଦନ୍ତେଶ୍ୱରୀଙ୍କ ଅନୁମତି ପ୍ରାର୍ଥନା କରନ୍ତି । ଏହା ସାମୂହିକ ଭାବେ ଗାନ କରାଯାଏ ।

ମାଣ୍ଡଲ୍ ପାଟା : ମୃତ୍ୟୁକାଳୀନ ଗୀତ :

"ରେ ରେ ନାଙ୍ଗର ରୋଲେ ରୋଲେ (୨ଥର) (ଘୋଷା)
ପୁରକାତୟାୟା ୟା ଆତେକ ଦନ୍ତେଶ୍ୱରୀ
ଦନ୍ତେଶ୍ୱରି ୟା ୟା ନି (୨ଥର)

ନନ୍ନ ସାଙ୍ଗଲା ଆତେ ମାଣ୍ଡଇପାଟା -

ଓ୍ୱାରକା ନିକୁନେ ଜୋହାର ଲାଗେ ।" ଅର୍ଥାତ୍ -

ଅର୍ଥାତ୍, ମା' ଦନ୍ତେଶ୍ୱରୀ ତୋତେ ସ୍ମରଣ କରୁଛୁ, ମା, ତୁ ଆମକୁ ମାଣ୍ଡଇପାଟା (ଗୀତ) ଗାଇବା ପାଇଁ ଅନୁମତି ଦେ, ତୋତେ ନମସ୍କାର ଜଣାଉଛୁ ।

ଶବକୁ ଶ୍ମଶାନକୁ ନେବା ପୂର୍ବରୁ ନୂଆ ଖଦି ପିନ୍ଧାଇଲା ବେଳେ ଶ୍ୱଶୁର ତରଫରୁ ବୋହୂ ପ୍ରତି ମାଣ୍ଡଇ ପାଟା -

"ୟା - ୟା ନନି ୟା ୟା

ନାକୁନ୍ ଦୋତି ହିମ୍

ନାକୁନ୍ କୁର୍ତ୍ତା ହିମ୍

ନାନା ଦେଶ ପସ୍‌ସି ଡାଇତାନା

ଅର୍ଥାତ୍ ବୋହୂ ମୋର । ମୋତେ ଧୋତି ଖଣ୍ଡେ ଦେ, ମୋତେ କୁର୍ତ୍ତାଟିଏ ଦେ, ମୁଁ ଏବେ ଏ ଦେଶ ଛାଡ଼ି ଚାଲିଯାଉଛି ।

୪୬. ମାଣ୍ଡା ଡଙ୍ଗରୀ - *ଦେ.ବି. :* ଏହା ଏକ ଡଙ୍ଗର ବା ପର୍ବତର ନାମ । ନବରଂଗପୁର ସହର ଠାରୁ ଦକ୍ଷିଣ ପୂର୍ବଦିଗରେ ୧୧ କି.ମି. ଦୂରରେ ଏହା ଅବସ୍ଥିତ ।

ଏହା କୋଡ଼ିଙ୍ଗା ଅଞ୍ଚଳରେ ଏକ ପ୍ରସିଦ୍ଧ ଶୈବପୀଠ ଥିବା ଡଙ୍ଗର ବା ପାହାଡ଼ର ନାମ । କୁହାଯାଏ, ଯେ, ଏକଦା ଚଚୋହାଣ୍ଡି ଗ୍ରାମରୁ ଜଣେ ଲୋକ ସ୍ୱପ୍ନାଦେଶ ପାଇ ଡାବୁ ଗାଁ ଶିବ ମନ୍ଦିରକୁ ଆସି ମାଣ୍ଡା ଡଙ୍ଗରରେ ପ୍ରଥମେ ଏକ ଶିବଲିଙ୍ଗକୁ ଆବିଷ୍କାର କରି ପୂଜା କରିଥିଲା ଓ ରୋଗମୁକ୍ତ ହୋଇଥିଲା । ସେହିଦିନ ଠାରୁ ଏହା ଏକ ପ୍ରସିଦ୍ଧ ଶୈବପୀଠ ଭାବେ ପରିଚିତ ହୋଇ ରହିଆସିଛି । ଏହି ମାଣ୍ଡା ଡଙ୍ଗରୀରେ ବୌଦ୍ଧ କାଳୀନ ପ୍ରସ୍ତର ଖୋଦିତ ପଦ୍ମଫୁଲର ଚିତ୍ର ଦେଖିବାକୁ ମିଳେ । ଶିବରାତ୍ର ପରଦିନ ଏଠାରେ ଏକ ବଡ଼ ମେଳାବସେ । ମନ୍ଦିର ମଧ୍ୟଦେଇ ଏକ ଚିରସ୍ରୋତା ପାଣିଧାର ମଧ୍ୟ ପ୍ରବାହମାନ । ଏହାହିଁ ଚୁରୀନଦୀ ।

ଏକ କିମ୍ବଦନ୍ତୀ ଅନୁସାରେ :

ବିକ୍ରମ ମାଣ୍ଡା ନାମକ ଜଣେ କୁଷ୍ଠରୋଗୀ ଏହି ପର୍ବତରୁ ପ୍ରବାହିତ ଝରଣାରେ ଗାଧୋଇ ଗୁମ୍ଫରେ ଶିବଲିଙ୍ଗ ଥିବା ଆସ୍ଥାନରେ ପୂଜା କରି ରୋଗମୁକ୍ତ ହୋଇଥିବାରୁ ଏହି

ପାହାଡ଼ର ନାମ ହେଲା ମାଣ୍ଡା ଡଙ୍ଗରୀ । ଶିବରାତ୍ର ଓ ତା ବାସିଦିନ ହଜାର ହଜାର ଲୋକ ଏଠାକୁ ମାନସିକ କରିବାକୁ ଆସିଥାନ୍ତି । ଏହି ଡଙ୍ଗରୀରେ ପ୍ରାଚୀନ ବୌଦ୍ଧ କୀର୍ତ୍ତିର ସ୍ମାରକୀ ମଧ୍ୟ ଦେଖାଯାଏ । ମାଣ୍ଡା ଡଙ୍ଗରୀରେ ମହାଦେବ ଲିଙ୍ଗ ଝାଡ଼ ବା ଜଂଗଲ ଭିତରେ ଥିବାରୁ ଏହି ଦେବତାଙ୍କୁ 'ଝାଡ଼େଶ୍ୱର' କୁହାଯାଏ ।

୪୭. ମାଣ୍ଡିଆ - *ଦେ.ବି. :* ଏକ ଘାସ ଜାତୀୟ ଶସ୍ୟ । ଡଂଗର ଜମିରେ ଉତ୍ପନ୍ନ ହେଉଥିବା ଘାସ ଜାତୀୟ ଗଛର ଶସ୍ୟ । ଇଂ.- Ragi ଏହା ଦେଖିବାକୁ ସୋରିଷ ଭଳି । ଏହାର ଶିଂଷା ପାରା ଗୋଡ଼ ଭଳି । ଜମିରେ ୩/୪କଷାଦେଇ ଏହି ମାଣ୍ଡିଆ ବୁଣାଯାଏ । ତେବେ ୧ ୨କଷାରେ ଯେଉଁ ମାଣ୍ଡିଆ ବୁଣାହୁଏ, ତାହା ଏତେ ଭଲ ହୁଏ ଯେ, ଲୋକେ ଭାତ ଖାଇବା ଭୁଲିଯିବେ । ଏହି ପାରାଗୋଡ଼ୀ ମାଣ୍ଡିଆ ସାଧାରଣତଃ ନନ୍ଦପୁର ଅଞ୍ଚଳରେ ହୁଏ । ଫସଲ ବୁଣିବାର ୩ମାସ ଭିତରେ ଫସଲ ଅମଳ ହୁଏ । ଏହାକୁ ଆଷାଢ଼ ମାସରେ ବୁଣି ଦଶରା ବା ଦିଆଲି ମାସରେ କଟାଯାଏ । ପାଣି ମଡ଼ାଇବା ଦରକାର ହୁଏ ନାହିଁ । ଥରେ ଅଧେ ନିଡ଼ାଣି କରାଯାଏ ବା ଘାସ ବଛାଯାଏ । ଅମଳପେଣ୍ଡାକୁ ଶୁଖାଇବା ପରେ ଲାଠିରେ ପିଟିପିଟି କିମ୍ବା ଗୋରୁଗାଈଙ୍କ ଦ୍ୱାରା ବେଙ୍ଗଲା ପକାଇ ମାଣ୍ଡିଆ ବାହାର କରାଯାଏ । ବେଙ୍ଗଲା ପରେ ଏହାକୁ ପରିଷ୍କାର କରି ଓ ପାଳ ବାହାର କରି ପ୍ରଥମେ ବଡ଼ ଚାଲୁଣିରେ ଚଲାଯାଏ । ପୁଣି ଠେଙ୍ଗାରେ ପିଟି କୁଲାଦ୍ୱାରା ଉଡ଼ାଯାଏ ଓ ଆଉଥରେ ଚଲାଯାଏ । ତାପରେ ଏହି ମାଣ୍ଡିଆକୁ ମୂଷଳ ସାହାଯ୍ୟରେ କୁଟିକୁଟି ଚୋପା ଛଡ଼ାଯାଏ । ଏହି ମୂଷଳ କାଠରେ ତିଆରି ହୋଇଥାଏ ଓ ତାହର ମୁଣ୍ଡରେ ସମା ଦିଆଯାଇଥାଏ । ସମା ହେଉଛି ଏକ ଗୋଲ୍ ଲୁହା ପାତିଆ । ଚୋପା ଛଡ଼ା ମାଣ୍ଡିଆକୁ ଟାକ୍‌ଲାରେ ଶୁଖାଇ ଚୁଣ୍ଡା ବା ଯାନ୍ତା (ଯାତ୍ରା) (ପଥର ଚକି) ସାହାଯ୍ୟରେ ଘୁରାଇ ଘୁରାଇ ଏହାକୁ ଗୁଣ୍ଡ କରାଯାଏ । ଏହି ମାଣ୍ଡିଆ ଗୁଣ୍ଡରୁ ବିଭିନ୍ନ ପ୍ରକାର ଖାଦ୍ୟ ପ୍ରସ୍ତୁତ କରାଯାଏ । ମୁଖ୍ୟତଃ ତିନିପ୍ରକାର ମାଣ୍ଡିଆର ପ୍ରଚଳନ ରହିଛି । ଯଥା ବର୍ଷାଦିନେ ବୁଣା ହେଉଥିବା ପାରା ଗୁଡ଼ି ମାଣ୍ଡିଆ, ଓ ଚିଲି ମାଣ୍ଡିଆ । ପାରାଗୁଡ଼ି ମାଣ୍ଡିଆର ଗଛ ଛୋଟଛୋଟ । ଦାନା ମଧ୍ୟ ଛୋଟ । ଚିଲି ମାଣ୍ଡିଆର ଦାନା ଛୋଟ କିନ୍ତୁ ଗଛଲମ୍ବା । ଦଶରା ମାଣ୍ଡିଆର ଗଛବଡ଼ ଓ ଦାନା ମଧ୍ୟ ବଡ଼ । ଏହା ଦଶରା ମାସରେ ଚାଷ କରାଯାଏ ।

(୧) ପେଜ୍ : ଏହା ଦେଶିଆ ଲୋକଙ୍କର ଅତ୍ୟନ୍ତ ପ୍ରିୟ । ଗୋଟିଏ ସମୟରେ ପ୍ରାୟ ପ୍ରତି ଘରେ ସକାଳେ ସକାଳେ ହାଣ୍ଡିଏ ପାଣି ଚୁଲିରେ ବସାଇ ଫୁଟାଯାଏ । ଏଣେ ରାତିଯାକ ଏକ ଛୋଟ ହାଣ୍ଡିରେ ବତୁରା ହୋଇଥିବା ମାଣ୍ଡିଆ ଚୁନାର ପତଳା ମୁଣ୍ଡକୁ ଏହି ଫୁଟନ୍ତା ପାଣିରେ ଢାଳି ଦିଆଯାଏ ଓ ବଡ଼ ଚଟୁରେ ଧିରେଧିରେ ଘଣ୍ଟାଯାଏ । ଏହା ଫୁଟି ଗଲେ ମାଣ୍ଡିଆ ପେଜ ବା ଜାଉ ପ୍ରସ୍ତୁତ ହୋଇଥାଏ । ଏହା ୩ ପ୍ରକାର ।

(କ) ବେଦନା ପେଜ : ଏଥିରେ ମାଣ୍ଡିଆ ପେଜ୍ ସହ ଅଳ୍ପ ଚାଉଳ ପକାଯାଇଥାଏ ।

(ଖ) ଆମ୍‌ଲି ବା ଆମଟ୍ ପେଜ : ଏହା ପୂର୍ବ ଦିନରେ ବାସୀ ପେଜ୍ ସହ ମିଶାଇ ପ୍ରସ୍ତୁତ କରାଯାଇଥାଏ ।

(ଗ) ଲାଇପେଜ୍ : ଏହା କେବଳ ମାଣ୍ଡିଆ ଗୁଣ୍ଡରୁ ପ୍ରସ୍ତୁତ ସାଧାପେଜ । ଏହି ତିନିପ୍ରକାର ପେଜ୍ ଭିତରୁ 'ଆମ୍‌ଲିପେଜ୍' ଆଦିବାସୀର ପ୍ରିୟ ।

(୨) ଅନ୍‌ଡ଼ା : ଗୁଣ୍ଡ ପରିମାଣ ଅନୁସାରେ କିଛି ପାଣି ପ୍ରଥମେ ଫୁଟାଇ ନିଆଯାଏ । ସେଥିରେ ଲୁଣ, ଚିନି, ବା ଗୁଡ଼ ପକାଇ ମାଣ୍ଡିଆ ଗୁଣ୍ଡ ପକାଯାଏ ଓ ଘାଣ୍ଟି ଘାଣ୍ଟି ସୁଜି ହାଲୁଆଭଳି ପ୍ରସ୍ତୁତ କରାଯାଏ । ଏହା କନ୍ଧମାନଙ୍କର ଅତି ପ୍ରିୟ ଖାଦ୍ୟ । ପ୍ରିୟବନ୍ଧୁ ଆସିଲେ ଏହା ନିଶ୍ଚିତ ଭାବେ ପ୍ରସ୍ତୁତ କରାଯାଏ । (ଦ୍ର. ଅଣ୍ଡା)

(୩) ମାଣ୍ଡୁ : ପୋଡ଼ପିଠା : ଢଙ୍ଗରେ ଏହା ପ୍ରସ୍ତୁତ କରାଯାଏ । ତେବେ ଏଥିପାଇଁ ଶିଆଡ଼ି ପତ୍ର ଓ ସରୁ ରଶିରେ ପ୍ରସ୍ତୁତ ଏକ ମାଣ୍ଡୁପୁଡ଼ା ଆବଶ୍ୟକ । ହାଣ୍ଡିରେ ପାଣି ଫୁଟାଇ ସେହି ଫୁଟା ପାଣିରେ ମାଣ୍ଡୁ ପୁଡ଼ା ରଖି ପୂର୍ବରୁ ପ୍ରସ୍ତୁତ ମାଣ୍ଡିଆ ଖଳି ସେଥିରେ ପୁରାଇ ଦିଆଯାଏ । ଏହି ମାଣ୍ଡୁ ପୁଡ଼ାର ଗୋଲେଇ ହାଣ୍ଡି ମୁହଁ ଭଳି ଥାଏ । ଏହାର ତଳ ଅଂଶ ଗୋଜିଆ ହୋଇ ଶେଷକୁ ଗୋଟିଏ କଣାଥାଏ । କଣାବାଟେ ପାଣିର ବାମ୍ଫ ପଶି ମାଣ୍ଡିଆ ଖଳିକୁ ସିଝାଇ ଦିଏ । ପ୍ରାୟ ଅଧଘଣ୍ଟା ସିଝିବା ପରେ ଏହା ପ୍ରସ୍ତୁତ ହୋଇଥାଏ । ସ୍ୱାଦ ଅନୁସାରେ ଏଥିରେ ଗୁଡ଼, ଚିନି ବା ଲୁଣ ମିଶା ଯାଇଥାଏ ।

(୪) ମେଚା ବା ଅଣ୍ଡରା : ମାଣ୍ଡିଆ ଖଳିକୁ ମେଞ୍ଚାକରି ମଣ୍ଡାପିଠା ଢଙ୍ଗରେ ଗୋଟିଏ କଣାଥିବା ହାଣ୍ଡିରେ ଫୁଟା ପାଣିର ବଡ଼ ହାଣ୍ଡିରେ ବସାଇ ଦିଆଯାଏ । ପାଣି ହାଣ୍ଡିର ବସାଇବା ପାଇଁ ତିନିଟା କାଠି ଲମ୍ବ ଭାବରେ ରଖାଯାଇଥାଏ । ଏହାପରେ ପୁରୀ ମହାପ୍ରସାଦ ପ୍ରସ୍ତୁତ ଭଂଗୀରେ ଏହାକୁ ଫୁଟାପାଣିର ବାଷ୍ପରେ ସିଝାଇ ଦିଆଯାଏ ।

କଣା ହାଣ୍ଡି ବଦଳରେ ମାଣ୍ଡୁପୁଡ଼ା ମଧ୍ୟ ବ୍ୟବହାର କରାଯାଏ । ଏହି ଖଳିରେ ପୂର୍ବରୁ ଲୁଣ, ଚିନି ବା ଗୁଡ଼ ମିଶାଇ ଦିଆଯାଇଥାଏ ।

(୫) ଚିକ୍‌ଲି : ମାଣ୍ଡିଆ ଗୁଣ୍ଡର ମୋଟା ମଣ୍ଡ ତିଆରି କରି ତାଓ୍ୱା ବା କରେଇରେ କିଛି ଚକୁଳି କରିବା ଭଳି ଗୋଲ୍ ଗୋଲ୍ ମଣ୍ଡ ପକାଇ ପାତିଆ ସାହାଯ୍ୟରେ ଲେଉଟାଇ ଏହା ତିଆରି କରାଯାଏ । ଏଥିରେ ମଧ୍ୟ ଇଚ୍ଛା ଅନୁସାରେ ଲୁଣ ବା ଚିନି ପକାଯାଏ । ଓଡ଼ିଆ ଘରେ ପ୍ରସ୍ତୁତ ଚକୁଳି ସହ ଏହା ତୁଳନୀୟ ।

(୬) ପିଟା : ମାଣ୍ଡିଆମଣ୍ଡାକୁ ହାତ ପାପୁଲିରେ ଚାପିଚାପି ପାପୁଲି ସାଇଜର କରାଯାଏ । ଦୁଇପଟେ ସିଆଡ଼ି, କେନ୍ଦୁ ବା କଦଳୀ ପତ୍ର ଜଡ଼େଇ ଦିଆଯାଏ । ଜଳନ୍ତା କୋଇଲାରେ ଏହାକୁ ପୋଡ଼ାଯାଏ । ତାବା ଦେହରେ ଅଙ୍ଗାର ରଖି ପ୍ରଥମେ ପିଠା ଓ ତା ଉପରେ ଅଙ୍ଗାର ରଖାଯାଏ । ଠିକ୍ ପୋଡ଼ପିଠା ପ୍ରସ୍ତୁତି ପ୍ରଣାଳୀରେ ଏହା ପ୍ରସ୍ତୁତି ହୋଇଥାଏ ।

(୭) ଲାନ୍ଦା : ମାଣ୍ଡିଆକୁ ପାଣିରେ ପକାଇ ଗଜା କରାଯାଏ । ଅନ୍ୟ କିଛି ମାଣ୍ଡିଆକୁ ମଧ୍ୟ କୁଟି କୁଟି ଗୁଣ୍ଡ କରାଯାଏ । ତାପରେ ଗୋଟିଏ ହାଣ୍ଡିରେ ଥଣ୍ଡା ପାଣି ସହ ସେହି ଗୁଣ୍ଡକୁ ଗୋଳାଇ ତା ଉପରେ ମାଣ୍ଡିଆ ଗଜା ପକାଇ ଦେଇ ଘାଣ୍ଟି ଦିଆଯାଏ । ଏହାକୁ ୪/୫ ଦିନ ରଖିବା ପରେ ଲାନ୍ଦା ପ୍ରସ୍ତୁତ ହୋଇଯାଏ । ପେଣ୍ଡମ୍ ତୁଳନାରେ ଏହା ବହଳିଆ ହୋଇଥାଏ ।

(୮) ମାଣ୍ଡିଆମଦ୍ : ମାଣ୍ଡିଆ ପେଣ୍ଡମ୍‌ରୁ ମାଣ୍ଡିଆ ମଦ ପ୍ରସ୍ତୁତ ହୁଏ । ପ୍ରଥମେ ଏକ ବଡ଼ ହାଣ୍ଡିରେ ପେଣ୍ଡମ୍ ପୁରାଇ ସେଥିରେ ଆଉ ଏକ ଛୋଟ ନଳୀକୁ କନା ସାହାଯ୍ୟରେ ହାଣ୍ଡି ଫନ୍ଦରୁ ବାନ୍ଧି ଓହଳେଇ ଦିଆଯାଏ । ପେଣ୍ଡମ୍ ହାଣ୍ଡି ଉପରେ ଏକ ପାଣିଭର୍ତ୍ତି ଗରିଆ ବସାଇ ଜୋଡ଼ର ଫାଙ୍କକୁ ଲୁଗା ଗୁଡ଼େଇ ବନ୍ଦ କରାଯାଏ । ଚୁଲିରେ ଜାଳ ଦେଲେ ତଳେ ଉତୁଳୁଥିବା ପେଣ୍ଡମ୍‌ର ବାଷ୍ପ ଉପରେ ଥିବା ପାଣି ହାଣ୍ଡିରେ ବାଜି ଥୋପାଥୋପା ହୋଇ ନଳୀରେ ପଡ଼େ । ଏହିପରି ଉପର ପାଣି ଗରା ଗରମ ହୋଇଗଲେ ନଳି ପୁରିଗଲା ବୋଲି ଜାଣିହୁଏ, ନଳିର ମଦ ବାହାର କରାଯାଇ ପୁଣି ଏକ ଫାଙ୍କା ନଳି ଓହଳାଯାଏ ଓ ଉପର ହାଣ୍ଡିରେ ଥଣ୍ଡା ପାଣି ଭରି ଦିଆଯାଏ । ଏହିପରି ଗୋଟିଏ ହାଣ୍ଡି ପେଣ୍ଡମ୍‌ରୁ ପ୍ରାୟ *୬/୭* ଲିଟର ମାଣ୍ଡିଆ ମଦ ବାହାରିଥାଏ ।

୪୮. ମାଣ୍ଡୁଆ - *ଦେ.ବି. :* ଗ୍ରାମଦେବତା, ଦେବୀଙ୍କ ଆସ୍ଥାନ । ସଉରାମାନେ ଗ୍ରାମକୁ ରକ୍ଷା କରିବାପାଇଁ ମାଣ୍ଡୁଆ ଘର ନିର୍ମାଣ କରନ୍ତି । ସେଠାରେ ପୂଜା ଅର୍ଚ୍ଚନା କଲାବେଳେ ସମସ୍ତ ଦେବଦେବୀ ବିଜେ କରିଥାନ୍ତି ବୋଲି ସେମାନଙ୍କ ବିଶ୍ୱାସ । ସଉରା ମାନଙ୍କ ଗ୍ରାମଦେବୀ ବା ଦେବତାଙ୍କ ଉଦ୍ଦେଶ୍ୟରେ ନିର୍ମିତ ଗୁଡ଼ିଘର ।

୪୯. ମାଣ୍ଡୁକୋଡ଼ - *ଦେ.ବି. :* ପୌଷମାସରେ ପାଳିତ ଅଗ୍ନି ଉତ୍ସବ । ପୌଷ ପର୍ବ ଅବସରରେ ପରଜାମାନେ ଗ୍ରାମର ବେରଣ ମୂଣ୍ଡାଠାରେ ପୂର୍ଣ୍ଣିମା ଦିନ ଜଙ୍ଗଲରୁ କାଠ ଆଣି ସେହି କାଠକୁ ଜମାକରି ନିଆଁ ଲଗାନ୍ତି ଓ ନୂଆ କାନ୍ଦୁଲ ଛୁଇଁ ଆଦି ପୋଡ଼ନ୍ତି । ହୁଣ୍ଡି ଦେବୀଙ୍କୁ ପୂଜା ଅର୍ଚ୍ଚନା କରନ୍ତି । ଏହାକୁ 'ମାଣ୍ଡକୋଡ଼' କହନ୍ତି । (ତୁଳନୀୟ : ହଲପୋଡ଼ି ବା ହୋଲିକା ଦହନ ପର୍ବ) ।

୫୦. ମାତାଜ୍ୱର - *ଦେ.ବି. :* ଏକ ପ୍ରକାର ରୋଗ । ପାଣିବସନ୍ତ - ମିଳିମିଳା ଇଂ.- Measles, Chicken pox ଆଦିବାସୀ ପରିବାରରେ ଯଦି କାହାକୁ ବସନ୍ତ କିମ୍ୱା ମିଳିମିଳା ହୁଏ, ତେବେ ସେମାନେ ଦିଶାରୀ କିମ୍ୱା ଗୁରୁମାଈ ପ୍ରଭୃତିଙ୍କୁ ଡାକି ଗୁଡ଼ିଘର / ହୁଣ୍ଡି ଘରଠାରେ ଠାକୁରାଣୀଙ୍କୁ ପାରା-କୁକୁଡ଼ା ଆଦି ବଳିଦେଇ ନଡ଼ିଆ କଦଳୀ ପ୍ରଭୃତି ଭୋଗ କରି ପୂଜା ଦେଇଥାନ୍ତି । ତିନିଦିନ ପର୍ଯ୍ୟନ୍ତ ଏହିପରି ପୂଜା କରାଗଲା ପରେ ଆମ୍ରପତ୍ରରେ ପାଣି ଆଣି ରୋଗୀର ଚାରିପାଖରେ ବୁଲାଇ ମାତାଙ୍କୁ ଜୁହାର କରାଯାଏ ଓ ତିନିଦିନ କାଳ ପୂଜା ସମୟରେ ଦିଆଯାଉଥିବା ଝୁଣାଧୂଆଁ ମଧ ରୋଗୀକୁ ଦିଆଯାଇଥାଏ । ଏହାପରେ ରୋଗୀ ସ୍ଥଳ ବିଶେଷରେ ତିନିଦିନରୁ ଆଠଦିନ ଭିତରେ ରୋଗରୁ ମୁକ୍ତିଲାଭ କରିଥାଏ । ରୋଗୀଭଲ ହେବାପରେ ମାଛଧରା ଯନ୍ତରେ କିଛି କେରାଣ୍ଡି ମାଛ ବା ପିଠା ମାଛ ଧରି ଆଣି ତାକୁ ଝରଣା ପାଣିରେ ପକାଯାଏ ଓ ସେଇ ମାଛ ଧୁଆ ପାଣିକୁ ରୋଗୀର ମୁଣ୍ଡ ଉପରେ ଢାଳି ଦିଆଯାଏ ।

୫୧. ମାତାଠାକୁରାନୀ - *ଦେ.ବି. :* ବିଭିନ୍ନ ଦେବୀ ବା ମାତୃକା ଇଂ.- Goddesses ଦେଶିଆମାନେ ବିଭିନ୍ନ ସ୍ଥାନରେ ମାତା ଠାକୁରାଣୀମାନଙ୍କୁ ପୂଜା ଅର୍ଚ୍ଚନା କରି ମଣିଷ ତଥା ଗୋରୁଗାଈର ମଂଗଳ, ଭଲବର୍ଷା, ଭଲ ଚାଷ ଓ ନିରାମୟତା ପାଇଁ ପ୍ରାର୍ଥନା କରିଥାନ୍ତି । ସେହି ମାତାମାନଙ୍କୁ ରୁଧିର ଭୋଗ ଦେଇଥାନ୍ତି । ସେହି ଦେବୀମାନେ ହେଲେ ମାଣିକେଶ୍ୱରୀ, ମଝିଘରିଆଣୀ, ମୁତ୍ୟାଲମ୍ମା, ଶୀତଳା, କାରିସୁନ୍ଦରୀ (କାଳୀ),

ଅଗ୍ନିଗଙ୍ଗାମ୍ମା, ଦନ୍ତେଶ୍ୱରୀ, ଭୈରବ, ଭଣ୍ଡାର ଘରିଆଣୀ, ଇଂଲେଜିନ୍ ମାତା, ମାଉଲି, ମାର୍କାମ୍ମା, ବୁଢ଼ୀମା, ଚୈତ୍ରୋୟା, ବସନ୍ତାୟା, ହୁଣ୍ଡି, ମଙ୍ଗଳା, ଡଙ୍ଗରଦେଇ, ତପେଶ୍ୱରୀ, ବୀରଖମ୍ବ, ବୀରାଲୀ, ରକ୍ତ ମାଉଲି, ବଂଜାରନୀ ପେଣ୍ଡରାହାଣ୍ଡିଆଣୀ ।

୫୨. ମାତାପେଶିବା - *ଦେ.କ୍ରି. :* ରୋଗ ଚଳାଇବା - ସଂକ୍ରାମକ ରୋଗ ବ୍ୟାପିବା । ଇଂ.- To spread or cause epidemics.

କୌଣସି ଗ୍ରାମରେ ହଇଜା, ବସନ୍ତ, ମିଳିମିଳା ଇତ୍ୟାଦି ରୋଗ ବ୍ୟାପିଲେ ଏହାକୁ ଆଦିବାସୀ ଲୋକମାନେ 'ମାତା ପେଶିବା' ବା ରୋଗ ଚଳାଇବା ବୋଲି କହିଥାନ୍ତି । ଏହି ସଂକ୍ରାମକ ରୋଗ ଦେବୀ ଦେବତାଙ୍କ ରୋଷରୁ ବ୍ୟାପିଥାଏ ବୋଲି ସେମାନେ ବିଶ୍ୱାସ କରନ୍ତି । ଏହି ସଂକ୍ରାମକ ରୋଗର ପ୍ରତିକାର ପାଇଁ ସେମାନେ ଦିଶାରୀ ଓ ଗୁରୁମାଇ ପ୍ରଭୃତିଙ୍କ ଆଶ୍ରୟ ନେଇଥାନ୍ତି । ଦିଶାରୀ ଓ ଗୁରୁମାଇ ପ୍ରଭୃତି ମାଟି ଆଣିଦେଲେ ସେହି ମାଟିକୁ ଚକଟି କାଦୁଅ କରି ସେଥିରେ ଗୁଣିଆ ଗୋଟିଏ ଶଗଡ଼ ତିଆରି କରେ । ଶଗଡ଼ରେ ଲଦିକରି ନେବା ପାଇଁ ମାଟିର ଅନେକ ଛୋଟଛୋଟ ହାତୀ, ଘୋଡ଼ା, ବଳଦ ଇତ୍ୟାଦି ମୂର୍ତ୍ତି ତିଆରି କରେ । ମାଟି ବସ୍ତାରେ ଏସବୁ ମୂର୍ତ୍ତିକୁ ପୁରାଯାଇ ଶଗଡ଼ ଉପରେ ଲଦାଯାଏ । ଏଇସବୁକୁ ନେଇ ଯାତ୍ରା କରାଯାଏ । ଏହି ଯାତ୍ରା ତିନି ଛକି ରାସ୍ତା ପର୍ଯ୍ୟନ୍ତ ଯାଇ ସେହି ତିନି ଛକ ମଝିରେ ଅଟକେ । ସେହି ତିନିଛକି ରାସ୍ତା ମଝିରେ ଏହି ଶଗଡ଼କୁ ରଖାଯାଇ ଛେଳି, ଘୁଷୁରି, ପାରା, କୁକୁଡ଼ା ଇତ୍ୟାଦି ବଳି ଦିଆଯାଏ । ନଡ଼ିଆ ଭାଂଗି ଭୋଗ କରାଯାଏ । ଦିଶାରୀ, ଗୁରୁମାଇ ଓ ଗୁଣିଆ ପ୍ରଭୃତି ଏହି ପୂଜା କରିଥାନ୍ତି । ଏହି ମାଟି ଶଗଡ଼ରେ ଫୁଲମାଳ ଦିଆଯାଇ ପାଖରେ ଏକ କାଠ ଦେହରେ ଝଣ୍ଡା ବା ପତାକା ବାନ୍ଧି ଦିଆଯାଏ । ଏହାପରେ ଗ୍ରାମକୁ ଆଉ ସଂକ୍ରାମକ ରୋଗ ପ୍ରବେଶ କରିପାରିବ ନାହିଁ ବୋଲି ସେମାନେ ବିଶ୍ୱାସ କରନ୍ତି ।

୫୩. ମାତ୍ତାରବନମ୍ - *ଦେ.ବି. :* ଅକ୍ଷରବ୍ରହ୍ମ, ସଉରା ଭାଷାର ଲିପିରୂପ : ସୋରେଙ୍ଗ୍ ସାପେଙ୍ଗ୍ ଦେବତା । ଇଂ- The Letter God, Soura Script.

ଆଦିବାସୀ ଅଧ୍ୟୁଷିତ ଗୁଣୁପୁର ଅଞ୍ଚଳର ମରିଚ ଗୁଡ଼ାରେ ରହୁଥିବା ସଉରା ଆଦିବାସୀ ପଣ୍ଡିତ ମାଙ୍ଗେଇ ଗମାଙ୍ଗ ଏହି ସଉରା ଲିପି ବା ଅକ୍ଷର ବ୍ରହ୍ମର ଉଦ୍ଭାବକ

ତଥା ପ୍ରଚାରକ ଓ ଉପସ୍ଥାପକ । ସଉରା ଭାଷାର ବର୍ଣ୍ଣମାଳାର ୨୪ଟି ଅକ୍ଷର ଓ ୨ଟି ଅଙ୍କ ଅଛି । ଏହି ଅକ୍ଷର ଓ ଅଙ୍କ ମାନଙ୍କୁ ପ୍ରତୀକ ରୂପେ ନେଇ ସେ ଏକ ମୂର୍ତ୍ତିର କଳ୍ପନା କରିଥିଲେ । ଏହି ପ୍ରତୀକ ହିଁ ମାତରା ବନମ୍ । ଏହାର ସ୍ୱରୂପ ଆମ ଓଡ଼ିଆ ଭାଷାର ଓଁ ପରି, ମତ୍ତାର ବନମ୍ ହେଉଛନ୍ତି ଅକ୍ଷର ବ୍ରହ୍ମ । ଏହି ଅକ୍ଷରବ୍ରହ୍ମ 'ମାତ୍ତାର ବନମ୍'ଙ୍କ ଉତ୍ପତ୍ତି ସଂପର୍କରେ କଥିତ ଅଛି ଯେ, ମାଙ୍ଗେଇ ଗମାଙ୍ଗ ଦୀର୍ଘକାଳ ଧରି ମରିଚଗୁଡ଼ା ଗାଁ ମୁଣ୍ଡରେ ଥିବା ଅନୁଚ ପାହାଡ଼ ଉପରେ ତପସ୍ୟାରତ ଥିଲେ । ଦିନେ ତପସ୍ୟାରତ ଥିବାବେଳେ ତାଙ୍କ ଭିତରେ ଏକ ଦିବ୍ୟ ଭାବର ଉପଲବ୍ଧି ଆସିଥିଲେ । ଏକ ମହାନ୍ ଜ୍ୟୋତି ତାଙ୍କ ସମ୍ମୁଖରେ ଦେଖି ସେ ଆତ୍ମ ବିସ୍ମୃତ ହୋଇପଡ଼ିଥିଲେ । କିଛି କ୍ଷଣ ପରେ ସଚେତନ ହୋଇ ସେ ଦିବ୍ୟଜ୍ଞାନର ପ୍ରତୀକ ମାତ୍ତାର ବନମ୍‌ଙ୍କୁ ହୃଦୟରେ ଧାରଣା କରି ଚଉଦିଗକୁ ଚାହିଁଲେ । ମାତ୍ତାର ବନମ୍‌ଙ୍କ ନିର୍ଦ୍ଦେଶ ତାଙ୍କ ହୃଦୟରେ ଅନୁରଣିତ ହେଉଥାଏ । ସେଦିଦ ଥିଲା ବୈଶାଖ ଶୁକ୍ଳ ତୃତୀୟା । ପଣ୍ଡିତ ମାଙ୍ଗେର ଗମାଙ୍ଗ ଏହି ଅକ୍ଷର ବ୍ରହ୍ମର ସ୍ୱରପୂକୁ ନିଜ କଳ୍ପନାରେ ରୂପଦେଇ ପ୍ରତୀକାତ୍ମକ ଭାବେ ପ୍ରତିଭାତ କରିଥିବାରୁ ପ୍ରତିବର୍ଷ ମରିଚ ଗୁଡ଼ାଠାରେ ଅକ୍ଷୟ ତୃତୀୟା ଦିନ ମାତ୍ତାର ବନମ୍‌ଙ୍କ ଆବିର୍ଭାବ ଦିବସ ମହାସମାରୋହରେ ପାଳିତ ହୁଏ । ଆନ୍ଧ୍ରପ୍ରଦେଶ ସମେତ ସୁଦୂର ଅଞ୍ଚଳରୁ ହଜାର ହଜାର ସଉରା ଜନଜାତିର ଲୋକେ ଏଠାରେ ଏକତ୍ର ହୁଅନ୍ତି । ଏବେ ଏହି ଦିବସଟି ସଉରା ସଂପ୍ରଦାୟର ପରମ୍ପରାରେ ସବୁଠାରୁ ମହାନ୍ ପାର୍ବଣ ଦିବସ ତଥା ସଂହତି ଓ ସୌହାର୍ଦ୍ଦ୍ୟ ଦିବସ ପାଲଟି ଯାଇଛି । ଏହି ପାହାଡ଼ ଉପରେ ଯେଉଁଠି ପ୍ରଥମେ ଅକ୍ଷର ବ୍ରହ୍ମଙ୍କ ସଂପର୍କରେ ପଣ୍ଡିତ ମାଙ୍ଗେର ଗମାଙ୍ଗ ଉପଲବ୍ଧି କରିଥିଲେ, ସେଇଠି ଏବେ 'ମାତ୍ତାର ବନମ୍' ମନ୍ଦିର ପ୍ରତିଷ୍ଠା କରାଯାଇଛି । ଶାବର ଶ୍ରୀକ୍ଷେତ୍ରରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ବେଢ଼ା ଭିତରେ ଚମ୍ପାବଣରେ ଏକ ମନୋରମ ପରିବେଶରେ ମାତ୍ତାର ବନମ୍‌ଙ୍କ ଅଧିଷ୍ଠାନ ଗଢ଼ି ଉଠିଛି । ଏଠି ମଧ ପ୍ରତିବର୍ଷ ଅକ୍ଷୟ ତୃତୀୟାଦିନ 'ମାତ୍ତାର ବନମ୍'ଙ୍କ ଜନ୍ମ ତିଥି ମହାସମାରୋହରେ ପାଳିତ ହୋଇଆସୁଛି ।

ମାତ୍ତାମାନେ ଚେତନା, ତାରମାନେ ଆଲୋକ, ବନମ୍‌ମାନେ ଶୁଦ୍ଧ ବା ପବିତ୍ର । ସଉରା ଭାଷାର ଏହି ୨୪ଟି ଅକ୍ଷର ୨୪ଜଣ ଦେବତାଙ୍କ ଆଦ୍ୟ ଅକ୍ଷରକୁ ନେଇ ଗଢ଼ା । ଏହା ହେଉଛି :

ସା, ତା, ବା, ଚା, ଡ଼ା, ଗା = ସକଳ ସହାୟକ ଶକ୍ତିର ମାର୍ଗ

ମା, ଡ଼ା, ଲା, ନା, ଓ୍ୱା, ପା = ଚେତନା ଶକ୍ତିର ପନ୍ଥା

ୟା, ରା, ହା, କା, ଜା, ୟା = ସକଳ ପ୍ରକାର ଶିକ୍ଷାର ମାର୍ଗ

ଆ, ଇ, ଏ, ଉ, ଅ, ଐ = ସକଳ ପ୍ରକାର ଶସ୍ୟ ଅମଳର ମାର୍ଗ ।

ଅକ୍ଷୟ ତୃତୀୟା ଦିନ ଅକ୍ଷର ବ୍ରହ୍ମଙ୍କ ଜନ୍ମ ହୋଇଥିବାରୁ ପ୍ରତ୍ୟେକ ବର୍ଷ ଅକ୍ଷୟ ତୃତୀୟା ତିଥିରେ କିତୁଂକୁ ମାଉାରବନମ୍ ମନ୍ଦିରରେ ପୂଜା କରାଯାଏ ।

୫୪. ମାତିଲି / ମାଥିଲି - *ଦେ.ବି.* : ଗୋଟିଏ ସ୍ଥାନର ନାମ ବିଶେଷ । ମାଲ୍‌କାନଗିରି ଜିଲ୍ଲାର ଗୋଟିଏ ବ୍ଲକ୍ ଯାହାକି ଛତିଶଗଡ଼ ସୀମା ପର୍ଯ୍ୟନ୍ତ ବ୍ୟାପ୍ତ । ଏଠାରେ ପ୍ରଥମ ରହୁଥିଲେ ମାଥିଲିଆ ସଂଜ୍ଞାଧାରୀ ଭୂମେୟା ଜାତିର ଲୋକ । ସେଇମାନଙ୍କର ସଂଜ୍ଞା ଅନୁସାରେ ଏହାର ନାମ ହେଉଛି ମାତିଲି । ସେମାନେ ପ୍ରାୟ ୧୦୦ବର୍ଷ ତଳେ ଏଠାରେ ପ୍ରଥମ ବସତି ସ୍ଥାପନ କରିଥିଲେ । ମାତ୍ର କ୍ରମଶଃ ସେମାନେ କୁଆଡ଼େ ବିତାଡ଼ିତ ହୋଇ ଅନ୍ୟ ଅଞ୍ଚଳରେ ଘର କରି ରହୁଛନ୍ତି । ସେମାନଙ୍କର ସମସ୍ତ ଜମି ଏବେ ତେଲୁଗୁ ଓ ଅନ୍ୟାନ୍ୟ ସାହୁକାରମାନଙ୍କ ଦଖଲରେ । କିନ୍ତୁ ନାମ ରହିଯାଇଛି ମାତିଲି । ଏହି ମାତିଲି ଠାରେ ୧୯୪୨ ଅଗଷ୍ଟ ୨୧ରେ ଶୁକ୍ରବାର ହାଟଦିନ ଘଟିଥିବା ଥାନା ଘେରାଉ ଓ ଗୁଳିକାଣ୍ଡ ଇତିହାସ ବିଖ୍ୟାତ । ଏଥିରେ ୫ ଜଣ ଆଦିବାସୀ ଶହୀଦ ହୋଇଥିଲେ ଏବଂ ଏହାର ନେତୃତ୍ୱ ନେଇଥିବା ଭୂମେୟା ନେତା ଲକ୍ଷ୍ମଣ ନାୟକଙ୍କୁ ମିଥ୍ୟା କେଶ୍‌ରେ ଜଡ଼ିତ କରାଯାଇ ବ୍ରିଟିଶ୍ ସରକାର ଫାଶୀଦଣ୍ଡରେ ଦଣ୍ଡିତ କରିଥିଲେ । ସେହି ଶହୀଦ ଦିବସଟି ଥିଲା ମାର୍ଚ୍ଚ ୨୯, ୧୯୪୩ । ବ୍ରହ୍ମପୁର ଜେଲ୍‌ରେ ସେ ଫାଶୀପାଇ ଶହୀଦ ହୋଇଥିଲେ ।

୫୫. ମାନ୍ୟାମ୍‌କୋଣ୍ଡା (ମାନ୍ୟମ୍ ପର୍ବତ) - *ଦେ.ବି.* : ଏକ ପୁରାଣ ପ୍ରସିଦ୍ଧ ପର୍ବତ ବିଶେଷ । ମାଲକାନଗିରି ଜିଲ୍ଲାରେ ଅବସ୍ଥିତ ପର୍ବତ, ଯେଉଁଠାରେ ବାଲାରାଜୁ, ପୋତରାଜୁ ଓ କାନାମରାଜୁ ଦେବାତଙ୍କୁ ପୂଜା କରାଯାଏ । ଏହି ଦେବତା ମାନଙ୍କର ମାନ୍ୟମକୋଣ୍ଡାରୁ ମାଲକାନଗିରି ଯାତ୍ରା ଓ ପ୍ରତ୍ୟାବର୍ତ୍ତନକୁ 'ବଡ଼ଯାତ୍ରା' ବୋଲି କୁହାଯାଏ । ଏହି ଯାତ୍ରାରେ ଓଡ଼ିଶା, ଛତିଶଗଡ଼ ଓ ଆନ୍ଧ୍ରପ୍ରଦେଶର ବହୁ ଲୋକ ସମ୍ମିଳିତ ହୋଇଥାନ୍ତି । ବଡ଼ଯାତ୍ରା ମାଲକାନଗିରିର ପ୍ରସିଦ୍ଧ ଲୋକପ୍ରିୟ ଆଦିବାସୀ ଯାତ୍ରା ଅଟେ । (ଦ୍ର. ବଡ଼ଯାତ୍ରା) ଏହି ମାନ୍ୟମ୍‌କୋଣ୍ଡା ପର୍ବତ ନିକଟରେ ରହିଛି

ମାନ୍ୟାମ୍‌କୋଣ୍ଡା ଗାଁ । ବାଲାରାଜୁ, ପୋତରାଜୁ ଓ କାନାମ୍‌ରାଜୁଙ୍କ ମନ୍ଦିର ମଧ୍ୟ ଏହିଠାରେ ଅବସ୍ଥିତ । ମାଲକାନଗିରି ଠାରୁ କାଲିମେଳା ଲାଇନ୍‌ରେ ୭୨ନଂ ପର୍ଯ୍ୟନ୍ତ ଯାଇ ସେଠାରୁ ପ୍ରାୟ ୫କି.ମି. ଦୂରରେ ରାଜଗିରି ପାଖରେ ମାନ୍ୟମ୍‌କୋଣ୍ଡା ଅବସ୍ଥିତ ।

୫୬. ମାନ୍ଦର - *ଦେ.ବି. :* ମୃଦଙ୍ଗ ପରି ଗଣ୍ଡ ଆଦିବାସୀ ଗୋଷ୍ଠୀର ଦ୍ୱିମୁଖଚର୍ମ ଆଚ୍ଛାଦିତ ବାଦ୍ୟଯନ୍ତ୍ର :

(କ) ମାଟି ମାନ୍ଦର : ଦେ:ବି: ଏହି ମାନ୍ଦରର ଦେହ ମାଟିରେ ନିର୍ମିତ ହୋଇଥାଏ । କୁମ୍ଭାର ନାଟଗୁରୁ ମାନଙ୍କ ନିର୍ଦ୍ଦେଶ ଅନୁସାରେ ମାଟି ଚକଟି ଏହି ମାଳର ନିର୍ମାଣ କରି ନିଆଁରେ ପୋଡ଼ି ଶକ୍ତ କରିଥାଏ । ତାପରେ ଡମ (ହରିଜନ) ଶ୍ରେଣୀର ଲୋକ ଏହାର ଦୁଇ ମୁହଁରେ ଗୋରୁ କିମ୍ୱା ଛେଳି ବା ମେଣ୍ଢା, ଚମଡ଼ା ବାନ୍ଧିଥାନ୍ତି ଓ ଚମଡ଼ାର ଦଉଡ଼ିରେ କଷି ଦେଇଥାନ୍ତି ।

(ଖ) କାଠ ମାନ୍ଦର : ଦେ:ବି: ଏହାର ଖୋଳଟି କାଠରେ ନିର୍ମିତ ହୋଇଥାଏ ଏବଂ ଦୁଇ ମୁଖ ଗୋ କିମ୍ୱା ଛାଗ ଚର୍ମରେ ଛୁଆଣି ହୋଇଥାଏ ।

ମାନ୍ଦରି ନାଟ : ଦେ.ବି. : ଯେଉଁ ଲୋକ ନୃତ୍ୟର ମାନ୍ଦର ବାଦ୍ୟ ଯନ୍ତ୍ରର ପ୍ରମୁଖ ବ୍ୟବହହାର ହୋଇଥାଏ । ପୁରୁଷ ଓ ସ୍ତ୍ରୀ ଉଭୟେ ଏହି ନାଟରେ ଅଂଶ ଗ୍ରହଣ କରିଥାନ୍ତି । ଏହା ମୁଖ୍ୟତଃ ଗଣ୍ଡ ସମାଜରେ ପ୍ରଚଳିତ ।

୫୭. ମାପ୍ରୁ - *ଦେ.ବି. :* ଦେବତା : ଠାକୁର - ପ୍ରଭୁ - ମାଲିକ : ଆଦିବାସୀ ମଣିଷମାନେ ନିଜଠାରୁ ଅଧିକ ଜାଣିବା ଶୁଣିବା ଜ୍ଞାତି ଗୁଣି ଲୋକମାନଙ୍କୁ 'ମାପ୍ରୁ' କହି ସମ୍ବୋଧନ କରିଥାନ୍ତି । ସେମାନେ ପୂଜା କରୁଥିବା ଦାରୁ ଦେବତା, ପଥରମୁଣ୍ଡା, ମାଟି, ପାଣି, ପବନ ସମେତ ପ୍ରକୃତିର ପ୍ରତିଟି ବିଭବକୁ 'ମାପ୍ରୁ' ହିଁ କହିଥାନ୍ତି । ସେମାନେ କହନ୍ତି 'ମନୁଷ୍, ପଶୁ, ପକ୍ଷୀ, ଗଛ, ପତର, ଗୁଡ଼ିମାଟି, ପାକ୍‌ନା ଭିତରେ ହେ ମହାପ୍ରୁ ଅଚେ । ମହାପ୍ରୁ କେ ଅଲରା କଲେ କେହେଁ ବଞ୍ଚି ନ ପାରିତ ।' ଯାହାର ଅର୍ଥ: ମଣିଷ, ପଶୁ ପକ୍ଷୀ, ଜୀବଜନ୍ତୁ ଗଛଲତା ସମେତ ଏକ ଦୁନିଆରେ ସବୁକିଛି ମହାପ୍ରଭୁଙ୍କ ଅଂଶ ବିଶେଷ ଅଟେ । ତେଣୁ କାହାରି କିଛି କ୍ଷତି କରିବା ଉଚିତ୍ ନୁହେଁ । ଅନ୍ୟାର୍ଥେ, ଧୋବ ଧଉଳିଆ ଅଧିକାରୀ ଓ ବାବୁମାନଙ୍କୁ ମଧ୍ୟ ମାହାପ୍ରୁ ବୋଲି ସମ୍ବୋଧନ କରାଯାଇଥାଏ ।

୫୮. ମାମା : ମାମୁଁ - *ଦେ.ବି. :* ଇଂ- Maternal Uncle. ଅଧିକାଂଶ ଆଦିବାସୀ ସଂପ୍ରଦାୟରେ ମାମୁ ଝିଅ ସହ ବାହା ହେବା ପରମ୍ପରା ରହିଛି । ଏ ସଂପର୍କରେ ଏକ ପ୍ରବାଦ ପ୍ରଚଳିତ - ମାମା ଝି ଗୁଡ଼ ଘି । ଅର୍ଥାତ୍ ମାମୁ ଝିଅ ଗୁଡ଼ ଓ ଘିଅ ପରି ।

୫୯. ମାୟାକାଜେ - *ଦେ.ବିସ. :* ପ୍ରେମ ପାଇଁ ସ୍ନେହ ପାଇଁ ଯଥା ଫ (କ) ତୁମର ଆମର ମାୟାକାଜେ ଧୋଡ୍ରା ମୁଣ୍ଡେଇ ଯୁ । (ତୋ ମୋ ଭିତରେ ସ୍ନେହ ଭାବର ଉଦ୍ରେକ ପାଇଁ ଧଡ୍ରା ଗାଁର ମଣ୍ଡେଇକୁ ଯିବା)

୬୦. ମାଳି ଚେଗବା - *ଦେ.କ୍ରି. :* ପର୍ବତ ଉପରକୁ ଚଢ଼ି ପୂଜା କରିବା । ପର୍ବତ ଉପରେ ଦେବାଦେବୀଙ୍କ ଆସ୍ଥାନ ସବୁ ରହିଥାଏ । କନ୍ଧଣୀଙ୍କ ଆସ୍ଥାନ ଥିବା ପର୍ବତ ଶିଖରକୁ କନ୍ଧଣୀମାଳି, କୁଟୁଣୀ ଦେବୀଙ୍କ ଆସ୍ଥାନ ଥିବା ପର୍ବତକୁ କୁଟୁଣୀ ମାଳି ଦେବତାଙ୍କ ଆସ୍ଥାନ ଥିବା ଶିଖରକୁ ଦେଓମାଳୀ ବୋଲି କହନ୍ତି । ସେମିତି ଦେବାଦେବୀଙ୍କ ନାମ ଅନୁସାରେ ପର୍ବତ ଶିଖର ବା ମାଳିର ନାମକରଣ କରାଯାଇଥାଏ । ପର୍ବତ ଶିଖରକୁ ବା ମାଳି ଉପରକୁ ଚଢ଼ି ପୂଜାର୍ଚ୍ଚନା କରିବାକୁ 'ମାଳିଚେଗ୍‌ବା' କହନ୍ତି ।

୬୧. ମାଲକାନଗିରି - *ଦେ.ବି. :* ମାଲକାନଗିରି ଜିଲ୍ଲାର ସଦର ମହକୁମା । ମାଲ୍ୟବନ୍ତଗିରି - ମଲ୍ଲିକ - ମର୍ଦ୍ଦନଗିରି, ମଲ୍ଲିକ ଅର୍ଜ୍ଜୁନ ଗିରି ମଧ କୁହାଯାଏ । ମାଲକାନଗିରିର ପ୍ରାଚୀନ ନାମ ମାଲ୍ୟବନ୍ତଗିରି ଥିଲା । ଏହା କାଳକ୍ରମେ ଅପଭ୍ରଂଶ ହୋଇ ମାଲକାନଗିରି ନାମରେ ନାମିତ ହୋଇଛି । ଅତୀତରେ ଏହା ମଲ୍ଲିକ ମର୍ଦ୍ଦନ ନାମକ ଏକ ସାମନ୍ତ ରାଜାଙ୍କ ଦ୍ୱାରା ଶାସିତ ହେଉଥିବାରୁ ଏହା ମଲ୍ଲିକ ମର୍ଦ୍ଦନ ଗିରି ନାମରେ ନାମିତ ହୋଇ ମାଲକାନଗିରିରେ ପରିଣତ ହୋଇଥିବା କଥା କେହିକେହି କହିଥାନ୍ତି । ମାତ୍ର ଲୋକକଥାରୁ ଜଣାଯାଏ : ବନବାସ ସମୟରେ ରାମଚନ୍ଦ୍ର ଏଠାରେ ଏକ ଶୁଭ୍ରଶିବ ଲିଂଗ ସ୍ଥାପନ କରି ତାହାକୁ ମଲ୍ଲୀଫୁଲ ଦେଇ ପୂଜା କରିଥିବାରୁ ସେହି ଲିଙ୍ଗ ମଲ୍ଲିକେଶ୍ୱର ଦେବ ଭାବରେ ପରିଚିତ ହୋଇଥିଲେ । ସେହିଦିନଠାରୁ ଏହା ମଲ୍ଲିକେଶ୍ୱର ଗିରି ଭାବେ ପରିଚିତ ହୋଇ ପରବର୍ତ୍ତୀ ସମୟରେ ମାଲକାନଗିରି ନାମରେ ନାମିତ ହୋଇଛି । ମଲ୍ଲିକେଶ୍ୱର ମହାଦେବ ଓ ମାଣିକେଶ୍ୱରୀ ଦେବୀଙ୍କୁ ନେଇ ମାଲକାନଗିରି ଜିଲ୍ଲାର ବେଶ ପ୍ରସିଦ୍ଧି ରହିଛି । ଅତୀତରେ ଏହି ରାଜ୍ୟରେ

ମଲ୍ଲିକାର୍ଜ୍ଜୁନ ନାମକ ଜଣେ କିରାତ ରାଜା ଶାସନ କରୁଥିବାର ପ୍ରବାଦ ମଧ୍ୟ ଶୁଣିବାକୁ ମିଳିଥାଏ ।

୬୨. ମାଲି - *ଦେ.ବି. :* ଧାତୁ, କାଠ, କାଚ ଓ ଫୁଲ ନିର୍ମିତ ହାର । ଆଦିବାସୀ ସମାଜରେ ମାଳିର ଖୁବ୍ ଆଦର । ଇଂ.- Necklace

ବେକରେ ପିନ୍ଧା ଯାଉଥିବା ଏକ ଅଳଙ୍କାର । ବେକରେ ପିନ୍ଧା ମାଳି । ସୁନା, ରୂପା, ପିତଳ ଓ ପୋହଳାରେ ତିଆରି ବିଭିନ୍ନ ପ୍ରକାର ମାଳି ଆଦିବାସୀ ରମଣୀମାନେ ବେକରେ ପିନ୍ଧିଥାନ୍ତି । ବିଭିନ୍ନ ପ୍ରକାର ଗାଳି ମଧ୍ୟରେ ସୁରିସା ମାଲି, ଖାକ୍‌ଲା ମାଲି, ସାତପୁରୀ ମାଲି ରୂପାଟଙ୍କା ମାଲି, କଲାମାଲି ଇତ୍ୟାଦି ଜନପ୍ରିୟ ।

ଭାଷାରେ ବ୍ୟବହାର :

(୧) ଆଟ୍ ଥାନୁ ମାଲି ଗିନଲାଇ (ହାଟରୁ ମାଳି କିଣିଲେ) ।

(୨) କାୟ ମାଲି ପିନ୍ଧୁ, କାର ନାତି ଏ ସଂଗର ମଲି, ଇଲକା ଲଗାୟ ନେତି ।

(କି ସୁନ୍ଦର ମାଳି ପିନ୍ଧୁଛୁ ସାଂଗ, କହ ତୁ କାହାର ନାତି / ତୋତେ ଗେଲ କରି ନେଇ ଯାଆନ୍ତି)

୬୩. ମାଲିଙ୍ଗି - *ଦେ.ବି. :* ଏକ ଔଷଧି ବୃକ୍ଷ ବିଶେଷ । ଏହା ଏକ ପ୍ରକାର କଣ୍ଟାଗଛ । ଏହି ଗଛର ଚେରକୁ ଚୋବାଇଲେ ଦାନ୍ତ ବ୍ୟଥା ଦୂର ହୋଇଥାଏ ।

୬୪. ମାଲିଜରଣ ଗୀତ - *ଦେ.ବି. :* ଗୋଟିଏ ପ୍ରକାରର ନାନ୍ଦୀପାଠ ଗୀତ । ପରଜାମାନଙ୍କ ନାନ୍ଦୀ ପୂଜା ଅବସରରେ ଏହି ଗୀତ ଗାନ କରାଯାଏ । ଯଥା :

"ଘର ମାତା କେ ଶଏ ଲୁଆରୁ,
ଘର ମାତାକେ ସାଠେ ଶରାଣୁ
ସେଦିନ ଆଲେ ମା, ସେଦିନ ଅଲେ ମାତା"

୬୫. ମାସ୍ / ଦେଶିଆ ମାସ - *ତଦ : ବି. :* ମାସ : ଇଂ. - Month : ଦେଶିଆ ଭାଷାରେ ପରବ ଅନୁଯାୟୀ ମାସମାନଙ୍କର ନାମକରଣ କରାଯାଇଥାଏ । ଏହା ମୁଖ୍ୟତଃ ଚାନ୍ଦ୍ରମାସ । ଗୋଟିଏ ଜନ୍‌ରୁ ଆଉ ଗୋଟିଏ ଜନ୍ ପର୍ଯ୍ୟନ୍ତ ଗୋଟିଏ ମାସ । ଅର୍ଥାତ୍ ଅମାବାସ୍ୟାରୁ ଅମାବାସ୍ୟା ଗୋଟିଏ ମାସ ହିସାବ ହୁଏ । ଏହି ସବୁ ମାସ

ପୁଷ୍ ମାସରୁ ଆରମ୍ଭ ହୁଏ । ଘରେ କାମ ଦାମ୍ କରିବା ଲୋକ ପୁଷ୍ ମାସ ପାଖରୁ ରଖାହୁଏ । ଗାଁର ଚାଲାଣ, ବାରିକ ଆଦି ପୁଷ୍ମାସର ଗ୍ରାମ ସଭାରେ ନିର୍ବାଚିତ ହୁଅନ୍ତି । ଏହି ନିର୍ବାଚନ ପୁଷ୍ ପରବ୍ ପରେ ପରେ ଅନୁଷ୍ଠିତ ହୁଏ । ଏହିପରି ଦେଶିଆ ମାସ ସବୁ ହେଉଛି : ପୁଷ୍, ମାଘ, ଫାଗୁନ୍, ଚଇତ, ବୈଶାଖ, ଲାଣ୍ଡି, ଆଷାଢ଼, ବାନ୍ଧାନ୍, ଆଶା, ଦଶରା, ଦିଶାଲି, ପଣ୍ଡୁ (ପୌଷ, ମାଘ, ପାଲ୍‌ଗୁନ, ଚୈତ୍ର, ବୈଶାଖ, ଜ୍ୟେଷ୍ଠ, ଆଷାଢ଼, ଶ୍ରାବଣ, ଭାଦ୍ରବ, ଆଶ୍ୱିନ, କାର୍ତ୍ତିକ, ମାର୍ଗଶୀର) । ଋତୁ ମୁଖ୍ୟତଃ ୩ଟି । ଶୀତ, ଖରା, ବର୍ଷା । ଅନ୍ୟାନ୍ୟ କିଛି ଋତୁର ପ୍ରଚଳନ ନାହିଁ । ୪ ମାସରେ ଗୋଟିଏ ଋତୁ । ଋତୁକୁ କୁହାଯାଏ ଦିନ୍ ବା କାଲ୍ । ଶୁକ୍ଳପକ୍ଷକୁ କୁହାଯାଏ କଅଁଲିଜନ୍ ଓ କୃଷ୍ଣପକ୍ଷକୁ କୁହାଯାଏ ବୁଡ଼ାଜନ୍ । ଦୁଇ ପକ୍ଷକୁ ନେଇ ଗୋଟିଏ ମାସ । ଏ ସଂପର୍କରେ ଏକ ଲୋକୋକ୍ତି ପ୍ରଚଳିତ । 'ପୁଷ ମାସେ ପୁଷ୍ ପରବ୍, ମାଗ୍‌ମାସେ ଶିବରାତ୍ । ଫଗୁନ ମାସେ ଅଲପଡ଼ା ।

ଚଇତ ମାସେ ଚଇତ ପରବ୍ । ବୈଶାଖ ଲାଣ୍ଡି ଜବର କାରା । ଆଷାଢ଼ ମାସେ ଆଷାଢ଼ ତରା । ବାନ୍ଧାପାନା ମାସେ ବାନ୍ଧାପନା ପରବ । ଅସାମାସେ ଅସା ପରବ୍ । ଦଶରାମାସେ କାକ୍‌ଡ଼ି ପରବ । ଦିଆଲି ମାସେ ଗୋରୁକେ ବାତ୍ କୁଆଇବା ପରବ୍ ।

୬୬. **ମାସଦ୍** - *ଦେ.ବି.* : ମହାପ୍ରସାଦ । ଓଡ଼ିଆ ମହାପ୍ରସାଦରୁ 'ମାସାଦ' ହୋଇଛି । ମହାପ୍ରସାଦ ବାନ୍ଧିବା - ସଂଗାତ, ମୈତ୍ରକୁ 'ମାସାଦ' ବୋଲି କୁହାଯାଏ । ଆଦିବାସୀ ସଂପ୍ରଦାୟରେ ମାସାଦକୁ ନିଜ ଭାଇ ଠାରୁ ଅଧିକ ବୋଲି ଜ୍ଞାନ କରାଯାଏ ଏବଂ ମାସାଦ ପାଇଁ ଜଣେ ଜୀବନ ବି ଦେଇପାରେ । ଯେ କୌଣସି ଜାତି ବା ବର୍ଗ ଗୋଷ୍ଠୀର ଲୋକ ସହିତ ମାସାଦ ବନ୍ଧା ଯାଇପାରେ । ମାସଦ ବାନ୍ଧି ସାହୁକାରମାନେ ଆଦବିାସୀର ଜମିବାଡ଼ି ସବୁକିଛି ଲୁଟି ତାକୁ ଦାଣ୍ଡର ଭିକାରି କରିଦେବାର ବହୁ ଦୃଷ୍ଟାନ୍ତ ରହିଛି ।

୬୭. **ମାଂହାଲା** - *ଦେ.ବି.* : (କ) ମାହାଲାକାରିଆ ଦେ.ବି. : ଯେଉଁ ବ୍ୟକ୍ତି ବର ଓ କନ୍ୟାପକ୍ଷ ମଧ୍ୟରେ ବିବାହ ଯୋଗସୂତ୍ରରେ ମଧ୍ୟସ୍ଥ ଭାବେ କାର୍ଯ୍ୟ କରିଥାଏ । ରାଇବାଡ଼ିଆ । ଇଂ.- Middleman ମାହାଲା ହେଉଛି ମଧ୍ୟସ୍ଥି ।

(ଖ) ମାହାଲାର ପର୍ଯ୍ୟାୟ : (୧) ସମଦାନ (ସଗା) ମାହାଲା (୨) ଚିନାରି ମହାଲା (୩) ଜନାରି ମାହାଲା ।

(୧) ସମଦାନ (ସଗା) ମାହାଲା : ବିବାହ ଯୋଗ୍ୟ ପୁଅ ପାଇଁ ବାପ ଓ ମା ଦୁହେଁ ବିବାହ ଯୋଗ୍ୟା କନ୍ୟାଟିଏ ସମ୍ବନ୍ଧରେ ବନ୍ଧୁବାନ୍ଧବ ମାନଙ୍କ ଠାରୁ ତଥ୍ୟ ନେଇ ପୁଅ ପାଇଁ ଝିଅର ହାତ ମାଗିବାକୁ ଯାଆନ୍ତି । ଏହାକୁ ସମ୍ବନ୍ଧ ସ୍ଥାପନ ବା 'ସମଦାନ (ସଗା) ମାହାଲା' କୁହାଯାଏ ।

(୨) ଚିନାରି ମାହାଲା : ପୁଅ ଘର ଝିଅ ଘରକୁ ଯାଇ ମଧ୍ୟସ୍ଥି ସାହାଯ୍ୟରେ ସମ୍ବନ୍ଧ କଥା କହିବାର ପରଦିନ ସକାଳେ (ବିହାନେ) ଝିଅ ଘର ଗାଁର ସମସ୍ତଙ୍କୁ ଖବର ପଠାନ୍ତି । ଖବର ପାଇ ସମସ୍ତେ ଗୁଣ୍ଡ ହୁଅନ୍ତି । ତା' ଆଗଦିନ ରାତିରେ ପୁଅ ଘର ଝିଅ ଘରକୁ ଦେଇଥିବା ଲିଆ, ଚୁଡ଼ା, ଗୁଡ଼ ଓ ତେଲ ଛଣା ପିଠା, ସଲପ, ମଦ ଯାହା ରାତିର ବ୍ୟବହାର ପରେ ବଳିଯାଇଥାଏ, ସେଗୁଡ଼ିକୁ ମାହାଲା କରିଆମାନେ ନଡ଼ିଆ ଭାଂଗି ପୂଜା କଲାପରେ ସମସ୍ତେ ଖାଇଥାନ୍ତି । ତାପରେ ସମସ୍ତଙ୍କ ଉପସ୍ଥିତିରେ ଝିଅ ଘର ଲୋକେ ଏହି ସମ୍ବନ୍ଧକୁ ସ୍ୱୀକାର କରନ୍ତି । ଆମେ ରାତିରେ ସମଦାନ ମାହାଲା ଖାଇଲୁ ଏବଂ ବିହାନେ (ସକାଳେ) ଚିନାରି ମାହାଲା ଖାଇଲୁ । ଏହା ସ୍ୱୀକୃତି ଫଳରେ ବାହାଘର ସମ୍ବନ୍ଧ ପକ୍‌କା ହୁଏ ।

(୩) ଜନାରି ମହାଲା : ଜଣେ ମଧ୍ୟସ୍ଥ ଦ୍ୱାରା ସମ୍ବନ୍ଧ ସ୍ଥାପନ କରାଯାଇ ପୁଅ-ଝିଅର ବିବାହ କାର୍ଯ୍ୟ ସଂପାଦନକୁ 'ଜନାରି ମାହାଲା' କୁହାଯାଏ । ଏହି କ୍ଷେତ୍ରରେ 'ମାହାଲାକାରିଆ' (ମଧ୍ୟସ୍ଥ) ମୁଖ୍ୟ ଭୂମିକା ଗ୍ରହଣ କରିଥାଏ ।

ସ୍ଥିରୀକୃତ ବିବାହରେ ମଧ୍ୟସ୍ଥି ପ୍ରଥାକୁ 'ମାହାଲା' କୁହାଯାଏ । ପୁଣି ବିବାହ ପ୍ରସ୍ତାବ ପକ୍‌କା କରିବାପାଇଁ ମଧ୍ୟସ୍ଥ ସହିତ ବରପିତା ଓ ବରଘର ଲୋକେ କନ୍ୟାଘରକୁ ଯିବା ପ୍ରଥାକୁ 'ମାହାଲା' କୁହାଯାଏ । (ତୁଳନୀୟ : ଗଣ୍ଡ ମାନଙ୍କର ବିବାହ ବ୍ୟବସ୍ଥାରେ ଥିବା ମାହାଲା ପ୍ରଥା ।)

ବାହାଘର ପକ୍‌କା କରିବା ପାଇଁ କନ୍ୟାପିତା ବରଘରୁ ବାରଗୋଟି ମାଲା ଆଦାୟ କରେ । ଏହାର ଅର୍ଥ ହେଲା ପ୍ରତିମାସରେ ଥରେ ବରପିତା ମାହାଲା କାରିଆ (ମଧ୍ୟସ୍ଥ) ସହିତ ମଦ କଳସୀ, ଚାଉଳ, ଡାଲି ଓ ଅନ୍ୟ ସରଞ୍ଜାମ ନେଇ କନ୍ୟାପିତାଙ୍କ

ଘରକୁ ସଂଖୋଳିବାକୁ ଯାଆନ୍ତି । ଏହି ସଂଖୋଳିବାର ଅର୍ଥ ହେଲା ବାହାଘର ପ୍ରସ୍ତାବକୁ ଅଧିକ ପକ୍‌କା କରିବା । ଲୋକ ଗହଳି ମଧ୍ୟରେ ତାକୁ ଚିହ୍ନଟ କରିବା ପାଇଁ ତା ଅଣ୍ଟାରେ ଗୋଟାଏ ସିନ୍ଧିଡାଳ ଝୁଲାଇ ଦିଆଯାଇଥାଏ । ଏଇଥିରୁ ମାହାଲା କାରିଆର ସାମାଜିକ ଗୁରୁତ୍ୱ ଅନୁମେୟ ।

୬୮. ମାହାଲାବିଭା - *ଦେ.ବି. :* ଗୋଟିଏ ପ୍ରକାରର ବିବାହ ପ୍ରଥା । ଆଦିବାସୀ ସଂପ୍ରଦାୟରେ ଯେଉଁ ପାଞ୍ଚ ପ୍ରକାର ବିବାହ ପ୍ରଥା ପ୍ରଚଳିତ, ସେଥି ମଧ୍ୟରୁ 'ମାହାଲା ବିଭା' ଅନ୍ୟତମ । ପରମ୍ପରା ଅନୁମୋଦିତ ସ୍ଥିରୀକୃତ ବିବାହକୁ ମାହାଲାବିଭା କୁହାଯାଏ । ଏହା ତିନୋଟି ପର୍ଯ୍ୟାୟରେ ହୋଇଥାଏ । ଯଥା :- ଘରସୋର, ବୁଟାବାନ୍ଧନି ଏବଂ ବଡ଼ ମାହାଲା । ଘରସୋର ପର୍ଯ୍ୟାୟରେ ପୁଅର ବାପା ମାହାଲା କାରିଆଙ୍କୁ ନିଜର ଅଭିପ୍ରାୟ ଜଣାଇଥାନ୍ତି ଓ ସେ କନ୍ୟାଘରକୁ ବିବାହ ପ୍ରସ୍ତାବ ନେଇ ଯାଇଥାଏ । ଦ୍ୱିତୀୟ ପର୍ଯ୍ୟାୟରେ ବୁଟା ବାନ୍ଧନି, ଯାହାକି, ନିର୍ବନ୍ଧର ପାଖାପାଖି । ଏହି ସମୟରେ ନିର୍ବନ୍ଧ ପୂର୍ବ କଥା ଛିଣ୍ଡାଛିଣ୍ଡି ହୋଇଥାଏ । ତୃତୀୟ ପର୍ଯ୍ୟାୟରେ ବଡ଼ ମାହାଲା । ଏହି ସମୟରେ ନିର୍ବନ୍ଧ ସଂଗେସଂଗେ ବିବାହ ତିଥି ମଧ୍ୟ ସ୍ଥିର କରାଯାଇଥାଏ । (ଦ୍ର. ଗରସୋର, ବୁଟା ବାନ୍ଧନି, ବଡ଼ ମାହାଲା ।)

୬୯. ମିଟ୍‌ହାନା ବିହା - *ଦେ.ବି. :* ଗଣ୍ଡ ସଂପ୍ରଦାୟର ବିଧବା ବିବାହ କୌଣସି ଆଦିବାସୀ ବିବାହିତା ସ୍ତ୍ରୀର ସ୍ୱାମୀ ମୃତ ହେଲେ ଉକ୍ତ ସ୍ତ୍ରୀକୁ ତା'ର ଦିଅର ବା ଶଶୁରର ସାନ ଭାଇ ବା ବଡ଼ଭାଇର ପୁଅ ନିଜର ସମ୍ମତି ତଥା ସ୍ତ୍ରୀର ରାଜିରେ ବିବାହ କରିବାକୁ 'ମିଟ୍‌ହାନା' (ମିଠାନା) ବା 'ରାଣ୍ଡିବିଭା' ବୋଲି କୁହାଯାଏ । ଏହା ପ୍ରାୟ ସମସ୍ତ ସଂପ୍ରଦାୟରେ ପ୍ରଚଳିତ ।

୭୦. ମିଲା କାଟରି - *ଦେ.ବି. :* ଏକ ପ୍ରକାରର ଲୌହ ନିର୍ମିତ ଅସ୍ତ୍ର । ଏହା କଟୁରୀଭଳି । ଡଗରିଆ କନ୍ଧମାନେ ବିଭିନ୍ନ ପ୍ରକାରର ପନିପରିବା, ପୋଢ଼ ମାଂସ, ବାଉଁଶ, ଚମଡ଼ା ଇତ୍ୟାଦି ଏହା ସାହଯ୍ୟରେ କାଟିବା ସଂଗେସଂଗେ ବାହ୍ୟ ଶତ୍ରୁ ଆକ୍ରମଣରୁ ନିଜକୁ ରକ୍ଷା କରିବାପାଇଁ ମଧ୍ୟ ଏହାକୁ ବ୍ୟବହାର କରିଥାନ୍ତି ।

୭୧. ମୀନାଝୁଲା - *ଦେ.ବି. :* ଏକ ବିଖ୍ୟାତ ଜଳପ୍ରପାତ ଓ ଶୈବପୀଠର ନାମ ।

ଏହା ନବଗଠିତ ରାୟଗଡ଼ା ଜିଲ୍ଲାର ଗୁଣପୁର ଉପଖଣ୍ଡସ୍ଥ ଗୁଡ଼ାରୀ ଏବଂ ଚନ୍ଦ୍ରପୁର ଅଞ୍ଚଳ ମଧ୍ୟରେ ଥିବା ଘଞ୍ଚ ଜଂଗଲ ପରିସରରେ ପ୍ରବାହିତ ପବିତ୍ର ବଂଶଧରା, ଚାଉଳ ଧୁଆ ଓ ଫଳଫଳିଆ ନାମକ ତିନୋଟି ନଦୀର ସଂଗମ ସ୍ଥଳରେ ସୃଷ୍ଟ ଏକ ପ୍ରପାତ ଅଟେ । ଏହି ପ୍ରପାତଟି ମୀନକେଶର କୁଣ୍ଡଭାବେ ପରିଚିତ ଓ ସେଇ କୁଣ୍ଡ ମଧ୍ୟରେ ଅବସ୍ଥାନ କରିଛନ୍ତି ମୀନକେଶର ମହାଦେବ । ଏହି ସ୍ଥାନଟିର ପ୍ରାକୃତିକ ଦୃଶ୍ୟରେ ଯେପରି ଆକର୍ଷଣୀୟ ସଂଭାର ଭରି ରହିଛି, ସେହିପରି ଏକ ପ୍ରସିଦ୍ଧ ଶୈବକ୍ଷେତ୍ର ଭାବରେ ମଧ୍ୟ ଏହାର ପ୍ରସିଦ୍ଧି ରହିଛି । ଶିବରାତ୍ରି ସମୟରେ ଏଠାରେ ଜାଗରମେଳା ହୋଇଥାଏ ।

୭୨. ମୁଁଆଟ୍ - *ଦେ.ବିଂ.* : ସାମନାପଟ, ଆଗପଟ୍ଟ, ଇଂ.- Front, Frontal.

ଯଥା : ମୁଁ ଆଟେ ନ ଯାଅ, ବଲଦ୍ ମାରି ଦେଇସି ।

୭୩. ମୁଆଲି - *ଦେ.ବି.* : (ଗାଦବା) କନ୍ୟାଘର ତରଫରୁ ବରପକ୍ଷକୁ ଦିଆ ଯାଉଥିବା ଉପହାର । ଏହା କନ୍ୟାଝୋଲାର ବିପରୀତ । କନ୍ୟାର ବାପା ମୁଆଲି ଆକାରରେ ବାଛୁରୀ, ଛେଳି, କୁକୁଡ଼ା ଓ ବାସନ କୁସନ ଆଦି ଦେଇଥାଏ ।

୭୪. ମୁଆଁସ - *ଦେ.ବି.କ୍ରି.* : ସ୍ନେହ କରିବା, ପ୍ରେମ କରିବା, ଭଲପାଇବା, ଇଂ.- To love

ଯଥା : (୧) ତୋମର ଲାଡ଼ ମୁଆଁସ (ତୁମର ଗେଲ ଓ ସ୍ନେହ)

(୨) ମୁଆଁସ ଲଗାଇ କେନେ ଉଠିଗାଲୁ ପାନି ମାରିଲାନି ଝାଇଁ

(ସ୍ନେହ ଲଗାଇ କେଉଁ ଆଡ଼େ ଚାଲିଗଲୁ, ଏବେ ଯେ ଭୀଷଣ ବରଷା କାଳ)

୭୫. ମୁଠାଦାର - *ଦେ.ବି.* : ମୁଠାର ମୁଖ୍ୟ ବା କେତୋଟି ଗ୍ରାମକୁ ନେଇ ଗଠିତ ଇଲାକାର ତତ୍ତ୍ୱାବଧାରକ । ଆଗେ କୋରାପୁଟ ପରି ମାଳାଞ୍ଚଳ ଗୁଡ଼ିକର ସୁପରିଚାଳନା ପାଇଁ ଜମିଦାରମାନେ ଦୁଇରୁ ବାର ବା ତହିଁରୁ ଅଧିକ ଗ୍ରାମକୁ ନେଇ ଗୋଟିଏ ଗୋଟିଏ ମୁଠା ଗଠନ କରୁଥିଲେ । ସ୍ଥାନୀୟ ଲୋକମାନଙ୍କ ମଧ୍ୟରେ ଯେଉଁମାନେ ଅଧିକ ଦକ୍ଷ ଓ ବିଜ୍ଞ ସେହିମାନଙ୍କୁ ଏହି ମୁଠାଗୁଡ଼ିକର ପରିଚାଳନା ଦାୟିତ୍ୱ ଦିଆଯାଉଥିଲା । ମୁଠା ହେଉଛି ମୁଂଜା ବା ଖଣ୍ଡ, ଯାହାକି କେତୋଟି ରେଭିନ୍ୟୁ

ମୌଜାକୁ ନେଇ ଗଠିତ ହୋଇଥିଲା । ମୋଗଲ ଅମଳରେ ତଥା ବ୍ରିଟିଶ ପୂର୍ବ ରାଜତନ୍ତ୍ରରେ ଏହି ପ୍ରଥା ପ୍ରଚଳିତ ଥିଲା । ମୁଠାର ରେଭିନ୍ୟୁ ସଂଗ୍ରାହକମାନେ ଥିଲେ ମୁଠାଦାର, ମୁସ୍ତାଦାର ବା ଇନାମ୍ ଦାର ।

୭୬. **ମୁଡ଼କ** - *ଦେ.ବି. :* ଅପଦେବତା ବା ଅନିଷ୍ଟକାରୀ ଦେବତା । ଡେଗା ମୁଡ଼କ, ପାଚାମୁଡ଼କ, କାଛା ମୁଡ଼କ : ଏମାନେ କୋୟା ଆଦିବାସୀଙ୍କ ଅନିଷ୍ଟକାରୀ ଅପଦେବତା ଭାବେ ପୂଜିତ । ବାଘ ଦ୍ୱାରା ନିହତ ବ୍ୟକ୍ତି ବାଘ ଡୁମା, ଗର୍ଭବତୀ ନାରୀର ପ୍ରେତାତ୍ମା ପ୍ରେତିନୀ ହୁଏ ବୋଲି କୋୟା ବିଶ୍ୱାସ କରେ । ଏହି ଅପଦେବତାଙ୍କ ଅନିଷ୍ଟକାରୀ ଶକ୍ତିକୁ ପ୍ରତିହତ କରିବାପାଇଁ ଓ୍ୱାଡ଼େ (କୋୟାମାନଙ୍କ ପୂଜାରୀ / ଗୁଣିଆ) ମନ୍ତ୍ରତନ୍ତ୍ର କରି ପୂଜାକରେ ଏବଂ ଅଣ୍ଡା, କୁକୁଡ଼ା ବଳିଦେଇ ସନ୍ତୁଷ୍ଟ କରିଥାଏ । ଇଂ- Evil god, Devil.

୭୭. **ମୁଣ୍ଡଧୁଆ** - *ଦେ.ବି. :* ଏକ ପୂଜା ଅନୁଷ୍ଠାନ । କୋରାପୁଟର ମାଳି ସଂପ୍ରଦାୟ ଆଶ୍ୱିନ ମାସର ଦଶହରା ବେଳେ ଦେବୀଙ୍କ ପାଖରେ କାକୁଡ଼ି, ମାଛ, ଆଦି ବଳି ଦିଅନ୍ତି । ଏହି ଦିନକୁ ଦଶରା 'ମୁଣ୍ଡଧୁଆ' ବୋଲି କହନ୍ତି ।

୭୮. **ମୁଣ୍ଡବନ୍ଧା** - *ଦେ.ବି. :* ମୁଣ୍ଡରେ ବାନ୍ଧିବା ଗାମୁଛା । ଆଦିବାସୀ ସଂପ୍ରଦାୟର ପୁରୁଷମାନେ ଛୋଟ ଗାମୁଛାକୁ ମୁଣ୍ଡରେ ବାନ୍ଧିଥାନ୍ତି । ରମଣୀମାନେ ମଧ ଛୋଟ ଗାମୁଛାକୁ ଦେହରେ ପକାଇଥାନ୍ତି । ଏହାକୁ 'ମୁଣ୍ଡବନ୍ଧା' କୁହାଯାଇଥାଏ । ଇଂ.- Napkin

୭୯. **ମୁଦୁଲିପଡ଼ା** - *ଦେ.ବି. :* ମୁଦୁଲି ପାହାଡ଼ ଉପରେ ଥିବା ଗ୍ରାମ ବିଶେଷ । କଥିତ ଅଛି : ବଣ୍ଡା ଗୋଷ୍ଠୀ ବା ପରିବାରର ମୁଖ୍ୟ ହେଉଛି ମୁଦୁଲି । ଏହି ମୁଦୁଲି ପ୍ରଥମେ ଯେଉଁ ପାହାଡ଼ରେ ତାର ଅନ୍ୟ ଭାଇମାନଙ୍କ ସହିତ କୁଡ଼ିଆ ତିଆରି କରି ବସ୍ତି ବସାଇ ରହିଥିଲା, ସେହି ଗ୍ରାମର ନାମ ହେଉଥିଲା ମୁଦୁଲିପଡ଼ା ।

୮୦. **ମୁନିଗୁଡ଼ା** - *ଦେ.ବି. :* ଗୋଟିଏ ଗ୍ରାମର ନାମ ବିଶେଷ । ମୁନିମାନଙ୍କ ଦ୍ୱାରା ସ୍ଥାପିତ ଗୁଡ଼ା ବା ମୁନି ଆଶ୍ରମ ସ୍ଥଳୀ । ଏହି ମୁନିଗୁଡ଼ା ହେଉଛି ରାୟଗଡ଼ା ଜିଲ୍ଲାର ନିୟମଗିରି ପାଦଦେଶରେ ଅବସ୍ଥିତ ଏକ ଛୋଟ ସହର । ଏଠାରେ ଅତୀତରେ ଜୈନ ମୁନିମାନେ ଆଶ୍ରମ ସ୍ଥାପନ କରି ରହୁଥିବାରୁ ଏହା ମୁନିମାନଙ୍କର ଗୁଡ଼ା ବା

ମୁନିଗୁଡ଼ା ନାମରେ ନାମିତ ହୋଇଛି । ଏହି ସହରର ପୂର୍ବ ଦିଗରେ ରହିଛି ଏକ ପ୍ରାଚୀନ ମନ୍ଦିର । ଯାହା ଜୈନ ଦେବୀ ମୂର୍ତ୍ତି ହୋଇଥିଲେ ହେଁ ସ୍ଥାନୀୟ କନ୍ଧ ଆଦିବାସୀମାନଙ୍କ ଦ୍ୱାରା ବନଦେବୀ ଭାବେ ପୂଜା ପାଉଛନ୍ତି ।

୮୧. ମୁନିଙ୍ଗାଖାଡ଼ି - *ଦେ.ବି. :* ସଜନା ଛୁଇଁ : ସଜନା ବା ବାରମାସୀ ଗଛର ଛୁଇଁ : ଇଂ- Drumstick.

ଆଦିବାସୀ ଲୋକମାନେ ମୁନିଙ୍ଗା ଗଛକୁ ଖୁବ୍ ଆଦର କରନ୍ତି । ପ୍ରତ୍ୟେକ ଆଦିବାସୀ ଲୋକଙ୍କ ବାଡ଼ରେ ଏକ ମୁନିଙ୍ଗା ବା ସଜନା ଗଛଟିଏ ଥାଏ । ଦୃଷ୍ଟିଶକ୍ତି ଦୁର୍ବଳ ହେଲେ ଏବଂ ଉଚ୍ଚ ରକ୍ତଚାପରେ ଏହା ଔଷଧିର କାମ ଦିଏ । ଥଣ୍ଡାର ଉପଶମ ପାଇଁ ମଧ ଏହାର ଛାଲି ବ୍ୟବହାର ହୁଏ । ମୁନିଙ୍ଗା ପତ୍ରକୁ ଶାଗଭାଜି କରି ଖାଇବା ସଂଗେସଂଗେ ମୁନିଙ୍ଗା ଖାଡ଼ିକୁ ଏମାନେ ହାଟ ବଜାରରେ ବିକି ଅର୍ଥ ସଂଗ୍ରହ କରିଥାନ୍ତି । ଏହି ମୁନିଙ୍ଗା ଫଳକୁ ମଧ ଏମାନେ ଶରଧା ବା ପ୍ରଣୟର ସୂଚନା ପାଇଁ ପ୍ରୟୋଗ କରି ଗୀତ ଗାଇଥାନ୍ତି -

ଯଥା : 'ସରୁ ସରୁ ମୁନିଙ୍ଗା ଖାଡ଼ି
ସନ୍ତୁଳାରେ ଖୁଦ୍ ଭାଜି,
ନଖକୁ ମାଉଁସ ଲାଗିବାର କାଏ
ଦରବ ଭେଟ କଲା ଆଜି ।'

ଏଠି ଜଣେ ଯୁବତୀ ଜଣେ ଯୁବକକୁ ଭେଟିଲା ପରେ ତାଙ୍କର ପୂର୍ବ ସଂପର୍କକୁ ମନେ ପକାଇ କହୁଛି ସନ୍ତୁଳାରେ ସରୁସରୁ ମୁନିଙ୍ଗା ଖାଡ଼ି ପାକାଇଲେ ଯେମିତି ସୁଆଦ ଲାଗେ ଆଜି ତୁମକୁ ଭେଟି ମୋତେ ସେମିତି ଲାଗୁଛି । ନଖ ସହ ମାଉଁସର ସଂପର୍କ ପରି ତୁମର ଆମର ସଂପର୍କ - ଅନେକ ବାଧା ବନ୍ଧନ ସତ୍ତ୍ୱେ ବି ଦଇବ ତୁମ ସହ ମୋତେ ଆଣି ଭେଟ କରାଇ ଦେଇଛି ।

୮୨. ମୁର୍କି - *ଦେ.ବି. :* ମଇଳା । ମୁଖ୍ୟତଃ ପାଣି କ୍ଷେତ୍ରରେ ବ୍ୟବହାର ହୁଏ । ଅପରିଷ୍କାର ବା ଦୂଷିତ ପାଣିକୁ ମୁର୍କିପାନି ବୋଲି କୁହାଯାଏ । ବ୍ୟବହାର : ମୁର୍କିପାନି ନ ଖାଇବାର । ମୁର୍କିର ବିଭିନ୍ନ ପ୍ରତିଶବ୍ଦ : ବୁଟ୍‌ବୁଟା, ପୋଅଡ଼ି, ବାନିଆ, ଦଦିଆ, କାଚରୀ ଇତ୍ୟାଦି ।

୮୩. **ମୂଷା** - *ଦେ.ବି. :* ମୂଷିକ : ଇଂ.- Rat, Mouse, Rodent.

ଅଣ ଆଦିବାସୀ ମାନଙ୍କ ଭିତରେ ସବୁ ପ୍ରକାର ମୂଷାକୁ 'ମୂଷା' କୁହଯାଉଥିବା ବେଳେ ଦେଶିଆ ଭାଷାରେ ବିଭିନ୍ନ ଆକୃତିର ମୂଷାକୁ ବିଭିନ୍ନ ନାମରେ ନାମିତ କରାଯାଏ । ଏପରିକି ନେଉଳ, ଗୁଣ୍ଡୁଚି, ବଜ୍ରକାପ୍ଟା ଓ ଝିଙ୍କମାନଙ୍କୁ ମଧ ଏମାନେ ମୂଷା ବୋଲି କହିଥାନ୍ତି । ଆଦିବାସୀ, ପରଜା, ଭତରା, କନ୍ଧ, ଗାଦବା ଆଦି ପ୍ରାୟସବୁ ଆଦିବାସୀ ସଂପ୍ରଦାୟରେ ମୂଷାମାଂସ ଏକ ଅତିପ୍ରିୟ ଖାଦ୍ୟ । ଯେଉଁ ମୂଷା ମାନଙ୍କ ମାଂସ ସେମାନେ ଖାଆନ୍ତି, ସେଗୁଡ଼ିକ ହେଲା : ଫୁଟ୍‌କି ବା ଚୁଟିଆ ମୂଷା, ଗୁସିମୂଷା, କୁନ୍ଦମୂଷା, ଟିଲୁମୂଷା, ବାସିନିମୂଷା, ଗିଡ଼ରାମୂଷା (ଲୋମଶ ଓ ମୋଟା ପାହାଡ଼ି ମୂଷା), ଗଣ୍ଡେଇ ଭୂଷା, ଚୁଟୁରା ମୂଷା, ଗଡ଼େଲା ମୂଷା, ଗନ୍ଦରି ମୂଷା, ସାମର ନେଉରାମୂଷା, ବିଲିମଲୁଆ ମୂଷା, ଗାତୁଆ ମୂଷା, କଡ଼ା ମୂଷା, ଚଉଁରିଆ ମୂଷା, କାଣ୍ଡିଆ ମୂଷା, ବୁକୁଦୁଡୁମା, ସାଇ ମୂଷା, କାନାଟ୍ ମୂଷା ଇତ୍ୟାଦି । ମୂଷାକୁ ସାଧାରଣତଃ ଆଦିବାସୀମାନେ ଧରିବାପାଇଁ ମୂଷା ଗାତରେ ନିଆଁ ଲଗାଇଦେଇଥାନ୍ତି । ସ୍ଥଳବିଶେଷରେ ପାଣି ଭର୍ତ୍ତି କରନ୍ତି । ଏକପ୍ରକାର ଜାଲ ବ୍ୟବହାର କରନ୍ତି । ଏତଦ୍‌ବ୍ୟତୀତ ଆଘାତ କରିବାପାଇଁ ବାଡ଼ି, ଟାଙ୍ଗିଆ ଆଦି ଅସ୍ତ୍ରଶସ୍ତ୍ର ବ୍ୟବହାର କରିଥାନ୍ତି । ଏମାନେ ବହୁ ସଂଖ୍ୟାରେ ମୂଷା ଧରିଲେ ସେଗୁଡ଼ିକୁ ମାଟି ହାଣ୍ଡିରେ ପାଳ ଦେଇ ବଞ୍ଚାଇ ରଖନ୍ତି ଓ ସେଥିରୁ କିଛିକିଛି ନେଇ ଦୈନିକ ଖାଦ୍ୟ ରୂପେ ବ୍ୟବହାର କରିଥାନ୍ତି । ଏମାନେ ମଲାମୂଷାକୁ ଶୁଖାଇ ସଂରକ୍ଷଣ ମଧ କରିଥାନ୍ତି । ମୂଷା ମାଂସକୁ ପ୍ରଥମେ ହଳଦି ପାଣିରେ ସିଝାଇ ମରିଚ ବଟା, ରସୁଣବଟା ଓ ଲୁଣ ଦେଇ ତରକାରୀ କରିଥାନ୍ତି । ଆଉ ପତ୍ରପୋଡ଼ା କରି ଖାଇଥାନ୍ତି । ମୂଷାକୁ ନେଇ ଅସଂଖ୍ୟ ଲୋକଗୀତ ଓ କାହାଣୀ ଆଦିବାସୀ ସଂପ୍ରଦାୟରେ ପ୍ରଚଳିତ । ଉଦାହରଣ :- "ମୂଷା କେ ମାରରେ ନନା ମୂଷାକେ ମାର, ମୂଷାକେ ନାଇଁ ମାରଲେ ନସାଇ ଦେଇସି ଘର ।"

୮୪. **ମୁରାନ୍** - *ଦେ.ବି. :* କୋରାପୁଟ ଓ ନବରଂଗପୁର ଜିଲ୍ଲାରେ ପ୍ରବାହିତ ଏକ ମୁଖ୍ୟ ନଦୀର ନାମ । କୋରାପୁଟ ଜିଲ୍ଲା ଦଶମନ୍ତପୁର ବ୍ଲକର ଚନ୍ଦନକାଟି ଓ ଶୁକ୍ରିବୁଟି ଗାଁ ପାଖରେ ଥିବା ପାହାଡ଼ଖୋଲରୁ ଦୁଇଟି ଝରଣା ବୋହି ଆସିଛି । ଗୋଟିକର ନାମ ଚେବେରିନାଳ ଓ ଅନ୍ୟଟିର ନାମ ଫୁଲବେଡ଼ା । ବହୁପଥ ପ୍ରବାହିତ ହେଲାପରେ ବନାସିଲି ନିକଟରେ ମିଳିତ ହୋଇ ସୃଷ୍ଟି ହୋଇଛି ମୁରାନ୍ ନଦୀ । ଏହି ମୁରାନ୍ ନଦୀ

ମିଶିଛି ଇନ୍ଦ୍ରାବତୀରେ, କିନ୍ତୁ କାଠରଗଡ଼ାଠାରେ ମୁରାନ୍‌ର ଜଳଧାରାକୁ ଅବରୋଧ କରି ଇନ୍ଦ୍ରାବତୀ ନଦୀ ବନ୍ଧ ଯୋଜନା ଦ୍ୱାରା ଏକ କଂକ୍ରିଟ୍ ବନ୍ଧ ନିର୍ମାଣ କରାଯାଇଛି ।

୮୫. **ମୁହାଁସ** - *ଦେ.ବି.କ୍ରି :* ସ୍ନେହ, ଶ୍ରଦ୍ଧା, ଅନୁରାଗ, ଆସକ୍ତି ଏହି ଅର୍ଥରେ ବ୍ୟବହୃତ । ଇଂ- To love. ପ୍ରତିଶବ୍ଦ : ଲାଡ଼୍, ଲଡର । (ଦ୍ର. ମୁଆଁସ)

(୧) "କେତେ ଆକୁଳରେ ଡାକୁଛି ମୁହିଁ
ଦୟା କରିବ କି ନାଇଁ
କଅଁଳ କାକୁଡ଼ି ଦୁଧର ସର
ମୁହାଁସ ଭାଂଗ ମୋହର ।" (ଚଇତ ପରବ ଗୀତ)

(୨) "ମୁହାଁସ ଲଗାଇ ଯାଉଛୁ ଭାରି
ମରିଯିବି ଝୁରିଝୁରି...... ।"

୮୬. **ମୁଁ** - *ଦେ.ବି. :* ମୁହଁ, ଇଂ.- Face

ମୁଁ ଚିନାଚିନି ଅନ୍ଧାର : ସନ୍ଧ୍ୟା ସମୟ ଇଂ- Dask hour, twxlight.

ଯଥା : ମୁଁ ଚିନାଚିନି ଅନ୍ଧାର ବେଳେ କୌନ୍ତେରୀ ଗତିଆ ଆଇଲେଇନି ।

ଯଥା : ତୋର ମୁଁକେ ଦେଖଲେ, ମୋକେ ବେଶୀ ଶାରଦା ।

ଗୀତରେ ବ୍ୟବହାର : ଆକି ମାରାମାରି ଟଇଁକା ଟଇଁକି

"ଦାନା ପୁଟା ଡେଙ୍କି ଶାଲେ
ନୁନିର ମୁଁକେ ଦେକ୍‌ଲି ମୁଇଁ
ବଜାର ଯିବାର୍ ଦେଲେ ।"

୮୭. **ମୁଁ, ମୌ, ମୌଚିକନ୍ ବା ମୌତେଲ୍** - *ଦେ.ବି. :* ମହୁ-ମଧୁ, ଇଂ.- Honey.

ମୌପଲ୍ଲୀ : ମହୁଫେଣା, ଇଂ.- Hive : ମୌମଚୀ-ମହୁମାଛି, ଇଂ.- Bee

ମହୁ ହେଉଛି ଆଦିବାସୀର ଏକ ଅତି ପୁରାତନ ଏବଂ ପ୍ରିୟ ଖାଦ୍ୟ । ଜଂଗଲରେ ଯେତେଯେତେ ମହୁ ସଂଗୃହୀତ ହୁଏ, ସଂଗ୍ରହ କଲାମାତ୍ରେ ସଂଗ୍ରହକାରୀମାନେ ତାର ସିଂହଭାଗ ଖାଇ ଦେଇଥାଆନ୍ତି । ବାଧରେ ପଡ଼ିଥିଲେ କିମ୍ବା ଖୁବ୍ ଅଧିକ ମହୁ ପାଇଲେ ତାହା ବିକିବାକୁ ନିଅନ୍ତି । ପ୍ରବାଦ ଅଛି ଯେ, ମହୁ

ବିଛେଇବା ବେଳେ ବାଘ ଯଦି ହାବୁଡ଼ି ଯାଏ, ସେ ମଣିଷକୁ ନ ନେଇ ମହୁଫେଣା ଝାମ୍ପି ନେଇଯାଏ । ମହୁ କଟାଳିମାନେ ବଡ଼ ମହୁ କାଟିବାବେଳେ, ପ୍ରଥମେ ଗୋଟିଏ ମହୁପଲ୍ଲୀ ବାଘ ଉଦ୍ଦେଶ୍ୟରେ ଅର୍ପଣ କରିଥାନ୍ତି । ଆଉ ମହୁ ବାହାର କରିସାରିବା ପରେ ଏହି ମହୁଫେଣାକୁ ଏଥିରେ ଥିବା ମହୁ କିଡ଼ା ସହ ମଧ ଆଦିବାସୀମାନେ ସିଝାଇ ଖାଇଥାଆନ୍ତି । କିନ୍ତୁ ଏହାର ଔଷଧୀୟ ଗୁଣ ଜାଣିଥିବା ସତ୍ତ୍ୱେ ଖୁବ୍ କମ୍ ଆଦିବାସୀ ଏହା ସଞ୍ଚୟ କରି ଘରେ ରଖିଥାଆନ୍ତି । ଦିଶାରୀ ତଥା କବିରାଜମାନେ ଅଧିକାଂଶ ଔଷଧ ସହ ମହୁ ମିଶାଇ ସେବନ ପାଇଁ ପରାମର୍ଶ ଦେଇଥାନ୍ତି । ଏହା ପୋଡ଼ାଘା' ଥଣ୍ଡା, ସର୍ଦ୍ଦି ଇତ୍ୟାଦି ବିଭିନ୍ନ ରୋଗ ପାଇଁ ପ୍ରୟୋଗ ହୁଏ ।

**ମହୁର ପ୍ରକାର ଭେଦ :**

**(୧) ବିଲ୍ ମୌ :** ବିଲ୍ ବା ଗଛ କୋରଡ଼ରେ ଥିବା ମହୁ ଏବଂ ହିଡ଼ ଗାତରେ ଥିବା ମହୁ ।

**(୨) ଫୁଲ ମୌ :** ଗଛ କରୋଡ଼ରେ ତଥା ଘରେ ଚାଷ ହେଉଥିବା ମହୁ । ବିଲ୍ ମୌ ତଥା ଫୁଲ ମୌ ପଲ୍ଲୀର ମହୁମାଛିମାନଙ୍କୁ ନେଇ ମହୁ ବାକ୍ସରେ ରଖି ମହୁଚାଷ କରାଯାଏ ।

**(୩) ବଡ଼ ମୌ :** ବାଘୁଆ ମହୁମାଛି ଦ୍ୱାରା ପ୍ରସ୍ତୁତ ମହୁ । ଏହି ମହୁଫେଣା ଦେବାର ସ୍ଥାନ ହେଉଛି ପଥର କୋରଡ଼, ଉଚ୍ଚ ପାହାଡ଼ କାନ୍ଥି, ବଡ଼ ଗଛର ଉଚ୍ଚରେ ଥିବା ଗଣ୍ଡି ବା ଡାଳ । ଏହାକୁ ନିଆଁ ଉପଯୋଗ କରି ସଂଗ୍ରହ କରାଯାଏ । କଳାହାଣ୍ଡି ଓ ଫୁଲବାଣୀ ଜିଲ୍ଲାର କନ୍ଧ ସଂପ୍ରଦାୟ ମଧ୍ୟରେ ତୀର ବିନ୍ଧି ଶର ପଛରେ ବନ୍ଧା ସୂତା ଉପର ଦେଇ ବଡ଼ ମୌକୁ ସଂଗ୍ରହ କରିବାର ପରମ୍ପରା ରହିଛି । ତେବେ ଏହି ପରମ୍ପରା ଅତ୍ୟନ୍ତ ସୀମାବଦ୍ଧ । ଥରେ ତୀର ବିନ୍ଧିଦେଲାପରେ ସେଥିରେ ବନ୍ଧା ସୂତା ଉପର ଦେଇ ବହି ଆସୁଥିବା ଟୋପାଟୋପା ମହୁକୁ ନାଳି ସାହାଯ୍ୟରେ ସଂଗ୍ରହ କରାଯାଏ । ଅନ୍ୟତ୍ର ଦେହରେ ମନ୍ତ୍ରିତ ତେଲ ବୋଳି ହୋଇ ଜଇ ମୁଟ୍‌ଲା ସାହାଯ୍ୟରେ ମହୁମାଛିମାନଙ୍କୁ ତଡ଼ି ଏହା କଟାଯାଏ ।

**(୪) କାଠି ମୌ :** ଛୋଟ ଛୋଟ ମାଛି ଆକାରରେ ମହୁମାଛି ଦ୍ୱାରା ପ୍ରସ୍ତୁତ ଛୋଟିଆ ଡାଳରେ ନିର୍ମିତ ମହୁଫେଣାର ମହୁ । ସେ ପୁଣି ଦୁଇ ପ୍ରକାରର ।

(କ) ଟୁରୀକାଠି ମୌ : ଏକ୍‌ବାର ଛୋଟମାଛିର ମହୁ ।

(ଖ) ବିଞ୍ଜଣା ମୌ : ସାମାନ୍ୟ ବଡ଼ ଆକାରର ମାଛିର ମହୁ ।

(୫) ସମର୍‌ଜିଭ୍ ମୌ : ଗଛର କୋରଡ଼ରେ ତଥା କାଠିରେ ସରୁ ଲମ୍ବା ମହୁମାଛି ଦ୍ୱାରା ପ୍ରସ୍ତୁତ ମହୁ ।

(୬) ନକ୍‌ଟି ମୌ : ଆହୁରି ସରୁ ମାଛି ଦ୍ୱାରା ପ୍ରସ୍ତୁତ ଗଛ କୋରଡ଼ରେ ମହୁ ।

(୭) କାଣି ନକଟି ମୌ : ନାକଟି ମହୁମାଛି ଠାରୁ ଆହୁରି ସରୁ ଚାଣ୍ଡିଭଳି ମହୁମାଛି ଦ୍ୱାରା ପ୍ରସ୍ତୁତ ଡାଳମହୁ । ଏହି ମହୁର ବାସ୍ନା ସବୁଠୁ ସୁନ୍ଦର । ଏହା ପ୍ରାୟ ଲୋପ ପାଇ ଆସିଲାଣି ।

(୮) ଟେକ୍‌କର ମୌ : ଟେକ୍‌କରର ଅର୍ଥ ବିରୁଡ଼ି । ଏହି ବିରୁଡ଼ି ଦ୍ୱାରା ପ୍ରସ୍ତୁତ ମୌକୁ 'ଟେକ୍‌କର ମୌ' କହନ୍ତି । ଏମାନଙ୍କ ବସାରୁ କମ୍ ମହୁ ମିଳେ । ଏମାନଙ୍କ ବସାକୁ ମୁଖ୍ୟତଃ ସିଝାଇ ଖିଆଯାଏ । ଏହା ଭିତରେ ଟେକ୍‌କର କିଡ଼ା ବା ଟେକ୍‌କର ଛୁଆ ଥାଆନ୍ତି । ଏମାନଙ୍କ ପ୍ରକାର ଭେଦ ନିମ୍ନମତେ :

(କ) ବଡ଼ ଟେକ୍‌କର ବା ବାଗ ଟେକ୍‌ର (ଖ) କାଙ୍ଗୁ ଟେକ୍‌କର । ଏ ଦୁଇ ପ୍ରକାର ଟେକ୍‌କର ବା ବିରୁଡ଼ି ମହୁମାଛି ଖାଇଥାଆନ୍ତି । ଅର୍ଥାତ୍ ମହୁମାଛି ଏମାନଙ୍କର ଖାଦ୍ୟ ।

(ଖ) ବଡ଼ଙ୍ଗା ଟେକ୍‌କର - ଏମାନେ ବେଡ଼ାରେ ବସା କରନ୍ତି ।

(ଗ) ଗଇଜିଭ୍ ଟେକ୍‌କର : ଏମାନେ ଦେଖିବାକୁ ଗୋଧିର ଜିଭ ଭଳି ସରୁ ।

(ଘ) ତୁମେଲି - ଏମାନେ ସାନଟେକ୍‌କର ।

(ଙ) କାଠ ତୁମେଲି - ସାନ ଓ ସରୁ ଟେକ୍‌କର । ଯେଉଁ ଜାଗାରେ ମହୁମାଛିମାନେ ଟେକ୍‌କରକୁ ମାରି ନିଜ ଫେଣାକୁ ନେଇ ଯାଉଥାଆନ୍ତି, ସେଠାରେ ବହୁ ପରିମାଣରେ ମହୁ ନିଶ୍ଚିତ ଭାବେ ରହିଥାଏ ।

୮୮. ମେକା - *ଦେ.ବି.* : ଏକ ଗାଁର ନାମ ବିଶେଷ । ମାଥିଲିର ପଶ୍ଚିମ ଦିଗକୁ ଛତିଶଗଡ଼ ସୀମାକୁ ଛୁଇଁ ଯେଉଁସବୁ ଗ୍ରାମ ପୁଞ୍ଜ ରହିଛି, ସେଥିରୁ ମୁଖ୍ୟ ହେଉଛି ଏହି ମେକା ଗାଁ । ମେକ୍‌ନା ଶବ୍ଦରୁ ଏହି ମେକା ଶବ୍ଦର ଉତ୍ପତ୍ତି । ମେକ୍‌ନାର ଅର୍ଥ ପୁଜିବା ବା ହାଣିବା । ମେକା ପାଖରେ ଅଛି ମାଉଳି ପର୍ବତ । ଏହି ପର୍ବତରେ ରହନ୍ତି

ଭଣ୍ଡାରକାରିଣୀ ଠାକୁରାଣୀ । ଭୂମେୟା ଜାତିର ଲୋକମାନେ ପ୍ରତିବର୍ଷ ଏହି ଠାକୁରାଣୀଙ୍କ ପାଖରେ ଗୋଟିଏ ବଡ଼ ପୂଜା କରୁଥିଲେ ଏବଂ କୌଣସି ନା କୌଣସି ଲୋକଙ୍କୁ ଧରି ଆଣି ବଳି ଚଢ଼ାଉଥିଲେ । ସେଇଥିପାଇଁ ଏଇ ଗାଁର ନାମ ହେଉଛି ମେକା । ନରବଳୀ ପାଇଁ ଖ୍ୟାତ ଏହି ଗାଁ ପ୍ରତି ଏବେ ବି ବାହାର ଲୋକଙ୍କର ଭୟ ଓ ଆଶଙ୍କା ରହିଥାଏ ।

୮୯. **ମେରିଆ ବା କେଡୁପର୍ବ** - *ଦେ.ବି. :* କନ୍ଧମାନଙ୍କର ପର୍ବ ବିଶେଷ । ମେରିଆ ବା କେଡୁପର୍ବ ଏକ କୃଷିଭିତ୍ତିକ ପର୍ବ । ଜମିର ଉର୍ବରତା ଓ ପ୍ରଚୁର ଫସଲ ନିମନ୍ତେ ମାଟି ଦେବତା ବା ଧରଣୀପେନୁଙ୍କୁ ସନ୍ତୋଷ ବିଧାନ ନିମନ୍ତେ ଏ ପର୍ବ ପାଳନ କରାଯାଏ । ପୂର୍ବେ ଏହି ପର୍ବରେ ମେରିଆ ବା ନରବଳି ଦିଆଯାଉଥିଲା । ବର୍ତ୍ତମାନ ପୋଢ଼ବଳି ଦିଆଯାଉଛି । ସାଧାରଣତଃ ମେରିଆ ପର୍ବଟି ୨/୩ଟି ବର୍ଷକୁ ଥରେ ପାଳିତ ହୋଇଥାଏ । ସାମାଜିକ ଅବସ୍ଥା ଓ ଆର୍ଥିକ ସ୍ୱଚ୍ଛଳତାକୁ ଦୃଷ୍ଟିରେ ରଖି ୫/୭ବର୍ଷରେ ଥରେ ମଧ ପାଳିତ ହେବାର ଜଣାଯାଏ । କନ୍ଧ ଗ୍ରାମର ମୁଖ୍ୟ ବିଶୁମାଝୀ, ଜାନି, ବେଜୁଣୀ, ବାରିକ ପ୍ରମୁଖ ଏହି ପର୍ବ ପାଳନର ଦାୟିତ୍ୱ ବହନ କରିଥାନ୍ତି ।

୯୦. **ମେରିଆ** - *ଦେ.ବି. :* ନରବଳି : ବଳି ପାଇଁ ଉଦ୍ଦିଷ୍ଟ ନିଖୁଣ ମଣିଷ : ଇଂ.- Human Sacrifice ଅତୀତରେ ଅବିଭକ୍ତ କୋରାପୁଟ ଜିଲ୍ଲାର କନ୍ଧ ଓ କୋୟା ସଂପ୍ରଦାୟର ଲୋକମାନେ ନିଜ ବସ୍ତି ତଥା ଗୋଷ୍ଠୀର ମଂଗଳ କାମନା କରି ନିଜକୁ ତଥା ନିଜ ଗ୍ରାମର ଲୋକମାନଙ୍କୁ ରୋଗ, ବାଘ ଆଦିଙ୍କ କବଳରୁ ରକ୍ଷା କରିବା ସଂଗେସଂଗେ ଭଲ ଫସଲ ପାଇବା ପାଇଁ ମାଟି ଦେବତାର ପୂଜା ବା ମୃତ୍ତିକା ପୂଜାର ପ୍ରଚଳନ ଆରମ୍ଭ କରିଥିଲେ । ସେମାନଙ୍କ ବିଶ୍ୱାସ ଥିଲା ମାଟିକୁ ମଣିଷ ରକ୍ତ ଦେଇ ପୂଜା କଲେ ମାଟି ମାଆ ସନ୍ତୁଷ୍ଟ ହୋଇ ଭଲ ଫସଲଦିଏ । ତେଣୁ ସେମାନେ ବହୁ ଦୂରଦୂରାନ୍ତକୁ ଯାଇ ନିଜ ଗ୍ରାମ ବା କ୍ଷେତ୍ରରେ ବଳିଦେବା ପାଇଁ ମେରିଆ ବା ବଳିଯୋଗ୍ୟ ନିଖୁଣ ମଣିଷମାନଙ୍କୁ ଧରି ଆଣୁଥିଲେ । ଏମାନଙ୍କୁ କିଛିଦିନ ଖାଦ୍ୟପେୟ ଦେଇ ବନ୍ଦୀ ଅବସ୍ଥାରେ ରଖିବା ପରେ ନିର୍ଦ୍ଧାରିତ ଦିନରେ ସେମାନେ ଲୋକଟିକୁ ହଳଦୀ ଓ ତେଲ ଲଗାଇ ଗାଧୋଇ ଦେଉଥିଲେ । ପରେ ଲୋକଟିକୁ ନୂଆଲୁଗା ପିନ୍ଧାଇ, ବେକରେ ବଣୁଆ ଫୁଲର ହାର ପିନ୍ଧାଇ ଅତ୍ୟଧିକ ମଦ୍ୟପାନ କରାଇ ସେହି ନିଶାଗ୍ରସ୍ତ ଅବସ୍ଥାରେ ଗୋଡ଼ରେ ଲୁହାର ଶିକୁଳି ଦେଇ ପୂଜାପୀଠର ଚାରିପଟେ ନୃତ୍ୟ

ଓ ବାଦ୍ୟର ତାଳେତାଳେ ପରିକ୍ରମା କରାଉଥିଲେ । ପରିକ୍ରମା ସମୟରେ ତୀକ୍ଷ୍ଣ ଛୁରୀ,ଅବା ଧାରୁଆ ଟାଙ୍ଗିଆ ଦ୍ୱାରା ବଳି ପାଇଁ ଉଦ୍ଦିଷ୍ଟ ଲୋକଟିର ଶରୀରକୁ କ୍ଷତବିକ୍ଷତ କରାଯାଉଥିଲା । ଶେଷରେ ରକ୍ତରଂଜିତ ସେଇ ମେରିଆ ବା ବଳୀ ପାଇଁ ଉଦ୍ଦିଷ୍ଟ ଲୋକଙ୍କୁ ପୂଜା ପାଠରେ ମାଟି ଦେବତାଙ୍କ ଉଦ୍ଦେଶ୍ୟରେ ବଳୀ ଦିଆଯାଇ ରକ୍ତକୁ ଭୂମିରେ ଦିଆଯିବାପରେ ମେରିଆ ମାଂସ ସଂଗ୍ରହ କରି ଗ୍ରାମବାସୀମାନେ ନେଇଯାଉଥିଲେ । ମେରିଆ ଶରୀରର ଅବଶିଷ୍ଟାଂଶକୁ ମାଟିରେ ପୋତି ଦିଆଯାଉଥିଲା । ୧୮୫୫ ଖ୍ରୀ.ରେ ମେରିଆ ଏଜେଣ୍ଟ କ୍ୟାପ୍‌ଟେନ୍ ମ୍ୟାକ୍‌ନେଲଙ୍କ ଦ୍ୱାରା ମାଲକାନଗିରି ଅଞ୍ଚଳରୁ କିଛି ମେରିଆ ଉଦ୍ଧାର କରାଗଲା ପରେ ମେରିଆ ଆଇନ୍ ଦ୍ୱାରା ଏହି ନିର୍ମମ ନରବଳୀ ପ୍ରଥାକୁ ନିଷିଦ୍ଧ କରାଯାଇଥିଲା ।

୯୧. ମେରିଆ ଦେବତା – *ଦେ.ବି. :* ଜଣେ ଦେବତା ବିଶେଷ ।

ବୈପାରୀଗୁଡ଼ା ବ୍ଲକ୍ କେନ୍ଦୁପଡ଼ାର ବୀରଖମ୍ବ ପାହାଡ଼ ନିକଟରେ ଆଉ ଏକ ପାହାଡ଼ ଅଛି । ଏଠି ମେରିଆ ଦେବତା ଅଛି ବୋଲି ଭୂମିଆ ମାନଙ୍କ ବିଶ୍ୱାସ । ବୀରଖମ୍ବ ପାହାଡ଼ର ପୂର୍ବଦିଗକୁ ଏ ପର୍ବତ ଅଛି । ପୂର୍ବରୁ ଏଠି ନରବଳି ତିନିବର୍ଷକୁ ଥରେ ଦିଆଯାଉଥିଲା । ସେଥିପାଇଁ ଜଣେ ଲୋକ କୁଆଡୁ ବାୟା ଭଳିଆ ହୋଇ ଏହି ପାହାଡ଼କୁ ଆସୁଥିଲା । ବର୍ତ୍ତମାନ ଗୁମ୍ପା ଗାଁର ଲୋକମାନେ ୩ବର୍ଷକୁ ଥରେ ଏକ ଛେଳିକୁ ତିନିଧାରିଆ କରି ଖୁରାଇ ଦେଇ ପାହାଡ଼ ଗୁମ୍ପା ଭିତରେ ବଳି ହିସାବରେ ପୁରାଇ ଦିଅନ୍ତି । ବଧ କରନ୍ତି ନାହିଁ ।

୯୨. ମେଷ ଗନ୍ଧି – *ଦେ.ବି. :* ଗୋଟିଏ ଗ୍ରାମର ନାମ ବିଶେଷ । କୋୟା ଭାଷାରେ ମେଷ୍ ଶବ୍ଦର ଅର୍ଥ ହେଉଛି ଲକ୍‌ଟି ମହୁମାଛି । ଗନ୍ଧି ଶବ୍ଦର ଅର୍ଥ ହେଉଛି ପାହାଡ଼ ବା ନଦୀ ଉପତ୍ୟକା । ତୁଳସୀ ପର୍ବତର ଛତିଶଗଡ଼ ସୀମାକୁ ଲାଗି ଏଠାରେ ଥିବା ଡଂଗରର ନାଁ 'ଲକ୍‌ଟି ଡଙ୍ଗର' । ଏହି ଡଙ୍ଗରରେ ବର୍ତ୍ତମାନ ମଧ୍ୟ ବହୁ ପରିମାଣରେ ଲକ୍‌ଟି ମହୁଫେଣା ଦେଖିବାକୁ ମିଳେ । ଏହାର ଉପତ୍ୟକାରେ ଅବସ୍ଥିତ କୋୟାଲୋକମାନଙ୍କର ଏହି ଗାଁଟି ନିଜର ନାମକୁ ପୁରାପୁରି ସାର୍ଥକ କରିଛି ।

□□□



୧. **ରଇତ** - *ଦେ.ବି. :* ପ୍ରଜା, ଶାସିତ ବ୍ୟକ୍ତି । ସାଧାରଣ ଲୋକ । ଇଂ- The Subject. Peasant.

ଗୀତରେ କୁହାଯାଇଛି : 'ସୋଲିତ ସୋଲି ଚାଉର ମଗା ସୋଲି

ଗାନ୍ଧୀ ବାବାତୋ ପରତାପନେ ରଇତ ରାଜା ହୋଲିରେ ।' (ହାଲ୍‌ବୀ)

ଅର୍ଥାତ୍, ଚାଉଳ ମପା ସୋଲା ରସଦ୍ ରଇତ ଘୋଷଣା କରୁଛି ଯେ ଗାନ୍ଧୀ ମହାତ୍ମାଙ୍କ ପ୍ରଭାବରେ ଚଇତ ମାନଙ୍କ ହାତକୁ ଶାସନ କ୍ଷମତା ଆସିବ ।

୨. **ରସନା / ରାସନା** - *ଦେ.ବି. :* ଏକ ପ୍ରକାର ଔଷଧ ଗୁଣ ସଂପନ୍ନ ବୁଦା । ଏହାର ତୀବ୍ର ବାସନା ଆଖିରୁ ଲୁହ ଝରାଇ ଦିଏ । ଲୋକ ଗୀତରେ ଏହାର ବର୍ଣ୍ଣନା ମିଳେ । ଯଥା :

'ଦୁଲିର ମାଣ୍ଡନେ ରସନା ଗାଛ

ଦୁଲି କାନ୍ଦେ ରସ୍‌ରସ୍ ।' ଅର୍ଥାତ୍, ବୋହୂ ହେବାକୁ ଯାଉଥିବା ଝିଅର ବିବାହ ବେଦୀ ନିକଟରେ ରସନା ଗଛ ଅଛି । ତାର ତୀବ୍ର ବାସନାରେ ଝିଅ ବାପ ଘର ଛାଡ଼ି ଶାଶୁଘର ଯିବ ବୋଲି ଝରଝର କାନ୍ଦୁଅଛି ।

୩. **ରସ୍ ରସ୍** - *ଦେ.କ୍ରି. ବି. :* ଝର ଝର କାନ୍ଦିବା । ଇଂ- To wail.

ଯଥା : ଆୟା ରସ୍ ରସ୍ କାନ୍ଦିସ୍ (ମା ଝର ଝର ଲୁହ ଝରାଇ କାନ୍ଦେ)

୪. **ରସ୍ ରସିଆ ଗୀତ** - *ଦେ.ବି. :* ଥଟ୍ଟା ପରିହାସ ଗୀତ : ଇଂ- Love songs, Homour songs. କନ୍ୟାକୁ ନେଇ ଯାଉଥିବା ବରପକ୍ଷର ଯୁବକମାନଙ୍କ ପକ୍ଷର ଯୁବତୀମାନଙ୍କ ଉଦ୍ଦେଶ୍ୟରେ ଗାନ କରାଯାଉଥିବା ଗୀତ । ଚଇତି ପରବ ସମୟରେ ମଧ୍ୟ ଗାନ କରାହେଉଥିବା ଶୃଙ୍ଗାର ରସାତ୍ମକ ଗୀତକୁ 'ରସ୍‌ରସିଆ ଗୀତ' କୁହାଯାଏ ।

ଉଦାହରଣ : "ନରଙ୍ଗପୁରର ରଙ୍ଗ ତେଲାନି,

ଜୟପୁରର ଗିନା

ଧଡ଼ରା କାରିଆ ଆସଲ ଆଚେ

ମୁଦି ଗୋଟେ ଦିଆ ଚିନା ।"

୫. ରାଇବେଡ଼ିଆ / ବାଡ଼ିପେଦା - *ଦେ.ବି. :* ସମର୍ଥ ସୂଚକ ଶବ୍ଦ ହେଉଛି ସକ, ପାଞ୍ଚେ, ମଧ୍ୟସ୍ଥ ଇତ୍ୟାଦି । ରାଇବେଡ଼ିଆର ଭୂମିକା ଓ ମଧ୍ୟସ୍ଥର ଭୂମିକା ମଧ୍ୟରେ କିଛି ପାର୍ଥକ୍ୟ ଦେଖାଯାଏ । ମଧ୍ୟସ୍ଥର ଭୂମିକା ଠାରୁ ରାଇବେଡ଼ିଆର ଭୂମିକା ଗାଦବା ଆଦିବାସୀ ଗୋଷ୍ଠୀରେ ଟିକିଏ ଅଧିକ । ଏମାନଙ୍କର ପ୍ରାୟତଃ ପ୍ରତ୍ୟେକ କର୍ମରେ ରାଇବେଡ଼ିଆ ମାନଙ୍କର ଭୂମିକା ଅପରିହାର୍ଯ୍ୟ । ଭୋଇ ଗାଦବା / ବୋହି ଗାଦବାମାନେ ଏମାନଙ୍କୁ 'ମାହାଲି କରିଆ' କହନ୍ତି । (ଦ୍ର. ମାହାଲାକାରିଆ) ଇଂ- Middle-man.

୬. ରାଜାରାନୀ କାଆନୀ - *ଦେ.ବି. :* ରାଜାରାଣୀଙ୍କ ସଂର୍ପକୀୟ ଆଖ୍ୟାନଧର୍ମୀ ଗୀତ । ଇଂ- Falk epic. ଏହା ଆଦିବାସୀ ଲୋକକାବ୍ୟ ନାମରେ ଅଭିହିତ । ଗୀତ କୁଡ଼ିଆ ଓ ଗୀତ କୁଡ଼ିଆନୀମାନେ ବାଲି, ବେଣ୍ଟ, ଦଶାହ, ସନ୍ତାନଜନ୍ମ ପ୍ରଭୃତି ଉତ୍ସବରେ ରାତିସାରା ବିଭିନ୍ନ କାଳ୍ପନିକ ଓ ପୌରାଣିକ ଆଖ୍ୟାନଧର୍ମୀ ଗୀତ ଗାନ କରିଥାନ୍ତି । କଥାନୀର ପ୍ରାରମ୍ଭରେ ଦେବଦେବୀ ବନ୍ଦନା କରାଯାଇ ବିଷୟବସ୍ତୁର ଅବତାରଣା କରାଯାଏ । ଯଥା :-

'ଶିରିରାମ ଶିରିରାମ ବଇଲା ବାପା ହରିବୋଲ

ରାମ ବୋଇଲେ ବାପା ଦେବୀର ଯେ ନାମ

ଜୟ ବୀରଖମ୍ବ ସାହା ଏବେତ ହୋଇଲା

କହିଦେବୁ ବାପା ତମର ନାମତ ଧରିଲୁ......' ଇତ୍ୟାଦି ।

କେତେକ ଲୋକପ୍ରିୟ କାଥାନୀ ହେଲା : ସତର ବରରାଜା, ବଦରାଜା, ବଟବାମୁନ, ବାଂଜରାଜା ଇତ୍ୟାଦି ।

୭. ରାଞ୍ଚ - *ଦେ.ବି. :* ଝାଟି / ରଞ୍ଜା / ଶୁଖିଲା ଛୋଟ ଗଛର ଡାଳ । ଶୁଖିଲା ଛୋଟଗଛ ଯାହା ଝାଟି ଆକାରରେ ପୋତାଯାଇ ଶିମ୍ବ, ଜହ୍ନି ଇତ୍ୟାଦି ଲତା ଜାତୀୟ ଗଛ ଗୁଡ଼ିକୁ ଉପରକୁ ଚଢ଼େଇବା ପାଇଁ ବ୍ୟବସ୍ଥା କରାଯାଏ । ପ୍ରତି ଆଦିବାସୀ ଘର

ବାଡ଼ିରେ ରାଞ୍ଜ୍ ପୋତି ଶିମ୍ବ ବା ୫ଟା ଜାତୀୟ ଗଛ ଲଗାଯାଇଥାଏ । ଭାଷାରେ ବ୍ୟବହାର : ସବୁ ଆଦିବାସୀର ବାଡ଼ିମନକେ ସେମି, କୁମୁଡ଼ା, ଜଟା, କୁଡୁଙ୍ଗ୍ ମନ୍ ରୋପି କରି ରାଞ୍ଜମନ୍ ଦେବାୟ ।

୮. ରାନ୍ଦା - *ଦେ.ବି. :* (୧) ରନ୍ଧା ଖାଦ୍ୟ (୨) ବଡ଼ପଣ, ବଡ଼ପଣ ଦେଖାଇବା । (ଦେ.କ୍ରି) ଇଂ- Cooked food, Pride.

ଲୋକୋକ୍ତିରେ ବ୍ୟବହାର :

'ଘରେ ନାଇଁ ରାନ୍ଦା

ଦୁଆରେ ଘଡ଼ା ବାନ୍ଦା / ମଇଁଷି ବନ୍ଦା ।'

ଅର୍ଥାତ ଘରେ କିଛି ନଥାଇ ମଧ ବଡ଼ବଡ଼ କଥା କହିବା ।

୯. ରାନ୍ଧାରୀ / ରାନ୍ଦାରୀ - *ଦେ.ବି. :* ରାନ୍ଧୁଣିଆ : ଇଂ- Cook

ଭତରା ଅଧ୍ୟୁଷିତ ଅଞ୍ଚଳରେ ରାନ୍ଦାରୀ ସଂଜ୍ଞାଧାରୀ ଲୋକ ବହୁତ । ରାନ୍ଧାରୀର କାମ ହେଲା କୌଣସି ପର୍ବରେ ପୂର୍ବଦିନ ରାନ୍ଧାରି ଯାଇ ଗୁଡ଼ି ବା ମନ୍ଦିରକୁ ଧୂଆଧୋଇ, ଲିପାପୋଛା, ଛପର ଆଦି କରିବା । ଏହା ବ୍ୟତୀତ ଦେବୀଙ୍କ ପୂଜା ନିମିତ୍ତ ଚରୁ ମଧ ସେ ପ୍ରସ୍ତୁତ କରନ୍ତି ।

୧୦. ରାନ୍ଦେରୀଗର୍ - *ଦେ.ବି. :* ରୋଷେଇ ଘର, ଇଂ- kitchen

ପ୍ରତି ଆଦିବାସୀ ଘରମାନଙ୍କରେ ଭିତରେ କିମ୍ବା ଅଲଗା କରି ରାନ୍ଦେରୀଗର ତିଆରି ହୋଇଥାଏ । ଏହି ଘରେ ବାହାର ଲୋକଙ୍କର ପ୍ରବେଶ ନିଷେଧ । ଏଥିରେ ରୋଷେଇ ପାଇଁ ଆବଶ୍ୟକୀୟ ଜିନିଷପତ୍ର ଥାଏ । ଭାତହାଣ୍ଡି, ମାଣ୍ଡିଆହାଣ୍ଡି, ପେଜହାଣ୍ଡି, ଶାଗ ପାତ୍‌ଲି, ବାନକି ବ୍ୟତୀତ ଚଡୁଆ ବା ଥାଳି, ଅନ୍‌କା, ଦୁମନି ପାଟିଆଚଟୁ ବା ଖୁସୁଣି, ବଡ଼ଚଟୁ, କୁଡ଼୍‌କା ବେ ବାଲା, ଗିନା, ଡୁବା ବା ଚୋଟ ଡାଟିଆ, ସାନ ଚଡୁଆ ବା ଥାଳିଆ ଇତ୍ୟାଦି ରହିଥାଏ । ଏହାକୁ ଛାଡ଼ି କୁଲା, ଚାଙ୍ଗଡ଼ା, ଟିପ୍‌ନି ବା ଲୁଣ ସଡୁଆ ମଧ ଥାଏ । ମରିଚ ବାସ ମସଲା ବଟା ପାକନା ବା ଶିଳ ପଥର ଇତ୍ୟାଦି ରହିଥାଏ । ଆଉ ମଧ ରଶିତିଆରି ଶିକାରେ ଶୁଖୁଆ, ପନିପରିବା ଇତ୍ୟାଦି ଶୁଖା ବା ଟେକା ଯାଇଥାଏ ।

୧୧. ରାନୀକୁଣ୍ଡ - *ଦେ.ବି. :* ଗୋଟିଏ ଜଳପ୍ରପାତର ନାମ ବିଶେଷ । ଏହା ନନ୍ଦପୁର ଅଞ୍ଚଳରେ ଅବସ୍ଥିତ । ଏ ସଂପର୍କରେ ଏକ ଲୋକକଥା ବା କିମ୍ବଦନ୍ତୀ ରହିଛି । ଯଥା :- ନନ୍ଦପୁର ଅଞ୍ଚଳରେ ଥିବା ଏକ ପର୍ବତର ନାମ କଟ୍‌ନିମାଲ । ଏହି ପର୍ବତ ଭିତରେ ଅଛି ରାଣୀ ଡୁଡୁମା । ସେଠି ଦୁଇ ଭାଇ ଭଉଣୀ ବାସ କରୁଥିଲେ । ଭାଇ ପ୍ରତିଦିନ ଶିକାରକୁ ଯାଏ । ଦିନେ ଧାପେଧାପେ ବା ବେଳାବେଳି ଭାଇ ଶିକାର ନେଇ ଫେରି ଆସିଲା । ଦେଖିଲା ତାର ଭଉଣୀ ଲଂଗଳା ହୋଇ ଧାନକୁଟୁଛି । ସେ ତାକୁ ସତର୍କ କରିଦେବାପାଇଁ ଗୋଟିଏ ତୀର ଛାଡ଼ିଦେଲା । ତୀର ଦେଖି ଭଉଣୀ ଜାଣିଲା ଯେ ଭାଇ ଫେରି ଆସିଛି ଏବଂ ତାକୁ ଲଂଗଳା ଦେଖି ଦେଇଛି । ସେ ଲାଜରେ ପଡ଼ିଗଲା ଏବଂ ପାଖରେ ଥିବା ଡୁମାକୁ ଡେଇଁ ପଡ଼ିଲା । ସେହିଦିନୁ ସେଇ ଡୁଡୁମାର ନାଁ ରହିଲା 'ରାଣୀକୁଣ୍ଡ' ।

୧୨. ରାନୀଗୁଡ଼ା - *ଦେ.ବି. :* ଏକ ଗାଁର ନାମ । ଏହି ପ୍ରବାଦ ଗାଁଟି ମାତିଲି ବ୍ଲକ୍‌ରେ ଅବସ୍ଥିତ । ରାନୀଗୁଡ଼ା ନାମରେ କେତେକ ଗାଁ କୋରାପୁଟରେ ରହିଛି । (କୁନ୍ଦ୍ରାବ୍ଲକ)

୧୩. ରାନୀଧାରା - *ଦେ.ବି. :* ଏକ ଜଳପ୍ରପାତ ବା କୁଣ୍ଡର ନାମ । ଏହା ମଧ୍ୟ ମାତିଲି ବ୍ଲକ୍‌ରେ ରାନୀଗୁଡ଼ା ପାଖରେ ଅବସ୍ଥିତ । ପାଖରେ ଚେଡ଼େଙ୍ଗା ଗ୍ରାମ ତା ପାଖରେ ଥିବା ପର୍ବତ ହେଉଛି ଚେଡ଼େଙ୍ଗା ପର୍ବତ । ପ୍ରବାଦ ରହିଛି : ଏଠାକାର ଜଣେ ରାଜା ଥିଲେ ଡମ୍ବରାଜା । ତାଙ୍କର ଗଡ଼ ଏହି ଚେଡ଼େଙ୍ଗା ପର୍ବତ ଉପରେ ଥିଲା । ସେ ରାଜା ଜୟପୁର ରାଜାଙ୍କୁ ସ୍ୱୀକାର କରୁନଥିଲେ । କୌଣସି ଖଜଣା ବା ମାନ୍ୟ ଦେଉ ନଥିଲେ । ତାଙ୍କ ଅଧୀନରେ ଥିଲା ପାଞ୍ଚପଡ଼ା ବା ପାଞ୍ଚଟି ବଡ଼ବଡ଼ ଗାଁ । ଏଗୁଡ଼ିକ ହେଲା କିଆଂମେକା, ଦାମାପଡ଼ା, ସର୍ଗୀଗୁଡ଼ା, ବିଜାପଦର ଓ ମେଣ୍ଡକୁଲି । ଏ ସମସ୍ତେ ଏବେ ମଧ୍ୟ ବଡ଼ ପରବ ପୂର୍ବରୁ ଚେଡ଼େଙ୍ଗା ଠାରେ ହେଉଥିବା ବଡ଼ଲାଠି ପୂଜା ବେଳେ ଏକତ୍ରିତ ହୁଅନ୍ତି ।

ଏହି ପାଞ୍ଚ ପଡ଼ାର ଲୋକମାନେ ପାଳି କରି ଡମରାଜାଗଡ଼କୁ ଯାଇ ବେଠିଆ ବା କାରିଆ କାମ କରନ୍ତି । ଚେଡ଼େଙ୍ଗା ପାଖରେ ବୋହିଯାଉଛି କୋଲାବ ନଈ । ସେତେବେଳେ ଏହା ଆଜି ଭଳି ଓସାରିଆ ନଥିଲା । ତାର ଗୋଟିଏ ପଟେ ଥିଲା ଘଞ୍ଚ ବାଉଁଶ ବୁଟା । ମଝିରେ କୋଲାବ ନଦୀ ଉପରେ ଗୋଟିଏ କାଠ ପଟା ପଡ଼ିଥିଲା ।

ଏହି ବାଟ ଦେଇ କାରିଆ ମାନେ ଆସନ୍ତି । ସେ ଡମ୍ ରାଜା ଥିଲେ ଖୁବ୍ ମାୟାବୀ । ତାଙ୍କୁ କେହି ଦେଖି ପାରନ୍ତି ନାହିଁ । ସେ କେଉଁଦିନ କୁକୁର ହୋଇଥାନ୍ତି ତ କେଉଁଦିନ ବିଲେଇ । ତାଙ୍କର ସାତରାଣୀ କାରିଆ ମାନଙ୍କୁ ବିଭିନ୍ନ କାମ ବରାଦ କରନ୍ତି ।

ଦିନେ କ୍ୟାଂ କାରିଆ ଲୋକଙ୍କର ପାଳିଥିଲା । କ୍ୟାଂ କାରିଆଙ୍କ ସାଥିରେ ପାଞ୍ଚ ପଡ଼ାର ଲୋକମାନେ ବି ଆସିଥିଲେ । କ୍ୟାଂ କାରିଆଙ୍କର ନେତା ଥିଲେ ଜଣେ ମାଝୀ । ତାଙ୍କର ନାମ ଥିଲା ସୋମନାଥ ମାଝୀ । ସେ ସେତେବେଳେ ନଗଦ ଛତିଶଗଡ଼ ରାଜାଙ୍କ ସଂଗେ ଗଣ୍ଡଗୋଳ କରି ଓଡ଼ିଶା ଆସିଥାନ୍ତି । ସେଇ ବିଦ୍ରୋହୀ ସୋମନାଥ ମାଝୀ ପାଞ୍ଚପଡ଼ାର ଲୋକଙ୍କୁ ଏକତ୍ରିତ କରି ତନ୍ତ୍ରବିଦ୍ୟାରେ ବଳିଷ୍ଠ ଡମ୍ ରାଜାଙ୍କୁ ଶିକ୍ଷା ଦେବାପାଇଁ ସ୍ଥିର କଲେ । ସେଦିନ ସେ ଜଣେ ରାଣୀଙ୍କୁ ଫୁସୁଲାଇ ପଚାରିଲେ, ସବୁଦିନେ କାରିଆ କାମ କରିବାକୁ ଆସୁଚୁ । କେବେହେଲେ ରାଜାଙ୍କୁ ତ ଦେଖିଲୁ ନାହିଁ । ଆଜି ତାଙ୍କୁ ଥରେ ଦେଖାଇଦିଅ । ସେଇଠୁ ସେ ଗୋଟିଏ କୁକୁର ଦେଖାଇଦେଲେ । କହିଲେ ଏହି ହେଉଛନ୍ତି ରାଜା । ସୋମନାଥ ମାଝୀ ଛପର ପାଇଁ ପିରି ନେଇ ଗଲାବେଳେ ସେ ପିରି ଭିତରେ ଗୋଟିଏ ଖଣ୍ଡା ଲୁଚାଇ ନେଇଥିଲା । ହଠାତ୍ ସେ ଖଣ୍ଡା ବାହାରକରି କୁକୁର ରୂପୀ ରାଜାଙ୍କୁ ହାଣିଦେଲା । ଚେଡ଼େଙ୍ଗା ପାହାଡ଼ ଉପରେ ସେହି କୁକୁର ମୁଣ୍ଡ ରହିଗଲା ଓ ଗଣ୍ଡି ତଳକୁ ପଡ଼ିଗଲା । ଚେଡ଼େଙ୍ଗା ପାହାଡ଼ ଉପରେ ରହିଥିବା ସେଇ କୁକୁର ମୁଣ୍ଡ ପାକନା ପାଲଟିଗଲା । ସେଠାରେ ଥିବା ଡମ ରାଜାର ଗଡ଼ ମଧ୍ୟ ପାକନା ପାଲଟି ଯାଇଛି । ଚେଡ଼େଙ୍ଗାର ଏଇ କୁକୁରମୁଣ୍ଡ ପାକନାରେ ପ୍ରତିବର୍ଷ ପୂଜା ଦିଆଯାଏ । ରାଜା ମରିବା ଦେଖି ଭୟଭୀତ ରାଣୀମାନେ ଜଣେ ପରେ ଜଣେ ପାଖରେ ଥିବା ଡୁଡୁମାକୁ ଡେଇଁ ପଡ଼ିଲେ । ସେହିଦିନୁ ସେ ଡୁଡୁମାର ନାମ ହେଲା 'ରାଣୀଧାରା' । ରାଣୀଧାରା ପାଖରେ ଥିବା ଗାଁର ନାମ ରାଣୀଗୁଡ଼ା । ମେକା ପଞ୍ଚାୟତରେ ଥିବା ଏହି ଗାଁ ମୁଖ୍ୟତଃ ଭୂମିଆ ମାନଙ୍କ ଆବାସସ୍ଥଳୀ । ଏହି ରାଣୀଧାରା ହେଉଛି ଏକ ଗଭୀର କୁଣ୍ଡ, ଯାହାକି, ଏବେ କୋଲାବ ନଦୀର ଗର୍ଭରେ ଗୁପ୍ତ ହୋଇ ରହିଛି ।

୧୪. ରାବନ୍ - *ଦେ.ବି.* : ଶାଗୁଣା । ଇଂ- Vulture. ଏକ ମାଂସଭୋଜୀ ପକ୍ଷୀ, ଯାହା ମୃତ ଜୀବଜନ୍ତୁଙ୍କର ଶବ ଭକ୍ଷଣ କରିଥାଏ । ଏହି ପରିବେଶକୁ ପରିଚ୍ଛନ୍ନ ରଖୁଥିବା ପକ୍ଷୀଟି ଏକ ବିଲୁପ୍ତ ପ୍ରାଣୀରେ ପରିଣତ ହୋଇଛି । ଭାଷାରେ ବ୍ୟବହାର :

ଗିମି ଦେକଲେ ରାବନ୍ ମନ୍ ଉତୁରତେ ରେଲାଇ । ଏବେ ସେତେକ୍ ଦିଶିତ୍ ନାଇଁ, ସାରି ଗଲାଏନି ।

୧୫. ରାମଗିରି - *ଦେ.ବି. :* କୋରାପୁଟ ଜିଲ୍ଲା ବୈପାରୀଗୁଡ଼ା ବ୍ଲକ୍‌ରେ ଅବସ୍ଥିତ । ପୁରାଣ ବର୍ଣ୍ଣିତ ସ୍ଥାନର ନାମ । ରାମଙ୍କ ନାମରେ ନାମିତ ଗିରି ବା ପାହାଡ଼ । ରମ୍ୟ ରୂପ ସଂଭାର ବହନ କରୁଥିବା ଗିରି ।

କୋରାପୁଟ ଜିଲ୍ଲାର ବୈପାରୀଗୁଡ଼ା ବ୍ଲକ୍ ଠାରୁ ଗୁପ୍ତେଶ୍ୱର ଯିବା ରାସ୍ତାରେ ଏହି ସୁରମ୍ୟ ଗ୍ରାମ ତଥା ପାହାଡ଼ ଦୃଷ୍ଟିଗୋଚର ହୋଇଥାଏ । ଏହା ଏକ ବହୁ ପ୍ରାଚୀନ ପୁରାଣ ପ୍ରସିଦ୍ଧ ସ୍ଥାନ । ବନବାସ ସମୟରେ ପୁରୁଷୋତ୍ତମ ରାମଚନ୍ଦ୍ର ନିଜ ଭାଇ ଓ ଭାର୍ଯ୍ୟାଙ୍କ ସହ କିଛିକାଳ ଏହି ପର୍ବତରେ ରହିଥିଲେ ବୋଲି ପ୍ରବାଦ ଅଛି । କାଳିଦାସଙ୍କ ମେଘଦୂତ ଖଣ୍ଡକାବ୍ୟରେ ରାମଗିରି ସ୍ଥାନଗୁଡ଼ିକର ବର୍ଣ୍ଣନା ରହିଛି ।

୧୬. ରାମଗୁଟା - *ଦେ.ବି. :* ଏକ ତତ୍‌ବାଦ୍ୟ ବିଶେଷ । ଏହା ଡୁଙ୍ଗଡୁଙ୍ଗା ଅନୁରୂପ ଏକ ବାଦ୍ୟଯନ୍ତ୍ର । ଏହାର ଲାଉତୁମ୍ବାଟି ଡୁଙ୍ଗ୍‌ଡୁଙ୍ଗା ଅପେକ୍ଷା ବଡ଼ ଓ ଏଥିରୁ ଦୁଇଟି ତାର ଲାଗିଥାଏ । ଏହାର ବାଦନ ରୀତି ଡୁଙ୍ଗ୍‌ଡୁଙ୍ଗା ପରି ହୋଇଥାଏ ।

୧୭. ରାୟଗଡ଼ା - *ଦେ.ବି. :* ରାୟଗଡ଼ା ଜିଲ୍ଲା ସଦର ମହକୁମାର ନାମ । ପୂର୍ବରୁ ଏହା ଅବିଭକ୍ତ କୋରାପୁଟ ଜିଲ୍ଲାର ଏକ ସବ୍‌ଡିଭିଜନ ରୂପେ ରହିଥିଲା । ରାୟଜାତି ଦ୍ୱାରା ସ୍ଥାପିତ ଗଡ଼ । ଏହା ନାଗାବଳୀ ଓ ଝଞ୍ଜାବତୀ ନଦୀକୂଳରେ ଅବସ୍ଥିତ ଏକ ଶିଳ୍ପ ସମୃଦ୍ଧ ସହର । ୧୫୧୬ ଖ୍ରୀ.ରେ ଏହା ନବରଂଗପୁର ରାଜ୍ୟର ରାଜଧାନୀ ଭାବରେ ସ୍ଥାପିତ ହୋଇଥିଲା । କଥିତ ଅଛି, ଆଦ୍ୟରେ ରାୟ ଜାନି ନାମକ ଜଣେ କନ୍ଧ ଲୋକ ମୁଖିଆ ଭାବେ ଏହି ଅଞ୍ଚଳ ପରିଚାଳନା କରୁଥିଲେ । ନନ୍ଦପୁରର ରାଜା ଯୁଦ୍ଧରେ ରାୟଜାନିକୁ ପରାସ୍ତ କରି ଏହି ଅଞ୍ଚଳ ନିଜ ଅଧୀନକୁ ଆଣିଥିଲେ ମଧ୍ୟ ସେ ରାୟଜାନି ଦ୍ୱାରା ବାରମ୍ବାର ଲୁଚାଛପାରେ ଆକ୍ରାନ୍ତ ହୋଇ ବହୁଧନ ଜୀବନ କ୍ଷୟର ସମ୍ମୁଖୀନ ହୋଇଥିଲେ । ତେଣୁ ସେ ବାଧ ହୋଇ ଅବଶେଷରେ ଗଡ଼ର ନାମ 'ରାୟଗଡ଼' ରଖିବାର ପ୍ରସ୍ତାବ ଦେବାରୁ ରାୟଜାନି ଏହାକୁ ଗ୍ରହଣ କରିନେଇଥିଲା । ଏହି ଗଡ଼ ମଧ୍ୟରେ ସେହିଦିନ ଠାରୁ ରାୟଜାନିର ସ୍ମୃତିରେ ଏକ ସ୍ମୃତି ପଥର 'ଜାନିପଥର' ନାମରେ ନାମିତ ହୋଇ ରହିଥିବା ବେଳେ ଗଡ଼ର ନାମ ରାୟଗଡ଼ ଭାବେ ବିଦିତ ହୋଇଅଛି ।

୧୮. **ରାହୁପୋଢ଼ - *ଦେ.ବି. :*** ବଳି ଉଦ୍ଦେଶ୍ୟ ଉଦ୍ଦିଷ୍ଟ ପୋଢ଼ । ଗଦବାମାନେ ଗତର ମେଲିବା ଦିନ ପାହାନ୍ତିଆରେ ରାହୁପୋଢ଼କୁ ବଳି ଦେଇଥାନ୍ତି । ଏହି ପୋଢ଼ର କଲିଜା ଓ ଜିଭକୁ କାଟି ଗଦବାମାନେ ଔଷଧ କରିବା ନିମିତ୍ତ ନିଅନ୍ତି । (ଦ୍ର. ଗତର ।)

୧୯. **ରିଂଜୋଡ଼ି - *ଦେ.ବି. :*** (୧) ପତଳା ସୁନ୍ଦର ଓ ଚିକଣ ଦିଶୁଥିବା ପରଜା ଧାଙ୍ଗିଡ଼ୀ ବା ଯୁବତୀ କନ୍ୟା (୨) ପରଜା ରମଣୀଙ୍କର ଢେମସା ନାଚର ନାମ ରିଢୋଡ଼ି ନାଚ । ଇଂ- 1. Beautiful Paraja dangid, 2. Paraja Dance

ପରଜା ଗୋଷ୍ଠୀର ରିଞ୍ଜୋଡ଼ିମାନେ ବା ଯୁବତୀମାନେ ଯେଉଁ ପ୍ରକାର ଢେମସା ନାଚନ୍ତି, ତାହାକୁ ରିଞ୍ଜୋଡ଼ି ଢେମସା କୁହାଯାଇଥାଏ । ଏହି ନୃତ୍ୟରେ ଦୁଇଦଳ ସାମ୍ନା ସାମାନି ହୋଇ ରହିଥାନ୍ତି । ଅଣ୍ଟା ଓ ମୁଣ୍ଡତଳକୁ କରି ସମଗ୍ର ଶରୀରକୁ ବାଦ୍ୟର ତାଳେତାଳେ ହଲାଇ ନୃତ୍ୟ କରିବାକୁ ହୋଇଥାଏ । ଡାହାଣ କୋଣକୁ ପାଦେ ଓ ବାମ କୋଣକୁ ପାଦେ ଅତିକ୍ଷିପ୍ର ବେଗରେ ପାଦ ପକାଇ ନାଚି ନାଚି ଦୁଇଦଳ ପାଖାପାଖି ହୁଅନ୍ତି ଓ ପୁଣି ସେମିତି ନାଚି ନାଚି ଦୂରେଇ ଯାଇଥାନ୍ତି । ଏଥିରେ ମୁଣ୍ଡ ଓ ଅଣ୍ଟାକୁ ବାରମ୍ବାର ବଙ୍କେଇବାକୁ ପଡ଼ିଥାଏ । ଏହି ନୃତ୍ୟ ଅନ୍ୟ ସମ୍ପ୍ରଦାୟରେ ପ୍ରଚଳିତ ଥିଲେ ମଧ୍ୟ ସେମାନେ ଏହାକୁ ରିଂଜୋଡ଼ି ବୋଲି ନକହି 'ଢେମସା' କହିଥାନ୍ତି ।

୨୦. **ରିଙ୍ଗତାଗଡ଼ା - *ଦେ.ବି. :*** ବଣ୍ଡାସମାଜରେ ପ୍ରଚଳିତ ଏକପ୍ରକାର ବିରୁ ବା ପୂଜା । କୌଣସି ବଣ୍ଡା ସ୍ତ୍ରୀ ଗର୍ଭବତୀ ହୋଇ ଅସୁସ୍ଥ ହୋଇ ପଡ଼ିଲେ, ଏବଂ ପ୍ରସବବେଳେ ବିଶେଷ କଷ୍ଟ ହେଲେ, ଏହା କୌଣସି ଅତୃପ୍ତ ଆତ୍ମାର କାମ ବୋଲି ଧରି ନିଆଯାଏ ଏବଂ ଉକ୍ତ ଆତ୍ମାର ସନ୍ତୁଷ୍ଟି ପାଇଁ ସୀମା (ଦିସାରୀ / ପୂଜାରୀ) ଦ୍ୱାରା ରିଙ୍ଗତାଗଡ଼ାବୀରୁ (ପୂଜା) କରାଯାଏ ।

୨୧. **ରିଙ୍ଗା - *ଦେ.ବି. :*** କେରଙ୍ଗ ସୁତା ନିର୍ମିତ ଛୋଟ ବସ୍ତ୍ର । ବଣ୍ଡା ଯୁବତୀମାନେ କେରଙ୍ଗ ସୂତାରେ ହାତତନ୍ତରେ ବୁଣିଥିବା ୩ ଫୁଟ ଲମ୍ବ, ୧ ଫୁଟ ଓସାରର ସୁନ୍ଦର ଲୁଗା, ଯାହାକୁ ସେମାନେ ନାହି ତଳକୁ ପଟି ପରି ପିନ୍ଧନ୍ତି । ଏହି ରିଙ୍ଗା ଏଗୁଇ, ମୁରୁଗା, ଇସିଏ ଓକେରଙ୍ଗ ଗଛର ବକଳରୁ ସୂତା ବାହାର କରି ତୁଳା ସୂତାରେ ମିଶାଇ ବୁଣାଯାଇଥାଏ । ବଣ୍ଡାର ସଂସ୍କୃତିର ଏକ ଅବିଚ୍ଛେଦ୍ୟ ଅଂଶ ହେଉଛି ଏହି ରିଙ୍ଗା । ଦ୍ୱିତୀୟ ପ୍ରକାର ରିଙ୍ଗାର ଦୈର୍ଘ୍ୟ ୪ ଫୁଟ ଓ ଓସାର ୧ ଫୁଟ । ଛୋଟ

ପିଲାମାନଙ୍କ ପାଇଁ ଛୋଟ ସାନ ଙ୍କର୍ ରିଙ୍ଗା ମଧ୍ୟ ବୁଣାଯାଏ । ପୁରୁଷମାନେ ଏହି ରିଙ୍ଗା ବୁଣିବା ନିଷେଧ । ରିଙ୍ଗାବୁଣା ତନ୍ତକୁ "ତେନାଂଗତା କୁନୁକ୍‌ପ" ବୋଲି କୁହାଯାଏ ।

୨୨. ରିଲୋନାଟ୍ - *ଦେ.ବି.* : ଏକ ପ୍ରକାର ଆଦିବାସୀ ନୃତ୍ୟ । ବିବାହ କାଳରେ ଭତରା ଓ ଗଣ୍ଡ ଜନଜାତିରେ ପୁଅ ଝିଅ ମିଶି ରିଲୋନାଟ ନାଚିଥାନ୍ତି । ଝିଅମାନେ ଧାଡ଼ି ବାନ୍ଧି ଅଣ୍ଟା ବଙ୍କାଇ ପାଦେ ଆଗକୁ ଓ ପାଦେ ପଛକୁ ପକାଇ ନାଚ କରିଥାନ୍ତି । ପୁରୁଷମାନେ ମାନ୍ଦର୍ (ମାଦଳ ପରି ଏକ ବାଦ୍ୟ ଯନ୍ତ୍ର) ବଜାଇ ମଝିରେ ରହନ୍ତି । ରିଲୋନାଟ୍ ସମୟର ଗୀତ ହେଉଛି

"ରିଲେ ରିଲୋ ରେରେଲୋ
ରିଲୋ ରିଲୋ ରେରେଲୋ
ଆଲେ ଭାଇମନ୍ ମନ୍ଦ୍‌ର ମାରାରି
ଆଛା କରି ମନ୍ଦ୍‌ର ମାରାରି
ରିଲୋ ରିଲୋ ରିଲୋ ରିଲୋ ।
ସେଲା ରେଲାରି ।"

୨୩. ରିଷା - *ଦେ.କ୍ରି.* : ରାଗିବା- କ୍ରୋଧିତ ହେବା - ଅସନ୍ତୁଷ୍ଟ ହେବ : ଇଂ- To get annoyed.

ଆଦିବାସୀ ସମାଜରେ ଲୋକମାନେ ସହଜରେ ରିଷା ହୁଅନ୍ତି ନାହିଁ । ସେମାନଙ୍କ ସହିବା ଶକ୍ତି ବା ଧୈର୍ଯ୍ୟ ଖୁବ୍ ବେଶୀ । କେବେ କେମିତି କୌଣସି ଲୋକର ଧୈର୍ଯ୍ୟଚ୍ୟୁତ ଘଟିଲେ ବା ସହିବା ଶକ୍ତି ଅତିକ୍ରାନ୍ତ ହେଲେ ସେ ରାଗେ ଓ ସେତେବେଳେ ଭଲମନ୍ଦ ବାଛ ବିଚାର ନ ରଖି, ନିଜ ପର ନ ଦେଖି ମଣିଷକୁ ମାରିହାଣି ଦେଇଥାଏ । ରିଷା ବା କ୍ରୋଧ ସମ୍ପର୍କରେ ବୁଝାଇବାକୁ ଯାଇ ପୁରୁଣା ଆଦିବାସୀ ଲୋକମାନେ କହନ୍ତି- "ରିଷା ହେବା ବଡ଼ ପାପ । ରିଷା ହେଲା ମନୁଷ୍ୟର ହାତ୍ ଗୋଡ଼ ମନ ଥରି ଯାଏସି । ରିଷା ମିଶା ମନୁଷ୍ୟର ବୁଦ୍ଧି ଶିଆନ୍ ନଶାଇ ଦେଇସି । ରିଷା ମୁନୁଷ୍‌କେ ଚଣ୍ଡାଲ କରି ଦେଇଶି ।" ଯାହାର ଅର୍ଥ - ରାଗ ବା କ୍ରୋଧ ବଡ଼ପାପ । ମଣିଷ ରାଗିଲେ ତା'ର ହାତ ଗୋଡ଼ମାନ ଥରିଯାଏ । ଏହା ମଣିଷର ଜ୍ଞାନ ଓ ବୁଦ୍ଧିକୁ ନଷ୍ଟ କରିଦିଏ । ରାଗିଲେ ମଣିଷ ଚଣ୍ଡାଲ ପାଲଟି ଯାଏ ।

୨୪. ଗୁଣ୍ଡୁଲ୍ - *ଦେ.ବି.* : ବାଇଡ଼ଙ୍କ ।

ଏକ ଔଷଧୀୟ ଗଛର ଫଳ ବିଶେଷ । ପାକଳ ହେଲାପରେ ଫାଟିଯାଇ ତା'ର ଆଂଶୁ ବିକ୍ଷିପ୍ତ ହୋଇ ଘରିଆଡ଼େ ପବନରେ ଭାସିବୁଲେ । ଦେହରେ ଲାଗିଲେ କୁଣ୍ଡାଇ ହୁଏ । ଘଷି ପାଉଁଶ ଘଷିଲେ କିମ୍ବା ନିଆଁ ସେକିଲେ ଏହି କୁଣ୍ଡିଆଣି ଭଲହୁଏ । ତାହାର ଔଷଧୀୟ ଗୁଣ ହେଉଛି- ମଇଁଷି ବାଛୁରୀ ଜନ୍ମହେବାର ୨୧ ଦିନ ପରେ ଏହାର ନାହି ପାଚି ପୋକ ହୋଇଗଲେ ଏଇ ଗୁଣ୍ଡୁଲ୍ ଆଂଶୁକୁ ଝଡ଼ାଇ ଦେଇ ଦହି ଓ ମାଣ୍ଡିଆ ପେଜ ସହ ଫେଣ୍ଟି ତିନିଦିନ ଖୁଆଇ ଦେଲେ ଏହା ଭଲ ହୋଇଯାଏ । ତତ୍ ସଙ୍ଗେ ସଙ୍ଗେ ବାଛୁରୀର ପେଟକୁ ମାଡ଼ିବାକୁ ହୁଏ । ଏତଦ୍‌ଭିନ୍ନ ଗୁଣ୍ଡୁଲ୍ ଗଛର ଚେରକୁ ଛେଚି ତାର ରସକୁ ପାଣିରେ ଗୋଳାଇ ତିନିଥର ପିଇବାକୁ ଦେଲେ ବାଛୁରୀର ନାହି ଘାଆ ଭଲ ହୁଏ । ଏହାର ଆଂଶୁକୁ ଘୋରି ପିଆଇ ଦେଲେ ବାଛୁରୀମାନଙ୍କ କୃମିରୋଗ ମଧ ଭଲ ହୋଇଥାଏ । ଦିଶାରୀମାନେ ଏହାର ମଂଜିକୁ ଶୁକ୍ରକୀଟ ବୃଦ୍ଧି ଓ ବଳବୀର୍ଯ୍ୟ ବର୍ଦ୍ଧକ ଔଷଧ ରୂପେ ବ୍ୟବହାର କରିଥାନ୍ତି ।

୨୫. ଗୁନୁକ୍‌ବୋର୍ - *ଦେ.କ୍ରି.* : ବଣ୍ଡା ପାହାଡ଼ର ଜଗୁଆଳି ଦେବତା । ଇଂ- Deity in charge of the Bonda hills. ବଣ୍ଡା ଦେଶର ପ୍ରବେଶ ଦ୍ୱାରରେ ଏକ ପଥରର କାନ୍ଥ (ପାଚେରୀ) ଦେଖିବାକୁ ମିଳେ । ବଣ୍ଡା ପାହାଡ଼କୁ ବାହାର ଶକ୍ତିର ଆକ୍ରମଣକୁ ରକ୍ଷା କରିବା ପାଇଁ ଗୁଗୁକବୋର୍ ସଦାସର୍ବଦା ସେଠାରେ ଜାଗ୍ରତ ଥାଆନ୍ତି ବୋଲି ବଣ୍ଡାମାନଙ୍କ ବିଶ୍ୱାସ ।

୨୬. ଗୁସ୍ ଗୁସା - *ଦେ.କ୍ରି.* : ଦେହସାରା କଷ୍‌କଷ୍ ହେଲା ପରି ଅନୁଭବ । ବେଦନାଯୁକ୍ତ ଆନନ୍ଦର ଅନୁଭବ । ଇଂ- To feel painful pleasure.

ଭାଷାରେ ବ୍ୟବହାର : ଯଥା : (୧) ଟକିକେ ଗୁସ୍‌ଗୁସା ଲାଗଲାନି (ସେ ଝିଅକୁ କଷ୍‌କଷା ଅନୁଭବ ହେଉଛି) ଗୀତରେ ରହିଛି :

(୨) "କୁରେଇ ଫୁଲର ବାସନା ନନୀ
ମନଟା ମଅଁକିଲା,
କଅଁଲି ମାଉଁସ କାୟ ଗୁଲ୍‌ଗୁଲା
ଗୁସ୍‌ଗୁସା ଲାଗୁଲା ।"

କୁରେଇ ଫୁଲର ବାସେ ମୋ ମନସାରା । ମହକି ଯେ ଗଲା / କଅଁଳ ମାଉଁସେ (ଆଦ୍ୟ ଯୌବନ ଛୁଇଁଥିବା ଦେହର ଅବସ୍ଥା) ମୋର କି ଅସ୍ଥିର ଭାବ / ଦେହସାରା କି ଯେ କଞ୍ଚାପ୍ରାସ / ମୋତେ ଆବୋରିଲା ।

୨୭. ରେଗ୍‌ରେଗା - *ଦେ.ବି. :* ଏକ ପ୍ରକାର ଦେଶୀୟ ବାଦ୍ୟ ବିଶେଷ ।

ସଉରା ସମ୍ପ୍ରଦାୟଙ୍କ ଏକ କାଷ୍ଠ ନିର୍ମିତ ବାଦ୍ୟଯନ୍ତ୍ର । ଏକ ପୋଲା ବାଉଁଶ ନଳୀର ପୃଷ୍ଠଭାଗକୁ ଆୟତକାରରେ କାଟି ତାରି ଉପରେ ଏକ ବାଉଁଶ ପାତିଆ ଘର୍ଷଣ କରି 'ରେଗ୍‌ରେଗ୍‌' ଧ୍ୱନି ସୃଷ୍ଟି କରାଯାଇଥାଏ । ତେଣୁ ଏହି ବାଦ୍ୟଯନ୍ତ୍ରର ନାମ ରେଗ୍‌ରେଗା ।

୨୮. ରେଡ଼୍ରା - *ଦେ.ବି. :* ଲୌହ ନିର୍ମିତ ଏକ ବିରଳ ଘନବାଦ୍ୟ । ବଣ୍ଡା ଓ ଡଙ୍ଗରିଆକନ୍ଧ ସମ୍ପ୍ରଦାୟରେ ଲୌହ ନିର୍ମିତ ତ୍ରିଶୂଳାକୃତି ଏହି ବାଦ୍ୟଟି ପ୍ରଚଳିତ । ଏହି ବାଦ୍ୟର ମଧ୍ୟରେ ଥିବା ଲୁହାପାତିଆକୁ ଜିଭ ତଳେ ପୁରାଇ ଆଙ୍ଗୁଳି ସଂଚାଳନ କଲେ ମଧୁର ଧ୍ୱନି ସୃଷ୍ଟି ହୋଇଥାଏ ।

୨୯. ରେନାବ୍‌ - *ଦେ.ବି. :* ବଣ୍ଡମାନଙ୍କ ମସ୍ତକ ଆଭୂଷଣ । ବଣ୍ଡା ଯୁବତୀମାନେ ଖଜୁରୀପତ୍ରରେ ନିର୍ମିତ ଯେଉଁ ଘାସ ତିଆରି ପଟି ପିନ୍ଧନ୍ତି ତାହାକୁ 'ରେନ୍‌ାବ୍‌' କୁହାଯାଏ ।

୩୦. ରେଲା - *ଦେ.ବି. :* ଏହା କୁଟିଆ କନ୍ଧ ସମ୍ପ୍ରଦାୟର ଏକପ୍ରକାର ସଂଜ୍ଞା । ଏହି ସଂଜ୍ଞାଧାରୀ ଲୋକମାନେ ନାଗବଂଶୀ ବା ଗୋତ୍ରୀ ଭାବେ ଚିହ୍ନିତ ହୋଇଥାନ୍ତି । ଆଉ ମଧ କୋୟା ତଥା ବଣ୍ଡା ଭାଷାର ଗୀତରେ ଏହା ଘୋଷା ରୂପେ ବ୍ୟବହୃତ ହୁଏ । ଏମାନେ ରେଲା ଗୀତ :- "ରେ ରେଲା, ରେ ରେଲା ରେଲାରେଲା ପାଟା (ଗୀତ) ଗାଇଥାନ୍ତି । ବେଳେ ବେଳେ ଜଣେ ମାତ୍ର ଗାୟକ ଲୁହା ପାତିଆରେ ତିଆରି ଏକମାତ୍ର ବାଦ୍ୟଯନ୍ତ୍ର ବଜାଇ ରେଲୋପାଟ ଗାଇ ନାଚ କରିଥାଏ । ଏହି ସ୍ତ୍ରୀମାନଙ୍କର ନାଚକୁ 'ସାଇଲା ରେଲା' ବା 'ସେଲା ରେଲା' ନାଚ ମଧ୍ୟ କୁହାଯାଏ । ରେଲା ସେଲା ବା ରେଲାପାଟାର ଘୋଷା ପଦ-

"ରେ ରେ ଲୋୟୋ ରେ ରେ ଲା ରେ ରେ ଲା
ରେ ରେ ଲୋୟା ରେରେ ରେଲା ରେଲା
ଓ ରେ ରେ ଲୋୟୋ ରେଲା ରେଲା ।"





୧.	**ଶରଣ ବିଧି** - *ଦେ.ବି. :* ମୃତ୍ୟୁ ପରେ ହେଉଥିବା କ୍ରିୟା ଅଂଶବିଶେଷ । ମଣିଷ ମରିଯିବା ପରେ ବନ୍ଧୁ, କୁଟୁମ୍ବ, ଗାଁ ଭାଇ, ସବୁ ଘରୁ ଶବ ଉଠାଇ ଶ୍ମଶାନରେ ଦାହ ସଂସ୍କାର କରି ଘରକୁ ଫେରନ୍ତି । ଘର ଦୁଆର ମୁହଁରେ ସମସ୍ତେ ରୁଣ୍ଡ ହୁଅନ୍ତି । ସେତେବେଳେ ମୃତ ବ୍ୟକ୍ତିଙ୍କର ପୁଅ କହେ, "ତୁମ୍ଭେମାନେ ମୋର ବାପାଙ୍କୁ ବଞ୍ଚିଥିବା ଯାଏ ଭାତ ପେଜ ଦେଲ । ମରିଯିବାରୁ କାଠ ଓ ମାଟି ଦେଲ। ତେଣୁ ତୁମ୍ଭେମାନଙ୍କ ପାଦତଳେ ଶରଣ ପଶୁଚି ।" ଏହି କହି ସେ ତୁଣ୍ଡରେ କୁଟାଖିଅ ଓ ବେକରେ ଗାମୁଛା ପକାଇ ସମସ୍ତଙ୍କୁ ମୁଣ୍ଡିଆ ମାରେ । ଏହାକୁ କୁହାଯାଏ 'ଶରଣବିଧି' ।

୨.	**ଶହେ ଟଙ୍କିଆ / ହଜାରି / କାଠଚମ୍ପା** - *ଦେ.ବି. :* ଔଷଧୀୟ ବୃକ୍ଷବିଶେଷ । ଅଣ୍ଠା ବ୍ୟଥାରେ ବ୍ୟବହୃତ ହୁଏ । ଏହାର ଡାଳରୁ କ୍ଷୀର ବାହାରୁଥାଏ । ଏହି କ୍ଷୀର ଲଗାଇ ଅଂଟାରେ ଇଲା ଅଛାଯାଏ । ଗୁଣିଆମାନଙ୍କ ତନ୍ତ୍ର ପୂଜାରେ ଶହେ ଟଙ୍କିଆ ଫୁଲ ଏକ ସ୍ୱତନ୍ତ୍ର ଭୂମିକା ବହନ କରେ ।

୩.	**ଶାମ୍ (ଗୀତ)** - *ଦେ.ବି. :* (୧) ବଣ୍ଡା ଭାଷାରେ 'ଭାଷା' ବା 'ଗୀତ' ଅର୍ଥରେ ବ୍ୟବହୃତ । (୨) ସେଲଗ୍ ବଏ ଶାମ୍: କନିଆ ମନେଇବା ଗୀତ । ଗୀତରେ ବ୍ୟବହାର :

ମଏନାତମ୍ ନାକିମି ରାମ୍ବିତମ୍ ନା କିମିନ
ଗୁସାଂତ୍‌ମ ନା କିମି ମଏନା ନ ।
ସିବତମ୍ ନା କିମି ଅରେଲ୍ ତମନା କିମିବାଇ
କୁମ୍ଭେତସନା କିମି ମଏନା ନ ।"

ଏହି ଗୀତରେ ଯୁବକମାନେ କନ୍ୟାକୁ ବଣି, ମଇନା, ହଳଦୀ ବସନ୍ତ, ଶୁଆ ଆଦି ପକ୍ଷୀର ସୌନ୍ଦର୍ଯ୍ୟ ସହ ତୁଳନା କରି ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଆଦରରେ ଖଡୁ (ସୁମରାଇ) ଗ୍ରହଣ କରିବାକୁ ଅନୁରୋଧ କରିଥାନ୍ତି ।

୪. **ଶାବର ଶ୍ରୀକ୍ଷେତ୍ର** - *ଦେ.ବି. :* କୋରାପୁଟରେ ଅଧୁନା ନିର୍ମିତ ଏକ ଜଗନ୍ନାଥ ପୀଠ । ଆଦିମ ଶବର ଗୋଷ୍ଠୀର ଲୋକମାନଙ୍କ ଶ୍ରେଷ୍ଠ କ୍ଷେତ୍ର । କଥିତ ଅଛି ଶବର ଦେବତା ଶ୍ରୀ ଜଗନ୍ନାଥ ଯିଏ ଭାଇ ଭଉଣୀଙ୍କ ସହ ଶ୍ରୀକ୍ଷେତ୍ର ପୁରୀରେ ସମୁଦ୍ର କୂଳର ବଡ଼ ଦେଉଳରେ ଅବସ୍ଥାନ କରୁଛନ୍ତି, ସେଇ ଦାରୁ ଦେବତା ପ୍ରଥମେ ଏଇ ମାଟିରେ ଜଗନ୍ତା / କିଟୁଂ କାଠ ଭାବରେ ଚିହ୍ନିତ ହୋଇ ପୂଜା ପାଉଥିଲେ । ତାଙ୍କର ଆଦିକ୍ଷେତ୍ର ଏହି କୋରାପୁଟ ଜିଲ୍ଲାର ଆରଣ୍ୟକ ଭୂମିକୁ ସ୍ମରଣକୁ ଆଣିବା ପାଇଁ କୋରାପୁଟ ଜିଲ୍ଲାର ସଦର ମହକୁମାଠାରେ ଗଢ଼ି ଉଠିଛି ଏହି ପ୍ରସିଦ୍ଧ କ୍ଷେତ । ଯେଉଁଠି ଶବର ଆରାଧିତ ଦାରୁ ଦେବତା ଶ୍ରୀ ଜଗନ୍ନାଥ ପ୍ରସିଦ୍ଧ ବଡ଼ ଦେଉଳାକୁ କେନ୍ଦ୍ର ରଖି ଗଢ଼ି ଉଠିଛି ସମଗ୍ର ଭାରତବର୍ଷର ସମସ୍ତ ଦେବାଦେବୀଙ୍କ ଆରାଧନା ପୀଠ । ଅନେକ ତୀର୍ଥର ମିଳନ ସ୍ଥାନ ଭାବେ ଏବେ ଏଇ ଶାବର ଶ୍ରୀକ୍ଷେତ୍ର ପ୍ରସିଦ୍ଧି ଲାଭ କରି ସାରା ବିଶ୍ୱର ପର୍ଯ୍ୟଟକମାନଙ୍କ ଦୃଷ୍ଟି ଆକର୍ଷଣ କରୁଛି ।

୫. **ଶାସପଟା (ଶାସ-ଶାଶୁ, ପାଟା : ଲୁଗା)** - *ଦେ.ବି. :* ଶାଶୁଙ୍କୁ ଦିଆଯିବା ଲୁଗା । ବିବାହ ସମୟରେ ପୁଅ ଘର ତରଫରୁ ଶାଶୁ, ଶ୍ୱଶୁର, ମାମୁମାଇଁ ଓ କନ୍ୟା ପାଇଁ ନୂଆ ବସ୍ତ୍ର ଓ ଭୋଜି ସାମଗ୍ରୀ ଦିଆଯାଇଥାଏ । ଏଥିରେ ଥିବା ଶାଶୁଙ୍କ ଲୁଗାକୁ ଶାସ ପାଟା କୁହାଯାଏ ।

୬. **ଶିଙ୍ଗା** - *ଦେ.ବି. :* ପଶୁ ଶିଙ୍ଗରେ ତିଆରି ଏକ ସୁଷିରବାଦ୍ୟ : ଏହା ପୂର୍ବେ ଗୟଳ ଶିଙ୍ଗରେ ତିଆରି ହେଉଥିଲା । ସମ୍ପ୍ରତି ଏହି ଶିଙ୍ଗ ଦୁର୍ଲଭ ହେତୁ ପୋଢ଼ ଓ ମଇଁଷି ଶିଙ୍ଗରେ ଶିଙ୍ଗା ତିଆରି ହୋଇଥାଏ । ଏହା ମୁଖ୍ୟତଃ ସଉରା / ଗାଦବା / ବଣ୍ଡା / ଦୁରୁଆ ପ୍ରଭୃତି ଆଦିବାସୀ ସମ୍ପ୍ରଦାୟଙ୍କ ଶିକାର ଓ ଗଣ ବାଦ୍ୟଭାବେ ପ୍ରଚଳିତ ଥିଲେ ହେଁ, ଜନସମାବେଶ ନିମନ୍ତେ ଏହାକୁ ମଧ୍ୟ ଡେଙ୍ଗୁରା ପରି ବାଦନ କରାଯାଇଥାଏ । ଆଜିକାଲି ଏହା ରସ ବା ପିତଳ ଧାତୁରେ ତିଆରି ହୋଇ ବିକ୍ରି ହେଉଛି । କୁମ୍ଭାରମାନଙ୍କ ଦ୍ୱାରା ତିଆରି ମାଟି ଶିଙ୍ଗାକୁ 'ଟୋଲି' ବୋଲି କୁହାଯାଏ ।

୭. **ଶିତଲି ବେଲା** - *ଦେ.ବି. :* ଇଂ- Twilitght, Dusk hour. ସୂର୍ଯ୍ୟାସ୍ତ ପର ସମୟ / ସଂଜ ହେବାକୁ ଯାଉଥିବା ସମୟ । ଗୀତରେ ବ୍ୟବହାର :

"ଅଏଲି ମାରିଲି ଶରୀର ଜମନା
କାଇ ପରା କାଇ ନାଇଁ

ଶିତଲି ବେଲାର ଅଏଲି ମାରା
ଖୋଲି କାଇ ଦୂରେ ଯାଇ । (ଅଇଲି ଗୀତ : ବିବାହ ସମୟର ଗୀତ)

ଅର୍ଥାତ୍ ହୃଦୟ ଭିତରୁ ମୁଁ ଗୀତ ଗାଉଚି-କ୍ୱଚିତ୍ ଏମିତି ଘଟିଥାଏ- ଏଇ ସମୟର ଗୀତରେ ମନ ଏତେ ଭଲୁସିଢଙ୍କ ଯେ କୋଳି ଖାଲିଖାଇ ରାସ୍ତାରେ ଯିବାଭଳି ଲାଗେ । ବିବାହ ସମୟର ଅଏଲ ଗୀତ ଯାହା କେବଳ କନ୍ୟା ସଙ୍ଗେ ଯାଇଥିବା ସ୍ତ୍ରୀମାନେ ଗାଆନ୍ତି । ଏଥିରେ ଥଟ୍ଟା, ପରିହାସ ଇତ୍ୟାଦି ରହିଥାଏ ।

୮. **ଶନିବୀରୁ** - *ଦେ.ବି. :* ବଣ୍ଡା ସମାଜରେ ପ୍ରଚଳିତ ବୀରୁ ବା ପୂଜା ବିଶେଷ । ଅନେକ ଦିନ ଧରି କୌଣସି ବଣ୍ଡା ରୋଗଭୋଗି ସୁସ୍ଥ ନହେଲେ ତାରି ରୋଗମୁକ୍ତି ବା ଆରୋଗ୍ୟଲାଭ ପାଇଁ ସୀସା (ଦିସାରୀ/ପୂଜାରୀ) ଚଲା ରାସ୍ତାରେ ଶିନିବୀରୁ କରିଥାଏ । ପୂଜାଦିନ ରୋଗ ଭୋଗୁଥିବା ବ୍ୟକ୍ତି ଗ୍ରାମବାସୀଙ୍କୁ ଭୋଜି ଦେଇଥାଏ । ବୀରୁ ସମୟରେ କିଛି ନା କିଛି ଜୀବନ ବଳିଦେବାକୁ ପଡ଼େ । ପରେ ଦିସାରୀ ରୋଗୀକୁ କିଛି ଚେର ମୂଳୀ ଖାଇବାକୁ ଓ ଲଗାଇବାକୁ ଦେଇଥାଏ ।

୯. **ଶିର୍‌ହା ବା ଶିରା** - *ଦେ.ବି. :* ଗୁଣିଆ ବା ବଇଦ । ଇଂ- the black magician, physician ବିଭିନ୍ନ ଆଦିବାସୀ ସମାଜରେ ଯେଉଁମାନେ ବୈଦ୍ୟ କର୍ମ କରନ୍ତି ବା ଗଭଣି ଗାରେଡ଼ି କରନ୍ତି, ଭୂତପ୍ରେତ ଛଡ଼ାନ୍ତି ଏବଂ ଯେଉଁମାନେ ଦେବୀ, ଦେବତାଙ୍କୁ ବା ଡୁମ୍ୱାକୁ ନିଜ ଦେହରେ ଆବାହନ କରି ଧାରଣ କରନ୍ତି ଓ ଲୋକମାନଙ୍କର ଶୁଭାଶୁଭର କାରଣ ନିର୍ଣ୍ଣୟ କରି ସାମାଧାନର ବାଟ ବିତାନ୍ତି, ସେମାନଙ୍କୁ ଶିରା ବା ଶିରହା କୁହାଯାଏ । କୋୟା ସମାଜରେ ଏମାନଙ୍କୁ ଓ୍ୱାଡ଼େ, ବଣ୍ଡା ସମାଜରେ ଦିଶାରି ଏବଂ ଅଣ ଅଦିବାସୀ ସମାଜରେ କାଲେସୀ କୁହାଯାଏ ।

ଶିରା ଦେହରେ ଡୁମ୍ମା ବା ଦେବତା ପ୍ରବେଶ କରିବା ପରେ ଯାଇ ସେ ଲୋକମାନଙ୍କ ବିଭିନ୍ନ ସମସ୍ୟାର ସମାଧାନ ନିମିତ୍ତ ଠିକ୍ ଉତ୍ତର ଦେଇପାରେ ବୋଲି ଲୋକ ବିଶ୍ୱାସ । ଶିରାକୁ ଆଦିବାସୀମାନେ ଭୟ ଓ ଭକ୍ତି କରନ୍ତି । ପୂଜା ପାଇଁ ସେମାନେ ଶିରାଂକୁ ଦେଉଥିବା ବିଭିନ୍ନ ପୂଜା ସାମଗ୍ରୀ ଯଥା: ନଡ଼ିଆ, କଦଳୀ, ଧୁପ୍‌ନି, କୁକୁଡ଼ା, ପାରା, ଛେଳି, ମଦ, ଅଣ୍ଡା ଓ ଅନ୍ୟାନ୍ୟ ବଳି ସାମଗ୍ରୀ ଉପରେ ଶିରାର ସିଂହଭାଗ ଅଧିକାର ଥାଏ । ବିଭିନ୍ନ ରୋଗ ବୈରାଗ୍ୟ ଭଲ କରିବା ପାଇଁ ଶିରାମାନେ

ନିଜ ଭାଷାରେ ମନ୍ତ୍ରପାଠ ଓ କଳାପୋଷାକ ପିନ୍ଧି ଦେବତାବାଦ୍ୟ ବଡ଼ନାଗରା ତାଳରେ କାଳିସୀନୃତ୍ୟ କରିଥାନ୍ତି । କୋୟାଶିରା (ଦିସାରୀ)ମାନେ ଏଦିଗରେ ସବୁଠୁ ବେଶି ପ୍ରଖ୍ୟାତ । ଶିରାମନ୍ତ୍ରର ଉଚ୍ଚାରଣ ବହୁ ପରିମାଣରେ ବୈଦିକମନ୍ତ୍ରର ଅନୁରୂପ ।

୧୦. ଶିରି - *ଦେ.ବି. :* ଉଚ୍ଚ, ଖୁବ୍ ଉଚ୍ଚ ଇଂ- High

ଯଥା : ଶିରି ପରବତେ ଝାଲିଆ ମଞ୍ଜୁର ଟେକା ଟେକାୟଲା । (ଉଚ୍ଚ ପର୍ବତରେ ମୟୂର ଶିଖା ଟେକିଲା) । ଏହି ଶିରି ଶବ୍ଦ ମୁଖ୍ୟତଃ ଦେଶିଆ ଗୀତରେ ବ୍ୟବହୃତ ହୋଇଥାଏ ।

୧୧. ଶିଲଫୁଟା - *ଦେ.ବି. :* ପୃଥିବୀ ମାଟି : ଶିଲ ଫାଟି ପୃଥିବୀ ଫଟାଇ ବାହାରିଥିବା ଦେବୀ ।

"ଶିଲଫାଟି କରି ଜାତ ହୋଇଛି, ଗୀତରେ ବ୍ୟବହାର : ବୁଢ଼ୀ ଠାକୁରାଣୀ ମାତା ।" (ଚଇତି ପରବ ଗୀତ ।)

୧୨. ଶିଶା / ଡାଉଶିଶା - *ଦେ.ବି. :* ବଣ୍ଡା ଗ୍ରାମର ଦେବ ପୂଜା କରୁଥିବା ବ୍ୟକ୍ତି । ଦେଶିଅମାନଙ୍କ ପୂଜାରୀ, ଗାଦବାମାନଙ୍କ ପୂଜେଇ, କନ୍ଧମାନଙ୍କ ଜାନୀ ଓ ଗଣ୍ଡମାନଙ୍କ ପୂଜାରୀ ସହ ଶିଶାମାନଙ୍କୁ ତୁଳନା କରାଯାଇପାରେ । ପ୍ରତ୍ୟେକ ଗାଁର ପ୍ରତିଟି ସିନ୍ଧିବୋର୍ ପାଇଁ ଜଣେ ଶିଶା ଓ ଅନ୍ୟଜଣେ ଡାଉଶିଶା ନିଯୁକ୍ତ ହୋଇଥାନ୍ତି । ଡାଉଶିଶା ହେଉଛନ୍ତି ସାନ ଶିଶା । ଶିଶା ଓ ଡାଉଶିଶା ମିଶି ସମସ୍ତ ପାଠ କର୍ମକାଣ୍ଡ କରିଥାନ୍ତି । ଏଥିରେ ଏମାନଙ୍କୁ ସାହାଯ୍ୟ କରିବା ପାଇଁ ଜଣେ କିମ୍ବା ଦୁଇଜଣ ବାଳକଙ୍କୁ ଶିକ୍ଷାର୍ଥୀ ରୂପେ ଶିଶା ନିଯୁକ୍ତି ଦେଇଥାଏ । ଏମାନେ ହେଉଛନ୍ତି ଭବିଷ୍ୟତର ଡାଉଶିଶା । ଶିଶାଘରେ ସେଇ ଗାଁର ପବିତ୍ର ଢ଼ୋଲ ବା କିଡ଼ିଂସାଗର ରଖାଯାଇପାରେ ।

୧୩. ଶିଶାରିଜୋକନା - *ଦେ.ବି. :* ଶୁଶୁରି ପୀର : ନବରଙ୍ଗପୁର ଜିଲ୍ଲା ପୋଡ଼ାଗଡ଼ (ପୁଷ୍କରୀ ରାଜ୍ୟର ରାଜଧାନୀ ଖ୍ରୀ : ୫୦୦-୬୦୦) ଠାରେ ଥିବା ଏକ ଗୋଲାକାର ପଥର । ଲୋକବିଶ୍ୱାସ ଯେ ଯେଉଁ ଯୁବକ ଗୋଟିଏ ନିଃଶ୍ୱାସରେ ଶୁଶୁରି (ହ୍ୱିସିଲ୍) ମାରି ଏହି ପଥର ପରିକ୍ରମା କରିପାରେ, ସେ ତା ମନ ପସନ୍ଦର ଯୁବତୀକୁ ବିବାହ କରିଥାଏ । ଏହିଠାରେ ଯୁବକ ଯୁବତୀମାନେ ନିଜ ନିଜ ଭିତରେ ଭାବ ବିନିମୟ କରିଥାନ୍ତି ଓ ବାଲିଫୁଲ (ସଙ୍ଗାତ / ମଇତ୍ର) ବାନ୍ଧିଥାନ୍ତି । ଏହା ମଣ୍ଡେଇ ପରବ (ମାଘ-ଫାଲଗୁନ୍) ସମୟରେ ହୋଇଥାଏ ।

୧୪. **ଶୁକୁଲି ବିଭା** - *ଦେ.ବି. :* ବିବାହ ପରବର୍ତ୍ତୀ ଏକ କ୍ରିୟାନୁଷ୍ଠାନ । ବିବାହ ଉପରାନ୍ତେ କନ୍ୟା ଓ ବର ବାଦ୍ୟ ବାଜଣା ଏବଂ ଫାଳର ଟିଙ୍ଗିଟିଙ୍ଗି ଶବ୍ଦ ସହ ଯାଇ ଶୁକୁଲି (ଏକ ପ୍ରକାର ଘାସ) କାଟି ଆଣନ୍ତି । ବର ଏକ ଦାଆ ଏବଂ କନ୍ୟା ଏକ ଦାଆ ଧରିଥାଏ । ଅନ୍ୟମାନେ ଇତି ମଧ୍ୟରେ ଏକ କୁଟୀର ଛାଞ୍ଚ ନିର୍ମାଣ କରିଥାନ୍ତି । ଏମାନେ ଆଣିଥିବା ଶୁକୁଲି ଘାସରେ ଏହା ଛପର କରନ୍ତି । ସେଠି ଗୋଟିଏ ଦନାରେ ଚରୁ ନେଇବରକନ୍ୟା ସବୁ ଦେବାଦେବୀଙ୍କୁ ସମର୍ପଣ କରି ପରସ୍ପରକୁ ଖୁଆଖୋଇ ହୋଇ ଥାଆନ୍ତି । ହାସ୍ୟରସ ବିଶାରଦ ଜଣେ ବୟସ୍କବ୍ୟକ୍ତି ବରକନ୍ୟାଙ୍କୁ ଜୀବନ, ଜୀବିକା, କଥା କହେ । ଯଥା : ବରକୁ ପଚାରେ "ତୁ କାଠ ଆଣିପାରିବୁ କି ନାହିଁ ? ମୁଦି, ମାଳି, ଶାଢ଼ି କିଣିଦେଇ ପାରିବୁ କି ନାହିଁ ?" ପୁଣି କନ୍ୟାକୁ ପଚାରେ ଧାନ କାଟି ପାରିବୁକି ନାହିଁ ? ମାଣ୍ଡିଆ ଘୋରି ପାରିବୁ କି ନାହିଁ ?" ପାଣି ଗରମ କରି ଦେଇ ପାରିବୁ କି ନାହିଁ ? ଇତ୍ୟାଦି । ଏହା ବଡ଼ଗାଦବା ସମ୍ପ୍ରଦାୟର ଏକ ନିଶ୍ଚିତ ବିଧି । ଅନ୍ୟାନ୍ୟ ସଂପ୍ରଦାୟରେ ମଧ୍ୟ ଏହା ଅଳ୍ପେ ବହୁତେ ପ୍ରଚଳିତ । କେତେକ ସଂପ୍ରଦାୟରେ ଏହା ଖୁବ୍ ରସରସିଆ ହୋଇଥାଏ ।

୧୫. **ଶୁସୁରାପାଟା** - *ଦେ.ବି. :* (ଶୁସାରା : ଦେଢ଼ଶୂର / ପାଟା : ଲୁଗା) ଦେଢ଼ଶୁରକୁ ଦିଆଯାଉଥିବା ଲୁଗା । ପ୍ରାୟ ଅଧିକାଂଶ ଆଦିବାସୀ ସମ୍ପ୍ରଦାୟରେ ଏହି ପ୍ରଥା ପ୍ରଚଳିତ । (ଦ୍ରଷ୍ଟବ୍ୟ : ଶାସପାଟା ।)

୧୬. **ଶେବର ଲୁବାଇ ଡାକ** - *ଦେ.ବି. :* ବଣ୍ଡା ସମାଜରେ ପ୍ରଚଳିତ ଏକ ପ୍ରକାର ଲାଲ ରଙ୍ଗର ପୋହଳା ମାଳି । ବଣ୍ଡା ରମଣୀମାନେ ଏହା ବହୁ ସଂଖ୍ୟାରେ ଗୋଛାଗୋଛି କରି ପିନ୍ଧିଥାନ୍ତି ଓ ବସ୍ତ୍ରର ରୂପରେ ଏଥିରେ ନିଜର ବକ୍ଷକୁ ଘୋଡ଼ାଇ ଥାନ୍ତି ।





୧. ସଇକୁଲ - *ଦେ.ବି. :* ବିବାହ ସଂପର୍କୀୟ ପ୍ରଥା ବିଶେଷ । ଗାଁ ନାୟକ ଜରିଆରେ ଝିଅର ପିତାକୁ ବିବାହ ପ୍ରସ୍ତାବ ଦେବା ପ୍ରଥା । ସାଧାରଣତଃ ଏହା ମାଗ୍‌ନି ବିଭାରେ ଅନୁସରଣ କରାଯାଇଥାଏ । ଇଂ- A marriage related custom.

୨. ସକ୍‌ଡ଼ି - *ଦେ.ବି. :* ଅଇଁଠା ବା ଉଚ୍ଛିଷ୍ଟ : ଅଧା ଖାଇ ଛାଡ଼ି ଯାଇଥିବା ଖାଦ୍ୟ । ହିନ୍ଦୁ ଧର୍ମର ଚଳଣି ଅନୁସାରେ ସ୍ୱାମୀ ଅଧାଖାଇ ଛାଡ଼ିଯାଇଥିବା ଖାଦ୍ୟକୁ ସ୍ତ୍ରୀ ଖାଇବାଟାକୁ ପୁଣ୍ୟ ବୋଲି ଧରାଯାଏ । କିନ୍ତୁ ଆଦିବାସୀର ଚଳଣି ଅନୁସାରେ ଏହା କେବେ ହୋଇ ନଥାଏ । ଏପରିକି ଚିନ୍ତା ମଧ୍ଯ କରାଯାଇ ନଥାଏ । ଅନ୍ୟର ସକ୍‌ଡ଼ି ଖାଇବାକୁ ଲୋକେ ଘୃଣା କରନ୍ତି । କିନ୍ତୁ ୨/୩ ଜଣ ମିଶି ଗୋଟିଏ ଚଡୁଆରେ ଖାଇବାରେ କିଛି ବାଧା ନଥାଏ । ଆଦିବାସୀମାନେ କାହାକୁ ହେଲେ ନିଜର ସକ୍‌ଡ଼ି ଖାଇବାକୁ ଦିଅନ୍ତି ନାହିଁ । ଏପରିକି ଭିକାରୀକୁ ମଧ୍ଯ ଦିଅନ୍ତି ନାହିଁ । ଅନ୍ୟ କୌଣସି ସାହକୁକାର ଲୋକ ଗୋତି ବା ମଜୁରିଆକୁ ସକ୍‌ଡ଼ି ଦେଲେ ତାହାକୁ ଖୁବ୍ ନାପସନ୍ଦ କରାଯାଇଥାଏ । ଭାଷାରେ ବ୍ୟବହାର :

ଯଥା : (୧) ଇତିସିତି ସକ୍‌ଡ଼ି ବିଚି ଏଇ ରଇସି, ବାଡ଼ାନ୍ ଦିଆସ୍ ।

(୨) ସକ୍‌ଡ଼ି ବାତ୍ କାକେ ନ ଦିଆସ୍ । ପାପ୍ ଲାଗ୍‌ସି ।

୩. ସଗର୍‌ତା - *ଦେ.ବି. :* (୧) କନ୍ୟାସୁନା ବା କନ୍ୟା ବଦଳରେ ବରଘର ତରଫରୁ ଦିଆଯାଉଥିବା ବା ମିଳୁଥିବା ଅର୍ଥ ଓ ଅନ୍ୟାନ୍ୟ ଦ୍ରବ୍ୟ । Bridal dowry ବିଂ- ପ୍ରଥମ ସ୍ୱାମୀଙ୍କୁ ଛାଡ଼ିଥିବା ସ୍ତ୍ରୀ । ଯେପରିକି : ସଗର୍‌ତା ମାଇଜୀ ।

ଗୀତରେ ବ୍ୟବହାର : "ମାଣ୍ଡିଆ କାକଡ଼ା ଚେପ୍‌ଟା ଦାଡ଼ା
ଫୁଲ୍ ଫୁଟେ ଗାଡ଼ା ଗାଡ଼ା
ମୁଏଁ ମେଶ ନାଇ ରିଟାଇ ଗଡ଼ା,
ସଗର୍ତା ମାଇଜି ଲୋଡ଼ା ।"

(ଅର୍ଥାତ୍ : ମୁହଁରେ ନିଶ ଉଠିନାହିଁ, ଅଥଚ, ସେ ସରୁ ଗୋଡ଼ିଆ ରହୁଁଛି ସଗର୍ତା ସ୍ତ୍ରୀ ବା ଅରିଝା ନାରୀ)

ଜଲା ଓ ସଗରତା ଭିତରେ ପାର୍ଥକ୍ୟ ହେଉଛି, ଜଲା ଲାଗୁ ହୁଏ ଡିଣ୍ଡା ବା ଅବିବାହିତ ଝିଅ ପାଖରେ । ବିଧବାଙ୍କ ପାଖରେ ମଧ୍ୟ ଜଲା ଲାଗୁଥାଏ । ସଗର୍‌ତା ହେଉଛି ବିବାହିତ ନାରୀ ଜଣକୁ ଛାଡ଼ି ଅନ୍ୟ ଜଣଙ୍କ ପାଖକୁ ଗଲେ, ସେହି ପୁରୁଷଠାରୁ ପୂର୍ବସ୍ୱାମୀ ଓ ତା'ର ଜ୍ଞାତି କୁଟୁମ୍ବ ଦାବି କରୁଥିବା ଅର୍ଥ । ଏହା ସାଧାରଣତଃ ସେହି ସ୍ୱାମୀ ଦେଇଥିବା କନ୍ୟା ଜଲାର ୨ ଗୁଣ ବା ତାଠାରୁ ଅଧିକ । ପରିସ୍ଥିତି ଅନୁସାରେ ଏହାର ପରିମାଣ ନିର୍ଦ୍ଧାରିତ ହୋଇଥାଏ । ବେଳେବେଳେ ୧୦-୨୦ ଗୁଣ ମଧ୍ୟ ହୋଇଥାଏ । ତେଣୁ ଏହା ଏକ ପ୍ରକାରର ସାମାଜିକ କଟକଣା ବା ଜୋରିମାନା ।

ସ୍ତ୍ରୀ ଯଦି ବିଧବା ହୋଇଯାଏ ଏବଂ ରାଣ୍ଡ ବିଭା ପ୍ରଥା ଅନୁଯାୟୀ ନିଜ ଦିଅରକୁ ବିବାହ ନ ହୋଇ ଅନ୍ୟ କାହାକୁ ସ୍ୱାମୀ ଭାବରେ ଗ୍ରହଣ କରେ, ତେବେ ସେହି ସ୍ୱାମୀ ଦେଉଥିବା ଅର୍ଥ ପ୍ରଥମ ସ୍ୱାମୀ ନେଇଥିବା ଜଲାଟଙ୍କାଠାରୁ କମ୍ ହୋଇଥାଏ । ଏହାକୁ ସଗରତା ନ କହି କୁହାଯଏ 'ରାଣ୍ଡିଜଲା' । ପୁଣି ସ୍ୱାମୀ ନିର୍ଯାତନା ସହି ନ ପାରି ସ୍ତ୍ରୀ ଯଦି ବାପଘରକୁ ଯାଇ ପରିବାରର ସମ୍ମତି କ୍ରମେ ଓ ଦୁଇ ଗାଁ ବାଲାଙ୍କ ବିଚାର ଅନୁସାରେ ଅନ୍ୟ ସ୍ୱାମୀକୁ ଯାଏ, ସେ କ୍ଷେତ୍ରରେ ସଗରତା ଟଙ୍କା ପଞ୍ଚାୟତରେ ବିଚାର ଅନୁଯାୟୀ ଧାର୍ଯ୍ୟ ହୁଏ । ପୂର୍ବ ସ୍ୱାମୀର ମନୋମୁଖୀ ସଗରତା ଦାବି ସେ କ୍ଷେତ୍ରରେ ପଞ୍ଚାୟତ ବିଚାରରେ କାଟ ଖାଇ କିଛିଟା କମ୍ ହୁଏ । କିନ୍ତୁ ସ୍ୱାମୀ ରହିଁବା ସତ୍ତ୍ୱେ ସ୍ତ୍ରୀର ମନ ଯଦି ତା ପାଖରେ ନ ରହେ ଏବଂ ସେ ଅନ୍ୟ ପୁରୁଷକୁ ଯାଏ, ତେବେ ସଗରତା ପରିମାଣ ଜଲା ଅର୍ଥ ତୁଳନାରେ ବହୁଗଣିତ ହୋଇଥାଏ ।

ସେହିପରି ଅନେକ ସ୍ଥଳରେ ସ୍ୱାମୀର ନିର୍ଯାତନା ପ୍ରମାଣ ହେଲେ କିମ୍ୱା ସ୍ୱାମୀ ପଞ୍ଚାୟତ ନ କରି କୋର୍ଟ କଚେରୀ ଗଲେ, ପଞ୍ଚାୟତ ସାମାନ୍ୟ କିଛି ଅର୍ଥ ସଗର୍ତ । ସ୍ୱରୂପ ଦାବୀ କରିଥାଏ, ଦ୍ୱିତୀୟ ସ୍ୱାମୀ ନୀଚଜାତିର ହୋଇଥିଲେ, ସେ କ୍ଷେତ୍ରରେ ମଧ୍ୟ ସଗରତା ନେବାରେ ଅନେକ ଅସୁବିଧା ଦେଖାଦିଏ । ଅଧିକାଂଶ ଜାଗାରେ ସଗରତା ଅର୍ଥ ନେଲେ ଜାତି ଯିବା ଭୟରେ ପ୍ରଥମ ପକ୍ଷର ସ୍ୱାମୀର ପରିବାର ସଗର୍ତା ଅର୍ଥ ଦେଇଥାଏ ଏବଂ ସେହି ଝିଅକୁ ମୃତ ବୋଲି ଧରିନିଏ ।

## କେତେଟି କେଶ୍ ଅଧ୍ୟୟନ :

ପ୍ରଥମ କେଶ - ଗୁଣ୍ଡାଓ୍ବାଡ଼ା ପଞ୍ଚାୟତର ଟାଟ୍‌ମେନ୍ ଗୁଡ଼ାର ଜଣେ ଝିଅ ଚନ୍ଦ୍ରମା ମୁଦୁଲି ବିଭା ହୋଇଥିଲା ପାପ୍‌ଲୁର ପଞ୍ଚାୟତ କୁରମାନୁର ଗାଁର ଜଣେ ପୁଅକୁ । ଜାତି ପରଜା । ସେ ଝିଅ ପୁଅକୁ ପସନ୍ଦ କଲା ନାହିଁ । ସେ ବାପଘରକୁ ପଳାଇ ଆସିଲା ଓ କିଛିଦିନ ପରେ ଅନ୍ୟ ଜଣେ ପୁଅକୁ ବିଭା ହେବା ପାଇଁ ସ୍ଥିର କଲା । ଏତିକି ବେଳେ କୁରମାନୁରରେ ପୁଅ ତା' ଗାଁ ଲୋକଙ୍କୁ ଧରି ଚନ୍ଦ୍ରମାକୁ ନେବାକୁ ଆସିଲା ଓ ଜବରଦସ୍ତ ଧରି ନେଲା । ସେଠାରେ ୨ ଗାଁର ପଞ୍ଚାୟତ ପାଖରେ ପୂର୍ବ ସ୍ୱାମୀ ଜଲା ଅର୍ଥର ୨୦ ଗୁଣ ଟଙ୍କା, ଅର୍ଥାତ୍ ୨୫ ହଜାର ଟଙ୍କା ଦାବୀ କରି ବସିଲା । ଝିଅପକ୍ଷ ଏହା କମାଇବାକୁ ଦାବୀ କରିବାରୁ ସେମାନେ ଜବରଦସ୍ତ ଝିଅକୁ କବାଟ ବନ୍ଦ କରି ଗାଁ ଲୋକଙ୍କୁ ଲେଉଟାଇ ଦେଲେ । ତା'ପରେ ତା ଉପରେ ବିବିଧ ନିର୍ଯାତନା ଚାଲିଲା । କିନ୍ତୁ ପୁଣି ଥରେ ସେ ଝିଅ ସୁବିଧା ଦେଖି ଘରୁଲୁଚି ପଳାଇ ଆସିଲା ଓ ଜିଲ୍ଲା ଆଦିବାସୀ ସଂଘର ବିଚାର ପ୍ରାର୍ଥୀ ହେଲା । ବିଚାରରେ ସଗର୍ଡାକୁ ୧୦ ହଜାର ଟଙ୍କା କରିବା ପାଇଁ କୁହାଗଲା । ହେଲେ ପ୍ରଥମ ସ୍ୱାମୀ ରାଜି ହେଲାନାହିଁ, କିନ୍ତୁ ଆଉଥରେ ତାକୁ ଝିକିନେବାକୁ ସାହସ କଲାନାହିଁ । ଏହିପରି ବର୍ଷେ ଦୁଇବର୍ଷ ଯିବା ପରେ ଅର୍ଥାତ୍ ୨୦୦୧ ବେଳକୁ ସେ ଜଲା ଟଙ୍କା ଫେରାଇ ନେଇ ନୂଆଘର ବସାଇଛି ।

୨ୟ କେଶ୍ : ଗୋଟିଏ ଗୌଡ଼ ପିଲା ଜଣଙ୍କ ଘର ଜ୍ୱାଇଁ ରହିଗଲା । ଗାଁ ଗଲଗୁଡ଼ା ଗୁଣ୍ଡାବେଡ଼ା ପଞ୍ଚାୟତର । ତାର ସ୍ତ୍ରୀ ବାଉଁଶ କ୍ୟାମ୍ପକୁ କୁଲିକାମ କରିବାକୁ ଯାଇ ଜଣେ ଡମ ପିଲା ସାଙ୍ଗରେ ପଳାଇଗଲା । ସେ ମଧ୍ୟ ସେଠାରେ କୁଲି କରୁଥିଲା । ଗଲଗୁଡ଼ାର ଲୋକମାନେ ବାଉଁଶ କ୍ୟାମ୍ପରେ ପହଞ୍ଚି ତାକୁ ଖୋଜିଲେ । ଦୁହେଁ ସେଠାରେ ନଥିବାରୁ ସଗର୍ଡା ପାଇଁ ଖବର ଦେଇ ଆସିଲେ । ଏକ ମାସ ପରେ ମୋନେ ଉଦ୍‌ଲିଆରୁ ଫେରିବାରୁ ସଗର୍ଡା ବିଚାର ହେଲା । ସେଠାରେ ପୁଅର ଲୋକେ ପଚାରିଲେ- "ତୁମେ ସଗର୍ଡା ନେବନା ଜାତି ନେବ ?" ଝିଅର ଲୋକ କହିଲେ- "ସଗର୍ଡା ନେବୁ । ତେବେ ଡମଙ୍କ ନିୟମାନୁସାରେ ପ୍ରଥମେ ଗୋଟିଏ ବଳଦ ଦିଆଯିବ । ସେଥିରେ ଭୋଜି ହେବ । ତୁମେ ଦୁଇ ପକ୍ଷ ଯାଇ ସେ ଭୋଜି ପ୍ରଥମ ଖାଅ । ତା'ପରେ ସଗର୍ଡା ନ୍ୟାୟ ହେବ ।" ସେଥିରୁ ଗଉଡ଼ମାନେ ଡରିଯାଉ କହିଲେ, "ଆମ ସଗର୍ଡା ଋହୁଁନାହିଁ । ଜାତିନେବୁ । ପିଚିଶି ହଜାର ଟଙ୍କା ଦିଆସ ।" ପୁଅପକ୍ଷ କହିଲେ "ସେ ପିଲା ତ

ଭୂମିହୀନ ଗୋତିଥିଲା । ଭୂମି ଥିଲା ନିଅନ୍ତ କେଉଁଠୁ ଆଣି ସେ ପଇସା ଦେବ ? କମ୍ପାନୀ ଦେଇଛି ପନ୍ଦରଶହ । ନେଲେ ନିଅ ସେତକି ।" ହଠାତ୍ ଝିଅ-ଗାଁର ଜଣେ କମାର କହିଲା, "ପନ୍ଦର ଶହ ପଚାଶ ଟଙ୍କା ଦିଅ ।" ସେତିକିରେ କଥା ଛିଡ଼ିଲା । କିନ୍ତୁ ଯିଏ ଏକଥା କହିଥିଲା- ଗାଁକୁ ଫେରିବା ପରେ ତାକୁ ନିସ୍ତୁକ ମାଡ଼ ହେଲା ।

୪. **ସଙ୍ଗର ଗଡ଼ି** - *ଦେ.ବି. :* ଅନ୍ତରଙ୍ଗ ବନ୍ଧୁ / ସଖା / ମିତ୍ର ଇଂ- Best friend.

ଗୀତରେ ବ୍ୟବହାର : "ବାଲିଗାଉଁ ପେଟାଲଡ଼ି

ପିଲାଦିନେ ଆମେ ସଙ୍ଗର ଗଡ଼ି

ଚମ୍ପାଫୁଲ ପାରା ଗଡ଼ି ।"

ଅର୍ଥାତ୍ : ବାଲିଗାଁ ପାଖ ପେଟାଅଡ଼ି ଗାଁରେ ପିଲାଦିନୁ ଆମେ ଅନ୍ତରଙ୍ଗ । ଚମ୍ପାଫୁଲ ଯୋଡ଼ି ବନ୍ଧୁତା ଭଳି ଆମର ବନ୍ଧୁତା ।

୫. **ସଦର** - *ଦେ.ବି. :* ଗାଁ ଦାଣ୍ଡ ବା ସଭାସ୍ଥଳୀ । ଏହା ପ୍ରାୟତଃ ପ୍ରତ୍ୟେକ ଆଦିବାସୀ ଗ୍ରାମମାନଙ୍କରେ ରହିଛି । ଏହି ସ୍ଥଳରେ ନାଚ, ଗୀତ, ନ୍ୟାୟ-ଅନ୍ୟାୟ ବିଚାର, ବିଭିନ୍ନ ଯୋଜନା, ପର୍ବପର୍ବଣୀ ପାଳନ ଦିନ ଧାର୍ଯ୍ୟ ଆଦି ଗ୍ରାମବାସୀମାନେ କରିଥାନ୍ତି । ଏହା ଗ୍ରାମର ସାଧାରଣ ସଭାସ୍ଥଳୀ । ଗ୍ରାମ୍ୟମୁଖିଆ ଓ ସଭ୍ୟ ଆଦିଙ୍କ ବସିବା ନିମିତ୍ତ ସମତଳ ପୃଷ୍ଠଥିବା ବଡ଼ ବଡ଼ ପଥର ଏଠାରେ ପକାଯାଇଥାଏ । ବେଣ୍ଟ ପର୍ବରେ ଜନ୍ତୁ ଶିକାର କରି ଏ ସ୍ଥଳରେ ରଖାଯାଇ ନାଚ, ଗୀତ ଆଦି କରାଯାଇଥାଏ । ଏହାର ଏକ ପାର୍ଶ୍ୱରେ ବୃକ୍ଷ ମଧ୍ୟରୋପଣ କରାଯାଇଥାଏ । ଏହା ଏକ ପବିତ୍ର ସ୍ଥଳ ଏହା ବଣ୍ଡା ମାନଙ୍କର ସିନ୍ଧିବୋର, ଭୂଗେୟାମାନଙ୍କ ମେଳଣ, କୋୟାମାନଙ୍କ ଗୁଡ଼ି ଓ ପରଜାମାନଙ୍କ ବେରଣ ମୁଣ୍ଡା ସହ ସମାନ । ଏହା ଏକ ସାର୍ବଜନୀନ ଖୋଲାଜାଗା ।

ଗୀତରେ ବ୍ୟବହାର : ତୋର ଆୟାବୁଆକେ ସର୍‌ତେ ଡାକ୍, ସଦରରେ କାଟିବ ନାକ୍ । (ଚଇତି ପରବ ଗୀତ)

୬. **ସୋନୁପେନୁ** - *ଦେ.ବି. :* ପର୍ବତ ବା ପାହାଡ଼ ଦେବତା : ପାହାଡ଼ ପର୍ବତ ବା ପଥର ଦେହରେ ପୂର୍ବପୁରୁଷମାନଙ୍କ ଆତ୍ମା ଆଶ୍ରୟ ନିଏ ବୋଲି ବିଶ୍ୱାସ କରି କନ୍ଧମାନେ ଏଡି ପାହାଡ଼ ପର୍ବତର ପୂଜା କରିଥାନ୍ତି । ଏହିଭଳି ଭାବେ ଦେଖିବାକୁ ଗଲେ ନିଜର ଆବାସସ୍ଥଳୀ ନିକଟରେ ଥିବା ସବୁ ପାହାଡ଼ପର୍ବତ ହେଉଛନ୍ତି କନ୍ଧର ଦେବତା ।

୭. **ସୋନେମ୍** - *ଦେ.ବି. :* ଡୁମ୍ବା : ସଉରାମାନଙ୍କ ମୃତ ପିତୃପୁରୁଷଙ୍କ ଆତ୍ମା, ଯେଉଁମାନେ ପାତାଳରେ ବାସ କରନ୍ତି । ଅପକାରୀ ଶକ୍ତି ହେତୁ ସଉରାମାନେ ଏମାନଙ୍କୁ ବଳିଭୋଗ ଦେଇ ପୂଜା କରିଥାନ୍ତି । ଏହାକୁ 'କିନପୁର' କୁହାଯାଏ । ଏ ପୂଜାରେ ପରିବାରର ସମସ୍ତେ ପିତୃ ଲୋକଙ୍କୁ ବେଜୁଣୀ ଦ୍ୱାରା ଆବାହନ କରାଇଥାନ୍ତି । ସେଦିନ ସେମାନଙ୍କ ତୃପ୍ତି ନିମନ୍ତେ ଭୋଗ ରୂପରେ ଗୁଡ଼ପାଣି ଓ ମଦ ଦିଆଯାଏ । ସ୍ଥାନ ବିଶେଷରେ ବାଜା ବଜାଇ କୁକୁଡ଼ା, ଛେଳି ବଳି ଦିଆଯାଏ ।

୮. **ସନ୍ଧିପୂଜା** - *ଦେ.ବି. :* ସୂର୍ଯ୍ୟପୂଜା / ଏହା ମାଘମାସ ପୂର୍ଣ୍ଣିମା ବେଳକୁ ବିଭିନ୍ନ ଆଦିବାସୀମାନେ ପାଳନ କରିଥାନ୍ତି । ଏହା ସୂର୍ଯ୍ୟ ଦେବତାଙ୍କ ଶାନ୍ତିବିଧାନ ପାଇଁ କରାଯାଇଥାଏ । ଏହି ପୂଜାରେ ଏକବର୍ଣ୍ଣୀ କୁକୁଡ଼ା (ଧଳା କିମ୍ବା କଳା) ତିନୋଟିକୁ ନେଇ ହଳଦୀ ଲଗାଇ ଗାଧୋଇ ଦିଆଯାଏ । ଏହାପରେ କୁକୁଡ଼ାମାନଙ୍କୁ ମଦ ପିଆଇ ଦିଆଯାଇ ନିଜ ନିଜର ଧାନ କିଆରି ବା ଧାନ ଅମଳ ଖଳାକୁ ନିଆଯାଇ ସେଠାରେ ମେରିଆ ପୂଜା କରି ବଳି ଦିଆଯାଏ । ଏହି ପୂଜା ସମୟରେ ଗ୍ରାମରେ ବାହାର ଲୋକମାନଙ୍କୁ ପ୍ରବେଶ ନିଷେଧ ଥାଏ । ସାଧାରଣତଃ କୋରାପୁଟ ଜିଲ୍ଲାର ପେଣ୍ଟିଆ ସଂପ୍ରଦାୟ ଏହି ପୂଜା କରିଥାନ୍ତି । ଏହି ପୂଜା କଲେ ମୂର୍ଚ୍ଛାରୋଗ ରହେନାହିଁ ବୋଲି ଲୋକେ ବିଶ୍ୱାସ କରନ୍ତି ।

୯. **ସପୁର** - *ଦେ.ବି. :* ସରୁ : ମୋଟାର ବିପରୀତ, ଯଥା : ସପୁର ସେଲା ଗୁଡ଼ ବେଲା (ସରୁଧାନକୁ ମିଠାଗୁଡ଼) ଇଂ- Fine, tiny

ଛୋଟ ପୋକକୁ ମଧ୍ୟ ସପୁର କୀଡ଼ା କୁହାଯାଇଛି ।

୧୦. **ସପ୍ତଧାରା** - *ଦେ.ବି. :* ମାଲକାନିଗିରି ଜିଲ୍ଲାର ଏକ ପ୍ରସିଦ୍ଧ ନଦୀ । ଗୋବିନ୍ଦପାଲି ଘାଟିରେ ଥିବା ଉକାରୁ ପର୍ବତରୁ ବାହାରି ସାତୋଟି ଧାରାରେ ଏହା

ବହିଯାଉଛି । (ଏ ସଂପର୍କରେ ଥିବା ଲୋକ କଥା ଉକାରୁ ପର୍ବତ ଠାରୁ ଦ୍ରଷ୍ଟବ୍ୟ ।) ଏହା କିଆଙ୍ଗଠାରେ ମିଶିଛି କୋଲାବ୍ ନଦୀରେ । ଏହା ପରେ ନୂଆନଦୀଟିର ନାମ ହୋଇଛି ସାବେରୀ ।

୧୧. ସମିଗେରିଲାକ / ସୁମେଗୋରଲାକ - *ଦେ.ବି. :* ପର୍ବବିଶେଷ । ବନଜାତ ଦ୍ରବ୍ୟ ସଂଗ୍ରହ ଓ ଉପଯୋଗ ସହ ସଂପୃକ୍ତ । ରାଜା ସୋମେଶ୍ୱରଙ୍କ ଦେବଙ୍କ ସ୍ମୃତି ପାଳିତ ପର୍ବ । କୁହାଯାଏ, ଚକ୍ରକୋଟର ରାଜା ଜଗଦେବ ଭୂଷଣ ତାଙ୍କ ସମ୍ପର୍କିତ ଲୋକଙ୍କ ଚକ୍ରାନ୍ତରେ କେତେ ଛିନ୍ଦକ ନାଗସୈନ୍ୟଙ୍କ ସହ ଶିଶୁପତ୍ର ସୋମେଶ୍ୱରଙ୍କୁ ସାଙ୍ଗରେ ନେଇ ଚକ୍ରକୋଟ ତ୍ୟାଗ କରି ପୂର୍ବଘାଟ ପର୍ବତମାଳାର ଏକ ନିକାଞ୍ଚନ ଅଞ୍ଚଳ ଭାବେ ପରିଚିତ ଏହି ବଣ୍ଡାମାନଙ୍କ ପାହାଡ଼ରେ ଆଶ୍ରୟ ନେଇ ଥିଲେ । ସେଠାରେ ବଣ୍ଡା ଆଦିବାସୀମାନଙ୍କୁ ଏକଜୁଟ କରି ସେମାନଙ୍କୁ ଏକ ଦୁଦ୍ଧର୍ଷ ରଣ ପ୍ରିୟ ଜାତିରେ ପରିଣତ କରି ରାଣୀ ବୁଣ୍ଡି ମହାଦେଇ ପୁତ୍ର ସୋମେଶ୍ୱରଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କରାଇ ପିତୃରାଜ୍ୟ ଉଦ୍ଧାର କଲେ । ତାଙ୍କର ବିଜୟ ସ୍ମୃତିରେ ବଣ୍ଡାମାନେ ଏଇ ସେମିଗେରିଲାକ ପର୍ବ ପାଳନ କରିଥାନ୍ତି । ଏହି ପର୍ବରେ ଝାଟି ଯୁଦ୍ଧ ଏକ ମୁଖ୍ୟ ଆକର୍ଷଣ ପାଲଟିଯାଏ । ପୁଷମାସ ବା ଡିସେମ୍ବର / ଜାନୁୟାରୀରେ ସୁମେଗେରିଲାକ୍ ପର୍ବ ପାଳିତ ହୁଏ । ସେତେବେଳକୁ ଋଷ କାମ ଶେଷ ହୋଇଥାଏ, କିନ୍ତୁ, ବଣ୍ଡାଧାନ ପାଚିନଥାଏ । ଜଙ୍ଗଲରେ ଫଳିଥାଏ ଶିମ୍ବ, ଶିଅଳିଫଳ ଓ ଲଙ୍ଗଳ କନ୍ଦା । କିନ୍ତୁ, ଏହି ପର୍ବ ପାଳନ ପୂର୍ବରୁ ଏସବୁ ଖିଆଯାଏ ନାହିଁ । ସିନ୍ଦିବୋରଠାରେ ଶିଶା ଗିଆକ୍ ଡିଙ୍ଗ୍ ବା କଡ଼ିଂସାଗର ଦେବତାଙ୍କୁ ପୂଜାକରି ମୂଷା, କୁକୁଡ଼ା, ଅଣ୍ଡା ବଳି ଦେଇ ପୂଜା କରନ୍ତି । ଏହାପରେ ଯାଇ ଏସବୁ ଦ୍ରବ୍ୟ ଖିଆଯାଏ । ଆଉ ମଧ ଘରଛପର ପାଇଁ ଜଂଗଲରୁ ପିରି ଓ ଫୁଲଝାଡୁ ଏଇ ପର୍ବରେ ପରେ ସଂଗ୍ରହ କରାଯାଏ । ଏହି ପର୍ବ ପୂର୍ବରୁ ଘରଛପର, ଫୁଲଝାଡୁ ବିକିବା ଓ ପୂର୍ବୋକ୍ତ ଦ୍ରବ୍ୟ ଖାଇବା ମନା ।

୧୨. ସରଗି ଖମନ (ଶାଳବଣ) - *ଦେ.ବି. :* ସର୍ଗି ଗଛର ବଣ । ଇଂ- Sal Forest ଆଦିବାସୀ ସଂସ୍କୃତିରେ ସର୍ଗି ଖମନର ଗୁରୁତ୍ୱ କେତେ ବେଶୀ ତାହା ନିମ୍ନ ଲୋକଗୀତରୁ ଜଣାଯାଇଥାଏ :-

"ସରଗି ଖମନର ସୁଆଦ ବଡ଼
ସରତେ ଟୋକିବଲା ପାଟକେ ପଡ଼ା

ମାଗୁର ମାଚକେ ଆମ୍‌ଟ ଝୋଲ୍
ନନିର ପାଟପଢ଼ା ଅଦିକ୍ ବଲ୍ ।"

ଅର୍ଥାତ୍, ସର୍ଗିଜଂଗଲର ସୁଆଦିଆ ବଡ଼ାଛତୁ ଭଳି ଝିଅମାନଙ୍କ ପଠାପଢ଼ା ଆନନ୍ଦଦାୟକ । ମାଗୁର ମାଛର ଖଟା ଭଳି ଝିଅମାନଙ୍କ ପାଠପଢ଼ା ମଂଗଳଦାୟକ ।

ଶାଳ ଗଛ ଆଦିବାସୀ ଜନଜୀବନକୁ ବହୁଭାବେ ପ୍ରଭାବିତ କରିଥାଏ । ଆଦିବାସୀମାନେ ପ୍ରତ୍ୟହ ଶାଳପତ୍ରରେ ଦନା ତିଆରି କରି, ଖଲି ସିଲେଇ ସେଥିରେ ଭୋଜନ କରିଥାନ୍ତି । ଶାଳ ଦାନ୍ତକାଠି ସମସ୍ତଙ୍କର ଅତି ଆବଶ୍ୟକ । ଆଦିବାସୀମାନେ ଶାଳମଞ୍ଜି ବିକ୍ରୟକରି ଦି'ପଇସା ପାଇଥାନ୍ତି । ଶାଳଗଛ ଅତ୍ୟନ୍ତ ଲାଭଦାୟକ । ସରଗି ଖମନରେ ଶାଳପତ୍ର ପଚିଲେ ବଡ଼ ଛତୁ ହୋଇଥାଏ । ତାହା ଆଦିବାସୀମାନଙ୍କର ଅତି ପ୍ରିୟ ଖାଦ୍ୟ ।

ସେହିପରି ଶାଳ ରସରୁ ଉଭୟ ପ୍ରାକୃତିକ ଓ କୃତ୍ରିମ ଉପାୟରେ ଝୁଣା ତିଆରି ହୋଇଯାଏ । ଏହି ଝୁଣା ବା 'ଦୁପୁନି' ସଂଗ୍ରହ କରି ଆଦିବାସୀମାନେ ନିକଟସ୍ଥ ହାଟବଜାରରେ ବିକ୍ରିକରି ଗୁଜରାଣ ମେଣ୍ଟାନ୍ତି । ଶାଳମଂଜିରୁ ତିଆରି ହୁଏ ସାବୁନ ଓ ଔଷଧୀ ତେଲ । ସେଥିପାଇଁ ପ୍ରାୟ ୨ ମାସ ଧରି ଶାଳମଂଜି ସଂଗ୍ରହ ଓ ବିକ୍ରୟ କରାଯାଏ । ଏହିପରି ଆଦିବାସୀ ଅର୍ଥନୀତିରେ 'ସରଗି ଖମନ୍' ଏକ ମୁଖ୍ୟ ସ୍ଥାନ ପାଇଥାଏ । ଆଦିବାସୀ ସଂସ୍କୃତି ସହ ମଧ୍ୟ ଏହା ବିଶେଷଭାବେ ଜଡ଼ିତ । ବିନା ସର୍ଗିପତ୍ର ବା ଡାଳରେ ବହୁ ପର୍ବ ହୋଇପାରେ ନାହିଁ ।

୧୩. **ସରଲା** – *ଜତ୍ରୀ: କ୍ରି.ବିଂ :* ତୁହାକୁ ତୁହା ବର୍ଷା । ଘଡ଼ିକୁ ଘଡ଼ି ବର୍ଷା । ଇଂ- Heavy rain with breaks.

ଉଦାହରଣ : ନାଙ୍ଗର ଲାଗ୍‌ବୋ କାଜେ ଦୁଇ ତିନି ସର୍‌ଲା ନିକେ ଲାଗୁଆୟ । (ଲଙ୍ଗଳରେ ଜମିକୁ ଚଷିବା ପାଇଁ ତୁହାକୁ ତୁହା କେତେ ବର୍ଷାଲୋଡ଼ା । ନିଶ୍ଚୟ ବର୍ଷାଲୋଡ଼ା ।)

୧୪. **ସରସରା ପାଟା (ଗୀତ)** – *ଗ.ଦେ.ବି. :* ପହେଲି ଗୀତ। (ଦ୍ରଷ୍ଟବ୍ୟ : ଫନ୍ଦି:ଶୁଳକ ।) ଇଂ- Riddle.

୧୫. **ସରୁଭାଇ :** *ଗା.ବି. :* ଗାଦବା ଆଦିବାସୀମାନଙ୍କ ଏକ ବିଶେଷ ଗୋଷ୍ଠୀ । ସ୍ୱଗୋତ୍ର ମଧ୍ୟରେ ତଥା ନିର୍ଦ୍ଦିଷ୍ଟ ବଂଶ ଦଳ ମଧ୍ୟରେ ଏକ ସ୍ୱତନ୍ତ୍ର / ଅଲଗା ସମ୍ପର୍କ ଓ ସମ୍ମାନ ପ୍ରଚଳିତ ରହିଛି । ଏହାକୁ ପୁରୁଷାନୁକ୍ରମେ 'ସରୁଭାଇ କୁହାଯାଏ' । ଗୋଟିଏ ବଂଶ ଅନ୍ୟ ଏକ ବଂଶକୁ ପାରମ୍ପରିକ ପ୍ରଥା ଅନୁସାରେ ସେବା ଦେଇଥାଏ । ବିବାହ, ଗତରପର୍ବ, ମୃଣହ, ସଂସ୍କାର କର୍ମ ଆଦିରେ ଏମାନେ ଖାଦ୍ୟ ରାନ୍ଧିଥାନ୍ତି । ବିବାହରେ ଖାଦ୍ୟରାନ୍ଧି କନ୍ୟାକୁ ଖୁଆଇ ବର ବଂଶରେ ମିଶାଇ ଥାନ୍ତି । ସରୁ ଅନ୍ନ କେବଳ ସରୁଭାଇ ମାନଙ୍କର ରାନ୍ଧିବା ଅଧିକାର ରହିଛି ।

ଯଦି ଜଣେ ଗଦବା ଘୋଡ଼ାକୁ ଛୁଏଁ (କଲାର / କଲେୟୀ ଗାଦବା ବ୍ୟତୀତ),

ନୀଚ ଜାତିରେ ବିବାହ କରେ, ନୀଚଜାତିର ଲୋକଙ୍କ ଠାରୁ ମାଡ଼ଖାଏ ବା ଖାଦ୍ୟ ପଦାର୍ଥ ଗ୍ରହଣ କରେ, ଜେଲଦଣ୍ଡ ଭୋଗିଥାଏ, ତେବେ ତାକୁ ଜାତିରୁ ବହିଷ୍କାର କରାଯାଏ । ଏଣୁ ଏମାନଙ୍କୁ ସ୍ୱଜାତିରେ ମିଶାଇବା ପାଇଁ ସରୁଭାଇ ମାନେ ଗତର ରାନ୍ଧି ସେମାନଙ୍କୁ ଖୁଆଇ ଜାତିରେ ମିଶାଇଥାନ୍ତି ।

୧୬. **ସଲ୍‌ପି / ସୁଲ୍‌ଫି ବା ଛିଟ୍‌କୁଲିଆ -** *ଦେ.ବି. :* ସଲପ ଜାତିର ଗଛ । ଏହି ଗଛଟି ଗୁଆଗଛ ଭଳି ସରୁ ଓ ଲମ୍ବା । ବିଶେଷ କରି ଚିତ୍ରକୋଣ୍ଡାର ଟାପୁ ଅଞ୍ଚଳରେ ଦେଖାଯାଏ । ଏହି ଗଛର ଅନ୍ୟ ଏକ ନାମ ଛିତ୍‌କୁଲିଆ । ଏଥିରୁ ମଧ୍ୟ ପୂର୍ବବର୍ଣ୍ଣିତ ପ୍ରକ୍ରିୟାରେ ରସ ବାହାର କରାଯାଏ । ତେବେ ଏହାର ରସ ଅପେକ୍ଷାକୃତ କମ୍ ହୋଇଥାଏ । କିନ୍ତୁ ସମାନ ସ୍ୱାଦ ବିଶିଷ୍ଟ ହୋଇଥାଏ । ସଲପ ଜାତିର ଅନ୍ୟ ଏକ ଉପଜାତି ବା ଇଂ- sub-specis

୧୭. **ସଲ୍‌ସଲି -** *ଦେ.କ୍ରିୟା.ବିଂ. :* ରୋମାଞ୍ଚିତ ହେବା । ଗୀତରେ ବ୍ୟବହାର : "ସଲ ସଲି ଗଲାଟକି । ପରର ଘଇତା ଦେଖି ।" ଇଂ- To get tempted.

ସାଧାରଣତଃ କୌଣସି ଯୁବତୀ ପର ପୁରୁଷକୁ ଦେଖି ରୋମାଞ୍ଚ ଅନୁଭବ କଲେ ଏହା କୁହାଯାଇଥାଏ ।

୧୮. **ସଲପ୍ -** *ଦେ.ବି. :* ସଲପ ଗଛର ରସ : ଖଜୁରୀ ଜାତୀୟ ଏକପ୍ରକାର ସୁଦୀର୍ଘ ସରଳ ଗଛ ।

ଆଦିବାସୀ ଅଞ୍ଚଳରେ ପ୍ରଚଳିତ ଏକ ଜନପ୍ରିୟ ପାନୀୟ । ଏହି ରସ ଜାତୀୟ ପାନ୍ୀୟ ସଲପ ଗଛର କେର ବା ଉପରେ ବାହାରିଥିବା ପିଲରୁ ନିର୍ଗତ ହୋଇଥାଏ । ଏହି ଗଛ ଖଜୁରୀ ଗଛ ଭଳି ଲମ୍ବା କିନ୍ତୁ ସଳଖ ହୋଇଥାଏ ।  ଏହାର ମୋଟେଇ ମୂଳଠାରେ ପ୍ରାୟ ପାଞ୍ଚ ଫୁଟ ହୋଇଥାଏ ଓ ଉର୍ଦ୍ଧ୍ୱରେ ପ୍ରାୟ ୩ଫୁଟ ହୋଇଥାଏ । ତାର ବାହୁଙ୍ଗାକୁ 'ରେମା' କହନ୍ତି । ପୁତ୍ର ଜୁପା ଜୁପା-ଓସାରିଆ । ଶୋଭାବନ୍ ବୃକ୍ଷ ଭଳି ପତ୍ର ଦେହରେ ହିଁ ଶାଖା ପ୍ରଶାଖା ଥାଏ । ଆଦିବାସୀମାନେ ଜଙ୍ଗଲରୁ ଏହାର ଗରା ସଂଗ୍ରହ କରିଥାନ୍ତି। ଜଙ୍ଗଲରେ ପୁରୁଣା ଗଛ ପାଖରେ ଏହାର ଫଳ ପଡ଼ି ଆପେ ଆପେ ପୁଆ ହୋଇଥାଏ । ବାରମ୍ବାର ରସି ନିଗାଡ଼ି ଗଛ ମାରିଦେବା ଫଳରେ ମଞ୍ଜି ଅଭାବରୁ ଗାଁମାନଙ୍କରେ ଏହାର ଗରା ଉଠିପାରିନଥାଏ । କେବେ କେମିତି କାହାରି ଗଛ ମୂଳେ ଗରା ହୋଇଥିଲେ ସେ ନିଜେ ତାହା ଅନ୍ୟତ୍ର ରୋପି ଥାଏ । ଏହି ଗଛ ଲଗାଇବାର ୧୨ ରୁ ୧୫ ବର୍ଷ ଭିତରେ ଏହାର ପ୍ରଥମ କେର ବାହାରେ । କେର ବାହାରିବା ପରେ ଢିଗିଡ଼ିଆ ଯୋଗାଡ଼ କରାଯାଏ । ସେ ଆସି ଶିରା (ବାଉଁଶ ସିଡ଼ି) ସାହାଯ୍ୟରେ ଏହି ଗଛରେ ଚଢ଼ି କେରକୁ ଦେଖେ ଓ କେଉଁ ସମୟରେ ତାହା ବାହାର କରାଯାଇ ପାରିବ, ତାର ଦନ ଧାର୍ଯ୍ୟ କରେ । ତାପରେ କାତି ଦ୍ୱାରା ଏହି କେରକୁ ପ୍ରାୟ ଫୁଟେ ଲମ୍ବାଇ କାଟିଦିଏ । ଏହି ସମୟରେ ଦିସାରୀ ଆସି କୁକୁଡ଼ା ବା ହଂସ ବଳିଦେଇ ସଲପ ଗଛ ମୂଳେ ବୀରୁ କରେ । ସେଇଦିନୁ ପ୍ରାୟ ଆଠଦିନ ଧରି ପ୍ରତିଦିନ ଢିଗିଡ଼ିଆ ଗଛ ଉପରକୁ ଯାଇ କେରକୁ ନିଜ ଗୋଡ଼ରେ ଚକଟି ଚକଟି କଅଁଳ କରେ । ଧାର୍ଯ୍ୟଦିନ ଆସିଲେସେଇ କେରକୁ ସାମାନ୍ୟ ଗଞ୍ଜି ତାର ଠିକ୍ ନିମ୍ନରେ ଏକ ଶିକା ଦ୍ୱାରା ମାଟି ହାଣ୍ଡିଟିଏ ଓହଳାଇ ଦିଏ । ଏଇ ହାଣ୍ଡିରେ ଗଡ଼ାଖୁରୀ ଗଛର ଚେର, ଦାତିକି ଗଛର ଛାଲି, ଟେଣ୍ଡକା ଗଛର ଚେର ବା ଛାଲିକୁ ମସଲା ଆକାରରେ ଦିଆଯାଏ । ୪/୫ଦିନରେ ଏଇ ହାଣ୍ଡି ଭରିଯାଏ । ଫୁଲ ସରିଲା ପରେ ଦିନକେ ହାଣ୍ଡିକ ଲେଖାଏଁ ସଲପ ମିଳେ । ଅନ୍ୟ ଏକ ରସପାତ୍ର ଓ ଲାଭଅନ୍‌କା ନେଇ ସଲପ୍ ବାହାର କରାଯାଏ । ରସପାତ୍ର ଜାଗାରେ ତୁମ୍ବା ମଧ ବ୍ୟବହାର କରାଯାଏ । ରଶିରେ ବାନ୍ଧି ଏହା ତଳକୁ ଓହ୍ଲାଯାଏ । ଶୀତଦିନେ ସାମାନ୍ୟ ଉଷୁମ କରି ଏବଂ ଖରାଦିନେ ଏହାକୁ ସିଧା ପାନ କରାଯାଏ । ଆଦିବାସୀମାନେ ଏହାକୁ ମା କ୍ଷୀର ବୋଲି କହନ୍ତି । ଘରକୁ ଗତିଆ ବା ବନ୍ଧୁ ଆସିଲେ କିମ୍ୱା ପର୍ବପର୍ବଣୀ ହେଲେ କିମ୍ବା

ବିବାହ, ମୃତାହ ହେଲେ ପ୍ରଥମ ସଲପ ଖୋଜା ପଡ଼ିଥାଏ । ଏହା ଆଦିବାସୀ ସମାଜରେ ଏକ ମାନ୍ୟରୂପେ ଗଣାଯାଏ । ଏହି ସଲପ ସମ୍ପର୍କରେ ପ୍ରଚଳିତ ଏକ ଲୋକକଥା ହେଉଛି- "ପ୍ରଥମେ ଶବରମାନେ ଏହି ପାନୀୟ ଆବିଷ୍କାର କରିଥିଲେ । ସେତେବେଳେ ମନ୍ତ୍ର ପଢ଼ି ଡାକିଦେଲେ ସଲପ୍ ଗଛ ତାର ମୁଣ୍ଡ ନୁଆଇଁ ସଲପ୍ ଦେଉଥିଲା । ସଲପ୍ କାଢ଼ି ନେବା ପରେ ସେ ପୁଣି ପୂର୍ବାବସ୍ଥାକୁ ଫେରି ଯାଉଥିଲା । ଏହା ଦେଖି ଜଣେ ଋଷି ସେ ମନ୍ତ୍ର ଶିଖିବା ପାଇଁ ଆଗ୍ରହୀ ହେଲେ ଓ ସବୁଦିନେ ସେ ଶବର ଘରକୁ ଆସିବାକୁ ଲାଗିଲେ । ଶବର ଭାବିଲା ଏ ବ୍ରାହ୍ମଣ ଋଷି ମୋଠୁ ମନ୍ତ୍ର ଶିଖିଲେ, ମୋ ଭଳି ସାମାନ୍ୟ ଆଦିବାସୀକୁ କଣ ଗୁରୁ ବୋଲି ମାନିବ ? ଏହା ବିଚାରି ତାହାକୁ ଋଷି ଭେଟିବା ପାଇଁ ଆସିବା ସମୟରେସେ ପ୍ରତିଦିନ ସକାଳେ ଜଂଗଲ ଯାଇ ଲୁଚିଲା । କିନ୍ତୁ ଋଷି ପ୍ରତିଦିନ ଆସୁଥିଲେ । ଏହା ଲକ୍ଷ୍ୟ କରି ଶବରର ପୁଅ ତାଙ୍କୁ ତା'ର କାରଣ ପଚାରିଲା । ସେ ନିଜ ଉଦ୍ଦେଶ୍ୟ ବତାଇବାରୁ ପୁଅ ତାଙ୍କୁ ମନ୍ତ୍ର ଶିଖାଇ ଦେଲା । ତା ବାବା ଜଙ୍ଗଲରୁ ଫେରିବା ପରେ ଏକଥା ଶୁଣି କହିଲା, "ଆରେ ତୁ, କ'ଣ କଲୁ ? ଅପାତ୍ରରେ ମନ୍ତ୍ର ଦେଲୁ ? ଆଜିଠାରୁ ଏ ମନ୍ତ୍ର ଆଉ କାମ ଦେବନି ।" ସେହିଦିନୁ ସଲପ ଗଛ ଆଉ ମୁଣ୍ଡ ନୁଆଉ ନାହିଁ । (ଏଥି ସହ ସାରଳା ମହାଭାରତରେ ଥିବା ପ୍ରାୟ ଏକାଭଳି ଏକ ଲୋକପ୍ରିୟ ଗଳ୍ପ ସ୍ମରଣୀୟ । ସେଥିରେ କିନ୍ତୁ ମନ୍ତ୍ର ଶିକ୍ଷାପରେ ଋଷି ସେହି ଆଦିବାସୀକୁ ଗୁରୁ ରୂପେ ସ୍ୱୀକୃତି ଦେଇଛନ୍ତି ।) ସଲପ ପାଇବା ପାଇଁ ଶିରା ଆଉ ଲିଗିଡ଼ିଆ ଦରକାର ପଡ଼େ । ଗୋଟିଏ ସଲପ୍ ଗଛ ପ୍ରାୟ ୩ରୁ ୪ ବର୍ଷ ଧରି ବାର୍ଷିକ ୫ରୁ ୧୦ ହଜାର ଟଙ୍କାର ସଲପ୍ ଦିଏ ।

ଆଦିବାସୀ ସଂସ୍କୃତିରେ ଏହି ସଲପର ଏକ ଉଲ୍ଲେଖନୀୟ ଭୂମିକା ରହିଛି । ଏହା ଏ ଅଞ୍ଚଳର ଆଦିବାସୀମାନଙ୍କ ଅର୍ଥନୈତିକ ଦିଗକୁ ଯେପରି ପରିପୁଷ୍ଟ କରେ ସେମିତି ସାମାଜିକ ଜୀବନକୁ ମଧ୍ୟ ନିୟନ୍ତ୍ରିତ କରିଥାଏ । ସଲପ ଗଛ ଯଦି କୌଣସି ଆଦିବାସୀ ଲୋକର ନିଜ ବାଡ଼ିରେ ଥାଏ, ତେବେ ସେ ତାହାର ରସକୁ ସଂଗ୍ରହ କରି ପ୍ରଥମେ ନିଜ ବନ୍ଧୁ, କୁଟୁମ୍ବ ଓ ଗ୍ରାମବାସୀଙ୍କ ମଧ୍ୟରେ ବାଣ୍ଟିଥାଏ । ପରେ ଏହାକୁ ବିକ୍ରୟ କରି ଅର୍ଥ ସଂଗ୍ରହ କରିଥାଏ । ଏମାନଙ୍କ ପରିବାରରେ କୌଣସି ବନ୍ଧୁବାନ୍ଧବ ଆସିଲେ ସେମାନଙ୍କୁ ସଲପ ରସ ପିଇବାକୁ ଦିଆଯାଇ ବନ୍ଧୁଚର୍ଚ୍ଚା କରାଯାଇଥାଏ । ଏମାନେ ସଲପ ରସକୁ ନିଶାଯୁକ୍ତ କରିବା ପାଇଁ ଏଥିରେ, କେରୁଆଁ ସନାଗୀ, ଡାକେରି

ଆଦି ଗଛର ଚେର ପକାଇଥାନ୍ତି । ସଲପ ରସ ଏକାଧାରରେ ଖାଦ୍ୟ ଓ ପାନୀୟର ଭୂମିକା ନିଭାଇଥାଏ । ଯଥେଷ୍ଟ ସଲପ ରସ ପିଇଥିବା ଆଦିବାସୀ ଲୋକଟିଏ କିଛି ଖାଦ୍ୟ ନ ଖାଇବି ଖୁସିରେ ଦିନଟିଏ କଟାଇ ଦେଇପାରିଥାଏ । ସଲପ ଡାଳକୁ ଏମାନେ ରୋଗପୋକ ନିବାରଣ ପାଇଁ ଫସଲ କିଆରୀରେ ପୋତିଥାନ୍ତି ।

ଏକ ଗଣ୍ଡ ଆଦିବାସୀ ଲୋକକଥାରେ ସଲପ ସୃଷ୍ଟିର ସୂଚନା :

ଅନେକ ବର୍ଷ ପୂର୍ବେ ଜଣେ ମୂରିଆ (ଏକ ଗଣ୍ଡ ଆଦିବାସୀ ଉପଜାତି) ଯାହାର ନାମ ଥିଲା ଇରୋ କାଓ୍ୱାଚି, ଦୁଇଟି କନ୍ୟାର ପିତା ହେଲା । ସେ ସେହି ଦୁଇ କନ୍ୟାର ନାମ ରଖିଲା ଇଲୋ ଓ ପାଲୋ । ଇରୋକାଓ୍ୱାଚି ମହୁଲ କାଠରେ ପିଢ଼ାଟିଏ ତିଆରି କରି ପିଢ଼ାଟିକୁ ଉକୁଣି ଚମଡ଼ାରେ ଆଚ୍ଛାଦିତ କରିଦେଲା ।

ସେ ଘୋଷଣା କଲା ଯେ ଯେଉଁ ବ୍ୟକ୍ତି ପ୍ରଥମେ ଏହି ପିଢ଼ାଟିକୁ ଉଠାଇ ସେ ଯେଉଁଠାରେ ଗାଧୋଇବ, ସେହି ସ୍ଥାନରୋ ନେଇ ରଖିଦେବ ଆଉ ପିଢ଼ାଟି କେଉଁ କାଠରେ ତିଆରି ଓ ପିଢ଼ାଟିକୁ କାହାର ଚମଡ଼ାରେ ଆଚ୍ଛାଦିତ ହୋଇଛି କହିଦେବ, ସେହି ବ୍ୟକ୍ତିକୁ ସେ ନିଜର ଦୁଇ ଝିଅ ସହ ବିବାହ କରିଦେବ ।

ଆଖ ପାଖ ଗାଁର ବହୁ ଯୁବକ ଆସିଲେ କିନ୍ତୁ କେହି ହେଲେ ପିଢ଼ାଟି କେଉଁ କାଠରେ ତିଆରି ଓ କେଉଁ ଚମଡ଼ା ଦ୍ୱାରା ଆବୃତ କହିପାରିଲେ ନାହିଁ କି ପିଢ଼ାଟିକୁ ଉଠାଇ ପାରିଲେ ନାହିଁ । ଶେଷରେ ଜଣେ ଛୋଟା, ଯାହାର ଦେହସାରା ଘା' ଘାଉଡ଼ ହୋଇ ଦୁର୍ଗନ୍ଧ ହେଉଥିଲା ସେ ଆସି ପହଞ୍ଚିଲା । ପିଲାଟି ଇରମା ରାଜ୍ୟରୁ ଆସିଥିଲା । ତାହାର ନାମ ମାଡ଼ମୋଡ଼ା ଥିଲା । ତାକୁ ଦେଖି ମାଛିଟିଏ ଆସି କହିଲା ତୁ ଯଦି ତୋ ଗୋଡ଼ରେ ହୋଇଥିବା ଘାଆରୁ ମୋତେ ପୂଜରକ୍ତ ଶୋଷିବାକୁ ଦେବୁ, ତାହେଲେ ମୁଁ ତୋତେ ପିଢ଼ାର ରହସ୍ୟ କଥା କହିଦେବି । ମାଡ଼ ମୋଡ଼ା ରାଜି ହେବାରୁ ମାଛି ଘା'ରେ ବସି ପେଟପୁରାଇ ପୂଜରକ୍ତ ଖାଇ ପିଢ଼ାଟି ମହୁଲ କାଠରେ ତିଆରି ହୋଇଥିବା ଓ ତା ଉପରେ ଉକୁଣି ଚମଡ଼ା ଛାଉଣି ହୋଇଥିବା କଥା କହି ଉଡ଼ି ଚାଲିଗଲା । ତାପରେ ମୋଡ଼ମୋଡ଼ା ପିଢ଼ାଟିକୁ ଉଠାଇବାରେ ସକ୍ଷମ ହେଲା ଏବଂ ଇରେ କାଓ୍ୱାଚି ଯେଉଁଠାରେ ଗାଧୋଇବ, ସେଠାରେ ପକାଇ ଦେଲା ।

ଯେତେବେଳେ ଇରୋ କାଓ୍ୱାଚିର ଦୁଇଝିଅ ଇଲୋ ଓ ପାଲୋ ଏହି ଛୋଟା ଅସୁନ୍ଦରିଆ, ଘା ଘଉଡ଼ ପିଲାକୁ ଦେଖିଲେ, ଭୟରେ ଦୌଡ଼ି ପଳାଇଲେ । ମାଡ଼ମୋଡ଼ା ରାଗିଯାଇ ତାଙ୍କ ପଛରେ ଛୋଟେଇ ଦଉଡ଼ିଲା ଏବଂ ଶେଷରେ ଦୁଇ ଭଉଣୀର ମୁଣ୍ଡବାଳରେ ଗଣ୍ଠି ବନ୍ଧାଯାଇଥିବା ଦଉଡ଼ିକୁ ଧରି ନିଜ ଆୟତକୁ ଆଣିଲା । ସେ କ୍ରୋଧରେ ସେମାନଙ୍କୁ କାନ୍ଧ ଉପରୁ ଲୁଗାଟାଣି ଦେଲା, ମୁଣ୍ଡବାଳରୁ କେତେକରା ଛିଡ଼ାଇ ତଳେ ଫୋପାଡ଼ି ଦେଲା । ଏହି ଇଲୋ ପାଲୋକୁ ଇଦାଲତମ ନଦୀ ଶଯ୍ୟାରେ ପକାଇ ସମ୍ଭୋଗ କଲା । ତାପରେ ନଦୀଟି ଦୁଇଧାରାରେ ବିଭକ୍ତ ହୋଇ ଦୁଇ ଆଡ଼କୁ ବହିଗଲା । ପିଲାଟିର ଘୁଙ୍ଗୁର ଲଗା ହାତ ବାଡ଼ିଟି ତାଳ ଗଛରେ, ଝିଅଙ୍କ ମୁଣ୍ଡବନ୍ଧା ଦଉଡ଼ି ସଲପ ଗଛରେ, ସେମାନଙ୍କ ଛିଣ୍ଡା କେଶ ଖଜୁରୀ ଗଛରେ ଏବଂ ଛିଣ୍ଡା ଲୁଗା ଓସାରିଆ ପତ୍ର ବିଶିଷ୍ଟ କଦଳୀ ଗଛରେ ପରିଣତ ହୋଇଗଲେ । (ଭେରିଆର ଏଲଓ୍ୱିନ : ମେରିଆ ମର୍ଡ଼ର ଏଣ୍ଡ ସୁଇସାଇଡ଼୍ ବହିରୁ ଉଦ୍ଧୃତ ।)

୧୯. ସଲ୍‌ପ ଗୁଣ୍ଡ - *ଦେ.ବି. :* ସଲପିଗୁଣ୍ଡ / ସଲପ୍ ପେଜ :

ସଲପ୍ ବା ସଲପି ଗଛର ମଞ୍ଜିରୁ ପ୍ରସ୍ତୁତ ଗୁଣ୍ଡ । ସଲପ ଗଛ ଗର୍ଭିଣୀ ଥିବା ସମୟରେ ଅର୍ଥାତ୍ ତାର ପ୍ରଥମ କେର ବାହାରିବା ସମୟରେ ସଲପ ଗୁଣ୍ଡ ପାଇଁ ସେ ଗଛକୁ କାଟି ଦିଆଯାଏ । (ରସ ବାହାର କରି ନିଆଯାଇଥିବା ଗଛରୁ ସଲପ ଗୁଣ୍ଡ ବାହାରି ପାରେନାହିଁ,) ତାପରେ ତାକୁ ମୁକା ମୁକା କରି କାଟିଦେଇ ଛାଲି ଛଡ଼େଇ ଦିଆଯାଏ । ଏହି ସବୁ ମୁକା ବା ଗଡ଼ିର ମଞ୍ଜ ଅଂଶକୁ ବାହର କରି ତାକୁ ୩ରୁ ୪ ଇଞ୍ଚ ଆକାର କରି ଟାକ୍‌ଲାରେ ଶୁଖାଇ ଦିଆଯାଏ । ପୁରା ଶୁଖିଗଲା ପରେ ମୂଷଳ ବା ଠେଙ୍ଗା ସାହାଯ୍ୟରେ ତାକୁ ପିଟିପିଟି ଗୁଣ୍ଡ କରାଯାଏ । ସେ ଗୁଣ୍ଡକୁ ଋଲୁଣିରେ ଚଲାଇ ସୁକ୍ଷ୍ମଗୁଣ୍ଡ ବାହାର କରାଯାଏ । ଏହାକୁ ଅଳ୍ପ ପାଣିରେ ଗୋଳାଇ ମାଣ୍ଡିଆ ପିଠା ଭଳି ହାତ ପାପୁଲିରେ ଥାପୁଡ଼ି ଉପରେ ଓ ତଳେ ୨ଟା ପତ୍ର ଦେଇ, ଅଙ୍ଗାର ନିଆଁରେ ଉପରେ ତଳେ ଅଙ୍ଗାର ଦେଇ ଓଡ଼ିଆଙ୍କ ପୋଡ଼ା ପିଠା ଭଳି ପୋଡ଼ି ଦିଆଯାଏ । ପୁଣି ଏହି ଗୁଣ୍ଡରୁ ପେଜ ପ୍ରସ୍ତୁତ କରିବା ପାଇଁ ଗୋଟିଏ ରାତି ଏହି ଗୁଣ୍ଡକୁ ପାଣିରେ ଭିଜେଇ ରଖାଯାଏ । ସକାଳେ ଏକ ବଡ଼ ହାଣ୍ଡିରେ ପାଣି ଫୁଟାଇ ମାଣ୍ଡିଆ ପେଜ ପ୍ରସ୍ତୁତ ଢ଼ଙ୍ଗରେ ସଲପ ପେଜ ପ୍ରସ୍ତୁତ କରାଯାଏ । ଗୋଟିଏ ସଲପ ଗଛ ପ୍ରାୟ ୫ ରୁ ୮ ଦିନ ପର୍ଯ୍ୟନ୍ତ ଗୋଟିଏ

ପରିବାରର ଖାଦ୍ୟ ହୋଇପାରେ । ଆଜିକାଲି ସଲପର ବଜାର ମୂଲ୍ୟ ଖୁବ୍ ବେଶୀ ବଢ଼ିବା ପରେ ସଲପ୍ ଜାଉର ପ୍ରଚଳନ ବହୁତ କମିଛି ।

୨୦. **ସଲପିମାରି** - *ଦେ.ବି. :* ସଲପ ଗଛ ବହୁଳ ଏକ ବିସ୍ତୀର୍ଣ୍ଣ ପର୍ବତ ଉପତ୍ୟକା, ଯାହା ନବରଙ୍ଗପୁର ଜିଲ୍ଲା ପୋଡ଼ାଗଡ଼ ପର୍ବତମାଳ ମଧ୍ୟରେ ଅବସ୍ଥିତ । ବହୁ ସଲପଗଛ ଥିବାରୁ ଏହି ସ୍ଥାନକୁ ସ୍ଥାନୀୟ ଆଦିବାସୀମାନେ ସଲପି ମାରି ବୋଲି ନାମକରଣ କରିଛନ୍ତି ।

୨୧. **ସିଲାନିଡ଼ାଙ୍ଗେ** - *ଦେ.ବି. :* ସେଲାନି : ଅବିବାହିତ ଝିଅ / ଡିଙ୍ଗୋ : ଘର ବା ବସା । ଅବିବାହିତ ଝିଅମାନଙ୍କ ବସାଘର । ଇଂ- A cottage meant for unmarried Bonda girls, A women's dermitory. ବଣ୍ଡା ଆଦିବାସୀ ସମ୍ପ୍ରଦାୟ ଗାଁ ମଝିରେ ଅବିବାହିତ ଝିଅମାନଙ୍କ ପାଇଁ ରାତି କଟାଇବା, ମନୋରଞ୍ଜନ କରିବା, ଜୀବନର ବହୁବିଧ କଳା ଶିଖିବା ପାଇଁ ଯେଉ ବାସଗୃହ (ଧାଙ୍ଗଡିବସା) ତିଆରି କରିଥାନ୍ତି ତାକୁ 'ସେଲାନି ଡିଙ୍ଗୋ' କୁହାଯାଏ ।

୨୨. **ସାଇ** - *ଦେ.ବି. :* ଝିଙ୍କ । ଏହା ଏକ ମୂଷା ଜାତୀୟ ପ୍ରାଣୀ । ଏହାର ଦେହଯାକ କଣ୍ଟା । ଇଂ- Porcupine ଦୁଇପ୍ରକାର ସାଇ ଦେଖାଯାନ୍ତି । (କ) କୁଦାଳ ସାଇ (ଖ) ସାଧାରଣ ସାଇ । ସାଧାରଣ ସାଇ ପ୍ରାପ୍ତ ବୟସ୍କ ଥିଲେ ୧୦ ରୁ ୧୫ କେ.ଜି ହୁଅନ୍ତି । କିନ୍ତୁ କୁଦାଲ୍ ସାଇ ଅଧିକ ବଡ଼ । ପ୍ରାୟ ୨୦ କେ.ଜି ପର୍ଯ୍ୟନ୍ତ ଓଜନ ହୋଇଥାନ୍ତି । ସାଇମାନେ ସାଧାରଣତଃ ପଥର ଗୁମ୍ଫା ବା 'ପାଆର୍'ମାନଙ୍କରେ ରହନ୍ତି । ଏହା ଭିତରୋ ପ୍ରାୟ ପଶିବା ବେଳର ମୁହଁ ବଡ଼ ଥାଏ, କିନ୍ତୁ ପଛ ଆଡ଼କୁ ଏହି ସୁଡ଼ଙ୍ଗ ଧୀରେଧୀରେ ସଂକୀର୍ଣ୍ଣ ହୋଇଯାଇଥାଏ । ଶିକାରୀ କୁକୁରମାନେ ଏହାର ପାଖ ପଶି ପାରନ୍ତି, ହେଲେ ସଙ୍ଗେ ସଙ୍ଗେ ସାଇ ଦେହର କଣ୍ଟା ତୀର ଭଳି ଛୁଟି ଆସେ । ସେଥିପାଇଁ ସେ ଟିକେ ରହିଯାଇ ଦେହକୁ ଚମକାଇ ଦେଲେ ଗୋଟିଏ ଦିଗକୁ କଣ୍ଟା ଯାଇ ଅନ୍ୟକୁ ଭେଦ କରେ । ଏହି ସାଇକୁ ଧରିବା ପାଇଁ ଶିକାରୀମାନେ ତୀର ଓ ଧୂଆଁର ପ୍ରୟୋଗ କରନ୍ତି । ସାନ ସୁଡ଼ଙ୍ଗର ସମସ୍ତ ମୁହଁକୁ ବନ୍ଦ କରି ଧୂଆଁ ଦିଆଯାଏ । ପ୍ରାୟ ୨ ଘଣ୍ଟା ଧୂଆଁ ଦେବା ପରେ ଶୀକାରୀ ଭିତରକୁ ଯାଇ ମୃତ ବା ଚେତା ଶୂନ୍ୟ ସାଇକୁ ନେଇ ଆସେ । ରାତ୍ର ସମୟରେ ସାଇ ସାଧାରଣତଃ ପାଆର ମୁହଁକୁ ଆସିଯାଇଥାଏ । ତେବେ ଏହାର ଶିକାରୀମାନେ କେବେ କେବେ ଏହାକୁ

ଧରିବା ପାଇଁ ସୁଡ଼ଙ୍ଗ ଭିତରେ ପଶି ପ୍ରାଣ ହରାଇଥାନ୍ତି । ତେବେ ବାଟବଣା ହୋଇତ କେବେ ପଥର ଉପରେ ପଡ଼ି ପୁଣି କେବେ ନିଜେ ଦେଇଥିବା ଧୂଆଁରେ ଶ୍ୱାସରୁଦ୍ଧ ହୋଇ । ବାସ୍ତବରେ ଶିକାରରେ ବିପଦ ଅଛି । କିନ୍ତୁ ଏହା ଏକ ନିଶା । ବ୍ୟାପକ ଶୀକାର ଫଳରେ ଏମାନଙ୍କ ବଂଶ ଲୋପ ପାଇ ଆସିଲାଣି । ଏବେ ଏମାନେ ଅଳ୍ପ କେତେ ପର୍ବତରେ ଅଛନ୍ତି ।

୨୩. ସାଇଲୋଡ଼ି / ସାଇଁଲୋଡ୍ - ଦେ.ବି. :ସାଇ ଅର୍ଥ ସାଥି, ଲୋଡ଼ି ଅର୍ଥ ଲୋଡ଼ିବା । ଏହା ଏକ ଖେଳର ନାମ । ଆଦିବାସୀ, ଭୂମିଆ, ଭତରା, ଓମାନ୍ୟତ୍ୟ, ପରଜା, ପେଣ୍ଟିଆ ପ୍ରଭୃତି ସମ୍ପ୍ରଦାୟର କିଶୋରୀମାନେ ସାଇଲୋଡ଼ି ନାମକ ଗୀତ ଗାଇ ଓ ଖେଳଖେଳି ଥାଆନ୍ତି । ଗ୍ରାମର କିଶୋରୀମାନ ଗାଁର ମଝିଦାଣ୍ଡ କିମ୍ବା ଆମ୍ବ ତୋଟାରେ ସମବେତ ହୋଇ ବାଲାଏ ମାତାନି, ଭାଲୁମାତାନି, ବାଗ୍‌ଛେଲି, ବାରହାଖେଁଲ, ଶୁଆ ଖେଁଳା, ସିନ୍ଦିକିଡ଼ା ଖେଳ ଓ ସାଇଲୋଡ଼ି ଖେଳିଥାନ୍ତି । ଏହା ସହ ଯେଉଁ ଗୀତ ବୋଲାଯାଇଥାଏ ତାହା ଲୋଡ଼ିବା ପଣର ଗୀତ । ଏଭଳି ଗୀତର ପଙ୍‌କ୍ତିଟିଏ :

ସାଇଲୋ ସାଇ କାରାପାନି ମଲ୍ଲୀଫୁଲ ବାସନା,
କାରାପାନି ଜାଇ ଫୁଲ ବାସନା,
ଆସାସାଇଲୋଡ଼ି ଜାଡ଼ କାଟିଯିବା, ତରବରିନାଇଁ ହୁଆ
ପାଇକ ବାରିକ ଡାକରା ଦେଲେ କାଇ ଘରେ ନାଇଁ ବୋଲି କୁହାଯେ, ସାଇଲେ ।

ସାଇକାରାପାନି, ମଲ୍ଲୀଫୁଲ ବାସନା । ଅର୍ଥାତ୍, ମଲ୍ଲୀଫୁଲ ଜାଇଫୁଲର ମହକ ଯେପରି ଓ ଖରା ବର୍ଷା ଯେପରି ଆକର୍ଷଣୀୟ ପ୍ରକୃତିର ଚିରନ୍ତନ ସତ୍ୟ, ସେପରି ଆମର ବନ୍ଧୁପଣ ଅତୁଟ ରହୁ ।

୨୪. ସାଉଁନ୍ତା - ଦେ.ବି. : କନ୍ଧ ଗାଁର ମୁଖ୍ୟ ବ୍ୟକ୍ତି । ଗାଁର ମୁଖିଆ । ଇଂ- Village Head. ଗ୍ରାମର ସମସ୍ତ ନ୍ୟାୟ ନିଶାପ କରିବା, ଗ୍ରାମର ସବୁ ଭଲ ମନ୍ଦ ଦେଖିବା ତାଙ୍କର କାର୍ଯ୍ୟ । କନ୍ଧ ସମାଜରେ ସାଓଁତାର ସ୍ଥାନ' ସବୁଠାରୁ ଉଚ୍ଚରେ । ପରଜାମାନଙ୍କ ତଥା ଅନ୍ୟ ସଂପ୍ରଦାୟଙ୍କ ନାୟକ ଓ କୋୟାମାନଙ୍କ ପେଦା ସହ ସମାନ ।

୨୫. ସାଏରେମ୍ - *ବଣ୍ଡା ବି. :* ପ୍ରେତାତ୍ମା । ଇଂ- Ghost ରେମୋ ବା ମଣିଷ ମଲା ପରେ ସେ ଡୁମା ବା ସାଏରେମ୍‌ରେ ପରିଣତ ହୋଇଥାଏ ବୋଲି ବଣ୍ଡା ଆଦିବାସୀଙ୍କ ବିଶ୍ୱାସ ।

୨୬. ସାଗ୍ - *ଦେ.ବି. :* ତରକାରୀ : ଇଂ- Curry. ଆଦିବାସୀ ସମାଜରେ ବିଭିନ୍ନ ପ୍ରକାର ଶାକ ସବ୍ଜି ଉତ୍ପାଦନ ଓ ବିକ୍ରୟ କରିବା ପରମ୍ପରା ରହିଛି । ଏମାନେ ଉତ୍ପନ୍ନ କରୁଥିବା ବହୁବିଧ ଶାଗ ଜାତୀୟ ପରିବା ପତ୍ରରୁ ପ୍ରସ୍ତୁତ ତରକାରୀକୁ ଏମାନେ ଭାତ ଓ ପେଜ ସହିତ ଖାଇଥାନ୍ତି ଓ ସମସ୍ତ ପ୍ରକାର ତରକାରୀକୁ 'ଶାଗ୍' ବୋଲି କହିଥାନ୍ତି । ବିଭିନ୍ନ ପ୍ରକାର ପତ୍ର ଜାତୀୟ ଶାଗକୁ ମଧ୍ୟ 'ସାଗ୍' ବୋଲି କହିଥାନ୍ତି । ମାଉଁସ ତରକାରୀକୁ ମଧ୍ୟ ଏମାନେ 'ମାଉଁଶ୍ ସାଗ୍' ବୋଲି କହିଥାନ୍ତି ।

୨୭. ସାଜ୍ - (ସାଆଜ) *ଦେ.ବି. :* ଅର୍ଜୁନ ଗଛ । ଏହା ଏକ ବୃହଦାକାର ବୃକ୍ଷ । ଉକ୍ତ ଗଛର ଛାଲିକୁ ଔଷଧ ରୂପେ ବ୍ୟବହାର କରାଯାଏ । ଏହା ଆଦିବାସୀ ଡିସାରାମାନଙ୍କ ଏକ ମୁଖ୍ୟ ଔଷଧୀୟ ବୃକ୍ଷ । ଏମାନେ ବିଭିନ୍ନ ଔଷଧ ପ୍ରସ୍ତୁତରେ ଏଇ ବୃକ୍ଷର ଛାଲିକୁ ଚୂର୍ଣ୍ଣ କରି ମିଶ୍ରଣ କରିଥାନ୍ତି । ଏହା ଗଞ୍ଜାମ ଓ କୋରାପୁଟ ମାଳ ଅଞ୍ଚଳରେ ବହୁଳ ଭାବେ ଦେଖାଯାଏ ।

୨୮. ସାଠିସାପ୍ - *ଦେ.ବି. :* ଗୋଟିଏ ପ୍ରଜାତିର ଲମ୍ବା ସାପ । ରଶି ଭଳିଆ ଏହି ଲମ୍ବାସାପଟି ଲୋକଙ୍କୁ ବା ଜୀବଜନ୍ତୁ ବାନ୍ଧିବାରେ ଧୁରନ୍ଧର । ଏହା ପାଣିରେ ରହେ- ବିଷ ନଥାଏ । ଲମ୍ବା ୧୦୦ ଫୁଟ ପର୍ଯ୍ୟନ୍ତ ହେଇଥାଏ ବୋଲି କୁହାଯାଏ । ଏବେ ମଧ୍ୟ ଏମାନେ ଚିତ୍ରକୋଣ୍ଡା ନଦୀ ଓ ଡେମ୍‌ରେ ଦେଖିବାକୁ ମିଳନ୍ତି । ଏମାନଙ୍କ ଆକ୍ରମଣରେ ଲୋକେ ମରିଥିବାର ନଜିର ଅଛି ।

୨୯. ସାବେରୀ / ଶାବେରୀ - *ଦେ.ବି. :* ମାଲକନଗିରି ଜିଲ୍ଲାରେ ପ୍ରବାହିତ ଏକ ନଦୀର ନାମ । ନଦୀ ଅଧ୍ୟୁଷିତ କୋରାପୁଟ ଜିଲ୍ଲାର ଏହି ମୁଖ୍ୟ ନଦୀଟି କାହିଁ କେଉଁ ଅତୀତ କାଳରୁ ପ୍ରବାହିତ ହୋଇ ଏହା ଅଞ୍ଚଳର ବିକାଶ ସାଧନାରେ ସହାୟକ ହୋଇଥିବରୁ ଏଠାକାର ପାରଂପରିକ ଅଧିବାସୀମାନଙ୍କ ଦୃଷ୍ଟିରେ ଏହି ନଦୀଟି ପାଲଟି ଯାଇଛି ଶବର କନ୍ୟା ଶାବେରୀ । ଏହି ନଦୀଟିର ଉତ୍ପତ୍ତିସ୍ଥଳରୁ କିଆଙ୍ଗ ପର୍ଯ୍ୟନ୍ତ ଏହି ନଦୀ ନାମ କୋଲାବ । ବାଗ୍ରା ଠାରେ ସୃଷ୍ଟ ଜଳପ୍ରପାତ ଜଳକୁ ନେଇ ଏହି ନଦୀ

ଉପରେ ସୃଷ୍ଟି କରାଯାଇଛି ଅପର କୋଲାବ । ନଦୀବନ୍ଧ ଯୋଜନା । ସୃଷ୍ଟି ହୋଇଛି ଜଳ ବିଦ୍ୟୁତ ପ୍ରକଳ୍ପ ।

କୋଲାବ ନଦୀ ସହ ସପ୍ତଧାରା ନଦୀ ମିଳିତ ହୋଇଛି କିଆଙ୍ଗ ଠାରେ । ସପ୍ତଧାରା ସହ ମିଳିତ ହେବା ପରେ କୋଲାବ ନଦୀର ନାମ ହୋଇଛି ସାବେରୀ । ଭଦ୍ରା ଚଳମ୍ ଠାରେ ଏହା ଗୋଦାବରୀ ସହ ମିଳିତ ହୋଇଛି । ଏହା ବହୁଦୂର ପର୍ଯ୍ୟନ୍ତ ଓଡ଼ିଶା ଓ ଛତିଶଗଡ଼ ସୀମାରୂପେ ପ୍ରବାହିତ ହୋଇଛି । ଏହି ନଦୀର କୁଳୁକୁଳୁ ସ୍ୱରରୁ ସୃଷ୍ଟି ହୋଇଛି ଶାସ୍ତ୍ରୀୟ ସାବେରୀ ରାଗିଣୀ ।

୩୦. ସାମୁରଇ ସମୁରଇ (ରସଖଡ୍ଡୁ) - *ଦେ.ବି. :* ବଣ୍ଠା ଯୁବକ ତାର ମନୋନୀତ ଯୁବତୀକୁ ଘେରସୁଂ ବା ସୋଲାନି ଡିଙ୍ଗୋରେ ତାକୁ ମନାଇବା ପାଇଁ ଯେଉଁ ଖଡୁ ଦେଇଥାଏ, ତାହା ସାମୁରଇ / 'ସୁମରଇ'କୁ ନିର୍ଦ୍ଦିଷ୍ଟ ଯୁବତୀ ଗ୍ରହଣ କଲେ ସେ ଯୁବକ ପ୍ରତି ତାର ମନ ଅଛି ବୋଲି ଗ୍ରହଣ କରାଯାଏ । ତେଣୁ ତାହା ବିବାହ ପାଇଁ ସ୍ୱୀକୃତି ରୂପେ ଗ୍ରହଣ କରାଯାଏ ।

୩୧. ସାରଙ୍ଗୀ - *ଦେ.ବି. :* ଏକ ତତ ଶ୍ରେଣୀୟ ବାଦଯନ୍ତ୍ର । ଏଥିରେ ୨ ରୁ ୪ଟି ତାର ଲାଗିଥାଏ । ଲାଉତୁମ୍ବାର ତୁଙ୍ଗ୍ ତୁଙ୍ଗା ପରି ବାଉଁଶ ଦଣ୍ଡ ସଂଯୋଗ ହୋଇ ଘୋଡ଼ା ବାଳର ଢ଼ଣ କିମ୍ବା ସଲପ ତନ୍ତୁ ଦ୍ୱାରା ତାର ଉପରେ ଘର୍ଷଣ କରାଯାଇ ସୁମଧୁର ସ୍ୱର, ମୁଖ୍ୟତଃ କରୁଣ ଓ ମନ୍ଦ୍ର ଧ୍ୱନୀ ସୃଷ୍ଟି କରାଯାଏ । ଏହି ଯନ୍ତ୍ର ସହଯୋଗରେ ଗୀତ କୁଡ଼ିଆମାନେ ବିଭିନ୍ନ ପ୍ରଣୟ ଓ କଥାନୀ ଗୀତ ଗାନ କରିଥାନ୍ତି । ଏହି 'ସାରଙ୍ଗୀ' କୋୟା ଓ ପରଜା ସଂପ୍ରଦାୟରେ ମୁଖ୍ୟତଃ ବ୍ୟବହୃତ ହେଉଥିଲେ ହେଁ ଅନ୍ୟାନ୍ୟ ସଂପ୍ରଦାୟରେ ମଧ୍ୟ ଏହାର ବେଶ୍ କିଛି ପ୍ରଚଳନ ଓ ଆଦୃତି ରହିଛି । ବିନା ମହୁରୀ ଓ ଢେମ୍‌ସା ବାଦ୍ୟରେ, କେବଳ ସାରଙ୍ଗୀ ସହଯୋଗରେ ବହୁ ସମୟ ଧରି ଆଦିବାସୀ ନୃତ୍ୟ ଚାଲିପାରେ ।

୩୨. ସାରାବାଡ଼ା - *ଦେ.କ୍ରି.ବି. :* ଠିକ୍‌ଠାକ୍ । ଇଂ- correctly, well done.

ଠିକ୍‌ଭାବରେ, ଠିକଣା କରି । ଭଲ ଭାବରେ କରିବା କାର୍ଯ୍ୟ ଅର୍ଥରେ ବ୍ୟବହୃତ । ପ୍ରୟୋଗ : ତୁଇ ସାରବାଡ଼ା କରି ତିଆରି କରି ରା' (ତୁ ଠିକ୍ ଭାବରେ ଏହା ତିଆରି କରିଥାଆ)

ଗୀତରେ ଏହାର ବ୍ୟବହାର, ଉଦାହରଣ : ଗାଁଆକେ ଗାଣ୍ଡା, ଗୁଡ଼ିକେ ପୂଜାରୀ ନିତି ମାଗୁଥିବେ ସାରି,

ତୁଇ ସାରାବାଡ଼ା କରି ତିଆରି କରି ରାଆ
ଆସିବି ନଡ଼ିଆ ଧରି । (ଭତରା ଗୀତ)

୩୩. ସାରି / ସାରିକି - *ଦେ.ବି. :* ଭୋଗ, ଭାଟିଆ, ଛଞ୍ଚା, ଚାନ୍ଦା । ଇଂ- ambrosia, Gift, Contribution ପ୍ରୟୋଗ (୧) ହାଏ ଗାଣ୍ଡା ପରବ କାଜେସାରି ମାଂଗସି ଆଚେ । (ସେହି ଗାଣ୍ଡା ପର୍ବ ପାଳନ ପାଇଁ ସେ ଚାନ୍ଦା ମାଗୁଅଛି) (୨) ବାମନ୍ କେ ସାରି ଦିଆ । (ବ୍ରାହ୍ମଣକୁ ଛଞ୍ଚା ଦିଅ)

କୋରାପୁଟର ଆଦିବାସୀ ଗ୍ରାମମାନଙ୍କରେ ବିଭିନ୍ନ ପର୍ବ ପାଳନ ନିମିତ୍ତ ଆଦାୟ କରାଯାଉଥିବା ଚାନ୍ଦାକୁ 'ସାରି ଡାବୁ' କୁହାଯାଏ । ସାରି ବଦଳରେ "ସାରିକି" ବୋଲି ବି କହିଥାନ୍ତି । ଗାଁର ଚଲାଣ ଏହା ପ୍ରତ୍ୟେକ ଘରୁ ଆଦାୟ କରି ଗାଁର ନାୟକଙ୍କୁ ଦେଇଥାଏ । ପରବ ବା ଦେବତା ପାଖରେ ବଳି ପରେ କିଏ କେତେ ଟଙ୍କା ସାରି ଦେଇଛି, ସେହି ଅନୁସାରେ ମାଂସ ଭାଗ କରି ବଣ୍ଟାଯାଏ । ଉକ୍ତ ମାଂସକୁ 'ସାରି ମାଉଁସ' କରନ୍ତି । ଚାଉଳ ଓ ଅନ୍ୟାନ୍ୟ ଶସ୍ୟକୁ ମଧ୍ୟ ସାରି ଆକାରରେ ସଂଗ୍ରହ କରାଯାଇଥାଏ ।

୩୪. ସିକ୍ଡ଼ି-ଭାତ - *ଦେ.କ୍ରି.ବି. :* ଏକା ପ୍ରକାରର ବ୍ୟଞ୍ଜନ । କନ୍ଦା, ଚାଉଳ, ବିରି ଓ ମାଛକୁ ଏକତ୍ର କରି ପ୍ରସ୍ତୁତ କରାଯାଉଥିବା ବ୍ୟଞ୍ଜନ । ଗଦବା ଆଦିବାସୀ ସମ୍ପ୍ରଦାୟ ଲୋକମାନେ ପୌଷପର୍ବ ପାଳନ ଅବସରରେ ଏହି ସିକ୍ଡ଼ି ଭାତ ପ୍ରସ୍ତୁତ କରିଥାନ୍ତି । ପୌଷ ମାସର ଶୁକ୍ଳପକ୍ଷର ଏକ ମଙ୍ଗଳବାର ଦିନ ଏହି ପର୍ବ ପାଳନ କରାଯାଏ । ପର୍ବର ପରଦିନ ଗାଦବା ନାରୀମାନେ ପିଠାପଣା କରି ଗାଈଗୋରୁ ମାନଙ୍କୁ 'ପେଣ୍ଡମ୍' ସିକ୍ଡ଼ି ଭାତ ଓ ଏହି ପିଠାପଣା ଖାଇବାକୁ ଦିଅନ୍ତି । ଏହି ଅବସରରେ ସେମାନେ ଗାଈଗୋରୁମାନଙ୍କୁ ପୂଜା ଅର୍ଚ୍ଚନା କରି ଥାଆନ୍ତି । ତରଗା କନ୍ଦା, ଚାଉଳ, ବିରି, ମାଛ ଆଦି ମିଶାଇ ପ୍ରସ୍ତୁତ ହେଉଥିବା ଏକ ସିକଡ଼ା ଭାତ ହିନ୍ଦୁମାନଙ୍କ ଦ୍ୱାରା ପାଳିତ ହେଉଥିବା ଗହ୍ମା ପୂର୍ଣ୍ଣମୀ ଦିନ ଗାଈଗୋରୁଙ୍କ ଉଦ୍ଦେଶ୍ୟରେ ତିଆରି ପିଠାପଣା ସହ ତୁଳନୀୟ ।

୩୫. ସିକ୍‌ସାଂ ଲୁବାଇଡାଙ୍କ - ବ.ବି. : ଏକ ପ୍ରକାରର ନୀଳ ରଙ୍ଗର ପୋହଳା ମାଳି, ଏହା ବଣ୍ଡାମାନଙ୍କର ଗୋଟିଏ ଆଭୂଷଣ । ଅନ୍ୟ ସଂପ୍ରଦାୟରେ ଏହା ବ୍ୟବହାର ହୁଏ ନାହିଁ ।

୩୬. ସିଙ୍ଗରାଜ୍ - ଦେ.ବି. : ଭୂମିଆମାନଙ୍କ ଏକ ଜଳଦେବତାଙ୍କ ନାମ । ଏହି ଦେବତା ଯାହା ଦେହରେ ଉଭା ହୁଅନ୍ତି ସେ ସିଂହ ପରି ଅଙ୍ଗଅଙ୍ଗୀ ଓ ଗର୍ଜନ କରି ନିଜର ଶକ୍ତିର ପ୍ରଦର୍ଶନ କରିଥାଏ । ଇଂ- Water God (ଦ୍ରଷ୍ଟବ୍ୟ : କାମନୀ ପୂଜା) ଆଉ ମଧ ବଣ୍ଡା ସଂପ୍ରଦାୟରେ ସିଙ୍ଗରାଜ୍ ହେଉଛନ୍ତି ଜଙ୍ଗଲ ଦେବତା । ବଣ୍ଡାମାନେ ଶିମୂଳୀ ବୃକ୍ଷକୁ ହିଁ ସିଙ୍ଗରାଜ ବା ଜଙ୍ଗଲ ଦେବତା ରୂପେ ପୂଜା କରିଥାନ୍ତି । ବର୍ଷରେ ତିନିଥର ଯଥା : ଶ୍ରାବଣ, ଦିଆଲି ଓ ଚୈତ୍ରମାସରେ ଏହି ପୂଜା ହୋଇଥାଏ । ଇଂ- The jungel God.

୩୭. ସିଙ୍ଗିଆର୍କେ - ବ.ବି. : ସୃଷ୍ଟି କର୍ତ୍ତା, ସୂର୍ଯ୍ୟଦେବତା; ବଣ୍ଡାମାନଙ୍କର ଆଦି ଦେବତା ।

ବଣ୍ଡାମାନଙ୍କର ସୃଷ୍ଟିକର୍ତ୍ତା ଭାବେ, ସିଙ୍ଗିଆର୍କେ ପୂଜିତ ଓ ପ୍ରକୀର୍ତ୍ତିତ ହୋଇଥାନ୍ତି । ସେହି ମହାପ୍ରୁ ହେଉଛନ୍ତି ଜୀବନ ଓ ଆଲୋକର ଦେବତା । ସେ ହେଉଛନ୍ତି ବଣ୍ଡାମାନଙ୍କ ବିଶ୍ବାସରେ ସବୁ ଦେବଦେବୀ, ଡୁମା ତଥା ଅପ ଦେବତା ମାନଙ୍କ ମୁଖ୍ୟ । ତାଙ୍କର ପ୍ରତୀକ ହେଉଛନ୍ତି ପାଟ ଖଣ୍ଡା । ସିଙ୍ଗିଆର୍କେଙ୍କର ସିଧାସଳଖ ପୂଜା ହୁଏନାହିଁ । ଏହାଙ୍କର ପ୍ରତୀକ ପାଟ ଖଣ୍ଡାଙ୍କର ପୂଜା ମାଘ ମାସରେ 'ସୁସୁଗିଗେ' ପର୍ବରେ କରାଯାଇଥାଏ । ପୁଣି ଦଶରା ମାସରେ 'କୁମ୍ବକ୍ ଡାଗିଗେ' ପର୍ବରେ ମଧ ପାଟ ଖଣ୍ଡା ପୂଜା ହୋଇଥାଏ । ଫସଲ ଅମଳ ପରେ ସୁସୁଗିଗେ ପଡ଼ିଥାଏ । ତେଣୁ ଫସଲ ଅମଳର ଆନନ୍ଦ ଓ କୃତଜ୍ଞତା ପାଇଁ ସିଙ୍ଗିଆର୍କେ ବା ପାଟ ଖଣ୍ଡାଙ୍କର ପୂଜା କରାଯାଇଥାଏ ।

୩୮. ସିତଲ ଭୋଗ - ଦେ.ବି. : ଦେବୀଙ୍କ ଉଦ୍ଦେଶ୍ୟରେ ପ୍ରସ୍ତୁତ ଭୋଗ ବିଶେଷ । ଚୈତ୍ର ମାସରେ ମଙ୍ଗଳବାରଦିନ ଘଣ୍ଟହାଣ୍ଡି (ମାଁ ଠାକୁରାଣୀଙ୍କ ପ୍ରତୀକ କଳସ)କୁ ଅର୍ପଣ କରାଯାଉଥିବା ପିଠା, ମୁଆଁ ଦହି ଇତ୍ୟାଦିକୁ ଶୀତଳ ଭୋଗ କୁହାଯାଏ ।

୩୯. ସିନ୍ଧିକାତରା ମୂଷା - *ଦେ.ବି. :* ଏହା କୌଣସି ମୂଷା ନୁହେଁ । ପ୍ରକୃତରେ ଏହା ହେଉଛି ନେଉଳ । ଇଂ- Mongoose. କିନ୍ତୁ ଆଦିବାସୀ ମାନେ ଏହାକୁ ମୂଷା ରୂପେ ଗ୍ରହଣ କରିଥାନ୍ତି । ସିନ୍ଧିକାତରାର ପ୍ରିୟ ଆହାର ହେଉଛି ସାପ. ଝିଟିପିଟି ଓ ଅନ୍ୟାନ୍ୟ ବଣୁଆ ଛୋଟ ଛୋଟ ସରୀସୃପ । ଆମ୍ବ କୋଇଲି ଓ କନ୍ଦା ମଧ ଏହାର ପ୍ରିୟ ଖାଦ୍ୟ । ଏମାନେ କିନ୍ତୁ ମୂଷା ଖାଆନ୍ତି । ଏହା ଭଲ ପୋଷାମାନେ । ଖୁବ୍ କମ୍ ଲୋକ ଏହାକୁ ଖାଆନ୍ତି ।

୪୦. ସିନ୍ଧିକିଡ଼ା ଖେଳ - *ଦେ.ବି. :* ଏକପ୍ରକାର ଖେଳ । ସିନ୍ଧି ଏକ ଜଙ୍ଗଲୀ ଗଛ, କିଡ଼ା ଅର୍ଥପୋକ । ଏହି ସିନ୍ଧିକିଡ଼ାମାନେ ସିନ୍ଧିବୁଟା ମଧରେ ରହନ୍ତି । ଟାଙ୍ଗିଆ ସହି ମାରି ଏହି ବୁଟା ମଧରୁ ସିନ୍ଧି କିଡ଼ା ସଂଗ୍ରହ କରାଯାଏ । ସିନ୍ଧିକିଡ଼ା ନାମରେ ଏକ ଲୋକପ୍ରିୟ ଖେଳ କୋରାପୁଟର ବିଭିନ୍ନ ଆଦିବାସୀ ସମାଜରେ ଶିଶୁ ଓ କିଶୋର କିଶୋରୀମାନଙ୍କ ମଧରେ ପ୍ରଚଳିତ । ଦଶ / ବାରଜଣ ଆଦିବାସୀ ଶିଶୁ ହାତ ଛନ୍ଦାଛନ୍ଦି ହୋଇ ଗୋଲାକର ଭାବେ ଠିଆ ହୋଇଥାନ୍ତି । ମଧ ଭାଗରେ ଜଣେ ଶିଶୁ ସିନ୍ଧିକିଡ଼ା ହୋଇ ବସିଥାଏ । ଦୁଇଜଣ ସିନ୍ଧିକଡ଼ାକୁ ଧରିବା ପାଇଁ ଉଦ୍ୟମ କରିଥାନ୍ତି । ସେହି ଦୁଇଜଣଙ୍କୁ ଭିତକୁ ଯିବାକୁ ସୁଯୋଗ ଦିଆଯାଏ ନାହିଁ । ସିନ୍ଧିକିଡ଼ା ଗୀତର କିଛି ଅଂଶ ହେଉଚି :

"ଆମ୍ ଗଛକେ କାଟା ବେଡ଼ିଲି
ଏକ ସିନ୍ଧିକିଡ଼ା କାଏ କରାପାନି କେ ଧରାନାଇଁ ଯାଇରେ ।
ଆମେ ଧରିନିଆ ଯାଏରେ ।" ଏହିପରି ବିଭିନ୍ନ ଗଛରେ ବାଡ଼ ଦେଇଥିବା

କଥା ଗୀତ ମାଧମରେ ଗାଇଥାନ୍ତି । ବାହାରେ ଥିବା ପିଲାମାନେ ଘେର ଭିତରେ ପଶି ଯାଇ ପାରିଲେ ଖେଳ ଶେଷ ହୋଇ ପୁଣି ଥରେ ଆରମ୍ଭ ହୁଏ । ଏମାନେ ଘେର ଭିତରେ ପଶିବା ବେଳେ ଗାଆନ୍ତି

ଆମ୍‌ଗଚକେ କାଟା ବେଟ୍‌ଲି, ଆମେ ସିନ୍ଧିକିଡ଼ା ଧରିଯାଇରେ
ତେତ୍‌ଲି ଗଛକେ ବାଡ଼ ବେଟ୍‌ଲି, ଆମେ ସିନ୍ଧିକିଡ଼ା ଧରିଯାଇରେ, ଇତ୍ୟାଦି ।
ଅର୍ଥାତ୍, ଆମେ ସବୁ ବାଡ଼ଭାଙ୍ଗି ସିନ୍ଧିକିଡ଼ା ଧରିପାରିବୁ ।

୪୧. ସିନ୍ଧିକିଡ଼ା - *ଦେ.ବି. :* ସିନ୍ଧିବୁଟାର ମୂଳ ବା ଗଣ୍ଡିରେ ରହୁଥିବା ଲୋମହୀନ ତୈଳାକ୍ତ ପୋକ । ଧଳା ରଙ୍ଗର ଦେହ, ଲାଲପାଟି । ପୋଡ଼ି ଖାଇଲେ କିମ୍ବା ଭାଜି

ଖାଇଲେ ବଡ଼ ସୁଆଦ ଲାଗେ । ଯଥା : ହାଏ ଟକି ସିନ୍ଧିକିଡ଼ା ଶାଗ କାଇଲାନି । (ସେହି ଝିଅଟି ସିନ୍ଧିପୋକ ତରକାରୀ ଖାଉଛି ।) ଜଙ୍ଗଲରେ ପର୍ଯ୍ୟାପ୍ତ ପରିମାଣର ସିନ୍ଧିବୁଟା ଦେଖାଯାଏ । ତେଣୁ ଦଳଦଳ ଆଦିବାସୀ ଝିଅ ଏହା ସଂଗ୍ରହ କରନ୍ତି ।

୪୨. **ସିନ୍ଧିଚିଙ୍ଗଲାଣି** - *ଦେ.ବି. :* ଏ ଗାଦବା ସଂପ୍ରଦାୟର ଏକ ବିଧି । ପ୍ରସୂତି ମାତାର ସ୍ୱାମୀ ସିନ୍ଧି କୋଳି ଗଛର ବାହୁଙ୍ଗା ଆଣି ଘର ମୁହଁରେ ପୋତେ । ଏହି ବାହୁଙ୍ଗାକୁ ତୋରଣ ଭଳି କରଯାଇଥାଏ । ଗୋଟିଏ କୁକୁଡ଼ା ଅଣ୍ଡା ଫଟାଇ ତାହାର ତରଳ ଅଂଶକୁ ଚକନିରେ ରଖାଯାଇଥାଏ ଓ ଅଣ୍ଡା ଖୋଳପାକୁ ସିନ୍ଧି ବାହୁଙ୍ଗାରେ ଓହଳା ଯାଇଥାଏ । ଅଣ୍ଡା କେଶର ଥିବା ଚଉକନିରେ ଗୋଟିଏ ହଜାରା (କାଠ ଚମ୍ପା) ଫୁଲ ରଖାଯାଇଥାଏ । ସିନ୍ଧି କୋଳିଗଛ ତୋରଣ ଦେଇଯିବା ଲୋକଙ୍କୁ ଫୁଲ ଦ୍ୱାରା ଅଣ୍ଡାରସ ଛିଞ୍ଚାଯାଉଥାଏ । ପ୍ରଥମେ ପ୍ରସୂତି କରାଇଥିବା ଧାଈ ଏବଂ ପରେ ପ୍ରସୂତି ମାତା ତା'ର ସନ୍ତାନକୁ ନେଇ ସିନ୍ଧିକୋଳି ତୋରଣ ପାର ହୁଅନ୍ତି । ଆଗପଟେ ଇଡ଼ା ତେଲ ରଖାଯାଇଥାଏ । ଏହା ଉଭୟେ ନିଜ ନଖରେ ଓ ମୁଣ୍ଡରେ ଲଗାଇ ନଦୀ, ଝରଣା କିମ୍ବା ପୋଖରୀକୁ ଶୁଦ୍ଧ ସ୍ନାନ ପାଇଁ ଯାଆନ୍ତି । ଏହା ପିଲା ଜନ୍ମର ୧୧ ଦିନ କିମ୍ବା ୨୧ଦିନରେ ହୋଇଥାଏ । ଗାଁର ଝିଅ ବୋହୂମାନଙ୍କୁ ବି ଏହି ସିନ୍ଧି ଚିଙ୍ଗଲାଣି ଉତ୍ସବକୁ ଡକା ଯାଇଥାଏ । ସେମାନେ ରାତିରେ ଭୋଜି ଖାଇ ଟୀକା ଦେଇଥାନ୍ତି । ଟୀକା ହେଉଛି ହଳଦୀ ଚାଉଳ ଓ ଟଙ୍କା ପଇସା ତଥା ଅନ୍ୟାନ୍ୟ ଉପହାର ଭରି ପିଲାକୁ ବନ୍ଧାପନା କରିବା ।

୪୩. **ସିନ୍ଧି ବୁଟା** - *ଦେ.ବି. :* ଭୂଇଁ ଖେଜୁରୀ ବୁଦା । ଇଂ- A type of sweet bush.

ଯଥା : ସିନ୍ଧିବୁଟା ଲୋଗେ ଡୁରକା ବସଲା ଆଚେ । (ଭୂଇଁ ଖଜୁରୀ ବୁଦା ପାଖରେ ହେଟା ବାଘ ବସିଅଛି)

୪୪. **ସିନ୍ଧିବୋର୍** - *ଦେ.ବି. :* ବଣ୍ଡାଙ୍କ ସର୍ବସାଧାରଣ ମିଳନ ପୀଠ । ମାଲକାନଗିରି ଜିଲ୍ଲା ଖଇରାପୁଟ ବ୍ଲକ୍‌ର ବଣ୍ଡା ଆଦିବାସୀ ସଂପ୍ରଦାୟଙ୍କ ଗ୍ରାମର ମଧ୍ୟ ଭାଗରେ ପଥର ଉପରେ ପଥର ଲଦି ଗୋଲାକାର ଆକୃତିର ଏକ ସ୍ମାରକୀ ନିର୍ମାଣ କରାଯାଇଥାଏ । ଏଠାରେ ଗ୍ରାମନାୟକ ଓ ଗ୍ରାମବାସୀମାନେ ଗ୍ରାମର ହାନିଲାଭ,

ନ୍ୟାୟ ମୀମାଂସା ସମ୍ପର୍କରେ ଆଲୋଚନା କରିଥାନ୍ତି । କେତେକ ପଥରକୁ ଏପରି ଭାବେ ତେରି ରଖାଯାଇଥାଏ ଯେ ସେଥିରେ ଚୌକି ପରି ବସାଯାଇପାରେ । ପୁଣି ଏଇ ସିନ୍ଧିବୋର୍‌ଠାରେ ଦିଆଲି ମାସରେ ଗେବୁରସିଂ, ପୁଷମାସରେ ଗିଆଢଡିଙ୍ଗ ଓ ମାଘମାସରେ ବୁରସୁଙ୍ଗ ପୂଜା କରାଯାଏ । ଯେକୌଣସି ପତରକୁ ସିନ୍ଧିବୋର୍‌ଠାରେ ପ୍ରତିଷ୍ଠା କରିବା ପାଇଁ ସେଥିରେ ଶିଶାସଲପ କିମ୍ବା ମଦଢ଼ାଳି ଗୋଟିଏ ନାଲି କୁକୁଡ଼ା ବଳି ଦେଇଥାଏ । ପ୍ରତିପର୍ବ ପୂର୍ବରୁ ସିନ୍ଧିବୋର୍‌କୁ ମରାମତି କରାଯାଏ ଓ ଏହାର ଦେବତା ବୁରୁସଙ୍ଗଙ୍କୁ ଶିଶା କୁକୁଡ଼ା ବଳିଯାଏ । ଗୋଟିଏ ସିନ୍ଧିବୋରର ଶିଶା ଅନ୍ୟ ସିନ୍ଧିବୋରରେ ପୂଜା କରେ ନାହିଁ । ଗାଁର ଛାୟାପ୍ରଦ ସ୍ଥାନରେ ଗୋଟିଏ କରି ସିନ୍ଧିବୋର ଥାଏ । ତେବେ ବଡ଼ପଡ଼ା, ଅଣ୍ଡାହାଲ୍ ଓ ଡମୁରିପଡ଼ାଠାରେ ଦୁଇଟି କରି ସିନ୍ଧିବୋର ରହିଛି, ଏଠାରେ ବଳି ଦିଆଯାଉଥିବା ମାଂସ ତଥା ଶିକାର ଜନ୍ତୁର ମାଂସକୁ ଏହିଠାରେ ହିଁ ଭାଗ କରାଯାଇ ପ୍ରତି ପରିବାରକୁ ପଠାଯାଏ । ଏଠାରେ ସାମୂହିକ ଭୋଜି ଓ ନୃତ୍ୟ ଗୀତ ମଧ୍ୟ ହୋଇଥାଏ ।

୪୫. ସୀତା କନିଆ ପରବ୍ - *ଦେ.ବି. :* ପେଙ୍ଗୁ ପରଜାମାନଙ୍କ ଦ୍ୱାରା ଆଷାଢ଼ ମାସରେ ପାଳନ କରାଯାଉଥିବା ପର୍ବ । ଆଷାଢ଼ ଅମାବାସ୍ୟା ତିଥିରେ ଉଆଁସ ପରବ ବା ବଉଲାଣି ପରବ୍ । ପାଳିତ ହୁଏ । ଗାଁର ଲୋକମାନେ ଫୁଲ, ହଳଦୀ ପାଣି, ନଡ଼ିଆ ଓ କଦଳୀ ଆଦି ସାମଗ୍ରୀ ସହ ସୀତା କନିଆଙ୍କ ପୂଜା କରନ୍ତି । ଏହି ସୀତା କନିଆ ହେଉଛନ୍ତି ଶ୍ରୀ,ସମୃଦ୍ଧ ଓ ଐଶ୍ୱର୍ଯ୍ୟର ଦେବୀ । ପେଙ୍ଗୁ ପରଜାମାନଙ୍କ ମଧ୍ୟରେ ସୀତା ଠାକୁରାଣୀ ଆର୍ଯ୍ୟ ଗୋଷ୍ଠୀଙ୍କ ଲକ୍ଷ୍ମୀଙ୍କ ଭଳି ପୂଜିତ ହୁଅନ୍ତି ।

ସେଦିନ ଗୋଟିଏ ନୂଆ ବାଉଁଶ ପାଡିଆରେ ତିଆରି ଘଙ୍ଗୁଡ଼ିରେ ଧାନବୁନ୍ଦ (ଧାନମୂଳ) ଓ ମାଣ୍ଡିଆ ବୁନ୍ଦ (ମୂଳ) ରଖି ତାକୁ ଗାଁ ମଝିରେ ଥାପନା କରାଯାଇଥିବା ମୁଣ୍ଡ ଦେବତାଙ୍କ ନିକଟରେ ରଖାଯାଏ । ଏହି ଘଙ୍ଗୁଡ଼ିରେ ରଖିବା ପାଇଁ ଗ୍ରାମର ସମସ୍ତରୟତଙ୍କ ଘରୁ ଧାନମୂଳ ଆସିଥାଏ । ଏହି ବିଧିକୁ 'ସୀତା କନିଆ ପରବ' (ଉଆଁସ ପରବ) ବୋଲି କୁହାଯାଏ । ଘଙ୍ଗୁଡ଼ି ନିକଟରେ ଧାନ, ମାଣ୍ଡିଆ ପୂଜା କରାଯାଏ । ଯେଉଁ ଧାନ ମାଣ୍ଡିଆ ଗଜା ହୋଇଥାଏ ତାହାକୁ ସୀତାକନିଆ କୁହାଯାଏ । ଏହି ଗଜା ହୋଇଥିବା ଘଙ୍ଗୁଡ଼ି ଉପରେ ଅଁଳା ଡ଼ାଳପୋତି ଛାମୁଣ୍ଡିଆ କଲାପରେ ଜାନି (ପୁରୋହିତ / ପୂଜାରୀ) ସୀତା କନିଆ ଗୀତ ଗାଏ । ଯଥା :

"ଆଁଲୁ ଦାସୁରେ ଦାସୁରେ
ଆଲୁ ଦାସୁରେ ଦାସୁରେ
ନାନା ଟାକୁରାଣିତି ଆମା ଲଛମିରାଣିତି
ସେବା କିଦନାଂଗା ନାନାରେ
କାଟିନି କିଦନାଂଗା ଆମାରୋଇ
ମତପୁଡ଼ା ଗିଦିମ ଆମା ରୋଇ
ଗାଈଗୋରୁ ଲିତା
ଡମ୍ ଘର ଲିତା ତିନାମ୍
ହାବୁ ହାଲି ଗିଦିମା ।

(ଦେଖମା ତୁ ! ଦେଖମା ତୁ, ମା ଠାକୁରାଣୀ, ମା ଲକ୍ଷ୍ମୀରାଣୀ, ସେବା କରୁଅଛି, ଧୂପବାସ ଦେଉଅଛି । ପ୍ରାର୍ଥନା ଶୁଣୁ । ଗାଈଗୋରୁ ସମସ୍ତଙ୍କର ମଙ୍ଗଳ ହେଉ । ଗାଈଗୋରୁଙ୍କୁ ସେବା କରୁଥିବା ଡମ୍ବର ମଙ୍ଗଳ ହେଉ ।) ଜାନୀଗୀତ ଗାଇ ସାରିଲା ପରେ ଗାଁର ସବୁ ଘରର ସ୍ତ୍ରୀମାନେ ନିଜ ନିଜ ଘରୁ ଜଡ଼ାତେଲ ଆଣି ଜାନୀକୁ ଦିଅନ୍ତି । ଜାନୀ ସେଠି ଜମା ହୋଇଥିବା ଗାଁର ସବୁ ଲୋକଙ୍କ ମୁଣ୍ଡର ଏହା ଲଗାଇ ଦିଅନ୍ତି, ଏହି ବିଶ୍ୱାସରେ ଯେ ଲକ୍ଷ୍ମୀ ଠାକୁରାଣୀ ସନ୍ତୁଷ୍ଟ ହେବେ ।

ତାପରେ ସୀତା କନିଆ ପାଖରେ ପାରା ବା କୁକୁଡ଼ା ବଳି ଦିଆଯାଏ । ନଡ଼ିଆ କଦଳୀ ପୂଜା କଲାପରେ ଧୂପନି (ଝୁଣା) ବାସ ଦିଆଯାଏ । ଏହି କ୍ରିୟା ସରିଲାପରେ ଅଁଳା ଛାମୁଣ୍ଡିଆ ତଳେ ଜମାହୋଇଥିବା ଧାନ, ମାଣ୍ଡିଆକୁ ନେଇ ପରଜାମାନେ ଲାନ୍ଦା ତିଆରି କରନ୍ତି ଓ ତାକୁ ପିଇ ହର୍ଷ ଉଲ୍ଲାସରେ ଗୀତ ଗାଇ ଗାଇ ନାଚ କରନ୍ତି ।

୪୬. ସୁଙ୍କି - *ଦେ.ବି. :* ଏକ ଘାଟି ଗାଁର ନାମ । ଜୟପୁର ବିଜୟନଗର ରାସ୍ତାରେ ସୁଙ୍କି ନାମକ ଯେଉଁ ଗାଁ ପଡ଼େ ସେହି ଗ୍ରାମକୁ ଇଂରେଜ କଣ୍ଟ୍ରାକ୍ଟର ସୁଙ୍କି ସାହେବଙ୍କ ନାମରେ ନାମିତ କରାଯାଇଛି । ପଟାଙ୍ଗୀଠାରୁ ପ୍ରାୟ ୨୦ କି.ମି. ଘାଟି ରାସ୍ତାରେ ଯିବାପରେ ଏହା ଆସେ । ଏହାକୁ ଓଡ଼ିଶା ଓ ଆନ୍ଧ୍ର ପ୍ରଦେଶର ସୀମାନ୍ତ ଗାଁ ରୂପେ ମାନ୍ୟ ଦିଆଯାଏ ।

୪୭. ସିଣ୍ଡି - ଦେ.ବି. : ମଦ ଦୋକାନ ।

୪୮. ସୁଣ୍ଡି (ଶୁଣ୍ଡି) - ଦେ.ବି. : ସିଣ୍ଡି କରିଥିବା ଲୋକ । ଯେଉଁମାନେ ମଦ ଦୋକାନ କରି ମଦ ବିକ୍ରି କରନ୍ତି । ସଣ୍ଡି ବୃତ୍ତି କରୁଥିବାରୁ ଏମାନଙ୍କୁ ଶୁଣ୍ଡି (ସୁଣ୍ଡି) କୁହାଯାଏ । ଅଭିବକ୍ତ କୋରାପୁଟ ଜିଲ୍ଲାର ପ୍ରାୟ ସବୁ ଅଞ୍ଚଳରେ ଏହି ବୃତ୍ତିଧାରୀ ଲୋକ ଦେଖାଯାଆନ୍ତି । କାଳକ୍ରମେ ସୁଣ୍ଡିମାନଙ୍କୁ ନେଇ ଏକଜାତି ସୃଷ୍ଟି ହୋଇଛି । ସେମାନଙ୍କ ସଂଜ୍ଞା ସାଧାରଣତଃ ବିଷୋୟୀ, ଚୌଧୁରୀ, ରାଓ, ପରିଡ଼ା ଇତ୍ୟାଦି । ମଦ ବ୍ୟବସାୟ ଜରିଆରେ ଜମି ସଂଗ୍ରହ ଓ ଦଖଲ କରି ଆଦିବାସୀମାନଙ୍କୁ ଭୂମିହୀନ କରୁଥିବାରୁ ଏମାନଙ୍କ ପ୍ରତି ଆଦିବାସୀମାନଙ୍କର ଖୁବ୍ ଘୃଣା ।

ଏମାନଙ୍କୁ ନେଇ ଲୋକଗୀତ : (ଦେଶିଆ)

"ସୁଣ୍ଡିର ମାଇଜି ବଡ଼େ ଚତୁର
ମନ୍ଦ ପାନି ଦେଇ ଡାବୁ ନେବାର ।"

(ଶୁଣ୍ଡିର ସ୍ତ୍ରୀ ଭାରି ଚତୁର) : ମଦରେ ପାଣି ମିଶାଇ ପଇସା ନେବା କଳାରେ ପାରିବାର ଅଟେ ।)

୪୯. ସୁତକ୍ ସେଣ୍ଡେ - ଦେ.ବି. : ମୃତ୍ୟୁ ସଂପର୍କରେ ଏକ ବିଧି ବିଶେଷ । ଜଣେ ବ୍ୟକ୍ତିର ମୃତ୍ୟୁ ଅବସରରେ ତିନି ଦିନ ପର୍ଯ୍ୟନ୍ତ ଅଛୁଁଆ ରହିବା ପ୍ରଥା । କେବଳ ମୃତକ ପରିବାରର ଲୋକେ ଅଛୁଆଁ ରହନ୍ତି । ମୃତ୍ୟୁର ତୃତୀୟ ଦିବସରେ ତେଲ କର୍ମ କରନ୍ତି । ତା'ପରେ ଶୁଚି ସ୍ନାନ କରି ଲୁଗାପଟା ସଫା କରନ୍ତି ଓ ଅଛୁଆଁ ଦୂର ହୋଇଥାଏ । ପ୍ରାୟ ସବୁ ଆଦିବାସୀ ସଂପ୍ରଦାୟରେ ଏହି ତିନି ଦିନିଆ ପ୍ରଥା ପାଳନ କରାଯାଏ । ଅଣ ଆଦିବାସୀ ସମାଜରେ ମୁଖାଗ୍ନି ଦେଇଥିବା ଲୋକ ୧୧ ଦିନ ଧରି ଅଛୁଆଁ ରହେ ।

୫୦. ସୁନାବେଡ଼ା - ଦେ.ବି. : କୋରାପୁଟ ଓ ସିମୁଳିଗୁଡ଼ା ମଧ୍ୟସ୍ଥ ଏକ ଶିଳ୍ପ ସହର । ଏହାର ଶାବ୍ଦିକ ଅର୍ଥ ହେଉଛି, ସୁନାର ଗାଁ ବା ସୁନା ପରି ଦେଖାଯାଉଥିବା ଶସ୍ୟକ୍ଷେତ୍ରର ଗାଁ । ବାସ୍ତବରେ ପ୍ରାୟ ୫ଟି ଗାଁର ଲୋକଙ୍କୁ ବିସ୍ଥାପିତ କରି ସୁନାବେଡ଼ା ମିଗ୍ କାରଖାନା ଓ ସହର ଗଢ଼ି ଉଠିଛି । ଏବେ ମଧ୍ୟ ବିସ୍ଥାପିତମାନେ ଅବ୍ୟବହୃତ ସ୍ଥାନ ଫେରି ପାଇବା ଲାଗି ସଂଗ୍ରାମ ଜାରି ରଖିଛନ୍ତି ।

୫୧. ସୁନୁକମି - ବ.ବି. : ଏହା ଏକ ବଣ୍ଡା ଆଭୂଷଣ । ସୁନା ତିଆରି ନାକ ଫୁଲ । ବଣ୍ଡା ରମଣୀମାନେ ପିନ୍ଧିଥାନ୍ତି । ଏହା ଏକ ବଣ୍ଡା ଆଭୂଷଣ ।

୫୨. ସୁରବକ୍ସିଂ - ଦେ.ବି. : ବଣ୍ଡା ବରମାନେ କନ୍ୟାଘରକୁ ବିବାହର ମାସେ, ଦେଢ଼ମାସ ପୂର୍ବରୁ ଯାଇ କିଛି ଦିନ ରହିବାର ପ୍ରଥାକୁ 'ସୁର ବକ୍ସିଂ' କୁହାଯାଏ । କନ୍ୟାପିତା ଏହି ଅବସରେ ଭୋଜି ଦେଇଥାଏ । ଭୋଜିରେ କନ୍ୟା ଘରେ ରିଗଜାଂ ସେଲି (ଭାତ, ସୁଆଁ ଭାତ ମାଂସ) ରନ୍ଧାଯାଏ । ବର ଓ କନ୍ୟା ଗାଁର ସବୁ ଲୋକେ ଏଥିରେ ଅଂଶ ଗ୍ରହଣ କରିଥାଆନ୍ତି

୫୩. ସୁରୁଙ୍ଗନାଡ଼ା - ଦେ.ବି. : ଓଲୁଅ ବା ଓଲୁଅ କନ୍ଦା । ମାଟିତଳେ ଫଳେ । ମଳକଣ୍ଟକ ରୋଗ ପାଇଁ ଔଷଧ ରୂପେ ଏହା ସିଝାଇ ଖିଆଯାଏ ।

୫୪. ସୁରୁଡ଼ି - ଦେ.ବି. : କନ୍ଧମାନଙ୍କ ଲମ୍ୱା ବଇଁଶୀ । ବଇଁଶୀ : କନ୍ଧସମାଜରେ ପ୍ରାୟ ସମସ୍ତ ପର୍ବପର୍ବାଣୀ ଓ ବିବାହରେ ନୃତ୍ୟଗୀତ ପାଇଁ ବ୍ୟବହୃତ ବାଦ୍ୟ ଯନ୍ତ୍ର । ଅନ୍ୟାନ୍ୟ ବଂଶୀ ଯଥା ଆଡବଂଶୀ ବା ମଧ ବଂଶୀ ତୁଳନାରେ ଏହାର ସ୍ୱର ଗମ୍ଭୀର ତଥା ସୁଦୂରଗାମୀ । ଧୀରେଧୀରେ ଏ ସୁରୁଡ଼ି ଓ ଏହାର ବାହକମାନେ ଲୋପ ପାଇ ଆସିଲେଣି ।

୫୫. ସୁରୁଡ଼ି ବିହା - ଦେ.ବି. : କନ୍ଧ ସମାଜରେ ବହୁତ ବର୍ଷ ପୂର୍ବେ ଏହି ବାହାଘରର ଅନୁଷ୍ଠିତ ହେଉଥିଲା । ପାରମ୍ପରିକ ରୀତିରେ ବର କନ୍ୟାଙ୍କ ନିର୍ବନ୍ଧ ପରେ ବରଯାତ୍ରୀ କନ୍ୟା ଆଣିବାକୁ ଗଲାବେଳେ ଧାଙ୍ଗଡ଼ା ଧାଙ୍ଗଡ଼ୀ ଦଳ ପାଦରେ ଗେରା ପିନ୍ଧି ବଇଁଶୀ ବଜେଇ (ସୁରୁଡ଼ି) ନୃତ୍ୟକରି ଯାଆନ୍ତି । ତାଙ୍କର ପ୍ରତି ପଦପାତକୁ କିଛି ଟଙ୍କା (ଯଥା- ଟଙ୍କା ଏ / ଦୁଇଟଙ୍କା ଏପରିକି ୫ ଟଙ୍କା ପର୍ଯ୍ୟନ୍ତ) ସ୍ଥିର କରାଯାଏ । ଯାହାକି, ବରପକ୍ଷରୁ ଆଦାୟ କରାଯାଏ । ଏହି ବ୍ୟୟ ବହୁଳ ବାହାଘର ସମ୍ପ୍ରତି ବିଲୁପ୍ତ ପ୍ରାୟ ।

୫୬. ସୁଂ - ଦେ.ବି. : ସଉରାମାନଙ୍କ ଦେବତା । ସଉରାମାନଙ୍କ ମୁଖ୍ୟଦେବତା କିତୁଂଙ୍କୁ ଛାଡ଼ିଦେଲେ ସୂର୍ଯ୍ୟ, ଚନ୍ଦ୍ର, ବୃକ୍ଷ, ଜଳ, ବସୁମାତା ଆଦିକୁ ସଉରାମାନେ ପୂଜା କରନ୍ତି । ଏମାନେ ସମସ୍ତେ ସୁଂ ବା ଘରର ରକ୍ଷାକର୍ତ୍ତା ଦେବତା ଅଟନ୍ତି ।

୫୭. ସେନଗେତ୍ - ଦେ.ବି. : ଦୁରୁଆ ସଂପ୍ରଦାୟରେ ପ୍ରଚଳିତ ସଂଗାତ ପ୍ରଥା । ସଙ୍ଗାତ / ମଇତ୍ର ବସିବା (କ୍ରି.)

ଦୁଇ ପୁଅ ବା ଦୁଇ ଝିଅ ପର୍ବ ସମୟରେ ପରସ୍ପରକୁ ଫୁଲ ପିନ୍ଧାଇ ବା ବାନ୍ଧି ସଂଗାତ ବା ମଇତ୍ର ବସିଥାନ୍ତି । ଅନ୍ୟ ଆଦିବାସୀ ଗୋଷ୍ଠୀ ବାଲିଫୁଲ ବସନ୍ତି । ବାଲିଯାତ୍ରା ଅବସରରେ ବାଲି କୁଡ଼ିଆରେ ଆଙ୍କୁରିଥିବା ବିଭିନ୍ନ ଶସ୍ୟର କଅଁଳ ଗଛକୁ ବିସର୍ଜନ ଦିନ ଗୁରୁମାଈ ଠାରୁ ଗ୍ରହଣ କରି ସମୟବୟସ୍କ ପୁଅ-ଝିଅ ଏହାକୁ କାନରେ ଖୋସି ସଙ୍ଗାତ ବସିଥାନ୍ତି । ଏହା ଦୁରୁଆ ଝିଅମାନଙ୍କ କ୍ଷେତ୍ରରେ ମଧ୍ୟ ଦେଖାଯାଇଥାଏ । ଏମାନେ ଫୁଲବନ୍ଧା ପରେ ପରସ୍ପରକୁ 'ସେନ୍‌ଗେତ୍' ନାମରେ ସମ୍ବୋଧନ କରିଥାନ୍ତି ।

୫୮. ସେମିଲିମୁଣ୍ଡା - ଦେ.ବି. : ଗତରମୁଣ୍ଡା । ଗଦବାମାନେ ଗତର ମେଲିଲା ବେଳେ ଗତର ପଡ଼ିଆଠାରେ ପୋଢ଼ମାନଙ୍କୁ ଗୋଡାଇ ଗୋଡାଇ ହଣାଯାଏ । ସେଇଠି ପୋଢ଼ମାନଙ୍କୁ ବାନ୍ଧିବା ପାଇଁ ଏକ ସେମିଲି ଗଛର ଖୁଣ୍ଟପୋତା ଯାଇଥାଏ । ତାକୁ 'ଗତର ମୁଣ୍ଡା' କୁହାଯାଏ (ଦ୍ର. ଗତର)

୫୯. ସେଲଗ୍ ବଏ ଶାମ : ଦେ.ବି. : ବଣ୍ଡା ସମାଜରେ କନିଆ ମନେଇବା ଗୀତ । ଇଂ- Songs to woo the women.

ଉଦାହରଣ : "ମଏନା ତମ୍ ନା କିମି ରାମ୍ଦି ନା କିମିନ୍
ଗୁସାଂତମ୍ ନା କିମି ମଏନା ନ
ସିବତମ୍ ନା କିମି ଓରେଲ ତମ୍‌ନା ବାଇ
କୁମ୍ରେତମ୍ ନା କିମି ମଏନା ନ ।"

ଏହି ଗୀତରେ ଯୁବକମାନେ କନ୍ୟାକୁ ବଣି, ମଇନା, ହଳଦୀ ବସନ୍ତ, ଶୁଆ ଆଦି ପକ୍ଷୀର ସୌନ୍ଦର୍ଯ୍ୟ ସହ ତୁଳନା କରି ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଆଦରରେ ଖଡୁ ବା 'ସମୁରଇ' ଗ୍ରହଣ କରିବାକୁ ଅନୁରୋଧ କରିଥାନ୍ତି । ବାସ୍ତବରେ ଝିଅଙ୍କୁ ମନେଇ ବିବାହର ସ୍ୱୀକୃତି ହାସଲ କରିବାର ଗୀତ ହେଉଛି 'ସେଲଗ୍ ବଏ ଶାମ୍' ।

୬୦. ସେବୁଙ୍ଗ - ଦେ.ବି. : ନିୟମିତ ବିବାହ, ଯାହାକି ବଣ୍ଡା ସମାଜରେ ପ୍ରଚଳିତ । ଧାଙ୍ଗଡ଼ୀ ବସାରୁ କନ୍ୟାପସନ୍ଦ କରି ସେହି କନ୍ୟାକୁ ମନାଇବା ପରେ ପିତାମାତାଙ୍କ ପରାମର୍ଶରେ ବିବାହ କରିବାକୁ 'ସାଲାକ୍ ବୋଇ' କୁହାଯାଏ । କନ୍ୟାପତାଙ୍କୁ

କନ୍ୟାସୁନାଦେଇ କନ୍ୟାମଗି ବିବାହ ହେବା ପ୍ରଥମାକୁ 'ଲୁଲୁ ଉଇକା' କୁହାଯାଏ । ଅନ୍ୟ ସଂପ୍ରଦାୟ ମାଙ୍ଗିନିବିଭା ସହ ଏହା ସମତୁଲ୍ୟ । ଦୁଇ ପକ୍ଷର ସହମତିରେ ହେଉଥିବା ବଣ୍ଡା ବିବାହ ହେଉଛି ତିନି ପ୍ରକାର : ସେବୁଙ୍ଗ, ସେଲାକବୋଇ ଓ ଲୁଲୁ ଉଇକା । ସେବୁଙ୍ଗ ହେଉଛି ନିୟମିତ ଦୀର୍ଘସୂତ୍ରୀ ବିଭା ।

କନ୍ୟା ନିର୍ବାଚନ ପରେ କନ୍ୟାର କର୍ମ ନିପୂଣତା ପରଖିବା ପାଇଁ କନ୍ୟା ବରଘରକୁ ଆସି ବିଭିନ୍ନ ପ୍ରକାରର ଘରକାମ, ଋଷକାମ ଓ ଜଙ୍ଗଲ କାମ କରେ । ଏହା ଦ୍ୱାରା ସେ ନିଜ କର୍ମନିପୂଣତାର ପରୀକ୍ଷାଦିଏ । କିନ୍ତୁ, ଶ୍ୱଶୁର ଘରେଁ ଖାଏ ନାହିଁକି ଶୁଏନାହିଁ । ତା କାମରେ ସନ୍ତୁଷ୍ଟ ହେଲେ ପୁଅର ବାପା ଝିଅ ବାପାକୁ ମଦ ଦେଇ କହେ ଯେ, "ଆସନ୍ତା ସପ୍ତାହରେ ମୁଁ ସାଗୁରଟଙ୍କା ଦେବି ଓ ମୋ ବୋହୂ ମୋ ଘରେ ଖାଇବ ।" ଝିଅବାପା ସମ୍ମତି ଦେଲେ ଅଳ୍ପଦିନ ଭିତରେ ବିବାହ ଅନୁଷ୍ଠିତ ହୁଏ । ବିଭିନ୍ନ ପର୍ଯ୍ୟାୟରେ ଏହି ଦୀର୍ଘସୂଚୀ ଓ ବ୍ୟୟବହୁଳ ବିବାହ ଅନୁଷ୍ଠିତ ହୋଇଥାଏ ।

*୬୧.* ସୋରୁ - *ଦେ.ବି. :* ପୂଜା ପ୍ରସାଦ । ଗାଦବା ପୁଅ ବିବାହ କରିସାରିଲା ପରେ ବରର ମାମୁ ଓ କନ୍ୟାର ମାମୁ ଉପହାର ସ୍ୱରୂପ ସାଥିରେ ଆଣିଥିବା ଛେଳି, ଗାଈ ଓ ମଦ ଆଦି ଦିଅନ୍ତି । ବିବାହ ଶେଷରେ ବରକନ୍ୟାକୁ ଆଶୀର୍ବାଦ ଦିଅନ୍ତି । ମାମୁ ସୋରୁ ବା ପୂଜା ପ୍ରସାଦ ପ୍ରସ୍ତୁତ କରି ବୋହୂକୁ ଦିଏ, ଯାହାକୁ ଖାଇବା ପରେ ବୋହୂକୁ ବରର ଗୋତ୍ରରେ ଗ୍ରହଣ କରାଯାଏ । ଚାଉଳ, ଡାଲି, ପନିପରିବା, ମାଛ ଓ ମାଉଁସ ମିଶାଇ ଏହି ସୋରୁ ପ୍ରସ୍ତୁତ ହୋଇଥାଏ ।





୧.  ହଜାରିଫୁଲ - ଦେ.ବି. : ଶହେ ଟଙ୍କିଆ ଫୁଲ - କାଠ ଚମ୍ପା, ଅଧିକାଂଶ ଦେଶିଆ ପର୍ବପର୍ବାଣୀରେ ପୂଜା ଯାତରାରେ ପୂଜାରୀ, ଶିଶା ଓ ଜାନିମାନେ ଏହି ଫୁଲର ବ୍ୟବହା କରିଥାନ୍ତି । ନାରାୟଣ ପାଟଣାର ଚୈତ୍ର ପର୍ବ ଅବସରରେ ଘଣ୍ଟ ଯାତ୍ରା କାଳରେ ଠାକୁରାଣୀ ରୂପେ କୁମାରୀ ପିଲାମାନଙ୍କୁ ବରଣ କରାଯାଏ । ହଜାରୀ ଫୁଲ ବା କାଠଚମ୍ପା ଠାକୁରାଣୀ ମାତାଙ୍କର ପ୍ରିୟ ଫୁଲ ଅଟେ । ଘଟଯାତ୍ରାରେ କୁମାରୀକନ୍ୟାମାନେ ଦେବୀ ପ୍ରତୀକ ଘଟଗୁଡ଼ିକରେ କାଠଚମ୍ପା ଫୁଲର ମାଳ ଚଢ଼ାଇଥାନ୍ତି ।

୨.  ହନ୍ତାଳ - ଦେ.ବି. : ଏହା ଏକ ପ୍ରକାର ବଂଶ ବା ଗୋତ୍ରର ନାମ । ଏହା ପ୍ରାୟତଃ ନାଗବଂଶକୁ ବୁଝାଏ ।

୩.  ହରୁ - ଦେ.ବି. : ବଣ / ଜଂଗଲ, ଇଂ- Forest. ବଣ ଆଦିବାସୀ ସମାଜରେ ଅର୍ଥନୀତି ଓ ସଂସ୍କୃତି କ୍ଷେତ୍ରରେ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ଖାଦ୍ୟପେୟ, ବାସଗୃହ ସକାଶେ ଆଦିବାସୀମାନେ ଏହା ଉପରେ ନିର୍ଭର କରିଥାନ୍ତି । କନ୍ଧ ସମାଜରେ ଜଂଗଲକୁ ହରୁ ବୋଲି କୁହାଯାଇଥାଏ । (ଦ୍ର. ଜଂଗଲ ।)

୪.  ହରୁପେନୁ - ଦେ.ବି. : ବଣ ଦେବତା । ଇଂ- Forest God. ହରୁପେନୁ ମୁଖ୍ୟତଃ କନ୍ଧମାନଙ୍କ ଦ୍ୱାରା ପୂଜିତ । ଧରତନୀ ପେନୁଙ୍କ ପଛକୁ ହରୁପେନୁଙ୍କର ସ୍ଥାନ । ଏହାଙ୍କ ପାଇଁ ମଧ ପୋଢ଼ ଇତ୍ୟାଦି ବଡ଼ ଜୀବଙ୍କ ବଳି ଆୟୋଜନ କରାଯାଇଥାଏ ।

୫.  ହଲଦି - ଦେ.ବି. : ହଳଦୀ । ଇଂ- Turmeric. ହଳଦୀ ଗଛର କନ୍ଦାକୁ ବ୍ୟଞ୍ଜନରେ ଓ ଔଷଧ ଭାବେ ବ୍ୟବହାର କରାଯାଏ । ବିବାହ ଓ ଅନ୍ୟାନ୍ୟ ଶୁଭ କାର୍ଯ୍ୟରେ ହଳଦୀର ଗୁରୁତ୍ୱ ରହିଛି ଏବଂ ଏହାର ବ୍ୟବହାର ଏକାନ୍ତ ଅପରିହାର୍ଯ୍ୟ । ଚର୍ମରୋଗ, କୃମି ରୋଗ ଓ ଗଛପତ୍ର ରୋଗରେ ଏହା ଅତ୍ୟନ୍ତ ଉପକାରୀ । ଆଦିବାସୀ ସମାଜରେ ହଳଦୀକୁ ନେଇ ରହିଥିବା ବହୁ ପ୍ରବାଦରୁ ସେମାନଙ୍କ ସଂସ୍କୃତିରେ ହଳଦୀର

ଗୁରୁତ୍ୱ ଓ ହଳଦୀ ପ୍ରତି ସେମାନଙ୍କ ଶ୍ରଦ୍ଧାର ପ୍ରମାଣ ମିଳେ । ହଳଦୀ ସଂପର୍କରେ କେତୋଟି ପ୍ରବାଦ ହେଉଛି :

(୧) ହଲ୍‌ଦୀଚିକନ୍ ପିଲାଟକି,
ନିଙ୍ଗା କେଲାର ତାସ୍ ।

ଅର୍ଥାତ୍, ହଳଦୀ ତେଲ ମାଖିଲେ ପିଲାମାନେ ଭଲ ରହନ୍ତି, ନିଙ୍ଗାନି କଲେ ବା ଘାସ ବାଛିଲେ ଚାଷ ଭଲ ରହେ ।

(୨) ହଲ୍‌ଦୀ ପାନି ଜୁରୁରା,
କାବାଡ଼ ମୁର୍‌ମୁରା ।

ଅର୍ଥାତ୍, ହଳଦୀପାଣି ଲଗେଇଥିଲେ କିସ ହେବ, ଯଦି ସେ କାମ ନକରେ ।

(୩) ହଳଦୀପାନି ଜୁର୍‌ଜୁରା
ଶଶୁର୍ ବୁଆରି ଘର୍‌ପାରା ।

ଅର୍ଥାତ୍, ହଳଦୀପାଣି ଭଲଭାବେ ଲଗେଇ କରି ଦେଢ଼ଶୁର ସହ ରହିବା ଭଳିଆ ।

(୪) ହଲଦୀ ଟିକ୍‌ଲେ ଲୁଗା
ହାତ ଧୋଇଲେ ମାଇଜି ।

ଅର୍ଥାତ୍, ହଳଦୀ ଲଗେଇଲେ ଯାଇ ନୂଆ କପଡ଼ା ପିନ୍ଧିହୁଏ, ହାତ ଧରିବା ସ୍ତ୍ରୀକୁ ବିବାହ ହେବାକୁ ପଡ଼େ ।

(୫) ଦେଶିଆ ଲକ୍‌ର ହଲଦୀପାନି ଗଡ଼ିଆଲକ୍‌କେ ସାବୁ
ସଂଜ ସଂଜ୍ ବେଲେ ବଜାର୍‌ଗଲେ ଟିପିନ୍ ପୁରନ୍ ଡାବୁ ।

(୬) ମନୁଷ୍ ମଲେ ହଲ୍‌ଦୀ ଚିକନ୍, ଦେଓର ମଲେ ରାଣ୍ଡ

ଅର୍ଥାତ୍, ସ୍ୱାମୀମଲେ ତେଲ ହଲଦୀ ଲଗାଯାଏ । ଦିଅର ମଲେ ରାଣ୍ଡ ହୁଆଯାଏ ।

୫. ହଲଦୀକୁଟନି - *ଦେ.କ୍ରି. ବି. :* ବିବାହର ପ୍ରଥମ ଦିନ ହଳଦି କୁଟି ବିବାହ ବେଦୀ ଲିପିବା । ଭୂମିଆ ସଂପ୍ରଦାୟରେ ବିବାହ ତିନିଦିନ ମଧ୍ୟରେ ସମାପ୍ତ ହୋଇଥାଏ । ଏହାର ପ୍ରଥମଦିନ ସ୍ତ୍ରୀ ଲୋକମାନେ ଢେଙ୍କିରେ ହଳଦୀ କୁଟି ସେଇ ଗୁଣ୍ଡରେ ପାଣି ମିଶାଇ ହାଣ୍ଡିରେ ଲିପି ବିବାହ ବେଦୀରେ ପ୍ରତିଷ୍ଠା କରନ୍ତି । ଏହି ବେଦୀ ଲିପିବା ପ୍ରଥାକୁ 'ହଳଦୀ କୁଟ୍‌ନି' କୁହାଯାଏ ।

୬. ହଲ୍‌ପୋଡ଼ି - *ଦେ.ବି. :* ଆଦିବାସୀ ମାନଙ୍କ ଅଗ୍ନି ଉତ୍ସବ । ହଲ୍‌ପୋଡ଼ି ଅବିଭକ୍ତ କୋରାପୁଟ ଜିଲ୍ଲାର ଏକ ସାର୍ବଜନୀନ ପର୍ବ । ଆଦିବାସୀ ସଂସ୍କୃତିର ଏହି

ଅଗ୍ନି ଉତ୍ସବ ପର୍ବକୁ ଅଣଆଦିବାସୀମାନେ ମଧ୍ୟ ସମାନ ମାନ୍ୟତା ଦେଇଥାନ୍ତି । ଦୋଳପୂର୍ଣ୍ଣମୀର ପୂର୍ବ ରାତିରେ ଏହା ଅନୁଷ୍ଠିତ ହୋଇଥାଏ । ସଂପୃକ୍ତ ଗ୍ରାମର ଏକ ପରଂପରା ଗତ ଏକ ବିଶିଷ୍ଟ ସ୍ଥାନରେ ପିଆଲ୍ ବା ବିଭିନ୍ନ ପ୍ରକାରର ତୃଣ ଓ ଶୁଖିଲା କାଠ ବାଉଁଶକୁ ଗଦା କରି ସେଥିରେ ଅଗ୍ନି ସଂଯୋଗ କରାଯାଇଥାଏ । ରାତିଯାକ ଏହି ଅଗ୍ନି ଜଳିବାର ବିଧି ରହିଛି । କେତେକ ଗ୍ରାମରେ ହଳପୋଡ଼ି ନିଆଁ ପ୍ରତ୍ୟେକ ଘରେ ପୂଜାରୀ ବିତରଣ କରିଥାଏ ଏବଂ ସେହି ନିଆଁର ସଂଯୋଗରେ ନୂଆ କାନ୍ଦୁଲ ଭଜା ଯାଇ, କାନ୍ଦୁଲ, ମହୁଲ ଓ ଆମ୍ବ ନୂଆଖିଆ ପର୍ବ ଅନୁଷ୍ଠିତ ହୁଏ । କୁସୁମୀ ଆଦି ଗ୍ରାମରେ ଝାମୁ ଯାତ୍ରା ପରି ହଲ୍‌ପୋଡ଼ି ଅଗ୍ନିରେ ଭକ୍ତମାନେ ଚାଲିଯିବାର ଦୃଶ୍ୟ ଦେଖାଯାଏ । ହଲ୍‌ପୋଡ଼ି ଅଗ୍ନି ସଂଯୋଗ ସମୟରେ କେତେକ ଗ୍ରାମରେ ସାତ୍ତ୍ୱିକ ପୂଜା (ବୈଷ୍ଣବ ରୀତିରେ) ପ୍ରଚଳିତ ଏବଂ ଆଉ କେତେକ ଗ୍ରାମରେ ବାମାଚାରୀ ରୀତି ଅନୁସୃତ ହୋଇଥାଏ । ଏଭଳି ହଲ୍‌ପୋଡ଼ି ଜାଗାକୁ ‘ହଲ୍‌ପୋଡ଼ି ଭଟା’ କୁହାଯାଏ । ଏହା ବାସ୍ତବରେ ହେଉଛି ହଳ ବା ଚାଷ ପାଇଁ ନିଆଁକୁ ବ୍ୟବହାର କରିବାର ପର୍ବ । ଏହା ଫାଲ୍‌ଗୁନ ପୂର୍ଣ୍ଣମୀ ରାତିରେ ପାଳନ କରାଯାଏ । ଏହିଦିନ ଆଦିବାସୀ ଲୋକମାନେ ଜଂଗଲରୁ କାଠ ଆଣି ଗାଁ ଦାଣ୍ଡରେ ଗଦା କରି ହୋମ କୁଣ୍ଡପରି ସଜାଇ ରଖନ୍ତି । ଏହି କାଠ ଗଦାରେ ଏକ ହଳଦିଆ ରଂଗର ପତାକା ଲଗାଯାଇଥାଏ । ରାତ୍ର ଅଧରେ ଗ୍ରାମର, ମୁଖିଆ, ନାୟକ, ପେଦା, ଦିଶାରୀ ଆଦି ମୁଖ୍ୟମୁଖ୍ୟ ଲୋକମାନେ ଏହି କାଠ ଗଦାକୁ ପୂଜା କରି ଏହାର ଚାରିପାଖରେ ବେଢ଼ି ରହି ଏଥିରେ ନିଆଁ ଲଗାନ୍ତି । ସ୍ତ୍ରୀ ଲୋକମାନେ ହୁଳହୁଳି ଦେଇ ଗୀତ ନାଚ କରନ୍ତି । ନିଆଁ ଲାଗିଲା ପରେ ପତାକାଟି ଯେଉଁ ଦିଗକୁ ଜଳିପଡ଼େ ସେହି ଦିଗକୁ ମୁଖ କରି ଦିଶାରୀ ଗ୍ରାମର ଭଲମନ୍ଦ ଓ କୃଷି କିପରି ହେବ ସମସ୍ତ ଶୁଭାଶୁଭ କହିଥାଏ । ମୂଳତଃ ଏହା ଜଂଗଲ ଜମିକୁ ପୋଡ଼ି ଚାଷ ପାଇଁ ଜମି ପ୍ରସ୍ତୁତ କରିବାର ଏକ ଶୁଭାରମ୍ଭ ପର୍ବ ଅଟେ । ଏହାପରେ ଆଦିବାସୀମାନେ ପୋଡୁଚାଷ କାମ ଆରମ୍ଭ କରିଥାନ୍ତି ।

ଅନ୍ୟପକ୍ଷରେ ଏହି ପୂଜା ଭଲ ଫସଲ ହେବାପାଇଁ ଗୋରୁଗାଈ ଓ ଗ୍ରାମ ଲୋକମାନେ ସୁଖରେ ରହିବା ପାଇଁ, ଗାଁରେ ରୋଗ ବଇରାଗ ନ ହେବା ପାଇଁ ପାଙ୍ଗଣିଆ ବା ଡାଆଣି, ଚିରୁଗୁଣି ଗାଁ ଛାଡ଼ି ପଳାଇବା ପାଇଁ କରାଯାଇଥାଏ । ଭଲ ବର୍ଷା ହେବା ମଧ୍ୟ ଏହି ପୂଜାର ଅନ୍ୟତମ ଲକ୍ଷ୍ୟ ହୋଇଥାଏ ।

୭. **ହଲାଇ ଟେଣ୍ଡକା** - *ଦେ.ବି. :* ସବୁଜ ରଥର ଏଣ୍ଡୁଅ । ଇଂ- Chamelen.

ଜଂଗଲରେ ଏକ ପ୍ରକାର ସବୁଜ ରଂଗର ଏଣ୍ଡୁଅ ଥାଏ । ଏହି ଏଣ୍ଡୁଅକୁ ଦେଖିବା ଲୋକଙ୍କୁ ବାଘ ମାରିଖାଏ ବୋଲି ଲୋକବିଶ୍ୱାସ ରହିଛି । ବାଘ ଆକ୍ରମଣରୁ ରକ୍ଷା ପାଇବା ନିମନ୍ତେ ପ୍ରାୟଶ୍ଚିତ୍ତ ସ୍ୱରୂପ ହଲାଇଟେଣ୍ଡକାକୁ ମାରି, ପତ୍ର ବିଡ଼ାଏ ଓ କାଠ କାଉଡ଼ିଏ ମୃତ ଟେଣ୍ଡକା ନିକଟରେ ରଖିଦେଲେ ଦୋଷ ଦୂର ହୁଏ ଏବଂ ବାଘ ମାରିବା ଭୟ ରହେନାହିଁ ବୋଲି ଲୋକବିଶ୍ୱାସ ରହିଛି ।

୮. **ହୋଲି ପରବ** - *ଦେ.ବି. :* ହିନ୍ଦୁମାନଙ୍କ ହୋଲି ପରବ ସଂପୂର୍ଣ୍ଣ ଭିନ୍ନ ଏକ ପରବ । ଗାଦବା ସଂପ୍ରଦାୟ ଚୈତ୍ର ମାସ ଦ୍ୱାଦଶୀ ତିଥିରେ ଗଂଗମାଙ୍କୁ ପୂଜାକରି ଏହି ହୋଲି ପରବ ପାଳନ କରିଥାନ୍ତି । ଏହିଦିନ ଠାରୁ ଚଇତ ପରବ ଆରମ୍ଭ ହୁଏ । ଗାଁ ଠାକୁରାଣୀଙ୍କୁ ମଦ, ମାଂସ ଆଦିରେ ପୂଜା କରାଯାଏ । ଗଂଗାମା (ଜଳଦେବୀ)ଙ୍କୁ ମଧ୍ୟ ଗାଦବାମାନେ ପୂଜା କରନ୍ତି । ଚଇତ ପର୍ବର ନାଚଗୀତ ଏହିଦିନଠାରୁ ଆରମ୍ଭ ହୁଏ । ପର୍ବର ପ୍ରାରମ୍ଭିକ ଗୀତ ହେଉଛି :

"ଏସୁର ଚଇତ୍ ମଂଗଳବାରେ ବାଜେ ଭଉଁରୀ
ଗୋବରମାରେ, ଗୋବର ମାରେ ତେବେ ସେ ସମର ମରେ ।"

୯. **ହାଟ** - *ଦେ.ବି. :* ହାଟ୍ । ଇଂ- Weekly market. ସାପ୍ତାହିକ ବ୍ୟବସାୟିକ ପେଣ୍ଠସ୍ଥଳୀ । ସାଧାରଣ ଅର୍ଥରେ ସପ୍ତାହର ବିଭିନ୍ନ ଦିବସରେ ଭିନ୍ନଭିନ୍ନ ସ୍ଥାନରେ ବସୁଥିବା ସାପ୍ତାହିକ ବଜାରକୁ ହାଟ କୁହାଯାଉଥିଲେ ମଧ୍ୟ ଏହା ଦେଶିଆ ଆଦିବାସୀ ତଥା ଅଣ-ଆଦବାସୀ ବ୍ୟବସାୟୀ ସଂପ୍ରଦାୟ ମଧ୍ୟରେ ଦ୍ରବ୍ୟ ବିନିମୟ ତଥା ସାମାଜିକ ସାଂସ୍କୃତିକ ଭାବ ବିନିମୟର କେନ୍ଦ୍ର । ବାସ୍ତବରେ କୋରାପୁଟୀ ଆଦିବାସୀମାନଙ୍କ କ୍ଷେତ୍ରରେ ଏହା ବିଭିନ୍ନ ଆଦିବାସୀ ସଂପ୍ରଦାୟର ସାମାଜିକ, ସାଂସ୍କୃତିକ ମିଳନ ସ୍ଥଳୀ ଏବଂ ପ୍ରତ୍ୟେକ ଆଦିବାସୀ ଜୀବନର ଏକ ମୁଖ୍ୟ ଅଂଗ । ନିଜ ଉତ୍ପନ୍ନ ଦ୍ରବ୍ୟର ବିକ୍ରୟ ଓ ଦରକାରୀ ଜିନିଷର କ୍ରୟ ଯଦିଓ ଏହାର ପ୍ରାଥମିକ ଉଦ୍ଦେଶ୍ୟ, ଆପଣା ଆପଣା ଭିତରେ ଆଳାପ ଆଲୋଚନା, ଗୁରୁତ୍ୱପୂର୍ଣ୍ଣ ସମ୍ବାଦ ସରବରାହ ଓ ଧାଙ୍ଗଡ଼ାଧାଙ୍ଗଡ଼ୀଙ୍କର ଭେଟାଭେଟି ସ୍ଥଳୀ ରୂପେ ଏହି ହାଟ ବିଶେଷ ଭୂମିକା ଗ୍ରହଣ କରିଥାଏ ।

ଏହି ସବୁ ହାଟ ସ୍ଥାନ ବିଶେଷର ନାମରେ ଯେତେଟା ପରିଚିତ ନୁହେଁ, ହାଟବାରର ନାମ ଅନୁସାରେ ସ୍ଥାନୀୟଭାବେ ବିଶେଷ ପରିଚିତ । ମନେକର ରବିବାର

ଦିନ ୩ଟି ହାଟ ବସେ । ଯଥା : ଚିତ୍ରକୋଣ୍ଡା, ଓର୍‌କେଲ୍ ଓ ମୁଣ୍ଡିଗୁଡ଼ା । ଏସବୁକୁ ଲୋକ କହନ୍ତି ରବିବାର ହାଟ । ଏହାର ଅର୍ଥ ଖଇରପୁଟ ଲୋକଙ୍କ ପାଇଁ ମୁଣ୍ଡି ଗୁଡ଼ାର ବଣ୍ଡାହାଟ, ବାଲିମେଲା ଅଞ୍ଚଳର ଲୋକଙ୍କ ପାଇଁ ଓର୍‌କେଲ୍‌ହାଟ ଓ ବିରାଟ ଟାପୁ ଅଞ୍ଚଳ ତଥା ଚିତ୍ରକୋଣ୍ଡା ଅଞ୍ଚଳ ପାଇଁ ଚିତ୍ରକୋଣ୍ଡା ହାଟ ।

"ହାଟ ଦିନ ହାଟକୁ ଯାଉଥିବା ବିଭିନ୍ନ ରାସ୍ତାରେ ଦେଶିଆ ଲୋକଙ୍କର ସ୍ରୋତ ବୋହିଯାଏ । କିଣାଳି ବିକାଳୀ ବେଶି ନୁହଁନ୍ତି । ଦେଖଣାହାରୀ ବେଶି । ହାଟ ତାଙ୍କର ପର୍ବ ।" (ଦାଦି ବୁଢ଼ା : ଗୋପୀନାଥ ମହାନ୍ତି - ପୃ - ୧୧) । କିଏ ଟିକେ ଧୂଆଁପତ୍ର କିଣିବାକୁ ଯାଏ ତ କିଏ ଲୁଣ ମରିଚ । ଗୋଟିଏ ଗୋଟିଏ ଗାଁ ଉଠି ଆସିଥାଏ । ମାଇପି ଲେକାଙ୍କର ହାଟ ପ୍ରତି ବେଶି ଶରଧା । ହସି ହସି, ଗୀତ ବୋଲି ବୋଲି ଆଠ / ଦଶ କୋଶ ଅବଲୀଳାକ୍ରମେ ସମସ୍ତେ ଖେପି ଯାଆନ୍ତି । ପ୍ରତି ହାଟ ପାଖାପାଖି ବସିଥାଏ ମଦ, ସଲପ ଓ ପେଣ୍ଡମ୍‌ର ହାଟ । ବେପାରୀମାନେ ବାଟବାଟକା କଣ୍ଟା (ନିକିତି) ପକାଇ ବସିଥାନ୍ତି । ଦେଶିଆମାନେ ଆଣୁଥିବା ରାଶି, ଅଳସୀ, ଜନା, ଧାନ, ମୁଗ, ବିରି, କାନ୍ଦୁଲ କୋଳଥ, ତେନ୍ତୁଳି, ଶାଳମଂଜି, ଝୁଣା, ଫୁଲ ଛାଞ୍ଚୁଣି, ସବୁକିଛିକୁ ସେମାନେ ଛଞ୍ଚାଣ ଭଳି ଝାମ୍ପି ନିଅନ୍ତି । ଦର ଯାହାହେଉନା କାହିଁକି ଓଜନରେ ଠକେଇ ହେଉଛି ଅଣ-ଆଦିବାସୀ ବେପାରୀମାନଙ୍କର ମୁନାଫାର ମୁଖ୍ୟ ମାଧ୍ୟମ । ବାହାର ଜଗତର ଚକଚକିଆ କାଚମାଳୀ, ଝୋଟ ଲୁଗା, ବ୍ୟବହୃତ ବ୍ଲାଉଜ, ସାୟା, ଶାଢ଼ି ଇତ୍ୟାଦି ମନମୁଖୀ ଦରରେ ଏଠି ବିକ୍ରୟ ହୁଏ । ସିଝା କନ୍ଦମୂଳ, ସିଝା ମକା, ସିଆଡ଼ି ଫଳର ସିଝା, ବିରୁଡ଼ି ବସା, କାଇ, ଚାପଡ଼ା ଓ ଏପରିକି ସିନ୍ଧିକିଡ଼ା ମଧ୍ୟ ଏଠାରେ ବିକ୍ରି ହୁଏ । ଲୋକେ ଦଳ ବାନ୍ଧି ଆସନ୍ତି । ଦଳ ବାନ୍ଧି ଫେରନ୍ତି । ହାଟର ଅଧିକାଂଶ ମାଇପି । ହାଟ ତାଙ୍କର ଯାତ୍ରା, ତାଙ୍କର ସମ୍ମିଳନୀ ଆଉ ତାଙ୍କର ସଭା । ଫରେଷ୍ଟ ଗାର୍ଡ଼, ପୋଲିସ୍ ଓ ଏକସାଇଜ୍‌ବାଲା ସବୁ ହାଟରେ ଧରପଗଡ଼ ଚଳାଇ ବେଶ୍ ଦି ପଇସା ରୋଜଗାର କରନ୍ତି । କିଛି ବେପାରୀ ସବୁ ଜଂଗଲଜାତ ଓ କୃଷିଜାତ ଦ୍ରବ୍ୟକୁ ବାହାରକୁ ଚାଲାଣ କରିବାର ଲିଜ୍ ନେଇଥାନ୍ତି । ବାହାର ବେପାରୀ ପଶି ପାରନ୍ତି ନାହିଁ । ସରକାରୀ ଘୋଷିତ ମୂଲ୍ୟ ମଧ୍ୟ ଏଠାରେ କାମ କରେନାହିଁ । ଯେତେ ଲୋକ କଣ୍ଟା ପକାଇଥାନ୍ତି ସେ ସମସ୍ତେ ଏଇ ବଡ଼ ବେପାରୀଙ୍କର ଗୁମାସ୍ତା ବା ଦଲାଲ ।

୧୦. ହାଟପାନ୍ଟୁ - *ଦେ.ବି. :* ହାଟରୁ ଆଦାୟ କରାଯାଉଥିବା ଟିକସ । ଇଂ- Tex collected in the Market. ପ୍ରତି ପଞ୍ଚାୟତରେ ବସୁଥିବା ହାଟର ନିଲାମ ପଞ୍ଚାୟତ ତରଫରୁ କରାଯାଏ । ବିଭିନ୍ନ ସ୍ଥାନରେ ନିଲାମଧାରୀ ବ୍ୟକ୍ତି ବା ନିୟନ୍ତ୍ରିତ ବଜାର କମିଟି ଟିକସ ଆଦାୟ କରିଥାଏ । ଆଦିବାସୀମାନେ କହନ୍ତି ସିସ୍ଟୁ । ଏହି ସିସ୍ଟୁ ଆଦାୟର କୌଣସି ନିର୍ଦ୍ଧାରିତ ନିୟମ ନଥାଏ । ଦୂରଦୂରାନ୍ତ ହାଟମାନଙ୍କରେ ଏହି ହାଟପାନ୍ଟୁ ଆଦୟ ପ୍ରାୟତଃ ଏକ ଜୁଲୁମରେ ପରିଣତ ହୋଇଥାଏ ।

୧୧. ହାଟ ବାର୍‌ବା - *ଦେ.କ୍ରି. :* ହାଟ ବାହାରିବା, ହାଟ ବସିବା । ଦ୍ୱିତୀୟ ଅର୍ଥରେ ଗଦବା, ସଂପ୍ରଦାୟର ଦଶାହ ଦିନର ବିଧି । ଏକ ସୁମବୁଦାକୁ ମାଟି ସହ ଖୋଳି ଆଣି ଗାଁର ସଦର ବା ବେହେରଣ ଜାଗାରେ ରଖାଯାଏ । ଦିଶାରୀ ତାକୁ ବିଭିନ୍ନ ବର୍ଣ୍ଣର ମୁରୁଜ, କୁକୁଡ଼ା ଅଣ୍ଡା, କଳାଚୁଡ଼ି ଛୋଟ ଦର୍ପଣ ଦେଇ ପୂଜା କରୁଥାଏ । ଏଣେ ସମବେତ ଲୋକେ ଲଡୁ, ମୁଆଁ, ଖଜା, ଚଣା, ଶାଢ଼ି, ଲୁଗା, ବିସ୍କୁଟ ଆଦି ହାଟରେ ବିକିବା ଜିନିଷ ନେଇ ଦୋକାନ ବସାନ୍ତି । ବନ୍ଧୁବର୍ଗ ଖପରା କାଟି ଦେଇ ଉକ୍ତ ଜିନିଷ କିଣନ୍ତି । ସବୁ ଜିନିଷ ସରିଯିବା ପରେ ସମସ୍ତେ ବେପାରୀଙ୍କ ଖପରା ସଂଗ୍ରହ କରି ଗଣତି କରାଯାଏ । ଗଣତିରେ ଯଦି ଦୁଇଦୁଇ ହୋଇ ଏବ ବଳି ପଡ଼ିଲା, ତାହା ହେଲେ ଉକ୍ତ ବ୍ୟକ୍ତିର ଆୟୁଷ ଥିଲା । କିନ୍ତୁ ସେ ପାଙ୍ଗଣ ନାଶକ ଗୁଣିଗାରେଡ଼ିରେ ମରିଚି ବୋଲି ଧରାଯାଏ ଏବଂ ଶେଷରେ ଉକ୍ତ ଖପରା କାଢ଼ିନେଇ ମୃତକର ଘର ଚାଳରେ ଫିଙ୍ଗି ଦିଆଯାଏ । ତାପରେ ଯାଇ ହାଟବାର୍‌ବା ବିଧି ଶେଷ ହୁଏ ।

୧୨. ହାତ ପାକନା - *ଦେ.ବି. :* ହାତ ପଥର ବା ହାତ ଚିହ୍ନ ଥିବା ପଥର । ଏହା ନନ୍ଦପୁରର ପୁରୁଣା ରାଜ ପ୍ରସାଦର ଦ୍ୱାର ଦେଶରେ ରହିଛି । ଏହା ଏକ ବଡ଼ ପଥରଖଣ୍ଡ । ଏହି ପଥରରେ ଦୁଇଟି ହାତ ଚିହ୍ନ ରହିଛି । ଡାହାଣ ପାଖ ହାତ ଚିହ୍ନଟି ସାମାନ୍ୟ ବଡ଼ । ଏହା ଏକ ପୁରୁଷ ହାତର ଚିହ୍ନକୁ ବୁଝାଏ । ବାମ ପାଖର ହାତ ଚିହ୍ନଟି କିଛିଟା ସାନ, ଓ ଏଠାରେ ଏକ ସାନ ଗୋଲାକାର ଚିହ୍ନ ଅଛି । ଏହି ଗୋଲାକାରର ଚିହ୍ନକୁ ଚକ୍ରଙ୍କର ପ୍ରତୀକ ଭାବେ ଗ୍ରହଣ କରାଯାଇଥାଏ । ଏହି ଚିହ୍ନ ଦୁଇଟିର ତଳକୁ ଗୋଟିଏ ପୁରୁଷ ଓ ଗୋଟିଏ ସ୍ତ୍ରୀର ଚିତ୍ର ଖୋଦିତ ହୋଇଛି । ପୁରୁଷଟି ସୂର୍ଯ୍ୟବଂଶୀ ରାଜା ବିନାୟକ ଦେବ ଓ ସ୍ତ୍ରୀଟି ଚନ୍ଦ୍ରବଂଶୀ ରାଣୀ ଲୀଳାବତୀ ଦେବୀ ବୋଲି ଚିହ୍ନିତ ହୋଇଥାନ୍ତି ।

୧୩. ହାତୀ ଖାଲ - *ଦେ.ବି. :* ଗଇଲି ଟାଙ୍ଗରି ପାଖରେ ଥିବା ମାଲକାନଗିରି ବ୍ଲକ୍‌ର ଏକ ଗାଁର ନାମ ବିଶେଷ । ଏହାଠାରୁ ଅଳ୍ପ ଦୂରରେ ଅଛି ଲାସି କୁପଲି । ସେଠି ରହୁଥିଲେ ହାତୀମାନେ । ହାତୀମାନଙ୍କ ପଦ ଚାପରେ ଏଠି ଏକ ବିରାଟ ଖାଲ ସୃଷ୍ଟି ହୋଇଥିଲା । ହାତୀମାନେ ତ ଲୋପ ପାଇଗଲେଣି । କିନ୍ତୁ ସେ ଖାଲର ନାମ ରହିଯାଇଛି 'ହାତୀ ଖାଲ' । ଏହାକୁ ଏବେ ମଧ୍ୟ ଦେବତା ଜାଗା ରୂପେ ବିଚାର କରାଯାଏ । ଏହି ହାତୀ ଖାଲ ଉପରେ ଗଢ଼ି ଉଠିଥିବା କୋୟା ଗାଁର ନାମ ହେଉଛି ହାତୀଖାଲ । ଏହି ଦୁଇଟି ଯାକ ଗାଁ କତାପାଲି ପଞ୍ଚାୟତର । କୋରାପୁଟ ଜିଲ୍ଲାର କୁନ୍ଦୁରା ବ୍ଲକ୍‌ରେ ମଧ୍ୟ ଏହିଭଳି ନାମ ବିଶିଷ୍ଟ ଏକ ଗାଁ ରହିଛି ।

୧୪. ହାତୀବାରୀ - *ଦେ.ବି. :* ଅତୀତରେ ହାତୀ ଧରିବା ଲାଗି ପୋଖରୀ ପରି ବିରାଟ ଗାଡ଼ ଖୋଳା ଯାଉଥିଲା । ସେହି ପରିତ୍ୟକ୍ତ ଗଡ଼କୁ ପରବର୍ତ୍ତୀ କାଳରେ ହାତୀବାରୀ କୁହାଯାଏ ।

୧୫. ହାରିତ୍ ପୂଜା - *ଦେ.ବି. :* କନ୍ଧ ସଂପ୍ରଦାୟରେ ଏହା ଏକ ମୁଖ୍ୟ ପୂଜା । (ହାରିତ୍ ହାରିଯିବା ବା ମରିଯିବା) । ଯେଉଁ ଦମ୍ପତ୍ତିଙ୍କ ସନ୍ତାନ ଜନ୍ମ ହୋଇ କିଛିଦିନ ପରେ ମରିଯାଉଥାନ୍ତି, ଏବଂ ଶେଷ ପିଲାଟି ଯଦି ଛଅରୁ ନଅ ମାସ ଯାଏ କୌଣସି ମତେ ବଞ୍ଚି ରହେ, ତେବେ ସେତିକିବେଳେ ସ୍ୱାମୀ-ସ୍ତ୍ରୀ ବିକଳରେ ଯମରାଜାକୁ ଗୁହାରି କରନ୍ତି । ଭୋଗ ମନାସନ୍ତି । ପିଲାଟିର ଦୀର୍ଘ ଜୀବନ କାମନା କରି ପୂଜା କରନ୍ତି । ଏହାକୁ 'ହାରିତ୍ ପୂଜା' କୁହାଯାଏ । ଏହି ପୂଜା ଗୁରୁମାଈ ସଂପନ୍ନ କରିଥାଏ । ଡୁମ୍ବା ବା ପ୍ରେତକୁ ସନ୍ତୁଷ୍ଟି କରିବାପାଇଁ ତଥା ଶେଷ ପିଲାଟି ଜୀବନ ରକ୍ଷା ପାଇଁ ହାରିତ୍ ପୂଜା କରାଯାଇଥାଏ । ଡୁମ୍ବାକୁ ସନ୍ତୁଷ୍ଟ କରିବା ପାଇଁ ଆବଶ୍ୟକ ବଳି ମଧ୍ୟ ଦିଆଯାଇଥାଏ ।

୧୬. ହୁଂକାର ଡଙ୍ଗର - *ଦେ.ବି. :* ଏକ ପର୍ବତ ବିଶେଷର ନାମ । ସପ୍ତଧାରା ନଦୀ କୂଳରେ ଏକ ପର୍ବତ । ପ୍ରବାଦ ଅନୁଯାୟୀ ଦୋରା ଜାତିର ଲୋକମାନେ ସାଇ (ଝିଙ୍କ) ଧରିବାକୁ ଗଲେ । ସୋନୁ ଦୋରା ନାମକ ଜଣେ ବ୍ୟକ୍ତି ପାହାଡ଼ ଗୁମ୍ଫା ଭିତରେ ପଶି ଝିଙ୍କଧରି ଗୁମ୍ଫା ମୁହଁରେ ଥିବା ଲୋକଙ୍କୁ ଦେଉଥାଏ । ଏହିପରି ସେ ୪ଟା ଝିଙ୍କ ଧରି ବାହାରକୁ ଆସିଲା । ତେବେ ଆଉ ଏକ ଝିଙ୍କ ରହିଯାଇଥାଏ । ସେ ଭାବିଲା ଏହି ଗୋଟିଏ ଝିଙ୍କକୁ ମୁଁ ପରେ ଆସି ଧରି ନେବି । ମୁଁ ଜଣେ ଖାଇବି ।

ଅନ୍ୟମାନେ ଭାଗ ମିଶିବେ ନାହିଁ । ଏପରି ଭାବି ୪ଟି ଝିଙ୍କ ଧରିବା ପରେ ୫ ନମ୍ବର ଝିଙ୍କ ଧରିବାକୁ ପାର୍ ବା ଗୁମ୍ଫା ଭିତରେ ପଶିଲା । ଠିକ୍ ସେତିକିବେଳେ ଗୁମ୍ଫା ଦ୍ୱାରରେ ବଡ଼ ପଥର ପଡ଼ି ବନ୍ଦ ହୋଇଗଲା । ତାର ଚିତ୍କାର ବା ହୁଙ୍କାର ବାହାର ଲୋକ ଶୁଣି ପାରିଲେ ମଧ ତାକୁ ରକ୍ଷାକରି ପାରିଲେ ନାହିଁ । ଗାଁ ଲୋକେ ପଥର ଠେଲି ଦ୍ୱାର ଖୋଲିବାପାଇଁ ବହୁ ଚେଷ୍ଟା କଲେ । ସନୁ ସନୁ ବୋଲି କେତେ ଡାକିଲେ । କିନ୍ତୁ ଦ୍ୱାର ଖୋଲିଲା ନାହିଁକି, ଭିତରୁ କିଛି ଉତ୍ତର ଆସିଲା ନାହିଁ । କେବଳ ହୁଁ ବୋଲି ଗୋଟିଏ ହୁଁଙ୍କାର ଶୁଭିଲା । ଲୋକ ଦିଶିଲା ନାହିଁ । ଏବେବି ଲୋକଙ୍କର ବିଶ୍ୱାସ, ଉକ୍ତ ପାହାଡ଼ ପାଖରେ ସନୁ ବୋଲି ଡାକିଲେ ହୁଁଙ୍କାର ଶୁଭେ । ଶିକାରକୁ ଗଲାବେଳେ ଲୋକେ ଏଠି ପୂଜା କରି ହୁଁଙ୍କାର ଶୁଣିଗଲେ ଶିକାର ମିଳେ । ଚୈତ୍ର ମାସରେ ଏଠି ପୂଜା ଦିଆଯାଏ ଏବଂ ପ୍ରତି ୩ବର୍ଷରେ ଥରେ ପୋଢ଼ବଳି ଦିଆଯାଏ ।

୧୭. **ହୁଣ୍ଡି** – *ଦେ.ବି. :* ଗ୍ରାମଦେବୀ ବା ଦେବତାଙ୍କ ଆସ୍ଥାନ । ଗ୍ରାମ ପ୍ରତିଷ୍ଠା ପୂର୍ବରୁ ହୁଣ୍ଡି ବସାଯାଇଥାଏ । ପ୍ରତି ଗ୍ରାମରେ ଗ୍ରାମଦେବତୀ ଏଠାରେ ବିରାଜମାନ କରିଥାନ୍ତି । ଯେଉଁ ଗ୍ରାମରେ ଯେଉଁ ନାମରେ ଦେବୀ ଥାଆନ୍ତୁ ନା କାହିଁକି ହୁଣ୍ଡି ସ୍ଥାପନ ହୋଇଥାଏ । ସାଧାରଣତଃ ଏକ ବଡ଼ଗଛ ତଳେ କେତେଗୁଡ଼ିଏ ପଥର ସ୍ଥାପନା କରାଯାଇଥାଏ । ଆମ୍ବ ନୂଆଖିଆ, ଧାନ ନୂଆଖିଆଆଦି ପର୍ବରେ ପ୍ରଥମେ ହୁଣ୍ଡି ଘରେ ପୂଜା କରିସାରିବା ପରେ ଗ୍ରାମବାସୀ ନୂଆଖାଇ କରିଥାଆନ୍ତି । ଗ୍ରାମର କିଛି ପଶୁପକ୍ଷୀଙ୍କ ମହାମାରୀ ପଡ଼ିଲେ, ମଣିଷ ମଲେ କିମ୍ବା ଗ୍ରାମରେ ହଇଜା ଆଦି ସଂକ୍ରାମକ ରୋଗ ଲାଗିଲେ ବା ଫସଲ ନଷ୍ଟ ହେଲେ 'ହୁଣ୍ଡି ନସି ଯାଇଛି' ବୋଲି କୁହାଯାଏ । ତାର ଅର୍ଥ, ହୁଣ୍ଡିରେ ଦେବୀ ଅସନ୍ତୁଷ୍ଟ ହୋଇଛନ୍ତି । ସେଥିପାଇଁ ଛେଳି, ମେଣ୍ଢା, ଘୁଷୁରୀ, ପାରା ବଳି ଦେଇ ହୁଣ୍ଡିକୁ ଶାନ୍ତ କରାଯାଏ ।

୧୮. **ହୁଣ୍ଡିଦେବତା** – *ଦେ.ବି. :* ଗାଁ ଦେବତା । 'ହାଣ୍ଡି' ମୂଳ ଶବ୍ଦରୁ ଏହିପରି ନାମକରଣ ହୋଇଛି । କୋରାପୁଟ ଜିଲ୍ଲାର ଆଦିବାସୀ ସଂପ୍ରଦାୟର ପ୍ରତିଗ୍ରାମରେ ଗ୍ରାମଦେବୀଙ୍କ ଗୁଡ଼ି ଦେଖିବାକୁ ମିଳିଥାଏ । ଉଦାହରଣ ସ୍ୱରୂପ : ପ୍ରତି ପରଜା ଗ୍ରାମରେ ହୁଣ୍ଡି ଦେବତାଙ୍କ ଆସ୍ଥାନ ରହିଥାଏ । ପରଜା ମାନଙ୍କର ଏହି ହୁଣ୍ଡି ଦେବତା ହେଉଛନ୍ତି ବାସ୍ତବରେ ଲୁହାକାତି ଥାଇ ପୋତା ହୋଇଥିବା ମାଟିହାଣ୍ଡି । ଗ୍ରାମ ପ୍ରତିଷ୍ଠା କରାଯାଇଥିବା

ସମୟରେ ଏହି ହାଣ୍ଡି ପୋତାଯାଇ ହୁଣ୍ଡି ଦେବତା ପ୍ରତିଷ୍ଠିତ ହୋଇଥାନ୍ତି । ପ୍ରତିବର୍ଷ ବନ୍ଧାପନା ମାସ (ଶ୍ରାବଣ), ଚଇତ ପରବ କିମ୍ୱା ନୂଆଖାଇ ସମୟରେ ଏହି କାତି ଏବଂ ମାଟିହାଣ୍ଡିକୁ ପରିବର୍ତ୍ତନ କରି ନୂଆ ପାତ୍ର କିମ୍ୱା ହାଣ୍ଡି ଓ କାତି ପୁଣି ରଖାଯାଏ । ଗ୍ରାମରେ କିଛି ବଡ଼ଧରଣର ସଂକଟ (ଯଥା : ଗୋରୁଗାଈ, ମହାମାରୀ, ବଡ଼ ଲୋକର ମୃତ୍ୟୁ, ବଘେଇ, ମରୁଡ଼ି ଇତ୍ୟାଦି) ପଡ଼ିଲେ ହାଣ୍ଡିକୁ ବଦଳେଇ ପୂଜାପାଠ କରି ନୂଆ ହୁଣ୍ଡି ବସାଯାଏ । ଏହାକୁ 'ହୁଣ୍ଡି ଚପିବା' କୁହାଯାଏ ।

□□□



୧. ଲକ୍‌ଟି / ଲକ୍‌ଟା - *ଦେ.ବି. :* ମହୁଲ ଗୁଣ୍ଡ । ବର୍ଷା ଦିନରେ କୋରାପୁଟର ଆଦିବାସୀମାନେ ଅଲସୀ ଓ ମହୁଲକୁ ଭାଜି ଢେଙ୍କିରେ କୁଟନ୍ତି । ତା ସହିତ ଗୁଡ଼ ମିଶାଇ ଖାଆନ୍ତି । ବାସ୍ନା ପାଇଁ ଜିରାଗୁଣ୍ଡ ମଧ୍ୟ ସେଥିରେ ପକାଇଥାନ୍ତି । ଏହା ଏକ ସ୍ୱାଦିଷ୍ଟ ଖାଦ୍ୟ । ଏହାକୁ 'ଲକ୍‌ଟା' ବା 'ଲକ୍‌ଟି' କୁହାଯାଏ । ପୂର୍ବ କାଳରେ ଆଦିବାସୀମାନଙ୍କର ଏକ ମୁଖ୍ୟ ଖାଦ୍ୟ ରୂପେ ଏହା ବ୍ୟବହାର ହେଉଥିଲା ।

୨. ଲଗନ୍‌କାରିଆ / ଦିନକାରିଆ - *ଦେ.ବି. :* ଜ୍ୟୋତିଷ, ପାଞ୍ଜିଆ, ପାଞ୍ଜି ଦେଖି ଯୋଗାଯୋଗ ବାହାର କରିବା, ବିବାହର ଦିନ ସ୍ଥିର କରିବା ବ୍ୟକ୍ତି । ଇଂ- Fore teller. Astrologer. ଛାମୁଣ୍ଡିଆ ତିଆରି କରାଇବା, ବେଦୀ (ମଣ୍ଡପ) ନିର୍ମାଣ କରାଇବା, ବେଦୀରେ ବ୍ୟବହୃତ ସାମାନ ସଜାଡ଼ିବା, ବରକନ୍ୟା ପାଇଁ ମୁକୁଟ ତିଆରି କରାଇବା, ଝିଅକୁ ବେଶ କରିବା, ହୋମ ଯଜ୍ଞ କରିବା, ବରକନ୍ୟାର ହାତ ଧରି ହସ୍ତଗଣ୍ଠି ପକାଇବା, ଗୁଆଭାଂଗି ବରକନ୍ୟାକୁ ଖୁଆଇବା, ଅଭିମନ୍ତ୍ରିତ ସାତଗୋଟି ଚାଉଳକୁ ଗଣି କନ୍ୟାର ଭବିଷ୍ୟ କହିବା, ଝିଅ ବିଦାୟ କାର୍ଯ୍ୟ ସଂପନ୍ନ କରିବା ଆଦି କାର୍ଯ୍ୟ ଏହି ଲଗନ କାରିଆଙ୍କର କାର୍ଯ୍ୟର ଅନ୍ତର୍ଭୁକ୍ତ ।

୩. ଲଗିନ୍ ଗୀତ - *ଦେ.ବି. :* ହାତଗଣ୍ଠି ପକାଇଲା ବେଳର ଗୀତ । ଏହିଗୀତର ଦୃଷ୍ଟାନ୍ତ :

(୧) "ହାଣ୍ଡି ଡୁଙ୍ଗ୍‌ଡୁଙ୍ଗ୍‌ରେ ପିଲା ଖେଦିମାରେ ମୂଷା,
କାହାର ଘରର ପିଲା ଭୁଆସୁନି ଦେକ୍‌ବାକେ ଲୁସ୍‌ଲୁସା ।"

(୨) "ମାଅର ନାମ ବୁନ୍ଦ୍‌ରେ ବୁନ୍ଦି
ବେଟିର ନାମ ବୁନ୍ଦି,
ବୁନ୍ଦିର ଆୟାକେ ସାଙ୍ଗୁନ୍ ଦିଆସ୍
ଏବର ସୁଖା ଓ ଚୁନ୍ଦି ।"

୪.  ଲଡ଼କା - *ଦେ.ବି. :* ଟଙ୍ଗ୍‌ଟଙ୍ଗଡ଼ା । ବଡ଼ ଆକାରର ଘାଗୁଡ଼ି । ଗୋଲାକୃତି କାଠଗଣ୍ଡକୁ ବିନ୍ଧଣାରେ ଛେଲି ପୋଲା କରାଯାଏ ଓ ପୋଲା ଉପରକୁ ଦୁଇଟି କଣା କରି ଦୁଇଖଣ୍ଡ କାଠି ଓହଳେଇ ଦିଆଯାଏ । ଲଡ଼କାଟିକୁ ଗାଈ ବା ମହିଁଷିର ବେକରେ ବାନ୍ଧିଦେଲେ ବଣ ଜଂଗଲ ଭିତରୁ ଲଡ଼୍‌କାର ଶବ୍ଦ ଦୂର ଦୂରାନ୍ତକୁ ସଞ୍ଚରିଯାଏ । ଏଣୁ ଗାଈଆଳକୁ ଗାଈ ଓ ମଇଁଷି ଠାବ କରିବାକୁ ସହଜ ହୋଇଥାଏ । ଆଉ ମଧ ପିଲାମାନେ ଏହାକୁ ଏକ ବାଦ୍ୟ ଯନ୍ତ୍ରରୂପେ ବ୍ୟବହାର କରିଥାଆନ୍ତି । ଏହାର ଅନ୍ୟ ଏକ ବ୍ୟବହାର ମଧ ଦେଖଯାଏ । ଶସ୍ୟକ୍ଷେତ୍ରରେ ଏହାକୁ ବାନ୍ଧି ସେଥିସହ ଏକ ଲମ୍ୱା ରଶି ଯୋଡ଼ି ମଂଚା ଉପରେ ଜଗୁଆଳି ବସିଥାଏ ଓ ମଝିମଝିରେ ଦଉଡ଼ି ଟାଣି ଶବ୍ଦ ସୃଷ୍ଟିକରି ଜନ୍ତୁ ଘଉଡ଼ାଇଥାଏ ।

୫.  ଲଦା - *ଦେ.ବି. :* ପରିମାଣ ଅର୍ଥରେ । ଇଂ- A quantitatiue term. ବ୍ୟବହାର : "ସାନ୍‌କେ ଚାପଡ଼ ବଡ଼ କେ ଲଦା । ଅର୍ଥାତ୍ ବଡ଼ ସାନଙ୍କୁ ଦେଖି ଚାହିଁ ପରିବେଷଣ କରିବା । ଓଡ଼ିଆ ଭାଷାରେ ଏହି ଅର୍ଥରେ ଥିବା ପ୍ରବଚନ ହେଉଛି "ପାଂଚ ଆଙ୍ଗୁଠି ସମାନ ନୁହେଁ ।" ଦେଶିଆ ଭାଷାରେ ଏହି ପ୍ରବଚନର ଅର୍ଥ ଲୋକ ଦେଖି ବ୍ୟବହାର କର । ଏହାକୁ ଛାଡ଼ି ଲଦାର ଅନ୍ୟ ଏକ ଅର୍ଥ ଲଦିବା । ଯେପରିକି ବୋଝ 'ଲଦିବା' । ବ୍ୟବହାର :- "ବଳଦ ଉପରେ ଗନି" ଲାଦି ଦେଏସ୍ । ଅର୍ଥାତ୍, ବଳଦ ଉପରେ ବସ୍ତା ଲଦିଦିଅ ।

୬.  ଲନ୍ଦା / ଲାନ୍ଦା - *ଦେ.ବି. :* ମଦ ବିଶେଷ । ଆଦିବାସୀ ପାନୀୟ ବିଶେଷ । ଇଂ- Country Liguor. ଧାନ ଓ ମାଣ୍ଡିଆ ଗଜାର ଚୁନାରେ ତିଆରି ମଦକୁ ଲନ୍ଦା କୁହାଯାଏ । ପ୍ରାୟ ଅବିଭକ୍ତ କୋରାପୁଟ ଜିଲ୍ଲାର ସମସ୍ତ ଆଦିବାସୀ ଗୋଷ୍ଠୀ ଏହି ନିଶା ବା ପାନୀୟ ପର୍ବପର୍ବାଣୀ, ମେଳା, ଉତ୍ସବ, ବିବାହ ଉତ୍ସବ, ଶିଶୁଜନ୍ମ ଉତ୍ସବ, ଶ୍ରାଦ୍ଧ ଇତ୍ୟାଦିରେ ଡୁମା (ପ୍ରେତାତ୍ମା) ଓ ପୃଥିବୀ ମାତାଙ୍କୁ ସମର୍ପଣ କଲାପରେ ନିଜେ ବ୍ୟବହାର କରିଥାନ୍ତି । ଏହା ଏକପ୍ରକାର ନିଶାଯୁକ୍ତ ଖାଦ୍ୟ । ଏହା ଗଜା ମାଣ୍ଡିଆ, ଗଜାଧାନ, ସାଦାମାଣ୍ଡିଆ ଚାଉଳ ଓ କୁଣ୍ଡାରୁ ପ୍ରସ୍ତୁତ ହୋଇଥାଏ । ଆଦିବାସୀ ଲୋକମାନେ ଏସବୁକୁ ଚୁନାକରି ପାଣିରେ ୩ରୁ୪ଦିନ ଭିଜାଇ ରଖନ୍ତି । ରନ୍ଧାଭାତରୁ ମଧ ଏହା ତିଆରି ହୁଏ । ଏହା ସଂପୂର୍ଣ୍ଣ ଭାବେ ପଚି ଫୁଲିଗଲେ ଏହାକୁ ଚୁଲିରେ ରାନ୍ଧି ଆବଶ୍ୟକ ସ୍ଥଳେ ଚିନି ବା ଗୁଡ଼ ମିଶାଇ ଲନ୍ଦା ବା ପେଜ ପ୍ରସ୍ତୁତ କରାଯାଏ । ଏଥିରେ

ଚାଉଳରୁ ପ୍ରସ୍ତୁତ ପେଜ ମିଶାଯାଇ ଏହାକୁ ହାଣ୍ଡିରେ ପ୍ରାୟ ଚାରିଦିନ ଯାଏ ରଖାଯାଇ ଖାଦ୍ୟରୂପେ ମଧ ବ୍ୟବହାର କରାଯାଇଥାଏ । ମାଣ୍ଡିଆ ଓ ଧାନ ଗଜାରୁ ପ୍ରସ୍ତୁତ ଲନ୍ଦାକୁ ସବୁଠାରୁ ଉଚ୍ଚ ମାନର ଲାନ୍ଦା ବୋଲି କୁହାଯାଏ ।

୭. ଲମ୍‌କଡ଼ି - *ଦେ.ବି. :* ଲବଙ୍ଗ କଡ଼ି ପରି ନାକରେ ପିନ୍ଧିବା ଏକ ଅଳଙ୍କାର । ଏହା ସୁନାରେ ତିଆରି । ଆଦିବାସୀ ଲଳନାମାନଙ୍କର ଏକ ମୁଖ୍ୟ ଅଳଙ୍କାର । ଏହାକୁ ନେଇ ଚଇତି ପରବ ଗୀତ :

"ଆସା ବାଲିଫୁଲ ବାଲିକେଲୁ
ଘେନି ଦେବି ଲମ୍ କଡ଼ି,
ତୁଇ ମୁଇଁ ଯେବେ ସାଂଗରେ ରେବା
ନାଇଁ ହେଉ ଛାଡ଼ଛାଡ଼ି ।"

ଅର୍ଥାତ୍ : ଆସ, ବାଲିଫୁଲ, ବାଲି ଖେଳିବା, ତୋ ପାଇଁ ଲବଙ୍ଗ କଡ଼ି କିଣିଦେବି । ତୁ ଓ ମୁଁ ସବୁବେଳେ ମିଶି ରହିବା । କେବେ ଛଡ଼ାଛଡ଼ି ହେବାନାହିଁ ।

୮. ଲାଚନି - *ଦେ.ବି. :* ଏକ ପ୍ରକାର ଲୋମହୀନ ବିଷାକ୍ତ ପୋକ ଦେହରେ ଚାଲିଗଲେ ରିବି ରିବି ଫଳି ଭାରି କୁଣ୍ଡେଇ ହୁଏ ଓ ଜଳେ । ଏହାକୁ ଲଛାପୋକ ବୋଲି ମଧ କହନ୍ତି । ବାକ୍ୟରେ ବ୍ୟବହାର :

ଟୁଟି ବରଗଚ୍‌ନେ ଲାଚନିକିଡ଼ା ମନ୍ ଉଇଲାଇନି । (ଥୁଣ୍ଟା ବରଗଛରେ ଲଛାପୋକ ବାସ କରୁଛନ୍ତି)

୯. ଲାଠି ଦେବତା - *ଦେ.ବି. :* ଅବିଭକ୍ତ କୋରାପୁଟ ଜିଲ୍ଲାର ବିଭିନ୍ନ ଗ୍ରାମରେ ଥିବା ଗ୍ରାମଦେବୀ ମାନଙ୍କର ଚଳନ୍ତି ପ୍ରତୀକ । ଇଂ- The Bamboo God. ବାଉଁଶରେ ଲାଠି ପ୍ରସ୍ତୁତ କରାଯାଇଥାଏ । ଲାଠି ଅଗରେ ସାଧାରଣତଃ ନାଲି, କଳା, ଧଳା, କନାର ଧ୍ୱଜାବନ୍ଧା ହୋଇଥାଏ । ଲାଠିରେ ଫୁଲମାଳ ପିନ୍ଧା ଯାଇଥାଏ । ଉପାସନା ବେଳେ ଏହି ଲାଠିକୁ ପୋତି ତା ମୂଳରେ ବଳିଦେଇ ଲିଆ, ମୁଆଁ, କଦଳୀ, ନଡ଼ିଆ ଇତ୍ୟାଦି ଦେଇ ପୂଜା କରାଯାଏ । ଦଶହରା, ମଣ୍ଡେଇ ଓ ବଡ଼ଯାତ୍ରା ସମୟରେ ହୋଇଥିବା ଦେବୀ ମେଳାକୁ ବହୁଗ୍ରାମରୁ ବହୁତ ଦେବତାଙ୍କ ଲାଠିର ସମାବେଶ ହୁଏ । ଯେଉଁ ଦେବୀଙ୍କ ନାମ ଅନୁସାରେ ଲାଠି ଆସିଥାଏ ସେହି ଦେବୀଙ୍କ ନାମରେ

ସେ ଲାଠି ନାମିତ ହୋଇଥାଏ । ଜୟପୁରର ରାଜା ଶାସନ ସମୟରେ ହେଉଥିବା ପ୍ରସିଦ୍ଧ ଦଶହରାରେ ଅବିଭକ୍ତ କୋରାପୁଟ ଜିଲ୍ଲାର ପ୍ରାୟ ସବୁ ଗ୍ରାମର ଲାଠି ସମାବେଶ ହେଉଥିଲା । ବୀରଖମ୍ବ ଲାଠି, ବିରାଳୀ ଲାଠି, ପେଣ୍ଡରାଣୀ ଲାଠି, ଭୈରବ ଲାଠି, ଭଣ୍ଡାରୁଣି ଲାଠି ମୁତ୍ୟାଲୁମ୍ମା ଲାଠି ଆଦି କେତେକ ପ୍ରସିଦ୍ଧ ଦେବୀଙ୍କ ଲାଠି ।

୧୦. ଲାଡ଼୍ - *ଦେ.ବି. :* ଗେଲ, ସ୍ନେହ, ଶ୍ରଦ୍ଧା କରିବା ବା ଦେବା । ଇଂ- To love, have affection.

ଯଥା (୧) ଆୟା ତାର୍ ପିଲାକେ ଲାଡ଼୍ କରସିଆଚେ । (ମାତା ପୁଅକୁ ଗେଲ କରୁଅଛି ।)

(୨) ଲାଡ଼ର ପିଲା ମାର୍‌ସି ଢେଲା । (ଅତି ଗେଲରେ ପିଲା ଢେଲା ମାରେ / ଅତି ଗେଲ କଲେ ପିଲା ବିଗିଡ଼ିଯାଏ ।) ଓଡ଼ିଆ ପ୍ରବଚନ 'ଗେଲରୁ ଡେଲ' ଅର୍ଥରେ ।

୧୧. ଲାଡ଼ନ୍ - *ଦେ.ବି. :* ଜିଆ । ବିଶେଷ କିନ୍ତୁ ଠିକ୍ ଜିଆ ନୁହଁନ୍ତି । ସାଧାରଣ ଜିଆର ପ୍ରାୟ ଦୁଇଗୁଣ । ରଂଗ କଳା ବା ନାଳି । ଆଙ୍ଗୁଠି ମୋଟ ହୋଇ ପ୍ରାୟ ଏକ ଫୁଟରୁ ଦେଢ଼ଫୁଟ ଲମ୍ବ ହୋଇଥାଆନ୍ତି । ଥଣ୍ଡା ଦିନେ ମାଟି କାମ ସମୟରେ ବାହାରନ୍ତି । ବାହାରିବା ସଂଗେସଂଗେ ମାଟି ଭିତରେ ପଶି ଯାଆନ୍ତି । ପୁଆତିଙ୍କ କ୍ଷୀର ନହେଲେ ସେ ନ ଜାଣିବା ଭଳି ଏହି ଲାଡ଼ନ୍‌କୁ ତରକାରିରେ ମିଶାଇ ଖୁଆଇ ଦିଆଯାଏ । ଫଳରେ ଭଲ କ୍ଷୀର ହୁଏ ।

୧୨. ଲାଡ଼ି - *ଦେ.ବି. :* ଜଂଗଲରେ ଗାଈ ଓ ମଇଁଷି ଆଦି ପଶୁଙ୍କୁ ବାନ୍ଧି ରଖାଯାଇଥିବା ସ୍ଥାନ ବା କୁଡ଼ିଆକୁ ଲାଡ଼ି ବୋଲି କୁହାଯାଏ । ବର୍ଷାଦିନେ ଏଭଳି ଲାଡ଼ି ତିଆରି କରାଯାଏ । ଉଦାହାରଣ : ପାନିମାର୍‌ଲେ ଗୋରୁଗାଈକେ ଲାଡ଼ିନେ ନିଆସ୍ ।

୧୩. ଲାଣ୍ଡିଗୁଡ଼ା - *ଦେ.ବି. :* ଲାଣ୍ଡି (ଲାଣ୍ଡା - ଖୁଣ୍ଟା) ପାହାଡ଼ର ଗାଁ । ଗଛବୃଛ ନଥିବା ପାହାଡ଼ ଥିବା ଗାଁ ଲାଣ୍ଡି ଗୁଡ଼ା । ଲାଣ୍ଡି ଜାଗାମାନଙ୍କରେ ବସୁଥିବା ଗାଁ । କୋରାପୁଟ ସହର ପାଖରେ ଏଇ ନାମରେ ଏକ ଗାଁ ରହିଛି ।

୧୪. ଲାମଟା କଆନ୍ - *ଦେ.ବି. :* ଜଳାଶୟର ଆତ୍ମା ବା ଦେବତା । ଏହି ଦେବତା ଜଳାଶୟ ନିକଟରେ ବାସ୍ କରିଥିବାରୁ ଏହାଙ୍କୁ 'ଲାମ୍‌ଟା କଆନ୍' କୁହାଯାଏ । ଏହି ଆତ୍ମାକୁ କୌଣସି ଯୁବତୀ ରୋଗାକ୍ରାନ୍ତ ହେଲେ ରୋଗମୁକ୍ତି ପାଇଁ ପୂଜା କରାଯାଇଥାଏ । ଅର୍ଥାତ୍, ଲାମଟା କଆନ୍ ହେଉଛନ୍ତି ନାରୀ ରୋଗର ଆରୋଗ୍ୟ ଦେବୀ ।

୧୫. ଲାହି ପେନୁ - *ଦେ.ବି. :* ଡଙ୍ଗରିଆ କନ୍ଧଙ୍କ ଏକ ଦେବୀ । ଘଣ୍ଟଯାତ୍ରା ସମୟରେ ଡଙ୍ଗରିଆ କନ୍ଧମାନେ ନିଜ ମୁଖ୍ୟ ଘରର କାନ୍ଥରେ ଲାହିପେନୁଙ୍କ ଚିତ୍ର ଅଙ୍କନ କରିଥାନ୍ତି । ଏପରିକଲେ ସମସ୍ତ ଆପଦ ବିପଦରୁ ରକ୍ଷା ମିଳେ ବୋଲି ସେମାନଙ୍କ ବିଶ୍ୱାସ ।

୧୬. ଲିୟଲୁ - *ଦେ.ବି. :* ବଣ୍ଡା ଅଳଙ୍କାର ବିଶେଷ । ବଣ୍ଡା ରମଣୀମାନେ କାନର ମଧ୍ୟ ଭାଗରେ ପିନ୍ଧୁଥିବା ତମ୍ବା ପିତଳ ତିଆରି ସରୁବଳା ।

୧୭. ଲିର୍‌ଗୀତ - *ଦେ.ବି. :* ବିବାହକାଳର ଗୀତ । ଇଂ- Wedding Song.

ବିବାହ କାର୍ଯ୍ୟରେ ସାହାଯ୍ୟ କରିବା ଗୀତ । ଏହି ଗୀତ ଗଣ୍ଡ ଓ ଭତରା ସମାଜରେ ବିବାହ ସମୟରେ ଗାଇଥାନ୍ତି ।

ଉଦାହରଣ : "ସିଲିରିଲ ରିଲ ରିଲ
ସିଲା ରିଲା ରି ରିଲା ରିଲା । (ଘୋଷା)
ସାଇଲହରି ଲହରି ଲରି ଲହରି ଲହରି
ଆଲେ କାୟା ଦଦାମନ ମନ୍ଦର ମାରାରି ।"

ଅର୍ଥାତ୍ :

କଥାର ଛନ୍ଦ ଶୁଣ, ଆସ ଅଣ୍ଟାକୁ ଅଣ୍ଟାଭିଡ଼ି
ଧରି ନାଚିବା ଭାଇମାନେ ମାଦଲ ବଜାଅ ।

୧୮. ଲିସେଣି - *ଦେ.ବି. :* ନିଶୁଣି, ଡେରନି, ଡେରନା, ସିଡ଼ି, ଇଂ- Ladder.

କୃଷିଜୀବୀ ଆଦିବାସୀର ଏକ ଅତ୍ୟାବଶ୍ୟକ ଗୃହୋପକରଣ ହେଉଛି ଲିସେଣୀ । ଏହା ସାହାଯ୍ୟରେ ଘରଛପର କରିବା, ଲିପିବା, ଗଛରୁ ଫଳ ତୋଳିବା, ଭାଡ଼ିରେ ଶସ୍ୟ ରଖିବା ଓ କାଢ଼ିବା ଆଦି ବିଭିନ୍ନ ପ୍ରକାର କାର୍ଯ୍ୟ ସଂପାଦନ କରାଯାଇଥାଏ ।

କିଏ କାହାକୁ ସାହାଯ୍ୟ କରେ 'ସେ ତାକୁ ଡେଗ୍‌ନା ପାରା ବା ଲିସେଣି ପା୍ରା କାମ୍ କଲାନି' ବୋଲି କୁହାଯାଏ ।

୧୯. ଲୁବ୍‌ରିଂନାଇ / ଓଦୁର - *ଦେ.ବି. :* ବଣ୍ଡା ଗାଦବାଙ୍କ ପାରମ୍ପରିକ ସ୍ବିରୀକୃତ ବିବାହ ହେଉଛି 'ଲୁବ୍‌ରିଂ ନାଇ' । ବିବାହରେ ମଧ୍ୟସ୍ଥି କରୁଥିବା ବ୍ୟକ୍ତିକୁ 'ରାଇବାଡ଼ିଆ'କୁହାଯାଏ । ସମତୁଲ୍ୟ : ଗଣ୍ଡି ଓ ଭତରାଙ୍କ ମାହାଲ ବିଭା ।

୨୦. ଲୁବାଇଡାକ୍ - *ଦେ.ବି. :* ବେକମାଳି - ବଣ୍ଡାରମଣୀମାନେ ବିଭିନ୍ନ ପ୍ରକାର ଲୁବାଇଡାକ୍ ପିନ୍ଧିଥାନ୍ତି । ସେଗୁଡ଼ିକ ହେଲା ଲାଲ୍ ପୋହଳା ବା ଗୋଟିର ମାଳି (ଶେବର ଲୁବାଇଡ଼ାକ୍), ତୁଳସୀ ଜାତୀୟ ମାଳି (ଲଜରେ ସାଏଲମ୍ ଲୁବାଇଡାକ) ମୁଣ୍ଡମାଳି (ରେନାଂବ୍ ଲୁବେଇଡ଼ାକ) ଖଜୁରୀ ପତ୍ରରେ ତିଆରି ମୁଣ୍ଡବନ୍ଧା ମାଳି (ଶ୍ରଇନ୍‌ଡାକ୍) ବେକରେ ପିନ୍ଧିବା ରୂପା ତିଆରି ମାଳି (ସିକ୍‌ସା ଲୁବାଇଡ଼ାକ) ହଳଦିଆ ମାଳି (ସାଂସାଂ ଲୁବାଇଡାକ) ପଇସାମାଳି (ଡାବୁ ଲୁବାଇଡାକ) ଚିତ୍ର, ବିଚିତ୍ରମାଳି (ବୁଜାଇ ଲୁବାଇଡାକ) ଇତ୍ୟାଦି । (ଦ୍ର. ସେବର୍ / ସିକାସାଂଗ ଲୁବାଇଡାକ)

୨୧. ଲୁବେଡ଼ା - *ଦେ.ବି. :* ବଣ୍ଡା ଯୁବତୀମାନେ ବେକରେ ପିନ୍ଧୁଥିବା ମାଳି ।

୨୨. ଲେଙ୍ଗଟି - *ଦେ.ବି. :* କୌପୀନ୍ । ଇଂ- Kaupin, the cloth workment to the body to cover the private parts. କୋରାପୁଟର ବିଭିନ୍ନ ସଂପ୍ରଦାୟର ଆଦିବାସୀ ପୁରୁଷମାନେ ଦୁଇ ବା ତିନିହାତ ଗାମୁଛା ବା କନାକୁ କୌପୁନି ଭାବେ ପିନ୍ଧୁଥିଲେ । ସଂପ୍ରତି ଏମାନେ ଧୋତି, ଗାମୁଛା ଓ ଲୁଙ୍ଗି ପିନ୍ଧିଲେଣି । କିନ୍ତୁ ଲେଙ୍ଗଟିର ବ୍ୟବହାର ଏବେ ମଧ୍ୟ ବହୁ ସଂପ୍ରଦାୟରେ ବିଭିନ୍ନ ସମୟରେ ଓ ଉଦ୍ଦେଶ୍ୟରେ ବ୍ୟବହୃତ ହେଉଚି । ପୁରୁଷଙ୍କ ଲେଙ୍ଗୁଟି ସାମ୍ନା ଓ ଆଗପଟେ ଅଣ୍ଟା ସୁତାରେ ଗୁଂଜା ହୋଇ କେବଳ ଗୁପ୍ତାଙ୍ଗକୁ ଆବୃତ କରିଥାଏ । ଆଦିବାସୀ ସ୍ତ୍ରୀମାନେ ପ୍ରାୟ ସବୁ ସମୟରେ ଏଭଳି ଲେଙ୍ଗ୍‌ଟି ପିନ୍ଧିବାକୁ ବାଧ୍ୟ । ସ୍ତ୍ରୀମାନଙ୍କର ଏହି ଲେଙ୍ଗ୍‌ଟିକୁ 'ଗନ୍ଦା' ବୋଲି କୁହାଯାଏ ।

୨୩. ଲେଜା - *ଦେ.ବି. :* ଜୀବନଧର୍ମୀ ଏବଂ ଲୋକଙ୍କ ଦ୍ୱାରା ରଚିତ ତଥା ଆବୃତ୍ତ ଗୀତ ।

ଜୀବନର ସବୁ ପ୍ରକାର ଅନୁଭବକୁ ଏହି ଗୀତମାନଙ୍କରେ ପ୍ରକାଶ କରାଯାଇଥାଏ ।

ଉଦାହରଣ :

ଲେଙ୍ଗା ଲେଙ୍ଗା ଲେଙ୍ଗା ଲେଙ୍ଗା

ଘୋଟୁଲ ଗୁଡ଼ବେ ଚୁନ୍

ମୋତେ ରାଜା ପରାଉନ ଗେଲେ

ଖଟିଆ ପଡ଼ିଲ ସୁନ ।

ତଲେ ମାତା ଗୁଡ଼ି ଉପରେ କେସର ପାଲ

ପିଲା ହାଥିକେ ଚେଘୁନ୍‌ଗେଲ୍

ରାଜା ଚୋବେଟ୍ ଲାଲା । (ହାଲବୀ ଲେଙ୍ଗା ଗୀତ)

ନବରଂଗପୁର ଜିଲ୍ଲା ଓ ଛତିଶଗଡ଼ ସୀମାନ୍ତ ଗ୍ରାମ ଗୁଡ଼ିକରେ ଲେଙ୍ଗା ଗୀତ ଶୁଣିବାକୁ ମିଳେ । ଯେତେଦୂର ସମ୍ଭବ ଲେଙ୍ଗା ଗୀତର ଆରମ୍ଭ ହୋଇଛି ବିଦାୟ ଗୀତରୁ । ଏହା କୌଣସି ପ୍ରିୟ ବ୍ୟକ୍ତିଙ୍କୁ ବିଦାୟ ଜଣାଇବା ପ୍ରଥାରୁ ହୋଇଛି । 'ଲେଙ୍ଗା' ଶବ୍ଦର ଆକ୍ଷରିକ ଅର୍ଥ ହେଉଛି 'ନେଇଯା' ବା 'ଏହାକୁ ନିଅ' । ଲେଙ୍ଗା ଗୀତ ଗୁଡ଼ିକ ଦୀର୍ଘ ହୋଇଥାଏ ଏବଂ ଏହାର ଘୋଷା ପଦଲେଙ୍ଗା, ଲେଙ୍ଗା, ଲେଙ୍ଗା'ରେ ଆରମ୍ଭ ହୋଇ ତାପରେ ମୂଳଗୀତ ଗାନ କରାଯାଇଥାଏ । ଅବଶ୍ୟ ସବୁ ଲୋକଗୀତରେ ବିଦାୟର ସ୍ୱର ଶୁଣାଯାଏ ନାହିଁ । ଯେପରିକି :

ଏକ ଭତ୍ରୀ ଲେଙ୍ଗା ଗୀତର ଉଦାହରଣ :

"ଲେଙ୍ଗାରେ ଲେଙ୍ଗା ଲେଙ୍ଗା ଲେଙ୍ଗାରେ

କୁରେଇ ଫୁଲ,

ତୋର ପରା କୋନି ନାଇଁ

ଗୁଲା ଲୋଗ ସରି ତୋକେ ବାଚିଲି ମୁଇଁ,

କୁରେଇ ଫୁଲ

ତୋର ପରା କୋନିନାଇଁ ।”

ଅନୁବାଦ : ଲେଜା ପଦକୁ ବାରମ୍ବାର ଆବୃତ୍ତି କରିଗାଉଛି ଯେ, ଗୋ ଧଳାଫୁଲ ପରି ସୁନ୍ଦର ଝିଅଟୁ, ତୋ ସଂଗେ ଆଉ କେହି ସମାନ ହେବେନାହିଁ, ଏଣୁ ତ ଏତେ ଲୋକଙ୍କ ମଧ୍ୟରୁ ମୁଁ ତୋତେ ବାଛିଛି । (ପସନ୍ଦ କରିଅଛି ।)

- ସମାପ୍ତ -

